ରଞ୍ଜନ ପ୍ରଧାନ

a river journey of a journalist...

ଗୋନାସିକା ନନ୍ଦିନୀ

# ବୈତରଣୀ

(ଏକ ପବିତ୍ର ନଈର କାହାଣୀ)

## ଲେଖକଙ୍କ ଅନ୍ୟାନ୍ୟ ବହି

୧. ମାଟିଗୀତ (କବିତା ସଂକଳନ)
୨. ତନୁଜା ବଳକୁ ନେଇ ଯେତେସବୁ ବେକାରିଆ ଗପ (ଗପ ସଂକଳନ)
୩. ଭିଟାମିନ୍ (ଗପ ସଂକଳନ)
୪. ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ (ଫିଚର ସଂକଳନ)
୫. ବଣ ଡଙ୍ଗରର ଗପ-ପ୍ରଥମ ଭାଗ (କୋରାପୁଟିଆ ଆଦିବାସୀ ଲୋକଗପ )
୬. ବଣ ଡଙ୍ଗରର ଗପ-ଦ୍ୱିତୀୟ ଭାଗ (କୋରାପୁଟିଆ ଆଦିବାସୀ ଲୋକଗପ )
୭. ପରଜା ଜୀବନ ଓ ସଂସ୍କୃତି (ଗବେଷଣାଧର୍ମୀ ପୁସ୍ତକ)
୮. Tales from Hill & Jungle (tribal folk tales of Koraput region)
୯. ଆଦିବାସୀ ନାଚ ଓ ଗୀତ (ଗବେଷଣାଧର୍ମୀ ପୁସ୍ତକ)
୧୦. ଭାଗବତ ଟୁଙ୍ଗି (କବିତା ସଂକଳନ)
୧୧. ଡୁମା ଦେବତା ଓ ଅନ୍ୟାନ୍ୟ ଗପ (ଗପ ସଂକଳନ)
୧୨. ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ - କେନ୍ଦୁଝର
୧୩. ଜୁଆଙ୍ଗ ପର୍ବପର୍ବାଣି
୧୪. ଗୋନାସିକା ନନ୍ଦିନୀ 'ବୈତରଣୀ'


**ଲେଖକଙ୍କୁ ଆପଣ ଫୋନ୍ କରିପାରିବେ:**

୯୪୩୭୨୧୩୮୫୪

**ଆପଣ ମେଲ୍ ପଠେଇ ପାରିବେ:**

e-mail
ranjan_pragyan@rediffmail.com
pradhanranjan37@yahoo.com

ଗୋନାସିକା ନନ୍ଦିନୀ **ବୈତରଣୀ**

*a river journey of a journalist...*

# ଗୋନାସିକା ନନ୍ଦିନୀ

# ବୈତରଣୀ

(ଏକ ପବିତ୍ର ନଈର କାହାଣୀ)

ରଞ୍ଜନ ପ୍ରଧାନ




ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା

*a river journey of a journalist...*

ଗୋନାସିକା ନନ୍ଦିନୀ

# ବୈତରଣୀ (ଏକ ପବିତ୍ର ନଈର କାହାଣୀ)

ଲେଖକ: ରଞ୍ଜନ ପ୍ରଧାନ
ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ଓଡ଼ିଶା
ବିତରକ: ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର-୧୨
ପ୍ରଚ୍ଛଦ: ଅଶୋକ ମହାନ୍ତି, ପ୍ରଚ୍ଛଦ ଫଟୋ: ରଂଜନ ପ୍ରଧାନ
ମୁଦ୍ରଣ: ଏ·ବି· ଇମେଜିଂ ପ୍ରା·ଲିଃ·, ଭୁବନେଶ୍ୱର
ବହି ଭିତରର ସମସ୍ତ ଫଟୋ: ରଂଜନ ପ୍ରଧାନ
ପ୍ରଥମ ମୁଦ୍ରଣ: ୨୦୧୫
**ମୂଲ୍ୟ: ୪୫୦ ଟଙ୍କା**

Copyright: Ranjan Pradhan
Photography: Ranjan Pradhan

1st edition: 2015

*a river journey of a journalist...*

**Gonasika Nandinee, Baitaranee**

*an exclusive field study on the sacred river baitaranee of odisha by ranjan pradhan, published by creative odisha, niginipur, sanajaria, kendrapada, odisha.*

**Contact**
**Phone:** 09437213854
**E-mail:** ranjan_pragyan@rediffmail.com
pradhanranjan37@yahoo.com

₹ 450.00

# ଉତ୍ସର୍ଗ



**ଖ୍ରୀଷ୍ଟୋଫର କଲମ୍ବସ ଏବଂ ତାଙ୍କ ପ୍ରିୟ ଜାହାଜ ସାନ୍ତାମେରିଆ**

ସକଳ ପ୍ରତିବନ୍ଧକ, ପ୍ରତିକୂଳ ପରିସ୍ଥିତି, ସାମାଜିକ ଓ ଧାର୍ମିକ ଷଡ଼ଯନ୍ତ୍ର, ମିଥ୍ୟା ଲାଞ୍ଛନା, କ୍ରୁର ପାରିବାରିକ ଜଞ୍ଜାଳ, ରାଜପାରିଷଦର ଇର୍ଷା, ନିୟତିର ରୋଷ, ଜୀବନବ୍ୟାପୀ ଅପମାନ, ତିରସ୍କାର ଓ ମାନସିକ ନିର୍ଯାତନା ଯାହାଙ୍କୁ ଅବିଚଳିତ କରିଥିଲା

ପ୍ରଶଂସା ଓ ପୁରସ୍କାରପ୍ରାପ୍ତି ଯାହାଙ୍କ ଜୀବଦଶାରେ ସଂଭବ ହୋଇ ନଥିଲା
ଜନ୍ମରୁ ମୃତ୍ୟୁ ଯାଏ ସମଗ୍ର ଜୀବନ ସଂଘର୍ଷ କରି ଯିଏ ମରିଯାଇଥିଲେ
ମୃତ୍ୟୁର ବହୁଶତ ବର୍ଷ ପରେ ଯାହାଙ୍କୁ ଦୁନିଆ ଚିହ୍ନିଲା

ଭାଗ୍ୟକୁ ନ ଆଦରି ଏବଂ ନିଜ ଭାଗ୍ୟକୁ ନିନ୍ଦା ବା ପ୍ରଶଂସା ନ କରି
ଜୀବନ ସହ ଲଢି ବିଜୟୀ ହୋଇଥିବା
ସହସ୍ରାବ୍ଦୀର ମହାନ୍ ଆବିଷ୍କାରକ **ଖ୍ରୀଷ୍ଟୋଫର କଲମ୍ବସ** ଏବଂ ତାଙ୍କ ପ୍ରିୟ ଜାହାଜ **ସାନ୍ତାମେରିଆଙ୍କୁ**...

-ରଞ୍ଜନ

# ସୂଚୀପତ୍ର

# ଜଣେ ସାମ୍ବାଦିକର **'ନଦୀ ଯାତ୍ରା'**

## ଗୋନାସିକାରୁ **ଧାମରା ଯାଏଁ...**

ଯେତେବେଳକୁ ଆମ ମୋଟର ଲଞ୍ଚଟି ଚାନ୍ଦବାଲି ଫେରିଘାଟରୁ ବାହାରି ନଳିତାପାଟିଆ ଅଭିମୁଖେ ଯାତ୍ରା କରୁଥିଲା । ବୈତରଣୀର ଛାତି ଚିରି ଯଂତ୍ର ଦାନବଟି ମାଡ଼ି ଚାଲୁଥିଲା ସମୁଦ୍ରର ଆଁ ଭିତରକୁ ।

ବୈତରଣୀର ସ୍ୱଚ୍ଛ କାଚକେନ୍ଦୁ ଭଳି ଚକ୍‌ଚକ୍ ପାଣି, ପାଣିର ଆଇନାରେ ଚହଲୁଥିବା ସୂର୍ଯ୍ୟ, ଭସା ବଉଦ, ଆକାଶ, ନଈ ପାର୍ଶ୍ୱର ଗଛ, ଉଡ଼ାଜାହାଜ, ମାଛଧରା ଡଙ୍ଗା, ଚଢ଼େଇମାନଙ୍କ ଚିତ୍ର, ମୋଟର ଲଞ୍ଚ ପଛରୁ ନିର୍ଗତ ବୁଦ୍‌ବୁଦ୍ ପାଣି ଫୋଟକା, ପାଣିର କୁଳୁକୁଳୁ କୋମଳ ଶବ୍ଦ, ଶିର୍‌ଶିର୍ କାଲୁଆ ପବନ ଓ ମୋଟର ଲଞ୍ଚର ଭଟ୍‌ଭଟ୍ ଗର୍ଜନର ରିମିକ୍ସ ଦେହ ଓ ମନରେ ଅପୂର୍ବ ଶିହରଣ ସୃଷ୍ଟି କରୁଥିଲା । ମନରେ ଆନନ୍ଦ ଓ ଆତଙ୍କର ଏକ ନୂଆ ଇସ୍ତାହାର ରଚୁଥିଲା ଏହି **'ପାଣିଯାତ୍ରା'** । ମୁଁ ଏହାର ନାଁ ରଖିଥିଲି **'ବୈତରଣୀ ଯାତ୍ରା'** । ଏ ଯାତ୍ରା ପ୍ରାୟ ୧୮୨୫ ଦିନର ।

କେନ୍ଦ୍ରାପଡ଼ାରୁ ମୋଟର କାର୍ ଯୋଗେ ବାହାରି ପଟ୍ଟାମୁଣ୍ଡାଇ, ଆଳି, ରାଜକନିକା ଦେଇ ଆମେ



**ବୈତରଣୀର ଉତ୍ପତ୍ତି ସ୍ଥଳ, ଗୋନାସିକାରେ ଲେଖକ**



**କେନ୍ଦୁଝର ଜିଲ୍ଲା ଯୋଡ଼ା ବ୍ଲକ୍‌ର ଅସାଡୋଲା ବୈତରଣୀ ଶଯ୍ୟାରେ ଲେଖକ**

ସିଧା ପହଞ୍ଚିଗଲୁ ଚାନ୍ଦବାଲି ବଜାରରେ । ଚାନ୍ଦବାଲିରେ ପହଞ୍ଚିଲାବେଳକୁ ସକାଳ ଆଠଟା । ସେତେବେଳକୁ ଚାନ୍ଦବାଲିର ଛୋଟିଆ ବଜାରଟି ଚଳଚଞ୍ଚଳ ହେବାକୁ ଆରଂଭ କରୁଥାଏ । ଜଳଖିଆ ଦୋକାନଗୁଡ଼ିକ ଆଗରେ ସ୍ଥାନୀୟ ଲୋକଙ୍କ ଭିଡ଼ ଜମୁଥାଏ । ଚା' ଗ୍ଲାସ୍, କପ୍, ପ୍ଲେଟ୍‌ର ଠନ୍‌ଠାନ୍ ଶବ୍ଦ, କାଉ, କୁକୁରଙ୍କ ଗହଳି, ଲୋକଙ୍କ ଗପସପ ଓ ଚା' ଗ୍ଲାସ୍‌ରେ ଦିଲ୍ଲୀରୁ ପଲ୍ଲୀଯାଏ ଆଲୋଚନା; ଏକ ସହରୀ ସକାଳର ଚିତ୍ର ଆଙ୍କୁଥିଲା ମନରେ ।

ଗରମ୍ ଗରମ୍ ଚା'ର ବାମ୍ଫରେ ମନ ଓ ଶରୀରକୁ ସାମାନ୍ୟ ଫୁର୍ତ୍ତି କରି ଆମେ ଚାଲିଲୁ ଚାନ୍ଦବାଲି ଜେଟି ଆଡ଼େ । ଚାନ୍ଦବାଲି ଓ କନିକା ମଧ୍ୟରେ ବୈତରଣୀ ପୋଲ ହୋଇଯାଇଥିବାରୁ ଆମକୁ ସ୍ଥଳପଥରେ ଚାନ୍ଦବାଲି ପର୍ଯ୍ୟନ୍ତ ପହଞ୍ଚିବାରେ କୌଣସି ଅସୁବିଧା ହେଲାନି । ଚାନ୍ଦବାଲି ବୈତରଣୀ ଘାଟରୁ ଏକ ମୋଟର ଲଞ୍ଚ ଯୋଗାଡ଼ କରି ବାହାରିଲୁ ବୈତରଣୀର ଅନ୍ତିମ ଯାତ୍ରାସ୍ଥଳ ଦର୍ଶନ ଉଦ୍ଦେଶ୍ୟରେ । ଚାନ୍ଦବାଲିରୁ ନଈର ଛାତି ଚିରି ଆମ ମୋଟର ଲଞ୍ଚ ମାଡ଼ି ଚାଲିଥିଲା ଆଗକୁ ଆଗକୁ । ଯେମିତି ଲାଗୁଥିଲା ଆମେ ସମୁଦ୍ରର ଆଁ ଭିତରକୁ ପଶିଯାଉଛୁ ।

ଚାନ୍ଦବାଲିରୁ କିଛିବାଟ ଆଗକୁ ଗଲାପରେ ଏକ ବିଶାଳ ଜଳମୟ ଅଞ୍ଚଳ ଆମର ଦୃଷ୍ଟି ଆକର୍ଷଣ କଲା । ମନେହେଲା, ଏହା ବୋଧେ ସମୁଦ୍ର । ମାତ୍ର ତାହା ସମୁଦ୍ର ନଥିଲା । ପ୍ରକୃତରେ ତାହା ଥିଲା **ନଳି ତା ପା ଟି ଆ** ।

ନଳିତାପାଟିଆ କଥା ଶୁଣିଲେ ଦେହ ଓ ମନ ରୋମାଞ୍ଚିତ ହୋଇଉଠେ । ନଳିତାପାଟିଆ ହେଉଛି ସେହି ସ୍ଥାନ, ଯେଉଁଠି ବୈତରଣୀ ଓ ବ୍ରାହ୍ମଣୀ ଉଭୟ ମିଳିତ ହୋଇଛନ୍ତି । ଏଠାରେ ଦୁଇ ନଦୀର ମିଳନ ସ୍ଥଳରେ ଏକ ବିଶାଳ ଓ ଗଭୀର ଗଣ୍ଡ ସୃଷ୍ଟି ହୋଇଛି । ଏହାକୁ ନଳିତାପାଟିଆ ଗଣ୍ଡ କୁହାଯାଇଥାଏ । ଏହା ହେଉଛି ବୈତରଣୀ ଓ ବ୍ରାହ୍ମଣୀର ସଂଗମ ସ୍ଥଳ । ନଳିତାପାଟିଆର ଆହୁରି ଆଗକୁ ଧାମରା ଓ ଡାଳଚୁଆ ମୁହାଁଣ । ଆହୁରି ଆଗକୁ ହ୍ୱିଲର ଆଇଲାଣ୍ଡ ଓ କନିକା ସ୍ୟାଣ୍ଡ ଓ ବିଶାଳ ସମୁଦ୍ର ।

ସେଦିନ ଥାଏ ୨୦୧୪ ମସିହା ଜାନୁୟାରୀ ୧୪ ତାରିଖ, ପବିତ୍ର ମକର ସଂକ୍ରାନ୍ତିର ଏକ ଶୀତଳ ପୂର୍ବାହ୍ନ । ଚାନ୍ଦବାଲିରୁ ବୈତରଣୀ ନଦୀ ଦେଇ ନଳିତାପାଟିଆଠାରେ ପହଞ୍ଚିଲା ବେଳକୁ ସୂର୍ଯ୍ୟ ମୁଣ୍ଡ ଉପରେ । ଚାରିଆଡ଼େ ରାଶିରାଶି ଜଳର ମେଳା ଓ ନିରବତାର ମୀନାବଜାର । ଏ ଜଳର ମହୋତ୍ସବରେ ସୂର୍ଯ୍ୟଙ୍କର କିରଣ ପ୍ରାୟ ନିଷ୍ପ୍ରଭ ହୋଇଯାଉଥିଲା । ଏପଟୁ (ଚାନ୍ଦବାଲି-ରାଜକନିକା ପଟୁ) ବହୁଥିବା ବୈତରଣୀ ସହିତ ସେପଟୁ କେନ୍ଦ୍ରାପଡ଼ାର ପଟ୍ଟାମୁଣ୍ଡାଇ, ରାଜନଗର ଦେଇ ବହି ଆସୁଥିବା ବ୍ରାହ୍ମଣୀ ଏହି ନଳିତାପାଟିଆଠାରେ ମିଳିତ ହୋଇଥିବାର ଦୃଶ୍ୟ ହୃଦୟକୁ ଚହଲାଇ ଦେଉଥିଲା । ଦୁଇଟି ନଦୀର ମହାମିଳନ ଦୃଶ୍ୟ ବାସ୍ତବରେ କେତେ ରୋମାଞ୍ଚକର ତାହା



କେନ୍ଦ୍ରାପଡ଼ା ଜିଲ୍ଲା କାଳିଭଞ୍ଜଡିହା ଦ୍ୱୀପାଞ୍ଚଳରେ ଲେଖକ



**ଡାଳଚୁଆ-କାଳନାଳି ଫେରିଘାଟ: ଲଞ୍ଚରେ ବୈତରଣୀ ଯାତ୍ରାର ଅନୁଭୂତି**

ନଳିତାପାଟିଆର ସେହି ଗଭୀର ଗଣ୍ଡରେ ମୁଁ ସେଦିନ ପ୍ରଥମଥର ଅନୁଭବ କଲି । ଏହି ଅନୁଭବ ମୋର ସଂପୂର୍ଣ୍ଣ ନିଜସ୍ୱ ଓ ଏକାନ୍ତ ।

ମୋ' ସାଥୀରେ ମୋ' ଜ୍ୟେଷ୍ଠଶାଳକ ଶାରଦା ପ୍ରସନ୍ନ ବାରିକ୍, ଲଞ୍ଚ ଚାଳକ ଏବଂ ଅନ୍ୟ ଦୁଇ ଜଣ ସ୍ଥାନୀୟ ଅଧିବାସୀ ଥିଲେ । ନଳିତାପାଟିଆଠାରେ ବିଶାଳ ଆକାର ଧାରଣ କରିଥିବା ବୈତରଣୀ-ବ୍ରାହ୍ମଣୀର ମିଳିତ ସ୍ରୋତରେ ଆଗକୁ ଆଉ କିଛିବାଟ ଆଗେଇଲୁ । ଏଠାରେ କହିରଖେ, ନଳିତାପାଟିଆଠାରେ ବୈତରଣୀ ସହ ବ୍ରାହ୍ମଣୀ ମିଶିଯିବା ପରେ ଆଗକୁ ଏହି ମିଳିତ ଜଳସ୍ରୋତଟି ବୈତରଣୀ ନଦୀ ଭାବେ ସ୍ଥାନୀୟ ଅଞ୍ଚଳରେ ପରିଚିତ ହୋଇଛି । ସ୍ଥାନୀୟ ଅଞ୍ଚଳରେ କେହି ଏହାକୁ ବ୍ରାହ୍ମଣୀ କହୁଥିବାର ମନେ ହୁଏନି । ନଳିତାପାଟିଆରୁ କିଛିବାଟ ଆଗକୁ ଗଲାପରେ ବୈତରଣୀ ନଦୀ **(ଗର୍ଭସ୍ଥ ବ୍ରାହ୍ମଣୀ ସହିତ)** ଦୁଇ ଭାଗରେ ବିଭକ୍ତ ହୋଇ ଯାଇଥିବାର ଦେଖିଲୁ । ବୈତରଣୀ ଗର୍ଭରେ ଏକ ବିଶାଳ ହେନ୍ତାଳ ଜଙ୍ଗଲପୂର୍ଣ୍ଣ ସ୍ଥଳଭାଗ ଥିବାର ଦୃଶ୍ୟମାନ ହେଲା । ଏହା ହେଉଛି ପ୍ରସିଦ୍ଧ **କାଳିଭଞ୍ଜଡ଼ିହା ଦ୍ୱୀପ** । କାଳିଭଞ୍ଜଡ଼ିହା ଆମ ବୈତରଣୀ ଯାତ୍ରାର ଆଉ ଏକ ରୋମାଞ୍ଚକର ଅନୁଭୂତି ।

କାଳିଭଞ୍ଜଡ଼ିହା(କାଳିଭଞ୍ଜଡ଼ିଆ) ହେନ୍ତାଳ ଜଙ୍ଗଲ ବୈତରଣୀ ନଦୀକୁ ଦୁଇ ଭାଗରେ ବିଭକ୍ତ କରିବାକୁ ସକ୍ଷମ ହୋଇଛି । ବୈତରଣୀର ଗୋଟିଏ ସ୍ରୋତ ଧାମରା ପାର୍ଶ୍ୱ ଦେଇ ପ୍ରବାହିତ ହେଉଥିବାବେଳେ ଅନ୍ୟ ଏକ ସ୍ରୋତ ତାଳଚୁଆ ପାର୍ଶ୍ୱ ଦେଇ ପ୍ରବାହିତ ହୋଇଛି । ଯେଉଁଠି ଏହି ସ୍ଥଳଭାଗ ଟାପୁ (କାଳିଭଞ୍ଜଡ଼ିଆ ଦ୍ୱୀପ) ଶେଷ ହୋଇଛି ପୁନଶ୍ଚ ଏହି ଦୁଇଟି ସ୍ରୋତ ମିଳିତ ହୋଇଛନ୍ତି । ଏହାପରେ ବୈତରଣୀ କଳିଙ୍ଗସାଗର (ବଙ୍ଗୋପସାଗର)ରେ ପଡ଼ିଛି । ଧାମରା ଓ ତାଳଚୁଆ ମଧ୍ୟରେ ବୈତରଣୀ ନଦୀ ଗର୍ଭରେ ଏହି ବିଶାଳ ହେନ୍ତାଳ ଜଙ୍ଗଲପୂର୍ଣ୍ଣ କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳଟି ରହିଯାଇଛି ।

ଆମର ପ୍ରଥମ ଯାତ୍ରାରେ ଆମେ ଚାନ୍ଦବାଲିରୁ ମୋଟର ଲଞ୍ଚ ଯୋଗେ ବାହାରି ନଳିତାପାଟିଆରୁ ବୈତରଣୀର ଦକ୍ଷିଣ ପାର୍ଶ୍ୱ ତାଳଚୁଆ ନ ଯାଇ ବୈତରଣୀର ବାମ ପାର୍ଶ୍ୱ ଶାଖା ଦେଇ ଧାମରା ମତ୍ସ୍ୟ ପୋତାଶ୍ରୟ ଅଭିମୁଖେ ଯାତ୍ରା କଲୁ । କିଛି ବାଟ ଜଳଯାତ୍ରା ପରେ ବୈତରଣୀରେ ଆଉ ଏକ ବିଶାଳ ଗଣ୍ଡ ଦୃଶ୍ୟମାନ ହେଲା । ଏହି ସ୍ଥାନରେ ଭଦ୍ରକ-ବାସୁଦେବପୁର ଆଡୁ ବହି ଆସିଥିବା **ମନ୍ତେଇ ନଈ** (ମତେଇ) ବୈତରଣୀରେ ମିଶିଥିବାର ଜାଣିଲୁ । ବୈତରଣୀ-ମନ୍ତେଇ ନଈର ମିଳନସ୍ଥଳ ଅତିକ୍ରମ କରି ଧାମରା **ମତ୍ସ୍ୟ ପୋତାଶ୍ରୟ** ମଧ୍ୟରେ ପ୍ରବେଶ କଲୁ ।

ଧାମରା ମତ୍ସ୍ୟ ପୋତାଶ୍ରୟର ଜେଟିରେ ସେଦିନ ହଜାର ହଜାର ସଂଖ୍ୟାରେ ମାଛଧରା



ଚନ୍ଦନିପାଳ ଡିଫେନ୍‌ସ ବେସ୍ କ୍ୟାଂପ୍ ସଂଲଗ୍ନ ବୈତରଣୀ ଗର୍ଭରେ ଲେଖକ

ଟ୍ରଲରମାନ ଲାଗିଥାନ୍ତି । ଲାଗୁଥିଲା ପାଣିର ପିଠି ଉପରେ ଟ୍ରଲରମାନଙ୍କର ଏକ ମହୋତ୍ସବ ଚାଲିଛି ! ବୈତରଣୀ ନଦୀ (ବୈତରଣୀ-ବ୍ରାହ୍ମଣୀର ଏକ ସ୍ରୋତ, ଯାହାକୁ ସ୍ଥାନୀୟ ଅଞ୍ଚଳରେ ବୈତରଣୀ ନଦୀ ବୋଲି କହିଥାନ୍ତି ) କୂଳରେ ଥିବା ମା' **ଧାମରାଇଙ୍କ** ମନ୍ଦିରରେ ମକର ଉତ୍ସବ ଓ **ଗଙ୍ଗାମାତାଙ୍କ** ପୂଜା ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହେଉଥାଏ । ଆମେ ମୋଟର ଲଞ୍ଚରୁ ଓହ୍ଲାଇ ଧାମରାଇ ମନ୍ଦିର ଅଭିମୁଖେ ଯାତ୍ରା କଲୁ । ସେଦିନ ମକର ସଂକ୍ରାନ୍ତି ହୋଇଥିବାରୁ ଧାମରାଇ ମନ୍ଦିରରେ ଏମିତି ଭିଡ଼, ଘୋରିଷ ପକାଇବାକୁ ଜାଗା ନଥାଏ । ମତ୍ସ୍ୟ ବ୍ୟବସାୟୀ ଓ ଧୀବରମାନେ ଧାମରା ମତ୍ସ୍ୟ ପୋତାଶ୍ରୟରେ ମକର ସଂକ୍ରାନ୍ତିକୁ ଧୁମ୍‌ଧାମ୍‌ରେ ପାଳନ କରୁଥା'ନ୍ତି ।

ଧାମରାଇ ମନ୍ଦିର ଦର୍ଶନ ଏବଂ ଧାମରା ମତ୍ସ୍ୟ ପୋତାଶ୍ରୟ ବୁଲାବୁଲି କରିବା ବେଳକୁ ସଞ୍ଜ ନଇଁ ଆସୁଥିଲା । ଏହାପରେ ଆମେ ସମୁଦ୍ର ମୁହାଁଣରେ ନୂଆକରି ଗଢି ଉଠୁଥିବା ଚନ୍ଦନିପାଳର ନୂତନ ଧାମରା ବନ୍ଦର ଅଭିମୁଖେ ଯାତ୍ରା ଆରଂଭ କଲୁ । ଆମେ ଚନ୍ଦନିପାଳକୁ ଅଗ୍ରସର ହେଉଥିଲୁ ସମାନ୍ତରାଳ ଭାବେ ସଞ୍ଜ ମଧ୍ୟ ବହଳ ହେଉଥିଲା । ଚନ୍ଦନିପାଳରେ ହଜାର ହଜାର ଏକର ଜମି ଉପରେ ନୂଆ କରି ଆଧୁନିକ ଧାମରା ବନ୍ଦର ଗଢି ଉଠୁଛି । ଚାରିଆଡ଼େ ନିର୍ମାଣ କାମ ଆଗେଇ ଚାଲିଛି । ନୂଆ ଧାମରା ବନ୍ଦରକୁ ଲାଗି ଭାରତୀୟ ସେନାବାହିନୀର ଏକ ବିଶାଳ ବେଶ୍ କ୍ୟାଂପ୍



ଆଖୁଆପଦା ଆନିକଟ୍‌ରେ ଲେଖକ



**ବୈତରଣୀ ଓ ଉପନଦୀ କଙ୍ଗିରାର ମିଳନସ୍ଥଳ ଫଗୁଘାଟରେ ଲେଖକ**

ମଧ୍ୟ ପ୍ରତିଷ୍ଠା ହୋଇଛି । ଆଉ ଟିକେ ଆଗକୁ ଗଲେ ପଡ଼ିଥା'ନ୍ତା ହ୍ୱିଲର ଦ୍ୱୀପପୁଞ୍ଜ । ମାତ୍ର ସେଠାକୁ ଯିବା ପାଇଁ ନାନା ପ୍ରକାର କଟକଣା ଥିବାରୁ ଏବଂ ପଞ୍ଜ ବୁଡ଼ି ଯାଉଥିବାରୁ ଆମେ ସେଦିନ ହ୍ୱିଲର ଦ୍ୱୀପକୁ ଯାଇ ନ ପାରି ପୁନର୍ବାର ନଦୀପଥ ଦେଇ ଚାନ୍ଦବାଲିକୁ ଫେରି ଆସିଥିଲୁ । ଚାନ୍ଦବାଲିରେ ପହଞ୍ଚିଲାବେଳକୁ ରାତି ହୋଇଯାଇଥିଲା । ସେଠାରୁ ଆମେ ଆମ ମୋଟର କାର୍ ଯୋଗେ ପୁନର୍ବାର ପଟ୍ଟାମୁଣ୍ଡାଇ ଫେରିଆସିଲୁ ।

ପରଦିନ ଅର୍ଥାତ୍ ୨୦୧୪ ମସିହା ଜାନୁୟାରୀ ୧୫ ତାରିଖ । ପୁଣି ପଟ୍ଟାମୁଣ୍ଡାଇରୁ ଆମର ଯାତ୍ରା ଆରଂଭ କଲୁ । ପଟ୍ଟାମୁଣ୍ଡାଇରୁ ଗୁଣ୍ଡି, ମଦନପୁର, ରାଜନଗର, ହଂସିଣାଘାଟ, ଜରିମୂଳ, ଈଶ୍ୱରପୁର, ରିଘାଗଡ଼, ଭିତରକନିକା ଅଭୟାରଣ୍ୟ ରେଞ୍ଜ ଅଫିସ୍, ଖୋଳା ନଈ, ନଳିତାପାଟିଆ (ଡାଙ୍ଗମାଳ) ଦେଇ ସ୍ଥଳପଥରେ ଆମେ ପହଞ୍ଚିଥିଲୁ **ତାଳଚୁଆ**ଠାରେ । ପିଲାଦିନେ ତାଳଚୁଆ ସଂପର୍କରେ ଅନେକ ରହସ୍ୟ ଓ ରୋମାଞ୍ଚଭରା କାହାଣୀ ଯାହା ଶୁଣିଥିଲି । ସାତନଈ ତେର ସମୁଦ୍ର ପାର ହୋଇ କିଭଳି ତାଳଚୁଆ ଦ୍ୱୀପରେ ପହଞ୍ଚିବାକୁ ହୁଏ, ପିଲାଦିନେ ମୁଁ ମୋ' ଆଈଠାରୁ ବହୁତ କାଳ୍ପନିକ ଓ ସତ୍ୟ କାହାଣୀ ଶୁଣିଥିଲି । ଆଉ ଆଈମା' କାହାଣୀର ସେଇ ସତ ତାଳଚୁଆର ଛାତି ଉପରେ ପାଦ ଦେଲାବେଳେ ମୋ' ଶରୀରରେ ଶିହରଣ ସୃଷ୍ଟି ହୋଇଥିଲା ।

ଧାମରା ଭଳି ତାଳଚୁଆ ମଧ୍ୟ ବୈତରଣୀର ଅନ୍ୟ ଏକ ସାମୁଦ୍ରିକ ମୁହାଁଣ । ଏଠାରେ ଧାମରା

ଭଳି ଏକ ମତ୍ସ୍ୟ ପୋତାଶ୍ରୟ ଓ ସାମୁଦ୍ରିକ ବନ୍ଦର ରହିଛି । ଏକ ପ୍ରାଚୀନ ପ୍ରାକୃତିକ ସମୁଦ୍ର ବନ୍ଦର ଭାବେ ତାଳଚୁଆ ବେଶ୍ ପ୍ରସିଦ୍ଧିଲାଭ କରିପାରିଥିଲା । ମାତ୍ର ବର୍ତ୍ତମାନ ଧାମରା ବନ୍ଦରର ଦ୍ରୁତ ବିକାଶ ଘଟିବା ଫଳରେ ତାଳଚୁଆ ବନ୍ଦର ନିଜର ଅସ୍ତିତ୍ୱ ହରାଇ ବସିଛି । ତଥାପି ଏବେ ତାଳଚୁଆ ବନ୍ଦରରେ ଜାହାଜ ଲାଗୁଛି ଓ ମତ୍ସ୍ୟ ପୋତାଶ୍ରୟରେ ହଜାର ହଜାର ସଂଖ୍ୟାରେ ଟ୍ରଲରମାନେ ଆତଯାତ କରୁଛନ୍ତି ।

ଆମ ଯାତ୍ରା କାର୍ଯ୍ୟକ୍ରମର ପୂର୍ବସୂଚୀ ଅନୁସାରେ, **ଖୋଳା ଫରେଷ୍ଟ ଗେଟ୍ (ଭିତରକନିକା ଜାତୀୟ ଉଦ୍ୟାନର ପ୍ରବେଶ ପଥ)**ରେ ପହଞ୍ଚି ସେଠାକାର ଫରେଷ୍ଟର ରଞ୍ଜିତ୍ ମହାନ୍ତିଙ୍କୁ ଭେଟି ତାଙ୍କ ସହ ସାକ୍ଷାତ ଆଲୋଚନା କଲୁ । ତାଙ୍କଠାରୁ କିଛି ପରାମର୍ଶ ନେଇ ତାଳଚୁଆରେ ପହଞ୍ଚିଲା ବେଳକୁ ଦିନ ପ୍ରାୟ ଏଗାରଟା ବାଜି ସାରିଥିଲା । ଖୋଳା ଫରେଷ୍ଟର ଶ୍ରୀଯୁକ୍ତ ମହାନ୍ତି ଆମକୁ ତାଳଚୁଆର **ଗଣେଶ ଗୁଡ଼ିଆ (ସ୍ଥାନୀୟ ସମିତିସଭ୍ୟ)**ଙ୍କ ଠିକଣା ଦେଇଥିଲେ । ସେହି ପ୍ରକାରେ ଆମେ ତାଳଚୁଆରେ ପହଞ୍ଚିଲା ପରେ ଗଣେଶ ବାବୁ ଆମ ପାଇଁ ଏକ ମୋଟର ଲଞ୍ଚର ବ୍ୟବସ୍ଥା କରିବା ସହିତ ମଧ୍ୟାହ୍ନ ଭୋଜନର ଆୟୋଜନ କରିଥିଲେ । ଗଣେଶବାବୁ ମଧ୍ୟ ତାଳଚୁଆର ଜଣେ ଜାଣିଲାଶୁଣିଲା ଯୁବକ ସନାତନ ପରିଡ଼ାଙ୍କୁ ଆମ ସାଥୀରେ ପଠାଇଥିଲେ । ତାଳଚୁଆ ଜେଟିରୁ ଆମର ଜଳ ଯାତ୍ରା ଆରମ୍ଭ ହେଲା ।



**ଚାନ୍ଦବାଲି ବନ୍ଦର କାର୍ଯ୍ୟାଳୟ ସନ୍ନିକଟ ବୈତରଣୀ ଲଞ୍ଚ ଘାଟରେ ଲେଖକ**



**ଚନ୍ଦନିପାଳ ଶୁଖୁଆଖଳାରେ ଲେଖକ**

ଆମେ ତାଳଚୁଆ ଜେଟିରୁ ଯାତ୍ରା ଆରଂଭ କରି ପୂର୍ବ ଦିଗକୁ ସମୁଦ୍ର ଅଭିମୁଖେ ବାହାରିଲୁ । ସମୁଦ୍ର ମଧ୍ୟକୁ କିଛିବାଟ ପ୍ରବେଶ କରି ହ୍ୱିଲର ଆଇଲାଣ୍ଡ କଡ଼େକଡ଼େ ଯାଇ ଭଦ୍ରକ ଜିଲ୍ଲାର କାଳନାଳି ଫେରିଘାଟରେ ଓହ୍ଲାଇଲୁ । ସେଠାରେ କିଛି ସମୟ କଟାଇବା ପରେ ପୁଣି ଧାମରା ବନ୍ଦର ଓ ମତ୍ସ୍ୟ ପୋତାଶ୍ରୟ ଆଡ଼କୁ ବାହାରିଲୁ । ସେଦିନ ଆଉ ଧାମରା ମତ୍ସ୍ୟ ପୋତାଶ୍ରୟ କିମ୍ବା ଧାମରାଇ ମନ୍ଦିର ନିକଟରେ ଓହ୍ଲାଇଲୁ ନାହିଁ । ସିଧା ନଳିତାପାଟିଆ ଅଭିମୁଖେ ଯାତ୍ରା କଲୁ ଏବଂ ଜେଟିରେ କିଛି ସମୟ ବିଶ୍ରାମ ନେଲୁ । ନଳିତାପାଟିଆରେ ପହଞ୍ଚିଲାବେଳକୁ ସୂର୍ଯ୍ୟଙ୍କ ତେଜ ଧୀରେଧୀରେ କମିଆସିଥାଏ । ସେଠାରୁ ବୈତରଣୀ ନଦୀ ଧାରେଧାରେ ପୁନର୍ବାର ତାଳଚୁଆ ଅଭିମୁଖେ ଫେରିଲୁ । ଫେରିବା ବାଟରେ ହିଁ ବୈତରଣୀ ଗର୍ଭସ୍ଥ ପ୍ରସିଦ୍ଧ କାଳିଭଞ୍ଜଡ଼ିହା ଦ୍ୱୀପ ଓ ଲୁଣା ଜଙ୍ଗଲ ଦେଖିଲୁ । ସେଠାରେ କିଛି ସମୟ ଅଟକିଲୁ ।

ପୂର୍ବରୁ ସୂଚନା ଦିଆଯାଇଛି, ନଳିତାପାଟିଆଠାରେ ବୈତରଣୀ-ବ୍ରାହ୍ମଣୀ ମିଳିତ ହେବାପରେ ଏହାର ଗୋଟିଏ ସ୍ରୋତ ଧାମରା ଦେଇ ବଙ୍ଗୋପସାଗର ଆଡ଼କୁ ଗତି କରିଥିବାବେଳେ ଅନ୍ୟ ଏକ ସ୍ରୋତ ତାଳଚୁଆ ଦେଇ ବଙ୍ଗୋପସାଗର ଆଡ଼କୁ ଯାଇଛି । ଏମାନଙ୍କ ମଝିରେ ନଦୀ ଗର୍ଭରେ **'କାଳିଭଞ୍ଜଡ଼ିଆ ଦ୍ୱୀପ'** ଅବସ୍ଥିତ ।

କାଳିଭଞ୍ଜଡ଼ିହା ଦ୍ୱୀପାଞ୍ଚଳଟି ତତ୍କାଳୀନ କନିକା ରାଜାଙ୍କର ପାରିଧିସ୍ଥଳ ଭାବେ ନିଜର ସ୍ୱାତନ୍ତ୍ର୍ୟ ସୃଷ୍ଟି କରିଥିଲା । ଏହି ଜଙ୍ଗଲରେ ଥିବା ହେନ୍ତାଳ ବନ ପାଇଁ କାଳିଭଞ୍ଜଡ଼ିହା ସମଗ୍ର ଦେଶରେ ଏକ ନିଆରା ପରିଚୟ ସୃଷ୍ଟି କରିଛି । କାଳିଭଞ୍ଜଡ଼ିହା ହେନ୍ତାଳ ଜଙ୍ଗଲରେ ନାନା ପ୍ରକାର ହିଂସ୍ରଜନ୍ତୁଙ୍କ ସମେତ ନଦୀରେ ମାଳମାଳ କୁଂଭୀର ଦେଖା ଯାଆନ୍ତି । ଏଠାକାର ବଉଳା କୁଂଭୀର ପୃଥିବୀ ପ୍ରସିଦ୍ଧ । ବଉଳା କୁମ୍ଭୀର ଦେଖିବାକୁ ସମଗ୍ର ବିଶ୍ୱର ବିଭିନ୍ନ କୋଣଅନୁକୋଣରୁ ପର୍ଯ୍ୟଟକମାନେ କାଳିଭଞ୍ଜଡ଼ିହା ଓ ଏହାର ଆଖପାଖ ଅଞ୍ଚଳ ଭିତରକନିକା, ଧାମରା, ନଳିତାପାଟିଆ, ତାଳଚୁଆ ଆଦି ସ୍ଥାନକୁ ଆସିଥା'ନ୍ତି । ଭିତରକନିକା ଓ କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳରେ ପୃଥିବୀର ଭୟଙ୍କର ସରୀସୃପ ଓ ବିଷଧର ସର୍ପମାନେ ବାସ କରନ୍ତି । ଭାରତ ତଥା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସାପୁଆ କେଳାମାନେ ସାପ ଧରିବାକୁ ଏଠାକୁ ଆସିଥା'ନ୍ତି । ବିଶେଷକରି ଭୁବନେଶ୍ୱର ନିକଟସ୍ଥ ପଟିଆ-

**ଦଶାଶ୍ୱମେଧଘାଟରେ ଲେଖକ**





**ବୈତରଣୀ ଓ ଏହାର ଉପନଦୀ ଖଇରି-ଭଣ୍ଡନ ନଦୀର ମିଳନ ସ୍ଥଳ 'ଦୋ-ମୁହାଁଣୀ ଘାଟ'ରେ ଲେଖକ**

ପଦ୍ମକେଶରୀପୁର ଗ୍ରାମର ସାପୁଆ କେଳାମାନେ ଏହି କାଳିଭଞ୍ଜଡ଼ିଆ ଓ ଭିତରକନିକା ଜଙ୍ଗଲରୁ ବିଷଧର ସାପମାନ ଧରି ଓଡ଼ିଶାର ଗ୍ରାମାଞ୍ଚଳରେ ସାପ ଖେଳ ଦେଖାଇ ନିଜର ଜୀବିକା ନିର୍ବାହ କରିଥା'ନ୍ତି ।

ଯଦିଓ କାଳିଭଞ୍ଜଡ଼ିହା ଦ୍ୱୀପକୁ ଯିବାଆସିବା ପାଇଁ ବହୁ କଟକଣା ରହିଛି, ତେବେ ଜଙ୍ଗଲ ବିଭାଗର ଅନୁମତି ନେଇ ଏଠାକୁ ପର୍ଯ୍ୟଟକମାନେ ଆସିବାରେ କୌଣସି ସମସ୍ୟା ନାହିଁ । ଆମେ କାଳିଭଞ୍ଜଡ଼ିଆ ଜେଟିରେ ଓହ୍ଲାଇଲା ବେଳକୁ ସଞ୍ଜ ଉତରତ ହେଉଥିଲା । ଅପରାହ୍ନର କୋମଳ ସୁନେଲି କିରଣ ବୈତରଣୀ ପଠାରେ ବିଶ୍ରାମ ନେଉଥିବା ଏକ ବିଶାଳ ବଉଳା କୁଂଭୀର ପିଠି ଉପରେ ବିଛାଡ଼ି ହୋଇ ପଡ଼ିଥିଲା । ଏଡ଼େବଡ଼ କୁଂଭୀରଟିକୁ ଦେଖି ମୁଁ ଭୀଷଣ ସଂତ୍ରସ୍ତ ହୋଇଉଠିଥିଲି । ଲଞ୍ଚଚାଳକ ମୋତେ ସାବଧାନତାର ସହ ଓହ୍ଲାଇବାକୁ ସତର୍କ କରାଇ ଦେଇଥିଲେ । ଜଙ୍ଗଲ ମଧ୍ୟରେ ବହୁ ଭୟଙ୍କର ଜୀବଜନ୍ତୁ ରହିଥିବା କଥା ସୂଚାଇଦେଲେ ।

କାଳିଭଞ୍ଜଡ଼ିହା ଜେଟିରୁ ଏକ ଖୁବ୍ ପତଳା ପାଦଚଲା ରାସ୍ତା କ୍ରମଶଃ ଜଙ୍ଗଲ ମଧ୍ୟକୁ ଲମ୍ବି ଯାଇଥିଲା । ଏହି ରାସ୍ତାଟି କାଳିଭଞ୍ଜଡ଼ିହାର ଲୁଣା କର୍ଦମାକ୍ତ ସନ୍ତସନ୍ତିଆ ଜଙ୍ଗଲକୁ ଭେଦ କରି

କ୍ରମେ ଜଙ୍ଗଲ ମଧ୍ୟରେ ଥିବା କାଳିଭଞ୍ଜଡ଼ିଆ ଫରେଷ୍ଟ ବିଟ୍ ହାଉସ୍ ନିକଟରେ ଶେଷ ହୋଇଥିଲା । ସୂର୍ଯ୍ୟ ଆକାଶରେ ସଂପୂର୍ଣ୍ଣ ଉପସ୍ଥିତ ଥିଲେ ମଧ୍ୟ ଏ ଜଙ୍ଗଲ ମଧ୍ୟକୁ ତାଙ୍କର କିରଣ ପହଞ୍ଚିବାରେ ସକ୍ଷମ ହୋଇ ପାରୁ ନଥିଲା । ଫଳରେ ଜଙ୍ଗଲଟି ଥିଲା ପୂରା ଅନ୍ଧାରୁଆ । ରାସ୍ତାର ଉଭୟ ପାର୍ଶ୍ୱରେ ଲୁଣା ଜଙ୍ଗଲ ଓ କାଦୁଅ । ଜଙ୍ଗଲ ମଧ୍ୟରେ କୁଂଭୀର, ଅଜଗର, ବାଘ, ହେଟା ଓ ଅନ୍ୟାନ୍ୟ ବିଷାକ୍ତ ସାପର ଭୟ ଥିବା କଥା କାଳିଭଞ୍ଜଡ଼ିହା ଜେଟିରେ ଓହ୍ଲାଇବା ମାତ୍ରେ ସୂଚନା ଫଳକରୁ ଜାଣିପାରିଥିଲୁ । ଏ ଅଞ୍ଚଳ ଏକ ନିଷିଦ୍ଧ ଇଲାକା ହୋଇଥିବାରୁ ଆମେ ରାଜନଗର ଫରେଷ୍ଟ ଡିଭିଜନ ଅଫିସରୁ ଅନୁମତି ନେଇ ସଂପୂର୍ଣ୍ଣ ଭାବେ ପ୍ରସ୍ତୁତି ହୋଇ ଆସିଥିଲୁ । ଜଙ୍ଗଲ ମଧ୍ୟରେ ଥିବା ପାଣି ନାଳରେ ସ୍ଥାନେସ୍ଥାନେ କୁଂଭୀର ଶୋଇଥିବାର ଦୃଶ୍ୟ ହେଉଥାଏ । ଏହା ସାଙ୍ଗକୁ ପାଣି ଓଧ, ଗୋଧି, ବିଲୁଆ, ହରିଣ ଭଳି ଜୀବଜନ୍ତୁଙ୍କୁ ପ୍ରତ୍ୟେକ୍ଷ ଭାବେ ଦେଖିବା ପରେ ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠୁଥାଏ । ମନରେ ଆତଙ୍କ ଓ ଶିହରଣ ମିଶା ଏକ ପ୍ରସାରିତ ଅନୁଭବ ।

କାଳିଭଞ୍ଜଡ଼ିହା ଜେଟିରୁ ପାଦଚଲା ରାସ୍ତାରେ ଗୋଟିଏ କିଲୋମିଟର ଜଙ୍ଗଲିଆ ପଥ ଚାଲିଚାଲି ଯିବା ପରେ ଆମେ ଫରେଷ୍ଟ ବିଟ୍ ହାଉସ୍‌ରେ ପହଞ୍ଚିଲୁ । ବିଟ୍ ହାଉସ୍‌ରେ ଫରେଷ୍ଟ ଓ୍ୱାଚ୍‌ମ୍ୟାନ୍



କେନ୍ଦ୍ରାପଡ଼ା ଜିଲ୍ଲା ରାଜନଗର ବ୍ଲକ୍ ଅନ୍ତର୍ଗତ ନଳିତାପାଟିଆ ଜେଟିରେ ଲେଖକ



**କେନ୍ଦ୍ରାପଡ଼ା ଜିଲ୍ଲା ରାଜନଗର ବ୍ଲକ୍ ଅନ୍ତର୍ଗତ ନଳିତାପାଟିଆ ଜେଟିରେ ଲେଖକ**

ରମାକାନ୍ତ ବେହେରା ଉପସ୍ଥିତ ଥା'ନ୍ତି । ତାଙ୍କ ସହିତ କାଳିଭଞ୍ଜଡ଼ିହା ଓ ଏଠାକାର ହେନ୍ତାଳ ଜଙ୍ଗଲ ବାବଦରେ କିଛି କଥାବାର୍ତା ହେବା ପରେ ଆମେ ଫେରି ଆସିଥିଲୁ ତାଳଚୁଆ । ତାଳଚୁଆରୁ ପଞ୍ଚାମୁଣ୍ଡାଇ ।

ବାସ୍ତବରେ ଏହି ଦୁଇ ଦିନିଆ ନଦୀ ଭ୍ରମଣ ମୋ' ପାଇଁ ଏକ ସ୍ମରଣୀୟ ଯାତ୍ରା ଓ ଅଭୁଲା ସ୍ମୃତି ହୋଇ ରହିବ । କେବଳ ଏହି ଦୁଇଦିନିଆ ଜଳଯାତ୍ରାର ଅନୁଭୂତି ନୁହେଁ, ବରଂ ଏହା ପୂର୍ବରୁ ଓ ପରେ ଅନେକବାର ବୈତରଣୀ ନଦୀରେ ନୌକା ବିହାର କରିବାର ସୁଯୋଗ ମିଳିଛି । କେନ୍ଦୁଝର ଜିଲ୍ଲା ଚଂପୁଆ ବ୍ଲକ୍‌ର ଦୋ-ମୁହାଁଣୀ ଘାଟ, ସ୍ୱାମ୍‌ପାଟଣା ଘାଟ, ରାଜନଗରର ଶୈବ୍ୟାକାବେରୀ ଘାଟ, ଉଦୟପୁର ଘାଟ, ଆନନ୍ଦପୁର-ଘସିପୁରା ଘାଟ, ହାବଳେଶ୍ୱର ଘାଟ, ଯାଜପୁର ସହର ନିକଟସ୍ଥ ସିଦ୍ଧେଶ୍ୱର ଘାଟ, ଦଶରଥପୁରର କଟିକଟା ଘାଟ, ଦତ୍ତପୁର ଘାଟ, ଚାନ୍ଦବାଲିର ତିନିତର ଘାଟ, ଆଖଣ୍ଡଳମଣି ଘାଟ, ଚୌଧୁରୀଘାଟ ଆଦିରେ ନୌକାବିହାର ଓ ନଦୀଯାତ୍ରାର ସ୍ମୃତି ମୋର ସବୁଦିନ ପାଇଁ ସ୍ମରଣୀୟ ହୋଇରହିବ ।

ଗୋନାସିକାଠାରୁ ବାହାରିଥିବା ଏକ ପତଳା ସ୍ରୋତ ଯେ, ଚାନ୍ଦବାଲି, ନଳିତାପାଟିଆ, ଧାମରା ଓ

ତାଳଚୁଆ ନିକଟରେ ଏଭଳି ବିରାଟ ରୂପ ଧାରଣ କରିପାରେ ସେହିସବୁ ଦିନମାନଙ୍କରେ ବୁଲିବା ଅବସରରେ ମୋର ଅନୁଭବ ହୋଇଥିଲା । ଏସବୁ ସ୍ଥାନରେ ବୈତରଣୀର ବିଶାଳ ରୂପକୁ ଦେଖି ଭଗବାନ ବିଷ୍ଣୁଙ୍କ 'ବିଶ୍ୱରୂପ ଦର୍ଶନ' ଭଳି ଅନୁଭବ ହୋଇଥିଲା ।

ମୋ'ର କେନ୍ଦୁଝର ରହଣୀ କାଳ (ମୁଁ କେନ୍ଦୁଝର ଜିଲ୍ଲାରେ ଦୈନିକ **'ସମ୍ବାଦ'**ର ବ୍ୟୁରୋ ମୁଖ୍ୟ ଭାବେ ଚାରିବର୍ଷ କାର୍ଯ୍ୟ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲି) ମଧ୍ୟରେ ଦୀର୍ଘ ଚାରିବର୍ଷ ଧରି ଅଶାନ୍ତ ଗ୍ରହଟିଏ ଭଳି କେନ୍ଦୁଝର, ମୟୂରଭଞ୍ଜ, ଭଦ୍ରକ, ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀର ସନ୍ଧାନରେ ବୁଲିବୁଲି ନୟାନ୍ତ ହୋଇଛି । ବୈତରଣୀକୁ ଖୋଜିଖୋଜି କେତେବେଳେ ଚଂପୁଆରେ ତ କେତେବେଳେ ଉଦୟପୁର, ପୁଣି କେତେବେଳେ କେଶରୀକୁଣ୍ଡ ତ କେତେବେଳେ ଭୀମକୁଣ୍ଡରେ ହାଜର ହୋଇଯାଏ । ପୁଣି କେତେବେଳେ ଯାଜପୁରର ଦଶାଶ୍ୱମେଧ ଘାଟରେ ତ କେଳେବେଳେ ଷୋଳମପୁର ବଲ୍ଲଭୀଘାଟରେ ଏବଂ ଚାନ୍ଦବାଲିରେ ମୁଁ ନିଜକୁ ଆବିଷ୍କାର କରିଥାଏ । ଆଉ କେତେବେଳେ ଧାମରା, ତାଳଚୁଆ, ନଳିତାପାଟିଆରେ ବୈତରଣୀର ମୋହିନୀ ରୂପରେ ବିମୁଗ୍ଧ ହୋଇ ଉଠୁଥାଏ ।

ପରବର୍ତ୍ତୀ ସମୟରେ ମୋର କେନ୍ଦୁଝର ବ୍ୟୁରୋ ଅଫିସରୁ ଭୁବନେଶ୍ୱର ମୁଖ୍ୟ କାର୍ଯ୍ୟାଳୟକୁ



**କେନ୍ଦୁଝର ଜିଲ୍ଲା ସ୍ୱାମ୍‌ପାଟଣା ବୈତରଣୀ ପୋଲ ଉପରେ ଲେଖକ**



**ଭଦ୍ରକ ଜିଲ୍ଲା ଷୋଳମପୁର ସଛେଶ୍ୱରୀ ମନ୍ଦିର ସାମ୍ନାରେ ଲେଖକ**

ବଦଳି ହୋଇଗଲା । ମାତ୍ର ବୈତରଣୀ ଖୋଜିବାର ନିଶା ମୋ' ମୁଣ୍ଡରୁ ଖସି ନଥିଲା । ପୁଣି ପାଗଳଙ୍କ ଭଳି ମୁଁ ବୁଲିବା ଆରଂଭ କରିଥିଲି ବିଶେଷକରି ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାରେ । ଭୁବନେଶ୍ୱରରେ କାମ କରିବା ଅବସରରେ ମୋତେ ଭଦ୍ରକ ଓ ମୋ' ନିଜ ଜିଲ୍ଲା କେନ୍ଦ୍ରାପଡ଼ାରେ ବୈତରଣୀକୁ ଖୋଜିବାର ସୁଯୋଗ ମିଳିଥିଲା । ଏହିସବୁ ସମୟ ଓ ଅନୁଭୂତିକୁ ପାଥେୟ କରି ବୈତରଣୀର ନିକଟତର ହେବାର ସୌଭାଗ୍ୟ ଲାଭ କରିପାରିଛି ।

କିଛିଲୋକ ବୈତରଣୀକୁ **'ବାଦେଇ ନଈ'** ବୋଲି କହିଥା'ନ୍ତି । ଏହି ନଈଟି ସବୁବେଳେ ଦୁଇ ପକ୍ଷଙ୍କୁ ଅଲଗା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଓଡ଼ିଶା ଓ ଝାଡ଼ଖଣ୍ଡ ରାଜ୍ୟକୁ ଅଲଗା କରିବାରେ ବୈତରଣୀ ନଦୀ ଯେମିତି ଭୂମିକା ତୁଲେଇଛି; ସେହିଭଳି ରାଜ୍ୟ ମଧ୍ୟରେ ଜିଲ୍ଲା-ଜିଲ୍ଲାଗୁଡିକୁ ଅଲଗା କରିବାରେ ମଧ୍ୟ ସଫଳ ହୋଇଛି । ମୟୂରଭଞ୍ଜ-କେନ୍ଦୁଝର, କେନ୍ଦୁଝର-ଭଦ୍ରକ, ଯାଜପୁର-ଭଦ୍ରକ ଏବଂ ଭଦ୍ରକ-କେନ୍ଦ୍ରାପଡ଼ା ଭଳି ଜିଲ୍ଲାକୁ ବିଭାଜନ କରିବାରେ ବୈତରଣୀ ମୁଖ୍ୟ ଭୂମିକା ଗ୍ରହଣ କରିଛି । **କିଂତୁ, ମୋ' ମତରେ ଏହା ବିଭାଜନ ନୁହେଁ ବରଂ ସମନ୍ୱୟ ଓ ସୌହାର୍ଦ୍ଦ୍ୟର ଏକ ଦୃଢ଼ ସୀମାରେଖା । ବୈତରଣୀ ଏମାନଙ୍କ ମଧ୍ୟରେ ସମନ୍ୱୟର**

**ଏକ ସୀମାରେଖା ଟାଣିଛି** ମାତ୍ର । ଏହା ଫଳରେ ରାଜ୍ୟ ରାଜ୍ୟ ଓ ଜିଲ୍ଲା ଜିଲ୍ଲା ମଧ୍ୟରେ ଏକ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବଜାୟ ରହିପାରିଛି ।

ବୈତରଣୀ କେନ୍ଦୁଝର ଜିଲ୍ଲାର ଗୋନାସିକା ପାହାଡ଼ରୁ ବାହାରି କେନ୍ଦୁଝର, ମୟୁରଭଞ୍ଜ, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ଦୀର୍ଘ ୩୬୫ କିଲୋମିଟର ପଥ ଅତିକ୍ରମ କରିବା ପରେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ ଅନ୍ତର୍ଗତ ତାଳଚୁଆ ଓ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଅନ୍ତର୍ଗତ ଧାମରା ମୁହାଣରେ ବଙ୍ଗୋପସାଗରରେ ମିଳିତ ହୋଇଛି ।

ବୈତରଣୀ ନଦୀଟି ଓଡ଼ିଶା ଓ ଝାଡ଼ଖଣ୍ଡ ଅଞ୍ଚଳର ମୋଟ ୬୫ଟି ଉପନଦୀର ଜଳକୁ ନେଇ ପୁଷ୍ଟ ହୋଇପାରିଛି । ଆହୁରି ମଧ୍ୟ, ବୈତରଣୀ ନଦୀ ଅବବାହିକା ଓଡ଼ିଶାର ୪୨ଟି ବ୍ଲକ୍ ଅଞ୍ଚଳକୁ ନେଇ ଗଠିତ । ସମଗ୍ର ଓଡ଼ିଶାରେ ବୈତରଣୀ ନଦୀର ମୋଟ 'କ୍ୟାଚ୍‌ମେଣ୍ଟ ଏରିଆ' (ଅବବାହିକା ଅଞ୍ଚଳ) ୧୨,୭୯୦ ବର୍ଗ କିଲୋମିଟର । ବୈତରଣୀ ନଦୀର ସିଂହଭାଗ ଓଡ଼ିଶାରେ ବିଶେଷକରି କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ହେଉଥିବାବେଳେ ଖୁବ୍ କମ୍ ଅଂଶ ଝାଡ଼ଖଣ୍ଡରେ ପ୍ରବାହିତ ହୋଇଛି ।

ସମଗ୍ର ଭାରତବର୍ଷରେ ଏକମାତ୍ର ନଦୀ ବୈତରଣୀ, ଯାହାକୁ **'ପୁଣ୍ୟତୋୟା'** ବୋଲି



ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ସ୍ଥାନୀୟ ଯୁବକଙ୍କ ସହ ଲେଖକ



**ବୈତରଣୀ ଓ ଉପନଦୀ 'ଦେଓ'ର ମିଳନସ୍ଥଳ, 'ତିନିଧାରିଆ'ରେ ଲେଖକ**

କୁହାଯାଇଥାଏ । ପବିତ୍ର ବୈତରଣୀ ନଦୀଟି ଧାର୍ମିକ ଓ ଐତିହାସିକ ଗୁରୁତ୍ୱ ବହନ କରୁଥିବା ଦେଶର ଅନ୍ୟତମ ପ୍ରମୁଖ ନଦୀ ଭାବେ ଜଣାଶୁଣା । ଗୋନାସିକାରୁ ଆରଡ଼ି ଯାଏ ବୈତରଣୀ ନଦୀ କୂଳେକୂଳେ ମୋଟ ୧୦୮ଟି ଶିବ ମନ୍ଦିର ପ୍ରତିଷ୍ଠା ଲାଭ ହୋଇପାରିଛି । ଗୋନାସିକାରେ ବାବା ବ୍ରହ୍ମେଶ୍ୱରଙ୍କଠାରୁ ଆରଂଭ କରି ଆରଡ଼ିର ଆଖଣ୍ଡଳମଣିଙ୍କ ପର୍ଯ୍ୟନ୍ତ ବୈତରଣୀ କୂଳେକୂଳେ ବହୁ ଶୈବପୀଠ ଏହାର ପବିତ୍ରତାର ପ୍ରମାଣ ଦେଇଥାଏ । ଏହାବ୍ୟତୀତ ବୈତରଣୀର କୂଳେକୂଳେ ସହସ୍ରାଧିକ ସଂଖ୍ୟାରେ ମନ୍ଦିର, ଧାର୍ମିକ ପୀଠ ଆଦି ରହିଛି । ବୈତରଣୀ ନଦୀ ଅବବାହିକାରେ ରାଜ୍ୟର ପ୍ରମୁଖ ପ୍ରାଚୀନ ଶକ୍ତିପୀଠମାନ ଅବସ୍ଥିତ । କେନ୍ଦୁଝର ଜିଲ୍ଲାର ଘଟଗାଁ ତାରିଣୀଙ୍କଠାରୁ ଆରମ୍ଭ କରି ଯାଜପୁର ଜିଲ୍ଲାର ମା' ବିରଜା, ସପ୍ତମାତୃକା, ଭଦ୍ରକ ଜିଲ୍ଲାର ମା' ଦପାନାୟିକା, ମଙ୍ଗଳା, ଧାମରାଇ ଏବଂ କେନ୍ଦ୍ରାପଡ଼ା ଜିଲ୍ଲା ସାତଭାୟାର ପଞ୍ଚୁବରାହୀଙ୍କ ପର୍ଯ୍ୟନ୍ତ ଅନେକ ଶକ୍ତି ପୀଠ ବୈତରଣୀ ନଦୀ କୂଳରେ ପ୍ରତିଷ୍ଠାଲାଭ କରିପାରିଛି । ସେହିଭଳି ଓଡ଼ିଶାରେ ବୌଦ୍ଧ ଓ ଜୈନ ଧର୍ମର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ବୈତରଣୀ ନଦୀ ଅବବାହିକା ଅଞ୍ଚଳ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି ।

କେନ୍ଦୁଝର ଜିଲ୍ଲାର ଚଂପୁଆରୁ ମିଳିଥିବା ପ୍ରାଚୀନ ଶିଳାଖଣ୍ଡଠାରୁ ଆରଂଭ କରି ବୈତରଣୀ ନଦୀ ଅବବାହିକାର ରାମ୍ଭଲା, ସ୍ୱାମ୍ପାଟଣା, ଜଗନ୍ନାଥପୁର, ଅସନପାଟ, ଧଳେଇପାଟ, ସିତାବିଞ୍ଜି, ସନ୍ଧେଇଭଞ୍ଜ, ଲକ୍ଷ୍ମୀପାଦ ଆଦି ସ୍ଥାନରେ ପ୍ରାଚୀନ ବୌଦ୍ଧକୀର୍ତ୍ତି ଥିବାର ଅନେକ ପ୍ରମାଣ ମିଳେ । ସେହିଭଳି

ଆନନ୍ଦପୁର ଉପଖଣ୍ଡ ଅଞ୍ଚଳରୁ ମିଳିଥିବା କିଛି ଅବଶେଷ ଷଷ୍ଠ ଓ ସପ୍ତମ ଶତାବ୍ଦୀର ଜୈନ ଧର୍ମ ଓ ସଂସ୍କୃତିର ପ୍ରମାଣ ବହନ କରିଥାଏ । ଆନନ୍ଦପୁର ଉପଖଣ୍ଡର ଚକ୍ରତୀର୍ଥ, ପୋତାସିଙ୍ଗିଡ଼ି, ବୈଦାଖିଆ (ଗଡ଼ଚଣ୍ଡୀ), ଫକୀରପୁରର ବାଲୁଙ୍କେଶ୍ୱର ଆଦି ଅଞ୍ଚଳରେ ବୌଦ୍ଧ ଓ ଜୈନ ଧର୍ମର ସ୍ମୃତି ବହନ କରୁଥିବା ଅନେକ ପ୍ରାଚୀନ ଶିଳାଖଣ୍ଡ ଓ ବୌଦ୍ଧ, ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଦେଓଗାଁର କୁଶଳେଶ୍ୱର ମନ୍ଦିରରେ ଥିବା ଅବଲୋକିତେଶ୍ୱର ମୂର୍ତ୍ତି ସେଠାରେ ବୌଦ୍ଧ ଧର୍ମ ଓ ସଂସ୍କୃତିର ପ୍ରମାଣ ବହନ କରିଥାଏ । କେନ୍ଦୁଝର ଜିଲ୍ଲାର ପୋତାସିଙ୍ଗିଡ଼ି ଓ ଆଖପାଖ ଅଞ୍ଚଳରୁ ସଂଗୃହୀତ ବହୁ ପୁରାତନ ଜୈନ ମୂର୍ତ୍ତିକୁ ଏବେ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହିସବୁ ଅଞ୍ଚଳକୁ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅଧିକ ଖନନ କରାଗଲେ ବୈତରଣୀ ନଦୀ ଅବବାହିକାର ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା ସଂପର୍କରେ ବହୁ ତଥ୍ୟ ଉନ୍ମୋଚନ ହୋଇପାରିବ ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତ ବଉଳା ପର୍ବତମାଳା ପ୍ରାଚୀନ କାଳରେ ଏକ ଜୈନକ୍ଷେତ୍ର ଥିବାର ଅନୁମାନ କରାଯାଏ । ଏହି ପର୍ବତରେ ଅନେକ ଜୈନ ମନ୍ଦିର ଥିଲା ଏବଂ ଏଠାରେ ଜୈନ ସନ୍ଥମାନେ ଜୈନ ଧର୍ମର ପ୍ରଚାର ଓ ପ୍ରସାର କରିଥିଲେ ।



**ଯାଜପୁର ଜିଲ୍ଲା ଅନ୍ତର୍ଗତ ପଙ୍କି - ବୈତରଣୀ ଘାଟରେ ଲେଖକ**



**ସାତଭାୟାରେ ଲେଖକ**

ଏହାଛଡ଼ା ଆଖପାଖ ଅଞ୍ଚଳରେ ବହୁ ସଂଖ୍ୟାରେ ଜୈନ ଓ ଯକ୍ଷ ମୂର୍ତ୍ତିକୁ ଏବେ ମଧ୍ୟ ଲୋକମାନେ ଗ୍ରାମଦେବୀ ଭାବେ ପୂଜା କରିଆସୁଛନ୍ତି । କାଠକଟାଠାରେ ପୂଜିତ ବଉଳାଗୁଣି ଗ୍ରାମଦେବୀ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଆନନ୍ଦପୁର ସହରର ଉତ୍ତର-ପୂର୍ବରେ ଅବସ୍ଥିତ ପୋତାସିଙ୍ଗିଡ଼ି ଗ୍ରାମରେ ବହୁ ଜୈନ ତୀର୍ଥଙ୍କର ମୂର୍ତ୍ତି ଆବିଷ୍କୃତ ହୋଇଛି ଯାହାକି ଅଷ୍ଟମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ଚକ୍ରତୀର୍ଥ ଓ ଏହାର ଆଖପାଖ ଅଞ୍ଚଳରେ ଏବେ ମଧ୍ୟ ଅନେକ କଳାକୃତିର ଭଗ୍ନାବଶେଷ ଏଣେତେଣେ ବିକ୍ଷିପ୍ତ ଭାବେ ପଡି ରହିଥିବାର ଦେଖିବାକୁ ମିଳେ । ଏଠାରୁ ଆବିଷ୍କୃତ ୨ ଫୁଟ୍ ୬ ଇଞ୍ଚ ଉଚ୍ଚତାର ପଦ୍ମ ଉପରେ ଯୋଗାସନରେ ଉପବିଷ୍ଟ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ରହିଛି । ରାମଚଣ୍ଡୀ ମନ୍ଦିରରେ ପୂଜା ପାଉଥିବା ହିନ୍ଦୁ ଦେବୀଙ୍କ ପାର୍ଶ୍ୱରେ ଅନେକ ଜୈନ ଦେବଦେବୀଙ୍କ ମୂର୍ତ୍ତି ମଧ୍ୟ ରହିଛି । ଆନନ୍ଦପୁର ଉପଖଣ୍ଡର ଫକୀରପୁର, ମୁଗୁପୁର, ବୈଦାଖିଆ, ଜମ୍ବିରା, ଅଣା, ଠୁଣିଗାଁ, ବଂଚୋ, ପୋପୋ, ସାଇଁକୁଳ ଆଦି ଅଞ୍ଚଳରେ ଏବେ ବି ଜୈନମୂର୍ତ୍ତି ବିଭିନ୍ନ ହିନ୍ଦୁ ଦେବଦେବୀ ଭାବେ ପୂଜିତ ହେଉଥିବାର ଦେଖାଯାଏ ।

ସେହିଭଳି ବୈତରଣୀ ନଦୀ ନିମ୍ନ ଅବବାହିକାରେ ଅବସ୍ଥିତ ଭଦ୍ରକ ଜିଲ୍ଲାର ଷୋଳମ୍ପୁର

ବୌଦ୍ଧବିହାର, ଭାରଦାକଟକ, ମୁହାଁଣପଡ଼ା, ଖିଲାଟେଶ୍ୱର, ଖଡ଼ିପଦା, ଧାମ୍‌ନଗର (ଧର୍ମନଗର), ଏରଡ଼ା, କୁପାରି, ମୁକୁନ୍ଦପୁର, ବିଲେଶ୍ୱର, କୋଶଳେଶ୍ୱର, ବୋତଲଟାଙ୍ଗ, ତରାଙ୍ଗ, ସାଗରପୁର, କପିଳା, ଝାଡ଼ଙ୍ଗା ଆଦି ସ୍ଥାନ ପ୍ରସିଦ୍ଧ ବୌଦ୍ଧକ୍ଷେତ୍ର ଥିଲାବେଳେ ଯାଜପୁର ଜିଲ୍ଲାର ପ୍ରତି କୋଣଅନୁକୋଣରେ ରାଶିରାଶି ବୌଦ୍ଧ କୀର୍ତ୍ତିରାଜି ଦେଖିବାକୁ ମିଳିଥାଏ । ଯାଜପୁର ଜିଲ୍ଲାର ବିଶ୍ୱବିଖ୍ୟାତ ରତ୍ନଗିରି ବୌଦ୍ଧବିହାର, ଉଦୟଗିରି, ଲାଙ୍ଗୁଡ଼ି, କାଏମା,ରାଧାନଗର, ତୁବରୀ, ଚହଟା, ଲଣ୍ଡା, ପାରାଭାଡ଼ି, ବଜ୍ରଗିରି, କୋଲଣଗିରି, ସିଂହପୁର, ଔରଙ୍ଗାବାଦ ଭଳି ପ୍ରାଚୀନ ବୌଦ୍ଧକ୍ଷେତ୍ର ଏବଂ ଯାଜପୁର ସହରରେ ଦେଖାଯାଉଥିବା ପ୍ରାଚୀନ ବୌଦ୍ଧମୂର୍ତ୍ତି ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ବୌଦ୍ଧ ଧର୍ମର ବ୍ୟାପକତା ସଂପର୍କରେ ସୂଚନା ପ୍ରଦାନ କରିଥାଏ ।

## ଗୋଟିଏ ଗାଈ ନାକପୁଡ଼ାରୁ...

*(from a cow's nostril...)*

୨୦୧୧ ମସିହା, ଜାନୁୟାରୀ ୧ ତାରିଖର ଏକ ଖୁବ୍ ଶୀତୁଆ ସକାଳ । ତାହା ପୁଣି କେନ୍ଦୁଝର ଶୀତ । ସେଦିନ ଥାଏ ଇଂରାଜୀ ନୂଆବର୍ଷ । ସକାଳୁ ସକାଳୁ ଆମେ କେନ୍ଦୁଝର ସଦର ମହକୁମାରୁ ବାହାରି ୪୯ ନମ୍ବର ଜାତୀୟ ରାଜପଥ ଦେଇ ପହଞ୍ଚିଲୁ **ବାୟାପଣ୍ଡାଦର** ଛକରେ । ସେଠାରୁ ବାମକୁ ୯ କିଲୋମିଟର ଘଞ୍ଚ ଜଙ୍ଗଲିଆ ରାସ୍ତା ଅତିକ୍ରମ କରି ବୈତରଣୀର ଉତ୍ପତ୍ତିସ୍ଥଳ ନିକଟରେ


ଗୋନାସିକା: ଗାଈ ନାକପୁଡ଼ାରୁ...



**କେନ୍ଦୁଝର ଜିଲ୍ଲା ହାବଳେଶ୍ୱର ଘାଟରେ ଲେଖକ । ଏହାର ଅପରପାର୍ଶ୍ୱରେ ରହିଛି ଯାଜପୁର ଜିଲ୍ଲା କୋରେଇ ବ୍ଳକ୍‌ର ମୁକୁନ୍ଦପୁର ଘାଟ**

ପହଞ୍ଚିଲାବେଳକୁ ଖରା ସାମାନ୍ୟ ଟାଣ ହେଉଥାଏ । ଗୋନାସିକା ନିକଟସ୍ଥ **'ଋଷିଟାଙ୍ଗର'** ପାହାଡ଼ ଉପରେ ବୈତରଣୀର ପତଳା ଧାରରେ ପଲେ ଜୁଆଙ୍ଗ ପିଲା ଖେଳକୁଦ କରୁଥା'ନ୍ତି । ସେମାନଙ୍କ ଗହଣରେ ହଜିଯିବାକୁ ଯାଉଥିବାବେଳେ ମୁଁ 'ଋଷିଟାଙ୍ଗର' ପାହାଡ଼ ଚଟାଣରୁ ବୈତରଣୀର ପିଲାଦିନକୁ ଆବିଷ୍କାର କରିବାକୁ ସକ୍ଷମ ହୋଇଥିଲି । ସେଇଠି ସେଦିନ ବୈତରଣୀ ମାଆଙ୍କର ପିଲାଦିନକୁ ଦେଖି ମୁଁ ବିଭୋର ହୋଇ ଉଠିଥିଲି । କେବଳ ସେହିଦିନ ନୁହେଁ ବରଂ ଏହାପରେ ମୁଁ ବାର୍‌ବାର୍ ଗୋନାସିକା ଯାଇଛି ଓ ସେଠାକାର ଜୁଆଙ୍ଗଙ୍କ ଗହଣରେ ସମୟ କଟେଇଛି ।

ବୈତରଣୀ ଗୋନାସିକାରୁ ବାହାରି କିଛିବାଟ ପ୍ରବାହିତ ହେବାପରେ **ଗୁପ୍ତଗଙ୍ଗା** ନିକଟରେ ପାତାଳି ହୋଇଯାଇଛନ୍ତି । ଗୁପ୍ତଗଙ୍ଗାରୁ କିଛିବାଟ ପରେ ଶିଶୁବୈତରଣୀ 'ଋଷିଟାଙ୍ଗର' ନାମକ ପ୍ରସ୍ତରଶଯ୍ୟା ନିକଟରେ ସ୍ୱଳ୍ପ ସମୟ ପାଇଁ ଦେଖା ଦେଇଛନ୍ତି । 'ଋଷି ଟାଙ୍ଗର'ର ଏକ ଛୋଟଗର୍ତ୍ତରୁ ବୈତରଣୀ ନିର୍ଗତ ହୋଇ ଆଶ୍ଚର୍ଯ୍ୟଜନକ ଭାବେ ପୁନର୍ବାର ପାତାଳି ହୋଇଯାଇଛନ୍ତି । ଦୁଇଦୁଇ ଥର ପାତାଳି ହେବା ପରେ ବୈତରଣୀ 'ବ୍ରହ୍ମ କୁଣ୍ଡ'ଠାରେ ଆବିର୍ଭୁତ ହୋଇଛନ୍ତି ।

ବୈତରଣୀ ନଦୀଟି ଗୋରୁ ନାକପୁଡ଼ା ଆକାରର ଏକ ପଥରରୁ ଉତ୍ପତ୍ତିଲାଭ କରିଥିବାରୁ ଏ ସ୍ଥାନର ନାମ **'ଗୋନାସିକା'** ହୋଇଛି ବୋଲି ବିଶ୍ୱାସ କରାଯାଏ । 'ଗୋନାସିକା' ଶବ୍ଦଟିକୁ ବିଶ୍ଳେଷଣ

କଲେ ଏପରି ହୋଇଥାଏ- 'ଗୋ' ଅର୍ଥ ଗୋରୁ ଏବଂ 'ନାସିକା' ଅର୍ଥ 'ନାକ' । ଅର୍ଥାତ୍ ଗୋରୁ ନାକପୁଡ଼ାରୁ ବୈତରଣୀ ନିର୍ଗତ ହେଉଥିବାରୁ ଏହି ପବିତ୍ର ସ୍ଥାନର ନାମ ଗୋନାସିକା । ମା' ବୈତରଣୀ ହେଉଛନ୍ତି ପୁରାଣ ବର୍ଣ୍ଣିତ ଗୋନାସିକା ପର୍ବତ ରଜାଙ୍କ ଜ୍ୟେଷ୍ଠ କନ୍ୟା ଏବଂ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ; ତିନି ଲୋକରେ ପ୍ରବାହିତ ପବିତ୍ର ନଦୀ । ଏଣୁ ଗୋନାସିକାକୁ ବୈତରଣୀ କ୍ଷେତ୍ରର ଆରଂଭ ସ୍ଥଳ ବା 'ଆଦି ଧାମ' ବୋଲି କୁହାଯାଏ ।

ଗାଈର ନାକପୁଡ଼ାରୁ ଝରୁଥିବା ବୁନ୍ଦାବୁନ୍ଦା ଜଳର କ୍ଷୀଣ ସ୍ରୋତଟିଏ ବାଂଶପାଳ, ନୟାଗଡ଼, ଅସାଡ଼ୋଲା, ବାସୁଦେବପୁର, କାନୁପୁର, ଫଗୁଘାଟ, କେଶରୀକୁଣ୍ଡ, ଦୋ-ମୁହାଁଣୀ, ଡୁରୁମୁଙ୍ଗା, ସ୍ୱାମ୍‌ପାଟଣା, ଭୀମକୁଣ୍ଡ, ଆନନ୍ଦପୁର, ଆଖୁଆପଦା, ଯାଜପୁର, ଦଶରଥପୁର, ମଙ୍ଗଳପୁର, ତିନିତରଘାଟ, ଆଖଣ୍ଡଳମଣିଘାଟ, ଚାନ୍ଦବାଲି, କନିକା, ଧାମରା, ନଳିତାପାଟିଆ, ହ୍ୱିଲର୍ ଦ୍ୱୀପପୁଞ୍ଜ, କାଳିଭଞ୍ଜଡ଼ିହା ଦ୍ୱୀପାଞ୍ଚଳରେ ଏତେ ବିଶାଳ ରୂପ ଧାରଣ କରିପାରେ ତାହା ବିଶ୍ୱାସ କରିହୁଏନି ।

ପୁଣ୍ୟତୋୟା ବୈତରଣୀ 'ଓଡ଼ିଶାର ଗଙ୍ଗା' ଭାବେ ଲୋକମୁଖରେ ପରିଚିତ । ଗଙ୍ଗା ନଦୀଠାରୁ ବୈତରଣୀ ନଦୀ ବହୁ ପ୍ରାଚୀନ ବୋଲି ଗରୁଡ଼ ପୁରାଣରେ ବର୍ଣ୍ଣିତ ରହିଛି । ବୈତରଣୀ ମାତା ଗଙ୍ଗା ମାତାଙ୍କଠାରୁ ବାର ବ୍ରହ୍ମବର୍ଷ ଜ୍ୟେଷ୍ଠା । କୁହାଯାଏ ବୈତରଣୀ ନଦୀ ହିଁ ପ୍ରଥମେ ମର୍ତ୍ତ୍ୟଲୋକକୁ ଆଗମନ କରିଥିଲେ । ବୈତରଣୀ ମର୍ତ୍ତ୍ୟପୁରରେ ପ୍ରବାହିତ ହେବାର ବାର ବ୍ରହ୍ମବର୍ଷ ପରେ ଗଙ୍ଗା


ଦଶାଶ୍ୱମେଧ ଘାଟରେ ଲେଖକ



**କେନ୍ଦ୍ରାପଡ଼ା ଜିଲ୍ଲାର କାଳିଭଞ୍ଜଡ଼ିହା ଦ୍ୱୀପରେ ଲେଖକ**

ମର୍ତ୍ତ୍ୟଲୋକରେ ଆବିର୍ଭୂତ ହୋଇଥିଲେ । ଏଣୁ ମର୍ତ୍ତ୍ୟଲୋକରେ ବୈତରଣୀ ମାତାଙ୍କୁ ଗଙ୍ଗାମାତାଙ୍କଠାରୁ ଜ୍ୟେଷ୍ଠା ବୋଲି କୁହାଯାଏ । ଗଙ୍ଗାଙ୍କଠାରୁ ବୟସରେ ବଡ଼ ଏବଂ ଏହାର ପ୍ରାଚୀନତା କାରଣରୁ ଏହାକୁ **'ବୁଢା ବୈତରଣୀ'** ବୋଲି କୁହାଯାଏ ।

ପୃଥିବୀର ପ୍ରାଚୀନତମ ଜନଜାତି **ଜୁଆଙ୍ଗ**ମାନେ ବୈତରଣୀକୁ ନିଜର ଭଉଣୀ ବୋଲି ଦାବି କରନ୍ତି । ପର୍ବତ ରଜା ଗୋନାସିକାଙ୍କୁ ଜୁଆଙ୍ଗମାନେ ସେମାନଙ୍କ ପିତୃତୁଲ୍ୟ ମନେ କରନ୍ତି । ଅପରପକ୍ଷେ, ମା' ବୈତରଣୀ ହେଉଛନ୍ତି ପର୍ବତ ରଜା ଗୋନାସିକାଙ୍କ କନ୍ୟା । ଏଣୁ ସଂପର୍କରେ ଜୁଆଙ୍ଗ ଜନଜାତି ଗୋଷ୍ଠୀ ଓ ମା' ବୈତରଣୀ **ଭାଇ-ଭଉଣୀ** ବୋଲି ଜୁଆଙ୍ଗମାନେ ଦାବି କରନ୍ତି ।

ଗୋନାସିକାରୁ ଦକ୍ଷିଣକୁ ତଣ୍ଡିଯୋଡ଼ା ଓ ୪୯ ନମ୍ବର ଜାତୀୟ ରାଜପଥ ଅତିକ୍ରମ କରି ବୈତରଣୀ ବାଂଶପାଳ ବ୍ଲକ୍ ସଦର ମହକୁମାରେ ପ୍ରବେଶ କରିଛି । ବାଂଶପାଳ ନିକଟରେ ପହଞ୍ଚିଲାବେଳକୁ ବୈତରଣୀମାତାଙ୍କର ଶିଶୁ ଅବସ୍ଥାରୁ କିଶୋରୀକୁ ରୂପାନ୍ତରିତ ହୋଇଛି । ଏଠାରୁ କିଶୋରୀ ବୈତରଣୀ ଝୁଂପୁରା ବ୍ଲକର ନୟାଗଡ଼ ମୁକ୍ତେଶ୍ୱର ଶୈବ ପୀଠ ଦେଇ ଯୋଡ଼ା ବ୍ଲକ୍‌ରେ ପାଦ ଥାପିଛି । ଯୋଡ଼ା ବ୍ଲକ୍‌ର ବାଂଶପାଣି ନିକଟସ୍ଥ ଗୁରୁବେଡ଼ା ଦେଇ ଅସାଡ଼ୋଳା, ଐତିହାସିକ ଚମକପୁର ଦଣ୍ଡପାଟ ଏବଂ

ଛେଳିଆଡ଼େଗା ପୀଠ ଅତିକ୍ରମ କରି ବାସୁଦେବପୁର ନିକଟରେ ପହଞ୍ଚିଛି । ଏଠାରେ ସରକାର ଏକ ବିଶାଳ ଜଳଭଣ୍ଡାର (କାନୁପୁର ଡ୍ୟାମ୍) ନିର୍ମାଣ କରୁଛନ୍ତି । ବାସୁଦେବପୁରରୁ କିଛି ବାଟ ଆଗକୁ ଯାଇ ବୈତରଣୀ ମିରିଗଶିଙ୍ଗା ଶୈବପୀଠରେ ଅବତୀର୍ଣ୍ଣ ହୋଇଛି ।

ମିରିଗସିଙ୍ଗାରୁ ବାହାରି ବୈତରଣୀ ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡକୁ ଛୁଇଁଛି । ଏହାପରେ ବୈତରଣୀ କିଛି ବାଟ ଝାଡ଼ଖଣ୍ଡ ଏବଂ ଓଡ଼ିଶା ରାଜ୍ୟର ସୀମାନ୍ତ ପଥ ଅତିକ୍ରମ କରି ଉଭୟ ରାଜ୍ୟର ସୀମା ନିର୍ଦ୍ଧାରିକା ଭାବେ ଆଗକୁ ଆଗକୁ ମାଡ଼ି ଚାଲିଛି । କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡ ଏବଂ ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲାର ସୀମାରେ ବୈତରଣୀ ନଦୀ କୂଳରେ ପ୍ରସିଦ୍ଧ **ରାମତୀର୍ଥ** ପର୍ଯ୍ୟଟନସ୍ଥଳ ଅବସ୍ଥିତ । ଏଠାରେ ପ୍ରତିବର୍ଷ ମକର ମେଳା ଧୂମ୍‌ଧାମ୍‌ରେ ପାଳିତ ହୋଇଥାଏ । ରାମତୀର୍ଥରୁ କିଛି ବାଟ ଓଡ଼ିଶା-ଝାଡ଼ଖଣ୍ଡ ସୀମାନ୍ତ ପଥ ଦେଇ ଅତିକ୍ରମ କରିବା ପରେ ବୈତରଣୀ ପୁନର୍ବାର ଓଡ଼ିଶା ମାଟିକୁ ପ୍ରବେଶ କରିଛି । ବୈତରଣୀ ଚଂପୁଆ ଉପଖଣ୍ଡ ମଧ୍ୟକୁ ପ୍ରବେଶ କରି କେନ୍ଦୁଝର ଓ ମୟୁରଭଞ୍ଜ ଜିଲ୍ଲାର ସୀମା ନିର୍ଦ୍ଧାରଣ କରିଛି ।

ଝାଡ଼ଖଣ୍ଡର **ଜୟନ୍ତୀଗଡ଼** ଏବଂ ଓଡ଼ିଶାର ଚଂପୁଆ ସୀମା ଦେଇ ବୈତରଣୀ ଅତିକ୍ରମ କରୁଥିବାବେଳେ ସେପଟୁ ଝାଡ଼ଖଣ୍ଡରୁ ବହି ଆସିଥିବା **ଜଙ୍ଗିରା ନଦୀ** ଚଂପୁଆ ନିକଟରେ ବୈତରଣୀ



ରାଜ୍ୟ ସଂଗ୍ରହାଳୟରେ ସ୍ଥାପିତ ଖଡ଼ିପଦା (ଭାରଦ୍ୱାଜକଟକ)ରୁ ଆସିଥିବା ବୃହତ୍ତମ ବୁଦ୍ଧ ମୂର୍ତ୍ତିଙ୍କ ସହ ଲେଖକ



**ବୈତରଣୀର ପ୍ରମୁଖ ଉପନଦୀ କୁହାଯାଉଥିବା ମନ୍ଦେଇ ନଦୀର ଚୌଧୁରୀ ଘାଟ ପାର ହେଉଥିବାର ଏକ ବିରଳ ମୁହୂର୍ତ୍ତରେ ଲେଖକ**

ସହ ମିଶିଛି । ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରୁ ପ୍ରବାହିତ କଙ୍ଗିରା ନଦୀଟି ମୟୂରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଫଗୁ, ପଶ୍ଚିମ ସିଂହଭୂମି ଜିଲ୍ଲାର ଜଗନ୍ନାଥପୁର ବ୍ଲକ୍‌ର ଜୟନ୍ତୀଗଡ଼ ଏବଂ କେନ୍ଦୁଝର ଜିଲ୍ଲାର ଚଂପୁଆ ସୀମାରେ ବୈତରଣୀ ସହ ମିଳିତ ହୋଇଛି । ଏଠାରେ ଉଭୟ ନଦୀର ଏକ ପ୍ରଶସ୍ତ ମୁହାଁଣ ସୃଷ୍ଟି ହୋଇଛି । ଏହା **ଫଗୁ ଘାଟ** ନାମରେ ପରିଚିତ । କଙ୍ଗିରା ନଦୀଟି ବୈତରଣୀ ଗର୍ଭରେ ବିଲୀନ ହୋଇଯିବା ପରେ ଏହା ଅଧିକ ପୁଷ୍ଟ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସୀମା ଦେଇ ଆଗକୁ ଆଗକୁ ଗତି କରିଛି । ଫଗୁଘାଟରେ ଗୋଟିଏ ଶୀତୁଆ ଅପରାହ୍ନର ସ୍ମୃତି ମୋର ସବୁଦିନ ପାଇଁ ତାଜା ହୋଇ ରହିଥିବ ଯେଯାଏଁ ମୁଁ ବଞ୍ଚିଥିବି ।

୨୦୧୩ ମସିହା ଡିସେମ୍ବର ୮ ତାରିଖର ଏକ କୁହୁଡ଼ିଆ ମଧ୍ୟାହ୍ନ । ସେଦିନ ମୋ' ଜନ୍ମଦିନ । ଘନ କୁହୁଡ଼ିରେ ପୂରା ଆକାଶ ଆଚ୍ଛାଦିତ ହୋଇ ପଡ଼ିଥାଏ । ଚଂପୁଆର ସାମ୍ବାଦିକ ପରମାନନ୍ଦ ମହାନ୍ତଙ୍କୁ ସାଥୀରେ ଧରି ବାହାରି ପଡ଼ିଲି ଫଗୁଘାଟ ଅଭିମୁଖେ । କେନ୍ଦୁଝର ସଦର ମହକୁମାରୁ ବାହାରି ଚଂପୁଆରେ ପହଞ୍ଚିଲାବେଳକୁ ଦିନ ଏଗାରଟା ବାଜି ଯାଇଥାଏ । ଚଂପୁଆରେ ମୋତେ ପରମାନନ୍ଦ ବାବୁ ଅପେକ୍ଷା କରିଥା'ନ୍ତି । ମୁଁ ଚଂପୁଆରେ ପହଞ୍ଚିଲା ପରେ ଆମେ ପ୍ରଥମେ ଫଗୁଘାଟ

ଅଭିମୁଖେ ଯାତ୍ରା କଲୁ । ସେଠାରୁ ପୁଣି କେଶରୀକୁଣ୍ଡ, ରାମତୀର୍ଥ, ଜ୍ୟୋତିପୁର, ଦୋ-ମୁହାଁଣୀ ଘାଟ ଆଦି ଅନେକ ସ୍ଥାନ ବୁଲିଲୁ । ସେଦିନର ସେ ତୋଫାନୀ ବୈତରଣୀ ଯାତ୍ରାର ଅଭୁଲା ସ୍ମୃତି ମନରୁ କେବେ ବି ଲିଭିବ ନାହିଁ । ସେହିଭଳି ତା' ଦିନକ ପରେ ଅର୍ଥାତ୍ ୨୦୧୩ ମସିହା ଡିସେମ୍ବର ୯ ତାରିଖରେ ମୁଁ ସାଥୀ କରିଥିଲି ଝୁଂପୁରାର ସାମ୍ବାଦିକ ଭୀମସେନ୍ ମହାନ୍ତଙ୍କୁ । ଭୀମସେନ ବାବୁଙ୍କୁ ମୋ' ବାଇକ୍‌ରେ ବସେଇ ଆମେ ବାହାରିଥିଲୁ ବୈତରଣୀ ଅବବାହିକାର ଅନ୍ୟ ଦୁଇ ପ୍ରମୁଖ ଐତିହାସିକ ସ୍ଥାନ ଧଳେଇପାଟ ଓ ଅସନପାଟ । ତା' ପରଦିନ ଆମର ଯାତ୍ରା ଥିଲା ବୈତରଣୀ ଅବବାହିକାର ଧ୍ୱଂସପ୍ରାପ୍ତ ଐତିହାସିକ ନଗରୀ ଖିଚିଂ ଓ ବେଣୁସାଗର । ଡିସେମ୍ବର ୧୧ ତାରିଖରେ ଯୋଡ଼ା (ବାସୁଦେବପୁର)ର ସାମ୍ବାଦିକ ହୃଦାନନ୍ଦ ପାତ୍ରଙ୍କୁ ସାଥୀରେ ଧରି ବୁଲିଥିଲୁ ମିରିଗସିଙ୍ଗା, ଅସାଡ଼ୋଲା, ଚମକପୁର ଭଳି ବୈତରଣୀ ଉପତ୍ୟକାର ଆକର୍ଷଣୀୟ ଓ ମନଲୋଭା ସ୍ଥାନଗୁଡ଼ିକ । ଗୋଟିଏ ଦୀର୍ଘ ଯାତ୍ରା ପରେ ବେଶ୍ କିଛି ଦିନ ନିରବ ରହି ପୁଣି ସମୟ ସମୟରେ ବିଭିନ୍ନ ସ୍ଥାନ ବୁଲିଥିଲି ।

ମୋ'ର ଏହି **'ବୈତରଣୀ ଭ୍ରମଣ'** ଗୋଟିଏ ଦିନ କିମ୍ବା ଗୋଟିଏ ସପ୍ତାହ କିମ୍ବା ଗୋଟିଏ ମାସ କିମ୍ବା ଗୋଟିଏ ବର୍ଷ ପରିଶ୍ରମର ଫଳ ନୁହେଁ । ଦୀର୍ଘ ପାଞ୍ଚବର୍ଷ କାଳ କେନ୍ଦୁଝର, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ମଧ୍ୟରେ ବୈତରଣୀ କୂଳେକୂଳେ ବୁଲିବା ଅବସରରେ ମୁଁ ଅନେକ ବିରଳ ଅଭିଜ୍ଞତାର ଅଧିକାରୀ ହେବାର



ପ୍ରାଚୀନ ବନ୍ଦର ତଥା ଆଧୁନିକ ନଳିତାପାଟିଆ ଜେଟିରେ ଲେଖକ



**କେନ୍ଦୁଝର ଜିଲ୍ଲା ଉଦୟପୁର ଘାଟରେ ଲେଖକ**

ଗୌରବଲାଭ କରିପାରିଛି ।

ହଁ, ଫଗୁଘାଟ କଥା ପଡୁପଡୁ ସ୍ମୃତିର ଖିଅ ବେଶ୍ ଲମ୍ବିଗଲା । ଫଗୁ ଘାଟରୁ ବୈତରଣୀ ନଦୀ ପୁନର୍ବାର ଉତ୍ତର ମୁହାଁ ହୋଇ କେନ୍ଦୁଝର ଜିଲ୍ଲା ସଦର ମହକୁମା ଅଭିମୁଖେ ଯାତ୍ରା କରିଛି । ଫଗୁଘାଟ ଅତିକ୍ରମ କରିବା ପରେ ବୈତରଣୀ ନଦୀରେ **କେଶରୀକୁଣ୍ଡ, ରୁପା କୁଣ୍ଡ** ଭଳି ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ ରହିଛି । ଏହାପରେ ପଡ଼େ **'ଦୋ-ମୁହାଁଣି ଘାଟ'** । କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ପଦ୍ମପୁର ଓ ମୟୂରଭଞ୍ଜ ଜିଲ୍ଲାର ଶୁକ୍ରୁଳି ବ୍ଲକ୍ ଅନ୍ତର୍ଗତ ଆଦିପୁର ନିକଟରେ ବୈତରଣୀ ନଦୀ ସହିତ ମୟୂରଭଞ୍ଜର ଶିମିଳିପାଳରୁ ପ୍ରବାହିତ **ଖଇରିଭଣ୍ଡନ** ନଦୀ ମିଳିତ ହୋଇଛି । ଏହା ପ୍ରସିଦ୍ଧ 'ଦୋ-ମୁହାଁଣି ଘାଟ' ଭାବେ ପରିଚିତ ।

ବୈତରଣୀର ପ୍ରମୁଖ ଉପନଦୀ **ଖଇରି-ଭଣ୍ଡନ** ଉପତ୍ୟକାରେ ଗଢି ଉଠିଥିଲା ବୈତରଣୀ ଅବବାହିକାର ଅନ୍ୟ ଏକ ପୁରାତନ ନଗରୀ **ଖିଚିଂ** । ଏଠାରେ ପୌରାଣିକ ମହାଭାରତର **ବିରାଟ ଗଡ଼** ଓ **କିଚକଗଡ଼**ର ଅବଶେଷ ରହିଛି ବୋଲି କୁହାଯାଏ । ମାତ୍ର ଏହା ଭଞ୍ଜବଂଶୀଙ୍କ ପୁରାତନ ଗଡ଼ ବୋଲି ଐତିହାସିକ କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀ ଆକଳନ କରନ୍ତି । ତତ୍କାଳୀନ ମଣ୍ଡଳ ରାଜ୍ୟ **ଖିଜିଂ ମଣ୍ଡଳ** ବୈତରଣୀ ନଦୀ ଅବବାହିକାରେ ଗଢିଉଠିଥିଲା । ଏହି ଦୁଇଟି ଗଡ଼ର

ଭଗ୍ନାବଶେଷ ବର୍ତ୍ତମାନ ଆଧୁନିକ ମୟୂରଭଞ୍ଜର ଖିଚିଂଠାରେ ଅବସ୍ଥିତ । ଖିଚିଂ ହିଁ ତତ୍କାଳୀନ ଭଞ୍ଜ ରାଜବଂଶର ଶାସନ କେନ୍ଦ୍ର ପାଲଟିଥିଲା । ପରବର୍ତ୍ତୀ କାଳରେ ଭଞ୍ଜ ଶାସନ ଦୁଇ ପୃଥକ ରାଜ୍ୟରେ ବିଭକ୍ତ ହେଲା । କେନ୍ଦୁଝର ଓ ମୟୂରଭଞ୍ଜ ନାମରେ ଦୁଇଟି ନୂତନ ଭଞ୍ଜ ରାଜ୍ୟ ସୃଷ୍ଟି ହୋଇ **ଜ୍ୟୋତିପୁରଗଡ଼** ଓ **ଆଦିପୁରଗଡ଼** ରାଜଧାନୀଦ୍ୱୟ ବୈତରଣୀ ନଦୀ କୂଳରେ ଗଢି ଉଠିଲା ।

ଚଂପୁଆଠାରୁ ବୈତରଣୀ ଉଭୟ ମୟୂରଭଞ୍ଜ ଓ କେନ୍ଦୁଝରର ସୀମାରେ ପ୍ରବାହିତ ହୋଇ **ନନ୍ଦପୁରର କପିଳମୁନୀ ପୀଠ**, କେନ୍ଦୁଝରର ପ୍ରାଚୀନ ରାଜଧାନୀ **ଜ୍ୟୋତିପୁରଗଡ଼**, **ଫୁଲକଅଁଳେଇ** ଗ୍ରାମର **ଖଲିଚୌପତି ଘାଟ**, **ତୁରୁମୁଙ୍ଗା** ଦେଇ **ତିନିଧାରିଆ କ୍ଷେତ୍ର**ରେ ପ୍ରବେଶ କରିଛି । ଏହି ତିନିଧାରିଆ ସ୍ଥାନଟି କେନ୍ଦୁଝର ଓ ମୟୂରଭଞ୍ଜ ସୀମାନ୍ତ **ତୁରୁମୁଙ୍ଗା** ଓ **ଚଡ଼େଇଭୋଳ** ନିକଟରେ ଅବସ୍ଥିତ । ଏଠାରେ ବୈତରଣୀ ନଦୀ ସହିତ **ଦେଓ** ନଦୀ ମିଳିତ ହୋଇଛି । ତିନିଧାରିଆରୁ ଆଗକୁ ଯାଇ ବୈତରଣୀ ଐତିହାସିକ **ରାଜନଗର** ଦେଇ **ସ୍ୱାମ୍‌ପାଟଣା** ଛୁଇଁଛି । ରାଜନଗରଠାରେ ବୈତରଣୀ ନଦୀ କୂଳରେ କେନ୍ଦୁଝର ରାଜାଙ୍କର ପୁରୁଣା ରାଜମହଲ, ପ୍ରାଚୀନ ରଘୁନାଥଜିଉ ମନ୍ଦିର, ତନ୍ତ୍ର ଜଗନ୍ନାଥ ମନ୍ଦିର ଓ ଶୈବ୍ୟାକାବେରୀ




**ମୟୂରଭଞ୍ଜ ଜିଲ୍ଲା ଯଶୀପୁର ବ୍ଲକ୍‌ର ରାମତୀର୍ଥ (ଶିମିଳିପାଳ ଜାତୀୟ ଅଭୟାରଣ୍ୟ)ରେ ଲେଖକ**



**ଗୋହିରାଟିକିରି ଗାଁ ଶେଷମୁଣ୍ଡରେ ଥିବା ମୁକୁନ୍ଦ ଦେବଙ୍କ ପ୍ରତିମୂର୍ତ୍ତି ସହ ଲେଖକ**

ବୈତରଣୀ ଘାଟ ଅବସ୍ଥିତ । ଆଉ କିଛି ବାଟ ଆଗକୁ ଗଲେ ପଡ଼ିବ **ଉଦୟପୁର ଘାଟ** । ଉଦୟପୁର. କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାକୁ ସଂଯୋଗ କରୁଥିବା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରାଚୀନ ନଦୀଘାଟ ଅଟେ ।

ଉଦୟପୁର ଘାଟ ପରେ ବୈତରଣୀ ସ୍ୱାମ୍‌ପାଟଣା ଛୁଇଁଛି । ସ୍ୱାମ୍‌ପାଟଣାରେ ବୈତରଣୀ ନଦୀ କୂଳରେ ବର୍ତ୍ତମାନ ଏକ ଆକର୍ଷଣୀୟ ଶିବ ମନ୍ଦିର ନିର୍ମାଣ କରାଯାଇଥିବାରୁ ଏହି ପୀଠ ପ୍ରତି ପର୍ଯ୍ୟଟକଙ୍କ ଆକର୍ଷଣ ବଢ଼ିଛି । ଏହାପରେ ବୈତରଣୀ ଆଗକୁ ଯାଇ **ଭୀମକୁଣ୍ଡ**ଠାରୁ ସମତଳ ଭୂମିକୁ ପ୍ରବେଶ କରିଛି । ଭୀମକୁଣ୍ଡଟି ରାଜ୍ୟର ଏକ ଆକର୍ଷଣୀୟ ପର୍ଯ୍ୟଟନସ୍ଥଳୀ ଭାବେ ସୁନାମ ଅର୍ଜନ କରିପାରିଛି । ଏଠାରେ ଏକ ଜଳବିଦ୍ୟୁତ୍ ପ୍ରକଳ୍ପ ହେବା ନେଇ ସରକାରୀସ୍ତରରେ ଯୋଜନା ପ୍ରସ୍ତୁତ ହେଉଛି । ଭୀମକୁଣ୍ଡ ଛାଡ଼ି ବୈତରଣୀ ଆନନ୍ଦପୁର ଉପଖଣ୍ଡର ସମତଳ ଭୂମିରେ ପ୍ରବାହିତ ହୋଇଛି । **ବୀରଗୋବିନ୍ଦପୁର**ରେ ବୈତରଣୀ ନଦୀ କୂଳରେ ପ୍ରାଚୀନ ରଘୁନାଥଜିଉ ମନ୍ଦିର

ଓ ବ୍ରହ୍ମେଶ୍ୱର ଶିବ ମନ୍ଦିର ରହିଛି । କେନ୍ଦୁଝର ଜିଲ୍ଲାର ଏକ ଐତିହାସିକ ଗ୍ରାମ ଭାବେ ବୀରଗୋବିନ୍ଦପୁର ପରିଚିତ ।

ବୀରଗୋବିନ୍ଦପୁରର ରଘୁନାଥଜିଉଙ୍କୁ ଅତିକ୍ରମ କରି ବୈତରଣୀ **ଆନନ୍ଦପୁର** ସହର ଛୁଇଁଛି । ବୈତରଣୀ ନଦୀ କୂଳରେ ଆନନ୍ଦପୁର ଓ ଘସିପୁରା ବ୍ଲକ୍‌ର **ପତର ସଉରୁଣି ପୀଠ, ଘସିପୁରାର ଝାଡ଼େଶ୍ୱର ଶୈବ କ୍ଷେତ୍ର, ଫକୀରପୁରର ବାଲୁଙ୍କେଶ୍ୱର ଶିବ ମନ୍ଦିର, ଟୁଙ୍କୁଣାର କୁଣ୍ଡେଶ୍ୱର ଶୈବପୀଠ ଓ ଲକ୍ଷ୍ମୀ ନାରାୟଣ ମନ୍ଦିର, ଆନନ୍ଦପୁରର ଗୋପାଳଜିଉ ମନ୍ଦିର, ଦଧିବାମନଜିଉ ମନ୍ଦିର, ବଞ୍ଚୋର ଦଧିବାମନଜିଉ ମନ୍ଦିର, କୁଶଳେଶ୍ୱର ଶୈବ କ୍ଷେତ୍ର** ଆଦି ଅନେକ ଐତିହାସିକ ଓ ପ୍ରାଚୀନ ପୀଠ ବୈତରଣୀ ନଦୀ ଉପତ୍ୟକାର ଗୌରବ ବହନ କରିଥାଏ । ବଞ୍ଚୋ ପରେ ବୈତରଣୀ ମୁଗୁପୁର, ଆମ୍ବୋ, ଗିରିଗାଁ, ଶମଣା, ଜଂଭିରା, ଆଗିରିଆ ଦେଇ **ହାବଳେଶ୍ୱର** ଛୁଇଁଛି । ହାବଳେଶ୍ୱରଟି କେନ୍ଦୁଝର ଜିଲ୍ଲାର ବୈତରଣୀ ନଦୀ କୂଳର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ଏଠାରେ ନଦୀ ଶଯ୍ୟା ମଧ୍ୟରେ ମହାଦେବ ହାବଳେଶ୍ୱରଙ୍କ ଏକ ପ୍ରାଚୀନ ମନ୍ଦିର ରହିଛି ।

ହାବଳେଶ୍ୱର ଘାଟରେ ବୈତରଣୀ କେନ୍ଦୁଝର, ଭଦ୍ରକ ଓ ଯାଜପୁର ଜିଲ୍ଲାର ସୀମା ନିର୍ଦ୍ଧାରଣ କରିଥାଏ । ହାବଳେଶ୍ୱରରୁ କିଛି ବାଟ ପ୍ରବାହିତ ହେଲାପରେ ବୈତରଣୀ କେନ୍ଦୁଝର ଜିଲ୍ଲାର ଶେଷ ସୀମା **ନୂଆଗାଁ** ଛୁଇଁଛି । ନୂଆଗାଁ ପରେ ବୈତରଣୀ ଭଦ୍ରକ ଜିଲ୍ଲାରେ ପ୍ରବେଶ କରିଛି ।



**ବୈତରଣୀ-ଶାଳନ୍ଦୀ ନଦୀର ମିଳନସ୍ଥଳ; 'ତିନିତର ଘାଟ'ରେ ନଦୀ ପାରର ଅନୁଭୂତି**

୨୦୧୩ ମସିହା ସେପ୍‌ଟେମ୍ବର ମାସର ୭ ଓ ୮ ତାରିଖ । ବର୍ଷାଭିଜା ଏହି ଦୁଇ ଦିନିଆ **'ବୈତରଣୀ ଯାତ୍ରା'**ରେ ଆମେ ଭଦ୍ରକ ଜିଲ୍ଲାର ଆଖୁଆପଦାରୁ ଆରମ୍ଭ କରି ଯାଜପୁର ସହରର ବୈତରଣୀ କୂଳରେ ଥିବା ଯାବତୀୟ ଦର୍ଶନୀୟ ସ୍ଥାନ, ଦଶରଥପୁର, କୟାଁଗୋଲା, ଆରଡ଼ି ଆଖଣ୍ଡଳମଣି, ତିନିତର ଘାଟ ଓ ଚାନ୍ଦବାଲି ଆଦି ବୁଲିଥିଲୁ । ଏହି ବୁଲା ଫଳରେ ଯାଜପୁର ଜିଲ୍ଲାରେ ବୈତରଣୀ ନଦୀର ଗତିପଥ ସଂପର୍କରେ ଏକ ପ୍ରାଞ୍ଜଳ ଜ୍ଞାନ ହାସଲ ହୋଇଥିଲା । ଏହି ଦୁଇ ଦିନକାଳ ମୋ' ସାଥୀରେ ସାମ୍ବାଦିକ ବନ୍ଧୁ ପ୍ରଦୀପ ମହାନ୍ତି ଓ ଚାନ୍ଦବାଲିର ବନ୍ଧୁ ସବ୍ୟସାଚୀ ମହାନ୍ତି ପ୍ରମୁଖ ଉପସ୍ଥିତ ରହି ମୋତେ ବହୁ ତଥ୍ୟ ଯୋଗେଇ ଦେବାରେ ସହାୟତା କରିଥିଲେ । ଯାଜପୁର ଜିଲ୍ଲାରେ ମୋର 'ବୈତରଣୀ ଯାତ୍ରା' କେବଳ ଏହି ଦୁଇଦିନର ନୁହେଁ ବରଂ ଅନେକବାର ମୁଁ ଯାଜପୁର ଜିଲ୍ଲାରେ ବୈତରଣୀ ଧାରେଧାରେ ପାଗଳଙ୍କ ଭଳି ଘୂରିବୁଲିଛି । କେବେକେବେ ବନ୍ଧୁମାନଙ୍କ ଗହଣରେ ତ କେବେ ପୂରା ଏକାଏକା ନିଜ ସାଥୀରେ, ନିରୋଳାରେ ବୈତରଣୀ ମାଆଙ୍କୁ ଦର୍ଶନ କରିଛି ।

କେନ୍ଦୁଝର ଜିଲ୍ଲାର ନୂଆଗାଁ ଛାଡ଼ିବାପରେ ବୈତରଣୀ ଭଦ୍ରକ ଜିଲ୍ଲାରେ ପ୍ରବେଶକରି କିଛିବାଟ ପ୍ରବାହିତ ହୋଇ **ଆଖୁଆପଦା** ନିକଟରେ ଦୁଇ ଭାଗରେ ବିଭକ୍ତ ହୋଇଛି । ଏଠାରେ ବୈତରଣୀର ଶାଖା **ବୁଢାନଦୀ** ଦକ୍ଷିଣକୁ ପ୍ରବାହିତ ହୋଇ ଯାଜପୁର ଜିଲ୍ଲାର କୋରେଇ, ଧର୍ମଶାଳା ବ୍ଲକ୍ ଅଞ୍ଚଳ ଦେଇ କୁଆଖିଆ ନିକଟରେ **ଖରସ୍ରୋତା**ରେ ମିଶିଛି । ଆଖୁଆପଦାଟି ବୈତରଣୀ ନଦୀ ଉପତ୍ୟକାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଏଠାରେ ବୈତରଣୀ ନଦୀରେ ଏକ ଆନିକଟ୍ ନିର୍ମାଣ କରାଯାଇ ବନ୍ୟା ନିୟନ୍ତ୍ରଣ କରାଯିବା ସହିତ ଭଦ୍ରକ ଜିଲ୍ଲାକୁ କେନାଲ୍ ମାଧ୍ୟମରେ ଜଳସେଚନ କରାଯାଇପାରୁଛି ।

ଆଖୁଆପଦାରୁ ବୈତରଣୀ ସମାନ୍ତରାଳ ଭାବେ ଯାଜପୁର ଓ ଭଦ୍ରକ ଜିଲ୍ଲାର ସୀମା ଦେଇ ପ୍ରବାହିତ ହେବାପରେ **ଯାଜପୁର ସହର** ମଧ୍ୟକୁ ପ୍ରବେଶ କରିଛି । ପ୍ରକୃତରେ ଐତିହ୍ୟପୂର୍ଣ୍ଣ ପ୍ରାଚୀନ ଯାଜପୁର ସହରରେ ବୈତରଣୀର ଯାତ୍ରା ବେଶ୍ ଘଟଣାବହୁଳ ଓ ରୋମାଞ୍ଚପୂର୍ଣ୍ଣ । **ବିରଜା କ୍ଷେତ୍ର 'ଯାଜପୁର'** ବା **'ଯାଜନଗ୍ର'**ଠାରେ ବୈତରଣୀ ନଦୀ କୂଳରେ ଭାରତର ଏକ ପ୍ରାଚୀନ ନଗର ସଭ୍ୟତା ଆରଂଭ ହୋଇଥିଲା । ଯାଜପୁରଟି ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷର ପ୍ରାଚୀନ ସହରମାନଙ୍କ ମଧ୍ୟରେ ଏକ ପ୍ରମୁଖ ସହର । ଏଠାରେ ବୌଦ୍ଧ, ଜୈନ, ହିନ୍ଦୁ ଓ ମୁସଲମାନ ଧର୍ମର ଉତ୍ତମ ସମନ୍ୱୟ ଘଟିପାରିଥିଲା । ଏହା କେବଳ ବୈତରଣୀ ନଦୀ ଯୋଗୁଁ ସଂଭବ ହୋଇପାରିଥିଲା । ଯାଜପୁରର ଜିଲ୍ଲାରେ ପ୍ରବାହିତ ବୈତରଣୀ ନଦୀକୂଳକୁ ଦିନେ ଗୌତମ ବୁଦ୍ଧ ଓ ଶ୍ରୀଚୈତନ୍ୟଙ୍କ ଭଳି ସନ୍ଥମାନଙ୍କ ଆଗମନ ଘଟିଥିଲା । **ରତ୍ନଗିରି, ଉଦୟଗିରି, ଲାଙ୍ଗୁଡ଼ି, ରାଧାନଗର** ଏବଂ **ଲଳିତଗିରି (କଟକ ଜିଲ୍ଲା)** ଭଳି ବୌଦ୍ଧ ଉପାସନାସ୍ଥଳ ଓ

ବୌଦ୍ଧବିହାରମାନ ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଗଢି ଉଠିଥିଲା । ହୁଏନ୍‌ସାଂଙ୍କ ବିବରଣୀ (ଖ୍ରୀ·ଅ· ୬୩୯) ବର୍ଣ୍ଣିତ **(ପୁ-ଷୁ-ପୋ-କି-ଲି) ପୁଷ୍ପଗିରି ବୌଦ୍ଧବିହାର** ଯାଜପୁର ଜିଲ୍ଲାର ରତ୍ନଗିରି ମହାବିହାରକୁ ଗ୍ରହଣ କରାଯାଇଥାଏ । ବୈତରଣୀ ନଦୀ ଅବବାହିକାରେ ଯାଜପୁର ଜିଲ୍ଲାରେ ବୌଦ୍ଧ ଧର୍ମର ବ୍ୟାପକ ପ୍ରଚାର ଓ ପ୍ରସାର ଘଟିଥିଲା । ରତ୍ନଗିରିର ବୌଦ୍ଧବିହାର ଓ ବୌଦ୍ଧ ବିଶ୍ୱବିଦ୍ୟାଳୟ ତତ୍କାଳୀନ ସମୟର ସମୃଦ୍ଧ ଶିକ୍ଷା ବ୍ୟବସ୍ଥା ସଂପର୍କରେ ଅନେକ ତଥ୍ୟ ପ୍ରଦାନ କରିଥାଏ ।

ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ପ୍ରାଚୀନ ଯାଜପୁର ସହରଟି ଦୀର୍ଘ ଚାରିଶହ ବର୍ଷଧରି ଉତ୍କଳର ରାଜଧାନୀ ଥିଲା । ଭୌମକର ବଂଶୀଙ୍କଠାରୁ ଆରଂଭ କରି ସୋମବଂଶୀଙ୍କ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷ ଧରି ଯାଜପୁର ପ୍ରାଚୀନ ଓଡ଼ିଶାର ରାଜଧାନୀ ରହି ଆସିଥିଲା । ଗଙ୍ଗବଂଶୀମାନଙ୍କ ଶାସନକାଳରେ ରାଜଧାନୀ ଯାଜପୁରରୁ କଟକକୁ ସ୍ଥାନାନ୍ତର ହେବାପରେ ଚାରିଶହ ବର୍ଷର ପୁରୁଣା ରାଜଧାନୀ ଯାଜପୁର ତା'ର ଗୁରୁତ୍ୱ ହରାଇ ବସିଲା । ତଥାପି ଅନେକ ଐତିହାସିକ ସ୍ମୃତିକୁ ବହନ କରି ପୁଣ୍ୟତୋୟା ବୈତରଣୀ ଆଜି ବି ସେହି ପୁରୁଣା ଯାଜପୁର ସହରର ଛାତି ଦେଇ ବହି ଚାଲିଛି । ଆଗକୁ ବହୁଥିବ ମଧ୍ୟ ।




ଧାମରା ମତ୍ସ୍ୟ ପୋତାଶ୍ରୟରେ ଏକ ଶୀତୁଆ ସକାଳର ଅନୁଭୂତି

ଯାଜପୁର ସହରରେ ବୈତରଣୀ ନଦୀ କୂଳରେ ପୌରାଣିକ ଏବଂ ଐତିହାସିକ **ଦଶାଶ୍ୱମେଧ ଘାଟ, ସପ୍ତମାତୃକା ମନ୍ଦିର, ପ୍ରାଚୀନ ଜଗନ୍ନାଥ ମନ୍ଦିର, ବୈତରଣୀ ମାତାଙ୍କ ମନ୍ଦିର, ବାରୁଣି ପଡ଼ିଆ, ସ୍ୱର୍ଗଦ୍ୱାର, ବରାହନାଥ ମନ୍ଦିର, ଶ୍ରୀଚୈତନ୍ୟ ମନ୍ଦିର, ବିରଜା କ୍ଷେତ୍ର, ନାଭିଗୟା, ବ୍ରହ୍ମାକୁଣ୍ଡ, ସୋମବଂଶୀ ରାଜା ଯଯାତି କେଶରୀଙ୍କ ବିଜୟ ସ୍ମାରକୀ ଶୁଭ ସ୍ତମ୍ଭ, ପ୍ରାଚୀନ ସିଦ୍ଧେଶ୍ୱର ମନ୍ଦିର, ସିଦ୍ଧେଶ୍ୱର ଘାଟ** ଭଳି ଅନେକ ଐତିହାସିକ ଓ ଐତିହ୍ୟପୂର୍ଣ୍ଣ ସ୍ଥାନ ଅବସ୍ଥିତ ।

୨୦୧୪ ମସିହା ସେପ୍ଟେମ୍ବର ମାସ ୨୧ ତାରିଖ । ଆମେ ଯାଜପୁର ସହରର ବଲ୍ଲଭୀଘାଟ ପାରହୋଇ ଷୋଳମ୍‌ପୁରରେ ପହଞ୍ଚିଲାବେଳକୁ ପୂର୍ବାହ୍ନ ୧୧ଟା ବାଜି ସାରିଥିଲା । ଯାଜପୁର ସହର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ବ୍ଲକ୍‌ରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ବୌଦ୍ଧକ୍ଷେତ୍ର **ଷୋଳମ୍‌ପୁର**ଟି ଅବସ୍ଥିତ । ତତ୍କାଳୀନ ବିରଜାମଣ୍ଡଳ ଅଧୀନରେ ଷୋଳମପୁର ଏକ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧବିହାର ଭାବେ ମୁଣ୍ଡ ଟେକିଥିଲା । ଯାଜପୁର ଜିଲ୍ଲାର ବିଶ୍ୱପ୍ରସିଦ୍ଧ ରତ୍ନଗିରି, ଉଦୟଗିରି ଓ ଲଳିତଗିରି (କଟକ ଜିଲ୍ଲା) ହୀରକ ତ୍ରିଭୁଜ ସହିତ ଷୋଳମପୁର ବୌଦ୍ଧ କ୍ଷେତ୍ରର ଏକ ନିବିଡ଼ ସଂପର୍କ ରହିଛି ।

ଷୋଳମପୁରକୁ ବାଦ୍ ଦେଲେ ବୈତରଣୀ ନଦୀ ଅବବାହିକାର ଆଉ ଏକ ପ୍ରାଚୀନ ଐତିହାସିକ ଏବଂ ପ୍ରସିଦ୍ଧ ବୌଦ୍ଧ ତନ୍ତ୍ର ପୀଠ ହେଉଛି **ଭାରଦା କଟକ** । ଶାରଳା ମହାଭାରତରେ ଥିବା **'ଭାରଦା ଉପାଖ୍ୟାନ'**ଟି ମଧ୍ୟ ଏହି କ୍ଷେତ୍ର ସହିତ ଜଡ଼ିତ । ଭାରଦା କଟକକୁ ଲାଗି ରହିଛି ଅନ୍ୟ ଏକ ପୁରାତନ କ୍ଷେତ୍ର, **ଖଡ଼ିପଦା ବୌଦ୍ଧ ପୀଠ ଓ ମୁହାଁଣପଡ଼ା** । ପୂର୍ବରୁ କୁହାଯାଇଛି ବୈତରଣୀ ନଦୀ ଉପତ୍ୟକାସ୍ଥ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡରେ ପର୍ଯ୍ୟାପ୍ତ ପରିମାଣରେ ବୌଦ୍ଧ ମୂର୍ତ୍ତି, ସ୍ତୁପ, ଚୈତ୍ୟ ଓ ଅନେକ ବୌଦ୍ଧ ସ୍ମୃତି ଉଦ୍ଧାର କରାଯାଇଛି । ଏସବୁ ଅବଶେଷ ବୈତରଣୀ ନଦୀ ଅବବାହିକାର ଏକ ସମୃଦ୍ଧ ବୌଦ୍ଧ ସଂସ୍କୃତି ଓ ଧର୍ମଧାରଣା ସଂପର୍କରେ ପରିଚୟ ପ୍ରଦାନ କରିଥାଏ ।

୨୦୧୪ ମସିହା ଡିସେମ୍ବର ୩୧ ତାରିଖ । ୨୦୧୫ ନବବର୍ଷର ଠିକ୍ ପୂର୍ବଦିନ । ଚାରିଆଡ଼େ ନୂଆବର୍ଷକୁ ଅଭିନନ୍ଦନ ଜଣାଇବାର ଏକ ଚଳଚଞ୍ଚଳ ପରିବେଶ । ୨୦୧୫ ମସିହାର ନୂଆବର୍ଷଟି ଇତିହାସରେ ଏକ ସ୍ମୃତିର ଦିନ ହୋଇରହିବ । କାରଣ ବଙ୍ଗୋପସାଗରରେ ଲଘୁଚାପ ଫଳରେ ନୂଆବର୍ଷଟିରେ ଝିପିଝିପି ବର୍ଷା ସାଙ୍ଗକୁ କୋହଲା ପାଗ ଲାଗିରହିଥିଲା । ଏହା ଫଳରେ ୨୦୧୫ ନୂଆବର୍ଷର ଉଦ୍‌ଘାଟନୀ ଦିବସଟି ଏକପ୍ରକାର ପାଣିଚିଆ ହୋଇଯାଇଥିଲା । ଲୋକମାନେ ଯେତେବେଳେ ନୂଆବର୍ଷକୁ ସ୍ୱାଗତ କରିବାର ନିଶାରେ ମସ୍‌ଗୁଲ୍, ମୁଁ ସେତେବେଳେ 'ବୈତରଣୀ ଯାତ୍ରା'ର ସନ୍ଧାନରେ

ଥିଲି । ଆମେ ଡିସେମ୍ବର ୩୧ ତାରିଖ ଦିନ ବୁଲାବୁଲି କରି ଭୁବନେଶ୍ୱରକୁ ଫେରି ଆସିବାରୁ ବର୍ଷା ଦାଉରୁ ରକ୍ଷାପାଇଥିଲୁ ।

ଡିସେମ୍ବର ୩୧ ତାରିଖ ସକାଳୁସକାଳୁ ମୁଁ ଦ୍ୱିତୀୟବାର ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ଓ ଧାମ୍‌ନଗର ବ୍ଲକ୍‌କୁ ଯାତ୍ରା କରିଥିଲି । ପ୍ରାଚୀନ ଓଡ଼ିଶାର ରାଜଧାନୀ ଯାଜପୁରରୁ ଭଦ୍ରକ ଯିବା ବାଟରେ ପଡ଼େ ବୌଦ୍ଧକୀର୍ତ୍ତି ବିମଣ୍ଡିତ **ଧାମନଗର (ଧମ୍ମନଗର)** । ମଝିରେ ବହିଯାଇଛି ବୈତରଣୀ । ବୈତରଣୀ ଦୁଇଭାଗ କରିଛି ଯାଜପୁର ଓ ଭଦ୍ରକ ଜିଲ୍ଲାକୁ । ବୈତରଣୀର ଗୋଟିଏ ପାର୍ଶ୍ୱରେ ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍ ଥିବାବେଳେ ଅନ୍ୟ ପାର୍ଶ୍ୱରେ ରହିଛି ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍ । ଏହି ବ୍ଲକ୍ ଅନ୍ତର୍ଗତ କରଦା ଗ୍ରାମପଞ୍ଚାୟତର ମୁହାଁଣପଡ଼ା ଗ୍ରାମରେ ବୈତରଣୀର ଶାଖା ଗେଙ୍ଗୁଟି ନଦୀ କୂଳରେ ପ୍ରସିଦ୍ଧ **ଭାରଦା କଟକ** ଅବସ୍ଥିତ । ଭାରଦା କଟକଟିର ଅନେକ ଐତିହାସିକ ଗୁରୁତ୍ୱ ରହିଛି । ଏହି ସ୍ଥାନଟିରେ ପ୍ରାଚୀନ ଭୌମକର ଶାସନ ସମୟର ଅନେକ ବୌଦ୍ଧ ମୂର୍ତ୍ତି ଓ ଅନ୍ୟାନ୍ୟ ଅବଶେଷ ଭଗ୍ନ ଅବସ୍ଥାରେ ଦେଖିବାକୁ ମିଳେ । **'ମୁହାଁଣପଡ଼ା'** ଗ୍ରାମର ନାମଟିରେ ମଧ୍ୟ ଅନେକ ଐତିହାସିକ ଖିଅ ରହିଛି । ସଂଭବତଃ ଏହା ଏକ ପ୍ରାଚୀନ ନଦୀ ମୁହାଁଣ ଏବଂ ନଦୀ ବନ୍ଦର ଥିଲା ବୋଲି ଅନୁମାନ କରାଯାଏ । ଭାରଦା କଟକରୁ ଉଦ୍ଧାର କରାଯାଇଥିବା ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧଙ୍କ ଏକ ବୃହତ୍ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ଅବସ୍ଥାପିତ ଅଛି । ତେବେ ଏହାକୁ ଖଡ଼ିପଦାରୁ ଉଦ୍ଧାର କରାଯାଇଥିବା କଥା ସଂଗ୍ରହାଳୟ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଦର୍ଶାଯାଇଛି ।

ସେହିଭଳି ଧାମନଗର ବ୍ଲକ୍ ଅନ୍ତର୍ଗତ କରଦା ଗ୍ରାମପଞ୍ଚାୟତର ଅଲ୍ଲୀନଗର (ଖଙ୍ଗରା) ଗ୍ରାମରେ ବୈତରଣୀର ଶାଖାନଦୀ **'କାଳନ୍ଦୀ'** କୂଳରେ ପ୍ରାଚୀନ **ଖିଲାଟେଶ୍ୱର ପୀଠ**ଟି ଅବସ୍ଥିତ । ଯାଜପୁର ଜିଲ୍ଲାର ପ୍ରାଚୀନ ବେଲେଶ୍ୱର, ବରୁଣେଶ୍ୱର ଶୈବକ୍ଷେତ୍ର ଓ ଭଦ୍ରକ ଜିଲ୍ଲାର ଖିଲାଟେଶ୍ୱର ଶୈବପୀଠ ଏକ ସମକୋଣୀ ତ୍ରିଭୁଜର ତିନୋଟି କୋଣରେ ଅବସ୍ଥିତ ଥିବାରୁ ଏହାକୁ ସ୍ୱର୍ଣ୍ଣ ତ୍ରିଭୁଜ ବୋଲି କୁହାଯାଇଥାଏ ।

ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଅବସ୍ଥିତ **କାଉପୁର**ଟି ଐତିହାସିକ ଓ ପ୍ରାଚୀନ ଭାସ୍କର୍ଯ୍ୟକଳା ଦୃଷ୍ଟିରୁ ଭଦ୍ରକ ଜିଲ୍ଲାର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । କାଉପୁର ଗ୍ରାମଟି ଭଦ୍ରକ ସଦର ବ୍ଲକ୍ ଦେଇ ବହିଯାଇଥିବା ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ କୂଳରେ ଅବସ୍ଥିତ । ସପ୍ତମ-ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ମନ୍ଦିର ଓ ଅନେକ ପ୍ରସ୍ତର ମୂର୍ତ୍ତି, ଶିଳାଲେଖ କାଉପୁରରୁ ଉଦ୍ଧାର କରାଯାଇଛି । ଶାଳନ୍ଦୀ ନଦୀ କୂଳରେ ଅବସ୍ଥିତ କାଉପୁର ଗ୍ରାମରେ ଥିବା ଇଟା ନିର୍ମିତ ଏକ ପ୍ରାଚୀନ ଗୃହର କାନ୍ଥରେ ବହୁ ପ୍ରାଚୀନ ମୂର୍ତ୍ତି ଦେଖିବାକୁ ମିଳିଥାଏ ।

ବୈତରଣୀର ଅନ୍ୟତମ ଶାଖା ନଦୀ ଗେଙ୍ଗୁଟି । ଏହି ନଦୀଟି ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍‌ରେ ପ୍ରବାହିତ ହୋଇଛି । ଆଉ ଏହି ଗେଙ୍ଗୁଟି କୂଳରେ ଅବସ୍ଥିତ ଇତିହାସ ପ୍ରସିଦ୍ଧ

**ଗୋହିରାଟିକିରି ।** ଗୋହିରାଟିକିରିଠାରେ ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦ ଦେବ (ଖ୍ରୀ·ଅ·୧୫୬୦-ଖ୍ରୀ·ଅ·୧୫୬୮) ବଙ୍ଗର ନବାବ ସୁଲେମାନ୍ କରରାନୀଙ୍କ ସହ ଯୁଦ୍ଧ କରି ୧୫୬୮ ଖ୍ରୀଷ୍ଟାବ୍ଦରେ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ କରିଥିଲେ ।

ଭଦ୍ରକ ଜିଲ୍ଲାର ଧାମନଗର ଓ ତିହିଡ଼ି ବ୍ଲକର ସୀମା ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ଓ ବୈତରଣୀର ଶାଖା ନଦୀ ଗେଙ୍ଗୁଟିର ସଂଗମ ସ୍ଥଳରେ **ଦପାନାୟକାଣୀ** (ଦପାନାୟିକା) ଦେବୀ ପୀଠ ଅବସ୍ଥିତ ।

ସେହିଭଳି ଭଦ୍ରକ ଜିଲ୍ଲାର ତିହିଡ଼ି ବ୍ଲକ୍ ଅନ୍ତର୍ଗତ ବୈତରଣୀ ନଦୀ କୂଳରେ ଅବସ୍ଥିତ **ନରେନ୍ଦ୍ରପୁର** ଏକଦା ପ୍ରାଚୀନ ଉତ୍କଳର ଏକ ପ୍ରମୁଖ ନୌବାଣିଜ୍ୟ କେନ୍ଦ୍ର ଭାବେ ବେଶ୍ ସୁଖ୍ୟାତ ହୋଇପାରିଥିଲା । କନିକା ରାଜ୍ୟ (ବର୍ତ୍ତମାନ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍) ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ନରେନ୍ଦ୍ରପୁର ଏକ ବାଣିଜ୍ୟିକ କେନ୍ଦ୍ର ଭାବେ ସମଗ୍ର ଓଡ଼ିଶାରେ ପ୍ରତିଷ୍ଠାଲାଭ କରିଥିଲା । ବୈତରଣୀ ନଦୀ ଅବବାହିକାରେ ଅବସ୍ଥିତ ଏହି ଅଞ୍ଚଳରେ ପ୍ରାଚୀନ ଉତ୍କଳର ସାଧବମାନେ ବସବାସ କରିବା ସହିତ ଦରିଆପାରି ବାଣିଜ୍ୟ କାରବାର କରିଆସୁଥିଲେ । ଚାନ୍ଦବାଲି ବନ୍ଦରକୁ କେନ୍ଦ୍ର କରି ନରେନ୍ଦ୍ରପୁର ଓ ପରବର୍ତ୍ତୀ ସମୟରେ କନିକା ରାଜ୍ୟ ବାଣିଜ୍ୟ କାରବାରରେ ସିଦ୍ଧହସ୍ତ ହୋଇପାରିଥିଲା ।

ପ୍ରାଚୀନ କାଳରୁ କଳିଙ୍ଗ (ପ୍ରାଚୀନ ଓଡ଼ିଶା)ର ସାଧବମାନେ ଜାଭା (ଯବଦ୍ୱୀପ), ସୁମାତ୍ରା (ସ୍ୱର୍ଣ୍ଣଦ୍ୱୀପ), ବୋର୍ଣ୍ଣିଓ (ବରୁଣ ଦ୍ୱୀପ), ବାଲି (ବଳୀ ଦ୍ୱୀପ) ପ୍ରମୁଖ ଇଣ୍ଡୋନେସିଆର ଦ୍ୱୀପପୁଞ୍ଜସମୂହ ସମେତ ଥାଇଲ୍ୟାଣ୍ଡ (ଶ୍ୟାମ ଦେଶ), ଭିଏତ୍‌ନାମ୍ (ଚଂପା), ଶ୍ରୀଲଙ୍କା (ସିଂହଳ), ମାଲୟେସିଆ (ମାଳୟ), କାମ୍ବୋଡ଼ିଆ (କମ୍ବୋଜ), ସୁମେର (ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀ ଉପତ୍ୟକା ଅଞ୍ଚଳ ସମୂହ), ବର୍ମା (ମିଆଁମାର୍), ଆନାଟୋଲିଆ (ଏସିଆ ମାଇନର), ପାରସ୍ୟ (ଇରାନ୍), ଗ୍ରୀସ୍, ରୋମ୍, ମିଶର (ଆଫ୍ରିକା ମହାଦେଶର ନୀଳନଦୀ ଅବବାହିକା ଅଞ୍ଚଳ), ଚୀନ୍, ଜାପାନ୍, କୋରିଆ, ଆଫ୍ରିକା, ଫିଲିପାଇନ୍‌ସ, ସାଉଦିଆରବ, ଇରାକ୍, ହଲାଣ୍ଡ (ଡଚ୍-ଓଲନ୍ଦାଜ), ଡେନ୍‌ମାର୍କ (ଦିନାମାର୍) ଆଦି ଅଞ୍ଚଳକୁ ବାଣିଜ୍ୟ କରିବାକୁ ଯାଉଥିଲେ । ଏହାବ୍ୟତୀତ କଳିଙ୍ଗର ବଣିକମାନେ ଆମ ଦେଶ ଭାରତର ବିଭିନ୍ନ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । ପ୍ରାଚୀନ ଓଡ଼ିଆ ସାଧବ ପୁଅମାନେ ଭାରତର କରୋମଣ୍ଡଳ (ଆନ୍ଧ୍ର ଓ ତାମିଲ୍‌ନାଡୁ ଉପକୂଳ), ମାଲାବାର (କେରଳ), ଡେକାନ୍, (ଭାରତର ଦକ୍ଷିଣ-ପୂର୍ବ ଉପକୂଳ), ଗୁଜୁରାଟ, ବଙ୍ଗଦେଶ, ବମ୍ବେ ଦ୍ୱୀପ (ବର୍ତ୍ତମାନର ମୁମ୍ବାଇ) ସହ ବାଣିଜ୍ୟ କାରବାର କରୁଥିଲେ ।

ଓଡ଼ିଆମାନେ ସାତ ସମୁଦ୍ର ତେର ନଈ ପାର ହୋଇ ବଣିଜ ବେପାର କରି ବିଦେଶରୁ ଧନଦୌଲତ ବୋହି ଆଣୁଥିଲେ । ପ୍ରାଚୀନ କଳିଙ୍ଗର ବଣିକମାନେ ବିଦେଶରେ ମଧ୍ୟ ନିଜନିଜର ସାମ୍ରାଜ୍ୟ

ବିସ୍ତାର କରିପାରିଥିଲେ । ଜାଭା ଓ ସୁମାତ୍ରା ଦ୍ୱୀପରେ ବର୍ତ୍ତମାନ ସୁଦ୍ଧା ଓଡ଼ିଆମାନେ ଉପନିବେଶ ସ୍ଥାପନ କରି ରହିଯାଇଛନ୍ତି । ସେମାନେ 'କ୍ଳିଂ' (ସଂଭବତଃ କଳିଙ୍ଗର ଅଧିବାସୀ) ଭାବେ ସେଠାରେ ପରିଚିତ ହୋଇପାରିଛନ୍ତି । ଯେଉଁଥିପାଇଁ ଭାରତୀୟଙ୍କୁ ମାଳୟ ଦ୍ୱୀପପୁଞ୍ଜରେ କ୍ଳିଂ ବା କଳିଙ୍ଗ ନାମରେ ଚିହ୍ନୁଥିଲେ ।

କଳିଙ୍ଗର ବଣିକମାନେ ସିଂହଳ ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଇ ସେଠାରେ ମଧ୍ୟ ଉପନିବେଶ ସ୍ଥାପନ କରିଥିବାର ଜଣାଯାଏ । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀବେଳକୁ ଇଂରେଜ ଜାତି ଯାହା କରିଥିଲେ ତାହାର ହଜାର ବର୍ଷ ପୂର୍ବରୁ କଳିଙ୍ଗବାସୀ ସମଗ୍ର ପୃଥିବୀରେ ନିଜର ଉପନିବେଶ ସ୍ଥାପନ କରି ନିଜକୁ ଏକ ଚତୁର ଜାତିର ପରିଚୟ ଦେଇପାରିଥିଲେ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ କଳିଙ୍ଗର ନୌବାଣିଜ୍ୟ ଉତ୍କର୍ଷତାର ଚରମ ସୋପାନରେ ପହଞ୍ଚି ପାରିଥିଲା । ଏହି ଶତାବ୍ଦୀରେ ରଚିତ ବୌଦ୍ଧ ଗ୍ରନ୍ଥ **'ସିଉକି'**ରେ କଳିଙ୍ଗରେ ଅନେକ ବନ୍ଦର ଥିବାର ଉଲ୍ଲେଖ ରହିଛି । ଖ୍ରୀ·ଅ· ପ୍ରଥମ ଶତାବ୍ଦୀରେ ଗ୍ରୀକ୍ ପରିବ୍ରାଜକ ତଥା ଭୌଗୋଳିକ ଟଲେମୀ*(Ptolemy)*ଙ୍କ ଦ୍ୱାରା ରଚିତ ପୁସ୍ତକ 'ଭୂଚିତ୍ର'ରେ ଦର୍ଶାଯାଇଛି, ପୁରୀ, ବାଲେଶ୍ୱର (ସୁବର୍ଣ୍ଣରେଖା ଓ ଧାମରା ମୁହାଣ), କୋଣାର୍କ, ତାମ୍ରଲିପ୍ତ (ତମଲୁକ୍) ଓ କଳିଙ୍ଗନଗର, ଦନ୍ତପୁର ଆଦି ବନ୍ଦରଭିତ୍ତିକ ସହର ସମୁଦ୍ର କୂଳରେ ଅବସ୍ଥିତ ଥିଲା । ସେଇସବୁ ନଦୀ ମୁହାଁଣ ଓ ସାମୁଦ୍ରିକ ବନ୍ଦର ଏବେ ଇତିହାସ ପାଲଟିଛି । ଟଲେମି ଓଡ଼ିଶାର ଅନେକ ପ୍ରଧାନ ନଦୀ ଓ ବନ୍ଦରନଗରୀର ନାମ ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ହେଲା ପକୁରା *(Pakowra)*-ଗଞ୍ଜାମ ନିକଟସ୍ଥ ଏକ ବନ୍ଦରନଗରୀ, ନନିଗେନ୍ *(Nanigaina)* -ପୁରୀ, କଟିକର୍ଦ୍ଦମ *(Katikardam)*-କଟକ, କୋନ୍ନଗର *(Konagara)*-କୋଣାର୍କ, କୋସମ୍ବ *(Kosamba)*-ବାଲେଶ୍ୱର, ପଲୁରା *(Palowra)*-ନଳେଶ୍ୱର, ମନଦ *(Manada)*-ମହାନଦୀ, ଟିନ୍ଦିସ୍ *(Tyndis)*-ବ୍ରାହ୍ମଣୀ, ଦୋସରମ୍ ***(Dosaram)*** **-ବୈତରଣୀ**, ଅଦମ୍‌ସ *(Adamas)*-ସୁବର୍ଣ୍ଣରେଖା । ଏମାନଙ୍କ ମଧ୍ୟରୁ ଦୋସରମ୍‌କୁ ବୈତରଣୀ ନଦୀ ଭାବେ ବର୍ଣ୍ଣନା କରାଯାଇଛି । ବୈତରଣୀର ଧାମରା ମୁହାଁଣ ଅତୀତରେ କଳିଙ୍ଗର ଏକ ଗୁରୁତ୍ୱପୂର୍ଣ୍ଣ ବନ୍ଦରର ମାନ୍ୟତା ଅର୍ଜନ କରିପାରିଥିଲା ।

ଓଡ଼ିଶା ଉପକୂଳରେ ମୁଖ୍ୟତଃ ଦୁଇ ପ୍ରକାର ବନ୍ଦର ଥିଲା । ସମୁଦ୍ରରେ ପଡ଼ିଥିବା ବଡ଼ବଡ଼ ନଦୀ ମୁହାଁଣରେ ଥିବା ବନ୍ଦରକୁ ସାମୁଦ୍ରିକ ବନ୍ଦର (ଉଦାହରଣ-ଧାମରା : ବୈତରଣୀ) ଓ ସମୁଦ୍ରଠାରୁ କିଛି ଦୂର ସ୍ଥଳ ଭାଗର ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ପ୍ରଶସ୍ତ ତଥା ଗଭୀର ଶାଖା ନଦୀର ମୁହାଁଣର ବନ୍ଦରକୁ ନଦୀ ବନ୍ଦର (ଉଦାହରଣ-ଚାନ୍ଦବାଲି : ବୈତରଣୀ) କୁହାଯାଉଥିଲା । ଏଗୁଡ଼ିକ ଥିଲା ପ୍ରାକୃତିକ ବନ୍ଦର ।

କେନ୍ଦ୍ରାପଡ଼ା ଜିଲ୍ଲାର ପଟ୍ଟାମୁଣ୍ଡାଇ, ନଳିତାପାଟିଆ, ତାଳଚୁଆ କିମ୍ବା ତତ୍‌କାଳୀନ କନିକା ରାଜ୍ୟ

ଅନ୍ତର୍ଭୁକ୍ତ ଏବଂ ଆଧୁନିକ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବନ୍ଦର ସେତେବେଳେ ଓଡ଼ିଶାର ପ୍ରମୁଖ ନଦୀ ବନ୍ଦରର ମାନ୍ୟତା ଅର୍ଜନ କରିଥିଲା । ଧାମରା ବ୍ୟତୀତ କଟକ ଜିଲ୍ଲା ମଧ୍ୟରେ ଚାନ୍ଦବାଲି, ହଂସୁଆ ଏବଂ ପଟ୍ଟାମୁଣ୍ଡାଇ ଓଡ଼ିଶାର ପ୍ରାଚୀନ ବନ୍ଦର ଥିଲା । ବୈତରଣୀ-ବ୍ରାହ୍ମଣୀ ମୁହାଁଣରେ ଧାମରା ସାମୁଦ୍ରିକ ବନ୍ଦର, ସାନବ୍ରାହ୍ମଣୀ-ଗୋବରୀ ମୁହାଁଣର ଅନତି ଦୂରରେ ଫଲସ ପଏଣ୍ଟ (ହୁକିଟୋଲା) ସାମୁଦ୍ରିକ ବନ୍ଦର ଅବସ୍ଥିତ ଥିବାରୁ ପଟ୍ଟାମୁଣ୍ଡାଇ ଓ ଚାନ୍ଦବାଲି ନଦୀ ବନ୍ଦରର ଗୁରୁତ୍ୱ ରହିଥିଲା । ପଟ୍ଟାମୁଣ୍ଡାଇ ଓ ଚାନ୍ଦବାଲି ନଦୀବନ୍ଦର ଦ୍ୱୟ ଓଡ଼ିଶାର ପ୍ରାୟ ଅଧିକାଂଶ ନଦୀ ସହିତ ସଂଯୁକ୍ତ ଥିବାରୁ ସେତେବେଳେ ଏହି ଦୁଇ ବନ୍ଦର ଦେଇ ଆଭ୍ୟନ୍ତରୀଣ ଓଡ଼ିଶାରୁ ପଣ୍ୟଦ୍ରବ୍ୟ ପରିବହନ ସଂଭବ ହୋଇପାରୁଥିଲା ।



ଧାମରାଈ ମନ୍ଦିର ସାମ୍ନାରେ ଲେଖକ

ବୈତରଣୀ, ବ୍ରାହ୍ମଣୀ ନଦୀ ଉପତ୍ୟକା ଅନ୍ତର୍ଗତ ତତ୍କାଳୀନ କଟକ ଜିଲ୍ଲାର କେନ୍ଦ୍ରାପଡ଼ା, ଯାଜପୁର ଓ ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ଭଦ୍ରକ, ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଅଞ୍ଚଳରେ ବ୍ୟାପକ ଧାନ, ବିରି, ମୁଗ, କୋଳଥ, ଝୋଟ, ଧୂଆଁପତ୍ର ଆଦି ଖାଦ୍ୟଶସ୍ୟ ଓ ଅର୍ଥକରୀ ଫସଲ ଉତ୍ପନ୍ନ ହେଉଥିଲା । ଅପରପକ୍ଷେ, ଏସବୁ ଅଞ୍ଚଳରେ ଅଧିକ କୁଂଭାର ଏବଂ ତନ୍ତୀ ସଂପ୍ରଦାୟର ଅଧିବାସୀ ରହୁଥିବାରୁ ବ୍ୟାପକ ପରିମାଣରେ ମାଟିପାତ୍ର ନିର୍ମାଣ ସାଙ୍ଗକୁ ବସ୍ତ୍ର (କପଡ଼ା) ପ୍ରସ୍ତୁତ ହେଉଥିଲା । ଏହିସବୁ ପଣ୍ୟଦ୍ରବ୍ୟକୁ ବୈତରଣୀ, ବ୍ରାହ୍ମଣୀ ଦେଇ ପ୍ରଥମେ ଚାନ୍ଦବାଲି ଓ ପଙ୍ଗାମୁଣ୍ଡାଇ ନଦୀ ବନ୍ଦରରେ ପହଞ୍ଚାଯାଉଥିଲା ଏବଂ ଏହାପରେ ବଡ଼ବଡ଼ ପୋତ ସହାୟତାରେ ଧାମରା ଓ ଫଲ୍ସ ପଏଣ୍ଟ ବନ୍ଦରକୁ ପରିବହନ କରାଯାଉଥିଲା । ଚାନ୍ଦବାଲି ବନ୍ଦର ଯେ, କେବଳ ପଣ୍ୟଦ୍ରବ୍ୟ ରପ୍ତାନୀ ଆମଦାନୀ ପାଇଁ ପ୍ରସିଦ୍ଧିଲାଭ କରିଥିଲା ତାହା ନୁହେଁ, ଏହା ମଧ୍ୟ ଯାତ୍ରୀ ପରିବହନ କ୍ଷେତ୍ରରେ ନାଁ କରିଥିଲା । ଅଷ୍ଟାଦଶ ଖ୍ରୀ.ଅ. ବେଳକୁ ଇଂରେଜମାନେ ଧାମରା ନଦୀ ମୁହାଁଣ ଦେଇ ଓଡ଼ିଶାରେ ପହଞ୍ଚିଥିଲେ । ସେମାନେ କଲିକତାରୁ ଧାମରା ମୁହାଁଣ ବାଟ ଦେଇ ବୈତରଣୀ-ବ୍ରାହ୍ମଣୀ ନଦୀ ମାଧ୍ୟମରେ କଟକରେ ପହଞ୍ଚି ପାରିଥିଲେ । ଧାମରାରୁ ଚାନ୍ଦବାଲି ଓ ପଙ୍ଗାମୁଣ୍ଡାଇ ନଦୀ ବନ୍ଦର ଦେଇ ଇଂରେଜମାନେ ନଦୀ ପଥରେ ବୁଲିବୁଲି କଟକରେ ପହଞ୍ଚୁଥିଲେ ।



**ଯାଜପୁର ଜିଲ୍ଲା ଦଶରଥପୁରର ଜଟିଜଟା ବୈତରଣୀ ଘାଟରେ ନଦୀ ପାରର ଏକ ବିରଳ ମୁହୂର୍ତ୍ତ**

୧୮୨୨ ମସିହାରେ ଇଂରେଜ ଉଚ୍ଚ ପଦାଧିକାରୀ ଜେମ୍ସ ପେଗ୍ ଓ ଉଇଲିୟମ୍ ବ୍ୟାଂପ୍‌ଟନ୍ ସପରିବାରେ ଧାମରା ବନ୍ଦରରୁ ବୈତରଣୀ-ବ୍ରାହ୍ମଣୀ ନଦୀ ଦେଇ ପଟ୍ଟାମୁଣ୍ଡାଇଠାରେ ଜାହାଜରେ ଅବତରଣ କରିଥିଲେ । ବ୍ୟାଂପ୍‌ଟନ ପଟ୍ଟାମୁଣ୍ଡାଇରେ ବର୍ଷେ ରହିବା ପରେ ପୁରୀ ଯାଇଥିଲେ । ଏ ଦୁଇ ଅଧିକାରୀ ୟୁରୋପୀୟ ଏବଂ ଆଙ୍ଗ୍ଲୋ-ଇଣ୍ଡିଆନ୍ ଛାତ୍ରଛାତ୍ରୀଙ୍କ ପାଇଁ ଓଡ଼ିଶାରେ ପ୍ରଥମ ଇଂରାଜୀ ସନ୍ ଡେ ସ୍କୁଲ୍ କଟକଠାରେ ପ୍ରତିଷ୍ଠା କରିଥିଲେ । ବୈତରଣୀ ନଦୀରେ ଅବସ୍ଥିତ ଧାମରା ଓ ଚାନ୍ଦବାଲି ବନ୍ଦର ଇଂରେଜ ସରକାରଙ୍କ ପାଇଁ ବେଶ୍ ସହାୟକ ହୋଇଥିବାର ଏହିସବୁ ଘଟଣାରୁ ପ୍ରମାଣିତ ହୋଇଥାଏ ।

ହଁ, ଯାଜପୁର ସହରରେ ବୈତରଣୀର ପ୍ରବାହ ସଂପର୍କରେ କହୁଥିଲି । ଯାଜପୁର ସହର ଛାଡ଼ିବା ପରେ ବୈତରଣୀ ଦଶରଥପୁର ବ୍ଲକ୍‌କୁ ପ୍ରବେଶ କରିଛି । ଦଶରଥପୁର ବ୍ଲକ୍‌ର ପ୍ରାଚୀନ **କଟିକଟା ତଙ୍ଗାଘାଟ**, ଦଶରଥପୁରର ପ୍ରାଚୀନ **ଶ୍ୟାମସୁନ୍ଦରଜିଉ ମଠ**, **ମଙ୍ଗଳପୁର**, **କୟାଁଗୋଲାରେ ପଙ୍କି ଓ ବୈତରଣୀର ପୁନର୍ମିଳନର** ଦୃଶ୍ୟ ବାସ୍ତବରେ ସ୍ପର୍ଶକାତର ଓ ମନଲୋଭା ।

କୟାଁଗୋଲା ପାର ହେଲାପରେ ବୈତରଣୀ ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ସୀମା ଦେଇ ବଙ୍ଗୋପ ସାଗର ଆଡ଼େ ମୁହାଁଇଛି । ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ସୀମାରେ ବୈତରଣୀ **ଆରଡ଼ିଠାରେ ଆଖଣ୍ଡଳମଣି**ଙ୍କ ପାଦ ସ୍ପର୍ଶ କରିଛି । ଏଠାରେ ଥିବା **ତିନିତର ଘାଟ**ରେ ବୈତରଣୀ ସହିତ **ଶାଳନ୍ଦୀ** ନଦୀର ମହାମିଳନ ଘଟିଛି । ବୈତରଣୀ ଓ ଶାଳନ୍ଦୀ ନଦୀର ମିଳନ ସ୍ଥଳକୁ ତିନିତର ଘାଟ କୁହାଯାଉଛି । ଏହି ଘାଟର ଗୋଟିଏ ପାର୍ଶ୍ୱରେ ଆରଡ଼ି ଆଖଣ୍ଡଳମଣି ଘାଟ ରହିଥିବାବେଳେ ଅନ୍ୟ ଏକ ପାର୍ଶ୍ୱ ଚାନ୍ଦବାଲି ବ୍ଲକ୍ ସଦର ମହକୁମା ଏବଂ ଅନ୍ୟ ଏକ ପାର୍ଶ୍ୱ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍ ସଦର ମହକୁମାକୁ ସଂଯୋଗ କରିଛି ।

ତିନିତର ଘାଟଠାରୁ ବୈତରଣୀ ଶାଳନ୍ଦୀକୁ ସାଥୀରେ ଧରି **ଚାନ୍ଦବାଲି** ଆଡ଼େ ପ୍ରବାହିତ ହୋଇଛି । ଧାମରା ମୁହାଁଣର କିଛିବାଟ ପୂର୍ବରୁ ବୈତରଣୀ କେନ୍ଦ୍ରାପଡ଼ା ଜିଲ୍ଲାର **ନଳିତାପାଟିଆ**ଠାରେ ବ୍ରାହ୍ମଣୀ ସହିତ ମିଶି ବଙ୍ଗୋପ ସାଗରରେ ପଡିଛି । ଏହା ହିଁ ହେଉଛି ବୈତରଣୀର ଅନ୍ତିମ ଯାତ୍ରା ।

ଆଖଣ୍ଡଳମଣି ପୀଠରୁ ବୈତରଣୀ ଉଭୟ କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାର ସୀମା ଦେଇ ଗତି କରିଛି । ଏଠାରେ ବୈତରଣୀର ଗୋଟିଏ ପାର୍ଶ୍ୱରେ ଭଦ୍ରକ ଜିଲ୍ଲାର **ଚାନ୍ଦବାଲି** ଥିବାବେଳେ ଅନ୍ୟପଟେ କେନ୍ଦ୍ରାପଡ଼ା ଜିଲ୍ଲାର **ରାଜକନିକା** ବ୍ଲକ୍ ରହିଛି । ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ତତ୍କାଳୀନ ଓଡ଼ିଶାର ଅନ୍ୟ ଏକ ଗାରିମାମୟ ଭଞ୍ଜବଂଶୀୟ ରାଜ୍ୟ ହେଉଛି **'କନିକା'** । କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍ ଅନ୍ତର୍ଗତ ବୈତରଣୀ ନଦୀ କୂଳରେ ଥିବା ଲଣ୍ଡନର ବକିଂହାମ୍

ପ୍ୟାଲେସ୍ ଶୈଳୀରେ ନିର୍ମିତ ବିଶାଳ କନିକା ରାଜବାଟୀ ହିଁ ବୈତରଣୀ ନଦୀ ଉପତ୍ୟକାସ୍ଥ ରାଜତନ୍ତ୍ରର ଆଉ ଏକ ଅଧ୍ୟାୟ ।

କନିକା ଇତିହାସରୁ ଜଣାଯାଏ, ଏକଦା କନିକାର ନାମକରଣ ହେବା ପୂର୍ବରୁ ଏଠାରେ ବିଶେଷକରି ବଣିକ ବା ସାଧବ (ସୌଦାଗର) ଜାତିର ଲୋକେ ବସତି ସ୍ଥାପନ କରି ଦରିଆପାରି ବାଣିଜ୍ୟ କାରବାର କରୁଥିଲେ । ବର୍ତ୍ତମାନର ଭଦ୍ରକ ଜିଲ୍ଲା ତିହିଡ଼ି ବ୍ଲକ୍ ଅନ୍ତର୍ଗତ ବୈତରଣୀ ନଦୀ କୂଳରେ ଅବସ୍ଥିତ **ନରେନ୍ଦ୍ରପୁର** ହିଁ ସାଧବମାନଙ୍କ ବ୍ୟାବସାୟିକ ପେଣ୍ଠସ୍ଥଳୀ ଥିଲା । ତେବେ ନରେନ୍ଦ୍ରପୁର ପରବର୍ତ୍ତୀ ସମୟରେ ଏହି କନିକା ଅଞ୍ଚଳ ଭଞ୍ଜ ରାଜବଂଶୀଙ୍କ ଅଧୀନକୁ ଚାଲିଯାଇଥିଲା । ଦିନେ କନିକା ରାଜ୍ୟର ପରିସୀମା ବଙ୍ଗୋପସାଗର କୂଳେକୂଳେ ସୁଦୂର ବାଲେଶ୍ୱରଠାରୁ ଆରଂଭ କରି ପାରାଦୀପଗଡ଼, ଜମ୍ବୁ ଦ୍ୱୀପ (ହୁକିଟୋଲା ଫଲ୍ସ ପଏଣ୍ଟ ବନ୍ଦର) ପର୍ଯ୍ୟନ୍ତ ବ୍ୟାପିଥିଲା ।

ଉତ୍କଳୀୟ ନୌବାଣିଜ୍ୟ ପରଂପରାରେ ଚାନ୍ଦବାଲି ଓ ଧାମରା ବନ୍ଦରର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଅନେକ ପୌରାଣିକ ଉପାଖ୍ୟାନ, କିମ୍ବଦନ୍ତୀ ଓ ଲୋକ କାହାଣୀଗୁଡ଼ିକରୁ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ସଂସ୍କୃତି ଓ ପରଂପରା ସଂପର୍କରେ ବହୁ ତଥ୍ୟ ମିଳିଥାଏ । **ତଅପୋଇ ଉପାଖ୍ୟାନ (ଖୁଦୁରୁକୁଣୀ ଓଷା)**, ସାଧବ ସାତଭାଇ ପ୍ରସଙ୍ଗ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାର ଏକ ଚିତ୍ର ପ୍ରଦାନ କରିଥାଏ । ତେବେ ଏହି ସାଧବ ସାତଭାଇ ଓ ତଅପୋଇର ଗାଁ ତତ୍କାଳୀନ କନିକା ରାଜ୍ୟର **ରିଘାଗଡ଼**ରେ ବୋଲି ଐତିହାସିକମାନେ ଆକଳନ କରନ୍ତି । ଏହି ସାତଭାଇଙ୍କ ନାମରେ ସାତଖଣ୍ଡ ଗାଁ ରହିଥିଲା, ଯାହା କି ବର୍ତ୍ତମାନର କେନ୍ଦ୍ରାପଡ଼ା ଜିଲ୍ଲାର ବଙ୍ଗୋପସାଗର ଉପକୂଳରେ ଥିବା ସାତଖଣ୍ଡ ଗାଁ **'ସାତଭାୟା'** (ବି.ଦ୍ର. ଏହି ସାତଖଣ୍ଡ ଗାଁରୁ ଅଧିକାଂଶ ଗାଁ ଆଜି ସମୁଦ୍ର ଗର୍ଭରେ ଲୀନ ହୋଇଯାଇଥିଲେ ମଧ୍ୟ ଏସବୁ ଗାଁର କଙ୍କାଳ ଓ ଇତିହାସ ଆଜି ବି ଜୀବନ୍ତ ଓ ତାଜା ହୋଇ ରହିଛି ।)କୁ ଚିହ୍ନଟ କରାଯାଇଛି ।

ରିଘାଗଡ଼ କନିକା ରାଜ୍ୟର ଏକ ପ୍ରମୁଖ ଗଡ଼ ଥିଲା ଏବଂ ଏଠାରେ ମୁଖ୍ୟତଃ ସୌଦାଗର (ସାଧବ) ଗୋଷ୍ଠୀର ଲୋକମାନେ ବସବାସ କରୁଥିଲେ । 'ସାତଭାୟା' ହେଉଛି ରିଘାଗଡ଼ଠାରୁ ଖୁବ୍ ଅଳ୍ପ ଦୂରରେ ବଙ୍ଗୋପସାଗର କୂଳରେ ଅବସ୍ଥିତ ସାତୋଟି ଗାଁ । ଓଡ଼ିଶାର ପୁରପଲ୍ଲୀରେ ଯେଉଁ 'ତଅପୋଇ', 'ସାଧବ ସାତ ଭାଇ' ଓ 'ଖୁଦୁରୁକୁଣି' ଓଷା ବେଶ୍ ଲୋକପ୍ରିୟ ହୋଇଛି ତାହାର ଇତିହାସ କନିକା ରାଜ୍ୟ ସହିତ ଜଡ଼ିତ ହୋଇ ରହିଛି । ସାଧବ ଦୁଲଣୀ 'ତଅପୋଇ' କନିକା ରାଜ୍ୟର ରିଘାଗଡ଼ ସୌଦାଗରଙ୍କ ଝିଅ ଥିଲା ବୋଲି ବିଶ୍ୱାସ କରାଯାଉଛି ।

ସାଧବମାନଙ୍କର ଆରାଧ୍ୟ ଦେବୀ **ମା ମଙ୍ଗଳା** ଓ **ପଞ୍ଚୁବରାହୀ (ସମୁଦ୍ର ଦେବୀ)** ଆଜି ବି ସାତଭାୟାରେ ପୂଜା ପାଉଛନ୍ତି । ଏହି ମଙ୍ଗଳା ଉପାସନା ହିଁ 'ଖୁଦୁରୁକୁଣୀ ଓଷା'ର ମା' ମଙ୍ଗଳା ବୋଲି ଗବେଷକମାନେ ମତ ଦିଅନ୍ତି । ସାଧବମାନେ ସାତସମୁଦ୍ର ତେର ନଇ ପାର ହୋଇ ବାଣିଜ୍ୟ

କରିବାକୁ ଯିବାବେଳେ ସେମାନଙ୍କ ପରିବାରର ସ୍ତ୍ରୀଲୋକମାନେ ମା' ମଙ୍ଗଳାକୁ ଆରାଧନା କରିଥା'ନ୍ତି ।

**'ଖୁଲଣା ସୁନ୍ଦରୀ'** ଉପାଖ୍ୟାନଟି ମଧ୍ୟ ପ୍ରାଚୀନ ଓଡ଼ିଆଙ୍କ ନୌବାଣିଜ୍ୟ ସଂସ୍କୃତିର ସ୍ମୃତି ବହନ କରୁଥିବା ଆଉ ଏକ ପୌରାଣିକ କିମ୍ବଦନ୍ତୀ । ଖୁଲଣା ସୁନ୍ଦରୀର ସ୍ୱାମୀ ଧନେଶ୍ୱର ସୌଦାଗର ଓ ପୁତ୍ର ଶ୍ରୀଧର ଏହି ଚାନ୍ଦବାଲି ଓ ଧାମରା ବନ୍ଦର ଦେଇ ଦୂର ବିଦେଶକୁ ବାଣିଜ୍ୟ କରିବାକୁ ଯାଇଥିଲେ ବୋଲି ଅନୁମାନ କରାଯାଏ । ମଙ୍ଗଳାଙ୍କୁ ପୂଜିବା ଫଳରେ ଖୁଲଣା ସୁନ୍ଦରୀ ସମସ୍ତ ପ୍ରକାର ବିପଦରୁ ମୁକ୍ତ ହେବା ସହିତ ସ୍ୱାମୀ ଓ ପୁତ୍ର କୁଶଳରେ ବିଦେଶରୁ ଫେରି ଆସିଥିବା କଥା ଏହି ପୁରାଣର ବିଷୟବସ୍ତୁ ।

ପ୍ରାଚୀନ କଳିଙ୍ଗର ସାମୁଦ୍ରିକ ବାଣିଜ୍ୟ ସଂପର୍କରେ ଇତିହାସରୁ ଯେତିକି ଉପାଦାନ ସଂଗ୍ରହ ନ ହୋଇଛି ବରଂ ତା'ଠୁ ଅଧିକ ଉପାଦାନ ଆମର ଲୋକଗୀତ, ଲୋକକାହାଣୀ, ପୁରାଣ ଓ କିମ୍ବଦନ୍ତୀରୁ ମିଳିଥାଏ । ଓଡ଼ିଶାରେ ପ୍ରଚଳିତ ଅନେକ ପୁରାଣର କିଛି ପ୍ରସଙ୍ଗରୁ ଇତିହାସକୁ ଉଦ୍ଧାର କରାଯାଇ ପ୍ରାଚୀନ ନୌବାଣିଜ୍ୟ ସଂପର୍କରେ ବହୁ ତଥ୍ୟ ହସ୍ତଗତ ହୋଇଛି । **'ତଅପୋଇ' (ଖୁଦୁରୁକୁଣୀ ବ୍ରତ), ଖୁଲଣା ସୁନ୍ଦରୀ (ମଙ୍ଗଳା ଓଷା), କାର୍ତ୍ତିକ ମାହାତ୍ମ୍ୟ, ବୃନ୍ଦାବତୀ ଓ ଜଳନ୍ଧର ପ୍ରସଙ୍ଗ, 'କାଞ୍ଜି ଅଁଳା ପର୍ବ', ଦ୍ୟୁତିବାହନ ଓଷା** ଭଳି ପୌରାଣିକ ଆଧାରରୁ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସଂପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୌଗୋଳିକ ଉପାଦାନ ସଂଗ୍ରହ କରାଯାଇଛି । ସେହିଭଳି ଓଡ଼ିଶାର ଗ୍ରାମାଞ୍ଚଳରେ **'କୁହୁକ ମଣ୍ଡଳ ଚଢ଼େଇ'** ଓ **'ଚାରି ମହାଜନ ପୁଅ କହାଣୀ'** ଭଳି ବୋଇତ ଓ ସାମୁଦ୍ରିକ ବାଣିଜ୍ୟ ସଂକ୍ରାନ୍ତ ଲୋକକଥା ଆମର ପ୍ରାଚୀନ ନୌବାଣିଜ୍ୟ ପରଂପରା ସଂପର୍କରେ ଅନେକ ତଥ୍ୟ ପ୍ରଦାନ କରିଥାଏ । ଏହାବ୍ୟତୀତ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାକୁ ଉଜ୍ଜୀବିତ କରିବା ପାଇଁ ଆଜି ବି ଓଡ଼ିଶାର ପୁରପଲ୍ଲୀରେ ଅନେକ ଲୋକଗୀତ, ଢଗଢମାଳି, ପହଳି ପ୍ରଚଳିତ ଅଛି । ସେହିସବୁ ପୁରାଣ, ଓଷାବ୍ରତ, ଲୋକକାହାଣୀ, ଲୋକଗୀତ, ପ୍ରହେଳିକା, ଢଗଢମାଳି ଆମ ପ୍ରାଚୀନ ନୌବାଣିଜ୍ୟ ସଂପର୍କରେ ବହୁ କଥା ବଖାଣିଥା'ନ୍ତି ।

ପ୍ରାଚୀନ ଓଡ଼ିଆ ସାଧବମାନଙ୍କ ବୋଇତ ଯାତ୍ରାର ସ୍ମୃତିକୁ ଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ଏବେ ବି ଓଡ଼ିଶାର ପୁରପଲ୍ଲୀରେ କାର୍ତ୍ତୀକ ମାସରେ କାର୍ତ୍ତୀକ ବ୍ରତ ପାଳନ କରାଯିବା ସହ ପୂର୍ଣ୍ଣିମାର ପୂର୍ବ ପାଞ୍ଚଦିନକୁ **ପଞ୍ଚୁକ ବ୍ରତ** ଭାବେ ପାଳନ କରାଯାଇଥାଏ । କାର୍ତ୍ତୀକ ପୂର୍ଣ୍ଣମୀ ଦିନ ଗାଁର ଝିଅ, ବୋହୂମାନେ ସୋଲ, କାଗଜ ଓ କାଠ ନିର୍ମିତ ଡଙ୍ଗା ନିକଟସ୍ଥ ନଦୀ, ପୋଖରୀରେ ଭସାଇଥା'ନ୍ତି । ଏହି ଦିନ **'ବୋଇତ ବନ୍ଦାଣ'** ଉତ୍ସବ ପାଳନ କରାଯାଇଥାଏ । ଡଙ୍ଗା ଭସାଇଲା ବେଳେ ସ୍ତ୍ରୀଲୋକମାନେ କହନ୍ତି–

**"ଆଜା ମା ବୋଇ**
**ପାନ ଗୁଆ ଖାଇ**
**ପାନ ଗୁଆତକ ତୋର**
**ମାସକ ଧରମ ମୋର ।"**

ଆଜି ବି ଉପକୂଳ ଓଡ଼ିଶାର ଗାଁଗହଳିରେ କାର୍ତ୍ତୀକ ମାସର ଆରଂଭରୁ କେତେକ ଘରେ ଗୋଟିଏ ବାଉଁଶ ପୋତି, ତା ଉପରେ ଛିଦ୍ର ଥିବା ଏକ ମାଟି ହାଣ୍ଡିରେ ଏକ ଅଖଣ୍ଡ ଦୀପ ସ୍ଥାପନ କରାଯାଇଥାଏ । ଏହାକୁ **'ଆକାଶ ଦୀପ'** କୁହାଯାଏ । ଛିଦ୍ରଯୁକ୍ତ ହାଣ୍ଡିଟିକୁ ପ୍ରତିଦିନ ଦଉଡ଼ିରେ ତଳକୁ ଖସାଇ ସନ୍ଧ୍ୟା ସମୟରେ ଦୀପରେ ତେଲ ଦେଇ ଅଗ୍ନି ସଂଯୋଗ କରି ପୁଣି ଉପରକୁ ଉଠାଇ ଦିଆଯାଏ । ଏହି ଦୀପ କେବଳ ରାତି ସମୟରେ ଜଳେ । ନଦୀରେ ରାତି ବେଳେ ଯାଉଥିବା ନାବିକ (ସାଧବ)ମାନଙ୍କୁ ଜନବସତିର ସନ୍ଧାନ ଦେବା ଉଦ୍ଦେଶ୍ୟରେ ଏହି 'ଆକାଶଦୀପ' ଜଳାଯାଇଥାଏ । ଓଡ଼ିଆମାନଙ୍କର ଏହି 'ଆକାଶଦୀପ' ପରିକଳ୍ପନା ହିଁ ପରବର୍ତ୍ତୀ ସମୟରେ ସମୁଦ୍ରରେ ଯାତ୍ରା କରୁଥିବା ନାବିକମାନଙ୍କ ପାଇଁ ସ୍ଥଳଭାଗର ଅନୁସନ୍ଧାନ ପାଇଁ **'ବତୀଘର'** *(light house)*କୁ ଜନ୍ମ ଦେଇଛି ।

କାର୍ତ୍ତୀକ ମାସରେ ଗାଁର କୁମାରୀମାନେ ବୃନ୍ଦାବତୀଙ୍କ ନିକଟରେ ମୁରୁଜ ପକାଇଥା'ନ୍ତି । କାର୍ତ୍ତୀକ ଅମାବାସ୍ୟା ରାତିରେ ଗାଁର କୁମାରୀମାନେ ମୁରୁଜରେ ଏକ ବୋଇତର ଚିତ୍ର ଅଙ୍କନ କରିଥା'ନ୍ତି । ପରଦିନ ସକାଳୁ ଏହାକୁ ଏହି ଚିତ୍ର ବୋଇତକୁ ବନ୍ଦାପନା କରାଯାଇଥାଏ । ଏପରି କରିବାର ଅର୍ଥ, ଅତୀତରେ ସାଧବମାନେ ନଦୀ ପଥରେ ଯାଇ ଦେଶର ବିଭିନ୍ନ ଅଞ୍ଚଳରୁ ବିଦେଶକୁ ନେବାଭଳି ଜିନିଷ ସଂଗ୍ରହ କରୁଥିଲେ ଏବଂ ଅମାବାସ୍ୟା ଦିନ ଫେରି ଆସୁଥିଲେ । ଗାଁ କୂଳରେ ବୋଇତ ଲାଗିଲେ ସ୍ତ୍ରୀଲୋକମାନେ ଯାଇ ବନ୍ଦାପନା କରୁଥିଲେ । ଏ ସମସ୍ତ ପ୍ରସଙ୍ଗ ଆମ ଅତୀତର ନୌବାଣିଜ୍ୟ ଇତିହାସକୁ ସ୍ମରଣ କରାଇଥାଏ ।

ଏବେ କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀର ପ୍ରବାହ ସଂପର୍କରେ ସାମାନ୍ୟ ଆଲୋଚନା କରାଯାଇପାରେ । କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ ନଦୀର ସବୁଠୁ ପୁରୁଣା ନଦୀ ଘାଟ, **ମାନପୁର ବୈତରଣୀ ଘାଟ** ଆଜି ବି ତାଜା ହୋଇ ରହିଛି । ଏହି ଘାଟଟି ରାଜକନିକା ବ୍ଲକ୍‌ରେ ବୈତରଣୀ ନଦୀ କୂଳରେ ଅବସ୍ଥିତ । ଏହାର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲା ଚାନ୍ଦବାଲି ବ୍ଲକ୍‌ର ଆରଡ଼ି ଆଖଣ୍ଡଳମଣି ପୀଠ ରହିଛି । ବୈତରଣୀ ନଦୀରେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ପାର୍ଶ୍ୱରେ ତରାସ ଗ୍ରାମ ପଞ୍ଚାୟତ ଗୁଆଳି ଗାଁରେ ଅନ୍ୟ ଏକ ପ୍ରାଚୀନ ତଙ୍ଗାଘାଟ ଥିବାବେଳେ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ପାର୍ଶ୍ୱରେ ଏକ ତଙ୍ଗାଘାଟ ରହିଥିଲା । ଅତୀତରେ **ଗୁଆଳି ଘାଟ ଓ ଚାନ୍ଦବାଲି**



**କାଳିଭଞ୍ଜଡିହା ଫରେଷ୍ଟ ବିଟ୍ ହାଉସ୍ ସାମ୍ନାରେ ଏକ ଶୀତଦିନିଆ ଅପରାହ୍ନରେ ଲେଖକ**

ଘାଟର ବେଶ୍ ପ୍ରସିଦ୍ଧି ରହିଥିଲା । ତେବେ ଚାନ୍ଦବାଲିଠାରେ ବୈତରଣୀ ପୋଲ ହୋଇଯିବା ପରେ ଏହି ଦୁଇ ଘାଟ ସେମାନଙ୍କର ଗୁରୁତ୍ୱ ହରାଇଛନ୍ତି । ତଥାପି ଆଜିର ଦିନରେ ଏହି ଦୁଇ ନଦୀଘାଟରେ ଗାଁଗହଳିର ଲୋକେ କାଁଭାଁ ନଦୀ ପାର ହେଉଥିବାର ଦୃଶ୍ୟମାନ ହୋଇଥାଏ ।

ବୈତରଣୀ ନଦୀ କୂଳରେ ଅବସ୍ଥିତ ତାଙ୍ଗମାଳ ପଞ୍ଚାୟତ ଅନ୍ତର୍ଗତ **'ନଳିତାପାଟିଆ'** ଗାଁଟିର ଏକ ନିଆରା ପରିଚୟ ରହିଛି । ଏହି ସ୍ଥାନରେ ବୈତରଣୀ ନଦୀ ସହିତ ବ୍ରାହ୍ମଣୀ ମିଳିତ ହୋଇ ଏକ ବିଶାଳ ମୁହାଁଣ ସୃଷ୍ଟି ହୋଇଛି । ଏହା ଏକ ପ୍ରାଚୀନ ନଦୀ ବନ୍ଦର ଭାବେ ପରିଚିତ ଥିଲା ଏବଂ ଆଜିର ଦିନରେ ମଧ୍ୟ ଏଠାରେ ଏକ ବାଣିଜ୍ୟିକ ଜେଠି ରହିଛି । ତତ୍କାଳୀନ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରୁ ରପ୍ତାନୀ ସାମଗ୍ରୀ ଛୋଟଛୋଟ ଡଙ୍ଗାଯୋଗେ ସଂଗ୍ରହ କରି ନଳିତାପାଟିଆ ଜେଠିରେ ମହଜୁଦ୍ କରାଯାଉଥିଲା । ପରେ ଏଠାରୁ **ଧାମରା** ଓ **ତାଳଚୁଆ** ବନ୍ଦର ମାଧ୍ୟମରେ ବଙ୍ଗୋପସାଗର ଦେଇ ବିଦେଶକୁ ରପ୍ତାନୀ କରାଯାଉଥିଲା ।

କେନ୍ଦ୍ରାପଡ଼ା ଜିଲ୍ଲାର **ଭିତରକନିକା ଜାତୀୟ ଉଦ୍ୟାନ** ଓ ତାଳଚୁଆ-ଧାମରା ସନ୍ନିକଟ ବୈତରଣୀ-ବ୍ରାହ୍ମଣୀ ନଦୀର ମଧ୍ୟ ଭାଗରେ ଥିବା ବିଶାଳ ହେନ୍ତାଳ ଜଙ୍ଗଲପୂର୍ଣ୍ଣ ସ୍ଥଳ ଭାଗ (ଦ୍ୱୀପ) **କାଳିଭଞ୍ଜଡ଼ିଆ** ବୈତରଣୀ ନଦୀ ଅବବାହିକାର ଦୁଇ ଅମୂଲ୍ୟ ପ୍ରାକୃତିକ

ସଂପଦଭରା ଦ୍ୱୀପାଞ୍ଚଳ । ବୈତରଣୀ ନଦୀ ଅବବାହିକାର **ଗହୀରମଥା ସାମୁଦ୍ରିକ କଇଁଛ ଅଭୟାରଣ୍ୟ** ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ଏହା କେନ୍ଦ୍ରାପଡ଼ା ଜିଲ୍ଲାର ରାଜସ୍ୱ ଅଞ୍ଚଳ ପରିସରଭୁକ୍ତ । ଗହୀରମଥା ଅଭୟାରଣ୍ୟଟି ପୃଥିବୀର ବିରଳ ଅଲିଭ୍ ରିଡ୍‌ଲେ ସାମୁଦ୍ରିକ କଇଁଛଙ୍କ ଆଶ୍ରୟସ୍ଥଳୀ ଭାବେ ପ୍ରସିଦ୍ଧିଲାଭ କରିପାରିଛି ।

ଅତୀତରେ ଧାମରା ଭଳି **ତାଳଚୁଆ** ଗୋଟିଏ ପ୍ରାକୃତିକ ବନ୍ଦର ଓ ମାଛଧରା କେନ୍ଦ୍ର ଥିଲା । ଭଦ୍ରକ ଜିଲ୍ଲାରେ ଉଭୟ ରେଳପଥ ଓ ସଡ଼କ ପଥର ବିକାଶ ଫଳରେ ଧାମରା ବନ୍ଦର ଦ୍ରୁତ ଗତିରେ ବିକାଶ ହୋଇପାରିଥିବାବେଳେ କେନ୍ଦ୍ରାପଡ଼ା ଜିଲ୍ଲା ପଟୁ ରେଳପଥ ଓ ସଡ଼କ ପଥର ବିକାଶ ନ ଘଟିବା ଫଳରେ ତାଳଚୁଆ ବନ୍ଦରଟିର ବିକାଶ ଘଟିପାରିନାହିଁ । ସୁଖର କଥା, ବର୍ତ୍ତମାନ କେନ୍ଦ୍ରାପଡ଼ାରୁ ସିଧା ତାଳଚୁଆ ପର୍ଯ୍ୟନ୍ତ ସଡ଼କ ପଥ ଦ୍ୱାରା ଯୋଗାଯୋଗ ସଂଭବ ହୋଇଗଲାଣି । କେନ୍ଦ୍ରାପଡ଼ା ଜିଲ୍ଲା ସଦର ମହକୁମାରୁ ତାଳଚୁଆ ମଧ୍ୟରେ **(ଗୋବରୀ, ହଂସୁଆ, ହଂସିଣା, ପାଙ୍ଗଶାଳା, ଖୋଳା, ବ୍ରାହ୍ମଣୀ)** ଯେତେ ନଦୀ ରହିଛି ସବୁ ନଦୀରେ ପୋଲ ନିର୍ମାଣ



**ଭିତରକନିକା ଜାତୀୟ ଅଭୟାରଣ୍ୟରେ ଲେଖକ**

ହୋଇଯିବା ଫଳରେ ସିଧା କଟକରୁ ତାଳଚୁଆକୁ ସଡ଼କ ପଥରେ ପହଞ୍ଚି ହେଉଛି । ନଚେତ୍ ପୂର୍ବରୁ କଟକରୁ ତାଳଚୁଆ ସଡ଼କ ପଥରେ ଯିବା କାର୍ଯ୍ୟଟି ସ୍ୱର୍ଗକୁ ନିଶୁଣି ବାନ୍ଧିବା ଭଳି ଅତି ଅସଂଭବ ଭଳି ମନେ ହେଉଥିଲା । କାରଣ କଟକରୁ କେନ୍ଦ୍ରାପଡ଼ା ମଧ୍ୟରେ ମଧ୍ୟ ଅନେକ ନଦୀ (ମହାନଦୀ, ବିରୂପା, ଗେଙ୍ଗୁଟି, ଗୋବରୀ) ରହିଥିଲା । ଏସବୁ ନଦୀମାନଙ୍କରେ ମଧ୍ୟ ପୋଲ ନିର୍ମିତ ହୋଇ ସାରିଛି । ଆଜି ସେ ଚିତ୍ର ମ୍ଳାନ । କଟକରୁ ଜଣେ ସ୍ଥଳପଥରେ ବାହାରି ଖୁବ୍ ସହଜରେ ରଙ୍ଗଣି-ତାଳଚୁଆରେ ପହଞ୍ଚି ଯାଇପାରୁଛି ।

ବୈତରଣୀ ନଦୀ ଅବବାହିକା ପରିସରଭୁକ୍ତ ଧାମରା ମୁହାଁଣରେ ବଙ୍ଗୋପସାଗରରେ ତତ୍କାଳୀନ କନିକା ରାଜ୍ୟର ସୀମାରେ ଏକ ବାଲୁକା ଦ୍ୱୀପ ରହିଛି । ଏହାର ନାମ **'କନିକା ବାଲି'** *(Kanika Sands)*। ସେହିଭଳି 'କନିକା ବାଲି' ନିକଟରେ ଅନ୍ୟ ଏକ ଟାପୁ ବା ସ୍ଥଳଭାଗ ରହିଛି । ଏହାର ନାମ **'ବୁଢିଆବାଲି'** । ସମୁଦ୍ର ମଧ୍ୟରେ ଥିବା ଏହି ଦୁଇଟି ପ୍ରାକୃତିକ ସ୍ଥଳଭାଗ ଉପରେ କନିକା ରାଜ୍ୟର ଅଧିକାର ରହିଛି । ତେବେ ନିକଟରେ କଲିକତା ବନ୍ଦର କର୍ତ୍ତୃପକ୍ଷ ଏହି ଦୁଇଟି ଦ୍ୱୀପକୁ ନିଜ ଅକ୍ତିଆରକୁ ନେଇଯିବାକୁ ଉଦ୍ୟମ କରିଥିଲେ । ଏହାକୁ ନେଇ ଉଭୟ ଓଡ଼ିଶା ଓ ପଶ୍ଚିମବଙ୍ଗ ସରକାରଙ୍କ ମଧ୍ୟରେ ମୁହାଁମୁହିଁ ପରିସ୍ଥିତି ସୃଷ୍ଟି ହୋଇଥିଲା ।

ଓଡ଼ିଶା ଉପକୂଳର ବଙ୍ଗୋପସାଗରରେ (ତତ୍କାଳୀନ କନିକା ରାଜ୍ୟର ସୀମା ଓ ଧାମରା ମୁହାଁଣରେ) ଅବସ୍ଥିତ ଛୋଟଛୋଟ ପାଞ୍ଚଗୋଟି ଦ୍ୱୀପର ସମାହାରକୁ **ହ୍ୱିଲର ଦ୍ୱୀପପୁଞ୍ଜ** କୁହାଯାଉଥିଲେ ମଧ୍ୟ **ମଇପୁରା ମୁହାଁଣର** ଅନତିଦୂର ପୂର୍ବ ଦିଗରେ ଅବସ୍ଥିତ ତିନୋଟି ଦ୍ୱୀପ ମୁଖ୍ୟତଃ ହ୍ୱିଲର ଦ୍ୱୀପ ଭାବେ ପରିଚିତ । ପୂର୍ବ ବନ୍ଦୋବସ୍ତରେ ରାଜ୍ୟ ସରକାରଙ୍କ ଦ୍ୱାରା ଏହି ଦ୍ୱୀପର ସର୍ବେକ୍ଷଣ କରାଯାଇଥିଲା । ସେ ସମୟରେ ଏହାର ଆୟତନ ୨୭୭·୬୦ ଏକର ଥିଲା । ପରବର୍ତ୍ତୀ ସମୟରେ ଏହାର ଆକାର ବୃଦ୍ଧି ପାଇ ୪୬୫·୦୧ ଏକର ହେଲା । ଗଭୀର ସମୁଦ୍ରକୁ ମାଛ ମାରିବାକୁ ଯାଉଥିବା କନିକା ଅଞ୍ଚଳର ମତ୍ସ୍ୟଜୀବିମାନେ ଏଠାରେ ଆଶ୍ରୟ ନେଇଥା'ନ୍ତି । ଏହି ଦ୍ୱୀପଗୁଡ଼ିକର ସୀମା ନିର୍ଦ୍ଧାରଣ ପାଇଁ ବଡ଼ବଡ଼ ଖମ୍ବ ପୋତାଯାଇଛି । ଏହି ଦ୍ୱୀପପୁଞ୍ଜସମୂହ ଭାରତ ଦେଶର ବୋଲି ଏହି ଖମ୍ବଗୁଡ଼ିକରେ ଅଙ୍କିତ ଅଶୋକଚକ୍ରର ନକ୍ସାରୁ ସ୍ପଷ୍ଟ ହୋଇଥାଏ ।

ପୂର୍ବରୁ କୁହାଯାଇଛି, ବୈତରଣୀ ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ଏକ ଅତି ପବିତ୍ର ନଦୀ । ଏହାର ଅନେକ ପୌରାଣିକ ଓ ଧାର୍ମିକ ଗୁରୁତ୍ୱ ରହିଛି । ଭାରତବର୍ଷର ଗଙ୍ଗା ନଦୀ ଭଳି ବୈତରଣୀ ଓଡ଼ିଶାର ଏକ ପବିତ୍ରତମ ନଦୀ । ବୈତରଣୀ ନଦୀର ପୌରାଣିକ ବିଶେଷତ୍ୱ ଜାଣିବା ଅବସରରେ ମୁଁ ଅଧିକାଂଶ ଭାରତୀୟ ହିନ୍ଦୁ ପୁରାଣଶାସ୍ତ୍ରର ପୁନର୍ପାଠ କରିବାର ସୁଯୋଗ ପାଇଥିଲି । ଯଦିଓ ପୁରାଣଶାସ୍ତ୍ର ଅଧ୍ୟୟନ କିମ୍ବା ପଠନ ଓ ଦେବଦେବୀ ପୂଜନ, ଧର୍ମକାର୍ଯ୍ୟରେ ମୋର ବ୍ୟକ୍ତିଗତ ରୁଚି

ନଥାଏ ତେବେ ବୈତରଣୀର ପୌରାଣିକ ଗୁରୁତ୍ୱ ସଂପର୍କରେ ଜାଣିବା ଏ ଗବେଷଣାର ଅନ୍ୟ ଏକ ପ୍ରମୁଖ ଦିଗ ଥିଲା । ସେହି ଦାୟରେ ମୁଁ ଅଧିକାଂଶ ହିନ୍ଦୁ ପୁରାଣଶାସ୍ତ୍ର ପଢ଼ିବାର ସୁଯୋଗ ପ୍ରାପ୍ତ ହେଲି ଏବଂ ବୈତରଣୀ ନଦୀର ମାହାତ୍ମ୍ୟ ସଂପର୍କରେ ସମ୍ୟକ ଜ୍ଞାନ ହାସଲ କରିପାରିଛି । ବ୍ୟାସଦେବଙ୍କ ରଚିତ ଅଷ୍ଟାଦଶ ପୁରାଣର ଓଡ଼ିଆ ଅନୁବାଦକୁ ତନ୍ନତନ୍ନ କରି ପଠନ କରିବା ଅବସରରେ ଓଡ଼ିଆ ପୁରାଣ ସଂପର୍କରେ କିଛିକିଛି ଧାରଣା ହାସଲ କରିପାରିଛି । ଧର୍ମଗ୍ରନ୍ଥ ଷ୍ଟୋର୍ ପ୍ରକାଶ କରିଥିବା ସମସ୍ତ ପୁରାଣରୁ ବୈତରଣୀ ସଂପର୍କରେ ଅଧ୍ୟୟନ ମୋତେ ବେଶ୍ ସହାୟକ ହୋଇଛି ।

ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ବସବାସ କରୁଥିବା ଲୋକେ କୃଷି ଉପରେ ଅଧିକ ନିର୍ଭରଶୀଳ । ଧାନକୁ ଛାଡ଼ିଲେ ବୈତରଣୀ ଅବବାହିକା ଅଞ୍ଚଳରେ ଅନ୍ୟାନ୍ୟ ଅର୍ଥକରି ଫସଲ ଯଥା- ମୁଗ, ବିରି, କୋଳଥ, ମାଣ୍ଡିଆ, ଗହମ, ଯଅ, ଆଖୁ ଭଳି ଶସ୍ୟ ଓ ରବି ଜାତୀୟ ଫସଲ ହେଉଥିବାବେଳେ ସୋରିଷ, ରାଶି, ସୂର୍ଯ୍ୟମୁଖୀ, ଚିନାବାଦାମ୍ ଭଳି ତୈଳବୀଜ ଫସଲ ହୋଇଥାଏ । ସେହିଭଳି ବୈତରଣୀ ଜଳକୁ ବ୍ୟବହାର କରି କେନ୍ଦୁଝର, ମୟୂରଭଞ୍ଜ, ପଶ୍ଚିମସିଂହଭୂମି (ଝାଡ଼ଖଣ୍ଡ), ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ଚାଷୀମାନେ ବିପୁଳ ପରିମାଣରେ ପନିପରିବା ଫସଲ ଯଥା-କୋବି, ପୋଟଳ, ଜହ୍ନି, ଭେଣ୍ଡି, କଲରା, କାଙ୍କଡ, ପୋଇ, ଶାଗ, ଆଳୁ, ଲଙ୍କା, ବାଇଗଣ, ଟମାଟର, ବିନ୍, କୁନ୍ଦୁରି, କନ୍ଦମୂଳ ଚାଷ କରିଥା'ନ୍ତି ।

ବୈତରଣୀ ନଦୀରୁ ମୁଖ୍ୟତଃ ମଧୁର ମାଛ ଏବଂ ସମୁଦ୍ର-ନଦୀ ମୁହାଁଣ ଅଞ୍ଚଳର (ଧାମରା ଓ ତାଳଚୁଆ ମୁହାଁଣ) ଲୁଣି ମାଛ ମିଳିଥାଏ । ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ କେନ୍ଦୁଝରର ଗୋନାସିକାରୁ ଆରଂଭ କରି ଧାମରା ମୁହାଁଣ ଯାଏ ବିଭିନ୍ନ ସ୍ଥାନରୁ ପ୍ରତିଦିନ ପ୍ରଚୁର ମାତ୍ରାରେ ଉଭୟ ଲୁଣି ଓ ମଧୁର ମାଛ ଧରାଯାଇଥାଏ । ଓଡ଼ିଶାର ଚିଲିକା ସମେତ ଅନ୍ୟାନ୍ୟ ଜଳଭଣ୍ଡାର, ସମୁଦ୍ର ମୁହାଁଣରୁ ଯେଉଁ ପରିମାଣର ମାଛ ଧରାଯାଇଥାଏ ତାହାର ସିଂହଭାଗ କେବଳ ବୈତରଣୀର ଧାମରା ମୁହାଁଣରୁ ଧରାଯାଇଥାଏ । ଧାମରା ମତ୍ସ୍ୟ ପୋତାଶ୍ରୟ *(Dhamara Fishing Harbour)* ଓ ତାଳଚୁଆ ମତ୍ସ୍ୟ ପୋତାଶ୍ରୟ *(Talchua Fishing Harbour)*ରୁ ଓଡ଼ିଶାର ରେକର୍ଡ ପରିମାଣର ମାଛ ବିଦେଶକୁ ରପ୍ତାନୀ ହୋଇଥାଏ । ଏହା ସହିତ ବୈତରଣୀ ନଦୀର ଚଂପୁଆ, ଆନନ୍ଦପୁର, ଘସିପୁରା, ହାଟଡ଼ିହି, ଆଖୁଆପଦା, ତିହିଡ଼ି, ଧାମନଗର, ଭଣ୍ଡାରୀପୋଖରୀ, ଯାଜପୁର, ମଙ୍ଗଳପୁର, ଦଶରଥପୁର, କୟାଁଗୋଲା, ଚାନ୍ଦବାଲି ଆଦି ସ୍ଥାନରୁ ମଧ୍ୟ ମଧୁର ମାଛ ସ୍ଥାନୀୟ ଅଞ୍ଚଳର ଚାହିଦା ମେଣ୍ଟେଇବାରରେ ସକ୍ଷମ ହୋଇଥାଏ । ବୈତରଣୀର ଧାମରା ଓ ତାଳଚୁଆ ସମୁଦ୍ର ମୁହାଁଣରୁ ପ୍ରତିଦିନ ଟନ୍ ଟନ୍ ସାମୁଦ୍ରିକ ମାଛ ଧରାଯାଇ ବିଦେଶକୁ ରପ୍ତାନୀ କରାଯାଇଥାଏ । ବିଦେଶରେ ଧାମରା ଓ ତାଳଚୁଆ ଇଲିଶି, ପାମ୍ଫ୍ଲେଟ୍ ଶୁଖୁଆର ନିଆରା ଚାହିଦା ରହିଛି । ଚାନ୍ଦବାଲି,

ଧାମରା, ଚନ୍ଦନିପାଳ, ନଳିତାପାଟିଆ, ତାଳଚୁଆରେ ବଡ଼ବଡ଼ ଶୁଖୁଆ ଖଳା ଓ ମାଛ ବଜାର ରହିଛି । ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଚା', ରବର, କଫିଠାରୁ ଆରମ୍ଭ କରି ମକା, କପା, ଚିନାବାଦାମ୍, ନଡ଼ିଆ ପର୍ଯ୍ୟନ୍ତ ଅନେକ ଅର୍ଥକରୀ ଫସଲ ଚାଷ କରାଯାଉଛି । ତରମାକାନ୍ତର ଚା', କେନ୍ଦୁଝରର କଫି ଓ କେଶରୀର ରବର ଚାଷ ବୈତରଣୀ ଅବବାହିକା କୃଷି ଇତିହାସର ଗୋଟିଏ ଗୋଟିଏ ସଫଳ କାହାଣୀ ।

ବୈତରଣୀ-ବ୍ରାହ୍ମଣୀର ନିମ୍ନଅବବାହିକା ତ୍ରିକୋଣଭୂମି ଅଞ୍ଚଳ ଭାବେ ପରିଚିତ କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ କୃଷିର ପର୍ଯ୍ୟାପ୍ତ ସୁଯୋଗ ରହିଛି । ଏଠାରେ ମୁଖ୍ୟ ନଦୀ ସହିତ ଶହଶହ ସଂଖ୍ୟାରେ ଛୋଟବଡ଼ ନଳା, ଜୋର, ଗଳିଆ ଜାଲ ଭଳି ବିଛେଇ ହୋଇ ରହିଛନ୍ତି । ମାତ୍ର ଏଭଳି ଜଳଉତ୍ସ *(Creeks)* ମାନଙ୍କର ଉପଯୁକ୍ତ ବିନିଯୋଗ ହୋଇପାରୁ ନଥିବାରୁ ଏ ଅଞ୍ଚଳରେ କୃଷିର ବିକାଶ ସଂଭବପର ହୋଇପାରୁନାହିଁ ।

ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ଅଞ୍ଚଳରେ ଅନେକ ଛୋଟବଡ଼ ନଦୀ, ନାଳ, ଗଳିଆ, ଜୋର ମୁଖ୍ୟନଦୀ ସହିତ ସଂଯୁକ୍ତ ହୋଇଛନ୍ତି । ବିଶେଷକରି କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା, ରାଜନଗର ଏବଂ ଭଦ୍ରକ ଜିଲ୍ଲାର ଧାମନଗର, ଚାନ୍ଦବାଲି, ତିହିଡ଼ି, ବାସୁଦେବପୁର ଅଞ୍ଚଳରେ ବୈତରଣୀ ଓ ଏହାର ଉପନଦୀମାନଙ୍କ ସହିତ ବହୁତ ଛୋଟଛୋଟ ନଳା *(Creeks)* ସଂଯୁକ୍ତ ହୋଇଛନ୍ତି । ଏହି ନଳାଗୁଡ଼ିକର ଜଳ ସମୁଦ୍ର ଜୁଆର ଉପରେ ନିର୍ଭର କରିଥା'ନ୍ତି । ବୈତରଣୀର ଧାମରା ଓ ତାଳଚୁଆ ମୁହାଁଣରେ ସମୁଦ୍ରରେ ଜୁଆର ହେଲେ ବୈତରଣୀ ମୁହଁ ଫୁଲିଯାଏ । ବୈତରଣୀର ଗର୍ଭ ଫୁଲିବା ଫଳରେ ବୈତରଣୀ ସହିତ ସଂଯୁକ୍ତ ହୋଇଥିବା ଏସବୁ ନଳା (ଗଳିଆ)ରେ ପାଣି ଭର୍ତ୍ତି ହୋଇଯାଏ । ବୈତରଣୀରୁ ବାହାରିଥିବା ଏସବୁ ନଳା ନିକଟସ୍ଥ ବିସ୍ତୀର୍ଣ୍ଣ ଧାନକ୍ଷେତ ମଧ୍ୟକୁ ପ୍ରବେଶ କରିଥା'ନ୍ତି । ଏହିସବୁ ନଳାଗୁଡ଼ିକ ସମୁଦ୍ର ଜୁଆର ଉପରେ ନିର୍ଭର କରୁଥିବାରୁ ଜୁଆର ସମୟରେ ଫୁଲିଥା'ନ୍ତି ଏବଂ ଜୁଆର ଛାଡ଼ିଗଲେ ଏସବୁ ଶୁଖିଯାଆନ୍ତି । ଏମିତି ଶତାଧିକ ସଂଖ୍ୟାରେ ନଳା ବୈତରଣୀ ନଦୀର ନିମ୍ନ ଅବବାହିକାରେ ଦେଖିବାକୁ ମିଳେ । କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ ଥିବା ଏସବୁ ନଳା (ଗଳିଆ)ର ଉପଯୁକ୍ତ ବ୍ୟବହାର କରାଯାଇପାରିଲେ ଏ ଅଞ୍ଚଳରେ କୃଷିକାର୍ଯ୍ୟର ବ୍ୟାପକ ବିକାଶ ଘଟିପାରନ୍ତା ।

ଏସବୁ ନଳା ନଦୀର ଯେଉଁ ସ୍ଥାନରେ ସଂଯୋଗ କରିଛନ୍ତି, ସେହିସବୁ ମୁହାଁଣରେ ଛୋଟ ଚେକ୍ ଡ୍ୟାମ୍ (ଚେକ୍ ଗେଟ୍) ନିର୍ମାଣ କରାଯାଇ ନଦୀ ଜଳକୁ ସଂରକ୍ଷଣ କରି ରଖିପାରିଲେ ପ୍ରତିକୂଳ ପରିସ୍ଥିତିରେ ଉକ୍ତ ମଧୁର ଜଳ ଚାଷ ପାଇଁ ବେଶ୍ ଉପଯୋଗୀ ହୋଇପାରିବ । ଗ୍ରୀଷ୍ମ ଋତୁରେ ବୈତରଣୀର ଏହି ନିମ୍ନ ଭାଗରେ ଜଳ ଲୁଣା ହୋଇଯାଏ । ଯଦି ଏହା ପୂର୍ବରୁ ବୈତରଣୀର ଜଳକୁ ଉକ୍ତ ନଳାମାନଙ୍କରେ ସଂରକ୍ଷିତ କରି ରଖାଯାଇ ପାରନ୍ତା ତେବେ ଖରିଫ୍ ବ୍ୟତୀତ ରବି ଋତୁରେ

ଏହି ଜଳ ଚାଷୀମାନଙ୍କୁ ସହାୟକ ହୋଇପାରନ୍ତା । ଏଥିପାଇଁ ପ୍ରଶାସନିକ ଇଚ୍ଛାଶକ୍ତିର ଆବଶ୍ୟକତା ରହିଛି ।

ସମଗ୍ର ଓଡ଼ିଶାର ୧୫ ପ୍ରତିଶତ ନିର୍ମାଣ ଶିଳ୍ପ କେବଳ ବୈତରଣୀ ନଦୀର ବାଲି *(Sand minerals of river Baitaranee)* ଉପରେ ନିର୍ଭର କରିଥାଏ । ବୈତରଣୀ ନଦୀର ଅଧିକାଂଶ ଗର୍ଭ ପଥରୁଆ ଶଯ୍ୟା ହୋଇଥିବାରୁ ଏହାର ବାଲି ନିର୍ମାଣ ପାଇଁ ଅଧିକ ଉପଯୋଗୀ ହୋଇଥାଏ । ଗୋନାସିକାଠାରୁ ଆରଂଭ କରି ଧାମରା ଯାଏ ବୈତରଣୀ ନଦୀ ଶଯ୍ୟାରେ ରହିଛି ହଜାର ହଜାର ସଂଖ୍ୟାରେ ବାଲି ଘାଟ । ଏହି ବାଲିଘାଟମାନଙ୍କରୁ ଉତ୍ପନ୍ନ ହେଉଥିବା ବାଲି ଉପରେ ଅବବାହିକାର ଅଧିବାସୀମାନେ ନିର୍ଭର କରିଥା'ନ୍ତି ।

ପୃଥିବୀର ବିଭିନ୍ନ ଭାଗରେ ପ୍ରବାହିତ ହୋଇଥିବା ନଦନଦୀ ମୁଖ୍ୟତଃ ସେହି ଅଞ୍ଚଳର ସଭ୍ୟତା, ସଂସ୍କୃତି, ସମାଜ, ପରଂପରା ଓ ଜୀବନଶୈଳୀକୁ ବିଶେଷ ଭାବେ ପ୍ରଭାବିତ କରିଥାଏ । **ନଦୀମାନଙ୍କର ଆଚରଣ ଓ ପ୍ରବହମାନତାର ଲକ୍ଷଣକୁ ନେଇ ସଭ୍ୟତାର ରୂପରେଖ ପ୍ରସ୍ତୁତ ହୋଇଥାଏ** । ଚୀନ୍‌ର ୟାଙ୍ଗ୍‌ସିକିୟାଂ, ମିଶରର ନୀଳନଦୀ, ମେସୋପୋଟାମିଆଁର ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍, ଭାରତର ସିନ୍ଧୁ ଓ ଗଙ୍ଗା ନଦୀ ସଭ୍ୟତା ଭଳି 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ଅତି ପ୍ରାଚୀନ ବୋଲି କୁହାଯାଏ ।

ଭାରତର ସିନ୍ଧୁ ଓ ଗଂଗା ନଦୀ ସଭ୍ୟତାଠାରୁ ବୈତରଣୀ ସଭ୍ୟତା ଅତି ପ୍ରାଚୀନ ବୋଲି ବିଭିନ୍ନ ଗବେଷଣାରୁ ଜଣାପଡ଼ିଛି । ଗଙ୍ଗାଠାରୁ ବୈତରଣୀକୁ ଏଇଥିପାଇଁ ପ୍ରାଚୀନ କୁହାଯାଉଛି, କାରଣ ଗଙ୍ଗା ନଦୀର ଉତ୍ପତ୍ତି ସ୍ଥଳ **ହିମାଳୟ ପର୍ବତମାଳା** ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ **ପୂର୍ବଘାଟ ପର୍ବତମାଳା (କେନ୍ଦୁଝର ମାଳଭୂମି)**ର ବହୁ ପରେ ସୃଷ୍ଟି ହୋଇଛି । ଆମେ ଆଜି ଯେଉଁଠି ହିମାଳୟ ଦେଖୁଛୁ ଅତୀତରେ ତାହା ଏକ ବିଶାଳ ହ୍ରଦ ଥିଲା । ଆଗ୍ନେୟ ଉଦ୍‌ଗୀରଣ ଓ ଭୂସ୍ଖଳନ ପ୍ରକ୍ରିୟାରେ ହିମାଳୟ ସୃଷ୍ଟି ହୋଇଛି । ମାତ୍ର ହିମାଳୟ ସୃଷ୍ଟି ହେବାର ବହୁ ପୂର୍ବରୁ ଭାରତରେ ପୂର୍ବଘାଟ ପର୍ବତମାଳା, ବିନ୍ଧ୍ୟ ପର୍ବତମାଳା ସୃଷ୍ଟି ହୋଇ ସାରିଥିଲା ବୋଲି କୁହାଯାଉଛି । ଏଣୁ ବୈତରଣୀ ନଦୀ ସ୍ୱାଭାବିକ ଭାବେ ଗଙ୍ଗାଠାରୁ ପୁରୁଣା ବୋଲି କୁହାଯାଇପାରିବ । ଏହାଛଡ଼ା ପୁରାଣରେ ମଧ୍ୟ ବୈତରଣୀକୁ ଗଙ୍ଗାଠାରୁ ପ୍ରାଚୀନ ବୋଲି ଉଲ୍ଲେଖ କରାଯାଇଛି । ଗଙ୍ଗାଠାରୁ ବୈତରଣୀ ନଦୀ ବାର ବ୍ରହ୍ମ ବର୍ଷ ଜ୍ୟେଷ୍ଠ ବୋଲି ଗରୁଡ଼ ପୁରାଣରେ ଉଲ୍ଲେଖ ରହିଛି ।

ଆଜି ଦିଲ୍ଲୀରେ ଯମୁନା ନଦୀର ଅବସ୍ଥା ଯାହା କିଏ କହିବ ଆସନ୍ତାକାଲି ଓଡ଼ିଶାର ଗଙ୍ଗା କୁହାଯାଉଥିବା ପୁଣ୍ୟତୋୟା ବୈତରଣୀର ଅବସ୍ଥା ସେଭଳି ନହେବ? ସମଗ୍ର ଦିଲ୍ଲୀ ମହାନଗରୀ ସମେତ ଏଠାରେ ଗଢି ଉଠିଥିବା ଶିଳ୍ପାନୁଷ୍ଠାନମାନଙ୍କର ବର୍ଜ୍ୟବସ୍ତୁରେ ପୋତି ହୋଇ ଏକ ନାଳ ପାଲଟିଛି କୃଷ୍ଣପ୍ରିୟା, ଯମୁନା ନଦୀ । ଅତୀତରେ ଅନେକ ଚିରସ୍ରୋତା ନଦୀ ସମୟ ସୁଅରେ

ମରିହଜି ଯାଇଛନ୍ତି । ନଦୀମାନଙ୍କ ହତ୍ୟା ପ୍ରକ୍ରିୟା ଗତ ଦୁଇ ଦଶନ୍ଧି ମଧ୍ୟରେ ଉତ୍କଟ ହୋଇଛି ।

ଦ୍ରୁତ ଶିଳ୍ପାୟନ ଓ ହୃଦୟଶୂନ୍ୟ ଖଣି ଖନନ ଫଳରେ ଦେଶର ଅଧିକାଂଶ ନଦୀ କ୍ରମେ ନଳାରେ ପରିଣତ ହୋଇ ଏ ଧରା ପୃଷ୍ଠରୁ ଉଭେଇ ଗଲେଣି । ନଦୀ ବନ୍ଧ ଯୋଜନା ହେଉକି କଳକାରଖାନାର ବର୍ଜ୍ୟବସ୍ତୁ ଯୋଗୁଁ ଏବେ ଅନେକ ନଦୀ ପୋତି ହୋଇଗଲେଣି । ସମୟ ସୁଅରେ ଦେଶରୁ ଅନେକ ନଦୀ ସବୁଦିନ ପାଇଁ ମରିହଜି ଗଲେଣି । ଯମୁନା ନଦୀ ହେଉଛି ଏହାର ଏକ ଜ୍ୱଳନ୍ତ ଉଦାହରଣ । ଆମେ ବେଶିବାଟ ଯିବାନି । ଓଡ଼ିଶାରେ ଏଭଳି ଅନେକ ଉଦାହରଣ ରହିଛି । ଭୁବନେଶ୍ୱରର ଗନ୍ଧବତୀ, କୋରାପୁଟର କୋଲାବ୍, ପୋଡ଼ାଗଡ଼, କପୁର୍, ମୁରାନ୍, ଚବ୍ରୀ, ତୁରୀ, ଗୁଷ୍ଟାଟ୍, ଭାସ୍କେଲ୍, କେନ୍ଦ୍ରାପଡ଼ାର ସାନବ୍ରାହ୍ମଣୀ, କେନ୍ଦୁଝରର ମାଛକାନ୍ଦଣା, ଅରଡ଼େଇ ଭଳି ଓଡ଼ିଶାର ଅନେକ ଛୋଟବଡ ନଦୀ ଏବେ ଇତିହାସ ପାଲଟିଛନ୍ତି । ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଭଳି ଚିରସ୍ରୋତା ନଦୀମାନଙ୍କର ଏଭଳି ଦଶା ନ ହେବ କିଏ କହିପାରିବ?

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ 'ଜୁଆଙ୍ଗ'ମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦିମ କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ମାତ୍ର ଏହି ନଦୀ ପ୍ରତି ଏବେ ସବୁଆଡୁ ବିପଦ ମାଡ଼ି ଆସିଛି । **ସଂଭବତଃ, ବୈତରଣୀ ହେଉଛି ଓଡ଼ିଶାର ଏକମାତ୍ର ନଦୀ, ଯାହାର ଉପର ଅବବାହିକାରେ ସର୍ବାଧିକ ଖଣିଜ ସଂପଦ ଗଚ୍ଛିତ ରହିଛି ଏବଂ ମାତ୍ରାଧିକ ଶିଳ୍ପକାରଖାନା ଗଢିଉଠିଛି** । ଉପରମୁଣ୍ଡରେ କେନ୍ଦୁଝର, ସୁନ୍ଦରଗଡ଼ ଓ ଯାଜପୁର ଜିଲ୍ଲାର ଅଧିକାଂଶ ଶିଳ୍ପ କାରଖାନା ଓ ଖଣିଖାଦାନ ଯୋଗୁଁ ଏବେ ବୈତରଣୀର ଜଳ ଦୂଷିତ ହେବାରେ ଲାଗିଛି । ଖଣି ବର୍ଜ୍ୟ ଯୋଗୁଁ ଏବେ ବୈତରଣୀ ନଦୀ ଧୀରେଧୀରେ ପୋତିହେବାରେ ଲାଗିଛି ।

ଓଡ଼ିଶାରେ ବ୍ରାହ୍ମଣୀ, ମହାନଦୀ ସମେତ ବୈତରଣୀ ନଦୀର ଜଳ ଉତ୍କଟ ଭାବେ ପ୍ରଦୂଷିତ ହୋଇଛି ବୋଲି 'ଆମ୍ନେଷ୍ଟି ଇଣ୍ଟରନେସନାଲ୍' ନାମକ ଏକ ସଂସ୍ଥା ଉଦ୍‌ବେଗଜନକ ରିପୋର୍ଟ ପ୍ରଦାନ କରିଛି । ବୈତରଣୀର ଜଳ ମଣିଷର ବ୍ୟବହାର ପାଇଁ ଆଉ ଉପଯୁକ୍ତ ହୋଇ ରହିନାହିଁ ବୋଲି ଏହି ସଂସ୍ଥା ପ୍ରକାଶ କରିଛି ।

ବୈତରଣୀ ନଦୀର ବନ୍ୟା ବିଭୀଷିକା ପ୍ରତିବର୍ଷ ନିମ୍ନ ଅବବାହିକାବାସୀଙ୍କ ପାଇଁ ଚିନ୍ତାର କାରଣ ପାଲଟିଥାଏ । ପ୍ରତିବର୍ଷ ବୈତରଣୀରେ ବନ୍ୟା ଆସି ବ୍ୟାପକ ଧନଜୀବନ କ୍ଷୟକ୍ଷତି ଘଟାଇଥାଏ । ବୈତରଣୀରେ ବନ୍ୟା ହେଲେ କେନ୍ଦୁଝର, ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାବାସୀ ବିଶେଷ ଭାବେ ପ୍ରଭାବିତ ହୋଇଥାନ୍ତି । ଏହି ପାଞ୍ଚଗୋଟି ଜିଲ୍ଲାର ପ୍ରାୟ ୫୦୦ରୁ ଉର୍ଦ୍ଧ୍ୱ ଗାଁ ବୈତରଣୀ ନଦୀର କରାଳ ବନ୍ୟାର ଶିକାର ହୋଇଥା'ନ୍ତି ।

ବୈତରଣୀ ନଦୀ 'ଉପର କେନ୍ଦୁଝର'ର ଗୋନାସିକା ପାର୍ବତ୍ୟାଞ୍ଚଳରୁ ବାହାରି କେନ୍ଦୁଝର,

ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ, 'ନିମ୍ନ କେନ୍ଦୁଝର' (ଆନନ୍ଦପୁର ସବଡିଭିଜନ), ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ପ୍ରବାହିତ ହେବାପରେ ବଙ୍ଗୋପସାଗରରେ ପତିତ ହୋଇଛି । ବନ୍ୟା ସମୟରେ କେନ୍ଦୁଝର ଜିଲ୍ଲାର 'ଉପର କେନ୍ଦୁଝର' (ଚଂପୁଆ ଓ କେନ୍ଦୁଝର ଉପଖଣ୍ଡ) *(Upper Kendujhar)* ଅଂଶ ଅପେକ୍ଷା 'ନିମ୍ନ କେନ୍ଦୁଝର' (ଆନନ୍ଦପୁର ଉପଖଣ୍ଡ) *(Lower Kendujhar)* ଅଞ୍ଚଳ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥାଏ ।

ବୈତରଣୀର ଉପରମୁଣ୍ଡ ଅର୍ଥାତ୍ କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡ ଅନ୍ତର୍ଗତ ଚଂପୁଆ, ଯୋଡ଼ା, ଝୁଂପୁରା ବ୍ଲକ୍, କେନ୍ଦୁଝର ଉପଖଣ୍ଡର କେନ୍ଦୁଝର, ଘଟଗାଁ, ସ୍ୱାମ୍‌ପାଟଣା, ବାଂଶପାଳ, ତେଲକୋଇ, ହରିଚନ୍ଦନପୁର, ସାହାରପଡ଼ା ଆଦି ବ୍ଲକ୍, ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ ସବ୍ ଡିଭିଜନ ଅନ୍ତର୍ଗତ କରଞ୍ଜିଆ, ଯଶୀପୁର, ରରୁଆଁ, ଠାକୁରମୁଣ୍ଡା, ଶୁକୁଳି ଆଦି ବ୍ଲକ୍, ମୟୂରଭଞ୍ଜ ଜିଲ୍ଲାର କପ୍ତିପଦା ସବ୍ ଡିଭିଜନ ଅନ୍ତର୍ଗତ ଉଦଳା, କପ୍ତିପଦା ପ୍ରମୁଖ ବ୍ଲକ୍, ସୁନ୍ଦରଗଡ଼ ଜିଲ୍ଲାର ବଣେଇ ସବ୍‌ଡିଭିଜନର କୋଇଡ଼ା ବ୍ଲକ୍ ଏବଂ ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରେ ଲଗାଣ ବୃଷ୍ଟିପାତ ହେଲେ ବୈତରଣୀର ନିମ୍ନ ଅବବାହିକାରେ ବନ୍ୟା ପରିସ୍ଥିତି ଅଧିକ ଜଟିଳ ରୂପ ଧାରଣ କରିଥାଏ । କେନ୍ଦୁଝର ଜିଲ୍ଲାରେ ଚଂପୁଆ, ତୁରୁମୁଙ୍ଗା, ଆନନ୍ଦପୁର ଆଦି ଅଞ୍ଚଳରେ ବନ୍ୟା ସୂଚକ ରହିଛି । ଆନନ୍ଦପୁର ବ୍ୟାରେଜ୍‌ରେ ଜଳସ୍ତର ବୃଦ୍ଧି ପାଇଲେ ବୈତରଣୀର ତଳ ଅଞ୍ଚଳ ପ୍ରତି ଅଧିକ ବିପଦ ଘନେଇଥାଏ । ପ୍ରତିବର୍ଷ ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଘସିପୁରା, ଆନନ୍ଦପୁର ଓ ହାଟଡ଼ିହି ବ୍ଲକ୍‌ରେ ବନ୍ୟାଜଳ ପଶି ବ୍ୟାପକ କ୍ଷୟକ୍ଷତି ଘଟାଇଥାଏ ।

ପୃଥିବୀର ବିଭିନ୍ନ ଦେଶରେ ନଦୀମାନଙ୍କୁ ପୂଜା କରାଯିବାର ପରଂପରା ରହିଛି । ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର, ନର୍ମଦା, ସିନ୍ଧୁ, କ୍ରିଷ୍ଣା, କାବେରୀ, ଗୋଦାବରୀ ନଦୀକୁ ଭାରତୀୟମାନେ ପୂଜା କରିଥା'ନ୍ତି । ସେହିଭଳି ଓଡ଼ିଶାରେ ଋଷିକୁଲ୍ୟା, ବୈତରଣୀ, ପ୍ରାଚୀ ଓ ମହାନଦୀକୁ ମଧ୍ୟ ପୂଜା କରାଯାଇଥାଏ । ନଦୀକୁ ନେଇ ବର୍ଷତମାମ୍ କିଛି ନା କିଛି ଉତ୍ସବ, ପର୍ବପର୍ବାଣି ପାଳିତ ହୋଇଥାଏ । ନଦୀମାନଙ୍କ ସହିତ ସଂପୃକ୍ତ ଅଞ୍ଚଳର ଧାର୍ମିକ ଭାବନା ଯୋଡି ହୋଇ ରହିଥାଏ ।

ଭାରତର ଗଙ୍ଗା, ଯମୁନା, ସରସ୍ୱତୀ, ନର୍ମଦା, ସିପ୍ରା, ଗୋଦାବରୀ ଓ କାବେରୀ ନଦୀମାନଙ୍କୁ **'ସପ୍ତ ପବିତ୍ର ନଦୀ'** ଭାବେ ବର୍ଣ୍ଣନା କରାଯାଇଛି । ଉତ୍ତର ପ୍ରଦେଶ ଆହ୍ଲାବାଦ ସହରର ପ୍ରୟାଗଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ (ପୌରାଣିକ ନଦୀ) ନଦୀ ମିଳିତ ହୋଇ ପ୍ରସିଦ୍ଧ 'ତ୍ରିବେଣୀ ସଂଗମ' ସୃଷ୍ଟି କରିଛନ୍ତି । ଏଠାରେ ପ୍ରତି ୧୨ ବର୍ଷରେ ଥରେ ପ୍ରସିଦ୍ଧ **'କୁଂଭ ମେଳା'** ଅନୁଷ୍ଠିତ ହୋଇଥାଏ । ସମଗ୍ର ପୃଥିବୀରୁ ଲକ୍ଷାଧିକ ଭକ୍ତ ଏଠାକୁ ବୁଡ଼ ପକାଇବାକୁ ଆସିଥା'ନ୍ତି । ଯମୁନା ନଦୀ ଉପକୂଳରେ ଭାରତର ଶ୍ରେଷ୍ଠ ଧାର୍ମିକ ପୀଠସବୁ ରହିଛି । ପୌରାଣିକ ସହର ଭଗବାନ ଶ୍ରୀକୃଷ୍ଣଙ୍କ ନଗରୀ ମଥୁରା, ବୃନ୍ଦାବନ, ଗୋକୁଳ, ଆଗ୍ରା (ତାଜମହଲ), ଦିଲ୍ଲୀ ଭଳି ସହର ଯମୁନା କୂଳରେ ଅବସ୍ଥିତ ।

ସିପ୍ରା ନଦୀଟି ଭାରତର ସବୁଠୁ ପବିତ୍ରତମ ନଦୀ । ଏହାକୂଳରେ ଅନୁଷ୍ଠିତ କୁମ୍ଭ ମେଳାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ହୋଇଥାଏ । ସେହିଭଳି ଗୋଦାବରୀ ନଦୀ 'ଦକ୍ଷିଣ ଭାରତର ଗଙ୍ଗା' ଭାବେ ପରିଚିତ । ପ୍ରତି ବାରବର୍ଷରେ ଥରେ ଗୋଦାବରୀ ନଦୀ କୂଳରେ କୁଂଭ ମେଳା ଅନୁଷ୍ଠିତ ହୋଇଥାଏ । ଭାରତରେ ଚାରିଗୋଟି ସ୍ଥାନରେ ଆୟୋଜିତ କୁଂଭମେଳା ସମଗ୍ର ବିଶ୍ୱରେ ପ୍ରସିଦ୍ଧିଲାଭ କରିପାରିଛି । ହରିଦ୍ୱାର (ଗଙ୍ଗା), ଆହ୍ଲାବାଦ (ଗଙ୍ଗା-ଯମୁନା-ସରସ୍ୱତୀ ତ୍ରିବେଣୀ ସଂଗମ), ନାସିକ (ଗୋଦାବରୀ) ଓ ଉଜ୍ଜୟିନୀ (ସିପ୍ରା ନଦୀ) ସହରରେ କୁଂଭମେଳା ପାଳିତ ହୋଇଥାଏ ।

ଗଙ୍ଗାକୁ ଭାରତର ପବିତ୍ର ନଦୀ କୁହାଯାଇଥାଏ । ଏହି ନଦୀ କୂଳରେ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ସେହିଭଳି ବୈତରଣୀ'କୁ ଓଡ଼ିଶାର ଗଙ୍ଗାମାତା ବୋଲି ସମ୍ବୋଧନ କରାଯାଇଥାଏ । ଏହା **'ପୁଣ୍ୟତୋୟା ବୈତରଣୀ'** ଭାବେ ଓଡ଼ିଶାରେ ଖ୍ୟାତ । ବୈତରଣୀର କୂଳେକୂଳେ ବର୍ଷର ବିଭିନ୍ନ ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ପର୍ବପର୍ବାଣି ଓ ଯାନିଯାତରା ପାଳିତ ହୋଇଥାଏ । ବାରୁଣୀସ୍ନାନ, ମହାଳୟା, ପିଣ୍ଡଦାନ, କୁଡୁମୀମାନଙ୍କ ଟୁସୁପର୍ବ, ଭଦ୍ରକ ଅଞ୍ଚଳରେ ପାଳିତ ହେଉଥିବା ତ୍ରିବେଣୀ ଅମାବାସ୍ୟା, ବାଲିଶୋଧରା ପର୍ବ, ଉତ୍ତର ଓଡ଼ିଶାର ଆଦିବସୀଙ୍କ ଦାମୋଦର ଯାତ୍ରା, ମକରମେଳା, ମକରବୁଡ଼, ଉଡ଼ାଯାତ୍ରା, ଭାଲୁକୁଣୀ ଓଷା, କାର୍ତ୍ତୀକପୂର୍ଣ୍ଣିମା, ବୋଇତ ବନ୍ଦାଣ ଉତ୍ସବ ଏବଂ ଉପକୂଳ ଓଡ଼ିଶାରେ ପାଳନ କରାଯାଉଥିବା ଖୁଲଣାସୁନ୍ଦରୀ, ମଙ୍ଗଳା ଓଷା, କାଞ୍ଜିଅଁଳା ପର୍ବ ଆଦି ବୈତରଣୀ ଅବବାହିକା ଅଞ୍ଚଳର ପ୍ରମୁଖ ନଦୀ ଉତ୍ସବ ଭାବେ ଜଣାଶୁଣା ।

ବୈତରଣୀ ନଦୀ ସଂପର୍କରେ ଏହି ଅଧ୍ୟୟନ ବେଳେ ପୃଥିବୀ ଓ ଭାରତର ବିଭିନ୍ନ ନଦୀମାନଙ୍କ ସଂପର୍କରେ ଜାଣିବାକୁ ପ୍ରବଳ ଇଚ୍ଛା ହୋଇଥିଲା । ପୃଥିବୀର ବିଭିନ୍ନ ନଦୀ ସଂପର୍କିତ କିଛି ଇଂରାଜୀ ପୁସ୍ତକ ବ୍ୟତୀତ ମୁଁ ଇଣ୍ଟରନେଟ୍‌ରୁ ଭିନ୍ନଭିନ୍ନ ନଦୀ ସଂପର୍କିତ ୱେବ୍‌ସାଇଟ୍‌ର ସହାୟତା ନେଇଛି । ଏଥିପାଇଁ ସଂପୃକ୍ତ ଇଂରାଜୀ ପୁସ୍ତକର ଲେଖକ ଓ ସଂପୃକ୍ତ ୱେବ୍‌ସାଇଟ୍ ନିକଟରେ ମୁଁ ଋଣୀ ।

ଦୀର୍ଘ ପାଞ୍ଚ ବର୍ଷ ଧରି ମୋର ଏହି **ବୈତରଣୀ ନଦୀ ଯାତ୍ରା** ସମୟରେ ଭିନ୍ନଭିନ୍ନ ସ୍ଥାନରେ ଭିନ୍ନଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ସହ ସଂପର୍କରେ ଆସିଛି । ବୈତରଣୀ ପ୍ରବାହିତ ହୋଇଥିବା କେନ୍ଦୁଝର, ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ବହୁ ବିଶିଷ୍ଟ ବ୍ୟକ୍ତି ଓ ସ୍ୱେଚ୍ଛାସେବୀମାନଙ୍କ ସହ ମୋର ପରିଚୟ ହୋଇଛି । ପ୍ରଥମେ 'ସମ୍ବାଦ'ର ସଂପାଦକ ତଥା 'ଓଡ଼ିଶା ନଦୀ ମୁକ୍ତି ଅଭିଯାନ'ର ସଭାପତି ସୌମ୍ୟ ରଂଜନ ପଟ୍ଟନାୟକଙ୍କ ଋଣ ସ୍ୱୀକାର କରୁଛି । କେନ୍ଦୁଝର ଜିଲ୍ଲାର ବିଶିଷ୍ଟ ସାହିତ୍ୟିକ ଡ· ବିମ୍ବାଧର ବେହେରା, 'କେନ୍ଦୁଝର ନାଗରିକ ମଞ୍ଚ'ର ସଭାପତି କିରଣ ଶଙ୍କର ସାହୁ, 'ଓଡ଼ିଶା ନଦୀ ମୁକ୍ତି ଅଭିଯାନ'ର ରାଜ୍ୟ ଆବାହକ ଅକ୍ଷୟ କୁମାର, କେନ୍ଦୁଝର ଜିଲ୍ଲାର ଗୋନାସିକା ଅଞ୍ଚଳରେ କାର୍ଯ୍ୟରତ ସ୍ୱେଚ୍ଛାସେବୀ ଅନୁଷ୍ଠାନ 'ବନବାସୀ ଚେତନା ମଣ୍ଡଳ'ର ସଭାପତି ବୀରବର ନାୟକ, ରାଜ୍ୟ ସରକାରଙ୍କ ସଂସ୍କୃତି ସଚିବ ତଥା କମିଶନର

ଡ· ଅରବିନ୍ଦ ପାଢୀ, ଆନନ୍ଦପୁରର ସାମ୍ବାଦିକ ଶତ୍ରୁଘ୍ନ ସାହୁ, ଚଂପୁଆ ସାମ୍ବାଦିକ ପରମାନନ୍ଦ ମହାନ୍ତ, ଝୁଂପୁରାର ସାମ୍ବାଦିକ ଭୀମସେନ୍ ମହାନ୍ତ, ବାସୁଦେବପୁର (ଯୋଡ଼ା)ର ସାମ୍ବାଦିକ ହୃଦାନନ୍ଦ ପାତ୍ର, ଯୋଡ଼ାର ସାମ୍ବାଦିକ ମାନସ ମହାନ୍ତି, କେନ୍ଦ୍ରାପଡ଼ା ଜିଲ୍ଲାର ବିଶିଷ୍ଟ ଇତିହାସ ଗବେଷକ ପ୍ରତାପ ରାୟ, ତାଳଚୁଆର ଗଣେଶ ଗୁଡ଼ିଆ, ସନାତନ ପରିଡ଼ା, ଡାଙ୍ଗମାଳ ରେଞ୍ଜ ଅଫିସର ଓ୍ୱାଚ୍‌ମ୍ୟାନ୍ ନରୋତ୍ତମ ବିଶ୍ୱାଳ, ଖୋଳା ଫରେଷ୍ଟର ରଣଜିତ୍ ମହାନ୍ତି, 'ଚାନ୍ଦବାଲି ପୂଜ୍ୟପୂଜା ସଂସଦ'ର ସଂପାଦକ ଶାନ୍ତନୁ କୁମାର ମହାନ୍ତି, ଚନ୍ଦନିପାଳର ଶୁଖୁଆ ବ୍ୟବସାୟୀ ବଳରାମ ମାଝୀ, ଧାମରାର ଟ୍ରଲର ଡ୍ରାଇଭର ବାପି କୁଣ୍ଡୁ, ବୁଣାଧର ଜାନା, ଚାନ୍ଦବାଲି ପୋର୍ଟ ଅଫିସରେ କାର୍ଯ୍ୟରତ ବୋଟ୍‌ସମ୍ୟାନ୍ ନରେନ୍ଦ୍ର ବିଶ୍ୱାଳ, ଗଜେନ୍ଦ୍ର ମାଝୀ, ଚାନ୍ଦବାଲିର ବରିଷ୍ଠ ବିଜେପି ନେତା ସବ୍ୟସାଚୀ ମହାନ୍ତି, ଖିଚିଂର ଶ୍ୟାମସୁନ୍ଦର ପାଣିଗ୍ରାହୀ, ପ୍ରଖ୍ୟାତ କବି ଓ ଚିନ୍ତକ ହରପ୍ରସାଦ ଦାସ, ଓଡ଼ିଆ ଭାଷା ଓ ସାହିତ୍ୟ ଗବେଷକ ଡ· ବାବାଜୀ ଚରଣ ପଟ୍ଟନାୟକ, ବିଶିଷ୍ଟ ସାହିତ୍ୟିକ ଡ· ବିଜୟାନନ୍ଦ ସିଂହ, ବିଜେବି ମହାବିଦ୍ୟାଳୟ ଇଂରାଜୀ ବିଭାଗୀୟ ମୁଖ୍ୟ ବିଶିଷ୍ଟ କବି ଡ· ଶୈଳେନ୍ଦ୍ର ନାରାୟଣ ତ୍ରିପାଠୀ, 'ପଶ୍ଚିମା'ର ସଂପାଦକ ବଡ଼ଭାଇ ଅଶୋକ ମହାନ୍ତି, ଜିନ୍ଦଲ ଷ୍ଟୀଲ ଆଣ୍ଡ୍ ପାଓ୍ୱାର ଲିମିଟେଡର ଭାଇସ୍ ପ୍ରେସିଡେଣ୍ଟ (ସିଏସ୍‌ଆର ଆଣ୍ଡ୍ କର୍ପୋରେଟ୍ କମ୍ୟୁନିକେସନ) ପ୍ରଶାନ୍ତ କୁମାର ହୋତା, ଭଣ୍ଡା ଗ୍ରାମର କବି ଡମ୍ବରୁ ମହାନ୍ତ, କେନ୍ଦୁଝର ଜିଲ୍ଲାରେ କାର୍ଯ୍ୟରତ ସାମ୍ବାଦିକ ବନ୍ଧୁ ତଥା ଯାଜପୁର ଜିଲ୍ଲାବାସିନ୍ଦା ପ୍ରଦୀପ କୁମାର ମହାନ୍ତି, ଯାଜପୁର ମାଟିର ପୁଅ ଶୁଭେନ୍ଦୁ କୁମାର ଭୂୟାଁ, ଧାମନଗରବାସିନ୍ଦା ତଥା ବିଶିଷ୍ଟ ଯୁବଲେଖକ ଅମିତାଭ୍ ଖିଲାର୍, ଷୋଳମପୁର 'ହିମସାରମନା ସାହିତ୍ୟ ପରିଷଦ'ର ସଂପାଦକ ଦାମୋଦର ନାୟକ, ଯୁବକବୀ ସୁବାସିନୀ ନାୟକ, ଷୋଳମପୁର ରଘୁନାଥଜିଉ ମନ୍ଦିର ପୂଜକ ଉମାକାନ୍ତ ପଣ୍ଡା, ଖଡ଼ିପଦାର ଉତ୍ସାହୀ ଯୁବକ ଅରୂପ ନନ୍ଦ, ଖିଲାଟେଶ୍ୱର ମନ୍ଦିର ପୂଜକ ମୁକୁନ୍ଦ ଚନ୍ଦ୍ର ପଣ୍ଡା, ମୋ' ସାନଶଳା ଦୁର୍ଗାପ୍ରସନ୍ନ ବାରିକ୍ ପ୍ରମୁଖ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ନିକଟରେ ମୁଁ ଚିର ଋଣୀ । ଏମାନଙ୍କର ଉତ୍ସାହ ମୋତେ ବେଶ୍ ସହାୟକ ହୋଇଛି । ସର୍ବୋପରି ମୋ' ଧର୍ମପତ୍ନୀ ପ୍ରଜ୍ଞା, ଝିଅ ସମୀକ୍ଷା ଓ ସୂଚନାଙ୍କ ନିକଟରେ ମୁଁ ବିଶେଷ ଋଣୀ ।

-ରଂଜନ ପ୍ରଧାନ

**ପ୍ରଥମ ପରିଚ୍ଛେଦ**

# ପୃଥିବୀର ନଦୀ ବ୍ୟବସ୍ଥା

## ପୃଥିବୀର ନଦନଦୀ

*(Rivers of the World)*

ସମଗ୍ର ପୃଥିବୀର ଶରୀରରେ ନଦୀମାନେ ଜାଲ ପରି ବିଛେଇ ହୋଇ ରହିଛନ୍ତି । ନଦୀମାନଙ୍କୁ ପୃଥିବୀର ଧମନୀ ସହ ତୁଳନା କରାଯାଇଥାଏ । ଆମ ଶରୀରରେ ଧମନୀ ମାଧ୍ୟମରେ ଯେଭଳି ରକ୍ତ ପ୍ରବାହିତ ହୋଇଥାଏ, ଅନୁରୂପ ନଦୀମାନଙ୍କ ମାଧ୍ୟମରେ ଜଳ ପ୍ରବାହିତ ହେବା ଦ୍ୱାରା ପୃଥିବୀ ମାତା ସଦା ସତେଜ ଓ ଜୀବନ୍ତ ରହିଥା'ନ୍ତି । ପୃଥିବୀର ଯେତେ ପୁରାତନ ଓ ପ୍ରସିଦ୍ଧ ନଗରସଭ୍ୟତା ସଂପର୍କରେ ଆମେ ଯାହା ଜାଣିବାକୁ ପାଉ, ସେଗୁଡ଼ିକ ବିଶେଷକରି ନଦୀ ଉପକୂଳମାନଙ୍କରେ ଗଢ଼ି ଉଠିଥାଏ । ନଦୀ ଉପତ୍ୟକା ହିଁ ଜନବସତି ପାଇଁ ଉପଯୁକ୍ତ ସ୍ଥାନ । କେଉଁଠି ସମୁଦ୍ର ବେଳାଭୂମିରେ ଏକ ପ୍ରତିଷ୍ଠିତ ନଗର ସଭ୍ୟତା ଗଢ଼ି ଉଠିଥିବାର ଜଣାଯାଏ ନାହିଁ । ନଦୀକୂଳିଆ ଶାନ୍ତଶୀତଳ ପରିବେଶ, ଜଙ୍ଗଲ ସଂପଦ, ନଦୀ ମାଧ୍ୟମରେ ଆଭ୍ୟନ୍ତରୀଣ ପରିବହନ ସୁବିଧା, ଜନବସତି ବସାଇବା ପାଇଁ ଉପଯୁକ୍ତ ସ୍ଥାନ, ନଦୀ ଅବବାହିକାର ଉର୍ବର ବିସ୍ତୀର୍ଣ୍ଣ ଚାରଣ ଭୂମି ଓ ଚାଷ ଜମି; ଏସବୁ ମଣିଷ ବସତି ପାଇଁ ବେଶ୍ ସହାୟକ ହୋଇଥାଏ । ନଦୀକୁ ବାଦ୍ ଦେଇ



ପୃଥିବୀର ବୃହତ୍ତମ ନଦୀ:



**ପୃଥିବୀର ବୃହତ୍ତମ ନଦୀ: ଆମାଜନ୍**

ପୃଥିବୀର ଇତିହାସ, ଭୂଗୋଳ ଆଉ ଆଗାମୀ ଦିନର ଜୀବନଧାରଣ କଥା ଚିନ୍ତା କରିହୁଏନା ।

ପୃଥିବୀର ଦୀର୍ଘତମ ନଦୀର ନାଁ କିଏ ନ ଜାଣେ? ଆଫ୍ରିକା ମହାଦେଶରେ ପ୍ରବାହିତ **'ନୀଳ ନଦୀ'** ହେଉଛି ପୃଥିବୀର ସବୁଠୁ ଲମ୍ବା ନଦୀ *(Longest River)* ଏବଂ ଏହାର ଦୈର୍ଘ୍ୟ ୬,୬୯୦ କିଲୋମିଟର । ଏହି ନଦୀଟି ଆଫ୍ରିକା ମହାଦେଶରେ ଥିବା ପ୍ରସିଦ୍ଧ ଭିକ୍ଟୋରିଆ ହ୍ରଦରୁ ବାହାରି ମୋଟ ୧୦ଟି ଦେଶରେ ପ୍ରବାହିତ ହେବାପରେ ଭୂମଧ୍ୟସାଗରରେ ପଡିଛି । ନୀଳନଦୀ ଇଥିଓପିଆ, ସୁଦାନ, ଇଜିପ୍ଟ, ଉଗାଣ୍ଡା, ଡେମୋକ୍ରାଟିକ୍ ରିପବ୍ଲିକାନ୍ ଅଫ୍ କଙ୍ଗୋ, କେନିଆ, ତାଞ୍ଜାନିଆ, ରାଓ୍ୱାଣ୍ଡା, ବୁରୁଣ୍ଡି, ଦକ୍ଷିଣ ସୁଦାନ ଭଳି ବିଶ୍ୱର ଦଶଗୋଟି ଦେଶ ଦେଇ ପ୍ରବାହିତ ହୋଇଛି । ଏଥିରୁ ଅନୁମାନ କରିହୁଏ ଯେ, ଏହି ନଦୀଟି କେତେ ବିଶାଳ ଏବଂ କେତେ ଦୀର୍ଘ?

ପୃଥିବୀର ବୃହତ୍ତମ ନଦୀ *(Biggest River)* କହିଲେ ଆମେ **'ଆମାଜନ୍'** ନଦୀକୁ ବୁଝିଥାଉ । ଦକ୍ଷିଣ ଆମେରିକାର ପେରୁସ୍ଥିତ ବରଫ ହ୍ରଦରୁ ଉତ୍ପତ୍ତିଲାଭ କରିଥିବା ଏହି ନଦୀଟି ବ୍ରାଜିଲ୍, ପେରୁ, ବଲ୍ଭିଆ, କଲମ୍ବିଆ, ଇକ୍ୱେଡ଼ର୍, ଭେନିଜୁଏଲା, ଗୁଏନା ଆଦି ଦେଶ ଦେଇ ପ୍ରବାହିତ ହୋଇ ଶେଷରେ ଆଟ୍‌ଲାଣ୍ଟିକ୍ ମହାସାଗରରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୬,୪୦୦ (ଯାହାର ଦୈର୍ଘ୍ୟ ନୀଳ ନଦୀଠାରୁ ସାମାନ୍ୟ କମ୍) କିଲୋମିଟର ହେଲେ ମଧ୍ୟ ଏହା ବିଶ୍ୱର ବୃହତ୍ତମ ନଦୀ । ଦୀର୍ଘତମ ଓ ବୃହତ୍ତମ ନଦୀର ସଂଜ୍ଞା ମଧ୍ୟରେ କିଛି ପାର୍ଥକ୍ୟ ରହିଛି । ଦୀର୍ଘତମ ନଦୀ କହିଲେ ଆମେ ସବୁଠୁ ଲମ୍ବା ନଦୀକୁ ବୁଝିଥାଉ । ଅପରପକ୍ଷେ, ଯେଉଁ ନଦୀର ଜଳ ଧାରଣ ଓ ନଦୀ ମୁହାଁଣରେ ଜଳ ପ୍ରବାହର କ୍ଷମତା ସର୍ବାଧିକ ହୋଇଥାଏ ତାହାକୁ ବୃହତ୍ତମ ନଦୀ କୁହାଯାଇଥାଏ । ଆମାଜନ୍ ନଦୀ ମୁହାଁଣରେ ପ୍ରତି ସେକେଣ୍ଡକୁ ୧,୨୦,୦୦୦ ଘନମିଟର ଜଳ ପ୍ରବାହିତ ହେଉଥିବାବେଳେ ନୀଳ ନଦୀ ମୁହାଁଣରେ ସେକେଣ୍ଡ ପ୍ରତି ମାତ୍ର ୧,୫୮୪ ଘନମିଟର ଜଳ ପ୍ରବାହିତ ହୋଇଥାଏ ।

# ପୃଥିବୀର ପ୍ରମୁଖ ୧୦ଟି ଦୀର୍ଘତମ ନଦୀ

*(Ten Longest Rivers of the World)*

ନଦୀ ସଂପର୍କରେ ଜାଣିବାକୁ କାହାର ବା ଇଛା ନ ହୁଏ । ଆଉ ପୁଣି ପୃଥିବୀର ବଡ଼ବଡ଼ ନଦୀମାନଙ୍କର ଇତିହାସ ଓ ସେମାନଙ୍କର ରୋମାଞ୍ଚଭରା କାହାଣୀ ଶୁଣି ଆମ ଶରୀରେ ଗଭୀର ଉନ୍ମାଦନା ଜାତ ହୋଇଥାଏ । ଦେହ ଓ ମନରେ ଶିହରଣ ସୃଷ୍ଟି ହୋଇଥାଏ । ଆସନ୍ତୁ ଜାଣିବା ପୃଥିବୀର ସବୁଠୁ ବଡ଼ବଡ଼ ୧୦ଟି ନଦୀ ସଂପର୍କରେ ସାମାନ୍ୟ କିଛି ତଥ୍ୟ ।



**ପୃଥିବୀର ଦୀର୍ଘତମ ନଦୀ ନୀଳ ନଦୀ**

**୧. ନୀଳ ନଦୀ:** ନୀଳ ନଦୀ ହେଉଛି ପୃଥିବୀର ଦୀର୍ଘତମ ନଦୀ, ଯାହା ସଂପର୍କରେ ଉପରେ ଉଲ୍ଲେଖ କରାଯାଇଛି ।

**୨. ଆମାଜନ୍ ନଦୀ:** ଆମାଜନ୍ ନଦୀ ପୃଥିବୀର ଦ୍ୱିତୀୟ ଦୀର୍ଘତମ ଓ ବୃହତ୍ତମ ନଦୀ । ଏହା ସଂପର୍କରେ ମଧ୍ୟ ଉପରେ ଉଲ୍ଲେଖ କରାଯାଇଛି । ନୀଳ ନଦୀ ଓ ଆମାଜନ୍‌କୁ ବାଦ୍ ଦେଲେ ପୃଥିବୀରେ ଅନେକ ଦୀର୍ଘତମ ଓ ବୃହତ୍ତମ ନଦୀ ରହିଛନ୍ତି । ନିମ୍ନରେ ପୃଥିବୀର ପ୍ରମୁଖ ୧୦ଟି ଦୀର୍ଘତମ ନଦୀମାନଙ୍କ ସଂପର୍କରେ ଉଲ୍ଲେଖ କରାଯାଇଛି ।

**୩. ମିଶୋରି-ମିଶିଶିପି ନଦୀ:** ନୀଳ ନଦୀ ଓ ଆମାଜନ୍ ନଦୀ ପରେପରେ ମିଶୋରି-ମିଶିସିପି (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା) ନଦୀ ହେଉଛି ପୃଥିବୀର ତୃତୀୟ ଦୀର୍ଘତମ ନଦୀ । ଏହି ନଦୀଟି ଯୁକ୍ତରାଷ୍ଟ୍ର ଆମେରିକାର ମୋନ୍ତାନା ରେଡ୍ ରକ୍‌ରୁ ଉତ୍ପତ୍ତିଲାଭ କରି ମେକ୍ସିକୋ ଉପସାଗରରେ ପଡିଛି । ଏହାର ଦୈର୍ଘ୍ୟ ୬,୯୭୦ କିଲୋମିଟର । ଏହା ଯୁକ୍ତରାଷ୍ଟ୍ର



ଚାଙ୍ଗ ଜିଆଙ୍ଗ, ଚୀନ୍



ଓବ୍ ନଦୀ



ହୁଆଙ୍ଗ ହୋ ନଦୀ, ଚୀନ୍

ଆମେରିକା ଓ କାନାଡ଼ା ଦେଇ ପ୍ରବାହିତ ହୋଇଛି ।

**୪. ଚାଙ୍ଗ୍ ଜିଆଙ୍ଗ ନଦୀ:** ପୃଥିବୀର ଚତୁର୍ଥ ଦୀର୍ଘତମ ନଦୀ ହେଉଛି 'ଚାଙ୍ଗ୍ ଜିଆଙ୍ଗ୍' (ଅବବାହିକା ଅଞ୍ଚଳ: ଚୀନ୍) । ଏହି ନଦୀଟି ଚୀନ୍‌ର ତିବ୍ବତୀୟ ମାଳଭୂମିରୁ ଉତ୍ପତ୍ତିଲାଭ କରି ଚାଇନା ସାଗରରେ ପତିତ ହୋଇଛି । ଏହାର ଦୈର୍ଘ୍ୟ ୫,୭୯୭ କିଲୋମିଟର । ଏହି ନଦୀଟି ସମଗ୍ର ଚୀନ୍‌ରେ ପ୍ରବାହିତ ହୋଇଛି ।

**୫. ଓବ୍ ନଦୀ:** ପୃଥିବୀର ପଞ୍ଚମ ଦୀର୍ଘତମ ନଦୀର ନାମ ହେଉଛି 'ଓବ୍' । ଅବବାହିକା ଅଞ୍ଚଳ: ଋଷିଆ, କାଜକସ୍ତାନ, ଚୀନ, ମଙ୍ଗୋଲିଆ । ଏହି ନଦୀଟି ଋଷିଆର ଆଲ୍‌ତାଇ ମିଟର୍ସରୁ ଉତ୍ପତ୍ତିଲାଭ କରି ଓବ୍ ଉପସାଗରରେ ପଡିଛି । ଏହାର ଦୈର୍ଘ୍ୟ ୫,୫୬୭ କିଲୋମିଟର ।

**୬. ହୁଆଙ୍ଗ୍ ହୋ ନଦୀ:** ପୃଥିବୀର ଷଷ୍ଠ ଦୀର୍ଘତମ ନଦୀ ହେଉଛି 'ହୁଆଙ୍ଗ୍ ହୋ' (ଅବବାହିକା ଅଞ୍ଚଳ: ଚୀନ୍) । ଏହି ନଦୀଟି ଦକ୍ଷିଣ ଚୀନ୍‌ର କୁନ୍‌ଲାନ୍ ମିଟର୍ସରୁ ଉତ୍ପତ୍ତିଲାଭ କରି ଚିଲି ଉପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୪,୬୬୭ କିଲୋମିଟର ।



ୟେନିସ୍ ନଦୀ, ଋଷିଆ




ପାରାନା-ପାରାଗୁଏ



ଇର୍ଟିଶ୍ ନଦୀ

**୭. ୟେନିସ୍ ନଦୀ:** ପୃଥିବୀର ସପ୍ତମ ଦୀର୍ଘତମ ନଦୀ ହେଉଛି 'ୟେନିସି' (ଅବବାହିକା ଅଞ୍ଚଳ: ଋଷିଆ, ମଙ୍ଗୋଲିଆ) । ଏହି ନଦୀଟି ଋଷିଆର ପଶ୍ଚିମ ଟୁଭାର ତନୁ ଓଲା ମିଟର୍ସରୁ ଉତ୍ପତ୍ତିଲାଭ କରି ଉତ୍ତର (ମେରୁ) ମହାସାଗରରେ ପଡିଛି । ଏହି ନଦୀର ଦୈର୍ଘ୍ୟ ୪,୫୦୬ କିଲୋମିଟର । ଏହି ନଦୀଟି ଋଷିଆ ଏବଂ ମଙ୍ଗୋଲିଆରେ ପ୍ରବାହିତ ହୋଇଛି ।

**୮. ପାରାନା ନଦୀ:** ପୃଥିବୀର ଅଷ୍ଟମ ଦୀର୍ଘତମ ନଦୀ ହେଉଛି 'ପାରାନା' (ଅବବାହିକା ଅଞ୍ଚଳ: ବ୍ରାଜିଲ୍, ଆର୍ଜେଣ୍ଟିନା, ପାରାଗୁଏ, ବଲ୍‌ଭିଆ, ଉରୁଗୁଏ) । ଏହା ଉରୁଗୁଏର ପାରାନାବିଆ ଏବଂ ଗ୍ରାଣ୍ଡ ନଦୀର ସଂଗମ ସ୍ଥଳରୁ ଉତ୍ପତ୍ତିଲାଭ କରି 'ରିଓ ଡେ ଲା ପ୍ଲାଟା'ରେ ପଡିଛି । ଏହାର ଦୈର୍ଘ୍ୟ ୪,୪୯୮ କିଲୋମିଟର ।

**୯. ଇର୍ଟିଶ୍ ନଦୀ:** ପୃଥିବୀର ନବମ ଦୀର୍ଘତମ ନଦୀ ହେଉଛି 'ଇର୍ଟିଶ୍' (ଅବବାହିକା ଅଞ୍ଚଳ: ଋଷିଆ, କାଜକସ୍ତାନ, ଚୀନ୍, ମଙ୍ଗୋଲିଆ) । ଏହା ଋଷିଆର ଆଲ୍‌ତାଇ ମିଟର୍ସରୁ ଉତ୍ପତ୍ତିଲାଭ କରି ଓବ୍ ନଦୀରେ ପଡିଛି । ଏହାର ଦୈର୍ଘ୍ୟ ୪,୪୩୮ କିଲୋମିଟର ।

**୧୦. ଜାଇରେ ନଦୀ:** ସେହିଭଳି ପୃଥିବୀର ଦଶମ ଦୀର୍ଘତମ ନଦୀ

ହେଉଛି 'ଜାଇରେ' (କଙ୍ଗୋ) (ଅବବାହିକା ଅଞ୍ଚଳ: ଡେମୋକ୍ରାଟିକ୍ ରିପବ୍ଲିକ୍ ଅଫ୍ ଦି କଙ୍ଗୋ, ସେଣ୍ଟ୍ରାଲ୍ ଆଫ୍ରିକାନ୍ ରିପବ୍ଲିକ୍, ଆଙ୍ଗୋଲା, ରିପବ୍ଲିକ୍ ଅଫ୍ ଦି କଙ୍ଗୋ, ଟାଞ୍ଜାନିଆ, କ୍ୟାମେରନ୍, ଜାମ୍ବିଆ, ବୁରୁଣ୍ଡି, ରୁଆଣ୍ଡା) । ଏହା ଆଫ୍ରିକା ମହାଦେଶର କଙ୍ଗୋ ଅଞ୍ଚଳରେ ପ୍ରବାହିତ ଲୁଆଲାବ୍ ଏବଂ ଲୁଆପୁଲା ନଦୀର ସଂଗମ ସ୍ଥଳରୁ ଉତ୍ପତ୍ତିଲାଭ କରି ଆଟଲାଣ୍ଟିକ୍ ମହାସାଗରରେ ପଡିଛି । ଏହାର ଦୈର୍ଘ୍ୟ ୪,୩୭୧ କିଲୋମିଟର ।

## ପୃଥିବୀର ଆଉ କିଛି ପ୍ରସିଦ୍ଧ ନଦୀ

ପୃଥିବୀର ଏହି ଦଶଗୋଟି ଦୀର୍ଘତମ ନଦୀମାନଙ୍କ ବ୍ୟତୀତ ଆହୁରି ବହୁତ ବଡ଼ବଡ଼ ନଦୀମାନଙ୍କ ସଂପର୍କରେ ଜାଣିବାକୁ ଇଚ୍ଛା ହୁଏ । ଆସନ୍ତୁ ସେଗୁଡ଼ିକ ସଂପର୍କରେ ଚୁମ୍ବକରେ ଜାଣିବା ।

**ହେଲିଙ୍ଗ୍ ନଦୀ:** ଏହି ନଦୀଟି ଋଷିଆରେ ପ୍ରବାହିତ ସିଲ୍କା ଓ ମାଞ୍ଚୁରିଆରେ ପ୍ରବାହିତ ଅର୍ଗୁନ୍ ନଦୀ ଦ୍ୱୟର ସଂଗମ ସ୍ଥଳରୁ ଉତ୍ପତ୍ତିଲାଭ କରିଛି ଏବଂ ଟାଟାର ଷ୍ଟ୍ରେଟ୍‌ରେ ପଡିଛି । ଏହାର ଦୈର୍ଘ୍ୟ ୪,୩୫୨ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ, ଚୀନ୍, ମଙ୍ଗୋଲିଆ)

**ଲେନା ନଦୀ:** ଏହି ନଦୀଟି ଋଷିଆର ବୈକାଲ୍ ମିଟର୍ସରୁ ନିର୍ଗତ ହୋଇ ଉତ୍ତର ମେରୁ ମହାସାଗରରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୪,୨୬୮ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ)

**ମାକେଞ୍ଜି ନଦୀ:** ଏହି ନଦୀଟି ଉତ୍ତର ଆମେରିକାର କାନାଡ଼ାସ୍ଥିତ ବ୍ରିଟିଶ୍ କଲମ୍ବିଆର ଫିନାଲେ ନଦୀ ମୁଣ୍ଡରୁ ନିର୍ଗତ ହୋଇ ବିଫୋର୍ଟ ସାଗର (ଉତ୍ତର ମେରୁ ମହାସାଗର)ରେ ପତିତ ହୋଇଛି । ନଦୀଟିର ଦୈର୍ଘ୍ୟ ୪,୨୪୧ କିଲୋମିଟର । (ଅବବାହିକା ଅଞ୍ଚଳ: କାନାଡ଼ା)

**ନାଇଜର ନଦୀ:** ଏହି ନଦୀଟି ଆଫ୍ରିକା ମହାଦେଶର ଗିନିଆ ଉପକୂଳରୁ ଉତ୍ପତ୍ତିଲାଭ କରି ଗିନିଆ ଉପସାଗରରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୪,୧୮୪ କିଲୋମିଟର । (ଅବବାହିକା ଅଞ୍ଚଳ: ନାଇଜେରିଆ, ମାଲି, ନାଇଜର, ଆଲ୍‌ଜେରିଆ, ଗୁଏନା, କ୍ୟାମେରୁନ୍, ବୁର୍କିନା ଫାସୋ, ବେନିନ୍, ଚାଡ଼)

**ମେକଂ ନଦୀ:** ଏହି ନଦୀଟି ଏସିଆ ମହାଦେଶର ତିବ୍ବତୀୟ ମାଳଭୂମିରୁ ଉତ୍ପତ୍ତିଲାଭ କରି ଦକ୍ଷିଣ ଚୀନ୍ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୪,୦୨୩



ଭୋଲ୍‌ଗା ନଦୀ

କିଲୋମିଟର । (ଅବବାହିକା ଅଞ୍ଚଳ: ଚୀନ୍, ମିଆଁମାର୍, ଲାଓସ୍, ଥାଇଲାଣ୍ଡ, କାମ୍ବୋଡ଼ିଆ, ଭିଏତ୍‌ନାମ୍)

**ଭୋଲ୍‌ଗା ନଦୀ:** ଏହି ନଦୀଟି ଋଷିଆର ଭାଲ୍‌ଦାଇ ମାଳଭୂମିରୁ ଉତ୍ପତ୍ତିଲାଭ କରି କାସ୍ପିଆନ୍ ସାଗରରେ ପତିତ ହୋଇଛି । ଏହାର ଦୈର୍ଘ୍ୟ ୩,୬୮୭ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ)

**ମାଡ଼େରିଆ ନଦୀ:** ଏହି ନଦୀଟି ବଲ୍‌ଭିଆ-ବ୍ରାଜିଲ୍ ସୀମାରେ ଅବସ୍ଥିତ ବେଣୀ ଏବଂ ମାଉମୋର୍ ନଦୀର ସଂଗମ ସ୍ଥଳରୁ ନିର୍ଗତ ହୋଇ ଆମାଜନ୍ ନଦୀରେ ଲୀନ ହୋଇଛି । ଏହି ନଦୀଟିର ଦୈର୍ଘ୍ୟ ୩,୨୩୮ କିଲୋମିଟର ।

**ପୁରୁସ୍ ନଦୀ:** ଏହି ନଦୀଟି ପେରୁଭିଆନ୍ ଆଣ୍ଡେସରୁ ବାହାରି ଆମାଜନ୍ ନଦୀରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୩,୨୦୭ କିଲୋମିଟର । (ଅବବାହିକା ଅଞ୍ଚଳ: ବ୍ରାଜିଲ୍, ପେରୁ)

**ସାଓ ଫ୍ରାନ୍‌ସିସ୍‌କୋ ନଦୀ:** ଏହି ନଦୀଟି ବ୍ରାଜିଲ୍‌ର ଦକ୍ଷିଣ-ପଶ୍ଚିମ ମୀନାସ୍ ଗେରେସରୁ ବାହାରି ଆଟ୍‌ଲାଣ୍ଟିକ୍ ମହାସାଗରରେ ପତିତ ହୋଇଛି । ନଦୀଟିର ଦୈର୍ଘ୍ୟ ୩,୧୯୮ କିଲୋମିଟର । (ଅବବାହିକା ଅଞ୍ଚଳ: ବ୍ରାଜିଲ୍)

**ୟୁକୋନ୍ ନଦୀ:** ଏହି ନଦୀଟି ଉତ୍ତର ଆମେରିକାର କାନାଡ଼ାସ୍ଥିତ ୟୁକୋନ୍ ଟେରିଟୋରିଠାରେ ଲୁଇସ୍ ଏବଂ ପେଲି ନଦୀର ସଂଗମ ସ୍ଥଳରୁ ନିର୍ଗତ ହୋଇ ବେରିଂ ସାଗରରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୩,୧୮୫ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା)

**ସେଣ୍ଟ୍ ଲରେନ୍‌ସ ନଦୀ:** ଏହି ନଦୀଟି କାନାଡାର ଓଣ୍ଟାରିଓ ହ୍ରଦରୁ ଉତ୍ପତ୍ତିଲାଭ କରି ସେଣ୍ଟ୍ ଲରେନ୍‌ସ ଉପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୩,୦୫୮ କିଲୋମିଟର । (ଅବବାହିକା ଅଞ୍ଚଳ: କାନାଡା, ଯୁକ୍ତରାଷ୍ଟ୍ର ଆମେରିକା)

**ରିଓ ଗ୍ରାଣ୍ଡେ ନଦୀ:** ଯୁକ୍ତରାଷ୍ଟ୍ର ଆମେରିକା କଲ୍‌ରାଡୋର ସାନ୍ ଜୁଆନ୍ ମିଟର୍ସରୁ ଏହି ନଦୀଟି ଉତ୍ପତ୍ତିଲାଭ କରି ମେକ୍ସିକୋ ଉପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୩,୦୩୪ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା, ମେକ୍ସିକୋ)

**ବ୍ରହ୍ମପୁତ୍ର ନଦୀ:** ଏହି ନଦୀଟି ହିମାଳୟରୁ ଉତ୍ପତ୍ତିଲାଭ କରି ଗଙ୍ଗା ନଦୀ ସହିତ ମିଳିତ ହୋଇଛି । ଏହି ନଦୀଟିର ଦୈର୍ଘ୍ୟ ୨,୮୯୭ କିଲୋମିଟର । ପୃଥିବୀର ଏକମାତ୍ର ପୁରୁଷ ନଦୀ ଭାବେ ପରିଚିତ ଏହି ବ୍ରହ୍ମପୁତ୍ର ନଦୀଟି ଭଗବାନ ବ୍ରହ୍ମାଙ୍କର ପୁତ୍ର ବୋଲି ପୁରାଣରେ ଉଲ୍ଲେଖ ରହିଛି । (ଅବବାହିକା ଅଞ୍ଚଳ: ନେପାଳ, ବଙ୍ଗଳାଦେଶ, ଭାରତ, ଚୀନ୍, ଭୁଟାନ୍)

**ସିନ୍ଧୁ ନଦୀ** *(Indus)***:** ଏହି ନଦୀଟି ହିମାଳୟ ପର୍ବତମାଳାରୁ ବାହାରି ଆରବ ସାଗରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୮୯୭ କିଲୋମିଟର । (ଅବବାହିକା ଅଞ୍ଚଳ: ପାକିସ୍ତାନ, ଭାରତ ଓ ଚୀନ୍)

**ଡାନ୍ୟୁବ୍ ନଦୀ:** ଏହି ନଦୀଟି ଜର୍ମାନୀର ବ୍ଲାକ୍ ଫରେଷ୍ଟ *(Black Forest)*ରୁ ନିର୍ଗତ ହୋଇ କୃଷ୍ଣ ସାଗର*(Black Sea)*ରେ ପତିତ ହୋଇଛି । ନଦୀଟିର ଦୈର୍ଘ୍ୟ ୨,୮୪୨ କିଲୋମିଟର । (ଅବବାହିକା ଅଞ୍ଚଳ: ରୋମାନିଆ, ହଙ୍ଗେରୀ, ଅଷ୍ଟ୍ରିଆ, ସର୍ବିଆ, ଜର୍ମାନୀ, ସ୍ଲୋଭାକିଆ, ବୁଲ୍ଗେରିଆ, କ୍ରୋଆଟିଆ)

**ୟୁଫ୍ରେଟିସ୍ ନଦୀ:** ଏହି ନଦୀ ଉପକୂଳରେ ବିଶ୍ୱର ସର୍ବ ପ୍ରାଚୀନତମ ନଦୀକୂଳ ସଭ୍ୟତା (ମେସୋପୋଟାମିଆ) ଗଢି ଉଠିଥିଲା । ଏହି ନଦୀଟି ତୁର୍କୀର ମୁରାତ୍ ନେହେରି ଏବଂ କାରା ସୁ ନଦୀର ସଂଗମ ସ୍ଥଳରୁ ନିର୍ଗତ ହୋଇ ସାତ୍-ଅଲ୍-ଆରବ୍‌ରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୭୯୯ କିଲୋମିଟର । (ଅବବାହିକା ଅଞ୍ଚଳ: ଇରାକ୍, ତୁର୍କୀ, ସିରିଆ)

**ମୁରେ-ଡାର୍ଲିଂ ନଦୀ:** ଡାର୍ଲିଂ ନଦୀଟି ଅଷ୍ଟ୍ରେଲିଆ ମହାଦେଶର ପୂର୍ବାଞ୍ଚଳ ମାଳଭୂମିର କେନ୍ଦ୍ର ଭାଗରୁ ନିର୍ଗତ ହୋଇ ମୁରେ ନଦୀ ସହିତ ମିଳିତ ହୋଇ ମୁରେ-ଡାର୍ଲିଂ ନଦୀ ନାମରେ ପରିଚିତ ହୋଇଛି । ମୁରେ ନଦୀଟି ଅଷ୍ଟ୍ରେଲିଆ ମହାଦେଶର ନିଉ ସାଉଥ୍‌ୱେଲ୍‌ସସ୍ଥିତ ଆଲ୍‌ପସ ପର୍ବତମାଳାରୁ କିଛି ବାଟ ପ୍ରବାହିତ ହୋବପରେ ଏହା ସହିତ ଡାର୍ଲିଂ ନଦୀ ମିଳିତ ହୋଇଛି । ମୁରେ-ଡାର୍ଲିଂ ନଦୀ ଅଷ୍ଟ୍ରେଲିଆ ମହାଦେଶରେ ପ୍ରବାହିତ ହୋଇ ଶେଷରେ ଭାରତ ମହାସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୭୩୯ କିଲୋମିଟର । (ଅବବାହିକା ଅଞ୍ଚଳ: ଅଷ୍ଟ୍ରେଲିଆ)

**ଜାମ୍ବେଜି ନଦୀ:** ଏହି ନଦୀଟି ଆଫ୍ରିକା ମହାଦେଶର ଜାମ୍ବିଆରୁ ଉତ୍ପତ୍ତିଲାଭ କରି ମୋଜାମ୍ବିକ୍ ଚ୍ୟାନେଲ୍‌ରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୭୩୬ କିଲୋମିଟର । (ଅବବାହିକା ଅଞ୍ଚଳ: ଜାମ୍ବିଆ, ଆଙ୍ଗୋଲା, ଜିମ୍ବାୱେ, ମୋଜାମ୍ବିକ୍ୟୁ, ମାଲାୱି, ତାଞ୍ଜାନିଆ, ନାମିବିଆ, ବୋଟ୍‌ସନା)



ଜାମ୍ବେଜି ନଦୀ

**ଟୋକାଣ୍ଟିନ୍‌ସ ନଦୀ:** ଏହି ନଦୀଟି ବ୍ରାଜିଲ୍‌ର ଗୋୟାସରୁ ବାହାରି ପାରା ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୬୯୯

କିଲୋମିଟର । (ଅବବାହିକା ଅଞ୍ଚଳ: ବ୍ରାଜିଲ୍)

**ନେଲ୍‌ସନ୍ ନଦୀ:** ଏହି ନଦୀଟି ଉତ୍ତର ଆମେରିକାର କାନାଡାସ୍ଥିତ ୱେଷ୍ଟର୍ନ ଆଲ୍‌ବେର୍ଟାର ବୋ ନଦୀରୁ ନିର୍ଗତ ହୋଇ ହଡ୍‌ସନ ଉପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୫୭୫ କିଲୋମିଟର । (ଅବବାହିକା ଅଞ୍ଚଳ: କାନାଡା, ଯୁକ୍ତରାଷ୍ଟ୍ର ଆମେରିକା)

**ପାରାନା-ପାରାଗୁଏ ନଦୀ:** ଏହି ନଦୀଟି ବ୍ରାଜିଲ୍‌ର ମାଟୋ ଗ୍ରୋସୋରୁ ବାହାରି ପାରାନା ନଦୀରେ ପଡିଛି । ଏହି ନଦୀଟିର ଦୈର୍ଘ୍ୟ ୨,୫୪୯ କିଲୋମିଟର । (ଅବବାହିକା ଅଞ୍ଚଳ: ବ୍ରାଜିଲ୍, ପାରାଗୁଏ, ବଲ୍‌ଭିଆ, ଆର୍ଜେଣ୍ଟିନା)

**ୟୁରାଲ୍ ନଦୀ:** ଏହି ନଦୀଟି ଋଷିଆର ଦକ୍ଷିଣ ୟୁରାଲ୍ ମିଟର୍ସରୁ ବାହାରି କାସ୍ପିଆନ୍ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୫୩୩ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ, କାଜାକସ୍ତାନ୍)




**ଗଙ୍ଗା ନଦୀ:** ଗଙ୍ଗା ଭାରତର ଏକ ପବିତ୍ର ତଥା ଧାର୍ମିକ ନଦୀ ଭାବେ ପରିଚିତ । ନଦୀଟି ହିମାଳୟ ପର୍ବତରୁ ବାହାରି ବଙ୍ଗୋପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୫୨୫ କିଲୋମିଟର । (ଅବବାହିକା ଅଞ୍ଚଳ: ଭାରତ, ବଙ୍ଗଳାଦେଶ, ନେପାଳ, ଚୀନ୍)

**ଅମୁ ଦରିୟା ନଦୀ:** ଏହି ନଦୀଟି ଏସିଆ ମହାଦେଶ ଅନ୍ତର୍ଗତ ତୁର୍କମେନସ୍ଥାନର ପାମିର୍ ମାଳଭୂମିରର ନିକୋଲାସ୍ ରେଞ୍ଜରୁ ବାହାରି ଆରାଲ୍ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ

୨,୪୧୪ କିଲୋମିଟର । (ଅବବାହିକା ଅଞ୍ଚଳ: ଉଜ୍‌ବେକିସ୍ତାନ, ତୁର୍କମେନିସ୍ତାନ, ତାଜିକସ୍ତାନ, ଆଫଗାନିସ୍ତାନ୍)

**ଜାପୁରା ନଦୀ:** ଏହି ନଦୀଟି କଲମ୍ବିଆର ଆଣ୍ଡିଜ୍ ପର୍ବତମାଳାରୁ ବାହାରି ଆମାଜନ ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୪୧୪ କିଲୋମିଟର । (ଅବବାହିକା ଅଞ୍ଚଳ: ବ୍ରାଜିଲ୍, କଲମ୍ବିଆ)

**ସାଲ୍‌ୱିନ୍ ନଦୀ:** ଏହି ନଦୀଟି ଚୀନ୍‌ର ଦକ୍ଷିଣ କୁନ୍‌ଲୁନ୍ ମାଳଭୂମିର ତିବ୍ବତରୁ ବାହାରି ମାର୍ଟାବାନ୍ ଉପସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୪୧୪ କିଲୋମିଟର । (ଅବବାହିକା ଅଞ୍ଚଳ: ଚୀନ୍, ମିଆଁମାର୍, ଥାଇଲାଣ୍ଡ)

**ଆରାକାନ୍‌ସ ନଦୀ:** ଏହି ନଦୀଟି ଯୁକ୍ତରାଷ୍ଟ୍ର ଆମେରିକାର କେନ୍ଦ୍ର କଲ୍‌ରାଡୋରୁ ବାହାରି ମିଶିସିପି ନଦୀରେ ଲୀନ ହୋଇଯାଇଛି । ନଦୀଟିର ଦୈର୍ଘ୍ୟ ହେଉଛି ୨,୩୪୮ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା)

**କଲ୍‌ରାଡ଼ୋ ନଦୀ:** ଏହି ନଦୀଟି ଯୁକ୍ତରାଷ୍ଟ୍ର ଆମେରିକାର କଲ୍‌ରାଡ଼ୋ ଗ୍ରାଣ୍ଡ କାଉଣ୍ଟିରୁ ବାହାରି କାଲିଫର୍ନିଆ ଉପସାଗରରେ ପଡ଼ିଛି । ନଦୀଟିର ଦୈର୍ଘ୍ୟ ହେଉଛି ୨,୩୩୩ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା, ମେକ୍ସିକୋ)



**କଲ୍‌ରାଡ଼ୋ ନଦୀ**

**ଡ୍ନେଇପର୍ ନଦୀ:** ଏହି ନଦୀଟି ଋଷିଆର ଭଲ୍‌ଦାଇ ମାଳଭୂମିରୁ ବାହାରି କୃଷ୍ଣ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୨୮୪ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ, ବେଲାଋଷ, ୟୁକ୍ରେନ୍)

**ଓହିଓ ଆଲ୍‌ଘେନି ନଦୀ:** ଏହି ନଦୀଟି ପେନ୍‌ସିଲ୍‌ଭାନିଆ ପୋଟର କାଉଣ୍ଟିରୁ ବାହାରି ମିଶିସିପି ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୧୦୨ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା)

**ଇରାୱାଡି ନଦୀ:** ଏହି ନଦୀଟି ବ୍ରହ୍ମଦେଶର ଉତ୍ତର-ପୂର୍ବାଞ୍ଚଳରେ ମାଇ ଏବଂ ମାଲି ନଦୀର ସଂଗମ ସ୍ଥଳରୁ ବାହାରି ବଙ୍ଗୋପସାଗରରେ ପଡିଛି । ନଦୀର ଦୈର୍ଘ୍ୟ ୨,୦୯୨ କିଲୋମିଟର । (ଅବବାହିକା ଅଞ୍ଚଳ: ମିଆଁମାର୍)

**ଅରେଞ୍ଜ ନଦୀ:** ଏହି ନଦୀଟି ଲିସୋଥୋରୁ ବାହାରି ଆଟ୍‌ଲାଣ୍ଟିକ୍ ମହାସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୦୯୨ କିଲୋମିଟର । (ଅବବାହିକା ଅଞ୍ଚଳ: ଦକ୍ଷିଣ ଆଫ୍ରିକା, ନାମିବିଆ, ବୋଟ୍‌ସୱାନା, ଲେସୋଥୋ)

**ଓରିନୋକୋ ନଦୀ:** ଏହି ନଦୀଟି ଭେନିଜୁଆଲାର ସେରା ପାରିମା ମାଳଭୂମିରୁ ବାହାରି ଆଟଲାଣ୍ଟିକ୍ ମହାସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୨,୦୬୨ କିଲୋମିଟର । (ଅବବାହିକା ଅଞ୍ଚଳ: ଭେନେଜୁଆଲା, କଲମ୍ବିଆ, ଗୁଏନା)

**ପିଲ୍‌କୋମାୟ ନଦୀ:** ଏହି ନଦୀଟି ବଲ୍‌ଭିଆସ୍ଥ ଆଣ୍ଡିଜ୍ ପର୍ବତମାଳାରୁ ବାହାରି ପାରାଗୁଏ ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ୧,୯୯୯ କିଲୋମିଟର ।

**ସି ଜିୟାଂ (ଢି ଜିଆଙ୍ଗ୍) ନଦୀ:** ଏହି ନଦୀଟି ଚୀନ୍‌ର ପୂର୍ବ ୟୁନାନ୍ ଅଞ୍ଚଳରୁ ବାହାରି ଚୀନ୍ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୧,୯୮୯ କିଲୋମିଟର । (ଅବବାହିକା ଅଞ୍ଚଳ: ଚୀନ୍, ଭିଏତନାମ୍)

**କଲମ୍ବିଆ ନଦୀ:** ଏହି ନଦୀଟି କାନାଡ଼ାର ବ୍ରିଟିଶ୍ କଲମ୍ବିଆସ୍ଥିତ କଲମ୍ବିଆ ହ୍ରଦରୁ ବାହାରି ପ୍ରଶାନ୍ତ ମହାସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୧,୯୮୩ କିଲୋମିଟର । (ଅବବାହିକା ଅଞ୍ଚଳ: ଯୁକ୍ତରାଷ୍ଟ୍ର ଆମେରିକା, କାନାଡା)

**ଡନ୍ ନଦୀ:** ଏହି ନଦୀଟି ଋଷିଆର ତୁଲାରୁ ବାହାରି ଆଜଭ୍ ସାଗରରେ ପଡିଛି । ନଦୀଟିର ଦୈର୍ଘ୍ୟ ୧୯୬୮ କିଲୋମିଟର । (ଅବବାହିକା ଅଞ୍ଚଳ: ଋଷିଆ, ୟୁକ୍ରେନ୍)

**ସୁନ୍‌ଗାରି ନଦୀ:** ଏହି ନଦୀଟି ଚୀନ୍-ଉତ୍ତର କୋରିଆ ସୀମାନ୍ତରୁ ଉତ୍ପତ୍ତିଲାଭ କରି ଅମୁର୍ ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ୧,୯୫୫ କିଲୋମିଟର ।

**ସାସ୍‌କାଚ୍ଚିଆନ୍ ନଦୀ:** ଏହି ନଦୀଟି କାନାଡାର ରକି ପର୍ବତମାଳାରୁ ବାହାରି ୱିନିପେଗ ହ୍ରଦରେ ପଡିଛି । ନଦୀଟିର ଦୈର୍ଘ୍ୟ ୧,୯୩୯ କିଲୋମିଟର । (ଅବବାହିକା ଅଞ୍ଚଳ: କାନାଡା, ଯୁକ୍ତରାଷ୍ଟ୍ର ଆମେରିକା)

**ପିସ୍ ନଦୀ:** ଏହି ନଦୀଟିର କାନାଡାର ବ୍ରିଟିଶ୍ କଲମ୍ବିଆସ୍ଥିତ ଷ୍ଟିକିନ୍ ମାଳଭୂମିରୁ ବାହାରି ଗ୍ରେଟ୍ ସ୍ଲେଭ୍ ନଦୀରେ ପଡିଛି । ନଦୀଟିର ଦୈର୍ଘ୍ୟ ହେଉଛି ୧,୯୨୩ କିଲୋମିଟର ।

**ଟାଇଗ୍ରିସ୍ ନଦୀ:** ଏହି ନଦୀଟି ତୁର୍କୀର ତୌରୁସ୍ ମାଳଭୂମିରୁ ବାହାରି ସାତ-ଅଲ୍-ଆରବରେ ପଡିଛି । ନଦୀଟିର ଦୈର୍ଘ୍ୟ ହେଉଛି ୧,୮୯୯ କିଲୋମିଟର । (ଅବବାହିକା ଅଞ୍ଚଳ: ଇରାକ୍, ତୁର୍କୀ, ସିରିଆ)


ଟାଇଗ୍ରୀସ

## ନଦୀମାନଙ୍କର ବୟସ: ପୃଥିବୀର କିଛି ବୟସ୍କା ନଦୀ

*(Age of the rivers; some oldest rivers on Earth)*

ମଣିଷର ବୟସ ବଢିବା ଭଳି ନଦୀମାନେ ମଧ୍ୟ ବୟସ୍କ ହୋଇଥା'ନ୍ତି । ନଦୀମାନଙ୍କର ଦୈର୍ଘ୍ୟ, ପ୍ରସ୍ଥ ଏବଂ ଘନଫଳ ଆକଳନ କରାଯିବା ସହିତ ସେମାନଙ୍କର ବୟସ ମଧ୍ୟ ସ୍ଥିର କରାଯାଇଥାଏ । ଯଦିଓ ନଦୀମାନଙ୍କର ବୟସ ଆକଳନ କରିବା ଏତେ ସହଜ ନୁହେଁ, ତଥାପି ପୃଥିବୀର କିଛି ପୁରଖା ନଦୀମାନଙ୍କର ବୟସ ଆକଳନ କରାଯାଇପାରିଛି ।

ସାଧାରଣତଃ, ନଦୀମାନେ ଯେଉଁ ପର୍ବତମାନଙ୍କରୁ ବାହାରିଥା'ନ୍ତି ସେହି ପର୍ବତମାନଙ୍କର ବୟସ ଏବଂ ଯେଉଁ ସମୁଦ୍ର ବା ମହାସମୁଦ୍ରରେ ପଡିଥା'ନ୍ତି ସେମାନଙ୍କର ବୟସ ଅନୁସାରେ ସେମାନଙ୍କର ବୟସ ଆକଳନ କରାଯାଇଥାଏ । ଯଦି ଗୋଟିଏ ନଦୀ ଏକ ପର୍ବତମାଳାକୁ କାଟିକାଟି ପ୍ରବାହିତ ହୋଇଥାଏ, ଏଥିରୁ ବୁଝାପଡେ ଉକ୍ତ ପର୍ବତମାଳାଠାରୁ ନଦୀଟି ପ୍ରାଚୀନ । କାରଣ ପର୍ବତମାଳା ସୃଷ୍ଟି ହେବା ପୂର୍ବରୁ ସେଠାରେ ନଦୀଟି ପ୍ରବାହିତ ହୋଇଥିଲା ବୋଲି ବୁଝିବାକୁ ପଡିଥାଏ । ପୃଥିବୀରେ ଏମିତି କିଛି ନଦୀ ଅଛନ୍ତି ଯେଉଁମାନେ ୧୦ ଲକ୍ଷ (୧ ନିୟୁତ) ବର୍ଷ କିମ୍ବା ତା'ଠୁ ଅଧିକ ପୁରୁଣା ଅଟନ୍ତି । ନିମ୍ନରେ ପୃଥିବୀର କିଛି ପୁରୁଣା ନଦୀମାନଙ୍କ ନାମ ଉଲ୍ଲେଖ କରାଯାଇପାରେ ।

**ମିଉଜ୍ ନଦୀ:** ଏହି ନଦୀଟିର ବୟସ ୩୮୦ ନିୟୁତ ବର୍ଷ ।

**ଫିଙ୍କେ ନଦୀ:** ଏହି ନଦୀଟିର ବୟସ ୩୫୦-୪୦୦ ନିୟୁତ ବର୍ଷ ।

**ଚ୍ୟାଙ୍ଗ୍ ଜିଆଙ୍ଗ୍ ନଦୀ:** ଏହି ନଦୀଟିର ବୟସ ୩୬୫ ନିୟୁତ ବର୍ଷ ।

**ନୂଆ ନଦୀ:** ଏହି ନଦୀଟିର ବୟସ ୩୦୦ ନିୟୁତ ବର୍ଷ ।

**ସସ୍କ୍ୟୁହାନା ନଦୀ:** ଏହି ନଦୀଟିର ବୟସ ୩୦୦ ନିୟୁତ ବର୍ଷ ।

**ନୀଳ ନଦୀ:** ଏହି ନଦୀଟିର ବୟସ ୨୫୦ ନିୟୁତ ବର୍ଷ ।

**ରାଇନ୍ ନଦୀ:** ଏହି ନଦୀଟିର ବୟସ ୨୪୦ ନିୟୁତ ବର୍ଷ ।

**ଆମାଜନ୍ ନଦୀ:** ଏହି ନଦୀଟିର ବୟସ ୨୦୦ ନିୟୁତ ବର୍ଷ ।

**ଅମୁର୍ ନଦୀ:** ଏହି ନଦୀଟିର ବୟସ ୧୨୫ ନିୟୁତ ବର୍ଷ ।

**ମ୍ୟାକ୍ଲେ ନଦୀ:** ଏହି ନଦୀଟିର ବୟସ ୮୦ ନିୟୁତ ବର୍ଷ ।

**ମୁରୁମ୍ବିଜ୍ ନଦୀ:** ଏହି ନଦୀଟିର ବୟସ ୭୫ ନିୟୁତ ବର୍ଷ ।

**କଲରାଡୋ ନଦୀ:** ଏହି ନଦୀଟିର ବୟସ ୭୫ ନିୟୁତ ବର୍ଷ ।

**ଥେମ୍ସ ନଦୀ:** ଏହି ନଦୀଟିର ବୟସ ୫୮ ନିୟୁତ ବର୍ଷ ।

**ସିନ୍ଧୁ ନଦୀ:** ଏହି ନଦୀଟିର ବୟସ ୪୫ ନିୟୁତ ବର୍ଷ ।

# ପୃଥିବୀର କିଛି ପୁରୁଣା ନଦୀର ନାମକରଣ

*(Etymology of world's some oldest rivers)*

ମଣିଷର ସନ୍ତାନଟିଏ ଜନ୍ମ ନେଲେ ତାହାର ନାମକରଣ ଉତ୍ସବ ବେଶ୍ ଆଡ଼ମ୍ବର ସହକାରେ ପାଳନ କରାଯାଇଥାଏ । ପୃଥିବୀର ଅନେକ ପ୍ରାଚୀନ ନଦୀ ରହିଛି, ଯେଉଁମାନଙ୍କର ନାମକରଣ ଖୁବ୍ ରୋମାଞ୍ଚକର । ନଦୀମାନଙ୍କର ନାମକରଣ କିଭଳି ସମ୍ଭବ ହୋଇଛି, ଏ ସଂପର୍କରେ ଜାଣିବାକୁ ସମସ୍ତଙ୍କର ଆଗ୍ରହ ବଢିଯାଏ । ପୃଥିବୀର କିଛି ନଦୀଗୁଡ଼ିକର ନାମର ବ୍ୟୁତ୍ପତ୍ତି ନିମ୍ନରେ ପ୍ରଦାନ କରାଗଲା-

**ଆଫ୍ରିକା ମହାଦେଶର କିଛି ନଦୀ**

**୧. ଏପିସ୍ ନଦୀ:** ଆଫ୍ରିକାର ଏକ ପ୍ରାଣୀ 'ଏପ୍ସ' *(little apes)* (ମାଙ୍କଡ଼)ର ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୨. ବର୍ଗ୍ ନଦୀ:** ଆଫ୍ରିକୀୟ ଶବ୍ଦ 'ବର୍ଗ୍' *(Berg)*ର ଅର୍ଥ 'ପର୍ବତ' । ଏହି ନଦୀଟି ଏକ ବିଶାଳ ପର୍ବତଶୃଙ୍ଗରୁ ନିର୍ଗତ ହୋଇଥିବାରୁ ଏହାର ନାମକରଣ ଏଭଳି ହୋଇଛି ।

**୩. ରକ୍ତ ନଦୀ:** ଆଫ୍ରିକାର **'ବ୍ଲଡ୍ ରିଭର'** ବା 'ରକ୍ତ ନଦୀ'ର ନାମ କରଣ ଏକ ପ୍ରାଚୀନ ପୌରାଣିକ ଯୁଦ୍ଧର ନାମାନୁସାରେ ସମ୍ଭବ ହୋଇଛି । ଉକ୍ତ ପୌରାଣିକ ଯୁଦ୍ଧରେ ପ୍ରାୟ ୨୦,୦୦୦ ସୈନିକ ମୃତ୍ୟୁବରଣ କରିବା ସହ ସେମାନଙ୍କର ରକ୍ତରେ ଏହି ନଦୀଟିର ଜଳ ଲାଲ୍ ହୋଇଥିଲା । ଏହି କାରଣରୁ ଏହାକୁ ରକ୍ତ ନଦୀ ବୋଲି କୁହାଯାଉଛି ।

**୪. ବ୍ରିଡ୍ ନଦୀ:** 'ବ୍ରିଡ୍' ଶବ୍ଦଟିର ଅର୍ଥ ଓସାରିଆ *(wide)* । ଏହି ନଦୀଟି ଅଧିକ ଓସାରିଆ ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୫. ଏସ୍କ୍ରାଭୋସ୍ ନଦୀ:** ପର୍ତ୍ତୁଗୀଜ୍ ଶବ୍ଦ 'ଏସ୍କ୍ରାଭେସ୍'ର ଅର୍ଥ କ୍ରୀତଦାସ *(slaves)*।

**୬. ଫୋର୍କାଡସ୍ ନଦୀ:** ପର୍ତ୍ତୁଗୀଜ୍ ଶବ୍ଦ *forked*ରୁ ଏହି ନଦୀର ନାମକରଣ ହୋଇଛି । ଏହି ଶବ୍ଦଟିର ଅର୍ଥ 'ଦୁଇ ଭାଗରେ ବିଭକ୍ତ' । ନଦୀଟି ଉତ୍ପତ୍ତିଲାଭ କରିବାର ଅଳ୍ପ ଦୂରତା ଅତିକ୍ରମ କରିବା ପରେ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିବାରୁ ଏପରି ନାମକରଣ ହୋଇଛି ।

**୭. ଗାମ୍ଟୁସ୍ ନଦୀ:** ଏହା ଡଚ୍ ଶବ୍ଦ *Gamtousch*ରୁ ଉତ୍ପତ୍ତିଲାଭ କରିଛି । ଏହି ନଦୀଟିର ନାମ ଡଚ୍‌ମାନଙ୍କ ଏକ କ୍ଲାନ୍ ବା ଗୋତ୍ରର ନାମାନୁସାରେ ହୋଇଛି ।

**୮. କୋମାତି ନଦୀ:** ଏକ ଆଫ୍ରିକୀୟ ଶବ୍ଦ 'କୋମାତି'ରୁ ଏହି ନଦୀର ନାମକରଣ ହୋଇଛି, ଯାହାର ଅର୍ଥ *(cow)* ବା ଗାଈ । ନଦୀଟିର ଆକୃତି ଏକ ଗାଈ ଭଳି ମନେକରି ସେଠାକାର ଅଧିବାସୀମାନେ ଏହାର ଏଭଳି ନାମକରଣ କରିଛନ୍ତି ।

**୯. ଲିଏସ୍‌ବିକ୍ ନଦୀ:** ନେଦରଲାଣ୍ଡର ଏକ ଛୋଟ ନଦୀର ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୧୦. ମଡର୍ ନଦୀ:** ଏହି ନଦୀଟିର ନାମ *mud* ଶବ୍ଦରୁ ଉତ୍ପତ୍ତିଲାଭ କରିଛି । ଏହି ନଦୀଟି ଭୀଷଣ କର୍ଦ୍ଦମାକ୍ତ ହୋଇଥିବାରୁ ଏଭଳି ନାମକରଣ ହୋଇଛି ।

**୧୧. ମୁଇ ନଦୀ:** ଆଫ୍ରିକୀୟ ଶବ୍ଦ 'ମୁଇ' ଯାହାର ଅର୍ଥ *beautiful* । ଏହି ନଦୀଟି ଖୁବ୍ ସୌନ୍ଦର୍ଯ୍ୟଭରା ଓ ଚିତ୍ତାକର୍ଷକ ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୧୨. ନାଇଜର୍ ନଦୀ:** ଆଫ୍ରିକୀୟ ଶବ୍ଦ '*ngher*' ଯାହାର ଅର୍ଥ '*river of rivers*' । ନାଇଜର୍ ନଦୀକୁ ଆଫ୍ରିକାର ଅନ୍ୟ ସମସ୍ତ ନଦୀମାନଙ୍କର ନେତା ଭାବେ ବିଚାର କରାଯାଏ ।

**୧୩. ନୀଳ ନଦୀ:** ଗ୍ରୀକ୍ ଶବ୍ଦ '*Neilos*' ଯାହାର ଅର୍ଥ *dark or blue* । ସଂସ୍କୃତ ଶବ୍ଦ 'ନୀଲ୍'ରୁ ମଧ୍ୟ ନୀଳ ନଦୀ ଉତ୍ପନ୍ନ ହୋଇଛି । ନୀଳ ନଦୀର ଜଳ ସର୍ବଦା ନୀଳ ରଙ୍ଗର ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୧୪. କୋସବ୍ ନଦୀ:** ଗ୍ରୀକ୍ ଶବ୍ଦ 'ଖୋଇଖୋଇ' ଯାହାର ଅର୍ଥ ହେଉଛି 'କୃଷ୍ଣ ନଦୀ' ବା *black river* । ଏହି ନଦୀର ପାଣିର ରଙ୍ଗ କଳା ଦେଖାଯାଉଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୧୫. ଓହ୍ଲାଙ୍ଗା ନଦୀ:** 'ଓହ୍ଲାଙ୍ଗା' ଜୁଲୁମାନେ ବ୍ୟବହାର କରୁଥିବା ଏକ ଶବ୍ଦ, ଯାହାର ଅର୍ଥ *(reed)* ବା ଏକପ୍ରକାର ଜଳଜ ଉଦ୍ଭିଦ ।

**୧୬. ଓଲିଫିଆଣ୍ଟ୍ସ ନଦୀ:** ଆଫ୍ରିକୀୟ ଶବ୍ଦ 'ଓଲିଫିଆଣ୍ଟ୍ସ', ଯାହାର ଅର୍ଥ *elephants* ଅର୍ଥାତ୍ ହାତୀ । ଏହି ନଦୀଟି ବିଶାଳକାୟ ହୋଇଥିବାରୁ ବୋଧହୁଏ ଏଭଳି ନାମକରଣ କରାଯାଇଛି ।

**୧୭. ଓମି ଓ ସନ୍ ନଦୀ:** ଆଫ୍ରିକୀୟ ଦେବୀ 'ଓ ସନ୍' *(waters of the spirit-goddess O sun)*ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି । ଏହି ନଦୀରେ ଦେବୀ 'ଓ ସନ୍'ଙ୍କ ପବିତ୍ର ଜଳ ପ୍ରବାହିତ ହୋଇଥାଏ ବୋଲି ବିଶ୍ୱାସ ରହିଛି ।

**୧୮. ଅରେଞ୍ଜ ନଦୀ:** ଆଫ୍ରିକୀୟ ଶବ୍ଦ '*Oranje*' ଯାହାର ଅର୍ଥ *orange* । 'ଅରେଞ୍ଜ' ହେଉଛି ଆଫ୍ରିକାର ଏକ ରାଜ୍ୟ । ଏହି ଅରେଞ୍ଜ ରାଜ୍ୟର ରାଜକୁମାର ପଞ୍ଚମ ୱିଲିୟମ୍‌ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୧୯. ପାଲାଲା ନଦୀ:** ଆଫ୍ରିକୀୟ ଶବ୍ଦ 'ପାଲାଲା' ଅର୍ଥ ଯେ, ବନ୍ୟା ପ୍ଲାବିତ କରେ ଅର୍ଥାତ୍ '*one that inundates*' । ଏହି ନଦୀରେ ପ୍ରତିବର୍ଷ ପ୍ରବଳ ବନ୍ୟା ଆସି ବହୁ ଧନଜୀବନ କ୍ଷତି ଘଟାଇଥାଏ ।

**୨୦. ଭାଲ୍ ନଦୀ:** ଆଫ୍ରିକୀୟ ଶବ୍ଦ 'ଭାଲ୍' ଅର୍ଥ 'ଅପ୍ରଖର' *(dull)* । ଏହି ନଦୀଟି ଖୁବ୍ ଶିଥିଳ ଏବଂ ଅପ୍ରଖର ଅଟେ ।

## ଏସିଆ ମହାଦେଶର କିଛି ନଦୀ

**୧. ଅମୁର୍ ନଦୀ:** ମଙ୍ଗୋଲୀୟ ଶବ୍ଦ 'ଅମୁର୍' ଯାହାର ଅର୍ଥ 'ବିଶ୍ରାମ' । ଏହି ନଦୀଟିର ପ୍ରବାହର ଶୈଳୀକୁ ଲକ୍ଷ୍ୟ କଲେ ଏହା ଚିର ନିଦ୍ରାରେ ଶୟନରତ ଥିବାର ମନେ ହୋଇଥାଏ । ଲାଗେ ଯେମିତି ନଦୀଟି ବିଶ୍ରାମ ନେଉଛି ।

**୨. ଅଙ୍ଗାରା ନଦୀ:** ପାର୍ସି ଶବ୍ଦ '*angarkhai*' ଯାହାର ଅର୍ଥ 'ଏକ ଜଙ୍ଗଲୀ ପଶୁର ପାଟି' '*the mouth of a wild beast*' । ଏହି ନଦୀଟି ଦେଖିବାକୁ ଏକ ଜଙ୍ଗଲୀ ପଶୁର ପାଟି ସଦୃଶ ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୩. ଆରାବନ୍ଦ ରଡ୍ ନଦୀ:** ପାର୍ସି ଶବ୍ଦ 'ଆରାବନ୍ଦ ରଡ୍' ଯାହାର ଅର୍ଥ '*fast river*'। ଏହି ନଦୀଟିର ସ୍ରୋତ ଅତି ପ୍ରଖର ଏବଂ ଏହା ଦ୍ରୁତ ଗତିରେ ପ୍ରବାହିତ ହୋଇଥାଏ । ଏଣୁ ଏହାର ଏଭଳି ନାମକରଣ ହୋଇଛି ।

**୪. ବ୍ରହ୍ମପୁତ୍ର ନଦୀ:** ଭାରତୀୟ ପୁରାଣ ମତରେ 'ବ୍ରହ୍ମପୁତ୍ର'ର ଅର୍ଥ ହେଉଛି ଭଗବାନ ବ୍ରହ୍ମାଙ୍କର ପୁତ୍ର ଅର୍ଥାତ୍ '*son of Brahma*' । ବ୍ରହ୍ମପୁତ୍ର ପୃଥିବୀରେ ଏକମାତ୍ର ନଦୀ, ଯିଏ କି ପୁରୁଷ ନଦୀ ଭାବେ ପରିଚିତ ।

**୫. ଚାଙ୍ଗ ଜିଆଙ୍ଗ୍ ନଦୀ:** ଚୀନ୍ ଶବ୍ଦ 'ଚାଙ୍ଗ ଜିଆଙ୍ଗ୍' ଯାହାର ଅର୍ଥ 'ଦୀର୍ଘ ନଦୀ' ଅର୍ଥାତ୍ '*long river*' । ଏହି ନଦୀଟି ଚୀନ୍‌ର ସବୁଠୁ ଦୀର୍ଘତମ ନଦୀ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଛି ।

**୬. ଡଙ୍ଗ୍ ଜିଆଙ୍ଗ୍ ନଦୀ:** ଚୀନ୍ ଶବ୍ଦ '*Dong giang*' ଯାହାର ଅର୍ଥ ପୂର୍ବ ଦିଗରେ ଅବସ୍ଥିତ ନଦୀ '*east river*' । ଏହି ନଦୀଟି ଚୀନର ପୂର୍ବ ଦିଗରୁ ପ୍ରବାହିତ ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୭. ୟୁଫ୍ରେଟିସ୍ ନଦୀ:** ଆରବୀୟ ଶବ୍ଦ 'ୟୁଫ୍ରେଟିସ୍'ର ଅର୍ଥ 'ସୁଖରେ ନଦୀ ପାର ହେବା' '*good to cross river*' । ଏହି ନଦୀଟି ଖୁବ୍ ଶାନ୍ତ ଓ ପ୍ରଶସ୍ତ । ଏହି ନଦୀକୂଳରେ ମେସୋପଟାମିଆ ଭଳି ଏକ ପ୍ରାଚୀନ ନଗର ସଭ୍ୟତା ଗଢି ଉଠିଥିଲା ।

**୮. ଗଙ୍ଗା ନଦୀ:** ଗଙ୍ଗା ନଦୀ ଭାରତର ଏକ ପବିତ୍ର ନଦୀ ଏବଂ ହିନ୍ଦୁ ଧର୍ମଶାସ୍ତ୍ର ମତ ଅନୁସାରେ ଏହି ନଦୀଟି ପ୍ରତି ହିନ୍ଦୁମାନଙ୍କର ମାଆ ଅଟନ୍ତି । ଗଙ୍ଗା *(mother Ganga)* ହେଉଛନ୍ତି ହିନ୍ଦୁ ଧର୍ମର ଜଣେ ପ୍ରମୁଖ ଦେବୀ *(Indian goddess)* । ଗଙ୍ଗାଙ୍କୁ ପ୍ରତ୍ୟେକ ହିନ୍ଦୁ ପୂଜା କରିଥା'ନ୍ତି ।

**୯. ହୁଆଙ୍ଗ୍ ହୋ ନଦୀ:** ଚୀନ୍ ଶବ୍ଦ 'ହୁଆଙ୍ଗ ହୋ' ଯାହାର ଅର୍ଥ '*yellow river*' । ଏହି ନଦୀର ଜଳ ସର୍ବଦା ହଳଦି ରଙ୍ଗର ହୋଇଥିବାରୁ ଏହାର ଏଭଳି ନାମକରଣ କରାଯାଇଛି ।

**୧୦. ସିନ୍ଧୁ ନଦୀ:** ଇଂରାଜୀରେ ଏହାକୁ *'Indus'* ନଦୀ ବୋଲି କୁହାଯାଇଥାଏ । ଏହା *'India'* ଶବ୍ଦରୁ ଉତ୍ପତ୍ତିଲାଭ କରିଛି । ତେବେ ସଂସ୍କୃତ ଶବ୍ଦ 'ସିନ୍ଧୁ' ଯାହାର ଅର୍ଥ ସମୁଦ୍ର ବା ଜଳସ୍ରୋତ *(sea/stream)* । ଏହି ନଦୀଟି ସମୁଦ୍ର ଭଳି ବିଶାଳ ଓ ଦିଗନ୍ତ ବିସ୍ତାରି ହୋଇଥିବାରୁ ଏହାକୁ ସିନ୍ଧୁ ନାମରେ ନାମିତ କରାଯାଇଛି । ସଂସ୍କୃତ ଶବ୍ଦ 'ସିନ୍ଧୁ'ରୁ ନଦୀଟିର ନାମକରଣ ହୋଇଛି ।

**୧୧. ମେକଂ ନଦୀ** *(Mekong river)*: ଥାଇ ଶବ୍ଦ *'Mae Khong'* ଯାହାର ଅର୍ଥ *'mother of all rivers'* ଅର୍ଥାତ୍ 'ସବୁ ନଦୀଙ୍କର ମାଆ' । ଏହି ନଦୀଟିକୁ ଥାଇଲାଣ୍ଡରେ ମା' ଭଳି ପୂଜା କରାଯାଇଥାଏ ।

**୧୨. ଓବ୍ ନଦୀ:** ମଙ୍ଗୋଲିୟ ଶବ୍ଦ 'ଓବ୍' ଯାହାର ଅର୍ଥ 'ତୁଷାର' ବା *'snow'* । ଏହି ନଦୀର ଜଳ ସବୁବେଳେ ବରଫାବୃତ୍ତ ରହୁଥିବାରୁ ଏହାର ଏଭଳି ନାମକରଣ କରାଯାଇଛି ।

**୧୩. ପର୍ଲ ନଦୀ:** ଏହି ନଦୀଟି ଚୀନ୍‌ର ଏକ ପ୍ରମୁଖ ଓ ଆକର୍ଷଣୀୟ ନଦୀ । ଏହି ନଦୀଟିର ମଧ୍ୟ ଭାଗରେ ଏକ ପଥୁରିଆ ସ୍ଥଳଭାଗ ରହିଛି ଯାହାକୁ *'sea pearl'* (ସମୁଦ୍ର ମୁକ୍ତା) କୁହାଯାଇଥାଏ । ଏହି 'ପର୍ଲ' ଶବ୍ଦରୁ ନଦୀଟିର ନାମକରଣ ହୋଇଛି ।

**୧୪. ସେଫିଡ୍ ରଡ୍ ନଦୀ:** ପାର୍ସୀ ଶବ୍ଦ 'ଶେଫିଡ୍ ରଡ୍'ର ଅର୍ଥ 'ଧଳା ନଦୀ' *(white river)* । ଏହି ନଦୀଟିର ଜଳ ଅତି ପବିତ୍ର ଓ ଧବଳ ବର୍ଣ୍ଣ ହୋଇଥିବାରୁ ଏହାର ଏଭଳି ନାମକରଣ ହୋଇଛି ।

**୧୫. ସେଲେଙ୍ଗ ନଦୀ:** ମଙ୍ଗୋଲିୟ ଶବ୍ଦ 'ସେଲେଙ୍ଗ'ର ଅର୍ଥ 'ପହଁରିବା' *(for swimming)* । ଏହି ନଦୀରେ ମଙ୍ଗୋଲିୟମାନେ ସନ୍ତରଣ କରି ମଜା ନେଇଥା'ନ୍ତି ।

**୧୬. ଟାଇଗ୍ରିସ୍ ନଦୀ:** ଗ୍ରୀକ୍ ଶବ୍ଦ 'ଟାଇଗର'*(tiger)*ରୁ ଏହି ନଦୀର ନାମକରଣ ହୋଇଛି । 'ଟାଇଗର୍' ଶବ୍ଦଟିର ଅର୍ଥ 'ଚଳନ୍ତା ପାଣି' *(running water)* । ଏହି ନଦୀ କୂଳରେ ପୃଥିବୀର ପ୍ରାଚୀନତମ 'ମେସୋପଟାମିଆ ସଭ୍ୟତା' ଗଢି ଉଠିଥିଲା ।

**୧୭. ଓ୍ୱାଙ୍ଗ୍ ଥୋଙ୍ଗ୍ ନଦୀ:** ଥାଇ ଶବ୍ଦ 'ଓ୍ୱାଙ୍ଗ ଥୋଙ୍ଗ୍' ଯାହାର ଅର୍ଥ 'ସ୍ୱର୍ଣ୍ଣ ପ୍ରାସାଦ' *(golden palace)* । ଅନେକ ସ୍ଥାନରେ ଏହି ନଦୀର ଆକୃତି ସ୍ୱର୍ଣ୍ଣ ପ୍ରାସାଦ ଭଳି ମନେ ହୋଇଥାଏ । ଏଣୁ ନଦୀଟିର ଏଭଳି ନାମକରଣ ସଂଭବ ହୋଇଛି ବୋଲି ଅନୁମାନ କରାଯାଏ ।

**୧୮. ବୈତରଣୀ ନଦୀ:** ବୈତରଣୀ ନଦୀଟି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ପୁରରେ ପ୍ରବାହିତ ହୋଇଥିବା ଏକ ନଦୀ ଏବଂ ଏହା ତିନି ପୁରକୁ ତ୍ରାଣ କରୁଥିବାରୁ ଏହାର ନାମ ବୈତରଣୀ ହୋଇଛି । *(river that flows in swarg i.e. heaven, martya i.e. earth and patal i.e. under ground of the earth)*

**୧୯. ମହାନଦୀ ନଦୀ:** 'ମହାନଦୀ'ର ଅର୍ଥ ହେଉଛି 'ବଡ଼ ନଦୀ' ବା '*big river*'। ଏହା ଓଡ଼ିଶାର ସବୁଠୁ ବଡ଼ ନଦୀ ହୋଇଥିବାରୁ ଏହାର ନାମକରଣ ଏଭଳି ହୋଇଛି ।

**ଅଷ୍ଟ୍ରେଲିଆ ମହାଦେଶର କିଛି ନଦୀ**

**୧. ବାର୍‌ଓ୍ୱନ୍ ନଦୀ:** ଏହି ନଦୀଟିର ନାମ ଅଷ୍ଟ୍ରେଲିୟ ଶବ୍ଦ *paawan*ରୁ ଉତ୍ପତ୍ତିଲାଭ କରିଛି । ଏହି ଶବ୍ଦଟିର ଅର୍ଥ ହେଉଛି 'ନଦୀ' (*river*)।

**୨. ବର୍ଣ୍ଣେଟ୍ ନଦୀ:** ପ୍ରସିଦ୍ଧ ଆବିଷ୍କାରକ *Jemes Bunnett* ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୩. କାଂପାସ୍ପେ ନଦୀ:** ସମ୍ରାଟ ଆଲେକ୍‌ଜାଣ୍ଡାରଙ୍କ ପ୍ରେମିକା *Campaspe*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୪. କୁପର କ୍ରିକ୍ ନଦୀ:** ଦକ୍ଷିଣ ଅଷ୍ଟ୍ରେଲିଆର ଜଣେ ଜଜ୍ *Charles Cooper*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୫. ଡେଣ୍ଟ୍ରି ନଦୀ:** ପ୍ରସିଦ୍ଧ ନୃତତ୍ତ୍ୱବିତ୍ *Richard Daintree*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୬. ଡାଲେ ନଦୀ:** ଦକ୍ଷିଣ ଅଷ୍ଟ୍ରେଲିଆର ଗଭର୍ଣ୍ଣର *Sir Dominick Daly*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୭. ଡାର୍ଲିଂ ନଦୀ:** ନିଉ ସାଉଥ୍ ଓ୍ୱେଲ୍‌ସର ଗଭର୍ଣ୍ଣର *Sir Ralph Darling*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୮. ଡାୟାମାଣ୍ଟିଆ ନଦୀ:** କୁଇନ୍‌ସଲାଣ୍ଡର ଗଭର୍ଣ୍ଣରଙ୍କ ପତ୍ନୀ *Lady Diamantia*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୯. ଫ୍ଲିଣ୍ଡର୍ସ ନଦୀ:** ପ୍ରସିଦ୍ଧ ଆବିଷ୍କାରକ *Captain Matthew Flinders*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୦. ଫ୍ରାଙ୍କ୍‌ଲିନ୍ ନଦୀ:** ଟାସ୍‌ମାନିଆର ଗଭର୍ଣ୍ଣର *Sir John Franklin*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୧. ଗ୍ୟାସ୍‌କ୍ୱେନ୍ ନଦୀ:** ପ୍ରସିଦ୍ଧ ଆବିଷ୍କାରକ ଜର୍ଜ ଗ୍ରେଙ୍କ ଜଣେ ପରମ ବନ୍ଧୁ *Captain J Gascoyne*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୨. ଗୁଲ୍‌ବର୍ଣ୍ଣ ନଦୀ:** ଇଂଲିଶ ଷ୍ଟେଟ୍‌ସମ୍ୟାନ୍ *Henry Goulburn*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୩. ହାକ୍‌ସବରି ନଦୀ:** ଲିଭରପୁଲ୍‌ର *Baron Hawkesbury*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୪. ଲାଚ୍‌ଲାନ୍‌ନଦୀ:** ନିଉ ସାଉଥ୍‌ୱେଲ୍‌ସର ଗଭର୍ଣ୍ଣର *Major General Lachlan Macquarie*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୫. ମାକ୍ୱାରି ନଦୀ:** ନିଉ ସାଉଥୱେଲ୍‌ସର ଗଭର୍ଣ୍ଣର *Major General Lachlan Macquarie*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୬. ମୁରେ ନଦୀ:** ଅଷ୍ଟ୍ରେଲିଆର ଷ୍ଟେଟ୍ ଫର୍ ଓ୍ୱାର୍ ଆଣ୍ଡ କଲୋନିଜ୍‌ର ବ୍ରିଟିଶ୍ ସେକ୍ରେଟାରି *Sir George Murray*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୭. ମୁରୁମ୍ବିଜ୍ ନଦୀ:** ଅଷ୍ଟ୍ରେଲିୟ ଶବ୍ଦ *Murrumbidgee* ଯାହାର ଅର୍ଥ '*Big water*' । ଏହି ନଦୀରେ ପ୍ରଚୁର ମାତ୍ରାରେ ଜଳ ପ୍ରବାହିତ ହେଉଥିବାରୁ ଏହାର ଏଭଳି ନାମକରଣ କରାଯାଇଛି ।

**୧୮. ଅର୍ଡ ନଦୀ:** ପଶ୍ଚିମ ଅଷ୍ଟ୍ରେଲିଆର ଗଭର୍ଣ୍ଣର *Harry Ord*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୧୯. ଟରେନ୍‌ସ ନଦୀ:** ସାଉଥ୍ ଅଷ୍ଟ୍ରେଲିଆର କଲୋନାଇଜିଂ କମିଶନର ଅଧ୍ୟକ୍ଷ *Colonel Rober Torrens*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୨୦. ରଫସ୍ ନଦୀ:** ଆବିଷ୍କାରକ *Charles Rufus*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୨୧. ଟଡ୍ ନଦୀ:** ସାଉଥ୍ ଅଷ୍ଟ୍ରେଲିଆର ପୋଷ୍ଟ ମାଷ୍ଟର ଜେନେରାଲ୍ *Charles Todd*ଙ୍କ ନାମାନୁସାରେ ଏହି ନଦୀଟିର ନାମକରଣ ହୋଇଛି ।

**୨୨. ଓ୍ୱାଇକାଟୋ ନଦୀ:** ଅଷ୍ଟ୍ରେଲିୟ ଶବ୍ଦ 'ଓ୍ୱାଇକୋଟୋ'ର ଅର୍ଥ '*flowing water*' । ନଦୀଟି ଚିରସ୍ରୋତା ଓ ବର୍ଷତମାମ୍ ପ୍ରବାହିତ ହୋଇଥାଏ । ବର୍ଷସାରା ପ୍ରବାହିତ ହେଉଥିବାରୁ ଏଭଳି ନାମକରଣ ହୋଇଛି ।

**ୟୁରୋପ ମହାଦେଶର କିଛି ନଦୀ**

**୧. ଆଭନ୍ ନଦୀ:** ୟୁରୋପୀୟ ଶବ୍ଦ 'ଆଭନ୍'ର ଅର୍ଥ ହେଉଛି ନଦୀ ।

**୨. ଆଭନ୍‌ବେଗ ନଦୀ:** ୟୁରୋପୀୟ ଶବ୍ଦ 'ଆଭନ୍‌ବେଗ୍'ର ଅର୍ଥ ହେଉଛି 'ଛୋଟ ନଦୀ' । ଏହି ନଦୀଟିର ଆକାର ଛୋଟ ହୋଇଥିବାରୁ ଏହାକୁ ଛୋଟ ନଦୀ ଭାବେ ୟୁରୋପୀୟମାନେ ସମ୍ବୋଧନ କରିଥା'ନ୍ତି ।

**୩. ଆଭନ୍‌ମୋର୍ ନଦୀ:** ୟୁରୋପୀୟ ଶବ୍ଦ 'ଆଭନ୍‌ମୋର୍'ର ଅର୍ଥ ହେଉଛି 'ବଡ଼ ନଦୀ' । ଏହି ନଦୀଟି ବିଶାଳ ଆକୃତିର ହୋଇଥିବାରୁ ୟୁରୋପୀୟମାନେ ଏହାକୁ 'ବଡ଼ ନଦୀ' ଭାବେ ସମ୍ବୋଧନ କରିଥା'ନ୍ତି ।

**୪. ବୋସ୍‌ନା ନଦୀ:** ୟୁରୋପୀୟ ଶବ୍ଦ 'ବୋସ୍‌ନା'ର ଅର୍ଥ ହେଉଛି *flowing water* ।

ଏହି ନଦୀରେ ବର୍ଷ ସାରା ଜଳ ପ୍ରବାହିତ ହୋଇଥାଏ । ଏହା ସର୍ବଦା ଚଳଚଞ୍ଚଳ ରହିଥାଏ । ୟୁରୋପରେ ଏହି ନଦୀଟି 'ଚଞ୍ଚଳା' ଭାବେ ପରିଚିତ ।

**୫. ବୋନି ନଦୀ:** ୟୁରୋପୀୟ ନଦୀ ଠାକୁରାଣୀ 'ବୋନ୍' *(boann)* ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି । ଏହାର ଅର୍ଥ 'ଧଳା ଗାଈ' । ୟୁରୋପୀୟମାନେ ଏହି ନଦୀକୁ ପୂଜା କରିଥା'ନ୍ତି ।

**୬. ଡାନ୍ୟୁବ୍ ନଦୀ:** ଲାଟିନ୍ ଶବ୍ଦ *Danuvius* ରୁ ଏହି ନଦୀର ନାମକରଣ ସଂଭବ ହୋଇଛି । 'ଡାନ୍ୟୁଭିୟସ' ଶବ୍ଦଟିର ଅର୍ଥ ନଦୀ ।

**୭. ଡନ୍ ନଦୀ:** ସ୍କଟ୍‌ଲାଣ୍ଡର ଏକ ଦେବୀ 'ଡନ୍'ଙ୍କ ନାମାନୁସାରେ ଏହି ନଦୀର ନାମକରଣ ସଂଭବ ହୋଇଛି ।

**୮. ରାହିନ୍ ନଦୀ:** ଜର୍ମାନ୍ ଶବ୍ଦ *Rhine* ରୁ ଏହି ନଦୀର ନାମକରଣ ହୋଇଛି । ଏହାର ଅର୍ଥ 'ବହିବା' ବା 'ଗତି କରିବା' ।

**୯. ସଭର୍ନ ନଦୀ:** ଲାଟିନ୍ ଶବ୍ଦ *Sabrina*ରୁ ଏହି ନଦୀର ନାମକରଣ ହୋଇଛି । *Sabrina* ହେଉଛନ୍ତି ଜଣେ ୟୁରୋପୀୟ ନଦୀ ଠାକୁରାଣୀ ।

**୧୦. ଥେମ୍‌ସ ନଦୀ:** ଏହି ନଦୀର ନାମ ଲାଟିନ୍ ଶବ୍ଦ *Tamesis* ରୁ ଆସିଛି । ଏହାର ଅର୍ଥ ଅନ୍ଧାର ନଦୀ ବା *dark river* ।

**୧୧. ଭୋଲ୍‌ଗା ନଦୀ:** ୟୁରୋପୀୟ ଶବ୍ଦ *vologa* ରୁ ଏହି ନଦୀର ନାମକରଣ ହୋଇଛି । ଏହାର ଅର୍ଥ 'ଆର୍ଦ୍ରତା' ବା *humidity* ।

**ଉତ୍ତର ଆମେରିକା ମହାଦେଶର କିଛି ନଦୀ**

**୧. ବୋ' ନଦୀ:** ଏହି ନଦୀ କୂଳରେ ବଢ଼ିଥିବା ପାଣି ରୁଅ ଗଛରେ ଏଠାରେ ବସବାସ କରୁଥିବା ଅଧିବାସୀମାନେ ଧନୁ *(bow)* ନିର୍ମାଣ କରୁଥିବାରୁ ଏହାର ନାମକରଣ ଏପରି ହୋଇଛି ବୋଲି ବିଶ୍ୱାସ କରାଯାଏ ।

**୨. ବ୍ରାଜୋସ୍ ନଦୀ:** ସ୍ପେନ୍ ଶବ୍ଦ *Los Brazos de dios* ରୁ ଏହି ନଦୀର ନାମକରଣ ସଂଭବ ହୋଇଛି । ଏହାର ଅର୍ଥ *'the arm of God'* ।

**୩. କାନାଡ଼ିଆନ୍ ନଦୀ:** ଏହି ନଦୀଟି କାନାଡ଼ା ଆଡକୁ ଗତି କରିଥିବାରୁ ହୁଏତ ଏହାର ନାମକରଣ ଏପରି ହୋଇଛି । ଅପରପକ୍ଷେ, କାନାଡ଼ା ଅଞ୍ଚଳର ବଣିକ ଓ ଶିକାରୀମାନେ ଏହି ନଦୀ ପାର ହୋଇ ଆସୁଥିବାରୁ ଏହାର ନାମକରଣ ଏମିତି ହୋଇଛି ବୋଲି କୁହାଯାଏ ।

**୪. କଲ୍‌ରାଡୋ ନଦୀ:** ସ୍ପେନ୍ ଶବ୍ଦ *'colorado'*ରୁ ଏହି ନଦୀର ନାମକରଣ ହୋଇଛି । କଲ୍‌ରାଡୋ ଅର୍ଥ ହେଉଛି 'ଲାଲ୍ ରଙ୍ଗର ଏକ ସାମୁଦ୍ରିକ ମାଛ' । ପ୍ରକୃତରେ କଲ୍‌ରାଡ଼ୋ ନଦୀର

ଜଳ ଲାଲ୍ ରଙ୍ଗର ଭ୍ରମ ସୃଷ୍ଟି କରିଥାଏ । ଏହି ନଦୀଟି ଦେଖିବାକୁ ଖୁବ୍ ସୁନ୍ଦର ଓ ଆକର୍ଷଣୀୟ ।

**୫. କଲମ୍ବିଆ ନଦୀ:** ପ୍ରସିଦ୍ଧ ନାବିକ କ୍ୟାପ୍‌ଟେନ୍ *Captain Robert Gray*ଙ୍କର ପ୍ରସିଦ୍ଧ ଜାହାଜ *Columbia Rediviva* ନାମାନୁସାରେ ଏହି ନଦୀର ନାମ କଲମ୍ବିଆ ହୋଇଛି ।

**୬. କମ୍ବରଲ୍ୟାଣ୍ଡ ନଦୀ:** ଯୁବରାଜ *William Augustus* ଙ୍କୁ *'Duke of Cumberland'* ଉପାଧି ପ୍ରାପ୍ତ ହେବାପରେ ଏହି ନଦୀର ନାମକରଣ ହୋଇଛି ।

**୭. ଡେଲା ୱେୟାର୍ ନଦୀ:** ଭର୍ଜିନିଆର ପ୍ରଥମ ଇଲିଂଶ୍ କଲୋନିଆଲ୍ ଗଭର୍ଣ୍ଣର *Thomas West Baron De la Warre*ଙ୍କ ନାମାନୁସାରେ ଏହି ନଦୀର ନାମକରଣ କରାଯାଇଛି ।

**୮. ଫ୍ରେଜର୍ ନଦୀ:** *Simon Fraser* ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୯. ହଡ୍‌ସନ୍ ନଦୀ:** ପ୍ରସିଦ୍ଧ ଇଂରେଜ ନାବିକ *Henry Hudson* ଏହି ନଦୀକୁ ୧୬୦୯ ମସିହାରେ ପ୍ରଥମେ ଆବିଷ୍କାର କରିବା ପରେ ଏହାର ନାମକରଣ ତାଙ୍କ ନାମାନୁସାରେ ହୋଇଛି ।

**୧୦. ମାକେଞ୍ଜି ନଦୀ:** ସ୍କଟ୍‌ଲ୍ୟାଣ୍ଡ-କନାଡ଼ାର ପ୍ରସିଦ୍ଧ ଆବିଷ୍କାରକ *Alexander MacKenzie* ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୧୧. ମିସିଜାଗି ନଦୀ***(Mississagi)***:** ଏହି ନଦୀଟିର ନାମକରଣ *misi-zaagi* ଶବ୍ଦରୁ ସଂଭବ ହୋଇଛି । ଏହାର ଅର୍ଥ ହେଉଛି 'ବଡ଼ପାଟିଆ ନଦୀ' *(river with a big mouth)* । ନଦୀଟିର ବିଶାଳ ଆକୃତି ପାଇଁ ଏଭଳି ନାମକରଣ ହୋଇଛି ବୋଲି ବିଶ୍ୱାସ କରାଯାଏ ।

**୧୨. ମିସିସିପି ନଦୀ***(Mississippi)***:** ଏହି ନଦୀଟି ଆମେରିକୀୟ ଶବ୍ଦ *misi-ziibi* ଶବ୍ଦରୁ ଉତ୍ପନ୍ନ ହୋଇଛି । ଏହାର ଅର୍ଥ 'ବଡ଼ ନଦୀ' *(big river)* । ଏହା ପୃଥିବୀର ତୃତୀୟ ଦୀର୍ଘତମ ନଦୀ ଏବଂ ଯୁକ୍ତରାଷ୍ଟ୍ର ଆମେରିକାର ସବୁଠୁ ବଡ଼ ନଦୀ ଅଟେ ।

**୧୩. ନେଲ୍‌ସନ ନଦୀ:** ୧୬୧୨ ମସିହାରେ *Robert Nelson* ନାମରେ ଜଣେ ନାବିକଙ୍କର ଏହି ନଦୀ ମୁହାଣରେ ମୃତ୍ୟୁ ହୋଇଥିଲା । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏହି ନଦୀର ନାମକରଣ ହୋଇଛି ।

**୧୪. ଅଟୱା ନଦୀ:** *Ottawa* ସଂପ୍ରଦାୟର ଜନଜାତି ଏହି ନଦୀ କୂଳରେ ବସବାସ କରୁଥା'ନ୍ତି । ଏହି ଜନଜାତିଙ୍କ ନାମାନୁସାରେ ନଦୀର ନାମକରଣ 'ଅଟୱା' ହୋଇଛି ।

**୧୫. ରିଓ ଗ୍ରାଣ୍ଡେ ନଦୀ:** ଏହି ନଦୀଟିର ନାମକରଣ *Rio Grande* ଶବ୍ଦରୁ ସୃଷ୍ଟି ହୋଇଛି । ଏହାର ଅର୍ଥ ବୃହତ୍‌କାୟ ନଦୀ *(big river)* ।

**୧୬. ସ୍ନେକ୍ ନଦୀ:** ଏହି ନଦୀଟି ସାପ ଭଳି ଅଙ୍କାବଙ୍କା ହୋଇଥିବାରୁ ଏହାର ନାମ ସାପ ନଦୀ ବା *(snake river)* କୁହାଯାଉଛି ।

**ଦକ୍ଷିଣ ଆମେରିକା ମହାଦେଶର କିଛି ନଦୀ**

**୧. ଆମାଜନ୍ ନଦୀ:** ଗ୍ରୀକ୍ ଶବ୍ଦ *Amazon* ରୁ ଏହି ନଦୀର ନାମକରଣ ହୋଇଛି । ଏହାର ଅର୍ଥ ନୌକା ବିଧ୍ୱଂସକାରୀ ବା *'Boat destroyer'* । ଏହି ନଦୀର ଶଯ୍ୟା ଖୁବ୍ ଦନ୍ତୁରିତ ଓ ଏହାର ସ୍ରୋତ ଖୁବ୍ ପ୍ରଖର ଏବଂ ଭୟଙ୍କର ହୋଇଥିବାରୁ ନଦୀ ପାର ହେବା ଖୁବ୍ କଷ୍ଟକର ହୋଇଥାଏ ।

**୨. ରିଓ କୋକ୍ରାନେ ନଦୀ:** ଚିଲି ନୌବାହିନୀରେ କାର୍ଯ୍ୟରତ ଜଣେ ଅଫିସର *Lord Cochrane* ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି ।

**୩. ରିଓ ଫୁଟାଲେଫୁ ନଦୀ:** ଏହି ନଦୀଟିର ନାମକରଣ *Rio Futaleufu* ଶବ୍ଦରୁ ସୃଷ୍ଟି ହୋଇଛି । ଏହାର ଅର୍ଥ *'big river'* ।

**୪. ପାରାନା ନଦୀ:** ଏହି ନଦୀଟିର ନାମକରଣ *'Parana'* ଶବ୍ଦରୁ ସୃଷ୍ଟି ହୋଇଛି । ଏହାର ଅର୍ଥ ହେଉଛି 'ପ୍ରଚୁର ଉତ୍ପାଦନ କରୁଥିବା ନଦୀ' *(copious river)* ।

**୫. ରିଓ ଡେ ଲା ପ୍ଲାଟା ନଦୀ:** ସ୍ପେନୀୟ ଶବ୍ଦ *Rio de la Plata* ରୁ ଏହି ନଦୀର ନାମକରଣ ହୋଇଛି । ଏହାର ଅର୍ଥ *silver river* । ଏହି ନଦୀର ଜଳ ସର୍ବଦା ରୂପା ଭଳି ଚକ୍ ଚକ୍ କରୁଥାଏ ।

**୬. ରିଓ ଇଂପେରିଆଲ୍:** ଦକ୍ଷିଣ ଆମେରିକାର ପ୍ରସିଦ୍ଧ ସହର *Imperial* ନାମାନୁସାରେ ଏହି ନଦୀର ନାମକରଣ ହୋଇଛି । ବର୍ତ୍ତମାନ ଏହି ସହର *Imperial*ର ନାମ ପରିବର୍ତ୍ତନ ହୋଇ *city of Carahue* ହୋଇଛି ।

***(Sources***

*1. Great Rivers of the World Hardcover -Paolo Novaresio, Barnes & Noble; First Edition edition (2006)*

*2. A world of rivers -Ellen Wohl, University of Chicago Press (2010)*

*3. Rivers of the World: A Social, Geographical, and Environmental Sourcebook -James R. Penn, ABC-CLIO, California, (2001)*

*4. Great rivers of the world -Singleton, Esther, New York, Dodd, Mead & company (1908)*

*5. Nile -Martha Holmes, Gavin Maxwell and Tim Scoones, BBC Books,*

London (2004)
6. Great rivers of the world -National Geographic Society (U.S.A) 1984
7. Rivers of London -Ben Aaronovitch, The Sunday Times bestselling Peter Grant Series (2014)
8. River and Stream Ecosystems of the World -Colbert E. Cushing, Kenneth W. Cummins, G. Wayne Minshall, University of California Press, 2006
9. The River -Gary Paulsen, Ember; Reprint edition (2012)
10. The River of Doubt: Theodore Roosevelt's Darkest Journey -Candice Millard, Anchor; 1st edition (2006)
11. One River: Explorations and Discoveries in the Amazon rain forest - Wade Davis, Simon & Schuster; Reprint edition (1997)
12. The Nile -Professor Robert O. Collins,Yale University Press; First Edition edition (2002)
13. A Bibliography on the River Nile, Vol. I, The River Nile and its Economic, Political, Social and Cultural Role, An Annotated Bibliography -Terje Tvedt, The Norwegian Research Council &The Meltzer Fund, Centre for Development Studies, University of Bergen, 2000.
14. Blood River: The Terrifying Journey Through The World's Most Dangerous Country – Bargain Price, Grove Press, New York (2009)
15. Facing the Congo: A Modern-Day Journey into the Heart of Darkness - Jeffrey Tayler, Broadway Books, Portland (2001)
16. Zambezi: River of Africa -Mike Coppinger, BHB International, Jumbo Williams, New Holland Publishers, Ltd. (1997)
17. Old Man River: The Mississippi River in North American History -Paul Schneider, Henry Holt and Co. (2013)
18. Immortal River: The Upper Mississippi in Ancient and Modern Times - Calvin R. Fremling, University of Wisconsin Press (2004)
19. Rising Tide: The Great Mississippi Flood of 1927 and How It Changed America -John M. Barry, Simon and Schuster, (2007)
20. A Bend in the Yellow River: Huang-Ho -Justin Hill, United Kingdom: Phoenix (1997)
21. Ob River -Ronald Cohn Jesse Russel, VSD (2012)
and some websites on rivers of world.
22. Some websites of rivers in world.

## ଭାରତର ନଦନଦୀ

*(River Systems in India)*

ପୃଥିବୀର ନଦନଦୀମାନଙ୍କ ବିଷୟରେ ଜାଣିଲାପରେ ନିଶ୍ଚୟ ଆମ ଦେଶର ନଦୀମାନଙ୍କ ସଂପର୍କରେ ଜାଣିବାକୁ ଇଚ୍ଛା ହେବ । ଭାରତକୁ **'ନଦୀ ମାତୃକାର ଦେଶ'** ଭାବେ ଚିତ୍ରଣ କରାଯାଇଥାଏ । ଭାରତରେ ଗଙ୍ଗା, ବ୍ରହ୍ମପୁତ୍ର, ସିନ୍ଧୁ, ନର୍ମଦା, କ୍ରିଷ୍ଣା, କାବେରୀ, ଗୋଦାବରୀ ଭଳି ଅନେକ ପବିତ୍ର ନଦୀ ପ୍ରବାହିତ । ଭାରତରେ ବହୁଥିବା ଅଧିକାଂଶ ନଦୀ ଏକ ଧାର୍ମିକ ଭାବନା ସହିତ ଯୋଡି ହୋଇଥାଏ । ନଦୀଗୁଡିକ ସେ ଅଞ୍ଚଳର ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ଅର୍ଥନୈତିକ ଜୀବନକୁ ବେଶ୍ ପ୍ରଭାବିତ କରିଥାଏ । ପ୍ରତ୍ୟେକ  ନଦୀର ଉତ୍ପତ୍ତି ପଛରେ ଅନେକ ମନଛୁଆଁ କାହାଣୀମାନ ରହିଥାଏ । ପୁରାଣରୁ ଆରମ୍ଭ କରି ଇତିହାସ ପର୍ଯ୍ୟନ୍ତ ନଦୀମାନେ ସର୍ବଦା ମାନବ ସଭ୍ୟତାର ବିକାଶରେ ସକ୍ରିୟ ଭୂମିକା ତୁଲେଇ ଆସିନ୍ତି । ଭାରତରେ ଯେତେ ନଦୀ ପ୍ରବାହିତ ସେମାନେ ମୁଖ୍ୟତଃ ତିନୋଟି ଜଳଛାୟା ଅଞ୍ଚଳରୁ ଉତ୍ପତ୍ତି ଲାଭ କରିଛନ୍ତି । ସେଗୁଡିକ ହେଲା-

୧· ହିମାଳୟ ଓ କାରାକୋରମ୍ ପାର୍ବତ୍ୟାଞ୍ଚଳ (ଉତ୍ତର ଭାରତ)

୨· ବିନ୍ଧ୍ୟ, ସତପୁରା ଏବଂ ଛୋଟନାଗପୁର ମାଳଭୂମି (କେନ୍ଦ୍ର ଭାରତ)

୩· ପଶ୍ଚିମ ଘାଟ ପର୍ବତମାଳା ବା ସାହ୍ୟାଦ୍ରି (ପଶ୍ଚିମ ଭାରତ)

ସିନ୍ଧୁ, ଗଙ୍ଗା, ବ୍ରହ୍ମପୁତ୍ର ଏବଂ ସେମାନଙ୍କର ସମସ୍ତ ଉପନଦୀଗୁଡ଼ିକ ମୁଖ୍ୟତଃ ହିମାଳୟ ଓ କାରାକୋରମ୍ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରିଥିବାବେଳେ ନର୍ମଦା, ତାପ୍ତି, କ୍ରିଷ୍ଣା, ଗୋଦାବରୀ, ମହାନଦୀ ଭଳି ନଦୀମାନେ ବିନ୍ଧ୍ୟ, ସାହ୍ୟାଦ୍ରି ଓ ଛୋଟନାଗପୁର ମାଳଭୂମିରୁ ନିର୍ଗତ ହୋଇଛନ୍ତି । ଭାରତର ନଦୀ ବ୍ୟବସ୍ଥାକୁ ପ୍ରମୁଖ ୧୦ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡିକ ହେଲା-

୧· ସିନ୍ଧୁ ନଦୀ *(Indus River System)*

୨· ବ୍ରହ୍ମପୁତ୍ର ନଦୀ *(Brahmaputra River System)*

୩· ଗଙ୍ଗା ନଦୀ *(Ganga River System)*

୪· ଯମୁନା ନଦୀ *(Yamuna River System)*

୫· ନର୍ମଦା ନଦୀ *(Narmada River System)*

୬· ତାପ୍ତି ନଦୀ *(Tapti River System)*

୭· ଗୋଦାବରୀ ନଦୀ *(Godavari River System)*

୮· କ୍ରିଷ୍ଣା ନଦୀ *(Krishna River System)*

୯· କାବେରୀ ନଦୀ *(Cauveri River System)*

୧୦· ମହାନଦୀ *(Mahanadi River System)*

## ୧. ସିନ୍ଧୁ ନଦୀ *(Indus River System)*



**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ, ପାକିସ୍ତାନ, ଆଫ୍‌ଗାନିସ୍ତାନ, ଚୀନ୍**

**ପାକିସ୍ତାନ : ୫,୨୦,୦୦୦ ବର୍ଗ କି.ମି**

**ଆଫ୍‌ଗାନିସ୍ତାନ : ୭୨,୦୦୦ ବର୍ଗ କି.ମି**

**ଚୀନ୍ : ୮୮,୦୦୦ ବର୍ଗ କି.ମି**

**ଭାରତ : ୪,୪୦,୦୦୦ ବର୍ଗ କି.ମି.**

**ସର୍ବ ମୋଟ ଅବବାହିକା ଅଞ୍ଚଳ : ୧୧,୨୦,୦୦୦ ବର୍ଗ କିଲୋମିଟର**

**ନଦୀର ଦୈର୍ଘ୍ୟ : ୩,୧୦୦ କିଲୋମିଟର**

ପୃଥିବୀର ପ୍ରାଚୀନ ନଦୀ କୂଳ ସଭ୍ୟତା କୁହାଯାଉଥିବା ମହେଞ୍ଜୋଦାରୋ ଓ ହରପ୍ପା ଏହି ସିନ୍ଧୁ ନଦୀ କୂଳରେ ଗଢି ଉଠିଥିଲା । ସିନ୍ଧୁ ନଦୀ ମାନସରୋବର ହ୍ରଦ ନିକଟସ୍ଥ ହିମାଳୟ ପର୍ବତମାଳାର କୈଳାସ ରେଞ୍ଜ (ତିବ୍ବତ)ର ଉତ୍ତର ଗଡ଼ାଣିରୁ ଉତ୍ପତ୍ତିଲାଭ କରିଛି । ଏହି ନଦୀର ଦୈର୍ଘ୍ୟ ୩,୧୦୦ କିଲୋମିଟର ।

ସିନ୍ଧୁ ନଦୀରେ ଭାରତର ସର୍ବାଧିକ ଜଳ ପ୍ରବାହିତ ହୋଇଥାଏ ଏବଂ ଭାରତର ସବୁଠାରୁ ବଡ଼

ଅବବାହିକା (୧୧,୨୦,୦୦୦ ବର୍ଗ କି.ମି) ଅଞ୍ଚଳ ଏହି ନଦୀ ଦ୍ୱାରା ସୃଷ୍ଟି ହୋଇଛି । ସିନ୍ଧୁ ନଦୀ ଉଭୟ ଭାରତ ଓ ପାକିସ୍ତାନର 'ଲାଇଫ୍ ଲାଇନ୍' ଭାବେ ପରିଚିତ । ନଦୀଟି ପ୍ରଥମେ ତିବ୍ବତ (ଚୀନ୍)ର ଉତ୍ତର-ପଶ୍ଚିମ ଦିଗକୁ ଗତି କରିଛି । ଏହାପରେ ଜମ୍ମୁ-କାଶ୍ମୀର ଦେଇ ଭାରତ ଉପମହାଦେଶକୁ ପ୍ରବେଶ କରିଛି । ଜମ୍ମୁ-କାଶ୍ମୀରରେ ସିନ୍ଧୁ ନଦୀ ଗର୍ଭରେ ଏକ ବିଶାଳ ଗଣ୍ଡ ସୃଷ୍ଟି ହୋଇଛି । ଏହାପରେ ସିନ୍ଧୁ ନଦୀ ଲଦାଖ୍, ବେଲୁଚିସ୍ତାନ, ଗିଲ୍‌ଗିଟ୍ ଦେଇ ହିମାଳୟ ପର୍ବତମାଳା ଅତିକ୍ରମ କରି ପାକିସ୍ତାନ ମାଟିକୁ ଛୁଇଁଛି ।

ସିନ୍ଧୁ ନଦୀ ହିମାଳୟ ଅତିକ୍ରମ କରିବା ଅବସରରେ ନଙ୍ଗାପର୍ବତ ନିକଟସ୍ଥ 'ଆଟକ୍'ଠାରେ ୫୧୮୧ ମିଟର ଗଭୀର ବିଶିଷ୍ଟ ଏକ ବିରାଟ ଗଣ୍ଡ ସୃଷ୍ଟି କରିଛି । ଏହା ପରେ ସିନ୍ଧୁ ନଦୀ ଦକ୍ଷିଣ-ପଶ୍ଚିମ ଦିଗକୁ ଗତି କରି ପାକିସ୍ତାନକୁ ପ୍ରବେଶ କରିଛି । ଉଭୟ ପାକିସ୍ତାନ ଓ ଭାରତରୁ ବହୁ ସଂଖ୍ୟାରେ ଉପନଦୀ ସିନ୍ଧୁ ନଦୀ ସହିତ ମିଶି ଏହାର ସ୍ରୋତକୁ ଅଧିକ ଶକ୍ତିଶାଳୀ କରିଛନ୍ତି । ଭାରତର ଜାମୁ-କାଶ୍ମୀର ଓ ପାକିସ୍ତାନ ଦେଇ ପ୍ରବାହିତ ହେବା ପରେ ଶେଷରେ ପାକିସ୍ତାନର କରାଚି ସହର ନିକଟରେ ସିନ୍ଧୁ ନଦୀ ଆରବ ସାଗରରେ ପତିତ ହୋଇଛି ।

ସିନ୍ଧୁ ନଦୀ ଅବବାହିକାରେ କରାଚି (ପାକିସ୍ତାନ), ପେଶାୱାର୍ (ପାକିସ୍ତାନ), ରାୱଲପିଣ୍ଡି (ପାକିସ୍ତାନ), ଥାଟା (ପାକିସ୍ତାନ), ଗିଲ୍‌ଗିଟ୍ (ପାକିସ୍ତାନ), ଆଟକ୍ (ପାକିସ୍ତାନ), ଜାମ୍‌ସୋର୍ (ପାକିସ୍ତାନ), ମିଥାନ୍‌କୋଟ୍ (ପାକିସ୍ତାନ) ଭଳି ବଡ଼ବଡ଼ ସହର ଅବସ୍ଥିତ । ସିନ୍ଧୁ ନଦୀ ପାକିସ୍ତାନର ସିନ୍ଧୁ ପ୍ରଦେଶ ଅଞ୍ଚଳରେ ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ *(Delta Area)* ସୃଷ୍ଟି କରିଛି । ସିନ୍ଧୁ ନଦୀ ସମେତ ମୋଟ ୭ ଗୋଟି ନଦୀକୁ ନେଇ ଗଢି ଉଠିଥିବା ଏହି ପ୍ରସିଦ୍ଧ ତ୍ରିକୋଣଭୂମି ଅଞ୍ଚଳକୁ **'ସପ୍ତ ସିନ୍ଧୁ'** *(Seven Rivers)* କୁହାଯାଇଥାଏ । ସପ୍ତ ସିନ୍ଧୁ ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି କରିଥିବା ଏହି ସାତଗୋଟି ନଦୀମାନେ ହେଲେ **ସିନ୍ଧୁ ନଦୀ** ଏବଂ ଏହାର ୬ ଗୋଟି ଉପନଦୀ **ବ୍ୟାସ, ଚେନାବ୍, ଝେଲମ୍, ସତ୍‌ଲେଜ୍, ରାବି, ସରସ୍ୱତୀ** (ପୌରାଣିକ) ।

ଭାରତ ପଟୁ ମିଶିଥିବା ସିନ୍ଧୁ ନଦୀର ପ୍ରମୁଖ **୫ଟି ଉପନଦୀ**ମାନଙ୍କ ମଧ୍ୟରେ **ଝେଲମ୍, ବ୍ୟାସନଦୀ, ଚେନାବ୍, ରାବି, ସତଲେଜ୍** ପ୍ରମୁଖ ଅତି ଗୁରୁତ୍ୱପୂର୍ଣ୍ଣ । ଏହି ପାଞ୍ଚଗୋଟି ନଦୀ ପଞ୍ଜାବରେ ପ୍ରବାହିତ ହୋଇଥିବାରୁ **ପଞ୍ଜାବକୁ 'ପଞ୍ଚ ନଦୀର ଦେଶ'** ବୋଲି କୁହାଯାଇଥାଏ । ଏମାନେ ସମସ୍ତେ ପାକିସ୍ତାନର ସିନ୍ଧୁ ପ୍ରଦେଶରେ ସିନ୍ଧୁ ନଦୀ ସହିତ ମିଳିତ ହୋଇ ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ (ସପ୍ତସିନ୍ଧୁ) ଗଠନ କରିଛନ୍ତି ।

### ୧. ଝେଲମ୍ *(the Jhelum)*

ଝେଲମ୍ ନଦୀଟି ସିନ୍ଧୁ ନଦୀର ଏକ ପ୍ରମୁଖ ଉପନଦୀ । ଋଗ୍‌ବେଦରେ ଏହାର ପ୍ରାଚୀନ ନାମ **'ଭିତିସ୍ତା'** ବୋଲି ଉଲ୍ଲେଖ ରହିଛି । ଏହି ନଦୀକୁ ପ୍ରାଚୀନ ଗ୍ରୀକ୍‌ର ଏକ ନଦୀ ଭାବେ ବର୍ଣ୍ଣନା

କରାଯାଇଛି । ଝେଲମ୍ ଉଭୟ ପାକିସ୍ତାନ ଓ ଭାରତ ଦେଇ ପ୍ରବାହିତ ହୋଇଛି । ଏହି ନଦୀଟି ଜାମ୍ମୁ-କାଶ୍ମୀର ରାଜ୍ୟର ଅନନ୍ତନାଗ ଜିଲ୍ଲାର ଭେରିନାଗ୍ ଝରରୁ ଜନ୍ମଲାଭ କରି ଶ୍ରୀନଗର, ମୁଜାଫରବାଦ, ମୀରପୁର, ଆଜାଦ୍ କାଶ୍ମୀର, ବାରମୂଳା, ଅନନ୍ତନାଗ, ସୋପୋର୍, ଝାଙ୍ଗ୍, ଅବନ୍ତୀପୁରା, ପାମ୍ପୋର ଆଦି ସହର ଦେଇ ମୋଟ ୮୧୩ କିଲୋମିଟର ପଥ ଅତିକ୍ରମ କରିବା ପରେ ପଞ୍ଜାବରେ ଚେନାବ୍ ନଦୀ ସହିତ ମିଳିତ ହୋଇଛି । ଖ୍ରୀ·ପୂ· ୩୨୬ରେ ଗ୍ରୀକ୍ ସମ୍ରାଟ ଆଲୋକଜାଣ୍ଡାର ଝେଲମ୍ ନଦୀ ପାର ହୋଇ ଭାରତୀୟ ରାଜା ପୁରୁଙ୍କୁ ପରାସ୍ତ କରିଥିଲେ । କିନ୍ତୁ ସେ ବ୍ୟାସ ନଦୀ ପାର ହେବାରେ ସଫଳ ହୋଇ ପାରି ନଥିଲେ ।

**୨. ବ୍ୟାସନଦୀ *(the Beas/Byas)***

ପଞ୍ଜାବରେ ପ୍ରବାହିତ ପଞ୍ଚ ନଦୀଙ୍କ ମଧ୍ୟରେ ବ୍ୟାସ ନଦୀ ହେଉଛି ସିନ୍ଧୁ ନଦୀର ଅନ୍ୟ ଏକ ପ୍ରମୁଖ ଉପ ନଦୀ । ଏହି ନଦୀଟି ହିମାଚଳ ପ୍ରଦେଶର **ରୋହତାଙ୍ଗ୍ ଗିରିପଥ** *(Rohtang Pass)* ରେ ଅବସ୍ଥିତ ପ୍ରସିଦ୍ଧ ବ୍ୟାସ କୁଣ୍ଡରୁ ନିର୍ଗତ ହୋଇ ମୋଟ ୪୭୦ କିଲୋମିଟର ପଥ ଅତିକ୍ରମ କରି ଶେଷରେ ପଞ୍ଜାବ ପ୍ରଦେଶରେ ସତ୍‌ଲେଜ ନଦୀ ସହିତ ମିଳିତ ହୋଇଛି । ସମ୍ରାଟ ଆଲେକ୍‌ଜାଣ୍ଡାର ମଗଧ ଆକ୍ରମଣ କରିବାକୁ ଉଦ୍ୟମ କରି ଏହି ବ୍ୟାସ ନଦୀ କୂଳରୁ ହିଁ ଫେରିଯାଇଥିଲେ । ବ୍ୟାସ ନଦୀ ଯୋଗୁଁ ସମ୍ରାଟ ଆଲୋକଜାଣ୍ଡାର ଭାରତ ବିଜୟର ସ୍ୱାଦ ଚାଖି ପାରି ନଥିଲେ । ବ୍ୟାସନଦୀ ଉପକୂଳରେ ପ୍ରସିଦ୍ଧ ମନାଲି (ହିମାଚଳ ପଦେଶ), କୁଲୁ (ହିମାଚଳ ପ୍ରଦେଶ), ଅମୃତସର (ପଞ୍ଜାବ) ଭଳି ବଡ଼ବଡ଼ ସହର ଓ ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ ଅବସ୍ଥିତ । ମହାଭାରତର ସ୍ରଷ୍ଟା **'ବ୍ୟାସଦେବ'**ଙ୍କ ନାମାନୁସାରେ ଏହି ନଦୀର ନାମକରଣ ହୋଇଛି । ପୁରାଣ ମତ ଅନୁଯାୟୀ, ମହାଦେବ ଶିବ ଏଠାରେ ଥିବା ଭୃଗୁ ତୁଙ୍ଗ ଗିରିଶୃଙ୍ଗକୁ ନିଜ ତ୍ରିଶୁଳ ସହାୟତାରେ କାଟି ଏକ ଗିରିପଥ ସୃଷ୍ଟି କରିଥିଲେ । ଏହି ଗିରିପଥଟି ରୋହତାଙ୍ଗ୍ ଗିରିପଥ ନାମରେ ପରିଚିତ ।

**୩. ଚେନାବ୍ *(the Chenab)***

ଚେନାବ୍ ନଦୀଟି ହିମାଚଳ ପ୍ରଦେଶରୁ ନିର୍ଗତ ହୋଇଛି । ହିମାଚଳପ୍ରଦେଶରେ 'ଚନ୍ଦ୍ର' ଓ 'ଭାଗା' ନାମରେ ଦୁଇଟି ନଦୀର ମିଳନ ଫଳରେ ଚେନାବ୍ ନଦୀର ସୃଷ୍ଟି ହୋଇଛି । ଚେନାବ୍ ନଦୀଟିକୁ ଲୋକେ ଚନ୍ଦ୍ରଙ୍କ ଭଳି ଅତି ନିର୍ମଳ ବୋଲି ମାନିଥା'ନ୍ତି । ଏହି ନଦୀଟି 'ଚାନ୍' (ଅର୍ଥ: ଚନ୍ଦ୍ର) *('Chan' means Moon)* ଏବଂ 'ଆବ୍' (ଅର୍ଥ: ନଦୀ) *('Aab' means 'River')* ଅର୍ଥାତ୍ ଏହି ନଦୀଟି 'ଚନ୍ଦ୍ର ନଦୀ' *(the moon river)* ଭାବେ ପରିଚିତ । **ପଞ୍ଜାବ (ପଞ୍ଜ୍: ପାଞ୍ଚ, ଆବ୍: ନଦୀ)**ର ପାଞ୍ଚଟି ନଦୀ ମଧ୍ୟରୁ ଚେନାବ୍ ନଦୀ ଅନ୍ୟତମ । ଚେନାବ୍ ପାକିସ୍ତାନର କିଛି ଅଞ୍ଚଳରେ

ପ୍ରବେଶ କରି ଭାରତର ଜାମ୍ମୁ-କାଶ୍ମୀର ଅଞ୍ଚଳରେ ପ୍ରବାହିତ ହୋଇ ପଞ୍ଜାବରେ ଝେଲମ୍ ନଦୀ ସହିତ ମିଳିତ ହୋଇ ଶେଷରେ ସିନ୍ଧୁ ନଦୀରେ ପଡିଛନ୍ତି ।

**୪. ରାବି *(the Ravi)***

ସିନ୍ଧୁ ନଦୀର ଏହି ଉପନଦୀଟି ହିମାଚଳପ୍ରଦେଶର ଚାମ୍ବା ଜିଲ୍ଲାରୁ ବାହାରି ଭାରତ-ପାକିସ୍ତାନର ସୀମାନ୍ତ ଅଞ୍ଚଳରେ ମୋଟ ୭୨୦ କିଲୋମିଟର ପଥ ଅତିକ୍ରମ କରିବା ପରେ ପଞ୍ଜାବରେ ଚେନାବ୍ ନଦୀରେ ମିଳିତ ହୋଇଛି । ଏହି ନଦୀଟି ଉଭୟ ଭାରତ ଓ ପାକିସ୍ତାନ ଦେଇ ପ୍ରବାହିତ ହୋଇଛି । ରାବି ନଦୀ କୂଳରେ ପାକିସ୍ତାନର ଲାହୋର, ମୁଲ୍ତାନ୍ ଆଦି ସହର ଅବସ୍ଥିତ । ଆହୁରି ମଧ୍ୟ ରାବି ନଦୀ କୂଳରେ ଭାରତ ଇତିହାସର ମୋଗଲ ସମ୍ରାଟ୍ ଜାହାଙ୍ଗୀର ଓ ବେଗମ୍ ନୁର୍ ଜାହାନ୍ଙ୍କ ସମାଧି ପ୍ରତିଷ୍ଠା କରାଯାଇଛି । ରାବି ନଦୀଟି ଇଂରାଜୀ ଶବ୍ଦ *(the Sun)* ରୁ ଉତ୍ପତ୍ତି ହୋଇଛି । ରାବିର ଜଳ ସୂର୍ଯ୍ୟ କିରଣ ଭଳି ନିର୍ମଳ ଓ ଚିକ୍ ଚିକ୍ ବୋଲି ମନେକରାଯାଇଥାଏ ।

**୫. ସତ୍ଲେଜ୍ *(the Sutlej)***

ସତ୍ଲେଜ ନଦୀ ସିନ୍ଧୁ ନଦୀର ଏକ ପ୍ରମୁଖ ଉପନଦୀ । ଏହା ହିମାଳୟ ପାର୍ବତ୍ୟାଞ୍ଚଳ ହିନ୍ଦୁକୁଶ ପର୍ବତମାଳାରେ ଅବସ୍ଥିତ ରାକ୍ଷସତଳ ହ୍ରଦରୁ ବାହାରି ଉଭୟ ଭାରତ ଓ ପାକିସ୍ତାନ ଦେଇ ପ୍ରବାହିତ ହୋଇଛି । ହିମାଳୟ ପାର୍ବତ୍ୟାଞ୍ଚଳରେ ଅବସ୍ଥିତ ତିବ୍ବତର ରାକ୍ଷସତଳ ହ୍ରଦରୁ ନଦୀଟି ନିର୍ଗତ ହୋଇ ମୋଟ ୩୬୦ କିଲୋମିଟର ପଥ ଅତିକ୍ରମ କରି ପଞ୍ଜାବରେ ବ୍ୟାସ ନଦୀ ସହିତ ମିଳିତ ହୋଇଛି । ଏହି ନଦୀକୁ 'ଲାଲ୍ ନଦୀ' *(Red River)* ବୋଲି କୁହାଯାଏ । ଭାରତର ପ୍ରସିଦ୍ଧ ଥର୍ ମରୁଭୂମି ସତ୍ଲେଜ୍ ନଦୀ ଅବବାହିକାରେ ଅବସ୍ଥିତ । ଏହି ନଦୀଟି ଭାରତର ହିମାଚଳ ପ୍ରଦେଶ ଓ ପଞ୍ଜାବ ଦେଇ ପ୍ରବାହିତ ହୋଇଛି । ହିମାଚଳ ପ୍ରଦେଶର କିନାର୍, ସିମ୍ଲା, କୁଲୁ, ମନାଲି, ସୋଲାନ୍, ମଣ୍ଡି, ବିଳାସପୁର ଆଦି ଅଞ୍ଚଳ ଦେଇ ସତ୍ଲେଜ ନଦୀ ପ୍ରବାହିତ ହୋଇଛି । ସତ୍ଲେଜ ନଦୀ ଯୋଗୁଁ ଏହିସବୁ ଅଞ୍ଚଳ ବେଶ୍ ଆକର୍ଷଣୀୟ ହୋଇପାରିଛି । ପ୍ରତିବର୍ଷ ଲକ୍ଷାଧିକ ସଂଖ୍ୟାରେ ପର୍ଯ୍ୟଟକ ସତଲେଜ୍ ନଦୀର ସୌନ୍ଦର୍ଯ୍ୟ ଦେଖିବାକୁ ଏଠାକୁ ଆସିଥା'ନ୍ତି ।

ଏହି ପାଞ୍ଚଟି ନଦୀ ସମେତ ସିନ୍ଧୁ ନଦୀର ଆହୁରି ଅନେକ ଉପନଦୀ ରହିଛି । ସେମାନେ ଭାରତ ସମେତ ପାକିସ୍ତାନ, ଆଫଗାନିସ୍ତାନ, ଚୀନ ପ୍ରମୁଖ ଦେଶରୁ ପ୍ରବାହିତ ହୋଇ ସିନ୍ଧୁ ନଦୀରେ ମିଳିତ ହୋଇଛନ୍ତି । **ଜଂସ୍କାର, ସ୍ୟୋକ, ନୁବ୍ରା, ହୁଞ୍ଜା, ଗିଲ୍‌ଗିଟ୍, ଆଷ୍ଟୋର୍, ଚିପ୍ ଚାପ୍, ଗାଲ୍‌ଓ୍ୱାନ୍, ଗୋମାଲ୍, ଜିନ୍ଦୀ** ପ୍ରମୁଖ ସିନ୍ଧୁ ନଦୀର ପ୍ରମଖ ଉପନଦୀ ଭାବେ ଜଣାଶୁଣା ।

## ୨. ବ୍ରହ୍ମପୁତ୍ର ନଦୀ *(Brahmaputra River System)*



**ନଦୀ ଅବବାହିକା ଅଞ୍ଚଳ**

ଦେଶ : ଭାରତ, ଚୀନ୍, ଭୁଟାନ୍ ଓ ବଙ୍ଗଳାଦେଶ,

ତିବ୍ବତ (ଚୀନ୍), ଭୁଟାନ୍, ବଙ୍ଗଳାଦେଶ : ୩,୮୫,୫୮୭ବର୍ଗ କି.ମି

ଭାରତ : ୧,୯୪,୪୧୩ ବର୍ଗ କି.ମି.

ସର୍ବ ମୋଟ ଅବବାହିକା ଅଞ୍ଚଳ : ୫,୮୦,୦୦୦ ବର୍ଗ କିଲୋମିଟର

ଭାରତର ବିଭିନ୍ନ ରାଜ୍ୟ

ଅରୁଣାଚଳ ପ୍ରଦେଶ : ୮୧,୪୨୪ ବର୍ଗ କି.ମି

ଆସାମ : ୭୦,୬୩୪ ବର୍ଗ କି.ମି

ପଶ୍ଚିମବଙ୍ଗ : ୧୨,୫୮୫ ବର୍ଗ କି.ମି

ମେଘାଳୟ : ୧୧,୬୬୭ ବର୍ଗ କି.ମି

ନାଗାଲ୍ୟାଣ୍ଡ : ୧୦,୮୦୩ ବର୍ଗ କି.ମି

ସିକିମ୍ : ୭,୩୦୦ ବର୍ଗ କି.ମି

ଭାରତରେ ମୋଟ ଅବବାହିକା ଅଞ୍ଚଳ : ୧,୯୪,୪୧୩ ବର୍ଗ କି.ମି.

ନଦୀର ଦୈର୍ଘ୍ୟ : ୨,୯୦୦ କିଲୋମିଟର

ବ୍ରହ୍ମପୁତ୍ର ନଦୀ ବିଶ୍ୱର ଏକମାତ୍ର ନଦୀ ଯାହା ପୁରୁଷ ନଦୀ ଭାବେ ପରିଚିତ । ନଚେତ୍ ନଦୀ ମାତ୍ରକେ ନାରୀ ସହ ତୁଳନୀୟ । ଭଗବାନ ବ୍ରହ୍ମାଙ୍କର ପୁତ୍ର ହୋଇଥିବାରୁ ଏହାର ନାଁ ବ୍ରହ୍ମପୁତ୍ର ।

ବ୍ରହ୍ମପୁତ୍ର ନଦୀ ହିମାଳୟ ପର୍ବତମାଳାର ମାନସରୋବର ହ୍ରଦରୁ ଉତ୍ପତ୍ତିଲାଭ କରିଛି । ଏହି ନଦୀର ଦୈର୍ଘ୍ୟ ୨,୯୦୦ କିଲୋମିଟର । ଏହା ସିନ୍ଧୁ ନଦୀଠାରୁ ସାମାନ୍ୟ କମ୍ ଦୀର୍ଘତମ । ବ୍ରହ୍ମପୁତ୍ର ନଦୀର ଅଧିକାଂଶ ଭାଗ ଭାରତ ବାହାରେ ପ୍ରବାହିତ ହୋଇଛି । ଏହି ନଦୀଟି ମାନସରୋବର ହ୍ରଦରୁ ଉତ୍ପତ୍ତିଲାଭ କରି ହିମାଳୟ ପାର୍ବତ୍ୟାଞ୍ଚଳରେ ଭାରତ ଓ ତିବ୍ବତର ସୀମା ନିର୍ଦ୍ଧାରଣ କରିଥାଏ । ନଦୀଟି ପଶ୍ଚିମରୁ ପୂର୍ବ ଦିଗକୁ ଗତିକରି ପରେ 'ନାମ୍‌ଚା ବାରୱା' ଗିରିଶୃଙ୍ଗ *(Namcha Barwa)* (୭,୭୫୭ ମିଟର) ଦ୍ୱାରା ଅବରୋଧ ହେବା ଫଳରେ ପୁନର୍ବାର 'ୟୁ' ଗତିକରି *(U turn)* ଭାରତ ମଧ୍ୟକୁ ପ୍ରବେଶ କରିଛି ।

ବ୍ରହ୍ମପୁତ୍ର ନଦୀ ପ୍ରଥମେ ଭାରତର ଅରୁଣାଚଳ ପ୍ରଦେଶକୁ *(near Dihang)* ସ୍ପର୍ଶ କରିଛି । ଏହାପରେ ନଦୀଟି ସଂପୂର୍ଣ୍ଣ ଅରୁଣାଚଳ ପ୍ରଦେଶ, ଆସାମ ଆଦି ରାଜ୍ୟ ଦେଇ ଗତି କରିବା ପରେ ବଙ୍ଗଳାଦେଶକୁ ପ୍ରବେଶକରିଛି । ବଙ୍ଗଳାଦେଶରେ ଏହି ନଦୀଟି ବଙ୍ଗୋପସାଗରରେ ମିଳିତ ହୋଇଛି ।

ବ୍ରହ୍ମପୁତ୍ର ନଦୀଟି ତିନିଗୋଟି ଦେଶ ମଧ୍ୟ ଦେଇ ପ୍ରବାହିତ ହୋଇଛି । ତିବ୍ବତରେ ଏହାର ନାମ **'ୟାର୍ଲୁଙ୍ଗ୍ ସ୍ୟାଙ୍ଗ୍‌ପୋ'** *(Yarlung Tsangpo)*, ଭାରତରେ **ବ୍ରହ୍ମପୁତ୍ର** *(Brahmaputra)* ଏବଂ ବାଙ୍ଗ୍‌ଲାଦେଶରେ ଏହା **ଯମୁନା** *(Jamuna)* ନାମରେ ପରିଚିତ । ତିବ୍ବତରେ 'ୟାର୍ଲୁଙ୍ଗ' ଶବ୍ଦର ଅର୍ଥ 'ମହାନ୍ ରକ୍ତ' *(Imperial blood)* । ମାତ୍ର ଭାରତରେ ବ୍ରହ୍ମପୁତ୍ର ହେଉଛନ୍ତି ଭଗବାନ ବ୍ରହ୍ମାଙ୍କର ପୁତ୍ର *(Son of god Brahma)* । **ଭୋଗ୍‌ଦଇ, ଦିବାଙ୍ଗ, ଦିହିଂ, ଜିନାଇ, କୋଲଙ୍ଗ୍, କୋପିଲି, ଲୋହିତ, ମାନସ, ରୈଡାକ୍, ସୁବାଂଶିରି** ଆଦି ବ୍ରହ୍ମପୁତ୍ର ନଦୀର ପ୍ରମୁଖ ଉପନଦୀ ଅଟନ୍ତି ।

### ୩. ଗଙ୍ଗା ନଦୀ *(Ganga River System)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ : ଭାରତ, ଚୀନ୍, ନେପାଳ, ବଙ୍ଗଳାଦେଶ

ତିବ୍ବତ (ଚୀନ୍), ନେପାଳ, ବଙ୍ଗଳାଦେଶ : ୨,୨୪,୫୯୬ ବର୍ଗ କି.ମି

ଭାରତ : ୮,୬୧,୪୦୪ ବର୍ଗ କି.ମି.

ସର୍ବ ମୋଟ ଅବବାହିକା ଅଞ୍ଚଳ : ୧୦,୮୬,୦୦୦ ବର୍ଗ କିଲୋମିଟର

ଭାରତର ବିଭିନ୍ନ ରାଜ୍ୟର ଅବବାହିକା ଅଞ୍ଚଳ

ଉତ୍ତରାଖଣ୍ଡ ଓ ଉତ୍ତର ପ୍ରଦେଶ : ୨,୯୪,୩୬୪ ବର୍ଗ କି.ମି

ମଧ୍ୟପ୍ରଦେଶ : ୧,୯୮,୯୬୨ ବର୍ଗ କି.ମି
ବିହାର : ୧,୪୩,୯୬୧ ବର୍ଗ କି.ମି
ରାଜସ୍ଥାନ : ୧,୧୨,୪୯୦ ବର୍ଗ କି.ମି
ପଶ୍ଚିମବଙ୍ଗ : ୭୧,୪୮୫ ବର୍ଗ କି.ମି
ହରିୟାନା : ୩୪,୩୪୧ ବର୍ଗ କି.ମି
ହିମାଚଳପ୍ରଦେଶ : ୪,୩୧୭
ଦିଲ୍ଲୀ : ୧୪୮୪
ମୋଟ: ୮,୬୧,୪୦୪ ବର୍ଗ କି.ମି.
ନଦୀର ଦୈର୍ଘ୍ୟ : ୨,୫୨୫ କି.ମି



ଗଙ୍ଗା. ପ୍ରୟାଗ

ଭାରତୀୟ ଉପମହାଦେଶରେ ଗଙ୍ଗା ନଦୀର ଏକ ମହତ୍ୱପୂର୍ଣ୍ଣ ଧାର୍ମିକ ଓ ସାଂସ୍କୃତିକ ମୂଲ୍ୟବୋଧ ରହିଛି । ଭାରତୀୟ ହିନ୍ଦୁମାନେ ଏହି ନଦୀକୁ ପବିତ୍ର 'ଗଙ୍ଗାମାତା' ଭାବେ ପୂଜା କରିଥା'ନ୍ତି । ଗଙ୍ଗା ନଦୀକୁ ବାଦ୍ ଦେଇ ଭାରତୀୟ ନଦୀମାନଙ୍କ ସଂପର୍କରେ ଆଲୋଚନା କରିବା ନିରର୍ଥକ ମନେହେବ । ଦେବୀ ଗଙ୍ଗାଙ୍କୁ ଶଗରରାଜା ଭଗିରଥ ସ୍ୱର୍ଗରୁ ମର୍ତ୍ତ୍ୟଲୋକକୁ ଆଣିଥିବାରୁ ଏହାର ଅନ୍ୟନାମ ଭାଗିରଥୀ ।

ଉତ୍ତରାଖଣ୍ଡରେ ଅବସ୍ଥିତ ଗ୍ରେଟର ହିମାଳୟ ପାର୍ବତ୍ୟାଞ୍ଚଳର ତେହେରି ଘେରୱାଲ୍ ରେଞ୍ଜ ଅନ୍ତର୍ଗତ **ଗଙ୍ଗୋତ୍ରି ଗ୍ଲାସିୟର** ବା **ଗୌମୁଖ ଗ୍ଲାସିୟର** *(Gaumukh Glacier)*ରୁ ସମୁଦ୍ର ପତ୍ତନର ୧୩,୮୦୦ ଫୁଟ ଉଚ୍ଚତାରୁ ଗଙ୍ଗା ନଦୀ ଉତ୍ପତ୍ତିଲାଭ କରି ମୋଟ ୨,୫୨୫ କିଲୋମିଟର ପଥ ଅତିକ୍ରମ କରିବାପରେ ବଙ୍ଗଳାଦେଶରେ ସୁନ୍ଦରବଣ ତ୍ରିକୋଣଭୂମି ଅଞ୍ଚଳରେ ବଙ୍ଗୋପସାଗରରେ ମିଳିତ ହୋଇଛି ।



**ଅଳକାନନ୍ଦା, ଦେବପ୍ରୟାଗ**

ଗଙ୍ଗାର ଉତ୍ପତ୍ତି ସ୍ଥଳ **ଗଙ୍ଗୋତ୍ରି** ଭାରତବର୍ଷରେ ପ୍ରସିଦ୍ଧ **'ଚାରି ଧାମ' (ବଦ୍ରିନାଥ ଧାମ, କେଦାରନାଥ ଧାମ, ଗଙ୍ଗୋତ୍ରି ଧାମ, ଯମୁନୋତ୍ରୀ ଧାମ)** ନାମରେ ପରିଚିତ । ଏହି ଚାରି ଧାମ ଦର୍ଶନ କଲେ ଜୀବନରେ ମୋକ୍ଷ ପ୍ରାପ୍ତ ହୋଇଥାଏ ବୋଲି ହିନ୍ଦୁ ଧର୍ମରେ ବିଶ୍ୱାସ ରହିଛି । ଏହି ଚାରି ଧାମ ମଧ୍ୟରୁ ବଦ୍ରି ନାଥ ଧାମଟି ଉତ୍ତରାଖଣ୍ଡ ରାଜ୍ୟର ଚାମୋଲି ଜିଲ୍ଲାରେ ଅବସ୍ଥିତ । ଏହା ଭାରତର ଏକ ପ୍ରସିଦ୍ଧ ବିଷ୍ଣୁ କ୍ଷେତ୍ର ଏବଂ ଏଠାରେ ଭଗବାନ ବିଷ୍ଣୁଙ୍କର ମନ୍ଦିର ରହିଛି । ବଦ୍ରିନାଥ ଗଙ୍ଗା ନଦୀର ଅନ୍ୟନାମ **ଅଳକାନନ୍ଦା** କୂଳରେ ଅବସ୍ଥିତ । ସେହିଭଳି କେଦାରନାଥ ଧାମଟି ଉତ୍ତରାଖଣ୍ଡ ରାଜ୍ୟର ରୁଦ୍ର ପ୍ରୟାଗ ଜିଲ୍ଲାରେ **ମନ୍ଦାକିନୀ** ନଦୀ କୂଳରେ ଅବସ୍ଥିତ । ଏଠାରେ ମହାଦେବ କେଦାରନାଥଙ୍କ ମନ୍ଦିର ରହିଛି । ଯମୁନୋତ୍ରୀ ଧାମଟି ଉତ୍ତରାଖଣ୍ଡର ଉତ୍ତରକାଶୀ ଜିଲ୍ଲାରେ ଅବସ୍ଥିତ ତେହେରି ଘେରଓ୍ୱାଲ୍ ରେଞ୍ଜ ଅନ୍ତର୍ଗତ **ଯମୁନା** ନଦୀର ଉତ୍ପତ୍ତି ସ୍ଥଳ । ଏଠାରେ ଦେବୀ ଯମୁନାଙ୍କର ମନ୍ଦିର ରହିଛି । ଭାରତବର୍ଷରେ ଏହା ଏକ ପବିତ୍ର ଆଧ୍ୟାତ୍ମିକ ସ୍ଥଳ ଭାବେ ପରିଚିତ । ତେହେରି ଘେରଓ୍ୱାଲ୍ ରେଞ୍ଜ ଅନ୍ତର୍ଗତ ଗଙ୍ଗୋତ୍ରି ହେଉଛି ମା' ଗଙ୍ଗାଙ୍କର ଆବିର୍ଭାବ ସ୍ଥଳ । ଭଗିରଥ ରାଜାଙ୍କ ଅନୁରୋଧ ରକ୍ଷା କରି ମା' ଗଙ୍ଗା ହିମାଳୟର ଗଙ୍ଗୋତ୍ରିଠାରେ ସ୍ୱର୍ଗରୁ ଅବତରଣ କରିଥିଲେ । ଏଠାରେ ମା' ଗଙ୍ଗା **ଭାଗିରଥୀ** ନାମରେ ପରିଚିତ । ଗଙ୍ଗୋତ୍ରି ଧାମଟି ଉତ୍ତରାଖଣ୍ଡ ରାଜ୍ୟର ଉତ୍ତରକାଶୀ ଜିଲ୍ଲାରେ ଅବସ୍ଥିତ ।

ଗଙ୍ଗା ନଦୀ ସହିତ ତା'ର ଉପର ମୁଣ୍ଡରୁ ପ୍ରବାହିତ ପାଞ୍ଚଗୋଟି ଶୁଦ୍ଧ ପବିତ୍ର ନଦୀ **(ଭାଗିରଥୀ, ମନ୍ଦାକିନି, ଅଳକାନନ୍ଦା, ଧଉଳିଗଙ୍ଗା, ପିଣ୍ଡାର୍)** ମିଳିତ ହୋଇ ପାଞ୍ଚଟି ସଂଗମ ସ୍ଥଳ ବା **ପଞ୍ଚ ପ୍ରୟାଗ** ସୃଷ୍ଟି ହୋଇଛି । **ବିଷ୍ଣୁ ପ୍ରୟାଗ**ଠାରେ ଅଳକାନନ୍ଦା ଏବଂ ଧଉଳିଗଙ୍ଗା ନଦୀ ମିଳିତ ହୋଇଛନ୍ତି । **ନନ୍ଦ ପ୍ରୟାଗ**ଠାରେ ଅଳକାନନ୍ଦା ଓ ନନ୍ଦାକିନି ନଦୀ ମିଳିତ ହୋଇଛନ୍ତି । **କର୍ଣ୍ଣ ପ୍ରୟାଗ**ଠାରେ ଅଳକାନନ୍ଦା ନଦୀ ସହିତ ଗଙ୍ଗାର ଅନ୍ୟତମ ଉପନଦୀ ପିଣ୍ଡାର ନଦୀର ମିଳନ

ଘଟିଛି । ସେହିଭଳି **ରୁଦ୍ର ପ୍ରୟାଗ**ଠାରେ ଅଳକାନନ୍ଦା ସହିତ ମନ୍ଦାକିନୀ ନଦୀର ମିଳନ ଘଟିଥିବାବେଳେ **ଦେବ ପ୍ରୟାଗ**ଠାରେ ଭାଗିରଥୀ ନଦୀ ସହିତ ଅଳକାନନ୍ଦା ଓ ମନ୍ଦାକିନୀ ନଦୀର ମିଳନ ଘଟି ଏହିଠାରୁ ଗଙ୍ଗା ନଦୀ ନାମ ଧାରଣ କରିଛି ।

ଗଙ୍ଗା ନଦୀଟି ଗଙ୍ଗୋତ୍ରୀ ସମେତ ନନ୍ଦାଦେବୀ, ଗୁର୍ଲା, ମାନ୍ଧାତା, ଧଉଳିଗିରି, ଗେସେଇସ୍ଥାନ, କାଞ୍ଚନଜଙ୍ଘା, ଏଭେରେଷ୍ଟ ଭଳି ଗିରିଶୃଙ୍ଗର ତରଳ ବରଫଖଣ୍ଡମାନଙ୍କରୁ ପୁଷ୍ଟ ହୋଇଥାଏ । ଏହିସବୁ ଗିରିଶୃଙ୍ଗରୁ ପ୍ରବାହିତ ଜଳକୁ ଗ୍ରହଣ କରି ଗଙ୍ଗା ନଦୀ ଆଗକୁ ଆଗକୁ ବହିଚାଲିଛି । ଗଙ୍ଗା ହିମାଳୟ ପାର୍ବତ୍ୟାଞ୍ଚଳରେ ୨୦୦ କିଲୋମିଟର ଦୁର୍ଗମ ଓ ଦନ୍ତୁରିତ ପଥ ଅତିକ୍ରମ କରିବା ପରେ ପବିତ୍ର ଧାର୍ମିକ ସହର ହରିଦ୍ୱାର ଛୁଇଁଛି । ଏଠାରେ ଥିବା ଶିବାଲିକ୍ ଗିରିଶୃଙ୍ଗରେ ଏକ ଡ୍ୟାମ୍ ନିର୍ମାଣ କରାଯାଇ ଗଙ୍ଗାର ପ୍ରବାହକୁ ନିୟନ୍ତ୍ରଣ କରାଯାଇଛି ।

ଉତ୍ତରାଖଣ୍ଡର ଗଙ୍ଗୋତ୍ରି ବା ଗୌମୁଖ ଗ୍ଲାସିୟର (ହିମାଳୟର ସବୁଠୁ ବଡ଼ ଗ୍ଲାସିୟର)ରୁ ଉତ୍ପତ୍ତିଲାଭ କରିଥିବା **ଭାଗିରଥୀ** ପରବର୍ତ୍ତୀ ଅବସ୍ଥାରେ ଗଙ୍ଗା ନାମ ବହନ କରିଛି । ଭାଗିରଥୀ ନଦୀ ହିମାଳୟ ପାର୍ବତ୍ୟାଞ୍ଚଳ ଦେଇ ଦୀର୍ଘ ପଥ ପ୍ରବାହିତ ହେଲାପରେ **'ଦେବପ୍ରୟାଗ'**ଠାରେ ଏହା ସହିତ **ଅଳକାନନ୍ଦା ଓ ମନ୍ଦାକିନି** ମିଳିତ ହୋଇଛନ୍ତି । ଦେବପ୍ରୟାଗଠାରେ ଭାଗିରଥୀ ସହିତ ମନ୍ଦାକିନି ଓ ଅଳକାନନ୍ଦା ମିଶିଗଲା ପରେ ଏହା 'ଗଙ୍ଗା' ନାମ ଧାରଣ କରିଛି । ଅର୍ଥାତ୍ ଗଙ୍ଗୋତ୍ରିଠାରୁ 'ଦେବ ପ୍ରୟାଗ' ପର୍ଯ୍ୟନ୍ତ ନଦୀଟି 'ଭାଗିରଥୀ' ଭାବେ ପରିଚିତ ଥିଲାବେଳେ ଦେବ ପ୍ରୟାଗ ପରଠାରୁ ଏହା ଗଙ୍ଗା ନଦୀ ଭାବେ ପ୍ରବାହିତ ହୋଇଛି ।

ବଙ୍ଗଳା ଦେଶରେ ଗଙ୍ଗା ନଦୀର ଶାଖା ନଦୀ **ପଦ୍ମା** *(The Padma)*, ବ୍ରହ୍ମପୁତ୍ରର ଅନ୍ୟତମ ଉପନଦୀ ତଥା ଗଙ୍ଗାର ଶାଖା ନଦୀ **ମେଘନା** *(The Meghna)* ଏବଂ **ଯମୁନା ନଦୀ** (ବଙ୍ଗଳା ଦେଶରେ ବ୍ରହ୍ମପୁତ୍ର ନଦୀଟି ଯମୁନା ନାମରେ ପରିଚିତ) ନଦୀ ମିଳିତ ଭାବେ ପ୍ରବାହିତ ହୋଇ ବଙ୍ଗଳାଦେଶରେ ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି କରିଛନ୍ତି । ଏହାବ୍ୟତୀତ ଗଙ୍ଗାର ଅନ୍ୟତମ ଶାଖା ନଦୀ **ହୁଗୁଳି** ମଧ୍ୟ ବଙ୍ଗଳା ଦେଶ ଅଭିମୁଖେ ଯାତ୍ରା କରି ଏହି ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି କରିବାରେ ସହାୟକ ହୋଇଛି । ପଶ୍ଚିମବଙ୍ଗ ଓ ବଙ୍ଗଳା ଦେଶର ସୀମାରେ ହୁଗୁଳି ନଦୀରେ **ଫାରାକ୍କା ବ୍ୟାରେଜ୍** ନିର୍ମାଣ କରାଯାଇ ଗଙ୍ଗାର ଜଳକୁ ନିୟନ୍ତ୍ରଣ କରାଯାଇଛି ।

ଅତୀତରେ ଗଙ୍ଗା ନଦୀ କୂଳରେ ଅନେକ ନଗର ସଭ୍ୟତା ଓ ଐତିହାସିକ ସହରମାନଙ୍କର ଉତ୍ଥାନ ଘଟିଥିଲା । ପ୍ରାଚୀନ ଭାରତର ଅନେକ ରାଜବଂଶର ପ୍ରମୁଖ ରାଜଧାନୀ ଯଥା- ପାଟଳିପୁତ୍ର (ଆଧୁନିକ ପାଟ୍ନା) କନୌଜ, କାରା, ଆହ୍ଲାବାଦ, ମୁର୍ଶିଦାବାଦ୍ (ପଶ୍ଚିମବଙ୍ଗ), କଲିକତା ପ୍ରମୁଖ ପ୍ରାଚୀନ ନଗର ଗଙ୍ଗା ନଦୀ କୂଳରେ ଗଢି ଉଠିଥିଲା । ବର୍ତ୍ତମାନ ଗଙ୍ଗା କୂଳରେ ହରିଦ୍ୱାର (ଉତ୍ତରାଖଣ୍ଡ), ଋଷିକେଶ (ଉତ୍ତରାଖଣ୍ଡ), କାନପୁର (ଉତ୍ତର ପ୍ରଦେଶ), ଜଜମାଉ (ଉତ୍ତର ପ୍ରଦେଶ),

ଆହ୍ଲାବାଦ (ଉତ୍ତର ପ୍ରଦେଶ), ବାରଣାସି (ଉତ୍ତର ପ୍ରଦେଶ), ବିଜ୍‌ନର (ଉତ୍ତର ପ୍ରଦେଶ), ମିର୍ଜାପୁର (ଉତ୍ତର ପ୍ରଦେଶ), ଘାଜିପୁର (ଉତ୍ତର ପ୍ରଦେଶ), ପାଟ୍‌ନା (ବିହାର), ମୁଙ୍ଗେର (ବିହାର), ଭାଗଲପୁର (ବିହାର), ବାହାରାମପୁର (ପଶ୍ଚିମବଙ୍ଗ), କୋଲ୍‌କାତା (ପଶ୍ଚିମବଙ୍ଗ) ଭଳି ଭାରତର ପ୍ରମୁଖ ସହରମାନ ରହିଛି । ଗଙ୍ଗା ନଦୀ ଭାରତର ଉତ୍ତରାଖଣ୍ଡ, ଉତ୍ତରପ୍ରଦେଶ, ବିହାର, ଝାଡ଼ଖଣ୍ଡ, ପଶ୍ଚିମବଙ୍ଗ ଆଦି ରାଜ୍ୟ ଦେଇ ପ୍ରବାହିତ ହୋଇ ବଙ୍ଗଳାଦେଶର ସୁନ୍ଦରବନ ତ୍ରିକୋଣଭୂମି ଅଞ୍ଚଳରେ ବଙ୍ଗୋପସାଗରରେ ମିଳିତ ହୋଇଛି ।

ଗଙ୍ଗା ନଦୀ ଅବବାହିକା ଭାରତର ସବୁଠୁ ବଡ଼ ଅବବାହିକା ଅଟେ । ଏହା ଦେଶର ଏକ ଚତୁର୍ଥାଂଶ ଭୂମି ସହ ସଂପୃକ୍ତ । ଗଙ୍ଗା ନଦୀରେ ଦୁଇଟି ବଡ଼ ଜଳ ଭଣ୍ଡାର ନିର୍ମାଣ କରାଯାଇଛି । ସେହି ଦୁଇଟି ହେଲା ହରିଦ୍ୱାର ନଦୀବନ୍ଧ ଓ ଫାରାକ୍କା ବ୍ୟାରେଜ୍ ।



ଭାଗିରଥୀ, ଗଙ୍ଗୋତ୍ରୀ

**ଗଙ୍ଗାର ପ୍ରମୁଖ ଉପନଦୀ**

ଗଙ୍ଗା ନଦୀ ହିମାଳୟ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତି ଲାଭ କରିଥିବା ଅନେକ ଛୋଟବଡ଼ ନଦୀମାନଙ୍କ ଜଳରେ ପୁଷ୍ଟ ହୋଇଛି । ଗଙ୍ଗାର ପ୍ରମୁଖ ଉପନଦୀମାନେ ହେଲେ-

୧. **ମନ୍ଦାକିନୀ** *(The Mandakini)* : ମନ୍ଦାକିନୀ ହେଉଛି ଅଳକାନନ୍ଦାର ଏକ ଉପନଦୀ । ମନ୍ଦାକିନୀ ଉତ୍ତରାଖଣ୍ଡର କେଦାରନାଥ ନିକଟସ୍ଥ ଚୋରାବାରି ଗ୍ଲାସିୟରରୁ ନିର୍ଗତ ହୋଇ ରୁଦ୍ରପ୍ରୟାଗଠାରେ ଅଳକାନନ୍ଦା ସହିତ ମିଳିତ ହୋଇଛି ।

୨. **ଅଳକାନନ୍ଦା** *(The Alaknanda)* : 'ଭାଗିରଥୀ' ଏବଂ 'ଅଳକାନନ୍ଦା' ଗଙ୍ଗୋତ୍ରିରୁ ଉତ୍ପତ୍ତି ଲାଭ କରି ସମାନ୍ତରାଳ ଭାବେ ଗତି କରିବା ପରେ 'ଦେବ ପ୍ରୟାଗ' ନିକଟରେ ମିଳିତ ହୋଇଛନ୍ତି । ଗଙ୍ଗା ନଦୀର ଉପର ମୁଣ୍ଡରେ ପ୍ରବାହିତ ଏକ ପ୍ରମୁଖ ନଦୀ ହେଉଛି ଅଳକାନନ୍ଦା । ରୁଦ୍ର ପ୍ରୟାଗରେ ଅଳକାନନ୍ଦାରେ ମନ୍ଦାକିନୀ ଲୀନ ହୋଇଯିବା ପରେ ଅଳକାନନ୍ଦା ଦେବ ପ୍ରୟାଗ ଆଡ଼େ ଗତି କରିଛି । ଦେବ ପ୍ରୟାଗଠାରେ ଅଳକାନନ୍ଦା ଭାଗିରଥୀ ନଦୀ ସହିତ ମିଳିତ ହୋଇ ପରେ 'ଗଙ୍ଗା' ନାମ ଧାରଣ କରିଛି ।

**୩. ଗଣ୍ଡକି** *(The Kali Gandaki or Gandaki River )* : ଗଣ୍ଡକି (କାଳି ଗଣ୍ଡକି) ନଦୀ ନେପାଳର ଏକ ପ୍ରମୁଖ ଏବଂ ଖୁବ୍ ଆକର୍ଷଣୀୟ ନଦୀ । ଏହି ନଦୀଟି ସମଗ୍ର ନେପାଳରେ ପ୍ରବାହିତ ହେବାପରେ ଭାରତରେ ଗଙ୍ଗା ସହିତ ମିଶିଛି । ଗଣ୍ଡକି ନଦୀଟି ନେପାଳରେ 'ନାରାୟଣୀ' ନଦୀ ନାମରେ ମଧ୍ୟ ପରିଚିତ । ଏହି ନଦୀଟି ନେପାଳର ମଷ୍ଟାଙ୍ଗ ଅଞ୍ଚଳର ନୁବିନ୍ ହିମାଲ୍ ଗ୍ଲାସିୟରରୁ ନିର୍ଗତ ହୋଇ ନେପାଳରେ ପ୍ରବାହିତ ହେଲା ପରେ ଗଙ୍ଗା ନଦୀରେ ମିଳିତ ହୋଇଛି ।

**୪. ଗୋମତୀ** *(The Gomti, Gumti or Gomati River)* : ଗଙ୍ଗାର ଅନ୍ୟତମ ପ୍ରମୁଖ ଉପନଦୀ ଗୋମତି ଉତ୍ତରପ୍ରଦେଶର ପିଲିଭିଟ୍ ଜିଲ୍ଲାର 'ଗୋମାତ ତାଲ୍' ହ୍ରଦରୁ ନିର୍ଗତ ହୋଇଛି । ଗୋମତୀ ନଦୀଟି ଉତ୍ତର ପ୍ରଦେଶର ଏକ ଦୀର୍ଘତମ ନଦୀ ଅଟେ । ଏହା ଉତ୍ତରପ୍ରଦେଶରେ ୯୦୦ କିଲୋମିଟର ପଥ ଅତିକ୍ରମ କରି ସେହି ପ୍ରଦେଶର ଘାଜିପୁର ଜିଲ୍ଲାର ସୈଦପୁରାଠାରେ ଗଙ୍ଗା ନଦୀରେ ମିଳିତ ହୋଇଛି । ପୁରାଣ ମତ ଅନୁଯାୟୀ, ଗୋମତୀ ହେଉଛନ୍ତି ବଶିଷ୍ଠ ଋଷିଙ୍କ କନ୍ୟା । ଉତ୍ତର ପ୍ରଦେଶର ରାଜଧାନୀ ଲକ୍ଷ୍ନୌ, ଲକ୍ଷ୍ମୀପୁର କ୍ଷେରି, ସୁଲ୍‌ତାନ୍‌ପୁର, ଝାଉଁପୁର ଭଳି ସହର ଗୋମତୀ ନଦୀ କୂଳରେ ଅବସ୍ଥିତ । ଝାଉଁପୁରରେ ଗୋମତୀ ନଦୀ ଉପରେ ନିର୍ମିତ ହୋଇଥିବା ପୁରାତନ 'ସାହି ବ୍ରିଜ୍' ଏକ ଐତିହ୍ୟପୂର୍ଣ୍ଣ ନିର୍ମାଣ ଭାବେ ଦର୍ଶକଙ୍କୁ ଆକୃଷ୍ଟ କରିଥାଏ ।



ଗଙ୍ଗା, ବଦ୍ରିନାଥ

**୫. ରାମଗଙ୍ଗା** *(The Ramganga)*: ରାମଗଙ୍ଗା ନଦୀଟି ଗଙ୍ଗା ନଦୀର ଅନ୍ୟ ଏକ ପ୍ରମୁଖ ଉପନଦୀ । ଏହି ନଦୀ ଉତ୍ତରାଖଣ୍ଡର ପାଉରି ଘେରଓ୍ବାଲ୍ ଜିଲ୍ଲାର ଦୁଧାତୋଳି ରେଞ୍ଜ୍‌ର ନାମିକ୍ ଗ୍ଲାସିୟରରୁ ନିର୍ଗତ ହୋଇ ଉତ୍ତରପ୍ରଦେଶର ଆଜମଗଡ଼ ଜିଲ୍ଲାର ଇବ୍ରାହିମ୍‌ପୁର ନିକଟରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି ।

**୬. କାରନାଳି ବା ଘାଗରା** *(The Karnali or Ghaghara)*: ଘାଗରା ନଦୀଟି ତିବ୍ବତ (ଚୀନ୍)ର ମାପ୍‌ଚାଚୁଙ୍ଗୋ ଗ୍ଲାସିୟର (ମାନସରୋବର ହ୍ରଦ ନିକଟ)ରୁ ବାହାରି ତିବ୍ବତ ଓ ଭାରତ ସୀମାରେ ପ୍ରବାହିତ ହୋଇ ବିହାରର ଦୋରିଗଞ୍ଜ ନିକଟରେ ଗଙ୍ଗା ନଦୀରେ

ପଡିଛି । ଗଙ୍ଗା ନଦୀର ଏହି ଉପନଦୀଟି ବହୁତ ଦୀର୍ଘ ଏବଂ ଏହାର ଲମ୍ବ ୧,୦୮୦ କିଲୋମିଟର । ଏହି ନଦୀଟିର ଅନ୍ୟ ଏକ ନାମ ରହିଛି । ତାହା ହେଉଛି କାରନାଳି । କାରନାଳି ବା ଘାଗରା ନଦୀର ଅନେକ ଉପନଦୀ ରହିଛି । ସେଗୁଡ଼ିକ ମଧ୍ୟରେ ଭେରି, ସରଯୁ, କୁଆନା, ରାପ୍ତି, ଲିଟିଲ୍ ଗଣ୍ଡକ, ସେଟି, ଦାହାଓ୍ୱାର, ଶାରଦା ପ୍ରମୁଖ ଅନ୍ୟତମ ।

୭. **କୋଶୀ** *(The Koshi or Kosi River)*: କୋଶୀ ନଦୀ ହିମାଳୟର ତିବ୍ବତ ସ୍ୱୟଂଶାସିତ ଅଞ୍ଚଳରୁ ଉତ୍ପତ୍ତିଲାଭ କରି ଭାରତ-ନେପାଳ ସୀମା ଦେଇ ପ୍ରବାହିତ ହେବା ପରେ ବିହାରରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି । କୋଶୀ ନଦୀ ଏହାର ଉପର ଅବବାହିକା ଅଞ୍ଚଳରେ ମୋଟ ସାତଗୋଟି ଉପନଦୀର ଜଳରେ ସମୃଦ୍ଧ ହୋଇଥିବାରୁ ଏହାକୁ 'ସପ୍ତକୋଶୀ' ବୋଲି କୁହାଯାଏ ।

୮. **ଯମୁନା** *(The Yamuna/Jamuna)* : ଯମୁନା ନଦୀଟି ଉତ୍ତରାଖଣ୍ଡ ରାଜ୍ୟ ଅନ୍ତର୍ଗତ ଉତ୍ତରକାଶୀ ଜିଲ୍ଲାସ୍ଥ ହିମାଳୟ ପର୍ବତମାଳାର **ଯମୁନୋତ୍ରୀ ଗ୍ଲାସିୟର** (୬,୩୮୭ ମିଟର)ସ୍ଥ ବୁନ୍ଦରପୁଞ୍ଛ ଗିରିଶୃଙ୍ଗରୁ ନିର୍ଗତ ହୋଇଛି । ଏହି ନଦୀଟି ଉତ୍ତରପ୍ରଦେଶ, ଉତ୍ତରାଖଣ୍ଡ, ହିମାଚଳପ୍ରଦେଶ, ହରିୟାନା, ରାଜସ୍ଥାନ, ମଧ୍ୟପ୍ରଦେଶ, ଦିଲ୍ଲୀ ଆଦି ରାଜ୍ୟ ଦେଇ ପ୍ରବାହିତ ହୋଇଛି । ମୋଟ ୧,୩୭୦ କିଲୋମିଟର ପଥ ଅତିକ୍ରମ କରିବା ପରେ ଯମୁନା ଉତ୍ତରପ୍ରଦେଶର ଆହ୍ଲାବାଦ (ପ୍ରୟାଗ)ଠାରେ ଗଙ୍ଗାନଦୀ ସହ ମିଳିତ ହୋଇଛି । ଆହ୍ଲାବାଦଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀର ମିଳନ ଘଟିଥିବାରୁ ଏହା 'ତ୍ରିବେଣୀ ସଙ୍ଗମ' ନାମରେ ଖ୍ୟାତ ।

୯. **ତମସା** *(The Tamsa River)* : ଏହି ନଦୀଟି ମଧ୍ୟପ୍ରଦେଶର ସତାନା ଜିଲ୍ଲାର କୈମୁର ରେଞ୍ଜ୍‌ର ତାମାକୁଣ୍ଡରୁ ନିର୍ଗତ ହୋଇ ମଧ୍ୟପ୍ରଦେଶର ସତାନା ଓ ରେଓ୍ୱା ଜିଲ୍ଲାରେ ପ୍ରବାହିତ ହୋଇ ଉତ୍ତରପ୍ରଦେଶକୁ ଛୁଇଁଛି । ତମସା ଉତ୍ତର ପ୍ରଦେଶର ସିର୍ସା ନିକଟରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି । ଏହି ନଦୀଟିର ଦୈର୍ଘ୍ୟ ୨୬୪ କିଲୋମିଟର ।

୧୦. **ସୋଣ୍** *(The Son River)*: ସୋଣ ନଦୀଟି ମଧ୍ୟପ୍ରଦେଶର ଅମରକଣ୍ଟକ ମାଳଭୂମିରୁ ନିର୍ଗତ ହୋଇ ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ, ଝାଡଖଣ୍ଡ ଓ ବିହାର ଆଦି ରାଜ୍ୟ ଦେଇ ମୋଟ ୭୮୪ କିଲୋମିଟର ପଥ ଅତିକ୍ରମ କରିବା ପରେ ବିହାରର ପାଟ୍‌ନା ଉପରମୁଣ୍ଡରେ ଗଙ୍ଗା ନଦୀରେ ମିଳିତ ହୋଇଛି । ସୋଣ ନଦୀଟି ଦକ୍ଷିଣ ଭାରତରୁ ନିର୍ଗତ ଗଙ୍ଗାର ଏକ ପ୍ରମୁଖ ଉପନଦୀ ।

୧୧. **ପୁନ୍‌ପୁନ୍** *(The Punpun River)* : ଏହି ନଦୀଟି ଝାଡଖଣ୍ଡର ପାଲାମୁ ଜିଲ୍ଲାର ଛୋଟନାଗପୁର ମାଳଭୂମିରୁ ନିର୍ଗତ ହୋଇ ଚାତ୍ରା, ଔରଙ୍ଗାବାଦ, ଗୟା, ପାଟଣା ଆଦି ଜିଲ୍ଲା ଦେଇ ୨୦୦ କିଲୋମିଟର ପ୍ରବାହିତ ହେବା ପରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି ।

୧୨. **ଅତ୍ରି** *(The Atrai River)*: ଅତ୍ରି ପଶ୍ଚିମବଙ୍ଗରୁ ଉତ୍ପତ୍ତିଲାଭ କରି ବଙ୍ଗଳା

ଦେଶ ମଧ୍ୟରେ ପ୍ରବାହିତ ହୋଇ ପୁନର୍ବାର ପଶ୍ଚିମବଙ୍ଗ ମଧ୍ୟକୁ ପ୍ରବେଶ କରିଛି । ପଶ୍ଚିମବଙ୍ଗରେ ପୁଣି କିଛି ପଥ ପ୍ରବାହିତ ହେବା ପୁନର୍ବାର ବଙ୍ଗଳା ଦେଶ ଆଡକୁ ଗତି କରିଛି । ଏହି ନଦୀଟି ବଙ୍ଗଳା ଦେଶର ଚାଲାନ୍‌ବିଲ୍ ସନ୍ତସନ୍ତିଆ ଆର୍ଦ୍ରଭୂମିରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି । ଏହି ନଦୀଟିର ଲମ୍ବ ୩୯୦ କିଲୋମିଟର ।

**୧୩. ଭିଲଂଗ୍ନା** *(The Bhilangna River)*: ଗଙ୍ଗା ନଦୀର ଏହି ଉପନଦୀଟି ହିମାଳୟ ପାର୍ବତ୍ୟାଞ୍ଚଳରୁ ନିର୍ଗତ ହୋଇଛି । ଏହା ଉତ୍ତରାଖଣ୍ଡରର ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରି ଭାଗିରଥୀ ନଦୀରେ ମିଶିଛି । ଏହି ନଦୀଟି ଗଙ୍ଗାର ଉପର ମୁଣ୍ଡରେ ପ୍ରବାହତ ଏକ ଉପନଦୀ ।

**୧୪. ନନ୍ଦାକିନି** *(The Nandakini)*: ଏହି ନଦୀଟି ଗଙ୍ଗାର ଉପରମୁଣ୍ଡରୁ ପ୍ରବାହିତ ହୋଇଥିବା ଏକ ଉପନଦୀ । ଏହି ନଦୀ ହିମାଳୟ ପାର୍ବତ୍ୟାଞ୍ଚଳର ନନ୍ଦାଦେବୀ ଅଭୟାରଣ୍ୟରୁ ବାହାରି ନନ୍ଦ ପ୍ରୟାଗ ଠାରେ ଅଳକାନନ୍ଦା ସହିତ ମିଶିଛି ।

**୧୫. ସରଯୁ** *(The Sarayu or Sarju)*: ପୁରାଣପ୍ରସିଦ୍ଧ ସରଯୁ ନଦୀଟି ଗଙ୍ଗାର ଏକ ପ୍ରମୁଖ ଉପନଦୀ । ଏହି ନଦୀଟି ଉତ୍ତରାଖଣ୍ଡ ଅନ୍ତର୍ଗତ ହିମାଳୟ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରିଛି । ପ୍ରାଚୀନ ହିନ୍ଦୁ ପୁରାଣ ରାମାୟଣରେ ଏହି ନଦୀଟି ସଂପର୍କରେ ଉଲ୍ଲେଖ ରହିଛି । ରାମାୟଣର ଅଯୋଧ୍ୟା ନଗରଟି ସରଯୁ ନଦୀ କୂଳରେ ଗଢି ଉଠିଥିଲା ଏବଂ ଏହି ସରଯୁ ନଦୀ କୂଳରେ ରାମଚନ୍ଦ୍ର ଜନ୍ମ ଗ୍ରହଣ କରିଥିଲେ ବୋଲି ରାମାୟଣରେ ଉଲ୍ଲେଖ ରହିଛି । ଏହି ନଦୀଟି ଉତ୍ତରାଖଣ୍ଡ ଓ ଉତ୍ତର ପ୍ରଦେଶରେ ମୋଟ ୩୫୦ କିଲୋମିଟର ପଥ ଅତିକ୍ରମ କରିବା ପରେ ଗଙ୍ଗା ନଦୀ ସହିତ ମିଳିତ ହୋଇଛି । ସରଯୁ ନଦୀ କୂଳରେ ପ୍ରତିବର୍ଷ ଶ୍ରୀରାମ ନବମୀ ମହାସମାରୋହରେ ପାଳିତ ହୋଇଥାଏ ।

**୧୬. ଦାମୋଦର** *(The Damodar)*: ଦାମୋଦର ନଦୀଟି ଝାଡ଼ଖଣ୍ଡର ଲାତେହାର ଜିଲ୍ଲାସ୍ଥ ଛୋଟନାଗପୁର ମାଳଭୂମିରୁ ନିର୍ଗତ ହୋଇ ଗଙ୍ଗାର ଶାଖା ନଦୀ ହୁଗୁଳିରେ ମିଳିତ ହୋଇଛି । ପ୍ରତିବର୍ଷ ଦାମୋଦର ନଦୀରେ ବନ୍ୟା ଆସି ପଶ୍ଚିମବଙ୍ଗର ବ୍ୟାପକ ଧନଜୀବନ କ୍ଷୟକ୍ଷତି ଘଟାଇଥାଏ । ଏଣୁ ଦାମୋଦର ନଦୀକୁ 'ବଙ୍ଗର ଦୁଃଖ' ବୋଲି କୁହାଯାଇଥାଏ । ଦାମୋଦର ନଦୀ କୂଳରେ ବୋକାରୋ, ଦୁର୍ଗାପୁର, ଆସନ୍‌ସଲ,  ରାଣିଗଞ୍ଜ, ବର୍ଦ୍ଧମାନ ପ୍ରମୁଖ ସହର ଅବସ୍ଥିତ । ଏହି ନଦୀଟି ୫୯୨ କିଲୋମିଟର ଅତିକ୍ରମ କରି ପଶ୍ଚିମବଙ୍ଗର ହୁଗୁଳି ନଦୀରେ ମିଶିଛି ।

**୧୭. ସରସ୍ୱତୀ ନଦୀ** *(The Saraswati River)*: ସରସ୍ୱତୀ ନଦୀଟିକୁ ନେଇ ଭାରତରେ ବହୁ ପୌରାଣିକ ଓ କିମ୍ବଦନ୍ତୀ ରହିଛି । ଯଦିଓ ସରସ୍ୱତୀ ନଦୀର ଅବସ୍ଥିତି ଓ ଉତ୍ପତ୍ତି ସଂପର୍କରେ କୌଣସି ସୂଚନା ନାହିଁ, ତେବେ ଆହ୍ଲାବାଦର ପ୍ରୟାଗଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀର ତ୍ରିବେଣୀ ସଂଗମ ଘଟିଛି ବୋଲି କୁହାଯାଇଥାଏ । ଗଙ୍ଗା ଓ ଯମୁନା ନଦୀ ଅବବାହିକା ମଧ୍ୟରେ ସରସ୍ୱତୀ ନଦୀର ଏକ ଭୂ-ତଳ ପ୍ରବାହ ରହିଛି ବୋଲି ବିଶ୍ୱାସ କରାଯାଏ । ସରସ୍ୱତୀକୁ

ଏକ ପୌରାଣିକ ନଦୀ ଭାବେ ହିନ୍ଦୁ ସମାଜରେ ଗ୍ରହଣ କରାଯାଇଛି । ପ୍ରୟାଗର ତ୍ରିବେଣୀ ସଂଗମ ସ୍ଥଳଟି କେବଳ ଭାରତ କାହିଁକି ସମଗ୍ର ପୃଥିବୀରେ ଏକ ପବିତ୍ର ତୀର୍ଥ କ୍ଷେତ୍ର ଏବଂ ଏଠାରେ ବୁଡ଼ ପକାଇଲେ ସକଳ ପାପ କ୍ଷୟ ହୋଇଥାଏ ବୋଲି ବିଶ୍ୱାସ ରହିଛି । ପ୍ରତି ବାର ବର୍ଷରେ ଥରେ ଏଠାରେ ଆୟୋଜିତ କୁଂଭ ମେଳାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

## ୪. ଯମୁନା ନଦୀ *(Yamuna River System)*




**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ:

ଉତ୍ତରପ୍ରଦେଶ : ୩.୭୭୧ ବର୍ଗ କି.ମି

ଉତ୍ତରାଖଣ୍ଡ : ୭୦.୪୩୭ ବର୍ଗ କି.ମି

ହିମାଚଳ ପ୍ରଦେଶ : ୫.୭୯୯ ବର୍ଗ କି.ମି

ହରିୟାନା : ୨୧.୨୬୫ ବର୍ଗ କି.ମି

ରାଜସ୍ଥାନ : ୧.୦୨.୮୮୩ ବର୍ଗ କି.ମି

ମଧ୍ୟ ପ୍ରଦେଶ : ୧.୪୦.୨୦୮ ବର୍ଗ କି.ମି

ଦିଲ୍ଲୀ : ୧.୪୮୫ ବର୍ଗ କି.ମି

**ମୋଟ ଅବବାହିକା ଅଞ୍ଚଳ : ୩,୪୫,୮୪୮ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୧,୩୭୦ କିଲୋମିଟର**

ଯମୁନାଙ୍କୁ ଅନ୍ୟ ଅର୍ଥରେ କୃଷ୍ଣପ୍ରିୟା ବୋଲି କୁହାଯାଏ । ଭାରତୀୟ ପୁରାଣରେ ଯମୁନା ନଦୀର ଅନେକ ଗୁରୁତ୍ୱ ରହିଛି । ରାଧା-କୃଷ୍ଣ ଓ କୃଷ୍ଣ-ଷୋଳ ସହସ୍ର ଗୋପାଙ୍ଗନାଙ୍କ ପ୍ରେମର ନିରବ ସାକ୍ଷୀ ହେଉଛି ଏହି ଯମୁନା ନଦୀ ।

ଯମୁନା ନଦୀ ଉତ୍ତରାଖଣ୍ଡ ଅନ୍ତର୍ଗତ ଉତ୍ତରକାଶୀ ଜିଲ୍ଲାସ୍ଥ ହିମାଳୟ ପର୍ବତମାଳାର **ଯମୁନୋତ୍ରୀ ଗ୍ଲାସିୟର** (୬,୩୮୭ ମିଟର)ସ୍ଥ ବୁନ୍ଦରପୁଞ୍ଛ ଗିରିଶୃଙ୍ଗରୁ ନିର୍ଗତ ହୋଇଛି । ଏହି ନଦୀଟି ଉତ୍ତରପ୍ରଦେଶ, ଉତ୍ତରାଖଣ୍ଡ, ହିମାଚଳପ୍ରଦେଶ, ହରିୟାନା, ରାଜସ୍ଥାନ, ମଧ୍ୟପ୍ରଦେଶ, ଦିଲ୍ଲୀ ଆଦି ରାଜ୍ୟ ଦେଇ ପ୍ରବାହିତ ହୋଇଛି । ମୋଟ ୧,୩୭୦ କିଲୋମିଟର ପଥ ଅତିକ୍ରମ କରିବା ପରେ ଯମୁନା ଉତ୍ତରପ୍ରଦେଶର ଆହ୍ଲାବାଦ (ପ୍ରୟାଗ)ଠାରେ ଗଙ୍ଗାନଦୀ ସହ ମିଳିତ ହୋଇଛି ।

ପୁରାଣ ଅନୁଯାୟୀ, ଯମୁନା ହେଉଛନ୍ତି ସୂର୍ଯ୍ୟ ଦେବତାଙ୍କ କନ୍ୟା ଏବଂ ମୃତ୍ୟୁର ଦେବତା ଯମରାଜଙ୍କ ଭଉଣୀ । ଭାରତର ରାଜଧାନୀ ନୂଆ ଦିଲ୍ଲୀ ଯମୁନା ନଦୀ କୂଳରେ ଅବସ୍ଥିତ । ନୂଆଦିଲ୍ଲୀ ବ୍ୟତୀତ ଆଗ୍ରା (ଉତ୍ତରପ୍ରଦେଶ), ଆହ୍ଲାବାଦ୍ (ଉତ୍ତର ପ୍ରଦେଶ), ନୋଇଡ଼ା (ଉତ୍ତର ପ୍ରଦେଶ), ମଥୁରା (ଉତ୍ତର ପ୍ରଦେଶ), ଇଟାଓ୍ୱା (ଉତ୍ତର ପ୍ରଦେଶ), ଫିରୋଜାବାଦ୍ (ଉତ୍ତର ପ୍ରଦେଶ), ବଘପାଟ (ଉତ୍ତର ପ୍ରଦେଶ), କାଲ୍‌ପି (ଉତ୍ତର ପ୍ରଦେଶ), ହମିର୍‌ପୁର (ଉତ୍ତର ପ୍ରଦେଶ), ଯମୁନା ନଗର (ଦିଲ୍ଲୀ) ଭଳି ସହର ଯମୁନା ନଦୀ କୂଳରେ ଅବସ୍ଥିତ ।

ସଂସ୍କୃତ ଶବ୍ଦ 'ଯମ' ଯାହାର ଅର୍ଥ 'ଯାଆଁଳା'ରୁ ଯମୁନା ନଦୀର ନାମକରଣ ହୋଇଛି । ଯମୁନା ନଦୀକୁ ଗଙ୍ଗା ନଦୀର ଯମଜ (ଯାଆଁଳା) ଭଉଣୀ ଭାବେ ବର୍ଣ୍ଣନା କରାଯାଇଥାଏ । ଯେହେତୁ ଯମୁନା ଓ ଗଙ୍ଗା ହିମାଳୟର ଗୋଟିଏ ଅଞ୍ଚଳରୁ ନିର୍ଗତ ହୋଇ ଉଭୟ ଅନେକ ପଥ ସମାନ୍ତରାଳ ଭାବେ ଗତି କରିଛନ୍ତି, ଏଣୁ ଗଙ୍ଗା-ଯମୁନାଙ୍କୁ ଯମଜ ଭଗିନୀ ବୋଲି କୁହାଯାଇଥାଏ । ଭଗବାନ କୃଷ୍ଣ ଜନ୍ମ ହେବା ପରେ ପିତା ବସୁଦେବ ତାଙ୍କୁ ମଥୁରାରୁ ଯମୁନା ନଦୀ ପାର କରାଇ ଗୋପପୁରରେ ପହଞ୍ଚାଇଥିଲେ । ଯମୁନା ନଦୀଟି ପୁରାଣର ଭଗବାନ କୃଷ୍ଣଙ୍କ ଲୀଳାଭୂମି ଭାବେ ବେଶ୍ ପରିଚିତ । ଏହି ନଦୀରେ ଭଗବାନ କୃଷ୍ଣ କାଳୀୟ ଦଳନ କରିବା ସହିତ ଷୋଳ ସହସ୍ର ଗୋପାଙ୍ଗନାଙ୍କ ସହିତ ରାସଲୀଳା ରଚାଇଥିଲେ ।


ଯମୁନା, ନୂଆଦିଲ୍ଲୀ

**୫. ନର୍ମଦା ନଦୀ *(Narmada River System)***

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ:**

**ମଧ୍ୟ ପ୍ରଦେଶ : ୮୫,୮୫୯ ବର୍ଗ କି.ମି**

**ମହାରାଷ୍ଟ୍ର : ୧,୫୩୮ ବର୍ଗ କି.ମି**

**ଗୁଜୁରାଟ : ୧୧,୩୯୯ ବର୍ଗ କି.ମି**

**ମୋଟ : ୯୮,୭୯୬ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୧,୩୧୨ କିଲୋମିଟର**



ନର୍ମଦା: ଜବଲପୁର ଧୂଆଁଧାର ପ୍ରପାତ

ନର୍ମଦା ନଦୀଟି ଉତ୍ତର ଓ ଦକ୍ଷିଣ ଭାରତକୁ ଦୁଇ ଭାଗରେ ବିଭକ୍ତ କରିଥାଏ । ଉତ୍ତର ଓ ଦକ୍ଷିଣ ଭାରତର ସୀମାରେଖା ଭାବେ ନର୍ମଦା ନଦୀକୁ ଚିହ୍ନିତ କରାଯାଇଥାଏ । ଏହା କେନ୍ଦ୍ରୀୟ ଭାରତର ଏକ ପ୍ରମୁଖ ଓ ପବିତ୍ର ନଦୀ । ଏହି ନଦୀଟି ମୋଟ ୧,୩୧୨ କିଲୋମିଟର ପଥ ଅତିକ୍ରମ କରି ଗୁଜୁରାଟର ଭାରୁକ୍ ଜିଲ୍ଲାରେ ଆରବ ସାଗରରେ ପଡିଛି । ଏହି ନଦୀଟି ମଧ୍ୟପ୍ରଦେଶର ଅମରକଣ୍ଟକ ମାଳଭୂମିର ନର୍ମଦାକୁଣ୍ଡରୁ ଉତ୍ପତ୍ତିଲାଭ କରିବା ପରେ ମଧ୍ୟପ୍ରଦେଶ ସମେତ ମହାରାଷ୍ଟ୍ର ଓ ଗୁଜୁରାଟ ରାଜ୍ୟ ମଧ୍ୟ ଦେଇ ପ୍ରବାହିତ ହୋଇଛି । ଉତ୍ତର ଭାରତରେ ଏହି ନଦୀଟି ରେୱା ନଦୀ *(Rewa)*

ଭାବେ ପରିଚିତ । ଭାରତର ସପ୍ତ ପବିତ୍ର ନଦୀ (ଗଙ୍ଗା, ଯମୁନା, ସରସ୍ୱତୀ, ଗୋଦାବରୀ, କାବେରୀ, ନର୍ମଦା, ସିପ୍ରା)ମାନଙ୍କ ମଧ୍ୟରେ ନର୍ମଦା ଏକ ପବିତ୍ର ନଦୀ । ପ୍ରତିବର୍ଷ 'ନର୍ମଦା ପରିକ୍ରମା' ନାମରେ ଏକ ବିଶାଳ ନଦୀ ଉତ୍ସବ ପାଳିତ ହୋଇଥାଏ । ନର୍ମଦା ନଦୀର ମୋଟ ୪୨ଟି ଉପନଦୀ ରହିଛି ।

**୬. ତାପ୍ତି ନଦୀ *(Tapti River System)***

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ:**

**ମଧ୍ୟ ପ୍ରଦେଶ : ୯,୮୦୪ ବର୍ଗ କି.ମି**

**ମହାରାଷ୍ଟ୍ର : ୫୧,୫୦୪ ବର୍ଗ କି.ମି**

**ଗୁଜୁରାଟ : ୩,୮୩୭ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୬୫,୧୪୫ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୭୨୪ କିଲୋମିଟର**

ନର୍ମଦା ଭଳି ତାପ୍ତି ମଧ୍ୟ କେନ୍ଦ୍ର ଭାରତର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ନଦୀ । ଏହା 'ତାପି' ନାମରେ ମଧ୍ୟ ପରିଚିତ । ସୂର୍ଯ୍ୟ ଦେବତାଙ୍କ କନ୍ୟାଙ୍କ ନାମ 'ତପି' ଏବଂ ଏହି 'ତପି' ନାମରୁ 'ତାପ୍ତି' ନଦୀର



**ତାପ୍ତି : ସୁରାଟର ସର୍ଦ୍ଦାର ପୋଲ**

ନାମକରଣ ହୋଇଛି ବୋଲି ପୌରାଣିକ ମତବାଦ ରହିଛି । ପୁରାଣରେ ଉଲ୍ଲେଖ ରହିଛି - "ଗଙ୍ଗା ସ୍ନାନେ, ନର୍ମଦା ଦର୍ଶନେ ଚ ତାପ୍ତି ସ୍ମରଣେ ପାପମ୍ ନାଶୟତି" ।

ମଧ୍ୟପ୍ରଦେଶର ପୂର୍ବ ସାତପୁରା ପର୍ବତମାଳାରୁ ତାପ୍ତି ନଦୀ ବାହାରି ମଧ୍ୟପ୍ରଦେଶ (ବେତୁଲ୍, ବର୍‌ହାନ୍‌ପୁର ଜିଲ୍ଲା), ମହାରାଷ୍ଟ୍ର (ଅମରାବତୀ, ଅକୋଲା, ବୁଲ୍‌ଧାନା, ୱାସିମ୍, ଜଲ୍‌ଗାଓଁ, ଧୁଲେ, ନନ୍ଦୁରବାର୍, ମାଲେଗାଓଁ, ନାସିକ ପ୍ରମୁଖ ଜିଲ୍ଲା) ଓ ଗୁଜୁରାଟ (ସୁରାଟ ଜିଲ୍ଲା) ଆଦି ରାଜ୍ୟର ମୋଟ ୭୨୪ କିଲୋମିଟର ପଥ ଅତିକ୍ରମ କରି ଶେଷରେ ଗୁଜୁରାଟର ସୁରାଟ ସହର ନିକଟରେ ଆରବ ସାଗରରେ ଥିବା କ୍ୟାମ୍ବେ ଉପସାଗରରେ ପତିତ ହୋଇଛି ।

ଭାରତର ପ୍ରମୁଖ ତିନୋଟି ନଦୀ, ଯେଉଁମାନେ ପୂର୍ବରୁ ପଶ୍ଚିମକୁ ପ୍ରବାହିତ ହୋଇ ଆରବ ସାଗରରେ ମିଶିଛନ୍ତି, ସେମାନଙ୍କ ମଧ୍ୟରେ ତାପ୍ତି ନଦୀ ଅନ୍ୟତମ । ତାପ୍ତି ନଦୀ କୂଳରେ ସୁରାଟ (ଗୁଜୁରାଟ), ସୋନ୍‌ଗାଧ (ଗୁଜୁରାଟ), ବର୍‌ହାନ୍‌ପୁର (ମଧ୍ୟ ପ୍ରଦେଶ), ଭୁଜୱଲ (ମହାରାଷ୍ଟ୍ର), ଜଲଗାଓଁ (ମହାରାଷ୍ଟ୍ର), ନାସିକ୍ (ମହାରାଷ୍ଟ୍ର), ଧୁଲେ (ମହାରାଷ୍ଟ୍ର), ଅମରାବତୀ (ମହାରାଷ୍ଟ୍ର), ଖଣ୍ଡୱା (ମଧ୍ୟ ପ୍ରଦେଶ), ନନ୍ଦୁର୍‌ବାର (ମହାରାଷ୍ଟ୍ର), ବେତୁଲ୍ (ମଧ୍ୟ ପ୍ରଦେଶ), ମାଲେଗାଓଁ (ମହାରାଷ୍ଟ୍ର), ବୁଲ୍‌ଧାନା (ମହାରାଷ୍ଟ୍ର), ୱାସିମ୍ (ମହାରାଷ୍ଟ୍ର) ପ୍ରମୁଖ ଭାରତର ବଡ଼ବଡ଼ ସହର ଅବସ୍ଥିତ । ତାପ୍ତି ନଦୀର ୬୦ରୁ ଊର୍ଦ୍ଧ୍ୱ ଉପନଦୀ ରହିଛି ।

**୭. ଗୋଦାବରୀ ନଦୀ *(Godavari River System)***

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ:**

**ମହାରାଷ୍ଟ୍ର : ୧,୫୨,୧୯୯ ବର୍ଗ କି.ମି**

**ଆନ୍ଧ୍ରପ୍ରଦେଶ : ୭୩,୨୦୧ ବର୍ଗ କି.ମି**

**ମଧ୍ୟ ପ୍ରଦେଶ : ୩୧,୮୨୧ ବର୍ଗ କି.ମି**

**ଛତିଶଗଡ଼ : ୩୩,୪୩୪ ବର୍ଗ କି.ମି**

**କର୍ଣ୍ଣାଟକ : ୪,୪୦୬ ବର୍ଗ କି.ମି**

**ଓଡ଼ିଶା : ୧୭,୭୫୨ ବର୍ଗ କିଲୋମିଟର**

**ମୋଟ ଅବବାହିକା ଅଞ୍ଚଳ : ୩,୧୨,୮୧୩ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୧,୪୬୫ କିଲୋମିଟର**

ଭାରତର '**ସପ୍ତପବିତ୍ର ନଦୀ**' ମଧ୍ୟରେ ଗୋଦାବରୀ ନଦୀ ପବିତ୍ରତମ । ଉତ୍ତର ଭାରତରେ ଗଙ୍ଗା ନଦୀକୁ ଯେଭଳି ସମ୍ମାନ ପ୍ରଦାନ କରାଯାଇଥାଏ ଅନୁରୂପ ଦକ୍ଷିଣ ଭାରତରେ ଗୋଦାବରୀ

ପୂଜିତ ହୋଇଥାଏ । ଦକ୍ଷିଣ ଭାରତରେ ଗୋଦାବରୀ ଏକ ଗୁରୁତ୍ୱପୂର୍ଣ୍ଣ ଏବଂ ପବିତ୍ର ନଦୀ ।

ଗୋଦାବରୀ ଭାରତର ଚତୁର୍ଥ ଦୀର୍ଘତମ ନଦୀ ଅଟେ । ଏହାର ଦୈର୍ଘ୍ୟ ୧,୪୬୫ କିଲୋମିଟର ଅଟେ । ଗୋଦାବରୀ ନଦୀ ଦକ୍ଷିଣ ଭାରତରେ **'ଦକ୍ଷିଣ ଗଙ୍ଗା'** ବା **'ବୃଦ୍ଧ ଗଙ୍ଗା'** ଭାବେ ପରିଚିତ । ଏହି ନଦୀଟି ମୁଖ୍ୟତଃ ଦକ୍ଷିଣ ଓ କେନ୍ଦ୍ରୀୟ ଭାରତରେ ପ୍ରବାହିତ । ମହାରାଷ୍ଟ୍ରର ମୁମ୍ବାଇସ୍ଥିତ ନାସିକ ଜିଲ୍ଲାରେ ଅବସ୍ଥିତ ପଶ୍ଚିମଘାଟ ପର୍ବତମାଳା ଅନ୍ତର୍ଗତ **'ତ୍ରିମ୍ବକେଶ୍ୱର ଗିରିଶୃଙ୍ଗ'** (ଯାହାକି ଆରବ ସାଗରର ଖୁବ୍ ନିକଟ, ମାତ୍ର ୮୦ କିଲୋମିଟର ଦୂରରେ ଅବସ୍ଥିତ)ରୁ ଉତ୍ପତ୍ତିଲାଭ କରି ମଧ୍ୟ ଆରବ ସାଗରରେ ନ ପଡ଼ି ଆଶ୍ଚର୍ଯ୍ୟଜନକ ଭାବେ ପଶ୍ଚିମରୁ ପୂର୍ବ ଦିଗକୁ ପ୍ରବାହିତ ହୋଇ ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଛତିଶଗଡ଼, କର୍ଣ୍ଣାଟକ, ତେଲେଙ୍ଗାନା, ଆନ୍ଧ୍ରପ୍ରଦେଶ ଆଦି ରାଜ୍ୟର ମୋଟ ୧୪୬୫ କିଲୋମିଟର ପଥ ଅତିକ୍ରମ କରି ଶେଷରେ ବଙ୍ଗୋପସାଗରରେ ପଡ଼ିଛି ।



ଆନ୍ଧ୍ରପ୍ରଦେଶର ରାଜମହେନ୍ଦ୍ରୀ ନିକଟରେ ଗୋଦାବରୀ

ଗୋଦାବରୀ ନଦୀଟି ଆନ୍ଧ୍ରପ୍ରଦେଶର ପଶ୍ଚିମ ଗୋଦାବରୀ, ପୂର୍ବ ଗୋଦାବରୀ ଜିଲ୍ଲା ଦେଇ ଅତିକ୍ରମ କରିବା ପରେ ବଙ୍ଗୋପସାଗରରେ ପଡ଼ିବା ପୂର୍ବରୁ ଏଠାରେ ଏକ ବିସ୍ତୀର୍ଣ୍ଣ ତ୍ରିକୋଣଭୂମି ଗଠନ କରିଛି । ଗଙ୍ଗା ପରେ ପରେ ଗୋଦାବରୀ ନଦୀ ଦ୍ୱାରା ହିଁ ଭାରତର ସବୁଠୁ ବଡ଼ ନଦୀ ଅବବାହିକା ଅଞ୍ଚଳ ଗଠିତ ହୋଇଛି । ନାସିକର ତ୍ରିମ୍ବକ ହେଉଛି ଗୋଦାବରୀ ନଦୀର ଗୁପ୍ତ ପ୍ରବାହସ୍ଥଳ ଏବଂ ଏଠାରୁ ଭୂ-ତଳ ସ୍ରୋତରୁ ଗୋଦାବରୀ ଉତ୍ପନ୍ନ ହୋଇଥିବାରୁ ଏହାକୁ ଦକ୍ଷିଣ ଗଙ୍ଗା କୁହାଯାଇଥାଏ । ଗୋଦାବରୀ ନଦୀର ପ୍ରମୁଖ ଉପନଦୀଗୁଡିକ ହେଲେ-



ଆନ୍ଧ୍ରପ୍ରଦେଶର ଖମାମ୍ ଜିଲ୍ଲା ଦୁମୁଗୋଦେମ୍ ବ୍ୟାରେଜ୍ ନିକଟରେ ଗୋଦାବରୀ

**୧. ଆଦାନ ନଦୀ :** ଗୋଦାବରୀର ଏହି ଉପନଦୀଟି ମହାରାଷ୍ଟ୍ରର ଓ୍ୱାସିମ୍ ଜିଲ୍ଲାରୁ ଉତ୍ପତ୍ତିଲାଭ କରି ଗୋଦାବରୀରେ ମିଶିଛି ।

**୨. ଇନ୍ଦ୍ରାବତୀ ନଦୀ :** ଇନ୍ଦ୍ରାବତୀ ହେଉଛି ଗୋଦାବରୀ ନଦୀର ଏକ ପ୍ରମୁଖ ଉପନଦୀ । ଏହା ଓଡ଼ିଶାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାସ୍ଥ ଦଣ୍ଡକାରଣ୍ୟ ଅନ୍ତର୍ଗତ କଳାହାଣ୍ଡି ଜିଲ୍ଲାର ଥୁଆମୂଳରାମପୁରରୁ ଉତ୍ପତ୍ତିଲାଭ କରିଛି । ଇନ୍ଦ୍ରାବତୀ ଓଡ଼ିଶାର କଳାହାଣ୍ଡି, ନବରଙ୍ଗପୁର, କୋରାପୁଟ ଜିଲ୍ଲା ଏବଂ ଛତିଶଗଡ଼ର ଜଗଦଲପୁର, ବସ୍ତର ଆଦି ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଛତିଶଗଡ଼, ଆନ୍ଧ୍ରପ୍ରଦେଶ ଓ ମହାରାଷ୍ଟ୍ରର ସୀମାବର୍ତ୍ତୀ ଇଲାକାରେ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । ଛତିଶଗଡ଼ର ବିଜାପୁର ଜିଲ୍ଲା ଅନ୍ତର୍ଗତ ଭଦ୍ରକାଳି ଗ୍ରାମ ନିକଟରେ ଇନ୍ଦ୍ରାବତୀ ନଦୀ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । ଛତିଶଗଡ଼ର ଜଗଦଳପୁରଠାରେ ଇନ୍ଦ୍ରାବତୀ ନଦୀରେ ପ୍ରସିଦ୍ଧ **'ଚିତ୍ରକୋଟ'** ଜଳପ୍ରପାତ ଅବସ୍ଥିତ ।

ଇନ୍ଦ୍ରାବତୀ ନଦୀର ପ୍ରମୁଖ ଉପନଦୀମାନଙ୍କ ମଧ୍ୟରେ ପୋଡ଼ାଗଡ଼, କପୁର, ମୁରାନ୍, ଚବ୍ରୀ, କେଶଧାରା, କାଣ୍ଡବିନ୍ଧା, ଚନ୍ଦ୍ରଗିରି, ଗୋଲାଗାର, ବନଗିରି, ତେଲିଙ୍ଗିରି, ଭାସ୍କେଲ୍, ପାର୍ଲିଯୋରି, ତୁରୀ, ଗୁଷ୍ଟାଟ୍, କୋରା, ମୋଦାଙ୍ଗ, ଦମୟନ୍ତୀ ସାଗ୍ୟା, ନାରଙ୍ଗୀ, ବୋଡି଼ଂ, ନିବ୍ରା, କୋଟ୍ରି, ବାଘିଆ, ନନ୍ଦୀରାଜ ପ୍ରମୁଖ ଉଭୟ ଓଡ଼ିଶାର କଳାହାଣ୍ଡି, କୋରାପୁଟ, ନବରଙ୍ଗପୁର ଏବଂ ଛତିଶଗଡ଼ର ବସ୍ତର ଜିଲ୍ଲାରୁ ବାହାରି ଇନ୍ଦ୍ରାବତୀ ସହିତ ମିଳିତ ହୋଇଛନ୍ତି । ଇନ୍ଦ୍ରାବତୀକୁ ଛତିଶଗଡ଼ର **'ଲାଇଫ୍ ଲାଇନ୍'** ବୋଲି କୁହାଯାଇଥାଏ ।

**୩. କାହ୍ନା ନଦୀ :** ଏହି ଉପନଦୀଟି ମଧ୍ୟପ୍ରଦେଶର ପଞ୍ଚମାରି ପର୍ବତର ଦାମୁଆ ନିକଟରୁ ବାହାରି ଗୋଦାବରୀ ନଦୀରେ ମିଳିତ ହୋଇଛି ।

**୪. ମନେରୁ ନଦୀ :** ଏହି ନଦୀଟି ତେଲେଙ୍ଗାନା ରାଜ୍ୟର କରିମ୍ ନଗର ନିକଟରୁ ବାହାରି ଗୋଦାବରୀ ସହିତ ମିଳିତ ହୋଇଛି ।

**୫. ମନ୍‌ଜିରା ନଦୀ :** ଏହି ନଦୀଟି କର୍ଣ୍ଣାଟକ, ମହାରାଷ୍ଟ୍ର ଓ ତେଲେଙ୍ଗାନା ରାଜ୍ୟ ଦେଇ ପ୍ରବାହିତ ହେବାପରେ ଗୋଦାବରୀ ନଦୀରେ ମିଳିତ ହୋଇଛି ।

**୬. ପେଁ ଗଙ୍ଗା ନଦୀ :** ଏହି ନଦୀଟି ଓ୍ୱର୍ଦ୍ଧା ନଦୀର ପ୍ରମୁଖ ଉପନଦୀ ଏବଂ ଓ୍ୱାର୍ଦ୍ଧା ହେଉଛି ଗୋଦାବରୀ ନଦୀର ଅନ୍ୟତମ ପ୍ରମୁଖ ଉପନଦୀ । ପେଁ ଗଙ୍ଗା ନଦୀଟି ମହାରାଷ୍ଟ୍ରର ଯବତମାଳ, ଚନ୍ଦ୍ରପୁର, ଓ୍ୱାସିମ୍ ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଓ୍ୱର୍ଦ୍ଧା ନଦୀ ସହିତ ମିଳିତ ହୋଇଛି ।

**୭. ପେଞ୍ଚ ନଦୀ :** ଏହି ଉପନଦୀଟି ମଧ୍ୟପ୍ରଦେଶର ଛିନ୍ଦ୍‌ଓ୍ୱାରା ଜିଲ୍ଲାରୁ ନିର୍ଗତ ହୋଇ ପେଞ୍ଚ ଜାତୀୟ ଉଦ୍ୟାନ ଦେଇ ପ୍ରବାହିତ ହେବାପରେ ଗୋଦାବରୀ ସହିତ ମିଳିତ ହୋଇଛି ।

୮. **ପ୍ରହ୍ଣିତା ନଦୀ** : ଏହି ନଦୀଟି ମହାରାଷ୍ଟ୍ରର ଗଡ଼ଛିରୋଲି ଏବଂ ଆନ୍ଧ୍ରପ୍ରଦେଶର ଅଦିଲାବାଦ ଜିଲ୍ଲା ଦେଇ ପ୍ରବାହିତ ହୋଇ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି ।

୯. **କୋଲାବ୍-ମାଛକୁଣ୍ଡ (ଶାବରୀ-ସିଲେରୁ ନଦୀ)** : ଇନ୍ଦ୍ରାବତୀ ଭଳି ଶାବରୀ (କୋଲାବ୍) ନଦୀଟି ଗୋଦାବରୀ ନଦୀର ଏକ ପ୍ରମୁଖ ଉପନଦୀ । ଏହି ନଦୀଟି ଓଡ଼ିଶା ରାଜ୍ୟରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ସିଙ୍କାରାମ ପର୍ବତମାଳା (କୋରାପୁଟ)ରୁ ଉତ୍ପତ୍ତିଲାଭ କରିଛି । ଶାବରୀ ବା କୋଲାବ୍ ନଦୀଟି ଓଡ଼ିଶାର କୋରାପୁଟ ଜିଲ୍ଲାରେ ପ୍ରବାହିତ ଏକ ପ୍ରମୁଖ ନଦୀ । ଏହା ସ୍ଥାନୀୟ ଅଞ୍ଚଳରେ କୋଲାବ୍ ନଦୀ ଭାବେ ପରିଚିତ । କୋଲାବ ନଦୀ ଓଡ଼ିଶା, ଛତିଶଗଡ଼ ଏବଂ ଆନ୍ଧ୍ରପ୍ରଦେଶର ସୀମା ନିର୍ଦ୍ଧାରଣ କରିଥାଏ । କୋଲାବ୍ ନଦୀଟି କୋରାପୁଟ ଦେଇ ପ୍ରବାହିତ ହୋଇ ଆନ୍ଧ୍ରପ୍ରଦେଶରେ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । **ଶାବରୀ (କୋଲାବ୍)** ନଦୀ ଉପର ମୁଣ୍ଡରେ କୋରାପୁଟଠାରେ 'ଉପର କୋଲାବ ଜଳବିଦ୍ୟୁତ୍ ପ୍ରକଳ୍ପ' ପ୍ରତିଷ୍ଠା କରାଯାଇଛି ।

ଶାବରୀ ନଦୀର ଏକ ପ୍ରମୁଖ ଉପନଦୀ ହେଉଛି **ସିଲେରୁ** । ସିଲେରୁ ନଦୀକୁ ସ୍ଥାନୀୟ ଅଞ୍ଚଳରେ **ମାଛକୁଣ୍ଡ** ନଦୀ ବୋଲି କହିଥା'ନ୍ତି । ଏଣୁ କୋଲାବ୍ ନଦୀଟି କୋରାପୁଟ ଅଞ୍ଚଳରେ **ସିଲେରୁ-ଶାବରୀ** ନଦୀ ଭାବେ ପରିଚିତ । ସିଲେରୁ ନଦୀରେ 'ମାଛକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ' ମଧ୍ୟ କାର୍ଯ୍ୟକାରୀ ହୋଇଛି । ଏଠାରେ ଓଡ଼ିଶାର ଦୀର୍ଘତମ ଡୁଡୁମା ଜଳପ୍ରପାତ ରହିଛି । ସିଲେରୁ-ଶାବରୀ ନଦୀରେ ଓଡ଼ିଶାରେ ସବୁଠୁ ବେଶୀ ଜଳବିଦ୍ୟୁତ୍ ପ୍ରକଳ୍ପ ନିର୍ମାଣ କରାଯାଇପାରିଛି । କୋଲାବ୍ (ଶାବରୀ) ନଦୀ ଉପରେ କୋରାପୁଟଠାରେ ଅପର କୋଲାବ୍ ଜଳବିଦ୍ୟୁତ୍ ପ୍ରକଳ୍ପ ନିର୍ମାଣ ହୋଇଥିବାବେଳେ ସିଲେରୁ ନଦୀ ଉପରେ ମାଛକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ, ବାଲିମେଳା ଜଳବିଦ୍ୟୁତ୍ ପ୍ରକଳ୍ପ, ଅପର ସିଲେରୁ ଜଳବିଦ୍ୟୁତ୍ ପ୍ରକଳ୍ପ, ଡୋଙ୍କାରାୟୀ ଜଳବିଦ୍ୟୁତ୍ ପ୍ରକଳ୍ପ ଏବଂ ଲୋୟର ସିଲେରୁ ଜଳବିଦ୍ୟୁତ୍ ପ୍ରକଳ୍ପ ଭଳି ବହୁ ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି ।

୧୦. **ବିନ୍ଦୁସାର** : ବିନ୍ଦୁସାର ନଦୀଟି ଗୋଦାବରୀର ଏକ ପ୍ରମୁଖ ଉପନଦୀ ।

୧୧. **ଓର୍ଦ୍ଧା ନଦୀ** : ଗୋଦାବରୀର ଏହା ଏକ ପ୍ରମୁଖ ଉପନଦୀ । ଏହି ନଦୀଟି ମଧ୍ୟପ୍ରଦେଶର ବେତୁଲ୍ ଜିଲ୍ଲାର ମୁଲ୍‌ତାଇ ନିକଟସ୍ଥ ସତପୁରା ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରି ମଧ୍ୟପ୍ରଦେଶର ମାତ୍ର ୩୨ କିଲୋମିଟର ଅତିକ୍ରମ କରିବା ପରେ ମହାରାଷ୍ଟ୍ରକୁ ପ୍ରବେଶ କରିଛି । ମହାରାଷ୍ଟ୍ରରେ ମୋଟ ୫୨୮ କିଲୋମିଟର ପଥ ଅତିକ୍ରମ କରି ଶେଷରେ ଓ୍ୱେଗଙ୍ଗା ନଦୀରେ ମିଳିତ ହୋଇ ପ୍ରହ୍ଣିତା ନଦୀ ଭାବେ ପରିଚିତ ହୋଇଛି । ଏହି ପ୍ରହ୍ଣିତା ନଦୀଟି ହିଁ ଗୋଦାବରୀ ନଦୀରେ ମିଳିତ ହୋଇଛି ।

## ୮. କ୍ରିଷ୍ଣା ନଦୀ *(Krishna River System)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ:

ମହାରାଷ୍ଟ୍ର: ୬୯,୪୨୫ ବର୍ଗ କି.ମି

କର୍ଣ୍ଣାଟକ: ୧,୧୩,୨୭୧ ବର୍ଗ କି.ମି

ଆନ୍ଧ୍ର ପ୍ରଦେଶ: ୭୬,୨୫୨ ବର୍ଗ କି.ମି

ମୋଟ ଅବବାହିକା ଅଞ୍ଚଳ : ୨,୫୮,୯୪୮ ବର୍ଗ କି.ମି

ନଦୀର ଦୈର୍ଘ୍ୟ : ୧୪୦୦ କିଲୋମିଟର



ମହାରାଷ୍ଟ୍ରର ମହାବଳେଶ୍ୱରରେ କ୍ରିଷ୍ଣା

କ୍ରିଷ୍ଣା ନଦୀଟି ମଧ୍ୟ ଏକ ପବିତ୍ର ନଦୀ ଭାବେ ପରିଚିତ । ଏହା ହେଉଛି ଭାରତର ପଞ୍ଚମ ଦୀର୍ଘତମ ନଦୀ ଏବଂ ଏହାର ଦୈର୍ଘ୍ୟ୧,୪୦୦ କିଲୋମିଟର । କ୍ରିଷ୍ଣା ନଦୀଟି ମହାରାଷ୍ଟ୍ରର ପଶ୍ଚିମଘାଟ ପର୍ବତମାଳାସ୍ଥ ମହାବଳେଶ୍ୱରରୁ ଉତ୍ପତ୍ତିଲାଭ କରି ମହାରାଷ୍ଟ୍ର, କର୍ଣ୍ଣାଟକ ଓ ଆନ୍ଧ୍ରପ୍ରଦେଶ ପ୍ରମୁଖ ରାଜ୍ୟରେ ପ୍ରବାହିତ ହେବା ପରେ ଆନ୍ଧ୍ରପ୍ରଦେଶର ହାମଶାଳଦିଭି ସମୁଦ୍ର ମୁହାଁଣଠାରେ ବଙ୍ଗୋପସାଗରରେ ପଡିଛି । ମହାବଳେଶ୍ୱର ଆରବ ସାଗରରୁ ମାତ୍ର ୬୪ କିଲୋମିଟର ଦୂରରେ

ଅବସ୍ଥିତ ଥିଲେ ହେଁ କ୍ରିଷ୍ଣା ନଦୀ ଆରବ ସାଗରରେ ନ ପଡି ପଶ୍ଚିମରୁ ପୂର୍ବ ଦିଗକୁ ପ୍ରବାହିତ ହୋଇ ମୋଟ ୧୪୦୦ କିଲୋମିଟର ପଥ ଅତିକ୍ରମ କରି ଆନ୍ଧ୍ରପ୍ରଦେଶ ଉପକୂଳରେ ବଙ୍ଗୋପସାଗରରେ ପଡିଛି । ଗୋଦାବରୀ ଭଳି କ୍ରିଷ୍ଣା ମଧ୍ୟ ପଶ୍ଚିମରୁ ପୂର୍ବକୁ ପ୍ରବାହିତ ହୋଇ ବଙ୍ଗୋପସାଗରରେ ପଡିଛି । କ୍ରିଷ୍ଣା ନଦୀର ଉତ୍ପତ୍ତିସ୍ଥଳ ମହାରାଷ୍ଟ୍ରର ମହାବଳେଶ୍ୱର ଏକ ପ୍ରାଚୀନ ଶୈବକ୍ଷେତ୍ର ଭାବେ ସମଗ୍ର ଭାରତରେ ପ୍ରସିଦ୍ଧ । ମହାବଳେଶ୍ୱରର ଏକ ଗାଈ ପାଟିରୁ କ୍ରିଷ୍ଣା ନଦୀଟି ଉତ୍ପତ୍ତିଲାଭ କରିଛି । ତୁଙ୍ଗଭଦ୍ରା, ଭୀମ, ଗାୟତ୍ରୀ, ଘଟପ୍ରଭା, କୋୟନା, ମାଳପ୍ରଭା, ମୁନେରୁ ପ୍ରମୁଖ କ୍ରିଷ୍ଣା ନଦୀର ମୁଖ୍ୟ ଉପନଦୀ ।

**୯. କାବେରୀ ନଦୀ *(Cauveri River System)***

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ:**

**ତାମିଲ୍‌ନାଡୁ: ୪୮,୭୩୦ ବର୍ଗ କି.ମି**

**କର୍ଣ୍ଣାଟକ: ୩୬,୨୪୦ ବର୍ଗ କି.ମି**

**କେରଳ: ୨,୯୩୦ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୮୭,୯୦୦ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୮୦୫ କିଲୋମିଟର**


ତାମିଲ୍‌ନାଡୁର ହଗେନ୍‌କାଲ୍ ନିକଟରେ କାବେରୀ

ଦକ୍ଷିଣ ଭାରତର ଏହା ଏକ ପବିତ୍ର ନଦୀ । ଗୋଦାବରୀ ଭଳି କାବେରୀକୁ ମଧ୍ୟ **'ଦକ୍ଷିଣ ଗଙ୍ଗା'** ବୋଲି କୁହାଯାଏ । ଏହି ନଦୀଟି କର୍ଣ୍ଣାଟକ ରାଜ୍ୟର ପଶ୍ଚିମଘାଟ ପର୍ବତମାଳାର କୋଡାଗୁ ଜିଲ୍ଲାର **ତଲକ୍‌ଭେରି** ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରିଛି । ତଲକ୍‌ଭେରି ସ୍ଥାନଟିକୁ ଭାରତର ଏକ ଧାର୍ମିକ ଓ ପବିତ୍ର ସ୍ଥଳ ଭାବେ ଗଣାଯାଇଥାଏ । ଏଠାରେ କାବେରୀ ନଦୀର ଉତ୍ପତ୍ତି ସ୍ଥଳରେ ଏକ ଦେବକୁଣ୍ଡ ପ୍ରତିଷ୍ଠା କରାଯାଇଛି ଏବଂ ଏଠାରେ ବହୁ ସଂଖ୍ୟାରେ ଶ୍ରଦ୍ଧାଳୁମାନେ ବୁଡ଼ ପକାଇଥା'ନ୍ତି । କାବେରୀ ନଦୀ କର୍ଣ୍ଣାଟକର ତଲକ୍‌ଭେରିରୁ ବାହାରି କର୍ଣ୍ଣାଟକ ଏବଂ ତାମିଲ୍‌ନାଡୁ ରାଜ୍ୟ ଦେଇ ୮୦୫ କିଲୋମିଟର ପ୍ରବାହିତ ହେବା ପରେ ତାମିଲ୍‌ନାଡୁରେ ବଙ୍ଗୋପସାଗରରେ ପଡିଛି । ଏହି ନଦୀର ଅବବାହିକା ଅଞ୍ଚଳରେ କର୍ଣ୍ଣାଟକ, କେରଳ ଓ ତାମିଲ୍‌ନାଡୁ ପ୍ରମୁଖ ୩ଟି ରାଜ୍ୟ ଅବସ୍ଥିତ । କାବେରୀ ନଦୀର ପ୍ରମୁଖ ୨୧ଟି ଉପନଦୀ ରହିଛି । **ଅମରାବତୀ, ଅର୍କବତୀ, ଜବିନୀ, କୁଦାମୁରୁଥି, ଲକ୍ଷ୍ମଣତୀର୍ଥ, ଭବାନୀ, ମୋୟାର, ନୟାଲ୍, ଭେନାରୁ, ଶିମ୍‌ଶା** ହେଉଛନ୍ତି କାବେରୀର ପ୍ରମୁଖ ଉପନଦୀ ।

## ୧୦. ମହାନଦୀ *(Mahanadi River System)*

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ:**

**ଛତିଶଗଡ଼ : ୭୫,୧୩୬ ବର୍ଗ କି.ମି**

**ଓଡ଼ିଶା : ୬୫,୫୮୦ ବର୍ଗ କି.ମି**

**ବିହାର : ୬୩୫ ବର୍ଗ କି.ମି**

**ମହାରାଷ୍ଟ୍ର : ୨୩୮ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୧,୪୧,୫୮୯ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୯୫୯ କିଲୋମିଟର**

ମହାନଦୀ ଭାରତର ଅଷ୍ଟମ ଦୀର୍ଘତମ ଏବଂ ଓଡ଼ିଶାରେ ପ୍ରବାହିତ ସବୁଠୁ ଲମ୍ବା ନଦୀ ଅଟେ । ମହାନଦୀକୁ 'ଓଡ଼ିଶାର ଲାଇଫ୍ ଲାଇନ୍' ବୋଲି କୁହାଯାଏ ।

ମହାନଦୀ ଛତିଶଗଡ଼ ରାଜ୍ୟରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ଅମରକଣ୍ଟକ ମାଳଭୂମିର ସିହାଓ୍ୱା ପର୍ବତରୁ ବାହାରି ଛତିଶଗଡ଼ ଏବଂ ଓଡ଼ିଶା ଦେଇ ମୋଟ ୯୫୯ କିଲୋମିଟର ପ୍ରବାହିତ ହେବାପରେ ଓଡ଼ିଶାର ପାରାଦ୍ୱୀପ ନିକଟରେ ବଙ୍ଗୋପସାଗରରେ ମିଶିଛି । ଏହାର ମୁହାଁଣରେ ଉନ୍ନବିଂଶ ଶତାବ୍ଦୀରେ ହୁକିଟୋଲାଠାରେ 'ଫଲ୍‌ସ ପଏଣ୍ଟ' ସାମୁଦ୍ରିକ ବନ୍ଦର ଗଢି ଉଠିଥିଲା । ମାତ୍ର


ମହାନଦୀ: କଟକ ଯୋବ୍ରା ଆନିକଟ୍


ମହାନଦୀ: ସମ୍ବଲପୁରର ହୀରାକୁଦ ଡ୍ୟାମ୍


ମହାନଦୀ: ଅନୁଗୁଳ ଜିଲ୍ଲା ଆଠମଲ୍ଲିକର ବିନିକେଇ

ଏହି ବନ୍ଦରଟି ଆଜି ବ୍ୟବହାର ଅନୁପଯୁକ୍ତ ହୋଇ ଏକ ଐତିହ୍ୟ ସ୍ମାରକୀ ସ୍ଥଳ ଭାବେ ଠିଆ ହୋଇଛି ।

ମହାନଦୀ ଛତିଶଗଡ଼ ରାଜ୍ୟର ରାୟପୁର ଜିଲ୍ଲାର ନାଓରି ସହର ନିକଟରୁ ଉତ୍ପତ୍ତିଲାଭ କରି କିଛିବାଟ ପ୍ରବାହିତ ହେଲା ପରେ ସମ୍ବଲପୁର ଜିଲ୍ଲାର ପଡ଼ିଗାଁ ନିକଟରେ ଓଡ଼ିଶା ସୀମା ଛୁଇଁଛି । ସମ୍ବଲପୁରଠାରେ ମହାନଦୀ ଉପରେ ଏସିଆ ମହାଦେଶର ସବୁଠୁ ବଡ଼ ମାଟି ବନ୍ଧ 'ହୀରାକୁଦ ଡ୍ୟାମ୍' ନିର୍ମାଣ କରାଯାଇଛି । ସମ୍ବଲପୁର ନିକଟରେ ମହାନଦୀ ସହିତ ଏହାର ଉପନଦୀ ଇବ୍ ମିଶିଛି । ଏହାପରେ ମହାନଦୀ ସମ୍ବଲପୁରଠାରୁ ଦକ୍ଷିଣାଭିମୁଖୀ ହୋଇ ସୋନପୁର ଜିଲ୍ଲା ଅଭିମୁଖେ ଯାତ୍ରା କରିଛି । ଏହିଠାରେ ମହାନଦୀ ସହିତ ଏହାର ଅନ୍ୟତମ ପ୍ରମୁଖ ଉପନଦୀ ତେଲ୍ ନଦୀ ମିଶିଛି । ମହାନଦୀ ଓଡ଼ିଶାରେ ସମ୍ବଲପୁର, ବଲାଙ୍ଗୀର, ସୋନପୁର, ବୌଦ୍ଧ, ନୟାଗଡ଼, ଅନୁଗୁଳ (ଆଠମଲ୍ଲିକ ସବଡିଭିଜନ) ଏବଂ କଟକ ଜିଲ୍ଲା ଦେଇ ପ୍ରବାହିତ ହେବା ପରେ ଜଗତସିଂହପୁର ଜିଲ୍ଲାର ପାରାଦ୍ୱୀପ ନିକଟରେ ବଙ୍ଗୋପ ସାଗରରେ ମିଳିତ ହୋଇଛି ।

କଟକର ନରାଜଠାରେ ମହାନଦୀ ଉପରେ ଏକ ଆନିକଟ ନିର୍ମାଣ

କରାଯାଇଛି । ମହାନଦୀ କୂଳରେ ସମ୍ବଲପୁର, ସୋନପୁର, ବୀରମହାରାଜପୁର, ବୌଦ୍ଧ, ସୁବଳୟା, ଆଠମଲ୍ଲିକ, ବାଙ୍କି, ଚର୍ଚ୍ଚିକା, କଣ୍ଟିଲୋ, ବଡ଼ମ୍ବା-ନରସିଂହପୁର, କଟକ, ପାରାଦ୍ୱୀପ ପ୍ରମୁଖ ସହର ଅବସ୍ଥିତ । ମହାନଦୀର ପ୍ରମୁଖ ଉପନଦୀମାନେ ହେଲେ-

**୧. ହାସ୍‌ଦେଓ ନଦୀ :** ହାସ୍‌ଦେଓ ନଦୀ ଛତିଶଗଡ଼ ରାଜ୍ୟର ରାୟପୁର ଜିଲ୍ଲାର ବିଲେଇଗଡ଼ରୁ ଉତ୍ପତ୍ତିଲାଭ କରି କିଛି ବାଟ ପ୍ରବାହିତ ହେବାପରେ ଛତିଶଗଡ଼ରେ ହିଁ ମହାନଦୀ ସହିତ ମିଳିତ ହୋଇଛି ।

**୨. ଇବ୍ ନଦୀ :** ଇବ୍ ନଦୀ ଛତିଶଗଡ଼ର ପାଣ୍ଡ୍ରାପେଟ୍‌ଠାରୁ ଉତ୍ପତ୍ତିଲାଭ କରି ଛତିଶଗଡ଼ର ରାଇଗଡ଼, ଜାଶପୁର ଜିଲ୍ଲା ଏବଂ ଓଡ଼ିଶାର ସମ୍ବଲପୁର, ଝାରସୁଗୁଡା, ସୁନ୍ଦରଗଡ଼ ଜିଲ୍ଲା ଦେଇ ପ୍ରବାହିତ ହେବା ପରେ ହୀରାକୁଦ ଡ୍ୟାମ୍‌ରେ ମହାନଦୀ ସହିତ ମିଶିଛି ।

**୩. ତେଲ୍ ନଦୀ :** ମହାନଦୀର ଅନ୍ୟ ପ୍ରମୁଖ ଉପନଦୀ ତେଲ୍ ଓଡ଼ିଶାର ସୋନପୁର ଜିଲ୍ଲାର ଟିଟିଲାଗଡ଼ ନିକଟରୁ ବାହାରି ସୋନପୁରଠାରେ ମହାନଦୀ ମିଳିତ ହୋଇଛି । **ଇନ୍ଦ୍ର** ନଦୀଟି ତେଲ୍ ନଦୀର ଏକ ପ୍ରମୁଖ ଉପନଦୀ ଅଟେ ।

**୪. ଜିରା ନଦୀ :** ମହାନଦୀର ଏହି ଉପନଦୀଟି ଓଡ଼ିଶାର ବରଗଡ଼ ଜିଲ୍ଲାରୁ ବାହାରି ବରଗଡ଼ ଜିଲ୍ଲାର ଶେଷ ମୁଣ୍ଡରେ ମହାନଦୀ ସହିତ ମିଳିତ ହୋଇଛି । ସେହିଭଳି ଭେଡେନ୍ ନିକଟରେ **'ଦନ୍ତା'** ନାମରେ ଅନ୍ୟ ଏକ ଉପନଦୀ ପ୍ରବାହିତ ହୋଇ ଜିରା ନଦୀରେ ପଡ଼ିଛି ।

**୫. ଝାଉଁ ନଦୀ :** ମହାନଦୀର ଏହି ଉପନଦୀଟି ଓଡ଼ିଶାର ବରଗଡ଼ ଜିଲ୍ଲାରୁ ବାହାରି ସମଗ୍ର ବରଗଡ଼ ଜିଲ୍ଲାରେ ପ୍ରବାହିତ ହୋଇଛି । ଝାଉଁନଦୀ ବରଗଡ଼ ଜିଲ୍ଲାର ଶେଷ ମୁଣ୍ଡରେ ମହାନଦୀ ସହିତ ମିଳିତ ହୋଇଛି ।

**୬. ଓଙ୍ଗ୍ ନଦୀ :** ଓଙ୍ଗ୍ ନଦୀଟି ଓଡ଼ିଶାର ନୂଆପଡ଼ା ଜିଲ୍ଲାରୁ ଉତ୍ପତ୍ତିଲାଭ କରିବା ପରେ ବରଗଡ଼ ଜିଲ୍ଲାର ପଦ୍ମପୁର ନିକଟରେ ମହାନଦୀ ସହିତ ମିଳିତ ହୋଇଛି ।

**୭. ଉଙ୍ଗ୍ ନଦୀ:** ଏହି ନଦୀଟି ନୂଆପଡାର ସୁନାବେଡା ଓ ମାରାଗୁଡା ଅବବାହିକାରୁ ପ୍ରବାହିତ ହୋଇ ମହାନଦୀରେ ମିଳିତ ହୋଇଛି ।

**୮. ମାଣ୍ଡ୍ ନଦୀ :** ମାଣ୍ଡ ନଦୀ ଛତିଶଗଡ଼ରୁ ବାହାରି ସମ୍ବଲପୁରର ହୀରାକୁଦ ଡ୍ୟାମରେ ମହାନଦୀ ସହିତ ମିଳିତ ହୋଇଛି ।

**୯. ହାତୀ ନଦୀ :** ଏହି ନଦୀଟି ମହାନଦୀର ଏକ ପ୍ରମୁଖ ଉପନଦୀ । ଏହା କଳାହାଣ୍ଡିରୁ ଉତ୍ପତ୍ତିଲାଭ କରି ମହାନଦୀରେ ମିଶିଛି ।

**୧୦. ଇନ୍ଦ୍ର :** ଇନ୍ଦ୍ର ନଦୀଟି ମହାନଦୀର ପ୍ରମୁଖ ଉପନଦୀ 'ତେଲ୍'ର ଏକ ଉପନଦୀ ।

ମହାନଦୀ ଅବବାହିକାରେ ଅବସ୍ଥିତ ଏହି ନଦୀରେ *The Lower Indra Irrigation Project* ନାମରେ ଏକ ପ୍ରମୁଖ ଜଳସେଚନ ପ୍ରକଳ୍ପ ନିର୍ମାଣ ହେବାର ଯୋଜନା ରହିଛି ।

**୧୧. ସୁକତେଲ :** ବଲାଙ୍ଗୀର ଜିଲ୍ଲାରୁ ଏହି ନଦୀଟି ଉତ୍ପତ୍ତିଲାଭ କରି ମହାନଦୀରେ ପଡିଛି ।

**୧୨. କୁଆଁରିଆ :** କୁଆଁରିଆ ନଦୀଟି ନୟାଗଡ଼ ଜିଲ୍ଲାର ଦଶପଲାରୁ ଉତ୍ପତ୍ତିଲାଭ କରିବା ପରେ ମହାନଦୀରେ ମିଶିଛି । ଏହା ଉପରେ କୁଆଁରିଆ ନଦୀ ବନ୍ଧ ନିର୍ମିତ ହୋଇଛି ।

**୧୩. ଶଗଡ଼ା :** ଶଗଡ଼ା ମହାନଦୀର ଅନ୍ୟତମ ଉପନଦୀ ଏବଂ ଏହା କଳାହାଣ୍ଡି ଜିଲ୍ଲାରୁ ବାହାରିଛି ।

**୧୪. ଉତ୍ତେଇ :** ଏହା ମଧ୍ୟ ମହାନଦୀର ଏକ ଉପନଦୀ ଏବଂ କଳାହାଣ୍ଡି ଜିଲ୍ଲାରୁ ଉତ୍ପତ୍ତିଲାଭ କରିଛି ।

**୧୫. ଉଦନ୍ତି:** ଏହି ନଦୀଟି କଳାହାଣ୍ଡି ଜିଲ୍ଲାରୁ ବାହାରି ମହାନଦୀ ସହ ମିଳିତ ହୋଇଛି ।

ମହାନଦୀ ତାର ନିମ୍ନ ଅବବାହିକା ଅଞ୍ଚଳ କଟକଠାରେ ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି କରିଛି । ଏଠାରୁ ମହାନଦୀର ଅନେକ ଶାଖାନଦୀ ବାହାରି ବଙ୍ଗୋପ ସାଗର ଆଡକୁ ମୁହାଁଇଛନ୍ତି । ତ୍ରିକୋଣଭୂମି ଅଞ୍ଚଳରୁ ସୃଷ୍ଟି ହୋଇଥିବା ମହାନଦୀର ପ୍ରମୁଖ ଶାଖା ନଦୀଗୁଡିକ ହେଲେ-

**୧. କାଠଯୋଡ଼ି:** କଟକର ନରାଜଠାରେ ଦକ୍ଷିଣ ଦିଗରେ ମହାନଦୀରୁ ଏହାର ପ୍ରଧାନ ଶାଖା ନଦୀ କାଠଯୋଡ଼ି ସୃଷ୍ଟି ହୋଇଛି । କାଠଯୋଡ଼ି କଟକ ସହର ଅତିକ୍ରମ କରି ପୂର୍ବ ମୁହାଁ ହୋଇଛି । କଟକର ଟିକେ ଆଗକୁ କାଠଯୋଡ଼ିରୁ ପୁଣି କୁଆଖାଇ, ଦେବୀ, କୁଶଭଦ୍ରା, ଦୟା, ପ୍ରାଚୀ ଆଦି ନଦୀ ସୃଷ୍ଟି ହୋଇଛନ୍ତି ।

**୨. ବିରୂପା:** କଟକର ନରାଜଠାରେ ଉତ୍ତର ଦିଗରେ ମହାନଦୀରୁ ଏହାର ଅନ୍ୟତମ ପ୍ରମୁଖ ଶାଖା ନଦୀ ବିରୂପା ସୃଷ୍ଟି ହୋଇଛି । ମହାନଦୀରୁ ଶାଖା ନଦୀ ବିରୂପା ସୃଷ୍ଟି ହେବାପରେ ଦୁଇଟିଯାକ ନଦୀରେ ଆନିକଟ୍ କରାଯାଇ ଉଭୟ ନଦୀର ଜଳକୁ ଅଟକ ରଖି କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ, ତାଳଦଣ୍ଡା କେନାଲ ମାଧ୍ୟମରେ ଜଳସେଚନ ଉଦ୍ଦେଶ୍ୟରେ ଛଡ଼ାଯାଇଥାଏ । ବିରୂପା ନଦୀ ଉତ୍ତରମୁଖା ହୋଇ ଯାଜପୁର ଜିଲ୍ଲା ଦେଇ ପ୍ରବାହିତ ହେଲାପରେ କେନ୍ଦ୍ରାପଡ଼ା ଜିଲ୍ଲାର ଇନ୍ଦୁପୁରଠାରେ ବ୍ରାହ୍ମଣୀରେ ମିଶିଯାଇଛି ।

**୩. ଗେଙ୍ଗୁଟି:** ବିରୂପା ମହାନଦୀରୁ ବାହାରି କିଛିବାଟ ପ୍ରବାହିତ ହେଲାପରେ ଏଥିରୁ ପୁଣି ଦୁଇଟି ଶାଖା ସୃଷ୍ଟି ହୋଇଛି । ଗୋଟିଏ ହେଉଛି ବଡ଼ ଗେଙ୍ଗୁଟି ଏବଂ ଅନ୍ୟଟି ସାନଗେଙ୍ଗୁଟି ।

ବଡ଼ଗେଙ୍ଗୁଟି ଚଣ୍ଡିଖୋଲ ନିକଟସ୍ଥ ପାରାଦୀପ-ଦୈତାରୀ ୫ (କ) ନମ୍ବର ଜାତୀୟ ରାଜପଥ ଦେଇ ପ୍ରବାହିତ ହୋଇଛି । ଏହା ଚଣ୍ଡିଖୋଲରୁ ତଳମୁଣ୍ଡରେ ୩୦ କିଲୋମିଟର ପ୍ରବାହିତ ହେବା ପରେ ବ୍ରାହ୍ମଣୀର ଏକ ଶାଖା ନଦୀ କିମ୍ବିରିଆ ସହ ମିଶିଛି ।

**୪. ଚିତ୍ରୋତ୍ପଳା:** କଟକ ଅତିକ୍ରମ କରିଯିବା ପରେ ମହାନଦୀ ତିନୋଟି ଶାଖାରେ ବିଭକ୍ତ ହୋଇଛି । ଉତ୍ତରରେ ଚିତ୍ରୋତ୍ପଳା, କେନ୍ଦ୍ରରେ ମୂଳ ମହାନଦୀ ଏବଂ ଦକ୍ଷିଣରେ ସୁକ୍-ପାଇକା ନଦୀ ସୃଷ୍ଟି ହୋଇଛି ।

**୫. ସୁକ୍ ପାଇକା:** କଟକ ସହର ଆଗକୁ ମହାନଦୀ ଦକ୍ଷିଣ ଦିଗରେ ଆଇତିପୁର ନିକଟରେ ଏକ ଶାଖା ନଦୀ ସୃଷ୍ଟି କରିଛି । ଏହା ସୁକ୍ ପାଇକା । ସୁକ୍ ପାଇକାଠାରୁ ତଳ ମୁଣ୍ଡକୁ ଆଉ ୫ କିଲୋମିଟର ଗଲାପରେ ଆଉ ଏକ ଶାଖା ନଦୀ ଉତ୍ପତ୍ତିଲାଭ କରିଛି । ଏହା ହିଁ ପାଇକା । ଏହି ନଦୀ ମାର୍ଶାଘାଇଠାରେ ମୂଳ ସୁକ୍ ପାଇକା ନଦୀ ସହିତ ପୁନର୍ବାର ମିଳିତ ହୋଇଯାଇଛି ।

**୬. ଲୁଣା:** କଟକ ସହରରୁ କିଛିବାଟ ଅତିକ୍ରମ କରିଯିବା ପରେ ମହାନଦୀର ଉତ୍ତରରେ ଚିତ୍ରୋତ୍ପଳା ଶାଖା ନଦୀଟି ସୃଷ୍ଟି ହୋଇଛି । ପୁନର୍ବାର ଏହି ଚିତ୍ରୋତ୍ପଳାରୁ ଲୁଣା ନାମରେ ଏକ ଶାଖା ନଦୀ ବାହାରି ୩୦ କିଲୋମିଟର ପ୍ରବାହିତ ହେବା ପରେ ଲୁଣା ଓ ଚିତ୍ରୋତ୍ପଳା ଏକାଠି ହୋଇଛନ୍ତି । ଏହା ପରଠାରୁ ଚିତ୍ରୋତ୍ପଳା ନିଜର ସତ୍ତା ହରାଇ ଲୁଣା ନଦୀ ନାମରେ ଖ୍ୟାତ ହୋଇ ଆଗକୁ ପ୍ରବାହିତ ହୋଇଛି ଏବଂ ପାରାଦୀପଠାରେ ଲୁଣା ନଦୀ ବଙ୍ଗୋପସାଗରରେ ମିଳିତ ହୋଇଛି ।

**୭. କରାଣ୍ଡିଆ:** ଚିତ୍ରୋତ୍ପଳା ଓ ଲୁଣା ଶାଖାରୁ କରାଣ୍ଡିଆର ସୃଷ୍ଟି ।

**୮. ବଡ଼ ନଦୀ:** ଲୁଣାର ଏକ ଶାଖା ନଦୀ 'ବଡ଼ ନଦୀ' (ବଡ଼ନଈ) ନାମରେ କେନ୍ଦ୍ରାପଡ଼ା ଜିଲ୍ଲାର ମହାକାଳପଡ଼ା ଦେଇ ପ୍ରବାହିତ ହୋଇ ବଙ୍ଗୋପସାଗରରେ ମିଶିଛି ।

**୯. ଦେବୀ:** କଟକଠାରେ ମହାନଦୀରୁ କାଠଯୋଡ଼ି ଶାଖା ସୃଷ୍ଟି ହୋଇ ଦକ୍ଷିଣ-ପୂର୍ବ ଦିଗକୁ କିଛିବାଟ ଗତି କଲାପରେ ଏଥିରୁ ଦେବୀ ଓ କୁଆଖାଇ ନଦୀ ସୃଷ୍ଟି ହୋଇଛି । ଦେବୀ ନଦୀ ପୂର୍ବ ଦିଗକୁ ଜଗତସିଂହପୁର ଜିଲ୍ଲାର ଆଳିପିଙ୍ଗଳ, ନୂଆଗାଁ, ମାଛଗାଁ ବ୍ଲକ୍ ଓ ପୁରୀ ଜିଲ୍ଲାର ଅସ୍ତରଙ୍ଗ, କଣାସ ପ୍ରମୁଖ ବ୍ଲକ୍ ଦେଇ ପ୍ରବାହିତ ହୋଇ ଶେଷରେ ବଙ୍ଗୋପସାଗରରେ ମିଳିତ ହୋଇଛି । କୁଆଖାଇ ଦକ୍ଷିଣ ଦିଗକୁ ଭୁବନେଶ୍ୱର ଦେଇ ଗତି କରିଛି । ଦେବୀ ନଦୀ ମୁହାଁଣଟି ଅଲିଭ୍ ରିଡ୍‌ଲେ କଇଁଛଙ୍କର ଏକ ପ୍ରମୁଖ ଅଣ୍ଡାଦାନ ସ୍ଥାନ ଭାବେ ପରିଚିତ ।

**୧୦. ଅଳକା:** କଟକର ନିମ୍ନ ଭାଗରେ କାଠଯୋଡ଼ିର ଉତ୍ତର ଦିଗରେ ଅଳକା ନାମରେ ଏକ ଶାଖା ନଦୀ ସୃଷ୍ଟି ହୋଇଛି । ଏହି ନଦୀରେ ଏକ ବନ୍ଧ ବନ୍ଧାଯାଇ ଏହାର ପାଣିକୁ ଦେବୀ ଓ ତଂପୁଆ ନଦୀରେ ଛଡାଯାଇଛି ।

**୧୧. କୁଆଖାଇ:** ନରାଜଠାରେ କାଠଯୋଡ଼ି ସୃଷ୍ଟି ହେବାପରେ ଏହା କିଛିବାଟ ଦକ୍ଷିଣକୁ ପ୍ରବାହିତ ହୋଇ ଦୁଇ ଭାଗରେ ବିଭକ୍ତ ହୋଇଛି । ଏହାର ଗୋଟିଏ ଶାଖା ଦକ୍ଷିଣ ଦିଗକୁ ଭୁବନେଶ୍ୱର ଆଡକୁ ଗତି କରି କୁଆଖାଇ ନଦୀ ସୃଷ୍ଟି କରିଛି ।

**୧୨. ସିଡୁଆ:** କଟକଠାରୁ ତଳମୁଣ୍ଡକୁ ମାତ୍ର ୫ କିଲୋମିଟର ଦକ୍ଷିଣରେ ଝିଙ୍କିରିଆ ନିକଟରେ କାଠଯୋଡ଼ିରୁ ଅନ୍ୟ ଏକ ଶାଖା ନଦୀ ସୃଷ୍ଟି ହୋଇଛି । ଏହାର ନାମ ସିଡୁଆ । ଏହା ମାତ୍ର ୧୬ କିଲୋମିଟର ପ୍ରବାହିତ ହୋଇ ପୁନର୍ବାର ମୂଳ କାଠଯୋଡ଼ିରେ ମିଶିଯାଇଛି ।

**୧୩. ବିଲୁଆଖାଇ:** ଗୋବିନ୍ଦପୁରଠାରେ କାଠଯୋଡ଼ି ପୁନର୍ବାର ଦୁଇ ଭାଗରେ ବିଭକ୍ତ ହୋଇଛି । ଦକ୍ଷିଣ ଶାଖାଟିର ନାମ 'ଦେବୀ' ହୋଇଥିବାବେଳେ ବାମ ଶାଖାଟି ବିଲୁଆଖାଇ ନଦୀ ନାମରେ ପରିଚିତ । ବିଲୁଆଖାଇ ନଦୀରୁ ପୁନର୍ବାର କନ୍ଦଳ, ଖଣ୍ଡିଆ, ଦହିଖାଇ ନାମରେ ବହୁ ଶାଖା ନଦୀ ସୃଷ୍ଟି ହୋଇଛି ।

**୧୪. କୁଶଭଦ୍ରା:** ଖୋର୍ଦ୍ଧା ଜିଲ୍ଲାର ବାଲିଅନ୍ତା ନିକଟରେ କୁଆଖାଇ ପୁଣି ଏକ ଶାଖା ନଦୀ ସୃଷ୍ଟି କରିଛି । ଏହାର ନାମ କୁଶଭଦ୍ରା । କୁଶଭଦ୍ରା ପୁରୀ ଜିଲ୍ଲାର ନିମାପଡ଼ା, ଗୋପ ବ୍ଲକ୍ ଦେଇ ରାମଚଣ୍ଡୀ ଠାକୁରାଣୀ ମନ୍ଦିର ନିକଟରେ ବଙ୍ଗୋପସାଗରେ ମିଶିଛି ।

**୧୫. ପ୍ରାଚୀ:** ଏହି ପ୍ରାଚୀନ ଓ ପୁରାଣପ୍ରସିଦ୍ଧ ନଦୀଟି ମହାନଦୀର ଅନ୍ୟ ଏକ ଶାଖା ନଦୀ କୁହାଯାଉଥିବାବେଳେ ଏହାକୁ ଏକ ସ୍ୱୟଂସଂପୂର୍ଣ୍ଣ ନଦୀ ଭାବେ ବର୍ଣ୍ଣନା କରାଯାଇଥାଏ । ଏହି ନଦୀଟି କଟକ ଜିଲ୍ଲାର ଫୁଲନଖରା ନିକଟରୁ ବାହାରି ୬୦ କିଲୋମିଟର ପଥ ଅତିକ୍ରମ କରିବା ପରେ ପୁରୀ ଜିଲ୍ଲାର ରାମଚଣ୍ଡୀ ମୁହାଁଣ ନିକଟରେ ବଙ୍ଗୋପସାଗରରେ ମିଳିତ ହୋଇଛି । ଓଡ଼ିଶାରେ ପ୍ରାଚୀ ନଦୀ ଉପତ୍ୟକା ସଭ୍ୟତାର ବହୁ ଅବଶେଷ ମିଳିଛି । ପ୍ରାଚୀ ନଦୀ ଅବବାହିକାକୁ ଓଡ଼ିଶାର ଏକ 'ପ୍ରାକୃତିକ ସଂଗ୍ରହାଳୟ' ଭାବେ ଚିତ୍ରଣ କରାଯାଇଥାଏ ।

**୧୬. ଦୟା:** ସରଦେଇପୁର ନିକଟରୁ କୁଆଖାଇ ନଦୀରୁ ଦୟା ବାହାରିଛି । ଦୟା ନଦୀ ଖୋର୍ଦ୍ଧା ଓ ପୁରୀ ଜିଲ୍ଲାରେ ପ୍ରବାହିତ ହୋଇ ଶେଷରେ ଚିଲିକା ହ୍ରଦରେ ମିଶିଛି । ଏଠାରେ ଦୟା ନଦୀ ସହିତ ଅନ୍ୟ ଏକ ନଦୀ **'ମାଲାଗୁଣି'** ମିଳିତ ହୋଇଛି । ପ୍ରସିଦ୍ଧ ବୌଦ୍ଧ ପୀଠ ଧଉଳି ପାହାଡ଼ ଦୟାନଦୀ କୂଳରେ ଅବସ୍ଥିତ । ଏହାବ୍ୟତୀତ ପ୍ରାଚୀନ କଳିଙ୍ଗ ସହିତ ମଗଧ ସମ୍ରାଟ ଅଶୋକଙ୍କ ମଧ୍ୟରେ ହୋଇଥିବା ଲୋମହର୍ଷଣକାରୀ 'କଳିଙ୍ଗ ଯୁଦ୍ଧ' ଏହି ଦୟା ନଦୀ କୂଳରେ ହୋଇଥିଲା ।

**୧୭. ଭାର୍ଗବୀ:** ଭାର୍ଗବୀ ନଦୀଟି କଟକଠାରେ ମହାନଦୀ ତ୍ରିକୋଣଭୂମି ଅଞ୍ଚଳରେ ମହାନଦୀର ଶାଖା ନଦୀ କୁଆଖାଇରୁ ସୃଷ୍ଟି ହୋଇ ପୁରୀ, ଖୋର୍ଦ୍ଧା ଜିଲ୍ଲା ଦେଇ ପ୍ରବାହିତ ହେବା ପରେ ଚିଲିକା ହ୍ରଦରେ ମିଳିତ ହୋଇଛି ।

**୧୮. କଇଁଚି:** ଏହା ଭାର୍ଗବୀର ଏକ ଶାଖା ନଦୀ । କଇଁଚି ପୁରୀ ଜିଲ୍ଲା ଦେଇ ପ୍ରବାହିତ ହୋଇଛି ।

**୧୯. ଗୋବରୀ:** ଗୋବରୀ ନଦୀଟି ମହାନଦୀ ବ୍ୟବସ୍ଥାର ଏକ ପ୍ରମୁଖ ନଦୀ । ଏହା କେନ୍ଦ୍ରାପଡ଼ା ଜିଲ୍ଲାର ଓଳାଶୁଣି ପାହାଡ (*Olasuni Hill*) ନିକଟରୁ ଉତ୍ପତ୍ତିଲାଭ କରି କେନ୍ଦ୍ରାପଡ଼ା, ଗଣ୍ଡାକିଆ, କୁଙ୍କୁଣି, ତିଆପଡ଼ା, ଓରତ, ବିଜୟନଗର, ମହାକାଳପଡ଼ା, ବାରଡ଼ାଙ୍କ ଦେଇ ପ୍ରବାହିତ ହେବାପରେ ଜଗତ୍‌ସିଂହପୁରର ଗାରୋଇ ଗାଁ ନିକଟରେ ମହାନଦୀର ଅନ୍ୟତମ ଶାଖା ନଦୀ ଦେବୀ ନଦୀ ସହିତ ମିଳିତ ହୋଇଛି । ଗାରୋଇ (*Garoi*) ର ଗୋବର୍ଦ୍ଧନ ପୀଠ ନାମାନୁସାରେ ଗୋବରୀ ନଦୀକୁ 'ଗୋବର୍ଦ୍ଧନ ନଦୀ' ବୋଲି କୁହାଯାଇଥାଏ ।

ଅପରପକ୍ଷେ, ପଙ୍କାମୁଣ୍ଡେଇଠାରୁ ବ୍ରାହ୍ମଣୀ ନଦୀର ଏକ ଶାଖା ନଦୀ 'ସାନ ବ୍ରାହ୍ମଣୀ' ଅରଡ଼ପଲ୍ଲୀ, ସାନଜରିଆ, ବୋଧଗାଁ, ମାନପାଟଣା, ନିଗିନିପୁର, ଅନ୍ଧୁଲି, କଳପଡ଼ା, ଶ୍ରୀଚନ୍ଦନପୁର, ପାତ୍ରପୁର, ଶଙ୍ଖପଦା ଦେଇ ମହାକାଳପଡ଼ା ବ୍ଲକ୍‌ର ବିଜୟନଗର ଗାଁ ନିକଟରେ ଗୋବରୀ ନଦୀ ସହିତ ମିଳିତ ହୋଇଛି । ସାନବ୍ରାହ୍ମଣୀର ଅନ୍ୟ ଏକ ଶାଖା ନଦୀ ବାବର, ବଢି ଦେଇ ପ୍ରବାହିତ ହେଲାପର ଗୋବରୀ ସହିତ ମିଳିତ ହୋଇଛି । ଗୋବରୀ ନଦୀଟି ମହାକାଳପଡା ଦେଇ ଜମ୍ବୁ-ରାମନଗର ଆଡକୁ ପ୍ରବାହିତ ହୋଇଛି । ଜମ୍ବୁରେ ଗୋବରୀ ନଦୀ ଜମ୍ବୁ ନଦୀ ନାମରେ ପରିଚିତ । ହୁକିଟୋଲା ଫଲ୍‌ସପଏଣ୍ଟ ବନ୍ଦର ନିକଟରେ ଗୋବରୀ ଏକ ବିଶାଳ ମୁହାଁଣ ସୃଷ୍ଟି କରିଛି । ଏହାକୁ ସ୍ଥାନୀୟ ଅଞ୍ଚଳରେ **'ଗୋବରୀଚଡ଼ା'** କୁହାଯାଏ ।

[*Geography of Orissa -B.N. Sinha, N.B.T Third Edition (Revised)-1999*]

## ଭାରତର ଶ୍ରେଷ୍ଠ ୧୦ଟି ଦୀର୍ଘତମ ନଦୀ

*(Top Ten Longest Rivers of India)*

| ନଦୀ | ଦୈର୍ଘ୍ୟ (କି.ମି) | ଅବବାହିକା ଅଞ୍ଚଳ (ବର୍ଗ କି.ମି) |
|---|---|---|
| ୧. ସିନ୍ଧୁ ନଦୀ | ୩,୧୦୦ | ୧୧,୨୦,୦୦୦ |
| ୨. ବ୍ରହ୍ମପୁତ୍ର | ୨,୯୦୦ | ୫,୮୦,୦୦୦ |
| ୩. ଗଙ୍ଗା ନଦୀ | ୨,୫୨୫ | ୧୦,୮୬,୦୦୦ |
| ୪. ଗୋଦାବରୀ | ୧,୪୬୫ | ୩,୧୨,୮୧୩ |
| ୫. କ୍ରିଷ୍ଣା | ୧,୪୦୦ | ୨,୫୮,୯୪୮ |

| | | |
|---|---|---|
| ୬· ଯମୁନା | ୧.୩୭୦ | ୩.୪୫.୮୪୮ |
| ୭· ନର୍ମଦା | ୧.୩୧୨ | ୦.୯୮.୭୯୬ |
| ୮· ମହାନଦୀ* | ୦.୯୫୯ | ୧.୪୧.୫୮୯ |
| ୯· କାବେରୀ | ୦.୮୦୫ | ୦.୮୭.୯୦୦ |
| ୧୦· ତାପ୍ତି | ୦.୭୨୪ | ୦.୬୫.୧୪୫ |

## ଭାରତର ସପ୍ତ ପବିତ୍ର ନଦୀ

*(Seven Sacred Rivers in India)*

ଭାରତକୁ ନଦୀମାତୃକାର ଦେଶଭାବେ ଗଣାଯାଇଥାଏ । ଏହିଦେଶରେ ପ୍ରବାହିତ ପ୍ରାୟ ସବୁ ନଦୀ ସହିତ ସାଂସ୍କୃତିକ ଓ ଧାର୍ମିକ ଭାବନା ଯୋଡ଼ି ହୋଇରହିଛି । ଭାରତରେ ସିନ୍ଧୁ, ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର, ରାବି, ସତ୍‌ଲେଜ୍, ବ୍ୟାସ, ଚେନାବ୍, ଝେଲମ୍, ନର୍ମଦା, ତାପ୍ତି, କ୍ରିଷ୍ଣା, କାବେରୀ, ଗୋଦାବରୀ, ମହାନଦୀ ଭଳି ବହୁ ବଡ଼ବଡ଼ ନଦୀ ପ୍ରବାହିତ ହୋଇଛନ୍ତି । ଭାରତରେ ପ୍ରବାହିତ ଅଧିକାଂଶ ନଦୀ ସହ ଧାର୍ମିକ ଭାବନା ସଂଲଗ୍ନ ହୋଇଥିଲେ ମଧ୍ୟ, ୭ଟି ଶ୍ରେଷ୍ଠ ନଦୀକୁ ସର୍ବାଧିକ ଧାର୍ମିକ ଓ ପବିତ୍ର ନଦୀ ଭାବେ ଗ୍ରହଣ କରାଯାଇଛି । ଏହି ସାତଟି ନଦୀକୁ ଭାରତର **'ସପ୍ତ ପବିତ୍ର ନଦୀ'** ବୋଲି ସମସ୍ତେ ମାନିଥା'ନ୍ତି । ଏମାନେ ହେଲେ-

୧· ଗଙ୍ଗା

୨· ଯମୁନା



ଗଙ୍ଗା, ବାରାଣାସୀ

୩· ସରସ୍ୱତୀ

୪· ନର୍ମଦା

୫· ସିପ୍ରା

୬· ଗୋଦାବରୀ

୭· କାବେରୀ

ପବିତ୍ର **ଗଙ୍ଗା** **ନଦୀ**ଟି ହିମାଳୟ ପର୍ବତମାଳାର ଗଙ୍ଗୋତ୍ରିରୁ ବାହାରି ବଙ୍ଗଳାଦେଶର ପ୍ରସିଦ୍ଧ ସୁନ୍ଦରବଣ ତ୍ରିକୋଣଭୂମି ଅଞ୍ଚଳ ନିକଟରେ ବଙ୍ଗୋପସାଗରରେ ମିଳିତ ହୋଇଛି । ଗଙ୍ଗା ନଦୀ କୂଳରେ ସାରାଭାରତର ଅନେକ ଗୁରୁତ୍ୱପୂର୍ଣ୍ଣ ଧାର୍ମିକ ପୀଠମାନ ରହିଛି । ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀର ମିଳନ ସ୍ଥଳ ଆହ୍ଲାବାଦ, ଭାରତର ମନ୍ଦିର ମାଳିନୀ ସହର ବାରଣାସି, ଚାରିଧାମ୍ (ବଦ୍ରି ନାଥ, କେଦାର ନାଥ, ଗଙ୍ଗୋତ୍ରି, ଯମୁନୋତ୍ରି), ହରିଦ୍ୱାର, ଋଷିକେଶ ଆଦି ପବିତ୍ର ଧାର୍ମିକ ସ୍ଥଳ ଗଙ୍ଗା ନଦୀ କୂଳରେ ଅବସ୍ଥିତ । ହରିଦ୍ୱାରଠାରୁ ହିଁ ଗଙ୍ଗା ନଦୀ ହିମାଳୟ ପାର୍ବତ୍ୟାଞ୍ଚଳ ପରିତ୍ୟାଗ କରି ସମତଳ ଭୂମିରେ ପ୍ରବେଶ କରିଛି । ଏଣୁ ହରିଦ୍ୱାରର ଏକ ସ୍ୱତନ୍ତ୍ର ଧାର୍ମିକ ଗୁରୁତ୍ୱ ରହିଛି ।



**ଗୋଦାବରୀ: ମହାରାଷ୍ଟ୍ରର ନାସିକ ରାମକୁଣ୍ଡ**



**ଆହ୍ଲାବାଦ କୁଂଭମେଳା**

**ଯମୁନା ନଦୀ**ଟି ହିମାଳୟ ପାର୍ବତ୍ୟାଞ୍ଚଳର ଯମୁନୋତ୍ରୀରୁ ବାହାରିଛି । ଯମୁନା ଭାରତର ସପ୍ତ ପବିତ୍ର ନଦୀମାନଙ୍କ ମଧ୍ୟରୁ ଅନ୍ୟଏକ ଶ୍ରେଷ୍ଠ ଏକ ନଦୀ ଅଟେ । ଏହା ଉତ୍ତର ପ୍ରଦେଶ ଆହ୍ଲାବାଦର ପ୍ରୟାଗଠାରେ ଗଙ୍ଗା ଓ ସରସ୍ୱତୀ (ପୌରାଣିକ ନଦୀ) ନଦୀ ସହିତ ମିଳିତ ହୋଇ ପ୍ରସିଦ୍ଧ 'ତ୍ରିବେଣୀ ସଂଗମ' ସୃଷ୍ଟି କରିଛି । ଏଠାରେ ପ୍ରତି ୧୨ ବର୍ଷରେ

ଥରେ କୁମ୍ଭ ମେଳା ଅନୁଷ୍ଠିତ ହୋଇଥାଏ । ସମଗ୍ର ପୃଥିବୀରୁ ଲକ୍ଷାଧିକ ଭକ୍ତ ଏଠାକୁ ବୁଡ଼ ପକାଇବାକୁ ଆସିଥା'ନ୍ତି । ଯମୁନା ନଦୀ ଉପକୂଳରେ ଭାରତର ଶ୍ରେଷ୍ଠ ଧାର୍ମିକ ପୀଠସବୁ ରହିଛି । ପୌରାଣିକ ସହର ଭଗବାନ ଶ୍ରୀକୃଷ୍ଣଙ୍କ ମଥୁରା ନଗରୀ, ବୃନ୍ଦାବନ, ଗୋକୁଳ, ଆଗ୍ରା (ତାଜମହଲ), ଦିଲ୍ଲୀ ଭଳି ସହର ଯମୁନା କୂଳରେ ଅବସ୍ଥିତ । ଯମୁନା ନଦୀ 'କାଲିନ୍ଦ୍' *(Kalind Peak)* ଗିରିଶୃଙ୍ଗକୁ ସ୍ପର୍ଶ କରି ପ୍ରବାହିତ ହୋଇଥିବାରୁ ଏହା ଅତୀତରେ 'କାଳିନ୍ଦୀ' ନାମରେ ପରିଚିତ ଥିଲା । ଭଗବାନ କୃଷ୍ଣ ଯମୁନା ନଦୀର ଏହି କାଳିନ୍ଦୀ ହ୍ରଦରେ କାଳୀୟ ଦଳନ କରିଥିଲେ ବୋଲି ପୁରାଣରେ ଉଲ୍ଲେଖ ରହିଛି । ଏହାପରେ ଯମୁନା କାଲିନ୍ଦ୍ ଗିରିଶୃଙ୍ଗରୁ ତଳକୁ ଓହ୍ଲାଇ ସମତଳ ଅଞ୍ଚଳ 'ଖାଣ୍ଡବ ବନ' ଦେଇ ପ୍ରବାହିତ ହୋଇଛି । କୌରବମାନଙ୍କ ଦ୍ୱାରା ବିତାଡ଼ିତ ହେବା ପରେ ପାଣ୍ଡବମାନେ ଏହି ଖାଣ୍ଡବ ବନରେ ହିଁ ନିଜର ନୂତନ ରାଜ୍ୟ 'ଇନ୍ଦ୍ରପ୍ରସ୍ଥ' ନିର୍ମାଣ କରିଥିଲେ । 'ମହାଭାରତ'ର ଏହି ଖାଣ୍ଡବ ବନ ବା ଇନ୍ଦ୍ରପ୍ରସ୍ଥ ହେଉଛି ଆଜିର ଦିଲ୍ଲୀ ସହର । ଭାରତର ରାଜଧାନୀ ଦିଲ୍ଲୀ ସହର ପବିତ୍ର ଯମୁନା ନଦୀ କୂଳରେ ଅବସ୍ଥିତ ।

ସରସ୍ୱତୀ ଏକ ପୌରାଣିକ ନଦୀ ।



ନର୍ମଦା: ମଧ୍ୟପ୍ରଦେଶର ହସଙ୍ଗାବାଦ ଘାଟ



କାବେରୀ ନଦୀର ଉତ୍ପତ୍ତି ସ୍ଥଳ : କର୍ଣ୍ଣାଟକର ତାଲକାବେରି



ଯମୁନା: ଉତ୍ତରପ୍ରଦେଶର ବୃନ୍ଦାବନ



**ସିପ୍ରାନଦୀ ମଧ୍ୟପ୍ରଦେଶ ଉଜ୍ଜୟିନୀର କୁଂଭମେଳା**

ଏହି ନଦୀଟିର ବାସ୍ତବ ଅବସ୍ଥିତି ନ ଥିଲେ ମଧ୍ୟ ଏହା ପାତାଳି ହୋଇଯାଇଛି ବୋଲି ଅନୁମାନ କରାଯାଏ । ସରସ୍ୱତୀ ନଦୀଟି ମରୁଭୂମି ଦେଇ ପ୍ରବାହିତ ହେବା ଅବସରରେ ଶୁଷ୍କ ହୋଇଯାଇଛି ବୋଲି ବୈଜ୍ଞାନିକ କାରଣ ରହିଥିଲେ ମଧ୍ୟ ଏହା ପାତାଳି ହୋଇଯାଇଛି ବୋଲି ଧାର୍ମିକ ମତବାଦ ରହିଛି । ଆହ୍ଲାବାଦର ପ୍ରୟାଗଠାରେ ପବିତ୍ର ଗଙ୍ଗା, ଯମୁନା ନଦୀ ସହିତ ସରସ୍ୱତୀ ମିଳିତ ହୋଇ ପ୍ରସିଦ୍ଧ 'ତ୍ରିବେଣୀ ସଂଗମ' ସୃଷ୍ଟି କରିଛନ୍ତି ।

**ନର୍ମଦା ନଦୀଟି** ବିଶେଷକରି ଉତ୍ତର ଓ ଦକ୍ଷିଣ ଭାରତକୁ ଦୁଇ ଭାଗରେ ବିଭକ୍ତ କରିଛି । ଏହି ନଦୀଟି ମଧ୍ୟପ୍ରଦେଶର ଅମରକଣ୍ଟକ ମାଳଭୂମିର ମୈକାଲ୍ ରେଞ୍ଜରୁ ନିର୍ଗତ ହୋଇ ବିନ୍ଧ୍ୟାଚଳ ଓ ସତପୁରା ପର୍ବତମାଳା ଦେଇ ପ୍ରବାହିତ ହୋଇ ଗୁଜୁରାଟର ଭାରୁକ୍ ଜିଲ୍ଲାର ଆରବ ସାଗରର ଖମ୍ବତ୍ ଉପସାଗର *(Gulf of Cambay)*ରେ ପଡିଛି । ନର୍ମଦା ଉପତ୍ୟକାରେ ଅନେକ ପ୍ରସିଦ୍ଧ ଜଳପ୍ରପାତ ରହିଛି । ସେମାନଙ୍କ ମଧ୍ୟରୁ ଧୁଆଁଧାର ଓ କପିଳଧାରା ଦୁଇଟି ପ୍ରସିଦ୍ଧ ଜଳ ପ୍ରପାତ । ନର୍ମଦା ନଦୀରେ ବହୁ ବିତର୍କିତ ସର୍ଦ୍ଦାର ଦାମୋଦର ଡ୍ୟାମ୍ ନିର୍ମାଣ କରାଯାଇଛି । ଗୁଜୁରାଟର ନର୍ମଦା ପୋଲଟି ଦେଶର ସବୁଠୁ ଲମ୍ବା ପୋଲ । ନର୍ମଦା ନଦୀ ସହିତ ତାପ୍ତି ଓ ମାହି ନଦୀ ପ୍ରବାହିତ ହୋଇଛନ୍ତି ।

ଭାରତର ସପ୍ତ ପବିତ୍ର ନଦୀମାନଙ୍କ ମଧ୍ୟରେ **ସିପ୍ରା ନଦୀ**ର ଏକ ପ୍ରମୁଖ ଭୂମିକା ରହିଛି । ଏହି ନଦୀଟି ମଧ୍ୟ ପ୍ରଦେଶର ବିନ୍ଧ୍ୟ ପର୍ବତମାଳାରୁ ବାହାରି ମାଲୱା ମାଳଭୂମି ଦେଇ ପ୍ରବାହିତ ହେବା ପରେ ଯମୁନାର ପ୍ରମୁଖ ଉପନଦୀ ଚଂବଲ ନଦୀରେ ମିଳିତ ହୋଇଛି । ଭାରତର ସପ୍ତ ପବିତ୍ର ନଦୀମାନଙ୍କ ମଧ୍ୟରେ ଏହା ଏକ ଶୁଦ୍ଧ ଓ ପବିତ୍ରତମ ନଦୀ । ମଧ୍ୟପ୍ରଦେଶର ଧାର୍ମିକ ସହର ଉଜ୍ଜୟିନୀ ଏହି ସିପ୍ରା ନଦୀ କୂଳରେ ଅବସ୍ଥିତ । ସିପ୍ରା ନଦୀ କୂଳରେ ଥିବା ଉଜ୍ଜୟିନୀ ସହରର ରାମଘାଟରେ ପ୍ରତି ବାର ବର୍ଷରେ ଥରେ ମହାକୁଂଭ ମେଳା ଅନୁଷ୍ଠିତ ହୋଇଥାଏ । ଏଠାରେ ଲକ୍ଷାଧିକ ଶ୍ରଦ୍ଧାଳୁ ଦେବୀ କ୍ଷୀପ୍ରା (ସିପ୍ରା)ଙ୍କୁ ପୂଜା ଆରାଧନା କରିବା ସହ ବୁଡ଼ ପକାଇଥା'ନ୍ତି । ଉଜ୍ଜୟିନୀ ସହରରେ ସିପ୍ରା ନଦୀ କୂଳରେ ଅବସ୍ଥିତ ସିପ୍ରା (କ୍ଷିପ୍ରା) ଦେବୀଙ୍କ ମନ୍ଦିରରେ 'ସନ୍ଧ୍ୟା ଆଳତୀ' ଦେଖିବାକୁ ସହସ୍ରାଧିକ ସଂଖ୍ୟାରେ ଭକ୍ତଙ୍କ ସମାବେଶ ଘଟିଥାଏ ।

**ଗୋଦାବରୀ ନଦୀ**ଟି 'ଦକ୍ଷିଣ ଗଙ୍ଗା' ଭାବେ ପରିଚିତ । ଦକ୍ଷିଣ ଭାରତରେ ଏହି ନଦୀଟି ଏକ ପବିତ୍ର ନଦୀ ଭାବେ ପୂଜିତ ହୋଇଥାଏ । ମହାରାଷ୍ଟ୍ରର ନାସିକ ଜିଲ୍ଲାରେ ଅବସ୍ଥିତ ପଶ୍ଚିମଘାଟ ପର୍ବତମାଳା ଅନ୍ତର୍ଗତ ତ୍ରିମ୍ବକେଶ୍ୱର ଗିରିଶୃଙ୍ଗରୁ ଉତ୍ପତ୍ତିଲାଭ କରି ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଛତିଶଗଡ଼, କର୍ଣ୍ଣାଟକ, ତେଲେଙ୍ଗାନା, ଆନ୍ଧ୍ରପ୍ରଦେଶ ଆଦି ରାଜ୍ୟର ମୋଟ ୧୪୬୫ କିଲୋମିଟର ପଥ ଅତିକ୍ରମ କରି ଶେଷରେ ଆନ୍ଧ୍ର ପ୍ରଦେଶରେ ବଙ୍ଗୋପସାଗରରେ ପଡିଛି । ମହାରାଷ୍ଟ୍ରର ନାସିକଠାରେ ଗୋଦାବରୀ ନଦୀରେ ପ୍ରତି ୧୨ ବର୍ଷରେ ଥରେ କୁଂଭମେଳା ଅନୁଷ୍ଠିତ ହୋଇଥାଏ । ଆହ୍ଲାବାଦର ବାରଣାସି କୁଂଭମେଳା ଭଳି ନାସିକ କୁଂଭମେଳା ମଧ୍ୟ ଖୁବ୍ ଆଡମ୍ବର ସହକାରେ ପାଳିତ ହୋଇଥାଏ । ଏହି କୁଂଭମେଳାରେ ଲକ୍ଷାଧିକ ଭକ୍ତ ଗୋଦାବରୀ ନଦୀରେ ବୁଡ଼ ପକାଇଥା'ନ୍ତି ।

ଭାରତରେ ଚାରିଗୋଟି ସ୍ଥାନରେ କୁଂଭମେଳା ଅନୁଷ୍ଠିତ ହୋଇଥାଏ । ହରିଦ୍ୱାର (ଗଙ୍ଗା), ଆହ୍ଲାବାଦ (ଗଙ୍ଗା-ଯମୁନା-ସରସ୍ୱତୀ ତ୍ରିବେଣୀ ସଂଗମ), ନାସିକ (ଗୋଦାବରୀ) ଓ ଉଜ୍ଜୟିନୀ (ସିପ୍ରା ନଦୀ) ସହରରେ ପ୍ରତି ତିନି ବର୍ଷରେ ଥରେ ପର୍ଯ୍ୟାୟକ୍ରମେ କୁଂଭମେଳା ପାଳିତ ହୋଇଥାଏ । ପ୍ରତି ୧୨ ବର୍ଷରେ ଥରେ ପାଳିତ ହେଉଥିବା କୁଂଭ ମେଳାକୁ ପୂର୍ଣ୍ଣ କୁଂଭମେଳା ଓ ପ୍ରତି ଛଅ ବର୍ଷରେ ପାଳିତ ହେଉଥିବା କୁଂଭମେଳାକୁ ଅର୍ଦ୍ଧକୁଂଭ ମେଳା କୁହାଯାଏ । ହରିଦ୍ୱାର ଓ ଅହ୍ଲାବାଦରେ ପ୍ରତି ଛଅ ବର୍ଷରେ ଥରେ କୁଂଭମେଳା ଅନୁଷ୍ଠିତ ହୋଇଥାଏ । ଏହାକୁ ଅର୍ଦ୍ଧ କୁଂଭମେଳା କୁହାଯାଏ ।

**କାବେରୀ ନଦୀ**ଟି ଦକ୍ଷିଣ ଭାରତର ଏକ ପବିତ୍ର ନଦୀ ଭାବେ ଜଣାଶୁଣା । ସପ୍ତ ପବିତ୍ର ନଦୀ ମଧ୍ୟରେ କାବେରୀ ଭାରତୀୟଙ୍କ ଦ୍ୱାରା ପୂଜିତ ହୋଇଥାଏ । କର୍ଣ୍ଣାଟକ ରାଜ୍ୟରେ କାବେରୀ ନଦୀରେ ଭାରତର ପ୍ରସିଦ୍ଧ 'ଶିବ ସମୁଦ୍ରମ୍' ଜଳପ୍ରପାତ ରହିଛି । ଏହି ଶିବସମୁଦ୍ରମ୍ ଜଳପ୍ରପାତଟି ଭାରତର ଦୀର୍ଘତମ ଜଳପ୍ରପାତ ଅଟେ ।

*(**Sources:***

1. **Geography of Orissa -B.N. Sinha, N.B.T Third Edition (Revised)-1999, (National Institute of Hydrology, Roorkee, Uttarakhand)*
2. *Rivers of India -Sunil Vaidyanathan, Shayoni Mitra,Bibliophile South Asia, Radhe Radhe Building, Adhchini, New Delhi (2011)*
3. *Land of the Seven Rivers; a brief history of India's geography -Sanjeev Sanyal, Penguin Books India, New Delhi (2012)*
4. *Land of Two Rivers; a history of Bengal -Sengupta, Nitish, Penguin India, New Delhi (2011)*
5. *Ganga: origin and descent of the river eternal -Ashok Dilwali, Pushpesh Pant, Frank Bros. & Co., 1987, the University of Michigan (2010)*
6. *River dog: a journey down the Brahmaputra -Mark Shand, Published by Little, Brown Book Group(2003), UK*
7. *Empires of the Indus: From Tibet to Pakistan; the story of a river -Alice Albinia, W.W. Norton and Company, New York (2009)*
8. *The River and Life; Story of the Narmada Bachao Andolan -Sanjay Sangvai, Earthcare Books,10 Middleton Street, Kolkata (2002)*
9. *Seven Sacred Rivers -Bill Aitken, Penguin Books India, New Delhi (2000)*
10. *The Ganges in Myth and History -Steven G. Darian, Motilal Banarsidass Publishers Private Limited, Bungalow Road, Delhi (2001)*
11. *The Brahmaputra Basin Water Resources -Vijay P Singh, Nayan Sharma, C. Shekhar P. Ojha, kluwer Academic Publishers, Netherlands (2004)*
12. *Water Resources Information System of India, Central Water Commission of India, Ministry of Water Resources, Government of India.*
13. *Tales from the river Brahmaputra -Tiziana and Gianni Baldizzone, Timeless book, New Delhi (2000)*
14. *Some websites of rivers in India.*

# ଓଡ଼ିଶାର ନଦନଦୀ

*(River System in Odisha)*

ଏ ଅଧ୍ୟୟନର ମୂଳଉଦ୍ଦେଶ୍ୟ ହେଉଛି ବୈତରଣୀ ନଦୀ ସଂପର୍କରେ ଜାଣିବା । ତେବେ ବୈତରଣୀ ବିଷୟରେ ଜାଣିବା ପାଇଁ ପ୍ରଥମେ ଓଡ଼ିଶାର ନଦନଦୀମାନଙ୍କ ବିଷୟରେ ପରିଚିତ ହେବାକୁ ପଡ଼ିବ । ଏଣୁ ବୈତରଣୀ ସହିତ ଓଡ଼ିଶାର ଅନ୍ୟାନ୍ୟ ନଦୀମାନଙ୍କ ଭିଷୟରେ ସମ୍ୟକ ଜ୍ଞାନ ହାସଲ କରିବା ନିହାତି ଜରୁରୀ ବୋଲି ମନେକରାଯାଇପାରେ ।

ଭାରତ ଯେମିତି ଏକ ନଦୀବହୁଳ ଦେଶ, ଅନୁରୂପ ଆମ ରାଜ୍ୟ ଓଡ଼ିଶା ଏକ ନଦୀବହୁଳ ରାଜ୍ୟ । ବଣ, ପାହାଡ଼ଘେରା ଓଡ଼ିଶାର ଛାତିକୁ ଚିରି ଶହଶହ ଛୋଟବଡ଼ ନଦୀ ପ୍ରବାହିତ ହୋଇଛନ୍ତି । ଭୌଗୋଳିକ ଆଧାରରେ ଓଡ଼ିଶାରେ ପ୍ରବାହିତ ନଦୀମାନଙ୍କୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରାଯାଇପାରେ । ଯଥା-

୧. ଉତ୍ସ ଓଡ଼ିଶା ବାହାରେ, ପ୍ରବାହ ଓଡ଼ିଶା ମଧ୍ୟରେ
(ସୁବର୍ଣ୍ଣରେଖା, ମହାନଦୀ, ବ୍ରାହ୍ମଣୀ)

୨. ଉତ୍ସ ଓଡ଼ିଶା ମଧ୍ୟରେ, ପ୍ରବାହ ଓଡ଼ିଶା ବାହାରେ
(ବାହୁଡ଼ା, ବଂଶଧାରା, ନାଗାବଳୀ)

୩. ଉତ୍ସ ଓଡ଼ିଶା ମଧ୍ୟରେ, ପ୍ରବାହ ଓଡ଼ିଶା ମଧ୍ୟରେ
(ବୁଢ଼ାବଳଙ୍ଗ, ବୈତରଣୀ, ସାଳନ୍ଦୀ, ଋଷିକୁଲ୍ୟା)

୪. ଉତ୍ସ ଓଡ଼ିଶା ମଧ୍ୟରେ, ମାତ୍ର ଓଡ଼ିଶା ବାହାର ନଦୀର ଉପନଦୀ
(ଇନ୍ଦ୍ରାବତୀ, ସିଲେରୁ-ଶାବରୀ ବା ମାଛକୁଣ୍ଡ-କୋଲାବ୍)

ଓଡ଼ିଶାର ସମଗ୍ର ନଦୀ ବ୍ୟବସ୍ଥାକୁ ମୁଖ୍ୟତଃ ବାର ଭାଗରେ ବିଭକ୍ତ କରାଯାଇପାରେ-

୧. ମହାନଦୀ *(The Mahandi)*
୨. ବ୍ରାହ୍ମଣୀ *(The Brahmani)*
୩. ବୈତରଣୀ *(The Baitarani)*
୪. ସୁବର୍ଣ୍ଣରେଖା *(The Subarnarekha)*
୫. ବୁଢ଼ାବଳଙ୍ଗ *(The Budhabalanga)*
୬. ଜଂଭିରା *(Jambhira)*
୭. ଋଷିକୁଲ୍ୟା *(The Rushikulya)*
୮. ବାହୁଡ଼ା *(The Bahuda)*

୯· ବଂଶଧାରା *(The Vansadhara)*

୧୦· ନାଗାବଳୀ *(The Nagabali)*

୧୧· ଇନ୍ଦ୍ରାବତୀ *(The Indravati)*

୧୨· କୋଲାବ୍-ମାଛକୁଣ୍ଡ *(The Kolab-Machhakunda)*

## ୧. ମହାନଦୀ *(The Mahandi)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ:

ଛତିଶଗଡ଼ : ୭୫,୧୩୬ ବର୍ଗ କି.ମି

ଓଡ଼ିଶା : ୬୫,୫୮୦ ବର୍ଗ କି.ମି

ବିହାର : ୬୩୫ ବର୍ଗ କି.ମି

ମହାରାଷ୍ଟ୍ର : ୨୩୮ ବର୍ଗ କି.ମି

ମୋଟ: ୧,୪୧,୫୮୯ ବର୍ଗ କି.ମି

ନଦୀର ଦୈର୍ଘ୍ୟ : ୯୫୯ କିଲୋମିଟର

ମହାନଦୀ ଓଡ଼ିଶାର ସବୁଠୁ ବଡ଼ ନଦୀ । ମହାନଦୀ, ଏହାର ଉତ୍ପତ୍ତି, ପ୍ରବାହ, ଅବବାହିକା ଅଞ୍ଚଳ ଏବଂ ଏହାର ଉପନଦୀ ଓ ଶାଖା ନଦୀଗୁଡିକ ସଂପର୍କରେ ପୂର୍ବରୁ 'ଭାରତର ନଦୀ ବ୍ୟବସ୍ଥା'ରେ ବିସ୍ତୃତ ଆଲୋଚନା କରାଯାଇଛି । ଏଠାରେ ପୁନଃ ଆଲୋଚନା ନିଃଷ୍ପ୍ରୟୋଜନ ।

## ୨. ବ୍ରାହ୍ମଣୀ *(The Brahmani)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ: ଓଡ଼ିଶା, ଝାଡ଼ଖଣ୍ଡ, ଛତିଶଗଡ଼

ଓଡ଼ିଶା : ୨୨,୫୧୬ ବର୍ଗ କି.ମି

ଝାଡ଼ଖଣ୍ଡ : ୧୫,୭୦୦ ବର୍ଗ କି.ମି

ଛତିଶଗଡ଼ : ୯୦୦ ବର୍ଗ କି.ମି

ମୋଟ ଅବବାହିକା ଅଞ୍ଚଳ : ୩୯,୧୧୬ ବର୍ଗ କି.ମି

ଜିଲ୍ଲା (ଓଡ଼ିଶା)

ସୁନ୍ଦରଗଡ଼ : ୫୭୯୪ ବର୍ଗ କି.ମି

ସମ୍ବଲପୁର : ୧୩୭୧ ବର୍ଗ କି.ମି

ଅନୁଗୁଳ : ୪୨୨୬ ବର୍ଗ କି.ମି

ଢେଙ୍କାନାଳ : ୩୯୫୭ ବର୍ଗ କି.ମି

ଦେବଗଡ଼ : ୨୫୧୨ ବର୍ଗ କି.ମି

କେନ୍ଦୁଝର : ୧୭୨୩ ବର୍ଗ କି.ମି

ଯାଜପୁର : ୧୮୨୫ ବର୍ଗ କି.ମି

କେନ୍ଦ୍ରାପଡ଼ା : ୧୧୦୭ ବର୍ଗ କି.ମି

**ବ୍ରାହ୍ମଣୀ ନଦୀର ଦୈର୍ଘ୍ୟ : ୭୯୯ କି.ମି**


ବ୍ରାହ୍ମଣୀ: ଢେଙ୍କାନାଳ ଜିଲ୍ଲା ସରାଙ୍ଗ ନିକଟରେ

ବ୍ରାହ୍ମଣୀ ହେଉଛି ଓଡ଼ିଶାର ଦ୍ୱିତୀୟ ଦୀର୍ଘତମ ନଦୀ । ଝାଡ଼ଖଣ୍ଡ ଓ ଛତିଶଗଡ଼ ସୀମାନ୍ତ ଛୋଟନାଗପୁର ମାଳଭୂମିରୁ ନିର୍ଗତ ହୋଇଥିବା ଶଙ୍ଖ ଏବଂ କୋଏଲ୍ ନଦୀଦ୍ୱୟ ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲା ରାଉରକେଲାର ବେଦବ୍ୟାସ ନିକଟରେ ମିଳିତ ହେବା ପରେ ବ୍ରାହ୍ମଣୀ ନଦୀ ସୃଷ୍ଟି ହୋଇଛି । ଏହାପରେ ବ୍ରାହ୍ମଣୀ ନଦୀ ସୁନ୍ଦରଗଡ଼, ଦେବଗଡ଼, ଅନୁଗୁଳ, ଢେଙ୍କାନାଳ, ଯାଜପୁର, କଟକ, କେନ୍ଦ୍ରାପଡ଼ା ଜିଲ୍ଲାର ସମତଳ ଭୂମିରେ ପ୍ରବାହିତ ହୋଇ କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆ ନିକଟରେ ବୈତରଣୀ ନଦୀ ସହିତ ମିଳିତ ହୋଇଛି । ଏହା ପରଠାରୁ ଉଭୟ ବୈତରଣୀ ଓ ବ୍ରାହ୍ମଣୀ ମିଳିତ

ଭାବେ କିଛିବାଟ ପ୍ରବାହିତ ହୋଇ ଶେଷରେ ଧାମରାଠାରେ ବଙ୍ଗୋପସାଗରେ ମିଶିଛନ୍ତି । କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାର ପୂର୍ବ ଦିଗରେ ବଙ୍ଗୋପସାଗର ନିକଟରେ (ଧାମରା) ଉଭୟ ବ୍ରାହ୍ମଣୀ ଓ ବୈତରଣୀ ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି କରିଛନ୍ତି । ବ୍ରାହ୍ମଣୀ ଓ ବୈତରଣୀର ଅବବାହିକା ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ଅବବାହିକା ଅଟେ ।

ମହାଭାରତ ପୁରାଣ ଅନୁଯାୟୀ, ପରାଶର ଋଷି ଧୀବର କନ୍ୟା ସତ୍ୟବତୀଙ୍କୁ **ଶଙ୍ଖ** ଓ କୋଏଲ୍ ନଦୀର ଏହି ମିଳନ ସ୍ଥଳ ବ୍ରାହ୍ମଣୀ ନଦୀରେ ପ୍ରେମ ଭିକ୍ଷା କରିଥିଲେ । ଏମାନଙ୍କ ଦୈହିକ ମିଳନ ଫଳରେ ପରାଶର ମୁନି ଏବଂ ସତ୍ୟବତୀ ମହାଭାରତର ରଚୟିତା ବ୍ୟାସଦେବଙ୍କୁ ଏହିଠାରେ ଜନ୍ମ ଦେଇଥିଲେ । ଏହି କାରଣରୁ **ଶଙ୍ଖ** ଓ କୋଏଲ୍ ନଦୀର ମିଳନ ସ୍ଥଳଟି 'ବେଦବ୍ୟାସ' ନାମରେ ପରିଚିତ ହୋଇଛି । ଦେବଗଡ଼ ଜିଲ୍ଲାର ରେଙ୍ଗାଲି ନିକଟରେ ବ୍ରାହ୍ମଣୀ ନଦୀରେ ଏକ ବଡ଼ ଜଳଭଣ୍ଡାର ନିର୍ମାଣ କରାଯାଇଛି । ଢେଙ୍କାନାଳ ଜିଲ୍ଲାରେ ବ୍ରାହ୍ମଣୀ ନଦୀଟି ଦୁଇଟି ଶାଖାରେ ବିଭକ୍ତ ହୋଇ ମୁଖ୍ୟ ଶାଖାଟି ଯାଜପୁର ଜିଲ୍ଲା ଦେଇ ପ୍ରବାହିତ ହୋଇଛି ଏବଂ ଅନ୍ୟ ଶାଖାଟି **'କିଂଭିରିଆ'** ନାମରେ ପରିଚିତ ହୋଇ ସମାନ୍ତରାଳ ଭାବେ ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ପ୍ରବାହିତ ହୋଇଛି । କିଂଭିରିଆ ସହିତ ମହାନଦୀର ଶାଖା ନଦୀ ବିରୁପା କେନ୍ଦ୍ରାପଡ଼ା ଜିଲ୍ଲାର ଇନ୍ଦୁପୁରଠାରେ ମିଳିତ ହୋଇଛି । ବ୍ରାହ୍ମଣୀ ଏହାର ୪୫ଟି ଉପନଦୀମାନଙ୍କ ଜଳ ଦ୍ୱାରା ପୁଷ୍ଟ ହୋଇଛି । ବ୍ରାହ୍ମଣୀର ପ୍ରମୁଖ ଉପନଦୀଗୁଡିକ ହେଲେ-

୧· ଶଙ୍ଖ

୨· କୋଏଲ୍

୩· ଚନ୍ଦ୍ରି ନଳା

୪· କଟାଙ୍ଗାମୁଣ୍ଡା

୫· ରୁକୁର

୬· ବଡ଼ଜୋର

୭· କୌନିଶ ନଳା

୮· ଉସ୍କାଳି ନଳା

୯· ଚୁଡ଼ାଖାଇ

୧୦· ନିଗିରା

୧୧· ଗୋହିରା

୧୨· ଚିଳନ୍ତି

୧୩· ଟିକିରା
୧୪· ସିଙ୍ଗଡ଼ାଜୋର
୧୫· ବଙ୍କାରୁ
୧୬· ନନ୍ଦିରା ନଳା
୧୭· ବାଘସିଂହ ନଳା
୧୮· ବାହ୍ମି
୧୯· ଦୌନ୍‌ରି
୨୦· କୁମାରିଆ
୨୧· କେଳୁଆ
୨୨· ବିରୂପା
୨୩· ହଂସୁଆ
୨୪· ଖରସ୍ରୋତା
୨୫· ପାଟଶାଳା
୨୬· ଚଂପାଲି ଜୋରି
୨୭· କୁରାଡ଼ିହି
୨୮· ଅମୃଦି
୨୯· କୋରାପାଣି
୩୦· ମାଙ୍କଡ଼ା
୩୧· ଅମ୍ବାହାରି
୩୨· ସମାକୋଇ
୩୩· ଗଂଭିରିଆ
୩୪· ରାଇଜୋରି
୩୫· ଇନ୍ଦ୍ରଜିତ୍
୩୬· ରାମିଆଳ
୩୭· ପାଣ୍ଡରା
୩୮· ଦଉଡ଼ି
୩୯· ହଂସିଣା

## କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ବ୍ରାହ୍ମଣୀ ନଦୀର ଉପନଦୀ

ବ୍ରାହ୍ମଣୀ ନଦୀ କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ନ ହେଲେ ବି କେନ୍ଦୁଝର ଜିଲ୍ଲାର କିଛି ଅଂଶ ବ୍ରାହ୍ମଣୀ ନଦୀ ଅବବାହିକା ଅଞ୍ଚଳର ଅନ୍ତର୍ଭୁକ୍ତ । ବ୍ରାହ୍ମଣୀର ଅନେକ ପ୍ରମୁଖ ଉପନଦୀମାନ କେନ୍ଦୁଝର ଜିଲ୍ଲାରୁ ବାହାରି କେନ୍ଦୁଝର ଜିଲ୍ଲା ଦେଇ ପ୍ରବାହିତ ହୋଇ ଶେଷରେ ବ୍ରାହ୍ମଣୀ ନଦୀରେ ପଡିଛନ୍ତି । କେନ୍ଦୁଝର ଜିଲ୍ଲାରେ ପ୍ରବାହିତ କାରୋ, ମକାର, ସମାକୋଇ, ରାମିଆଳ ଆଦି ନଦୀଗୁଡିକ ବ୍ରାହ୍ମଣୀର ପ୍ରମୁଖ ଉପନଦୀ ଭାବେ ଜଣା ।

## ୩. ବୈତରଣୀ *(The Baitaranee)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ: ଓଡ଼ିଶା, ଝାଡ଼ଖଣ୍ଡ

ଓଡ଼ିଶା : ୧୩,୪୮୨ ବର୍ଗ କି.ମି

ଝାଡ଼ଖଣ୍ଡ : ୭୩୬ ବର୍ଗ କି.ମି

ମୋଟ ଅବବାହିକା ଅଞ୍ଚଳ : ୧୪,୨୧୮ ବର୍ଗ କି.ମି

ଜିଲ୍ଲା (ଓଡ଼ିଶା) :

ବାଲେଶ୍ୱର : ୪୨ ବର୍ଗ କି.ମି

ଭଦ୍ରକ : ୨୧୯୮ ବର୍ଗ କି.ମି

ଯାଜପୁର : ୧୦୦୬ ବର୍ଗ କି.ମି

କେନ୍ଦ୍ରାପଡ଼ା : ୨୭୪ ବର୍ଗ କି.ମି

ଅନୁଗୁଳ : ୩୧ ବର୍ଗ କି.ମି

କେନ୍ଦୁଝର : ୬୮୨୪ ବର୍ଗ କି.ମି

ମୟୁରଭଞ୍ଜ : ୨୯୨୬ ବର୍ଗ କି.ମି

ସୁନ୍ଦରଗଡ଼ : ୧୮୧ ବର୍ଗ କି.ମି

**ବୈତରଣୀ ନଦୀର ଦୈର୍ଘ୍ୟ : ୩୬୫ କି.ମି**

ବୈତରଣୀ ନଦୀଟି ଓଡ଼ିଶାର ଏକ ଶୁଦ୍ଧ ପବିତ୍ର ନଦୀ ଭାବେ ପରିଚିତ । ଏହାକୁ ଓଡ଼ିଶାର ଗଙ୍ଗା ବୋଲି କୁହାଯାଇଥାଏ । 'ବୈତରଣୀ'କୁ ନେଇ ଏ ପୁସ୍ତକର ପରିକଳ୍ପନା । ଏଣୁ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ବୈତରଣୀ ନଦୀ ସଂପର୍କରେ ବିସ୍ତୃତ ଆଲୋଚନା କରାଯିବ । ଏଠାରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

୪. ସୁବର୍ଣ୍ଣରେଖା *(The Subarnarekha)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ: ଓଡ଼ିଶା, ଝାଡ଼ଖଣ୍ଡ, ପଶ୍ଚିମବଙ୍ଗ

ଓଡ଼ିଶା : ୨,୯୮୩ ବର୍ଗ କି.ମି

ଝାଡ଼ଖଣ୍ଡ : ୧୩,୨୨୨ ବର୍ଗ କି.ମି

ପଶ୍ଚିମବଙ୍ଗ : ୩,୦୨୨ ବର୍ଗ କି.ମି

ମୋଟ ଅବବାହିକା ଅଞ୍ଚଳ : ୧୯,୨୭୭ ବର୍ଗ କି.ମି

ଜିଲ୍ଲା (ଓଡ଼ିଶା) : ମୟୁରଭଞ୍ଜ, ବାଲେଶ୍ୱର

ମୟୁରଭଞ୍ଜ : ୨,୧୯୯ ବର୍ଗ କି.ମି

ବାଲେଶ୍ୱର : ୭୮୪ ବର୍ଗ କି.ମି

ନଦୀର ଦୈର୍ଘ୍ୟ : ୪୪୬ କି.ମି, ଓଡ଼ିଶାରେ ୭୯ କି.ମି.



ସୁବର୍ଣ୍ଣରେଖା: ଝାଡ଼ଖଣ୍ଡର ଜାମ୍‌ସେଦପୁର ନିକଟରେ

ସୁବର୍ଣ୍ଣରେଖା ନଦୀଟି ଝାଡ଼ଖଣ୍ଡର ଛୋଟନାଗପୁର ମାଳଭୂମିରୁ ଉତ୍ପତ୍ତିଲାଭ କରି ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ବଙ୍ଗୋପସାଗରେ ପଡ଼ିଛି । ଝାଡ଼ଖଣ୍ଡର ରାଜଧାନୀ ରାଞ୍ଚି ନିକଟସ୍ଥ ଏକ ଗାଁ ପିସ୍କା (ନାଗ୍ରି)ରୁ ସୁବର୍ଣ୍ଣରେଖା ବାହାରି ମୋଟ ୪୪୬ କିଲୋମିଟର ପଥ ଅତିକ୍ରମ କରିବା ପରେ ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ତଳସାରିଠାରେ ବଙ୍ଗୋପସାଗରରେ ମିଳିତ ହୋଇଛି । ସୁବର୍ଣ୍ଣରେଖାର ଏହି ତଳସାରି ସମୁଦ୍ର ମୁହାଁଣଟି ଓଡ଼ିଶାର ଏକ ପ୍ରମୁଖ ପର୍ଯ୍ୟଟନ ସ୍ଥଳର ମାନ୍ୟତା ଅର୍ଜନ କରିପାରିଛି । ଝାଡ଼ଖଣ୍ଡର ରାଞ୍ଚି, ସରେଇକଲା-ଖରସୁଆଁ, ପୂର୍ବ ସିଂହଭୂମି ଜିଲ୍ଲା, ପଶ୍ଚିମବଙ୍ଗର ପଶ୍ଚିମ ମେଦିନିପୁର ଜିଲ୍ଲା ଏବଂ ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଦେଇ ସୁବର୍ଣ୍ଣରେଖା ନଦୀ ପ୍ରବାହିତ ହୋଇଛି ।

'ସୁବର୍ଣ୍ଣରେଖା'ର ନାମକୁ ନେଇ ଏକ କାହାଣୀ ରହିଛି । 'ସୁବର୍ଣ୍ଣରେଖା'ର ଅର୍ଥକୁ ବିଶ୍ଲେଷଣ କଲେ ଏହା 'ସୁନାର ଏକ ଦୀର୍ଘ ରେଖା' *(streak of gold)* ଭଳି ପ୍ରତୀୟମାନ ହୋଇଥାଏ । ଅର୍ଥାତ୍ ରାଞ୍ଚି ନିକଟସ୍ଥ ପିସ୍କା ଗାଁରୁ ଯେତେବେଳେ ସୁବର୍ଣ୍ଣରେଖା ଉତ୍ପତ୍ତିଲାଭ କଲା, ସେତେବେଳେ ଏହି ନଦୀର କୂଳେକୂଳେ ସୁନା କଣିକାର ଧାରମାନ ଦୃଶ୍ୟମାନ ହେଉଥିଲା । ଏଥିପାଇଁ ଏହି ନଦୀର ନାମ ସୁବର୍ଣ୍ଣରେଖା ଦିଆଯାଇଛି ବୋଲି ସ୍ଥାନୀୟ ଅଞ୍ଚଳରେ କଥିତ ଅଛି ।



ସୁବର୍ଣ୍ଣରେଖା : ବାଲେଶ୍ୱରର କୀର୍ତ୍ତନିଆ ମୁହାଁଣ

ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ବ୍ଲକ୍‌ର ସୁବର୍ଣ୍ଣରେଖା ମୁହାଁଣରେ ପ୍ରସିଦ୍ଧ **'କିର୍ତ୍ତନିଆ ବନ୍ଦର'** ରହିଛି । ଏହି ବନ୍ଦରର ବିକାଶ ପାଇଁ ରାଜ୍ୟ ସରକାର ତତ୍ପରତା ପ୍ରକାଶ କରିଛନ୍ତି । ରାଞ୍ଚି, ଜାମସେଦପୁର, ଗୋପୀବଲ୍ଲଭପୁର, ଚାଣ୍ଡିଲି, ଘାଟଶିଳା, ଜଳେଶ୍ୱର, ତଳସାରି ପ୍ରମୁଖ ସହର ସୁବର୍ଣ୍ଣରେଖା ନଦୀ କୂଳରେ ଅବସ୍ଥିତ । ଝାଡ଼ଖଣ୍ଡର ଷଡ଼େଇକଳା-ଖରସୁଆଁ ଜିଲ୍ଲାରେ ଅବସ୍ଥିତ ଚାଣ୍ଡିଲିଠାରେ ସୁବର୍ଣ୍ଣରେଖାରେ ଏକ ବୃହତ୍ ଜଳଭଣ୍ଡାର ନିର୍ମାଣ କରାଯାଇଛି । ସୁବର୍ଣ୍ଣରେଖାର ପ୍ରମୁଖ ଉପନଦୀଗୁଡ଼ିକ ହେଲେ-

୧· ରରୁ
୨· କାଞ୍ଚି
୩· ଦାମ୍ରା
୪· କରୁ
୫· ଖରଖାଇ
୬· ଚିଙ୍ଗୁରୁ
୭· କରାକାରି
୮· ଗୁରୁମା
୯· ଗରା
୧୦· ସିଙ୍ଗ୍‌ଡୋଭ୍
୧୧· କୋଡ଼ିଆ
୧୨· ଦୁଲୁଙ୍ଗା
୧୩· ଖଜୁରୀ

**୫. ବୁଢାବଳଙ୍ଗ *(The Budhabalanga)***

**ବୁଢାବଳଙ୍ଗ ଓ ଜଂଭିରା ନଦୀ ଅବବାହିକା ଅଞ୍ଚଳ**
**ଦେଶ: ଭାରତ**
**ରାଜ୍ୟ: ଓଡ଼ିଶା, ପଶ୍ଚିମବଙ୍ଗ**
**ଓଡ଼ିଶା : ୬,୩୫୪ ବର୍ଗ କି.ମି**
**ପଶ୍ଚିମବଙ୍ଗ : ୩୩୭ ବର୍ଗ କି.ମି**
**ମୋଟ ଅବବାହିକା ଅଞ୍ଚଳ : ୬୬୯୧ ବର୍ଗ କି.ମି**
**ଜିଲ୍ଲା (ଓଡ଼ିଶା) : ମୟୁରଭଞ୍ଜ, ବାଲେଶ୍ୱର**

**ନଦୀଦ୍ୱୟର ଦୈର୍ଘ୍ୟ : ୨୮୯ କି.ମି**

**ବୁଢାବଳଙ୍ଗର ଦୈର୍ଘ୍ୟ : ୧୯୯ କି.ମି**

**ଜଂଭିରାର ଦୈର୍ଘ୍ୟ : ୯୦ କି.ମି**



**ବୁଢାବଳଙ୍ଗ ବାଲେଶ୍ୱର**

ବୁଢାବଳଙ୍ଗ ନଦୀଟି ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରି ମୟୂରଭଞ୍ଜ, ବାଲେଶ୍ୱର ଜିଲ୍ଲା ଦେଇ ମୋଟ ୧୯୯ କିଲୋମିଟର ପଥ ଅତିକ୍ରମ କରିବା ପରେ ବାଲେଶ୍ୱର ଜିଲ୍ଲାର ବଳରାମଗଡ଼ି ମୁହାଁଣରେ ବଙ୍ଗୋପସାଗରରେ ମିଳିତ ହୋଇଛି । ଶିମିଳିପାଳର ପ୍ରସିଦ୍ଧ ବରେହିପାଣି ଜଳପ୍ରପାତ ବୁଢାବଳଙ୍ଗ ନଦୀ ଦ୍ୱାରା ସୃଷ୍ଟି ହୋଇଛି । ବୁଢାବଳଙ୍ଗ ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳରୁ ବାହାରି ଯଶୀପୁର, ବାଙ୍ଗିରିପୋଷି, ବାରିପଦା ଦେଇ ବାଲେଶ୍ୱର ଜିଲ୍ଲାରେ ପ୍ରବାହିତ ହୋଇଛି । ଏହାର ପ୍ରମୁଖ ଉପନଦୀମାନେ ହେଲେ- ୧· ପାଲାପାଲା

୨· ସୁନେଇ

୩· କାଳୋ

୪· ସଞ୍ଜ

୫· ଦେଓ

୬· ଗଙ୍ଗାହାରି

୭· କାତ୍ରା

## ୬. ଜଂଭିରା *(Jambhira)*

**ବୁଢାବଳଙ୍ଗ ଓ ଜଂଭିରା ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ପଶ୍ଚିମବଙ୍ଗ**

**ଓଡ଼ିଶା : ୬,୩୫୪ ବର୍ଗ କି.ମି**

**ପଶ୍ଚିମବଙ୍ଗ : ୩୩୭ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୬୬୯୧ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) : ମୟୁରଭଞ୍ଜ, ବାଲେଶ୍ୱର**

**ନଦୀଦ୍ୱୟର ଦୈର୍ଘ୍ୟ : ୨୮୯ କି.ମି**

**ବୁଢାବଳଙ୍ଗର ଦୈର୍ଘ୍ୟ : ୧୯୯ କି.ମି**

**ଜଂଭିରାର ଦୈର୍ଘ୍ୟ : ୯୦ କି.ମି**

ଜଂଭିରା ନଦୀଟି ମୟୁରଭଞ୍ଜ ଜିଲ୍ଲାର ଚନ୍ଦ୍ର ସଂରକ୍ଷିତ ଜଙ୍ଗଲରୁ ଉତ୍ପତ୍ତିଲାଭ କରି ମୋଟ ୯୦ କିଲୋମିଟର ପଥ ଅତିକ୍ରମ କରି ବାଲେଶ୍ୱର ଜିଲ୍ଲାର ବଙ୍ଗୋପସାଗରେ ପଡିଛି । ଜଂଭିରା ନଦୀଟି ତଳମୁଣ୍ଡ ବାଲେଶ୍ୱରରେ ଜଳକା ନଦୀ ନାମରେ ପରିଚିତ ହୋଇଛି । ଜଂଭିରାର ପ୍ରମୁଖ ଉପନଦୀଗୁଡିକ ହେଲେ-

୧· ମହାନ୍ତି

୨· ଗୁଲ୍‌ଫା

୩· ଘୁରୁଦି

୪· ମୁରଲୀ

୫· ସାନ୍

୬· ବାଂଶ

୭· ହଂସକାରା

## ୭. ଋଷିକୁଲ୍ୟା *(The Rushikulya)*

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା**

ମୋଟ ଅବବାହିକା ଅଞ୍ଚଳ : ୮.୯୬୩ ବର୍ଗ କି.ମି

ଜିଲ୍ଲା :

ଗଞ୍ଜାମ : ୭.୩୬୬ ବର୍ଗ କି.ମି

ଖୋର୍ଦ୍ଧା : ୫୬ ବର୍ଗ କି.ମି

ଗଜପତି : ୩୯୮ ବର୍ଗ କି.ମି

କନ୍ଧମାଳ : ୮୦୦ ବର୍ଗ କି.ମି

ନୟାଗଡ଼ : ୩୪୩ ବର୍ଗ କି.ମି

ନଦୀର ଦୈର୍ଘ୍ୟ : ୧୬୫ କି.ମି



ଋଷିକୁଲ୍ୟା : ଗଞ୍ଜାମ ଜିଲ୍ଲାର ଛତ୍ରପୁର ମୁହାଁଣ

ଋଷିକୁଲ୍ୟା ନଦୀଟି କନ୍ଧମାଳ ଜିଲ୍ଲାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ଋଷ୍ୟମାଳା ଗିରିଶୃଙ୍ଗରୁ ନିର୍ଗତ ହୋଇ ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇଛି । ଏହା ଗଞ୍ଜାମ ଜିଲ୍ଲାର ଛତ୍ରପୁର ନିକଟରେ ବଙ୍ଗୋପସାଗରରେ ମିଳିତ ହୋଇଛି । ଋଷିକୁଲ୍ୟା କନ୍ଧମାଳ ଜିଲ୍ଲାର ଦାରିଂବାଡ଼ି ବ୍ଲକ୍‌ରୁ ବାହାରି ଗଞ୍ଜାମ ଜିଲ୍ଲାର ସୋରଡ଼ା, ଧରାକୋଟ, ଆସିକା, ଶେରଗଡ଼, ପୁରୁଷୋତ୍ତମପୁର, ହିଞ୍ଜିଳିକାଟୁ, ଗଞ୍ଜାମ ପ୍ରମୁଖ ବ୍ଲକ୍ ଦେଇ ମୋଟ ୧୬୫ କିଲୋମିଟର ପଥ ଅତିକ୍ରମ କରିବା ପରେ ଛତ୍ରପୁରଠାରେ ବଙ୍ଗୋପସାଗରରେ ମିଶିଛି । ଋଷିକୁଲ୍ୟା ମୁହାଁଣଟି ବିଶ୍ୱର ବିରଳ ଅଲିଭ୍ ରିଡ୍‌ଲେ କଇଁଛଙ୍କ ଅନ୍ୟତମ ଆଶ୍ରୟସ୍ଥଳ ଓ ଅଣ୍ଡାଦେବା ସ୍ଥାନ ଭାବେ ବେଶ୍ ଜଣାଶୁଣା । ଓଡ଼ିଶାର ପ୍ରସିଦ୍ଧ ଦେବୀ ପୀଠ ତାରାତାରିଣୀ ଋଷିକୁଲ୍ୟା ନଦୀ କୂଳରେ ଅବସ୍ଥିତ । ଋଷିକୁଲ୍ୟା ନଦୀର ପ୍ରମୁଖ ଉପନଦୀଗୁଡିକ

ହେଲେ-

୧· ପଦ୍ମା
୨· ବୋରିଙ୍ଗାନଳା
୩· ଜୋର
୪· ବଡ଼ନଦୀ
୫· ବାଘୁଆ
୬· ଧନେଇ
୭· ଘୋଧାଦୋ

## ୮. ବାହୁଡ଼ା (*The Bahuda*)

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ଆନ୍ଧ୍ର ପ୍ରଦେଶ**

**ଓଡ଼ିଶା : ୮୯୦ ବର୍ଗ କି.ମି**

**ଆନ୍ଧ୍ର ପ୍ରଦେଶ : ୨୨୮ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୧,୧୧୮ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) : ଗଞ୍ଜାମ, ଗଜପତି**

**ଗଞ୍ଜାମ : ୭୮୬ ବର୍ଗ କି.ମି**

**ଗଜପତି : ୧୦୪ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୯୬ କି.ମି**

ବାହୁଡ଼ା ନଦୀଟି ଗଜପତି ଜିଲ୍ଲାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ଲୁବା ଗାଁ ନିକଟସ୍ଥ ସିଂହରାଜ ଗିରିଶୃଙ୍ଗରୁ ନିର୍ଗତ ହୋଇଛି । ଏହି ନଦୀଟି ଗଜପତି ଓ ଗଞ୍ଜାମ ଜିଲ୍ଲାର ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହୋଇ ଆନ୍ଧ୍ରକୁ ଛୁଇଁଛି । ଆନ୍ଧ୍ରପ୍ରଦେଶରେ କିଛିବାଟ ପ୍ରବାହିତ ହେବାପରେ ପୁନର୍ବାର ଏହା ଓଡ଼ିଶାକୁ ପ୍ରବେଶ କରି ଗଞ୍ଜାମ ଜିଲ୍ଲାର ସୁନାପୁରପେଟା ନିକଟରେ ବଙ୍ଗୋପସାଗରେ ପଡିଛି । ଏହି ନଦୀଟି ମୋଟ ୯୬ କିଲୋମିଟର ପଥ ଅତିକ୍ରମ କରିଛି । ବାହୁଡ଼ାର ପ୍ରମୁଖ ଉପନଦୀଗୁଡିକ ହେଲେ-

୧· ପୈଚାଣ୍ଡିଆ
୨· ବଗିରିଆଡି

୩· ବାତୁଦା ନଳା

୪· କଣ୍ଟାଜୁରା ନଳା

## ୯. ବଂଶଧାରା (*The Vansadhara*)

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ଆନ୍ଧ୍ର ପ୍ରଦେଶ**

**ଓଡ଼ିଶା : ୮୯୬୦ ବର୍ଗ କି.ମି**

**ଆନ୍ଧ୍ର ପ୍ରଦେଶ : ୨୪୧୭ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୧୧,୩୩୭ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) : ଗଜପତି, ରାୟଗଡା, କଳାହାଣ୍ଡି, କନ୍ଧମାଳ**

**ନଦୀର ଦୈର୍ଘ୍ୟ : ୨୩୯ କି.ମି**



**ବଂଶଧାରା ନଦୀ : ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍**

ବଂଶଧାରା ନଦୀଟି କଳାହାଣ୍ଡି ଜିଲ୍ଲାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ଦୁର୍ଗାକଙ୍ଗର (ଲିଙ୍ଗରାଜ) ଗିରିଶୃଙ୍ଗରୁ ନିର୍ଗତ ହୋଇ ମୋଟ ୨୩୯ କିଲୋମିଟର ପଥ ଅତିକ୍ରମ କରି ଆନ୍ଧ୍ରପ୍ରଦେଶରେ ବଙ୍ଗୋପସାଗରରେ ମିଶିଛି । ବଂଶଧାରା ନଦୀ କଳାହାଣ୍ଡି ଜିଲ୍ଲାର ଥୁଆମୁଳରାମପୁରରୁ ବାହାରି ରାୟଗଡ଼ା ଜିଲ୍ଲାର କଲ୍ୟାଣସିଂହପୁର, ଜେ·କେ·ପୁର ସହର ଦେଇ ଆନ୍ଧ୍ରପ୍ରଦେଶର ପାର୍ବତୀପୁରମ୍,

ଶ୍ରୀକାକୁଳମ୍ ଜିଲ୍ଲାରେ ପ୍ରବାହିତ ହୋଇ ଶେଷରେ କଳିଙ୍ଗପତ୍ତନମ୍ ସମୁଦ୍ର ମୁହାଣ ନିକଟରେ ବଙ୍ଗୋପସାଗରରେ ମିଳିତ ହୋଇଛି । ଅତୀତରେ କଳିଙ୍ଗପତ୍ତନମ୍ ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ପରଂପରାର ଏକ ପ୍ରମୁଖ କେନ୍ଦ୍ରସ୍ଥଳ ଥିଲା ।

ବଂଶଧାରା ନଦୀ ମାଧ୍ୟମରେ ଓଡ଼ିଶାର ସାଧବମାନେ ବଙ୍ଗୋପସାଗର ଦେଇ ବାଣିଜ୍ୟ କାରବାର କରୁଥିଲେ । ପ୍ରସିଦ୍ଧ ମୁଖଲିଙ୍ଗମ୍ ଓ ପ୍ରାଚୀନ ନଦୀ ବନ୍ଦର କଳିଙ୍ଗପତ୍ତନମ୍ ବଂଶଧାରା ନଦୀ କୂଳ (ଶ୍ରୀକାକୁଳମ୍ ଜିଲ୍ଲା)ରେ ଅବସ୍ଥିତ । ବଂଶଧାରା ନଦୀଟି ('ବାଂଶ' ଅର୍ଥ 'ବାଉଁଶ', 'ଧାରା' ଅର୍ଥ 'ପ୍ରବାହ') କଳାହାଣ୍ଡି ଜିଲ୍ଲାରେ ଅବସ୍ଥିତ ଘଞ୍ଚ ବାଉଁଶ ଜଙ୍ଗଲ ଦେଇ ପ୍ରବାହିତ ହୋଇଥିବାରୁ ('ବାଉଁଶଧାରା' ବା 'ବାଂଶଧାରା') ଏଭଳି ନାମକରଣ ସଂଭବ ହୋଇଛି । ଗଜପତି ଜିଲ୍ଲାର ମହେନ୍ଦ୍ରଗିରିରୁ ଉତ୍ପତ୍ତିଲାଭ କରିଥିବା **ମହେନ୍ଦ୍ର ତନୟା** ବଂଶଧାରାର ଏକ ପ୍ରମୁଖ ଉପନଦୀ । ଏହା ଗଜପତି ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଆନ୍ଧ୍ରପ୍ରଦେଶରେ ବଂଶଧାରା ସହିତ ମିଳିତ ହୋଇଛି । ବଂଶଧାରା ନଦୀର ପ୍ରମୁଖ ଉପନଦୀଗୁଡିକ ହେଲେ-

୧. ମହେନ୍ଦ୍ରତନୟା

୨. ଭାଞ୍ଜି

୩. ପେଡ଼ାଗେଡ଼ା

୪. ବଡ଼ନାଳ

୫. ଚାଉଳଧୁଆ

୬. ପାଣ୍ଡକା ନଳା

୭. ବଡ଼ଝାର

୮. ହରଭଙ୍ଗୀ

୯. ସାନନଦୀ

## ୧୦. ନାଗାବଳୀ *(The Nagabali)*

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ଆନ୍ଧ୍ର ପ୍ରଦେଶ**

**ଓଡ଼ିଶା : ୪୫୦୦ ବର୍ଗ କି.ମି**

**ଆନ୍ଧ୍ର ପ୍ରଦେଶ : ୪୭୭୫ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୯୨୭୫ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) : କୋରାପୁଟ, କଳାହାଣ୍ଡି**

**କୋରାପୁଟ : ୪୦୦୫ ବର୍ଗ କି.ମି**

**କଳାହାଣ୍ଡି : ୪୯୫ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୨୧୭ କି.ମି**



**ନାଗାବଳୀ: ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍**

ନାଗାବଳୀ ନଦୀଟି କଳାହାଣ୍ଡି ଜିଲ୍ଲାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ଲାଖାବାହାଲ୍ ଗାଁ ନିକଟସ୍ଥ ବିଜିପୁର ଗିରିଶୃଙ୍ଗରୁ ନିର୍ଗତ ହୋଇ ଓଡ଼ିଶାର କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼, ବିଶ୍ୱନାଥପୁର ଏବଂ ରାୟଗଡ଼ା ଜିଲ୍ଲାର କଲ୍ୟାଣସିଂହପୁର, ଶିଖରପାଇ, ରାୟଗଡ଼ା ସହର ଦେଇ ପ୍ରବାହିତ ହେବା ପରେ ଆନ୍ଧ୍ରପ୍ରଦେଶକୁ ଛୁଇଁଛି । ନାଗାବଳୀ ଆନ୍ଧ୍ର ପ୍ରଦେଶର ପାର୍ବତୀପୁରମ୍ ଓ ଶ୍ରୀକାକୁଲମ୍ ଜିଲ୍ଲା ଦେଇ ପ୍ରବାହିତ ହୋଇ କଳିଙ୍ଗପତ୍ତନମ୍ ନିକଟରେ ବଙ୍ଗୋପସାଗରରେ ମିଶିଛି । ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ସହରଟିର ଉଭୟ ପାର୍ଶ୍ୱରେ ବଂଶଧାରା ଓ ନାଗାବଳୀ ନଦୀ ପ୍ରବାହିତ ହୋଇ କଳିଙ୍ଗପତ୍ତନମ୍‌ଠାରେ ବଙ୍ଗୋପସାଗରରେ ମିଶିଛନ୍ତି । ନାଗାବଳୀ ନଦୀଟିର ମୋଟ ଦୈର୍ଘ୍ୟ ୨୧୭ କିଲୋମିଟର । ଏହା ମଧ୍ୟରୁ ୧୨୫ କିଲୋମିଟର ଓଡ଼ିଶାର ହୋଇଥିବାବେଳେ ଅବଶିଷ୍ଟ

ପଥ ଆନ୍ଧ୍ର ପ୍ରଦେଶର । ରାୟଗଡ଼ା ସହର ଦେଇ ଯାଇଥିବା ନାଗାବଳୀ ନଦୀରେ ରାଜ୍ୟର ପ୍ରମୁଖ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ପର୍ଯ୍ୟଟନସ୍ଥଳ 'ହାତୀପଥର' ଅବସ୍ଥିତ । ନାଗାବଳୀ ନଦୀର ପ୍ରମୁଖ ଉପନଦୀଗୁଡ଼ିକ ହେଲେ-

୧· ପିତାଦର ନଳା

୨· ଦଣ୍ଡେଇବନ୍ଧା ନଳା

୩· ସାନ ନଦୀ

୪· ବାର୍ହା

୫· ବଳଦିଆ ନଦୀ

୬· ସାତ ନଳା

୭· ସୀତାଗୁଡା ନଳା

୮· ଘୋଡା ନଳା

୯· ସୀତାଘେରା ନଳା

୧୦· ସ୍ରିଙ୍ଗୋନା ନଦୀ

୧୧· ବଣମାର୍ହା ନଦୀ

୧୨· ଇରେଇଗେଡ଼ା ନଳା

୧୩· ଝଞ୍ଜାବତୀ ନଦୀ

## ୧୧. ଇନ୍ଦ୍ରାବତୀ *(The Indravati)*

**ନଦୀ ଅବବାହିକା ଅଞ୍ଚଳ**

ଦେଶ: ଭାରତ

ରାଜ୍ୟ: ଓଡ଼ିଶା, ଆନ୍ଧ୍ର ପ୍ରଦେଶ

ଓଡ଼ିଶା : ୭,୪୦୦ ବର୍ଗ କି.ମି

ଆନ୍ଧ୍ର ପ୍ରଦେଶ : ୩୪,୩୦୦ ବର୍ଗ କି.ମି

ମୋଟ ଅବବାହିକା ଅଞ୍ଚଳ : ୪୧,୭୦୦ ବର୍ଗ କି.ମି

ଜିଲ୍ଲା (ଓଡ଼ିଶା) : କୋରାପୁଟ, କଳାହାଣ୍ଡି, ରାୟଗଡ଼ା, ନବରଙ୍ଗପୁର

କୋରାପୁଟ : ୨୩୧୦ ବର୍ଗ କି.ମି

କଳାହାଣ୍ଡି : ୭୩୭ ବର୍ଗ କି.ମି

ରାୟଗଡ଼ା : ୧୦୪୩ ବର୍ଗ କି.ମି.

**ନବରଙ୍ଗପୁର : ୩୩୧୦ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୫୩୫ କି.ମି**

ଇନ୍ଦ୍ରାବତୀ ହେଉଛି ଗୋଦାବରୀ ନଦୀର ଏକ ପ୍ରମୁଖ ଉପନଦୀ । ଏହା ପୂର୍ବଘାଟ ପର୍ବତମାଳାସ୍ଥ ଦଣ୍ଡକାରଣ୍ୟ ଅନ୍ତର୍ଗତ ଓଡ଼ିଶାର କଳାହାଣ୍ଡି ଜିଲ୍ଲାର ଥୁଆମୂଳରାମପୁରରୁ ଉତ୍ପତ୍ତିଲାଭ କରିଛି । ଇନ୍ଦ୍ରାବତୀ ଓଡ଼ିଶାର କଳାହାଣ୍ଡି, ନବରଙ୍ଗପୁର, କୋରାପୁଟ ଏବଂ ଛତିଶଗଡ଼ର ଜଗଦଲପୁର, ବସ୍ତର ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଛତିଶଗଡ଼, ଆନ୍ଧ୍ରପ୍ରଦେଶ ଓ ମହାରାଷ୍ଟ୍ରର ସୀମାବର୍ତ୍ତୀ ଇଲାକାରେ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । ଏହି ନଦୀଟିର ଦୈର୍ଘ୍ୟ **୫୩୫** କିଲୋମିଟର । ଛତିଶଗଡ଼ର ବିଜାପୁର ଜିଲ୍ଲା ଅନ୍ତର୍ଗତ ଭଦ୍ରକାଳି ଗ୍ରାମ ନିକଟରେ ଇନ୍ଦ୍ରାବତୀ ନଦୀ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । ତେବେ ଇନ୍ଦ୍ରାବତୀ ନଦୀର ପ୍ରମୁଖ ଉପନଦୀମାନେ ହେଲେ-



ଇନ୍ଦ୍ରାବତୀ : ଛତିଶଗଡ଼ର ଜଗଦଲପୁର ଚିତ୍ରକୋଟ ପ୍ରପାତ

୧· ପୋଡ଼ାଗଡ଼

୨· କପୁର

୩· ମୁରାନ୍

୪· ଚବ୍ରୀ

୫· କେଶଧାରା
୬· କାଣ୍ଡବିନ୍ଧା
୭· ଚନ୍ଦ୍ରଗିରି
୮· ଗୋଲାଗାର
୯· ବନଗିରି
୧୦· ତେଲିଙ୍ଗିରି
୧୧· ଭାସ୍କେଲ୍
୧୨· ପାର୍ଲିଯୋରି
୧୩· ତୁରୀ
୧୪· ଗୁଣ୍ଟାଟ୍
୧୫· କୋରା
୧୬· ମୋଦାଙ୍ଗ
୧୭· ଦମୟନ୍ତୀ ସାୟର
୧୮· ନାରଙ୍ଗୀ
୧୯· ବୋର୍ତ୍ତି
୨୦· ନିବ୍ରା
୨୧· କୋଟ୍ରି
୨୨· ବାନ୍ଦିଆ
୨୩· ନନ୍ଦୀରାଜ

ଏହି ଉପନଦୀଗୁଡିକ ଉଭୟ ଓଡ଼ିଶାର କଳାହାଣ୍ଡି, କୋରାପୁଟ, ନବରଙ୍ଗପୁର ଏବଂ ଛତିଶଗଡ଼ର ବସ୍ତର ଜିଲ୍ଲାରୁ ବାହାରି ଇନ୍ଦ୍ରାବତୀ ସହିତ ମିଳିତ ହୋଇଛନ୍ତି । ଇନ୍ଦ୍ରାବତୀକୁ ଛତିଶଗଡ଼ର 'ଲାଇଫ୍ ଲାଇନ୍' ବୋଲି କୁହାଯାଇଥାଏ । ଜଗଦଲପୁର ଜିଲ୍ଲାରେ ଇନ୍ଦ୍ରାବତୀ ନଦୀରେ ଆକର୍ଷଣୀୟ ଚିତ୍ରକୋଟ ଜଳପ୍ରପାତ ରହିଛି । ନବରଙ୍ଗପୁର ଓ କଳାହାଣ୍ଡି ଜିଲ୍ଲା ସୀମାରେ ଅବସ୍ଥିତ ଖାତିଗୁଡାଠାରେ ଦେଶର ଏକ ପ୍ରମୁଖ ଜଳବିଦ୍ୟୁତ୍ ପ୍ରକଳ୍ପ ପ୍ରତିଷ୍ଠା କରାଯାଇଛି ।

## ୧୨. କୋଲାବ୍-ମାଛକୁଣ୍ଡ (ଶାବରୀ-ସିଲେରୁ)

## *(The Kolab-Machhakunda or Sabari-Sileru River)*

**ନଦୀ ଅବବାହିକା ଅଞ୍ଚଳ**

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ଆନ୍ଧ୍ର ପ୍ରଦେଶ**

**ଓଡ଼ିଶା : ୧୦,୩୦୦ ବର୍ଗ କି.ମି**

**ଆନ୍ଧ୍ର ପ୍ରଦେଶ : ୧୦.୧୨୭ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୨୦.୪୨୭ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) : କୋରାପୁଟ, ମାଲ୍କାନ୍‌ଗିରି**

**କୋରାପୁଟ : ୪୫୦୯ ବର୍ଗ କି.ମି**

**ମାଲ୍କାନଗିରି : ୫୭୯୧ ବର୍ଗ କି.ମି**

**ନଦୀର ଦୈର୍ଘ୍ୟ : ୨୦୦ କି.ମି**



**କୋଲାବ ଡ୍ୟାମ୍, କୋରାପୁଟ**

କୋଲାବ୍ ନଦୀର ଅନ୍ୟ ନାମ ଶାବରୀ ନଦୀ । ଏହି ନଦୀଟି ଗୋଦାବରୀ ନଦୀର ଏକ ପ୍ରମୁଖ ଉପନଦୀ । ସେହିଭଳି ସିଲେରୁ ନଦୀର ଅନ୍ୟ ନାମ ମାଛକୁଣ୍ଡ ନଦୀ । ଏହି ନଦୀ ଦୁଇଟି ଓଡ଼ିଶାରେ କୋଲାବ-ମାଛକୁଣ୍ଡ (ଶାବରୀ-ସିଲେରୁ) ନଦୀ ନାମରେ ପରିଚିତ । କୋଲାବ୍-ମାଛକୁଣ୍ଡ ନଦୀଟି ଓଡ଼ିଶାର କୋରାପୁଟ ଜିଲ୍ଲାରେ ଅବସ୍ଥିତ ପୂର୍ବଘାଟ ପର୍ବତମାଳାର ସିଙ୍ଘାରାମ ପର୍ବତମାଳାରୁ ଉତ୍ପତ୍ତିଲାଭ କରିଛି । କୋଲାବ୍ ଓ ମାଛକୁଣ୍ଡ ନଦୀଦ୍ୱୟ ଗୋଟିଏ ନଦୀ ନାମରେ ପରିଚିତ । କୋଲାବ୍ ନଦୀଟି ଓଡ଼ିଶାର କୋରାପୁଟର ଏକ ପ୍ରମୁଖ ନଦୀ । ଏହା ସ୍ଥାନୀୟ ଅଞ୍ଚଳରେ ଶାବରୀ ନଦୀ ଭାବେ


କୋଲାବ୍: ଆନ୍ଧ୍ରପ୍ରଦେଶର କୁନାଭାରାଠାରେ

ପରିଚିତ । ଏହି ନଦୀଟି ଓଡ଼ିଶା, ଛତିଶଗଡ଼ ଏବଂ ଆନ୍ଧ୍ରପ୍ରଦେଶର ସୀମା ନିର୍ଦ୍ଧାରଣ କରିଥାଏ । ନଦୀଟି ଆନ୍ଧ୍ରପ୍ରଦେଶରେ ପ୍ରବାହିତ ହେଲାବେଳେ ଗୋଦାବରୀ ନଦୀ ସହିତ ମିଳିତ ହୋଇଛି । ଶାବରୀ (କୋଲାବ୍) ନଦୀ ଉପରେ କୋରାପୁଟଠାରେ 'ଉପର କୋଲାବ ଜଳବିଦ୍ୟୁତ୍ ପ୍ରକଳ୍ପ' ପ୍ରତିଷ୍ଠା କରାଯାଇଛି । ସେହିଭଳି ଶାବରୀ ନଦୀର ଏକ ପ୍ରମୁଖ ଉପନଦୀ ହେଉଛି ସିଲେରୁ । ସିଲେରୁ ନଦୀକୁ ସ୍ଥାନୀୟ ଅଞ୍ଚଳରେ ମାଛକୁଣ୍ଡ ନଦୀ ବୋଲି କହିଥା'ନ୍ତି । ଏଣୁ କୋଲାବ୍ ନଦୀଟି କୋରାପୁଟ ଅଞ୍ଚଳରେ ଶାବରୀ-ସିଲେରୁ ନଦୀ ଭାବେ ପରିଚିତ ।

ସିଲେରୁ ନଦୀରେ ମାଛକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ ମଧ୍ୟ କାର୍ଯ୍ୟକାରୀ ହୋଇଛି । ଏଠାରେ ଓଡ଼ିଶାର ଦୀର୍ଘତମ ଜଳପ୍ରପାତ ଡୁଡୁମା ଅବସ୍ଥିତ । ସିଲେରୁ-ଶାବରୀ (ମାଛକୁଣ୍ଡ-କୋଲାବ୍) ନଦୀରେ ଓଡ଼ିଶାରେ ସବୁଠୁ ବେଶୀ ଜଳବିଦ୍ୟୁତ୍ ପ୍ରକଳ୍ପ ନିର୍ମାଣ କରାଯାଇପାରିଛି । କୋଲାବ୍ (ଶାବରୀ) ନଦୀ ଉପରେ କୋରାପୁଟଠାରେ ଅପର କୋଲାବ୍ ଜଳବିଦ୍ୟୁତ୍ ପ୍ରକଳ୍ପ ନିର୍ମାଣ ହୋଇଥିବାବେଳେ ସିଲେରୁ ନଦୀ ଉପରେ ମାଛକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ, ବାଲିମେଳା ଜଳବିଦ୍ୟୁତ୍ ପ୍ରକଳ୍ପ, ଅପର ସିଲେରୁ ଜଳବିଦ୍ୟୁତ୍ ପ୍ରକଳ୍ପ, ଡୋଙ୍କାରାୟୀ ଜଳବିଦ୍ୟୁତ୍ ପ୍ରକଳ୍ପ ଏବଂ ଲୋୟର ସିଲେରୁ ଜଳବିଦ୍ୟୁତ୍ ପ୍ରକଳ୍ପ ଭଳି ବହୁ ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି । କୋଲାବ୍-ମାଛକୁଣ୍ଡ ନଦୀର ପ୍ରମୁଖ ଉପନଦୀଗୁଡ଼ିକ ହେଲେ-

୧· ମାଛକୁଣ୍ଡ (ସିଲେରୁ)

୨· କରାଣ୍ଡି ନଳା

୩· ଗୁରାଡ଼ି ନଳା

୪· କଙ୍ଗାର୍ ନଳା

୫· ଗରିଆ ନଳା

୬· ଧର୍ମଗଡ଼ ନଳା

୭· ଜାମ୍ ନଦୀ

୮· ମାଲେଙ୍ଗାର ନଦୀ

୯· ମୁଲେର୍‌ଭାଗୁ ନଦୀ

୧୦· ପୋଟେରୁ

## ଓଡ଼ିଶାର ଶ୍ରେଷ୍ଠ ୧୦ଟି ଦୀର୍ଘତମ ନଦୀ

*(Top Ten Longest Rivers of Odisha)*

| ନଦୀ | ଦୈର୍ଘ୍ୟ (କି.ମି) | ଅବବାହିକା ଅଞ୍ଚଳ (ବର୍ଗ କି.ମି) |
|---|---|---|
| ୧· ମହାନଦୀ* | ୯୫୯ | ୧,୪୧,୫୮୯ |
| ୨· ବ୍ରାହ୍ମଣୀ | ୭୯୯ | ୦,୩୯,୧୧୬ |
| ୩· ଇନ୍ଦ୍ରାବତୀ | ୫୩୫ | ୦,୪୧,୭୦୦ |
| ୪· ସୁବର୍ଣ୍ଣରେଖା | ୪୪୬ | ୦,୧୯,୨୭୭ |
| **୫. ବୈତରଣୀ** | **୩୬୫** | **୦,୧୪,୨୧୮** |
| ୬· ବଂଶଧାରା | ୨୩୯ | ୦,୧୧,୩୩୭ |
| ୭· ନାଗାବଳୀ | ୨୧୭ | ୦,୦୯,୨୭୫ |
| ୮· କୋଲାବ୍-ମାଛକୁଣ୍ଡ | ୨୦୦ | ୦,୨୦,୪୨୭ |
| ୯· ବୁଢାବଳଙ୍ଗ | ୧୯୯ | ୦,୦୬,୬୯୧ |
| ୧୦· ଋଷିକୁଲ୍ୟା | ୧୬୫ | ୦,୦୮,୯୬୩ |

***(Sources:***

*1. Integrated Hydrological Data Book, 2012 -Hydrological Data Directorate Information Systems Organisation Water Planning and Projects wing Central Water Commission, New Delhi*

୨· ମହାନଦୀ -ଡକ୍ଟର ହେମନ୍ତ କୁମାର ଦାସ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର (୨୦୦୮)

*3. Rivers of Oriss: Kharkai River, Devi River, Brahmani River,*

*Nagavali River, River Baitarani, Sankh River, Vamsadhara River, Subarnarekha River -General Books LLC ( 2010)*

4. *Vamsadhara River -Ronald Cohn Jesse Russell, VSD (2012)*
5. *Government of Odisha, Department of Water Resources.*
6. *Some websites of rivers in Odisha.*

## ବୈତରଣୀର ପ୍ରମୁଖ ଉପନଦୀ

*(Tributaries of Baitaranee)*

ବୈତରଣୀ ନଦୀର ସମସ୍ତ ଉପନଦୀମାନେ ମୁଖ୍ୟତଃ କେନ୍ଦୁଝର, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ ଜିଲ୍ଲା ଦେଇ ପ୍ରବାହିତ ହୋଇଛନ୍ତି । ବୈତରଣୀର କିଛି ଉପନଦୀ କେନ୍ଦୁଝର ଜିଲ୍ଲାରୁ ପ୍ରବାହିତ ହୋଇଥିବାବେଳେ ଆଉ କିଛି ନଦୀ ମୟୂରଭଞ୍ଜ ଜିଲ୍ଲାରୁ ପ୍ରବାହିତ ହୋଇଛନ୍ତି । ବୈତରଣୀର କିଛି ଉପନଦୀ ଝାଡ଼ଖଣ୍ଡରୁ ମଧ୍ୟ ପ୍ରବାହିତ ହୋଇଛନ୍ତି । ବୈତରଣୀ ଓ ଏହାର ସମସ୍ତ ଉପନଦୀ ପ୍ରବାହିତ ଅଞ୍ଚଳକୁ ନେଇ ବୈତରଣୀ ନଦୀ ଅବବାହିକା ଗଠିତ ।

ପୁଣ୍ୟତୋୟା ବୈତରଣୀ ହେଉଛି କେନ୍ଦୁଝର ଜିଲ୍ଲାର ହର୍ତ୍ତା, କର୍ତ୍ତା, ଭାଗ୍ୟବିଧାତା । ଏହାକୁ କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' ବୋଲି କୁହାଯାଏ । ବୈତରଣୀ ନଦୀର ଦୈର୍ଘ୍ୟ ମୋଟ ୩୬୫ କିଲୋମିଟର । ତେବେ ଏହାର ସିଂହଭାଗ ୨୨୦ କିଲୋମିଟର କେବଳ କେନ୍ଦୁଝର ଜିଲ୍ଲାରେ ପ୍ରବାହିତ । କେନ୍ଦୁଝର ଜିଲ୍ଲା ଦେଇ ବୈତରଣୀ ନଦୀ ପ୍ରବାହିତ ହେଉଥିବାବେଳେ ବ୍ରାହ୍ମଣୀର କେତେକ ଉପନଦୀ ମଧ୍ୟ ଏ ଜିଲ୍ଲାରେ ପ୍ରବାହିତ ହେଉଛି । କେନ୍ଦୁଝର ଜିଲ୍ଲାର ଶତକଡା ୮୫ ଭାଗ ଅଞ୍ଚଳ ବୈତରଣୀ ନଦୀ ଅବବାହିକା ଅଞ୍ଚଳ *(Baitaranee River Basin)*ରେ ଥିବାବେଳେ ଶତକଡ଼ା ୧୫ ଭାଗ ବ୍ରାହ୍ମଣୀ ନଦୀ ଅବବାହିକା ଅଞ୍ଚଳ *(Brahmanee River Basin)*ରେ ଅବସ୍ଥିତ ।

ବୈତରଣୀ ନଦୀଟି କେନ୍ଦୁଝର ଜିଲ୍ଲାର ଗୋନାସିକା ପର୍ବତରୁ ଉତ୍ପତ୍ତିଲାଭ କରିଛି । ବୈତରଣୀର ପ୍ରାୟ ସମସ୍ତ ଉପନଦୀ କେନ୍ଦୁଝର, ମୟୂରଭଞ୍ଜର ପୂର୍ବଘାଟ ପର୍ବତମାଳା ଓ ଝାଡ଼ଖଣ୍ଡର ଛୋଟନାଗପୁର ମାଳଭୂମିରୁ ବାହାରିଛନ୍ତି ।

ବୈତରଣୀ ନଦୀର ଉପନଦୀଗୁଡ଼ିକ ମଧ୍ୟରେ ଅରଡ଼େଇ, ଚାମଡ଼ା, ବାମିନୀ, ସୁନା, ମାଛକାନ୍ଦଣା, ମେର୍ମଦା, ନେଉଳିଯୋଡ଼ି, କାନ୍‌ଝାରୀ, ସୀତା, କୁକୁରକଟା, ମୂଷଳ, କୁଶେଇ ପ୍ରମୁଖ ଦକ୍ଷିଣ ପାର୍ଶ୍ୱରୁ ଆସି ମିଶିଥିବାବେଳେ କଙ୍ଗିରା (ଝାଡ଼ଖଣ୍ଡ), ଖଇରି-ଭଣ୍ଡନ, ମାଲ୍‌ଦା, ବଇତ, ଦେଓ, ତେଲ, ସିମ୍ ଓ ସାଳନ୍ଦୀ ଆଦି ଉପନଦୀ ବାମ ପାର୍ଶ୍ୱରୁ ଆସି ମିଶିଛନ୍ତି । ଏହାବ୍ୟତୀତ ଜିଲ୍ଲାର ପ୍ରମୁଖ କ୍ଷୁଦ୍ର ଜଳଧାର ରୂପେ କୁନ୍ଦୁରା, ଜନାଇ, ନାକଜୋର, ଜନ୍ହେଇ, ସିମିଳି, ଧୋବାପିଟା, ଟମକାଯୋଡ଼ି,

ଭିରୋଳ, କଣ୍ଟା ମୂଳି, କାଠୁପକା, ଧୋଢୁଆ, ଭାଲୁକା, ଘାଗରା-ଘଣ୍ଟିଆ-ଚାରିନାଳିଆ, ରାଣୀମା ନାଳ, କାଳିଆପାଳ, ଗଣ୍ଡ, ବାଳଧର, ଖଗଡ଼ିଆ, କଳାଡ଼େରା, ଚାଟୁରୀ ଆଦି ଅନେକ ଛୋଟବଡ଼ ନାଳ ବୈତରଣୀ ସହ ମିଶିଛନ୍ତି ।

## ବୈତରଣୀର ଦକ୍ଷିଣ ପାର୍ଶ୍ୱରେ ପ୍ରବାହିତ ପ୍ରମୁଖ ଉପନଦୀ

### ୧. ଅରଡ଼େଇ

ଅରଡ଼େଇ ନଦୀଟି କେନ୍ଦୁଝରଗଡ଼ର ଦକ୍ଷିଣ-ପୂର୍ବ ଭାଗରେ ଅବସ୍ଥିତ ବାର୍ହାରାଶି ପାହାଡ଼ରୁ ଉତ୍ପତ୍ତିଲାଭ କରିଛି । ପଳାସପଙ୍କାରୁ ୩ କିଲୋମିଟର ଦକ୍ଷିଣରେ ଅରଡ଼େଇ ସହିତ ମାଛକାନ୍ଦଣା ନଦୀ ମିଶିଛି । ଏହାପରେ ଅରଡ଼େଇ ଉତ୍ତର ଦିଗରେ ପ୍ରବାହିତ ହୋଇ ଚଂପୁଆଠାରୁ ୮ କିଲୋମିଟର ଦକ୍ଷିଣ ଦିଗରେ ସରେଇ ଗ୍ରାମ ନିକଟରେ ବୈତରଣୀ ନଦୀ ସହିତ ମିଶିଛି । ମାଛକାନ୍ଦଣା ହେଉଛି ଅରଡ଼େଇ ନଦୀର ଏକ ପ୍ରମୁଖ ଉପନଦୀ । କଡ଼ଇ, ସୋଠି ବା କାଣିଆ ଆଦି ଅରଡ଼େଇର ଉପନଦୀ ଅଟନ୍ତି ।

### ୨. ମାଛକାନ୍ଦଣା

ମାଛକାନ୍ଦଣା ନଦୀଟି କେନ୍ଦୁଝରଗଡ଼ର ଦକ୍ଷିଣରେ ବାର୍ହାରାଶି ପାହାଡ଼ରୁ ବାହାରି ଉତ୍ତର ଦିଗକୁ ପ୍ରବାହିତ ହୋଇ ପଳାସପଙ୍କା ନିକଟରେ ଅରଡ଼େଇ ନଦୀ ସହିତ ମିଶିଛି । ମାଛକାନ୍ଦଣା ନଦୀରେ ବଡ଼ଘାଗରା ଓ ସାନଘାଗରା ନାମରେ ଦୁଇଟି ପ୍ରସିଦ୍ଧ ଜଳପ୍ରପାତ ରହିଛି । ଏହି ନଦୀର ଜଳକୁ କେନ୍ଦୁଝର ସହରବାସୀ ପାନୀୟ ଜଳ ଭାବେ ବ୍ୟବହାର କରିଥା'ନ୍ତି । ମାଛକାନ୍ଦଣା ନଦୀରେ ବନ୍ଧ ନିର୍ମାଣ କରି କେନ୍ଦୁଝର ସହରକୁ ପାଣି ଆଣିବା ଉଦ୍ଦେଶ୍ୟରେ ତତ୍କାଳୀନ କେନ୍ଦୁଝର ରାଜା ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ପୂରଣ ହୋଇଛି । ମାଛକାନ୍ଦଣା ନଦୀ ବନ୍ଧ ନିର୍ମାଣ ନେଇ ରାଜାଙ୍କ ବେଗାରି ଖଟିବା ବିରୋଧରେ ଯେଉଁ 'ଧରଣୀ ମେଳି' ହୋଇଥିଲା ତାହା ଏବେ ଇତିହାସର ମୂକସାକ୍ଷୀ ।

### ୩. କାନ୍‌ଝାରୀ (କାଣିଝରି)

କାନ୍‌ଝାରୀ ନଦୀଟି ସ୍ଥାନୀୟ ଅଞ୍ଚଳରେ କାଣିଝରି ବା କାଳିଂଜର ନାମରେ ପରିଚିତ । ଏହି ନଦୀଟି ଗୋନାସିକା ପର୍ବତର ନିମ୍ନ ଭାଗରେ ଅବସ୍ଥିତ ଜାମୁଡ଼ିହା ଗ୍ରାମରୁ ବାହାରି ଉଦୟପୁର ନିକଟବର୍ତ୍ତୀ ଅଁଳାଡ଼ିହା ନିକଟରେ ବୈତରଣୀ ନଦୀ ସହ ମିଶିଛି । ନଦୀର ଦୈର୍ଘ୍ୟ ପ୍ରାୟ ୫୬ କିଲୋମିଟର । ବୈତରଣୀ ମାତାଙ୍କ ପରି କାଣିଝରି ମଧ୍ୟ ପର୍ବତରଜା ଗୋନାସିକାଙ୍କ ଅନ୍ୟତମ କନ୍ୟା ବୋଲି ସ୍ଥାନୀୟ ଅଞ୍ଚଳରେ କଥିତ ଅଛି ।

### ୪. ସୀତା ନଦୀ

ଢେଙ୍କିକୋଟ ନିକଟସ୍ଥ ସରୁପାଟ ପର୍ବତରୁ ବାହାରି ଦକ୍ଷିଣ-ପୂର୍ବ ଦିଗକୁ ପ୍ରାୟ ୧୬ କିଲୋମିଟର ପ୍ରବାହିତ ହେଲାପରେ ସୀତା ନଦୀ ସହିତ କୁକୁରକଟା ନଦୀ ମିଶିଛି । ମହୁଲଡିହା ନିକଟରେ

କୁକୁରକଟା ସହିତ ସୀତା ମିଶିବା ପରେ ଏମାନେ କିଛି ବାଟ ଆଗକୁ ପ୍ରବାହିତ ହୋଇ ଶେଷରେ ବୈତରଣୀ ସହିତ ମିଶିଛନ୍ତି । ସୀତା ନଦୀ କୂଳରେ ବାଘଘର, କୁଟ୍ରାବେଡା, ଡାଙ୍ଗୁଆପଶି ଏବଂ ଓଡ଼ିଶାର ପ୍ରସିଦ୍ଧ ଐତିହ୍ୟପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ପର୍ଯ୍ୟଟପସ୍ଥଳ ସୀତାବିଞ୍ଜି ଅବସ୍ଥିତ । କେନ୍ଦୁଝର ଜିଲ୍ଲାରେ ସୀତା ନଦୀଟିର ଏକ ଐତିହାସିକ ଗୁରୁତ୍ୱ ରହିଛି । ଏହି ନଦୀ ଉପତ୍ୟକାରୁ ଅନେକ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଅବଶେଷ ମିଳିଛି ।

## ୫. କୁକୁରକଟା

କେନ୍ଦୁଝର ଜିଲ୍ଲାର ଝାରବେଡ଼ା ନିକଟସ୍ଥ ଜଙ୍ଗଲରୁ କୁକୁରକଟା ନଦୀ ବାହାରି କିଛି ବାଟ ପୂର୍ବ ଦିଗକୁ ପ୍ରବାହିତ ହେବାପରେ ମହୁଲଡିହା ନିକଟରେ ସୀତା ନଦୀ ସହିତ ମିଶିଛି । ଏହି ନଦୀର ଦୈର୍ଘ୍ୟ ପ୍ରାୟ ୩୨ କିଲୋମିଟର । ଏହି ନଦୀ କୂଳରେ ଘଟଗାଁ ବ୍ଲକ୍‌ର କୁଣ୍ଡପିଠା, ଆଖୁପାଳ, ଗଦାଧରପୁର, ବାଣେଶ୍ୱର, ପ୍ରସିଦ୍ଧ ଶୈବକ୍ଷେତ୍ର ବାର୍ହାଟିପୁରା, କୁକୁରକଟା ଗ୍ରାମଗୁଡିକ ଅବସ୍ଥିତ ।

## ୬. ମୁଷଳ

କେନ୍ଦୁଝର ଜିଲ୍ଲାର ମେଘନାଦ ପର୍ବତମାଳାରୁ ମୁଷଳ ନଦୀ ଉତ୍ପତ୍ତିଲାଭ କରିଛି । ଏହାର ଦୈର୍ଘ୍ୟ ପ୍ରାୟ ୫୩ କିଲୋମିଟର । ଉତ୍ପତ୍ତି ସ୍ଥଳରୁ କିଛି ବାଟ ଉତ୍ତର ଦିଗକୁ ପ୍ରବାହିତ ହେବାପରେ ନଦୀଟି ଆକସ୍ମିକ ଭାବେ ପୂର୍ବକୁ ଓ ଦକ୍ଷିଣ-ପୂର୍ବ ଦିଗରେ ପ୍ରବାହିତ ହୋଇ କୁଣ୍ଡକୋଟ ନିକଟରେ ବୈତରଣୀ ନଦୀ ସହିତ ମିଶିଛି । ଏହି ନଦୀ ସହିତ ଅନେକ ପାହାଡ଼ିଆ କ୍ଷୁଦ୍ର ନାଳଗୁଡିକ ମିଶିଛନ୍ତି । ମୁଷଳ ନଦୀ କୂଳରେ ହରିଚନ୍ଦନପୁର, ରଘୁନାଥପୁର, ତିନିଧାରିଆ, ଆଖୁପାଳ, କାଦୁଅଡ଼ିହ, କାଳିମାଟି ଓ ସମିଳିଆ ଆଦି ପ୍ରମୁଖ ଗ୍ରାମଗୁଡିକ ଅବସ୍ଥିତ ।

## ୭. କୁଶେଇ

କୁଶେଇ ନଦୀର ଅନ୍ୟ ନାମ କୁଶଭଦ୍ରା । ମେଘନାଦ ପର୍ବତର ଦକ୍ଷିଣ ଦିଗରେ ଅବସ୍ଥିତ ରେବଣା ସଂରକ୍ଷିତ ଜଙ୍ଗଲରୁ କୁଶେଇ ନଦୀ ଉତ୍ପତ୍ତିଲାଭ କରିଛି । ଏହି ନଦୀଟି ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇ କୁକୁରୁଙ୍ଗି ନଦୀ ସହିତ ମିଶିବା ପରେ ନଦୀଟି ଅତ୍ୟନ୍ତ ଅଂକାବଂକା ପଥ ଦେଇ ଗତି କରି ଆନନ୍ଦପୁର ସବ୍‌ଡିଭିଜନର ବାଟୋ ନିକଟରେ ବୈତରଣୀ ନଦୀ ସହ ମିଶିଛି । ଏହି ନଦୀ ସହିତ ଷେଣ୍ଢେଇ ଓ ଗଣ୍ଡ ନଦୀ ମିଶିଛି । କୁଶେଇ ନଦୀ କୂଳରେ ପ୍ରସିଦ୍ଧ ଶୈବପୀଠ କୁଶଳେଶ୍ୱର, ବେଳବାହାଳି, ଜଳସୁଆଁ, ମାଣତିରି, ନୟାଗଡ଼ ଆଦି ପର୍ଯ୍ୟଟନ ସ୍ଥଳ ଅବସ୍ଥିତ । କୁଶେଇ ନଦୀର ପ୍ରମୁଖ ଉପନଦୀଗୁଡ଼ିକ ହେଲେ-

୧· କୁକୁରୁଙ୍ଗି
୨· ଷେଣ୍ଢେଇ
୩· ଗଣ୍ଡ

## ୮. ମେର୍ମଦା ନଦୀ

ବୈତରଣୀ ନଦୀର ଅନ୍ୟ ପ୍ରମୁଖ କ୍ଷୁଦ୍ର ଉପନଦୀ **ମେର୍ମଦା** ନଦୀଟି ଝୁଂପୁରା ବ୍ଲକ୍‌ର ଉଖୁଣ୍ଡା ନିକଟସ୍ଥ ଏକ ଗଭୀର ପାଟରୁ ବାହାରି ଚଂପୁଆ ବ୍ଲକ୍ ଅନ୍ତର୍ଗତ ରୁଆଁଗୁଡ଼ା ନିକଟରେ ବୈତରଣୀ ନଦୀ ସହିତ ମିଶିଛି । ଏହା କୂଳରେ ଚଂପୁଆ ବ୍ଲକ୍‌ର କାନସରା, ଉଜବାଲି ଓ ପୁରୁଡ଼ପଶି ଆଦି ଗ୍ରାମଗୁଡିକ ରହିଛି । କେନ୍ଦୁଝର ଜିଲ୍ଲାର ଝୁଂପୁରା, ଉଖୁଣ୍ଡା ଓ ଚଂପୁଆ ଅଞ୍ଚଳର ଚାଷୀମାନେ ଏହି ନଦୀର ଜଳ ଉପରେ ସର୍ବାଧିକ ନିର୍ଭର କରିଥା'ନ୍ତି ।

## ୯. ଜନେଇ ନଳା

ଜନେଇନଳା ଝୁଂପୁରା ବ୍ଲକ୍‌ର ଉଖୁଣ୍ଡା ଅଞ୍ଚଳରୁ ବାହାରି ପୁରୁଣାସାହି ଓ ସରିଙ୍ଗ ନିକଟରେ ବୈତରଣୀ ନଦୀ ସହିତ ମିଶିଛି ।

## ୧୦. ନେଉଳଜୋରି

ନେଉଳିଜୋରି ନଦୀ ମଧ୍ୟ ଝୁଂପୁରା ବ୍ଲକ୍‌ର ଉଖୁଣ୍ଡା ପାଟ ନିକଟରୁ ବାହାରି ନୂଆସାହି ନିକଟରେ ୬ ନମ୍ବର ଜାତୀୟ ରାଜପଥ (ତୁରୁମୁଂଗା)ର ଉପରମୁଣ୍ଡରେ ବୈତରଣୀ ନଦୀ ସହିତ ମିଶିଛି । ଏହା କୂଳରେ ନୂଆସାହି, ଝାରବେଡ଼ା ଓ ତେନ୍ତୁଳିଖୁଣ୍ଟି ଗ୍ରାମଗୁଡିକ ରହିଛି ।

## ୧୧. ନାକଜୋର

ନାକଜୋର ନଦୀଟି ରାଜନଗର ଉପରମୁଣ୍ଡରେ ବୈତରଣୀ ନଦୀ ସହ ମିଶିଛି । ଏହାକୂଳରେ ବଳଭଦ୍ରପୁର ଓ ଭୃଙ୍ଗରାଜ ଗ୍ରାମ ରହିଛି ।

## ୧୨. ଜହ୍ନେଇନଳା

ଜହ୍ନେଇନଳା ବୈତରଣୀର ଅନ୍ୟତମ ଉପନଦୀ । ଏହି ନଦୀଟି ଉଖୁଣ୍ଡା ନିକଟରୁ ବାହାରି ତୁରୁମୁଂଗା ନିକଟସ୍ଥ କିଆପଡ଼ା ପାଖରେ ବୈତରଣୀ ନଦୀରେ ମିଶିଛି । ଏହାକୂଳରେ କୋଚିଲାପଡା, ଜହ୍ନେଇପୁର ଗ୍ରାମ ରହିଛି ।

## ୧୩. ସିମିଳି ନାଳ-ଗଞ୍ଜେଇଘୂରା

ସିମିଳି ନାଳ କେନ୍ଦୁଝର ଜିଲ୍ଲାର ସ୍ୱାମ୍‌ପାଟଣାର ଉପରମୁଣ୍ଡରୁ ଉତ୍ପତ୍ତିଲାଭ କରି ସମଗ୍ର ସ୍ୱାମ୍‌ପାଟଣା ବ୍ଲକ୍‌ରେ ପ୍ରବାହିତ ହୋଇଛି । ସ୍ୱାମ୍‌ପାଟଣାର ତଳମୁଣ୍ଡ ମଙ୍ଗଳପୁରଠାରେ ସିମିଳିନାଳ ସହିତ ଏହାର ଉପନଦୀ ଗଞ୍ଜେଇଘୂରା ମିଶିଛି । ସିମିଳିନାଳ ସହିତ ଗଞ୍ଜେଇଘୂରା ମିଶିବା ପରେ ଏ ଦୁହେଁ କିଛି ବାଟ ପ୍ରବାହିତ ହୋଇ ସ୍ୱାମ୍‌ପାଟଣାର ତଳମୁଣ୍ଡରେ ବୈତରଣୀ ନଦୀରେ ପଡ଼ିଛନ୍ତି ।

## ୧୪. ମୁହାଁଣ ନାଳ

ମୁହାଁଣ ନାଳ ଆନନ୍ଦପୁର ଉପଖଣ୍ଡର ପ୍ରସିଦ୍ଧ ଐତିହାସିକ ଗ୍ରାମ ବୀରଗୋବିନ୍ଦପୁର ନିକଟରେ ବୈତରଣୀ ନଦୀ ସହ ମିଶିଛି । ଏହା କୂଳରେ ଚନ୍ଦେଇବାହାଳ, ଭାଲୁଗଣ ଓ ପ୍ରସିଦ୍ଧ ବିଷ୍ଣୁ ପୀଠ

ବୀରଗୋବିନ୍ଦପୁର ଗ୍ରାମ ରହିଛି ।

## ୧୫. କାଳିଆପାଳ ନାଳ

କାଳିଆପାଳ ନାଳ କେନ୍ଦୁଝର ଜିଲ୍ଲାର ରଣପୁରଠାରେ ବୈତରଣୀ ନଦୀ ସହ ମିଶିଛି ।

## ୧୬. ଗଣ୍ଡନାଳ

**ଗଣ୍ଡନାଳ** ସହ **ଜବାଟିନାଳ** ମିଶି କିଛି ବାଟ ଦକ୍ଷିଣ ପୂର୍ବ ଦିଗକୁ ପ୍ରବାହିତ ହୋଇ ଶେଷରେ ବୈତରଣୀ ସହ ମିଶିଛନ୍ତି । ଏହା କୂଳରେ ରଗଡ଼ା, କଙ୍କଡ଼ାଯୋର ଓ କାଳିଆପାଳ ଗ୍ରାମଗୁଡ଼ିକ ରହିଛି ।

# ବୈତରଣୀର ବାମ ପାର୍ଶ୍ୱରେ ପ୍ରବାହିତ ପ୍ରମୁଖ ଉପନଦୀ

## ୧. କୁନ୍ଦୁରୁନଳା (ସୁନା ନଦୀ)

ସୁନ୍ଦରଗଡ଼ ଜିଲ୍ଲାର ଦକ୍ଷିଣ-ପୂର୍ବ ସୀମା ନିକଟରେ **ତେନ୍ଦେରାଇ** ଓ **ସୁନା** ନାମକ ଦୁଇଟି କ୍ଷୁଦ୍ର ନଦୀ ମିଶି କୁନ୍ଦୁରୁନଳା (ସୁନା ନଦୀ) ନାମ ଧାରଣ କରିଛନ୍ତି । କୁନ୍ଦୁରୁନଳା ନଦୀଟି ମାଲ୍‌ଦା ନିକଟ ଦେଇ କେନ୍ଦୁଝର ଜିଲ୍ଲାର ଉତ୍ତର-ପଶ୍ଚିମ ଦିଗରେ ଜିଲ୍ଲା ମଧ୍ୟକୁ ପ୍ରବେଶ କରିବା ପରେ ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହୋଇ ବିଲେଇପଦା ନିକଟରେ ବୈତରଣୀ ନଦୀରେ ପଡ଼ିଛି । ଏହି ନଦୀ କୂଳରେ ଯୋଡ଼ା ସହର ଅବସ୍ଥିତ । ସୁନା ନଦୀକୁ ଯୋଡ଼ା ସହରର 'ଲାଇଫ୍ ଲାଇନ୍' ବୋଲି କୁହାଯାଇଥାଏ । ତେବେ ଅତି ମାତ୍ରାରେ ଖଣି ଖନନ କାରଣରୁ ସୁନା ନଈଟି ପ୍ରତି ଏବେ ନାନା ପ୍ରକାର ବିପଦ ଦେଖା ଦେଇଛି ।

## ୨. କଙ୍ଗିରା ନଦୀ (ଝାଡ଼ଖଣ୍ଡ)

ବୈତରଣୀର ସମସ୍ତ ପ୍ରମୁଖ ଉପନଦୀଗୁଡିକ ମଧ୍ୟରୁ କଙ୍ଗିରା ହେଉଛି ଏକ ବଡ଼ ଉପନଦୀ । ଏହି ନଦୀଟି ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରୁ ବାହାରି ମୟୂରଭଞ୍ଜ ଜିଲ୍ଲା ସୀମା ଦେଇ ଦକ୍ଷିଣ-ପଶ୍ଚିମ ଦିଗରେ ପ୍ରବାହିତ ହେବା ପରେ ଚଂପୁଆ ନିକଟରେ କେନ୍ଦୁଝର-ମୟୂରଭଞ୍ଜ- ଝାଡ଼ଖଣ୍ଡର ସୀମାରେ ଅବସ୍ଥିତ ଫଗୁ (ମୟୂରଭଞ୍ଜ) ଘାଟରେ ବୈତରଣୀ ନଦୀ ସହ ମିଳିତ ହୋଇଛି ।

କେନ୍ଦୁଝର ଜିଲ୍ଲା ମଧ୍ୟ ଦେଇ ନଦୀଟି ପ୍ରବାହିତ ନ ହେଲେ ମଧ୍ୟ ଏହି ନଦୀର ଜଳରେ ବୈତରଣୀ ସର୍ବାଧିକ ପୁଷ୍ଟ ହୋଇଛି । ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରୁ ଆସିଥିବା କଙ୍ଗିରା ନଦୀଟି ମୟୂରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଫଗୁ, ପଶ୍ଚିମ ସିଂହଭୂମି ଜିଲ୍ଲାର ଜଗନ୍ନାଥପୁର ବ୍ଲକ୍‌ର **ଜୟନ୍ତୀଗଡ଼** ଏବଂ କେନ୍ଦୁଝର ଜିଲ୍ଲାର ଚଂପୁଆ ନିକଟରେ ବୈତରଣୀ ସହ ମିଳିତ ହୋଇଛି । ଏଠାରେ ଉଭୟ ନଦୀର ଏକ ପ୍ରଶସ୍ତ ମୁହାଁଣ ସୃଷ୍ଟି ହୋଇଛି । ବୈତରଣୀ-କଙ୍ଗିରା

ନଦୀ ମୁହାଁଣର ଏକ ପାର୍ଶ୍ୱରେ ଝାଡ଼ଖଣ୍ଡର ଜୟନ୍ତୀଗଡ଼, ଘୁଟୁସାହି, ସରସ୍ୱତୀପୁର, ବାସୁଦେବପୁର ଆଦି ଅଞ୍ଚଳ ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ ମୟୂରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଫଗୁ ଗ୍ରାମ ରହିଛି । ଏହି ମୁହାଁଣର କେନ୍ଦୁଝର ପାର୍ଶ୍ୱରେ ଚଂପୁଆ ସହର ଅବସ୍ଥିତ ।

## ୩. ଖଇରି-ଭଣ୍ଡନ ନଦୀ (ଶିମିଳିପାଳ)

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରିଥିବା ଖଇରିଭଣ୍ଡନ (ଖଇରୀ ଓ ଭଣ୍ଡନ ନଦୀ) ନଦୀଟି ଚଂପୁଆ ଉପଖଣ୍ଡସ୍ଥ ପଦ୍ମପୁର ପଞ୍ଚାୟତର ଦୋ-ମୁହାଣି ଘାଟର ଅପରପାର୍ଶ୍ୱରେ ବୈତରଣୀ ନଦୀ ସହ ମିଳିତ ହୋଇଛି । ଚଂପୁଆ ବ୍ଲକ୍‌ର ପଦ୍ମପୁର ଏବଂ ଅପରପାର୍ଶ୍ୱସ୍ଥ ମୟୂରଭଞ୍ଜ ଜିଲ୍ଲାର ଆଦିପୁରଗଡ଼ ନିକଟରେ ବୈତରଣୀ ଓ ଖଇରିଭଣ୍ଡନ ମିଳିତ ହୋଇଛନ୍ତି । ମୟୂରଭଞ୍ଜ ଜିଲ୍ଲାରେ ପ୍ରବାହିତ ଏହି ନଦୀର ଜଳରେ ବୈତରଣୀର ଗର୍ଭ ଫୁଲିଥାଏ । ଖଇରିଭଣ୍ଡନ ଓ ବୈତରଣୀ ନଦୀର ମିଳନ ସ୍ଥଳ ପୁରାଣ ପ୍ରସିଦ୍ଧ 'ଦୋ-ମୁହାଁଣି' ଘାଟ ଭାବେ ପରିଚିତ । ମୟୂରଭଞ୍ଜ ଜିଲ୍ଲାରେ ପ୍ରବାହିତ ଭଣ୍ଡନ ନଦୀ ସହିତ ଖଇରୀ (କେଣ୍ଟା ଓ ଖଇରି ନଦୀର ମିଳନ) ମିଶି ଖଇରିଭଣ୍ଡନ ସୃଷ୍ଟି ହୋଇଛି । ଏହି ନଦୀ କୂଳରେ ପ୍ରସିଦ୍ଧ ଐତିହାସିକ ନଗରୀ ଖିଚିଂ, ଯଶୀପୁର, ପ୍ରାଚୀନ ମୟୂରଭଞ୍ଜର ପ୍ରଥମ ରାଜଧାନୀ ଆଦିପୁରଗଡ଼ ଆଦି ଅବସ୍ଥିତ ।

## ୪. ଦେଓ ନଦୀ

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପର୍ବତର ପଶ୍ଚିମାଞ୍ଚଳରୁ ଏହି ନଦୀଟି ଉତ୍ପତ୍ତିଲାଭ କରିବା ପରେ ଯଶୀପୁର, କରଞ୍ଜିଆ ଓ କେନ୍ଦୁଝର ଜିଲ୍ଲାର ସାହାରପଡ଼ା ଦେଇ ପ୍ରବାହିତ ହୋଇଛି । ଏହାପରେ ଦେଓ ନଦୀ ଉତ୍ତର-ପଶ୍ଚିମ ଦିଗକୁ କିଛି ବାଟ ପ୍ରବାହିତ ହୋଇ କେନ୍ଦୁଝର-ମୟୂରଭଞ୍ଜ ଜିଲ୍ଲା ସୀମାରେ ତୁରୁମୁଂଗାର ଉପର ମୁଣ୍ଡରେ ମୟୁରଭଞ୍ଜ ଜିଲ୍ଲାର ମହାଦେବଦେଉଳି ଗ୍ରାମରେ ବୈତରଣୀ ନଦୀ ସହ ମିଶିଛି । ବୈତରଣୀ-ଦେଓ ନଦୀର ମିଳନ ସ୍ଥଳଟି ସ୍ଥାନୀୟ ଅଞ୍ଚଳରେ 'ତିନି ଧାରିଆ' ନାମରେ ପରିଚିତ । ଏଠାରେ ପ୍ରତିବର୍ଷ ମକର ମେଳା ମହା ସମାରୋହରେ ପାଳିତ ହୋଇଥାଏ ।

## ୫. ତେଲ ନଦୀ

ଏହି ନଦୀଟି ଶିମିଳିପାଳ ଜଙ୍ଗଲରୁ ଉତ୍ପତ୍ତିଲାଭ କରିଛି । ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ସୀମାନ୍ତବର୍ତ୍ତୀ ଇଲାକାର ସାହାରପଡ଼ାର ଦକ୍ଷିଣକୁ ପ୍ରବାହିତ ହୋଇ ମାଛକାନ୍ଦ ନାଳ ସହିତ ମିଶିବା ପରେ ତେଲ ନଦୀ ଭୀମକୁଣ୍ଡର ଉପର ମୁଣ୍ଡରେ ବୈତରଣୀ ସହ ମିଳିତ ହୋଇଛି । ଏହି ନଦୀ କୂଳରେ ଗୁରୁବାଟାଙ୍ଗର, ଗୋଲକୁନ୍ଦ, କମାରମରା ଗାଁଗୁଡ଼ିକ ରହିଛି ।

## ୬. ସିମ୍ ନଦୀ

ଏହା ବୈତରଣୀର ଏକ ପ୍ରମୁଖ ଉପନଦୀ । ସିମ୍ ନଦୀ ମଧ୍ୟ ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ

କରିଛି । ଏହା ମୟୂରଭଞ୍ଜ ଜିଲ୍ଲାର ଯଶୀପୁର, କରଞ୍ଜିଆ ଦେଇ ପ୍ରବାହିତ ହେବା ପରେ ବୈତରଣୀ ନଦୀର ବାମ ପାର୍ଶ୍ୱରେ ସ୍ୱାମ୍‌ପାଟଣା ନିକଟରେ ମିଳିତ ହୋଇଛି । ମୟୂରଭଞ୍ଜ ଜିଲ୍ଲାର ଚାଷୀଙ୍କ ପାଇଁ ସିମ୍ ନଦୀଟି ଏକ ଅତି ଦରକାରୀ ନଦୀ ଭାବେ ପରିଚିତ ।

## ୭. କଣ୍ଟାମୂଳି ନଦୀ

କେନ୍ଦୁଝର ଜିଲ୍ଲାର ପୁରୁଣାପାଣିର ଉପର ମୁଣ୍ଡରେ କଣ୍ଟାମୂଳି ନଦୀ ପ୍ରବାହିତ ହୋଇ ଶେଷରେ ବୈତରଣୀ ସହ ମିଶିଛି ।

## ୮. ଶାଳନ୍ଦୀ ନଦୀ

ବୈତରଣୀର ସବୁଠୁ ବଡ଼ ଉପନଦୀ ହେଉଛି ଶାଳନ୍ଦୀ । ହିମାଳୟରୁ ଗଙ୍ଗା ଓ ଯମୁନା ଉତ୍ପତ୍ତିଲାଭ କରି ଦୀର୍ଘ ପଥ ସମାନ୍ତରାଳ ଭାବେ ଗତି କରିବାପରେ ଆହ୍ଲାବାଦର ପ୍ରୟାଗଠାରେ ମିଶିବା ଭଳି ବୈତରଣୀ ଓ ଶାଳନ୍ଦୀ ନଦୀଦ୍ୱୟ ଦୀର୍ଘ ପଥ ସମାନ୍ତରାଳ ଭାବେ ଗତି କରି ଶେଷରେ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଅନ୍ତର୍ଗତ ଆଖଣ୍ଡଳମଣି ନିକଟସ୍ଥ ତିନିତର ଘାଟରେ ମିଳିତ ହୋଇଛନ୍ତି । ଶାଳନ୍ଦୀ ନଦୀ ମୟୂରଭଞ୍ଜ ଜି୍ଲ୍ଲାର ଶିମିଳିପାଳ ଅଭୟାରଣ୍ୟ ଅନ୍ତର୍ଗତ ମେଘାସନୀ ପର୍ବତର ଦକ୍ଷିଣ ଦିଗରୁ ବାହାରି ଚଂପାପାଳ ଗ୍ରାମ ନିକଟରେ କେନ୍ଦୁଝର ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ଏହାପରେ ନଦୀଟି ହଦଗଡ଼, ପଢିଆରୀପଲ୍ଲୀ ଓ ସୋସୋ ଅଞ୍ଚଳରେ ଦକ୍ଷିଣ-ପୂର୍ବ ଦିଗକୁ ପ୍ରାୟ ୧୯ କିଲୋମିଟର ପ୍ରବାହିତ ହେଲାପରେ ଭଦ୍ରକ ଜିଲ୍ଲାକୁ ପ୍ରବେଶ କରି ଚାନ୍ଦବାଲି ବ୍ଲକ୍‌ର ଆରଡ଼ି ଆଖଣ୍ଡଳମଣି ନିକଟସ୍ଥ ତିନିତର ଘାଟରେ ବୈତରଣୀ ସହ ମିଳିତ ହୋଇଛି । ବୈତରଣୀ ଓ ଶାଳନ୍ଦୀର ମିଳନସ୍ଥଳ ଏହି ତିନିତର ଘାଟଟି ଭଦ୍ରକ, କେନ୍ଦ୍ରାପଡ଼ା ଏବଂ ଯାଜପୁର ଜିଲ୍ଲା ମଧ୍ୟରେ ସଂଯୋଗ ସ୍ଥାପନ କରିଥାଏ । ଶାଳନ୍ଦୀ ନଦୀରେ କେନ୍ଦୁଝର ଜିଲ୍ଲାର ହଦଗଡ଼ଠାରେ ଏକ ବୃହତ୍ ଜଳଭଣ୍ଡାର ନିର୍ମାଣ କରାଯାଇ ଉଭୟ ଭଦ୍ରକ ଓ ଆନନ୍ଦପୁର ଅଞ୍ଚଳର ଚାଷୀମାନଙ୍କ ଜମିକୁ ଜଳସେଚିତ କରାଯାଇପାରୁଛି । ଶାଳନ୍ଦୀକୁ ଭଦ୍ରକ ଜିଲ୍ଲାର 'ଲାଇଫ୍ ଲାଇନ୍' ବୋଲି କୁହାଯାଏ ।

## ୯. ଧୋବାପିଟା ନାଳ

ବୈତରଣୀ ନଦୀର ବାମ ପାର୍ଶ୍ୱରୁ ଆସି ମିଶିଥିବା କ୍ଷୁଦ୍ର ଜଳଧାରଗୁଡିକ ମଧ୍ୟରେ **ଧୋବାପିଟା** ନାଳ ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ବୈତରଣୀ ନଦୀରେ ମିଳିତ ହୋଇଛି ।

## ୧୦. ଟାମକଯୋଡି-କଚିମଢୋର

ମୟୂରଭଞ୍ଜ ଜିଲ୍ଲାରୁ ପ୍ରବାହିତ **ଟମକାଯୋଡି-କଚିମଯୋର** ନାଳଦ୍ୱୟ ମିଳିତ ଭାବେ ପ୍ରବାହିତ ହୋଇ ପାଟଣାର ଉପରମୁଣ୍ଡରେ ବୈତରଣୀ ନଦୀ ସହ ମିଶିଛନ୍ତି ।

## ୧୧. ଭିରାଳ-ସୀତା

ଏହି ନଦୀ ଦୁଇଟି ମଧ୍ୟ ମୟୂରଭଞ୍ଜ ପଟୁ ପ୍ରବାହିତ ହୋଇ ବୈତରଣୀରେ ପଡିଛନ୍ତି । **ଭିରାଳ-**

ସୀତା ନାଳଦ୍ୱୟ ମିଳିତ ଭାବେ ପ୍ରବାହିତ ହେବାପରେ ସ୍ୱାମ୍‌ପାଟଣାର ଉପରମୁଣ୍ଡ ମିରିଗିଖୋଜ ନିକଟରେ ବୈତରଣୀ ନଦୀ ସହ ମିଶିଛନ୍ତି ।

## ୧୨. ଭିରାଳ-ଯମୁନା

**ଭିରୋଳ-ଯମୁନା** ନାଳଦ୍ୱୟ ମିଳିତ ଭାବେ ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ବୈତରଣୀ ନଦୀ ସହ ମିଶିଛନ୍ତି । ଏହି ନାଳକୂଳରେ ଖଡ଼ିକାପଦା, ହିନାଳଗାଡିଆ, ଦୁଧନାଳି ଓ ଗୁରସ ଆଦି ଗ୍ରାମ ରହିଛି । ଏହି ଦୁଇଟି ଝର ମଧ୍ୟ ମୟୂରଭଞ୍ଜ ପଟୁ ଆସି ବୈତରଣୀରେ ମିଶିଛନ୍ତି ।

## ୧୩. କାଠୁପକା

**କାଠୁପକା** ନାଳ ମୟୂରଭଞ୍ଜ ଜିଲ୍ଲାର ବଣିଆଯୋଡ଼ି ପାର୍ଶ୍ୱରୁ ବାହାରି ବୈତରଣୀ ନଦୀ ସହ ମିଶିଛି ।

## ୧୪. ଧୋବୁଆ ନଳା

**ଧୋବୁଆ** ନାଳ ଟେଣେଇପାଳ ନିକଟରେ ବୈତରଣୀ ସହ ମିଶିଛି ।

## ୧୫. ଭାଲୁଘର ନାଳ

**ଭାଲୁଘର ନାଳ** ବା **ବାଉତିଆ ନାଳ** ଗଉଡ଼ତିହା ନିକଟରେ ବୈତରଣୀ ସହ ମିଳିତ ହୋଇଛି ।

## ୧୬. ଘାଘରା-ଘଣ୍ଟିଆ-ଚାରିନାଳିଆ

**ଘାଗରା ନାଳ** ମୟୂରଭଞ୍ଜ ଜିଲ୍ଲାରୁ ବାହାରି ବାଉଁଶପାଣି ଦେଇ ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ **ଘଣ୍ଟିଆ ନାଳ** ସହିତ ମିଶିବା ପରେ **ଚାରିନାଳିଆ** ନାମ ଧାରଣ କରି ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଆମ୍ବ ନିକଟରେ ବୈତରଣୀ ସହ ମିଶିଛି । ଘାଗରା କୂଳରେ କଣ୍ଟିପାଳ, ପୋଇପାଣି ଓ ବାଉଁଶପାଣି ଗ୍ରାମଗୁଡିକ ରହିଥିବାବେଳେ ଘଣ୍ଟିଆ ନାଳ କୂଳରେ ବିରିତିହ ଗ୍ରାମ ଏବଂ ଚାରିନାଳିଆ କୂଳରେ ବଞ୍ଚୋ, ବଡ଼ଦୁଆରୀ, ମଧୁପୁର ଗ୍ରାମଗୁଡିକ ଅବସ୍ଥିତ । ଏ ସମସ୍ତ ନାଳ ମୟୂରଭଞ୍ଜ ଜିଲ୍ଲାର ଠାକୁରମୁଣ୍ଡା ବ୍ଲକ୍‌ରୁ ଉତ୍ପତ୍ତିଲାଭ କରି ଆନନ୍ଦପୁର ଉପଖଣ୍ଡରେ ବୈତରଣୀ ନଦୀ ସହିତ ମିଳିତ ହୋଇଛନ୍ତି ।

## ୧୭. ତଣ୍ଡିଯୋଡ଼ା ନାଳ

**ତଣ୍ଡିଯୋଡା ନାଳଟି** ବୈତରଣୀ ନଦୀର ବାମ ପାର୍ଶ୍ୱରେ ଗୋନାସିକା ପାର୍ବତ୍ୟାଞ୍ଚଳର ତଳମୁଣ୍ଡରୁ ବାହାରି ବାଂଶପାଳ ବ୍ଲକ୍‌ରେ ୪୯ ନମ୍ବର ଜାତୀୟ ରାଜପଥ ନିକଟରେ ବୈତରଣୀ ନଦୀ ସହିତ ମିଶିଛି ।

## ୧୮. ରାଣୀମା ନାଳ

ରାଣୀମା ନାଳଟି ବାଂଶପାଳ ବ୍ଲକ୍ ଅନ୍ତର୍ଗତ ତରମାକାନ୍ତ ଜଙ୍ଗଲରୁ ବାହାରି ବାଂଶପାଳର ତଳମୁଣ୍ଡରେ ବୈତରଣୀ ନଦୀ ସହିତ ମିଳିତ ହୋଇଛି । ବୈତରଣୀର ଏହି ଉପନଦୀ କୂଳରେ ଓଡ଼ିଶାର ପ୍ରସିଦ୍ଧ ତରମାକାନ୍ତ ଚା' ବଗିଚା ଅବସ୍ଥିତ ।

## ୧୯. ଦଲ୍‌କି ନଳା

ଦଲ୍‌କି ନଳା ଯୋଡା ବ୍ଲକ୍‌ର ଉପରମୁଣ୍ଡରୁ ବାହାରି ଜୁରୁଡିର ତଳମୁଣ୍ଡରେ ବୈତରଣୀ ନଦୀ ସହିତ ମିଳିତ ହୋଇଛି । ଯୋଡା ବ୍ଲକ୍‌ର ବାମେବାରୀ, ସିଲିଯୋଡା, ଜଲହରି ଓ ଜୁରୁଡି ଅଞ୍ଚଳରେ ଥିବା ଖଣିଖାଦାନର ବର୍ଜ୍ୟବସ୍ତୁ ଦ୍ୱାରା ଏହି ନଳାଟି ପୋତି ହେବାକୁ ବସିଲାଣି । ଏହାବ୍ୟତୀତ **ଜଳପା ନଳା** ଓ **ମଳଦା ନଳା** ଦୁଇଟି ମଧ୍ୟ ବୈତରଣୀ ନଦୀରେ ମିଶି ବୈତରଣୀ ଗର୍ଭକୁ ଅଧିକ ପୁଷ୍ଟ କରିଛନ୍ତି ।

**[ତଥ୍ୟ ସହାୟତା: ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର (୨୦୧୨), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୩୬-୪୪]**

## ବୈତରଣୀ ନଦୀ ଅବବାହିକା

*(River Basin of Baitaranee)*

ଓଡ଼ିଶାର ସମସ୍ତ ନଦୀ ବ୍ୟବସ୍ଥାକୁ ନେଇ ମୋଟ ୧୧ଟି ନଦୀ ଅବବାହିକା ଅଞ୍ଚଳ *(River Basin)* ଗଠିତ ହୋଇଛି । ଏହା ମଧ୍ୟରୁ ବୈତରଣୀ ଓ ବୁଢାବଳଙ୍ଗ ନଦୀ ଦୁଇଟିର ଅବବାହିକା କେବଳ ଓଡ଼ିଶା ମଧ୍ୟରେ ଅବସ୍ଥିତ । ବାକି ଅନ୍ୟ ୯ଟି ନଦୀର ଅବବାହିକା ଅଞ୍ଚଳ ଆନ୍ତଃରାଜ୍ୟସ୍ତରୀୟ ।

ବୈତରଣୀ ନଦୀ ଅବବାହିକାଟି ଓଡ଼ିଶାର ଏକ ପ୍ରମୁଖ ଏବଂ ବୃହତ୍ତମ ନଦୀ ଅବବାହିକା ଅଞ୍ଚଳ ଭାବେ ଜଣାଶୁଣା । ଏହି ନଦୀର ଅବବାହିକା ଅଞ୍ଚଳ ମୋଟ ୧୪,୨୧୮ ବର୍ଗ କିଲୋମିଟର ଅଞ୍ଚଳ ପରିବ୍ୟାପ୍ତ ।

ବୈତରଣୀ ନଦୀଟି କେନ୍ଦୁଝର ଜିଲ୍ଲାର ପୂର୍ବଘାଟ ପର୍ବତମାଳାର ଗୋନାସିକା ପର୍ବତରୁ ବାହାରି ମୋଟ ୩୬୫ କିଲୋମିଟର ଅତିକ୍ରମ କରି ବଙ୍ଗୋପସାଗରରେ ପଡ଼ିଛି । ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଦେଶର ଦୁଇଟି ରାଜ୍ୟ ଓଡ଼ିଶା ଓ ଝାଡ଼ଖଣ୍ଡ ଅନ୍ତର୍ଭୁକ୍ତ ଥିବାବେଳେ ଓଡ଼ିଶାର କେନ୍ଦୁଝର, ମୟୂରଭଞ୍ଜ, ଅନୁଗୁଳ, ସୁନ୍ଦରଗଡ଼, ବାଲେଶ୍ୱର, ଭଦ୍ରକ, ଯାଜପୁର, କେନ୍ଦ୍ରାପଡ଼ା ଏବଂ ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲା ପ୍ରମୁଖ ଜିଲ୍ଲା ସାମିଲ୍ ହୋଇଛି ।

**ବୈତରଣୀ ନଦୀ ଅବବାହିକା ଅଞ୍ଚଳ**

*(Baitaranee River Basin)*

**ଦେଶ: ଭାରତ**

**ରାଜ୍ୟ: ଓଡ଼ିଶା, ଝାଡ଼ଖଣ୍ଡ**

**ଓଡ଼ିଶା : ୧୩,୪୮୨ ବର୍ଗ କି.ମି**

**ଝାଡ଼ଖଣ୍ଡ : ୭୩୬ ବର୍ଗ କି.ମି**

**ମୋଟ ଅବବାହିକା ଅଞ୍ଚଳ : ୧୪,୨୧୮ ବର୍ଗ କି.ମି**

**ଜିଲ୍ଲା (ଓଡ଼ିଶା) :**

**ବାଲେଶ୍ୱର : ୪୨ ବର୍ଗ କି.ମି**

**ଭଦ୍ରକ : ୨୧୯୮ ବର୍ଗ କି.ମି**

**ଯାଜପୁର : ୧୦୦୬ ବର୍ଗ କି.ମି**

**କେନ୍ଦ୍ରାପଡ଼ା : ୨୭୪ ବର୍ଗ କି.ମି**

**ଅନୁଗୁଳ : ୩୧ ବର୍ଗ କି.ମି**

**କେନ୍ଦୁଝର : ୬୮୨୪ ବର୍ଗ କି.ମି**

**ମୟୂରଭଞ୍ଜ : ୨୯୨୬ ବର୍ଗ କି.ମି**

**ସୁନ୍ଦରଗଡ଼ : ୧୮୧ ବର୍ଗ କି.ମି**

**ମୋଟ ଉପନଦୀ ସଂଖ୍ୟା : ୬୪**

**ହାରାହାରି ବୃଷ୍ଟିପାତ : ୧,୪୮୮ ମି.ମି (ବାର୍ଷିକ)**

**ବୈତରଣୀ ନଦୀର ଦୈର୍ଘ୍ୟ : ୩୬୫ କି.ମି**

### ଅବବାହିକା ଅଞ୍ଚଳରେ କୃଷି

ଧାନ, କପା, ଝୋଟ, ଚିନାବାଦାମ୍, ଆଖୁ

ସୂର୍ଯ୍ୟମୁଖୀ, ରାଶି, ମୁଗ, ବିରି, ଗହମ, ମାଣ୍ଡିଆ, ମକା,

ରବର, ପନିପରିବା, ମାଛ, ଚିଙ୍ଗୁଡ଼ି

### ଅବବାହିକା ଅଞ୍ଚଳରେ ଅବସ୍ଥିତ ଜାତୀୟ ଉଦ୍ୟାନ

୧. ଶିମିଳିପାଳ ଜାତୀୟ ଉଦ୍ୟାନ ଓ ବନ୍ୟଜନ୍ତୁ ସଂରକ୍ଷଣ

୨. ଭିତର କନିକା ଜାତୀୟ ଉଦ୍ୟାନ

୩. ଗହୀରମଥା ସାମୁଦ୍ରିକ କଇଁଛ ଅଭୟାରଣ୍ୟ

### ଅବବାହିକାରେ ଅବସ୍ଥିତ ପ୍ରମୁଖ ସହରାଞ୍ଚଳ

କେନ୍ଦୁଝର, ଯୋଡ଼ା, ଚଂପୁଆ, ଜୟନ୍ତୀଗଡ଼ (ଝାଡ଼ଖଣ୍ଡ),

ରରୁଆଁ, ଶୁକୁଳି, ଖିଚିଂ, ଯଶୀପୁର, ସ୍ୱାମ୍ପାଟଣା, କରଞ୍ଜିଆ,

ସାହାରପଡ଼ା, କେନ୍ଦୁଝର, ଆନନ୍ଦପୁର, ଘସିପୁରା, ହାଟଡ଼ିହି,

ଆଖୁଆପଦା, ଭଣ୍ଡାରୀପୋଖରୀ, ଧାମ୍‌ନଗର, ଯାଜପୁର,
ଦଶରଥପୁର, ମଙ୍ଗଳପୁର, ଚାନ୍ଦବାଲି, ଆରଡ଼ି, ରାଜକନିକା,
ରାଜନଗର, ଧାମରା, ଚନ୍ଦନିପାଳ, ରଙ୍ଗଣି-ତାଳଚୁଆ,
ତାଙ୍ଗମାଳ, ଭିତରକନିକା, ନଳିତାପାଟିଆ

**ଅବବାହିକା ଅଞ୍ଚଳର ପ୍ରମୁଖ ଜଳସେଚନ ପ୍ରକଳ୍ପ**

୧· କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ
*(Kanupur Major Irrigation Project)*

୨· ଭୀମକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ
*(Bhimakunda Hydro-Electricity Project)*

୩· କେଶରୀକୁଣ୍ଡ ନଦୀବନ୍ଧ ଯୋଜନା
*(Kesarikunda Medium Irrigation Project)*

୪· ଆନନ୍ଦପୁର ବ୍ୟାରେଜ୍
*(Anandapur Barrage Project)*

୫· ଆଖୁଆପଦା ଆନିକଟ୍ ପ୍ରୋଜେକ୍ଟ
*(Akhuapada Anicut Project)*

୬· ବୈତରଣୀ ପାୱାର ପ୍ରୋଜେକ୍ଟ
*(Baitaranee Power Project Pvt. Ltd.)*

୭· କାଂଝାରୀ ଡ୍ୟାମ୍ ପ୍ରକଳ୍ପ
*(Kanjhari Dam Project)*

୮· ହଡଗଡ଼ ଜଳଭଣ୍ଡାର ପ୍ରକଳ୍ପ
*(Hadagada Dam Project in Salandi)*

ବୈତରଣୀ ନଦୀ ଉପରମୁଣ୍ଡ ଅବବାହିକାଟି ଭାରତର ଏକ ଗୁରୁତ୍ୱପୂର୍ଣ୍ଣ ଖଣି ସମୃଦ୍ଧ ଓ ଶିଳ୍ପାଞ୍ଚଳ ଭାବେ ଜଣାଶୁଣା । ବୈତରଣୀର ଉପରମୁଣ୍ଡରେ କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ ବହୁ ପରିମାଣରେ ଖଣିଜ ସଂପଦ ଗଛିତ ରହିଛି । ବୈତରଣୀ ନଦୀ ଉପର ଅବବାହିକା ଅଞ୍ଚଳରେ ନିମ୍ନଲିଖିତ ଖଣିଜ ସଂପଦ ପରିପୂର୍ଣ୍ଣ ରହିଛି । ସେଗୁଡିକ ହେଲା- **ଲୁହା ପଥର:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ବଲାଣି, ଯୋଡ଼ା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାଶିଆ-ବରପଦା, ଠାକୁରାଣୀ, ଜିଲ୍ଲିଂ-ଲଙ୍ଗଲଟା, ଜଜାଙ୍ଗ, ମାଲାଂଟୋଲି, ଗନ୍ଧମାର୍ଦ୍ଦନ, ଦୈତାରୀ, ମାଙ୍କଡ଼ନଚା ଆଦି ସ୍ଥାନରେ ଯଥେଷ୍ଟ ପରିମାଣରେ ଲୁହାପଥର ମାଟି ତଳେ ଗଛିତ ରହିଛି ।

**ମାଙ୍ଗାନିଜ୍:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ଗୁରୁଦା,

ଗୋଇଡ଼ା, ସିଦ୍ଧମଠ, ଯୋଡ଼ା, ହରମଠ, ଗୁଆଲି, ଜାମଦା, ଭଦ୍ରାସାହି, ନାଲଦା, ଚୋରମାଲ୍‌ଦା, ଦୁବୁନା, ବାମେବାରୀ, ବଡ଼ବିଲ, ସିଲିଯୋଡ଼ା, କାଳିମାଟି, ଇଂଗାନିଝରଣ, କଳାପର୍ବତ, ଠାକୁରାଣୀ, କାଦଡିହି ଆଦି ସ୍ଥାନରେ ମାଙ୍ଗାନିଜ ଖଣିଜ ସଂପଦ ଗଚ୍ଛିତ ରହିଛି ।

**ବକ୍ସାଇଟ୍:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ବାଂଶପାଳ ବ୍ଲକ୍ ଅନ୍ତର୍ଗତ କୁଅଁର ନିକଟସ୍ଥ ଢୋଲକଟା ପାହାଡ଼ରେ ବକ୍ସାଇଟ୍ ଗଚ୍ଛିତ ରହିଛି ।

**କ୍ରୋମିୟମ୍:** ବୈତରଣୀ ନଦୀ ଅବବାହିକାର ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ବଉଳା ନୂଆସାହିରେ କ୍ରୋମିୟମ୍ ଖଣିଜ ସଂପଦର ସନ୍ଧାନ ମିଳିଛି ।

**ଚୂନା:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ବାଂଶପାଳ, ହରିଚନ୍ଦନପୁର ଓ ତେଲକୋଇ ବ୍ଲକ୍‌ରେ ବହୁ ପରିମାଣରେ ଚୂନା ଗଚ୍ଛିତ ରହିଛି । ତେଲକୋଇ ବ୍ଲକ୍‌ର ସଲେଇକେନା, କରଦାଙ୍ଗି, ହରିଚନ୍ଦନପୁର ବ୍ଲକ୍‌ର ଚୂନାପେଣ୍ଠ ଏବଂ ବାଂଶପାଳ ବ୍ଲକର ଜଳଡିଆ-ଗୋପପୁର, ଗଜିପୁର, ଶଙ୍କରାଖୋଲ ଆଦି ସ୍ଥାନରେ ଚୂନା ଖଣିର ସନ୍ଧାନ ମିଳିଛି ।

**ଡୋଲାମାଇଟ୍:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ଯୋଡ଼ା ବ୍ଲକ୍‌ର କାଶିଆ-ଭଦ୍ରାସାହିରେ ଡୋଲାମାଇଟ୍ ବହୁମାତ୍ରାରେ ଗଚ୍ଛିତ ରହିଛି ।

**ପାଇରୋଫିଲାଇଟ୍:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ କେନ୍ଦୁଝର ଜିଲ୍ଲାର ମଦରଂଗାଯୋଡ଼ି, ନିତିଗୋଠା, ରୋଡୁଆଁ, ରଂପାକୋଟ, ଆମଯୋର, ଉକ୍‌ଚାବେଡ଼ା, ଧୋବାକୁଚୁଡ଼ା, ବଳଭଦ୍ରପୁର, ବାଲିଆଡିହି, ମାଛକାନ୍ଦଣା, ତାଳିମପୁର, ବୁରିଆଡ଼ିହି, ସିଦ୍ଧମଠ, ସରସକୋଷି, ବଲିଆଣିପୋଷି ଏବଂ ରେବଣା-ପଳାସପାଳ ଆଦି ସ୍ଥାନରେ ପାଇରୋଫିଲାଇଟ୍ ବହୁ ପରିମାଣରେ ଗଚ୍ଛିତ ରହିଛି ।

**କ୍ୱାର୍ଜ:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ ନର୍ଦ୍ଧା-ବଡ଼ବିଲ, ଗୋଲାଗାଡିଆ, ବରପଦା, ବୋରାଙ୍ଗ, ପାହାଡପୁର ଓ ପର୍ସଲା ଆଦି ଅଞ୍ଚଳରେ କ୍ୱାର୍ଜ ଯଥେଷ୍ଟ ମାତ୍ରାରେ ଗଚ୍ଛିତ ରହିଛି ।

**ଭାନାଡ଼ିୟମ୍:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ କେନ୍ଦୁଝର, ନୂଆସାହି, ସାହାପଡ଼ା, ପାଟଣା ଆଦି ସ୍ଥାନରେ ଭାନାଡ଼ିୟମ୍ ଗଚ୍ଛିତ ରହିଛି ।

**ଖଡ଼ିପଥର:** ବୈତରଣୀ ନଦୀ ଅବବାହିକାର ଉପରମୁଣ୍ଡରେ ଅବସ୍ଥିତ କେନ୍ଦୁଝରଗଡ଼ର ଦକ୍ଷିଣ ଓ ପଶ୍ଚିମ ଦିଗରେ ରହିଥିବା ପାହାଡ଼ର ଉତ୍ତର ପାର୍ଶ୍ୱ ପାଦଦେଶରେ ମିଳେ । ଏହା ବ୍ୟତୀତ ଜିଲ୍ଲାର ଧକୋଠା, ତାଳିମପୁର, ଫୁଲଝର ଏବଂ ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ଏହି ପଥର ଗଚ୍ଛିତ ଅଛି ।

ବର୍ତ୍ତମାନ ଦେଶର ବିଭିନ୍ନ ନଦୀ ଅବବାହିକାରେ ଦେଖାଦେଇଥିବା ସମସ୍ୟାଗୁଡିକର ଉପଯୁକ୍ତ ପରିଚାଳନା ନିମନ୍ତେ ସରକାରଙ୍କଠାରୁ ଆରଂଭ କରି ବହୁ ଆନ୍ତର୍ଜାତୀୟ ସଂସ୍ଥା ପଦକ୍ଷେପମାନ ହାତକୁ ନେଇଛନ୍ତି । ଭାରତରେ ବହୁ ନଦୀ ଅବବାହିକା ଅଞ୍ଚଳରେ ନଦୀ ଅବବାହିକା ପରିଚାଳନା ପ୍ରକଳ୍ପ *River Basin Management (RBM)* ଗୁଡିକ କାର୍ଯ୍ୟକାରୀ ହେଉଛି । ଦେଶରେ କାର୍ଯ୍ୟକାରୀ ହେଉଥିବା ଅବବାହିକା ପ୍ରକଳ୍ପଗୁଡିକ ମଧ୍ୟରେ *The Odisha Integrated Irrigated Agriculture and Water Management Investment Programme (OIIAWMIP)* ଏକ ସଦ୍ୟତମ ପ୍ରକଳ୍ପ । ସବୁଠୁ ଖୁସିର ଖବର, ଏହି ପ୍ରକଳ୍ପଟି ଏକ 'ପାଇଲଟ୍ ପ୍ରକଳ୍ପ' ଭାବେ ଓଡ଼ିଶାର ବୈତରଣୀ ନଦୀ ଅବବାହିକାରେ କାର୍ଯ୍ୟକାରୀ ହେଉଛି । ଏହି ପ୍ରକଳ୍ପଟି ଗତ ୨୦୦୮ ମସିହାରୁ ଆରଂଭ ହୋଇ ୨୦୧୮ ମସିହା ପର୍ଯ୍ୟନ୍ତ ୧୦ ବର୍ଷ ଧରି ଚାଲିବ । ଏହି ପ୍ରକଳ୍ପ ଜରିଆରେ ବୈତରଣୀ ନଦୀ ଅବବାହିକାର ଉନ୍ନତି ପାଇଁ ମୋଟ ୧୫୮ ନିୟୁତ ଆମେରିକୀୟ ଡଲାର ଖର୍ଚ୍ଚ ହେବାର ଯୋଜନା ରହିଛି ।

[***Sources***

*1. The Baitaranee River Basin -State of Odisha, India, Contribution to the River Basin Study in Spain 24-28 May, 2010 by Arnaud Cauchois, Senior Water Resource Management Specialist, Agriculture Natural Resources and Social Services Division, South Asia Department -Asian Development Bank*

୨· କିରଣ ଶଙ୍କର ସାହୁ, କେନ୍ଦୁଝର

୩· ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର, ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡା, ୨୦୧୨, ପୃଷ୍ଠା: ୩୯୦-୩୯୫]



## ଦ୍ୱିତୀୟ ପରିଚ୍ଛେଦ

# ବୈତରଣୀର ପୌରାଣିକ, ଐତିହାସିକ ଓ ଧାର୍ମିକ ପ୍ରେକ୍ଷାପଟ

## ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ: ଗୋନାସିକା

*(Gonasika: the origin of the river Baitaranee)*



ଗୋନାସିକା: ବୈତରଣୀର ଉତ୍ପତ୍ତି ସ୍ଥଳ

ମା' ବୈତରଣୀ ହେଉଛନ୍ତି ପୁରାଣ ବର୍ଣ୍ଣିତ ଗୋନାସିକା ପର୍ବତ ରଜାଙ୍କ ଜ୍ୟେଷ୍ଠ କନ୍ୟା ଏବଂ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ; ତିନି ଲୋକରେ ପ୍ରବାହିତ ଏକ ପବିତ୍ର ନଦୀ । ଏହି ନଦୀଟି କେନ୍ଦୁଝର ଜିଲ୍ଲାର ଗୋନାସିକା ପର୍ବତମାଳାରୁ ଉତ୍ପତ୍ତିଲାଭ କରିଛି । ଏଣୁ ଗୋନାସିକାକୁ ବୈତରଣୀ କ୍ଷେତ୍ରର ଆରଂଭ ସ୍ଥଳ ବା 'ଆଦି ବୈତରଣୀ ଧାମ' ବୋଲି କୁହାଯାଏ । ପୁଣ୍ୟତୋୟା ବୈତରଣୀ ଅନ୍ୟ ଅର୍ଥରେ **'ଓଡ଼ିଶାର ଗଙ୍ଗା'** ଭାବେ ପରିଚିତ । ଗଙ୍ଗା ନଦୀଠାରୁ ବୈତରଣୀ ବହୁ ପ୍ରାଚୀନ ବୋଲି ଗରୁଡ଼ ପୁରାଣରେ ବର୍ଣ୍ଣିତ ରହିଛି । ବୈତରଣୀ ମାତା ଗଙ୍ଗା ମାତାଙ୍କଠାରୁ ବାର ବ୍ରହ୍ମ ବର୍ଷ ଜ୍ୟେଷ୍ଠା । କୁହାଯାଏ ବୈତରଣୀ ନଦୀ ହିଁ ପ୍ରଥମେ ମର୍ତ୍ତ୍ୟଲୋକକୁ ଆଗମନ କରିଥିଲେ । ବୈତରଣୀ ମର୍ତ୍ତ୍ୟପୁରରେ ପ୍ରବାହିତ ହେବାର ବାର ବ୍ରହ୍ମ ବର୍ଷ ପରେ ଗଙ୍ଗା ମର୍ତ୍ତ୍ୟଲୋକରେ ଆବିର୍ଭୂତ ହୋଇଥିଲେ । ଗଙ୍ଗାଙ୍କଠାରୁ ବୟସରେ ବଡ଼ ଏବଂ ଏହାର ପ୍ରାଚୀନତା କାରଣରୁ ବୈତରଣୀକୁ **'ବୁଢା ବୈତରଣୀ'** ବୋଲି କୁହାଯାଏ । ତେବେ ବୈତରଣୀ ନଦୀକୁ 'ବୁଢା' ପରିବର୍ତ୍ତେ 'ବୁଢି ବୈତରଣୀ' କାହିଁକି କୁହାଯାଉନି, ସେଥିନେଇ ବିଶେଷ ସନ୍ତୋଷଜନକ ଉତ୍ତର ନାହିଁ । ସେହିଭଳି ମୟୂରଭଞ୍ଜ ଜିଲ୍ଲାରେ ପ୍ରବାହିତ ବଳଙ୍ଗ ନଦୀକୁ 'ବୁଢା ବଳଙ୍ଗ' ବୋଲି କୁହାଯାଇଥାଏ ।

କେବଳ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ 'ବୈତରଣୀ'କୁ ଏକ ପବିତ୍ର ନଦୀ ଭାବେ ପୂଜା କରାଯାଇଥାଏ । ଏହାକୁ **'ପୁଣ୍ୟତୋୟା ବୈତରଣୀ'** ବୋଲି ସମ୍ବୋଧନ କରାଯାଇଥାଏ । ବୈତରଣୀରେ ସ୍ନାନ କଲେ କୋଟି ଜନ୍ମର ପୁଣ୍ୟ ଫଳ ମିଳିଥାଏ ବୋଲି ପୁରାଣରେ ବର୍ଣ୍ଣିତ ରହିଛି । ଏଣୁ ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକାଠାରୁ ଆରଂଭ କରି କେନ୍ଦୁଝର, ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି, ମୟୂରଭଞ୍ଜ, ଯାଜପୁର, ଭଦ୍ରକ, କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ସ୍ଥାନରେ ବୈତରଣୀ ଘାଟରେ ବାରୁଣୀ ବୁଡ଼ ପକାଯାଇଥାଏ । ପୁରାଣମାନଙ୍କରେ ଭାରତବର୍ଷର ପ୍ରମୁଖ ତୀର୍ଥମାନଙ୍କ ମଧ୍ୟରେ ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ରକୁ ପ୍ରାଧାନ୍ୟ ଦିଆଯାଇଛି ।

ବୈତରଣୀ ନଦୀଟି ଗୋରୁ ନାକପୁଡ଼ା ଆକାରର ଏକ ପଥରରୁ ଉତ୍ପତ୍ତିଲାଭ କରିଥିବାରୁ ଏ ସ୍ଥାନର ନାମ 'ଗୋନାସିକା' ହୋଇଛି ବୋଲି ବିଶ୍ୱାସ କରାଯାଏ । 'ଗୋନାସିକା' ଶବ୍ଦଟିକୁ ବିଶ୍ଳେଷଣ କଲେ ଏପରି ହୋଇଥାଏ- 'ଗୋ' ଅର୍ଥ ଗୋରୁ ଏବଂ 'ନାସିକା' ଅର୍ଥ 'ନାକ' । ଅର୍ଥାତ୍ ଗୋରୁ ନାକପୁଡ଼ାରୁ ବୈତରଣୀ ନିର୍ଗତ ହେଉଥିବାରୁ ଏହି ପବିତ୍ର ସ୍ଥାନର ନାମ ଗୋନାସିକା ।

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ର ଏହି ସ୍ଥାନରେ ହିଁ ଗୋନାସିକା ନନ୍ଦିନୀ ଶିଶୁ ବୈତରଣୀ ପ୍ରଥମ ଭୂମିଷ୍ଠ ହୋଇ କୁଆଁ ଡାକ ଛାଡ଼ିଛନ୍ତି । ଆଉ ଏଠାରୁ ଦୀର୍ଘ ୩୬୫ କିଲୋମିଟର ଯାତ୍ରା ପଥ ଅତିକ୍ରମ କରିବା ଅବସରରେ ଶିଶୁ ବୈତରଣୀ କ୍ରମେ କିଶୋରୀ ଓ ପରେ ଯୁବତୀ ଓ ବୟସ୍କା ହେବାର ସୌଭାଗ୍ୟ ଲାଭ କରିଛନ୍ତି । ବୈତରଣୀମାତା ନିଜର ଯାତ୍ରା କାଳରେ ବହୁ ବାଧାବିଘ୍ନକୁ ଅତିକ୍ରମ କରି ଶେଷରେ ଚାନ୍ଦବାଲିର କିଛି ବାଟ ଆଗକୁ ଧାମରା ମୁହାଣର ସାମାନ୍ୟ ପୂର୍ବରୁ

ନଳିତାପାଟିଆ (କେନ୍ଦ୍ରାପଡ଼ା)ଠାରେ ବ୍ରାହ୍ମଣୀ ସହିତ ମିଳିତ ହୋଇ ଶେଷରେ ବଙ୍ଗୋପ ସାଗର (କଳିଙ୍ଗ ସାଗର)ରେ ପଡ଼ିଛନ୍ତି ।

## ଜୁଆଙ୍ଗ ଭଗିନୀ ବୈତରଣୀ

*(Baitaranee; the sister of the Juang tribal group)*

ଏ ଧରାବକ୍ଷରେ ଜୁଆଙ୍ଗମାନେ ନିଜକୁ ସର୍ବପ୍ରାଚୀନତମ ଜନଜାତି ବୋଲି ଦାବି କରିଥା'ନ୍ତି । ପର୍ବତରଜା ଗୋନାସିକାଙ୍କୁ ସେମାନଙ୍କ ପିତୃତୁଲ୍ୟ ମନେ କରନ୍ତି । ଅପରପକ୍ଷେ, ମା' ବୈତରଣୀ ହେଉଛନ୍ତି ପର୍ବତରଜା ଗୋନାସିକାଙ୍କ କନ୍ୟା । ଏଣୁ ସଂପର୍କରେ ଜୁଆଙ୍ଗ ଜନଜାତି ଗୋଷ୍ଠୀ ଓ ମା' ବୈତରଣୀ ଭାଇ-ଭଉଣୀ ବୋଲି ଜୁଆଙ୍ଗମାନେ ଦାବି କରନ୍ତି ।

ଶିଶୁ ବୈତରଣୀ ଯେତେବେଳେ ଗୋନାସିକା ପର୍ବତଙ୍କ ନିକଟରୁ ଜନ୍ମଲାଭ କରି ପ୍ରଥମ ଭୂମିଷ୍ଠ ହୋଇଛନ୍ତି ତାଙ୍କର ପ୍ରଥମ 'କୁଆଁ' ଡାକ ଏଠାରେ ବସବାସ କରୁଥିବା ଆରଣ୍ୟକ ଜନଜାତି ଜୁଆଙ୍ଗମାନେ ଶୁଣି ପାରିଛନ୍ତି । ଏହି ଜୁଆଙ୍ଗମାନେ ବାଳୁତା ବୈତରଣୀକୁ ଲାଳନପାଳନ କରି ଛୋଟରୁ ବଡ଼ କରିଛନ୍ତି । ଏଣୁ ବୈତରଣୀ ଓ ଗୋନାସିକା ସହିତ ଏଠାକାର ପ୍ରାଚୀନ ଜନଜାତି ଜୁଆଙ୍ଗମାନଙ୍କର ଏକ ବିଶେଷ ଭାବଗତ ସଂପର୍କ ରହିଛି । ଜୁଆଙ୍ଗମାନେ ବୈତରଣୀ ନଦୀକୁ ଗୋନାସିକା ରଜାର କନ୍ୟା ଏବଂ ନିଜକୁ 'ଋଷିପୁତ୍ର' ବୋଲି ସମ୍ବୋଧନ କରିଥା'ନ୍ତି । ବୈତରଣୀ ନଦୀକୁ ଜୁଆଙ୍ଗମାମାନେ ସେମାନଙ୍କର 'ଭଗିନୀ' ବୋଲି ମାନିଥା'ନ୍ତି ।

## ବାଳିକା ବୈତରଣୀର 'ଅପହୃତ ଶୈଶବ'

*(Lost childhood of little Baitaranee)*

ବୈତରଣୀ ନଦୀ କୂଳରେ ବିରଜା କ୍ଷେତ୍ରରେ ଯେଉଁ ରାଜା **'ଯଯାତି'** ଅଶ୍ୱମେଧ ଯଜ୍ଞ କରିଥିଲେ ତାହା ଏକ ପୌରାଣିକ ଚରିତ୍ର କି ଐତିହାସିକ ଚରିତ୍ର



ଗୋନାସିକା ଋଷିଟାଙ୍କର ନିକଟରେ ଶିଶୁ ବୈତରଣୀ

ବିତର୍କସାପେକ୍ଷ । ଇତହାସର ଚରିତ୍ର କୁହାଯାଉଥିବା ସୋମବଂଶୀ ରାଜା ଦ୍ୱିତୀୟ ଯଯାତି କେଶରୀ (ଖ୍ରୀ·ଅ· ୧୦୨୫ – ଖ୍ରୀ·ଅ· ୧୦୪୦) ବିରଜା କ୍ଷେତ୍ର ଯାଜପୁରର ଦଶାଶ୍ୱମେଧ ବୈତରଣୀ ଘାଟରେ ଯଜ୍ଞ କରି ଦିଗ୍‌ବିଜୟୀ ସମ୍ରାଟ ହୋଇପାରିଥିଲେ । ଅପରପକ୍ଷେ, ପଦ୍ମପୁରାଣ (ଭୂମିଖଣ୍ଡ) ଅନୁସାରେ, ରାଜା ଯଯାତି ହେଉଛନ୍ତି ଜଣେ ପୌରାଣିକ ଚରିତ୍ର । ରାଜା ଯଯାତିଙ୍କ ନିମନ୍ତ୍ରଣ ରକ୍ଷା କରି ସ୍ୱୟଂ ବ୍ରହ୍ମା ବିରଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞ କାର୍ଯ୍ୟ ସମାପନ ନିମନ୍ତେ ସ୍ୱର୍ଗର ଦେବତାମାନଙ୍କ ସହ ସୁରଗଙ୍ଗା ବୈତରଣୀଙ୍କୁ ମର୍ତ୍ତ୍ୟକୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ବୈତରଣୀର ତୀବ୍ର ଜଳସ୍ରୋତ କେଉଁଠି ପତିତ ହେବ ତାହା ହିଁ ପ୍ରମୁଖ ଚିନ୍ତାର କାରଣ ପାଲଟିଥିଲା । ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ସ୍ୱର୍ଗ ସରଣୀ ବୈତରଣୀ ମର୍ତ୍ତ୍ୟରେ ପ୍ରବାହିତ ହେବା ପାଇଁ ଗୋନାସିକା ପର୍ବତର ଶୀର୍ଷ ଦେଶରେ ପତିତ ହେଲେ ।

**[ ପଦ୍ମ ପୁରାଣ (ଓଡ଼ିଆ) ଭୂମିଖଣ୍ଡ -ଗୋପୀନାଥ କରଶର୍ମା (ନୂତନ ମୁଦ୍ରଣ), ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶାବଜାର, କଟକ ]**

ବୈତରଣୀ ମର୍ତ୍ତ୍ୟରେ ଯେଉଁ ସ୍ଥାନରେ ପ୍ରକାଶ ପାଇଲେ ତାହା ଆରଣ୍ୟକ ଜାତି 'ଜୁଆଙ୍ଗ'ମାନଙ୍କର କ୍ରୀଡ଼ାସ୍ଥଳୀ ହୋଇଥିବାରୁ ସେମାନେ ପ୍ରଥମେ ଏହାର ମହତ୍ୱ ବୁଝି ପାରି ନଥିଲେ । ଗୋନାସିକାର ବିଶାଳ ପଥର ବକ୍ଷରେ ଆକସ୍ମିକ ଜଳପ୍ରବାହ ଦେଖି ଜୁଆଙ୍ଗମାନେ ତାହାର ନିର୍ଗମ ପଥ ପ୍ରତିରୋଧ କରିବା ପାଇଁ ଉଦ୍ୟମ କରିଥିଲେ । ଜୁଆଙ୍ଗମାନେ ନିକଟରେ ପଡ଼ିଥିବା ଏକ ଗୋରୁମୁଣ୍ଡକୁ ଗୋଟାଇ ଆଣି ଗର୍ତ୍ତଦ୍ୱାରରେ ବନ୍ଦ କରିବାକୁ ଚେଷ୍ଟା କଲେ । ମାତ୍ର ଏହା ଦ୍ୱାରା ଜଳ ପ୍ରବାହ ବନ୍ଦ ହୋଇପାରିଲା ନାହିଁ । ଏହି ଜଳ ଗୋ-ମୁଣ୍ଡରେ ଥିବା ଦୁଇ ନାକପୁଡ଼ା ଦେଇ ନିର୍ଗତ ହେବାରେ ଲାଗିଲା । ଗୋରୁ ନାସିକାପୁଡ଼ାରୁ ଜଳ ନିର୍ଗତ ହେବାରୁ ଏହି ସ୍ଥାନର ନାମ ମଧ୍ୟ ଗୋନାସିକା ହେଲା ।

ବୈତରଣୀ ନଦୀର ପବିତ୍ର ଜଳଧାର ଗୋରକ୍ତରଂଜିତ ହୋଇ ଅପବିତ୍ର ହେବାରୁ ଜଳଧାର ଉତ୍ପତ୍ତି ସ୍ଥଳରୁ କିଛି ଦୂର ପ୍ରବାହିତ ହୋଇ ଗୁପ୍ତଗଙ୍ଗା ଗ୍ରାମଠାରେ ଅନ୍ତର୍ଧାନ ହୋଇଗଲେ । ଏହି ସ୍ଥାନକୁ 'ଗୁପ୍ତଗଙ୍ଗା' ବୋଲି କୁହାଯାଏ । ମାତ୍ର ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ଗୁପ୍ତଗଙ୍ଗାର ଅନତି ଦୂରରେ ଏକ 'ବ୍ରହ୍ମ କୁଣ୍ଡ' ସ୍ଥାପନ କରାଗଲା । ସେଠାରେ ଗୁପ୍ତ ହୋଇଥିବା ବୈତରଣୀ ପୁନର୍ବାର ଆବିର୍ଭାବ ହେଲେ ।

ଗୋନାସିକା ଅଞ୍ଚଳରେ ବୈତରଣୀର କ୍ଷୁଦ୍ର ଧାରକୁ ଦେଖିଲେ ବିଶ୍ୱାସ କରିହେବନି ଯେ, ଏହା ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା (ଧାମରା ଓ ତାଳଚୁଆ)ରେ ପ୍ରବାହିତ ହେଉଥିବା ସେଇ ବିଶାଳ ଓ ପ୍ରଶସ୍ତ ନଦୀ । ବୈତରଣୀ ନଦୀ ଗୋନାସିକାରୁ କିଛି ବାଟ ପ୍ରବାହିତ ହେବା ପରେ ଗୁପ୍ତଗଙ୍ଗାଠାରେ ପାତାଳି ହୋଇଯାଇଛନ୍ତି । ଗୁପ୍ତଗଙ୍ଗା ନିକଟରେ ପାତାଳି ହୋଇ କିଛି ବାଟ ପରେ ଶିଶୁ ବୈତରଣୀ 'ଋଷି ଟାଙ୍ଗର' ନାମକ ପ୍ରସ୍ତର ଶଯ୍ୟା ନିକଟରେ ପୁଣି ସ୍ୱଳ୍ପ ସମୟ ପାଇଁ

ଦେଖା ଦେଇଛନ୍ତି । 'ଋଷି ଟାଙ୍ଗର'ର ଏକ ଛୋଟ ଗର୍ତ୍ତରୁ ବୈତରଣୀ ନିର୍ଗତ ହୋଇ ଆଶ୍ଚର୍ଯ୍ୟଜନକ ଭାବେ ପୁନର୍ବାର ପାତାଳି ହୋଇଯାଇଛନ୍ତି । ଦୁଇଦୁଇ ଥର ପାତାଳି ହେବା ପରେ ବୈତରଣୀ 'ବ୍ରହ୍ମ କୁଣ୍ଡ'ଠାରେ ଆବିର୍ଭୁତ ହୋଇଛନ୍ତି ।

ବ୍ରହ୍ମକୁଣ୍ଡରେ ବୈତରଣୀର ଏକ ଖୁବ୍ ଛୋଟ ଧାର ପତିତ ହୋଇଥାଏ । ଆଉ ଏହିଠାରୁ ଅନବରତ ଭାବେ ମାତା ବୈତରଣୀ ନିଜର ଗନ୍ତବ୍ୟସ୍ଥଳ ଅଭିମୁଖେ ଯାତ୍ରା କରିଛନ୍ତି । ବ୍ରହ୍ମକୁଣ୍ଡରୁ କିଛି ବାଟ ଆଗକୁ ଗଲାପରେ ଶିଶୁ ବୈତରଣୀ ସହିତ ଅନେକ ଛୋଟବଡ଼ ଜଙ୍ଗଲୀ ଝର ମିଶିଛନ୍ତି । ଏସବୁ ଜଳସ୍ରୋତ କ୍ରମେ ବୈତରଣୀକୁ ଅଧିକ ପୁଷ୍ଟ କରିଛନ୍ତି ।

ବୈତରଣୀ ଗୋନାସିକାରୁ ବାହାରି ୪୯ ନମ୍ବର ଜାତୀୟ ରାଜପଥ ଅତିକ୍ରମ କରି ତଣ୍ଡିଯୋଡ଼ା ଦେଇ ବାଂଶପାଳ ନିକଟରେ ପହଞ୍ଚିଲାବେଳକୁ ଶିଶୁ ଅବସ୍ଥାରୁ କିଶୋରୀ ହୋଇଛି । କିଶୋରୀଟିର ଶରୀରରେ ଦେଖା ଦେଉଥିବା ପରିବର୍ତ୍ତନ ଭଳି ବାଂଶପାଳ ନିକଟରେ ବୈତରଣୀର ଶରୀର ସମୃଦ୍ଧ ହୋଇଛି । ତନୁପାତଳୀ ବୈତରଣୀ କ୍ରମେ ମୋଟି ହୋଇଛି । ଶରୀରରେ ମେଦବୃଦ୍ଧି ଘଟିଛି । ବାସ୍ତବରେ ବାଂଶପାଳ ବ୍ଲକ୍ ସଦର ମହକୁମାରେ ବୈତରଣୀର ପ୍ରସ୍ତର ଶଯ୍ୟାର ଦୃଶ୍ୟ ଖୁବ୍ ମନୋରମ । ଏହି ଦୃଶ୍ୟକୁ ଆପଣ କେବେ ସ୍ୱଚକ୍ଷୁରେ ଦେଖିଲା ପରେ ଜାଣିପାରିବେ କିଶୋରୀ ବୈତରଣୀର କମନୀୟ ରୂପରାଜିକୁ । ଏହାପରେ ବୈତରଣୀ କେନ୍ଦୁଝର ଜିଲ୍ଲାର ଝୁଂପୁରା, ଯୋଡ଼ା, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ଚଂପୁଆ, ସ୍ୱାମ୍ପାଟଣା, ଆନନ୍ଦପୁର, ହାଟଡ଼ିହି ଦେଇ ଭଦ୍ରକ, ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାକୁ ପ୍ରବେଶ କରିଛି । କ୍ରମେ ବୈତରଣୀ ମାତା ବୟସ୍କ ହୋଇଛନ୍ତି ।

ଶିଶୁ ବୈତରଣୀ କେନ୍ଦୁଝର ଜିଲ୍ଲାରେ ନିଜର ଲୀଳାଖେଳା ଜମେଇ ପିଲାଦିନକୁ ଖୁବ୍ ସ୍ମରଣୀୟ କରିପାରିଛନ୍ତି । ମାତ୍ର ସେଇ ବାଳିକା ବୈତରଣୀର ଏନ୍ଟୁଡ଼ିଶାଳ, ଗାଁ ଦାଣ୍ଡ, ଧୂଳିଘର, ପିଲାଦିନ ଆଜି ବିପନ୍ନ । ବୈତରଣୀର କମନୀୟ ଶୈଶବ ଭୂଲୁଣ୍ଠିତ । କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ ଆଖିବୁଜା ଖଣି ଖନନ ଓ ଅନ୍ଧ ଶିଳ୍ପାୟନ ପ୍ରଭାବରେ ବୈତରଣୀର ପିଲାଦିନ ଅପହୃତ ହୋଇଛି । ଖଣିଜ ବର୍ଜ୍ୟ ଓ କାରଖାନାର ବିଷାକ୍ତ ରାସାୟନିକ ମିଶ୍ରଣ ଯୋଗୁଁ ବୈତରଣୀ ଜରାଜୀର୍ଣ୍ଣ ହୋଇଛି । ଗୋଟିଏ ରୋଗିଣା ଶିଶୁ ଭଳି ବୈତରଣୀ ଏବେ କ୍ଲାଂତ । କିଏ ଉଦ୍ଧାର କରିବ ବୈତରଣୀର ଏହି ଅପହୃତ ଶୈଶବକୁ?

ଅତୀତରେ କେନ୍ଦୁଝରର ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ (ଖ୍ରୀ·ଅ· ୧୬୫୪-ଖ୍ରୀ·ଅ· ୧୬୮୮) ବୈତରଣୀ ନଦୀର ଆବିର୍ଭାବ ସ୍ଥଳକୁ ଆବିଷ୍କାର କରି ସେଠାରେ 'ଆଦ୍ୟ ବୈତରଣୀ ଲକ୍ଷ୍ମୀ ନାରାୟଣ ଭଞ୍ଜ' ନାମରେ ଏକ ଶିଳାଲେଖ ସ୍ଥାପନ କରିଯାଇଛନ୍ତି । ସଂପ୍ରତି ଏହି ଶିଳାଲେଖଟି ଗୋନାସିକାଠାରେ ଅବସ୍ଥିତ ।

# ବୈତରଣୀ: ସ୍ୱର୍ଗର ଏକ ନଦୀ

*(the Baitaranee; a river of the heaven)*

ବୈତରଣୀ ହେଉଛି ସ୍ୱର୍ଗରେ ପ୍ରବାହିତ ଦେବତାମାନଙ୍କର ନଦୀ । ମର୍ତ୍ତ୍ୟପୁରରେ ପ୍ରବାହିତ ବୈତରଣୀ ନଦୀର ଅନ୍ୟ ନାମ 'ଶୋଣିତ-ପୁରା-ଗଂଗା' ଅଟେ । ବୈତରଣୀ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳପୁରରେ ପ୍ରବାହିତ ହୋଇ ତ୍ରିପୁରକୁ ତ୍ରାଣ କରୁଥିବାରୁ ଏହାର ନାମ ବୈତରଣୀ ହୋଇଛି । ଗଙ୍ଗା ପରି ବୈତରଣୀ ସ୍ୱର୍ଗଗାମିନୀ ଅଟେ । ଗଙ୍ଗାଠାରୁ ବାର ବ୍ରହ୍ମ ବର୍ଷ ଜ୍ୟେଷ୍ଠା ବୈତରଣୀକୁ ସ୍ୱର୍ଗର ସରଣୀ କୁହାଯାଏ । ଏହା ଏକ ପବିତ୍ର ନଦୀ । ମର୍ତ୍ତ୍ୟଲୋକରେ ଏହାର କୂଳେକୂଳେ ୧୦୮ ଶିବଲିଙ୍ଗ ରହିଛି । ଗୋନାସିକାର ବ୍ରହ୍ମେଶ୍ୱରଙ୍କଠାରୁ ଆରଂଭ କରି ଆରଡ଼ିର ବାବା ଆଖଣ୍ଡଳମଣିଙ୍କ ପର୍ଯ୍ୟନ୍ତ ବୈତରଣୀ କୂଳେକୂଳେ ରହିଛି ଅଜସ୍ର ଶିବଲିଙ୍ଗ । ସ୍ୱର୍ଗର ଏହି ନଦୀଟି ମର୍ତ୍ତ୍ୟରେ ମଧ୍ୟ ଏକ ଦେବ ତୁଲ୍ୟ ନଦୀ ଭାବେ ପୂଜିତ ହୋଇ ଆସୁଛନ୍ତି ।

ସୀତାବିଞ୍ଜି ଯେପରି ବାଲ୍ମିକୀ ଋଷିଙ୍କର ଆଶ୍ରମ, ସେହିଭଳି ଶୀର୍ଷ ବୈତରଣୀ ତୀର୍ଥ ଗୋନାସିକା ହେଉଛି ଜହ୍ନୁ ଓ ଭାର୍ଗବ ଋଷିଙ୍କ ଆଶ୍ରମ ସ୍ଥଳ । ଗଙ୍ଗା ଓ ବୈତରଣୀ ନଦୀ ଦୁଇ ସଉତୁଣୀ ଅଟନ୍ତି । ଗଙ୍ଗାଙ୍କର ଜନ୍ମ ହେବାର ୧୨ ବ୍ରହ୍ମ ବର୍ଷ ଆଗରୁ ବୈତରଣୀଙ୍କର ଜନ୍ମ ହୋଇଛି । ଭଗବାନଙ୍କର ବାମନ ଅବତାର ବେଳେ ବଳିକୁ ପାତାଳରେ ଚାପିବା ପରେ ବ୍ରହ୍ମା ନିଜ କମଣ୍ଡଳୁ ମଧ୍ୟରୁ ଗଙ୍ଗାଙ୍କୁ ବାହାର କରି ବାମନ ବିଷ୍ଣୁଙ୍କର ପାଦ ଧୋଇଥିଲେ । ମାତ୍ର ଗଙ୍ଗା ପ୍ରଭୁ ବିଷ୍ଣୁଙ୍କର ବାମ କନିଷ୍ଠ ଅଙ୍ଗୁଳି ମଧ୍ୟରେ ଗୁପ୍ତ ହୋଇଯାଇଥିଲେ । ବ୍ରହ୍ମା କମଣ୍ଡଳରୁ ପାଦରେ ଗଙ୍ଗା ଜଳ ଢାଳିବା ସମୟରେ ଯେଉଁ ଜଳ ପୃଥିବୀରେ ଖସି ପଡିଲା ତାହା ଗୋନାସିକା ପର୍ବତର ଶୀର୍ଷ ଦେଶରେ ପଡ଼ି ଗିରି ବକ୍ଷରେ ଗୁପ୍ତ ହୋଇଗଲା । ଆଉ ପରବର୍ତ୍ତୀ କାଳରେ ଏହା ହିଁ ବୈତରଣୀ ନାମରେ ପ୍ରସିଦ୍ଧିଲାଭ କଲା ।

ବୈତରଣୀକୁ ଧରା ପୃଷ୍ଠରେ ପ୍ରବାହିତ ହେବା ପାଇଁ ବ୍ରହ୍ମା ଇଛା ପ୍ରକାଶ କଲେ ଏବଂ ତାଙ୍କୁ ବିରଜା କ୍ଷେତ୍ର ପର୍ଯ୍ୟନ୍ତ ଆଣିବାକୁ ଚାହିଁଲେ । ଏ ବିଷୟରେ ଏକ ପୌରାଣିକ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ । ସତ୍ୟ ଯୁଗରେ ରାଜା ଯଯାତିଙ୍କ ଅନୁରୋଧ ରକ୍ଷା କରି ବ୍ରହ୍ମା ବିରଜା କ୍ଷେତ୍ରରେ ଏକ ଯଜ୍ଞର ଆୟୋଜନ କରୁଥିଲେ । ବ୍ରହ୍ମା ସମସ୍ତ ଦେବଦେବୀଙ୍କୁ ଏହି ଯଜ୍ଞକୁ ନିମନ୍ତ୍ରଣ କରିବା ସହିତ ଗୁପ୍ତଗଙ୍ଗାଠାରେ ଆତ୍ମଗୋପନ କରିଥିବା ବୈତରଣୀଙ୍କୁ ମଧ୍ୟ ଯଜ୍ଞ ସ୍ଥଳକୁ ଆସିବାକୁ ନିବେଦନ କରିଥିଲେ । ତେବେ ଯଜ୍ଞ କେବେ ହେବ ଏବଂ ଯଜ୍ଞ ହେଉଛି ବୋଲି ସେ କିଭଳି ଜାଣିପାରିବେ, ଏ ସଂପର୍କରେ ବୈତରଣୀ ବ୍ରହ୍ମାଙ୍କୁ ପଚାରିଥିଲେ । ଯେଉଁ ସମୟରେ ଶଙ୍ଖ, ଘଣ୍ଟ, ମନ୍ତ୍ର ଉଚ୍ଚାରଣର ଧ୍ୱନି ଶୁଣିବ, ସେହିସମୟରେ ଯଜ୍ଞ ଆରଂଭ ହେଲା ବୋଲି ମନେକରି ଯଜ୍ଞ ସ୍ଥଳକୁ ଆସିବାକୁ ବ୍ରହ୍ମା ଦେବୀ ବୈତରଣୀକୁ କହିଲେ ।

କିଛି ଦିନ ଗତ ହେଲା । ଦିନେ ଗୁପ୍ତଗଙ୍ଗା ପର୍ବତର ପାଦଦେଶରେ ବାସ କରୁଥିବା ଜୁଆଙ୍ଗ

ପଲ୍ଲୀର ଜୁଆଙ୍ଗମାନଙ୍କର ପର୍ବ ଆଗତହେଲା । ଜୁଆଙ୍ଗମାନେ ମହୁଲି, ହାଣ୍ଡିଆ ସଲପ ରସ ପାନକରି ଗୋନାସିକା ପାହାଡ଼ ପାଦଦେଶରେ ବାଦ୍ୟବଜାଇ ଆନନ୍ଦରେ ନାଚିବାକୁ ଆରଂଭ କଲେ । ଜୁଆଙ୍ଗମାନଙ୍କର ଚାଙ୍ଗୁ ବାଦ୍ୟର ନାଦ ଶୁଣି ବୈତରଣୀ ଦେବୀ ବ୍ରହ୍ମାଙ୍କର ବିରଜା ଯଜ୍ଞ ଆରଂଭ ହେଲା ବୋଲି ଭ୍ରମରେ ପଡ଼ି ତରବର ଭାବେ ଗୁପ୍ତଗଙ୍ଗା (ଗୋନାସିକା) ପାହାଡ଼ରୁ ବାହାରିପଡ଼ିଲେ । ମାତ୍ର ଏହା ଜାଣିପାରି ବ୍ରହ୍ମା ଅପ୍ରସ୍ତୁତ ହୋଇପଡିଥିଲେ । ସହସା ଭଗବାନ ବ୍ରହ୍ମା ମର୍ତ୍ତ୍ୟଲୋକକୁ ଆଗମନ କରି ଗୋନାସିକା ନିକଟରେ ଏକ କୁଣ୍ଡ (ଗୋନାସିକାସ୍ଥିତ ବ୍ରହ୍ମକୁଣ୍ଡ) ସ୍ଥାପନ କରି ସେଥିରେ ବୈତରଣୀ ମାତାଙ୍କୁ ସଂସ୍କାର କରି ଆଗକୁ ପ୍ରବାହିତ ହେବାକୁ ଅନୁମତି ଦେଲେ । ଗୁପ୍ତଗଙ୍ଗାରୁ ବାହାରିପଡ଼ି ବୈତରଣୀ ଆଉ ପଛକୁ ଫେରିନାହାନ୍ତି । ଆଗକୁ ଆଗକୁ ମାଡ଼ି ଯାଜପୁର ବିରଜା କ୍ଷେତ୍ରରେ ପହଞ୍ଚିଯାଇଥିଲେ । ମର୍ତ୍ତ୍ୟପୁରରେ ସର୍ବପ୍ରଥମେ ପ୍ରବାହିତ ହୋଇଥିବା ଏହି ଧାର ବୈତରଣୀ ନଦୀ ଭାବେ ପ୍ରଖ୍ୟାତ ହେଲେ । ଗଙ୍ଗାଙ୍କର ନବଧା ଭାଗରୁ ବୈତରଣୀ ହେଉଛନ୍ତି ଆଦ୍ୟ ଭାଗ ।

**[ତଥ୍ୟ ସହାୟତା: ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର (୨୦୧୨), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା]**

## ବୈତରଣୀର 'ନାଁ ଦିଆ'

*(Etymology of the Baitaranee)*

ବୈତରଣୀର ଅନେକ ନାମ ରହିଛି । ନଦୀ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳପୁରରେ ପ୍ରବାହିତ ହୋଇ ଏହି ତ୍ରିପୁରକୁ ତ୍ରାଣ କରୁଥିବାରୁ ଏହାର ନାମ ବୈତରଣୀ ହୋଇଛି । ପୁରାଣ ମତ ଅନୁଯାୟୀ, ଗୁପ୍ତଗଂଗା ପର୍ବତର ଶୀର୍ଷ ଦେଶରେ ଜଳ ଓ ରଜ ଏକତ୍ର ପ୍ରବାହିତ ହୋଇଥାଏ । ବୈତରଣୀ ନଦୀଟି ଗୋନାସିକାରୁ ବାହାରି ଗୁପ୍ତଗଂଗାଠାରୁ ପାତାଳଗାମୀ ହୋଇ ବନ୍ଧେଶ୍ୱର ମନ୍ଦିର ସନ୍ନିକଟ ତ୍ରିବେଣୀ କୁଣ୍ଡଠାରେ ପୁନର୍ବାର ଆବିର୍ଭୁତ ହୋଇଛି । ରଜ ପର୍ବ ସମୟରେ ଜୁଆଙ୍ଗମାନଙ୍କ ଦ୍ୱାରା ବୈତରଣୀ ନଦୀ ପଶୁରକ୍ତ ରଂଜିତ ହେଉଥିବାରୁ ଏହାକୁ 'ଶୋଣିତ ଗଂଗା' କୁହାଯାଇଥାଏ ।

ବୈତରଣୀ ନଦୀର ଅନ୍ୟ ନାମ 'ଶୋଣିତ-ସୁରା-ଗଂଗା' ଅଟେ । କିମ୍ବଦନ୍ତୀ ଅନୁସାରେ, ରାଜା ଯଯାତି କେଶରୀ ବିରଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୁତି ପାଇଁ ବ୍ରାହ୍ମଣମାନଙ୍କର ବ୍ରହ୍ମତ୍ୱର ପରୀକ୍ଷା ନିମନ୍ତେ ବୈତରଣୀ ଜଳଧାରରେ ଅଗ୍ନି ସଂଯୋଗ କରାଇବାକୁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର, ଜଳରେ ଅଗ୍ନି ସଂଯୋଗ କରିବା ସହଜ ନ ହେବାରୁ ନିମନ୍ତ୍ରିତ ବ୍ରାହ୍ମଣମାନେ ଭୟରେ ଯଜ୍ଞସ୍ଥଳ ଛାଡ଼ି ପଳେଇଥିଲେ । ତେବେ ବ୍ରାହ୍ମଣ ସମାଜର ମର୍ଯ୍ୟାଦା ରକ୍ଷା କରିବାକୁ ଯାଇ ଜନୈକ ବୃଦ୍ଧ ବ୍ରାହ୍ମଣ ସ୍ଥାନୀୟ ଜଣେ ଶୁଣ୍ଡି ସହାୟତାରେ ନଦୀ ଜଳଧାରରେ ସୁରା (ମଦ) ଢାଳି ସେଥିରେ

ଅଗ୍ନି ସଂଯୋଗ କରିଥିଲେ । ଏଣୁ ଯାଜପୁରଠାରୁ କେନ୍ଦୁଝର ମଧ୍ୟରେ ବୈତରଣୀର ନାମ **'ଶୋଣିତ-ପୁରା-ଗଂଗା'** ନାମରେ ପରିଚିତ ।

ବୈତରଣୀର ନାମକରଣ ନେଇ ଆଉ ଏକ କିମ୍ବଦନ୍ତୀ ରହିଛି । **ବୈରୋଚନ** ନାମକ ଜଣେ ଦୈତ୍ୟ (ରାକ୍ଷସ) ଏକଦା ଗୋନାସିକା ପାର୍ବତ୍ୟ ଅଞ୍ଚଳରେ ଭ୍ରମଣ କରୁଥିବା ସମୟରେ ସେ ଖୁବ୍ ତୃଷାର୍ତ୍ତ ଅନୁଭବ କରିଥିଲା । ତୃଷାର୍ତ୍ତ ହୋଇ ଦୈତ୍ୟ ବୈରୋଚନ ଗୋନାସିକା ପର୍ବତ ବକ୍ଷକୁ ନିଜ ତ୍ରିଶୁଳରେ ପ୍ରଚଣ୍ଡ ପ୍ରହାର କରିବାରୁ ପଥର ବକ୍ଷ ଫାଟିଯାଇ ସେଠାରୁ ତିନି ଧାର ହୋଇ ଜଳ ପ୍ରବାହିତ ହେବାକୁ ଆରମ୍ଭ କରିଥିଲା । ଏହି ତ୍ରିଧାରବିଶିଷ୍ଟ ଜଳ ପ୍ରବାହକୁ ପରେ **'ବୈରୋଚନୀ'** ବା **'ବୈତରଣୀ'** କୁହାଗଲା ।

ବୈତରଣୀର ଶୀର୍ଷ ଦେଶରେ **ବ୍ରହ୍ମେଶ୍ୱର (ଗୋନାସିକା)**, ବକ୍ଷ ଦେଶରେ **ଝାଡ଼େଶ୍ୱର (ଘସିପୁରା)**, ନାଭି ଦେଶରେ **ବରାହେଶ୍ୱର (ଯାଜପୁର)** ଓ ପାଦଦେଶରେ **ଆଖଣ୍ଡଳେଶ୍ୱର (ଆରଡ଼ି)** କୁଶଳିଂଗ ରହିଛି । ଏହାର ପ୍ରତି ଏକ କୋଶ ଦୂରତାରେ ଜଳ ମଧ୍ୟରେ ଗୋଟିଏ ଗୋଟିଏ କୁଶଳିଂଗ ଥିବାରୁ ଏହାର ଜଳଧାରା ସର୍ବତ୍ର ପବିତ୍ର ଅଟେ । ବୈତରଣୀ ନଦୀର କୂଳେକୂଳେ ଅନେକ ଶୈବକ୍ଷେତ୍ର ରହିଛି । ଗୋନାସିକା ନିକଟବର୍ତ୍ତୀ ବୈତରଣୀ ଜଳର ରଂଗ ବର୍ଷର ଅଧିକାଂଶ ସମୟରେ ଚଂପକ ବର୍ଣ୍ଣ ଭଳି ଦୃଶ୍ୟମାନ ହୋଇଥାଏ । ଏଣୁ ଏହି ଦୃଷ୍ଟିରୁ ବୈତରଣୀକୁ **'ଚଂପାବରଣୀ ବୈତରଣୀ'** ବୋଲି କୁହାଯାଇଥାଏ । ଅପରପକ୍ଷେ, ଗୋନାସିକା ପର୍ବତର ପାଦଦେଶରେ ଅବସ୍ଥିତ ବରୋଦା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ **'ପାଟ ବୈତରଣୀ'** ହୋଇଥିବାରୁ ନଦୀର ନାମ 'ବୈତରଣୀ' ହୋଇଛି ବୋଲି ଆଉ କିଛି ଗବେଷକମାନେ ମତବ୍ୟକ୍ତ କରନ୍ତି ।

ପରମ ବୈଷ୍ଣବ ବ୍ରହ୍ମେଶ୍ୱରଙ୍କ ମନ୍ଦିର ବେଢାରେ ପଶୁବଳି ସଂକ୍ରାନ୍ତରେ ଜୁଆଙ୍ଗମାନେ କହନ୍ତି- ବ୍ରହ୍ମେଶ୍ୱର ନିଖିଳ ଜଗତର ବ୍ରହ୍ମଲିଂଗ ଅଟନ୍ତି । ଗୁପ୍ତଗଂଗାର ବିଶ୍ୱ ଯୋନୀ ମଣ୍ଡଳରୁ ପ୍ରବାହିତ ଜଳଧାର ରଜ ମିଶ୍ରିତ ଅଟେ । ମାତୃରଜ ସହିତ ପିତାର ବ୍ରହ୍ମବୀର୍ଯ୍ୟ ଏହି ପୀଠରେ ବୈତରଣୀ ଜଳରେ ପ୍ରବାହିତ ହୋଇଥାଏ । ପୂର୍ବ ଜନ୍ମରେ ପାପ କରିଥିବା ନାସ୍ତିକମାନେ ଇହ ଜନ୍ମରେ ପଶୁ ଯୋନୀରେ ଜାତ ହୋଇ କୃତ ପାପ କ୍ଷୟ ନିମନ୍ତେ ଏଠାରେ ବଳି ପଡ଼ିଥାନ୍ତି । ବ୍ରହ୍ମେଶ୍ୱର ପୀଠରେ ବୈତରଣୀ ନଦୀ କୂଳରେ ଏହି ପଶୁମାନେ ବଳି ପଡ଼ିବା ପରେ ମୋକ୍ଷପ୍ରାପ୍ତି ପାଉଥିବାରୁ ବୈତରଣୀକୁ ଅନ୍ୟ ଭାଷାରେ 'ବ୍ରହ୍ମତାରିଣୀ' ବୋଲି ମନେ କରାଯାଇଥାଏ ।

[ତଥ୍ୟ ସହାୟତା

**୧. ଶ୍ରୀଭଞ୍ଜ ଭୂମି କେନ୍ଦୁଝରୀ (ପ୍ରଥମ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରିଣ୍ଟିଂ ୱାର୍କସ, ବଡ଼ବିଲ (୧୯୮୦)**

**୨. ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର (୨୦୧୨), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୪୫, ୪୬, ୪୭]**

## ଗୁପ୍ତଗଙ୍ଗା: ନିଖୋଜ ନଈର ଅଦୃଶ୍ୟ ଯାତ୍ରା

*(Guptaganga; the missing river)*

ଗୋଟିଏ ନଦୀ ଭୂମି ଉପରେ ପ୍ରବାହିତ ହେଉଥିବା ଅବସ୍ଥାରେ ହଠାତ୍ କେଉଁଆଡ଼େ ଅନ୍ତର୍ଧାନ ହୋଇଯିବା କିମ୍ବା ନିଖୋଜ ହୋଇଯିବା ଘଟଣା ବାସ୍ତବରେ ଆଶ୍ଚର୍ଯ୍ୟଜନକ ମନେ ହୋଇଥାଏ । ଏହାର ବୈଜ୍ଞାନିକ କାରଣ ଯାହା ବି ହୋଇଥାଉ ନା କାହିଁକି ଏହା ପଛରେ ଅନେକ ଧାର୍ମିକ ବିଶ୍ୱାସ ଓ ପୌରାଣିକ କିମ୍ବଦନ୍ତୀ ରହିଥାଏ ।

ଗୋନାସିକାଠାରୁ ଉତ୍ପତ୍ତିଲାଭ କରିବା ପରେ ବୈତରଣୀ କିଛି ବାଟ ସୂତାଖିଅ ଭଳି ପ୍ରବାହିତ ହୋଇ ଗୁପ୍ତଗଙ୍ଗା ନାମକ ସ୍ଥାନ ନିକଟରେ ଅଦୃଶ୍ୟ ହୋଇଯାଇଛନ୍ତି । କୁହାଯାଏ, ଭଗବାନ ବ୍ରହ୍ମା ଏହି ଗୋନାସିକା ସ୍ଥଳକୁ ସ୍ୱୟଂ ଅବତରଣ କରି ଏଠାରେ ଧ୍ୟାନସ୍ଥ ହୋଇଥିଲେ । ବୋଧହୁଏ ଏହି କାରଣରୁ ଗୋନାସିକାରେ ମହାଦେବ ବ୍ରହ୍ମେଶ୍ୱର ପୂଜା ପାଇଆସୁଛନ୍ତି । ୩୨୧୯ ଫୁଟ ଉଚ୍ଚତାବିଶିଷ୍ଟ ଗୋନାସିକା ପର୍ବତରୁ ବୈତରଣୀ ନଦୀ ବହି ଆସି କିଛି ବାଟ ପରେ ଅଦୃଶ୍ୟ ହୋଇଯାଇଛନ୍ତି । ଅର୍ଥାତ୍ ବୈତରଣୀ ଭୂମି ମଧ୍ୟରେ ପାତାଳି ହୋଇଯାଇଛନ୍ତି । ବୈତରଣୀ ଏଠାରେ ଗୁପ୍ତ ହୋଇଯାଇଥିବାରୁ ଏହି ସ୍ଥାନକୁ **'ଗୁପ୍ତଗଂଗା'** ବୋଲି କୁହାଯାଇଥାଏ ।

ବୈତରଣୀ ନଦୀ ଗୋନାସିକାରୁ ବାହାରି 'ଗୁପ୍ତଗଙ୍ଗା'ଠାରେ କିଛି ବାଟ ପାତାଳି ହୋଇଯାଇ ପୁନର୍ବାର **'ଋଷି ଟାଙ୍ଗର'** ନାମକ ଏକ ବିଶାଳ ପ୍ରସ୍ତର ଚଟାଣରେ ଅଳ୍ପଟିକେ ମୁହଁ ଦେଖାଇ ପୁଣି ପାତାଳି ହୋଇଯାଇଛନ୍ତି । ଶେଷରେ ବ୍ରହ୍ମେଶ୍ୱର ମନ୍ଦିର ନିକଟସ୍ଥ ବ୍ରହ୍ମକୁଣ୍ଡଠାରେ ବୈତରଣୀ ଦୃଶ୍ୟମାନ ହୋଇଛନ୍ତି ।

ଗୋନାସିକାରୁ ବ୍ରହ୍ମକୁଣ୍ଡଯାଏ ବୈତରଣୀର ଏଭଳି ଲୁଚକାଳି ଖେଳ ବାସ୍ତବରେ ଏକ ନିଆରା ଅନୁଭବ ସୃଷ୍ଟି କରିଥାଏ । ତେବେ ବ୍ରହ୍ମକୁଣ୍ଡ ପରଠାରୁ ବୈତରଣୀ ନଦୀ ଅନ୍ୟ କେଉଁଠାରେ ଆଉ ପାତାଳି ହୋଇ ନଥିବା ଜଣାଯାଏ । ବ୍ରହ୍ମକୁଣ୍ଡ ନିକଟରେ ବୈତରଣୀ ନଦୀଟି **'ଆଦି ବୈତରଣୀ କ୍ଷେତ୍ର'** ରୂପେ ପରିଚିତ । ଏହିଠାରେ ହିଁ ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଙ୍ଗମାନେ କାହିଁ କେଉଁ ଅନାଦି କାଳରୁ ଆଜି ପର୍ଯ୍ୟନ୍ତ ବସବାସ କରି ଆସୁଛନ୍ତି ।

## ଗୋନାସିକା ରାଜା ଓ ବୈତରଣୀର ନ' ଭଉଣୀ

*(The old king Gonasika and 'nine sisters' of the Baitaranee)*

ଦ୍ରୁତ ଜଙ୍ଗଲ କ୍ଷୟ, ଶିଳ୍ପାୟନ ଓ ବ୍ୟାପକ ଖଣି ଖନନ ଯୋଗୁଁ କେନ୍ଦୁଝର ଜିଲ୍ଲାରେ ବହୁତ କିଛି ପରିବର୍ତ୍ତନ ସମ୍ଭବ ହୋଇଛି । ଜଙ୍ଗଲ କ୍ଷୟ କାରଣରୁ କେନ୍ଦୁଝର ଜିଲ୍ଲାରେ ବୃଷ୍ଟିପାତ ହ୍ରାସ ପାଇବା ସାଙ୍ଗକୁ ଭୂ-ତଳ ଜଳସ୍ତର ଅସ୍ୱାଭାବିକ ଭାବେ ହ୍ରାସ ଘଟିଛି । ଏହାର ଫଳସ୍ୱରୂପ କେନ୍ଦୁଝର

ଜିଲ୍ଲାରେ ଥିବା ଅତୀତର ଅନେକ ପାହାଡ଼, ନଦୀ ଓ ଝରଣାର ଅପମୃତ୍ୟୁ ଘଟିଛି ।

ଜ୍ୟେଷ୍ଠ କନ୍ୟା ବୈତରଣୀ ସମେତ ଅନ୍ୟ ନଅ ଝିଅମାନେ ହେଉଛନ୍ତି ଗୋନାସିକା ପର୍ବତ ରାଜାଙ୍କର 'ଦଶକନ୍ୟା' । ତେବେ ପୁରାଣ ବର୍ଣ୍ଣିତ ପୁଣ୍ୟତୋୟା ବୈତରଣୀ ନଦୀର ଅନ୍ୟ ନଅ ଭଉଣୀ କୁହାଯାଉଥିବା ଜଳ ଉତ୍ସଗୁଡିକ ଆଜି ବିପନ୍ନ । ଗୋନାସିକା ପର୍ବତରୁ ବାହାରିଥିବା ବୈତରଣୀ ନଦୀ ଏବଂ ତା'ର ଅନ୍ୟ ନଅ ଜଣ ଭଉଣୀ ଯଥା- **ଝିରିପାଣି, ଢୋଲକଟା, ଯମୁନାପଶି, କଣ୍ଡରାଣିମୁଣ୍ଡ, କିଆଦଲକ, ଠେଲାଝରଣା, କରତକଟା, କାଇଁଝରୀ (କାନ୍ଝାରୀ), ଚଂପାଝରଣ** ମଧ୍ୟରୁ ଅଧିକାଂଶ ଝରଣା ଏବେ ମୃତପ୍ରାୟ । କେବଳ ବୈତରଣୀକୁ ଛାଡ଼ିଦେଲେ ଗୋନାସିକା ପର୍ବତରାଜାଙ୍କର ଅନ୍ୟ ନଅ କନ୍ୟା ପୃଥିବୀ ପୃଷ୍ଠରୁ ବିଦାୟ ନେବାକୁ ବସିଲେଣି ।

ବ୍ୟାପକ ଜଙ୍ଗଲ କ୍ଷୟ ଓ ଖଣି ଖନନ ପାଇଁ ଏହିସବୁ ଜଳ ଉତ୍ସ ଶୁଖି ଯାଇଛି । ବଞ୍ଚି ରହିଥିବା ବୈତରଣୀ ନଦୀକୁ କିଭଳି ଏହି ବିପଦରୁ ରକ୍ଷା କରାଯାଇପାରିବ ତାହା ଏବେ ସମସ୍ତଙ୍କ ଚିନ୍ତାର କାରଣ ପାଲଟିଛି । ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ 'ଜୁଆଙ୍ଗ'ମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦି କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଏହି ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ବୈତରଣୀ ନଦୀ କୂଳରେ ବସବାସ କରୁଥିବା ଆଦିମ ଅଧିବାସୀମାନେ ସୀତାବିଞ୍ଜି, ଅସନପାଟ ଆଦି ସ୍ଥାନରେ ନଗର ପ୍ରତିଷ୍ଠା କରି ବସବାସ କରୁଥିଲେ । ଏହିସବୁ ଅଞ୍ଚଳରେ ନୂତନ ପ୍ରସ୍ତର ଯୁଗର ଅନେକ ନିଦର୍ଶନ ଆଜି ବି ଦେଖିବାକୁ ମିଳିଥାଏ ।

[ତଥ୍ୟ ସହାୟତା: ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର (୨୦୧୨), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୫୩, ୫୪]

## ଗୋନାସିକା ଓ ଋଷିପୁତ୍ର ଜୁଆଙ୍ଗ

*(Gonasika and Particularly Vulnerable Tribal Group; the Juang)*

ଗୋନାସିକା ସ୍ଥାନଟି ଦୁଇଟି କାରଣ ପାଇଁ ପ୍ରସିଦ୍ଧ । ପ୍ରଥମଟି ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ହିସାବରେ ଏବଂ ଅନ୍ୟଟି ପୃଥିବୀର ଏକ ପ୍ରାଚୀନତମ ଜନଜାତି '**ଜୁଆଙ୍ଗ**'ମାନଙ୍କ ବାସସ୍ଥଳ ଭାବେ 'ଗୋନାସିକା' ପରିଚିତ । ଜୁଆଙ୍ଗମାନେ ନିଜକୁ '**ଋଷିପୁତ୍ର**' ବୋଲି ଦାବି କରିଥା'ନ୍ତି । ଏ ପୃଥିବୀପୃଷ୍ଠରେ ପ୍ରଥମେ ଜୁଆଙ୍ଗମାନଙ୍କର ଆବିର୍ଭାବ ଘଟିଥିଲା ବୋଲି ସେମାନଙ୍କର ବିଶ୍ୱାସ । ଋଷିପୁତ୍ର ହୋଇଥିବାରୁ ଜୁଆଙ୍ଗମାନେ ନିଜକୁ ଶୁଦ୍ଧ ପବିତ୍ର ବୋଲି ମନେ କରିଥା'ନ୍ତି । ପୃଥିବୀ ସର୍ଜନା ଓ ମଣିଷମାନଙ୍କ ସୃଷ୍ଟିକୁ ନେଇ ଜୁଆଙ୍ଗମାନଙ୍କର ଅନେକ କିମ୍ବଦନ୍ତୀ ଓ ଲୋକବିଶ୍ୱାସ ରହିଛି । ଜୁଆଙ୍ଗମାନଙ୍କ ବିଶ୍ୱାସ ଅନୁସାରେ, **ଧରମ୍ ଦେବତା** (ସୂର୍ଯ୍ୟଦେବତା) ପ୍ରଥମେ ଏ

ପୃଥିବୀକୁ ସୃଷ୍ଟି କରିଛନ୍ତି ଏବଂ ପୃଥିବୀକୁ ସୃଷ୍ଟି କରିବା ପରେ ଧରମ୍ ଦେବତା ପ୍ରଥମ ଦଂପତି ଋଷି ଓ ଋଷିଣୀଙ୍କୁ ସୃଷ୍ଟି କଲେ । ଆଉ ଏ ସମସ୍ତ ଜୁଆଙ୍ଗମାନେ ହେଉଛନ୍ତି ଏହି ଋଷି-ଋଷିଣୀଙ୍କ ବଂଶଧର । ଏହି ଋଷି ଓ ଋଷିଣୀ ଦଂପତି ଗୋନାସିକା ପାର୍ବତ୍ୟ ଅଞ୍ଚଳର ଏକ ଛୋଟ ପାହାଡ଼ '**ଋଷିଟାଙ୍ଗର**'ରେ ବାସ କରୁଥିଲେ । ସେତେବେଳକୁ ସମଗ୍ର ପୃଥିବୀ ଜଳମଗ୍ନ ଥିଲା । ଧରମ୍ ଦେବତା ପୃଥିବୀକୁ କଠିନ କରିବାକୁ ଇଛା କଲେ । ଋଷି ପୁତ୍ରର ରକ୍ତରେ ପୃଥିବୀ କଠିନ ହୋଇପାରିବ ବୋଲି ଧରମ୍ ଦେବତା ଜାଣିବାକୁ ପାଇଲେ । ଏଣୁ ଧରମ୍ ଦେବତା ଋଷି ଓ ଋଷିଣୀକୁ ଏକ ପୁତ୍ର ସନ୍ତାନ ଜନ୍ମ ଦେବାକୁ ନିର୍ଦ୍ଦେଶ ଦେଲେ । ଧରମ୍ ଦେବତାଙ୍କ ନିର୍ଦ୍ଦେଶମତେ ଋଷି ଏକ ପୁତ୍ର ସନ୍ତାନ ଜନ୍ମ ଦେଲେ । ତେବେ ପୁତ୍ରକୁ ମାରି ରକ୍ତ ବାହାର କରିବାକୁ ଋଷି ଅନିଚ୍ଛା ପ୍ରକାଶ କରିବାରୁ ଧରମ୍ ଦେବତା ନିଜର ମାୟା ବଳରେ ଏକ ବାଘ ସୃଷ୍ଟି କଲେ । ମାତ୍ର, ଧନୁର୍ଦ୍ଧର ଋଷିପୁତ୍ର ଏତେ ଶକ୍ତିଶାଳି ଥିଲା ଯେ, ବାଘ ତାକୁ ଭୟ କରୁଥିଲା । ଏହା ଜାଣିପାରି ଧରମ୍ ଦେବତା ପୁତ୍ରକୁ ନିରସ୍ତ୍ର ଅବସ୍ଥାରେ ଝରଣାରେ ଗାଧୋଇବାକୁ ଋଷିକୁ ନିର୍ଦ୍ଦେଶ ଦେଲେ । ଋଷିର କଥା ମାନି ପୁତ୍ର ବିନା ଧନୁଶରରେ ଝରଣାରେ ଗାଧାଉଥିବାବେଳେ ବାଘ ଆସି ତାଙ୍କୁ ମାରିଦେଲା । ଋଷି ପୁତ୍ର ମରିଗଲା ପରେ ତାର ମାଂସ ଓ ରକ୍ତକୁ ପୃଥିବୀର ବିଭିନ୍ନ ଭାଗରେ ସିଞ୍ଚନ କରାଯିବା ପରେ ପୃଥିବୀ କଠିନ ରୂପ ଧାରଣ କଲା । ଏଭଳି ଭାବେ ଆଜିର ଏହି ପୃଥିବୀ ସୃଷ୍ଟି ହୋଇଛି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

ପୃଥିବୀ ସୃଷ୍ଟିକୁ ନେଇ ଆଉ ଏକ ଜୁଆଙ୍ଗ କାହାଣୀ ରହିଛି । ଦିନେ ଋଷି ଗୋନାସିକା ନିକଟସ୍ଥ 'ଋଷିଟାଙ୍ଗର'ରେ ତପସ୍ୟାରେ ମଗ୍ନ ଥିଲେ । ଏହି ସମୟରେ ଏକ ଅସୁର କନ୍ୟା ସୁନ୍ଦରୀ ନାରୀ ରୂପ ଧାରଣ କରି ଋଷିକୁ ବିବାହ କରିବାକୁ ବାଧ୍ୟ କଲା । ଋଷି ସୁନ୍ଦରୀ ଯୁବତୀରେ ରୂପରେ ମୁଗ୍ଧ ହେଲେ । ଏବଂ ପରେ ଋଷି ଓ ଅସୁର କନ୍ୟା ମଧ୍ୟରେ ବିବାହ ଅନୁଷ୍ଠିତ ହେଲା ଏବଂ ସେମାନଙ୍କ ଗର୍ଭରୁ ସାତୋଟି ପୁତ୍ର ଓ ସାତ କନ୍ୟା ଜାତ ହେଲେ । ଏହି ଋଷି ପୁତ୍ର ଓ କନ୍ୟାମାନେ ହେଉଛନ୍ତି ଜୁଆଙ୍ଗମାନଙ୍କର ପୂର୍ବଜ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ସେତେବେଳକୁ ଗୋନାସିକା ବ୍ୟତୀତ ସମଗ୍ର ପୃଥିବୀ ଜଳମଗ୍ନ ଥିଲା । ଧରମ୍ ଦେବତା ପୃଥିବୀକୁ କଠିନ ଓ ସମତଳ କରିବାକୁ ଇଛା କରି ଏକ ଗାଈକୁ ହତ୍ୟା କରି ତାର ରକ୍ତ ସିଞ୍ଚନ କରିବାକୁ ଋଷିକୁ ନିର୍ଦ୍ଦେଶ ଦେଲେ । ଧରମ୍ ଦେବତା କଥା ମାନି ଋଷି ଏକ ଗାଈକୁ ହତ୍ୟା କରି ତାର ରକ୍ତକୁ ଜଳରେ ସିଞ୍ଚନ କରିବା ପରେ ପୃଥିବୀ କଠିନ ରୂପ ଧାରଣ କଲା । ଏହାପରେ ଋଷି ମୃତ ଗାଈର ମୁଣ୍ଡକୁ ନିକଟସ୍ଥ ପାହାଡ଼ରେ ପୋତିଦେଲେ । ମାତ୍ର, ଆଶ୍ଚର୍ଯ୍ୟ ସେଇ ମୃତ ଗାଈ ମୁଣ୍ଡରେ ଥିବା ଦୁଇ ନାକପୁଡ଼ାରୁ ରକ୍ତ ବଦଳରେ ପାଣି ବହିବାକୁ ଲାଗିଲା । ଏହି ଗାଈ ନାକରୁ ପ୍ରବାହିତ ହେଉଥିବା ଜଳରାଶିରୁ ବୈତରଣୀ ନଦୀ ସୃଷ୍ଟି ହୋଇଛି ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି ।

[ତଥ୍ୟ ସହାୟତା

୧. 'ଜୁଆଙ୍ଗ ପର୍ବପର୍ବାଣି' (୨୦୧୪), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ପୃଷ୍ଠା: ୫୨, ୫୩, ୫୪, ୫୫)

2. *Notes on the Juang-Man in India, Vol. XXVIII No 1 &2 - Elwin Verrier (1948)*]

## ଗୋନାସିକା: ପୃଥିବୀର ପ୍ରାଚୀନତମ ଜନଜାତି 'ଜୁଆଙ୍ଗ'ଙ୍କ ଆବାସସ୍ଥଳୀ

*(Gonasika; the ancient territory of the Juang)*

ଆମ ଦେଶରେ ଯେଉଁ କେତେ ପ୍ରକାର ପୁରାତନ ଜନଜାତି ବସବାସ କରନ୍ତି ସେମାନଙ୍କ ମଧ୍ୟରୁ ଜୁଆଙ୍ଗମାନେ ହେଉଛନ୍ତି ଏକ ସର୍ବପ୍ରାଚୀନ ଜନଜାତି । ଏମାନେ ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ପାର୍ବତ୍ୟାଞ୍ଚଳରେ କାହିଁ କେଉଁ ଅନାଦି କାଳରୁ ବସବାସ କରିଆସୁଛନ୍ତି । ସଂଭବତଃ, ବୈତରଣୀ ନଦୀ ହେଉଛି  ଏକମାତ୍ର ନଦୀ, ଯାହାର ଉତ୍ପତ୍ତି ସ୍ଥଳରେ ପୃଥିବୀର ଏକ ପ୍ରାଚୀନତମ ଜନଜାତିମାନଙ୍କର ବସତି ଗଢି ଉଠିଥିଲା । ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ 'ଜୁଆଙ୍ଗ'ଙ୍କ ବସତି ସ୍ଥାପନ ଏକ ପ୍ରାଚୀନ ନଦୀକୂଳ ସଭ୍ୟତାର କାହାଣୀ ସଂପର୍କରେ ଅନେକ ସୂଚନା ମିଳିଥାଏ ।

ଓଡ଼ିଶାରେ ବସବାସ କରୁଥିବା ଆଦିବାସୀଙ୍କ ମଧ୍ୟରେ ଜୁଆଙ୍ଗମାନେ ହେଉଛନ୍ତି ଏକ ପୁରାତନ ଅନୁସୂଚିତ  ଜନଜାତି । କେନ୍ଦ୍ର ସରକାର ଓଡ଼ିଶାରେ ମୋଟ ୬୨ ପ୍ରକାର ଜନଜାତିଙ୍କୁ ଚିହ୍ନଟ କରିଛନ୍ତି । ଅନ୍ୟ ସାଧାରଣ ଜନଜାତିଙ୍କ ତୁଳନାରେ ଆର୍ଥିକ କ୍ଷେତ୍ରରେ ଦୁର୍ବଳ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଗମନାଗମନ ଦୃଷ୍ଟିରୁ ଅପହଞ୍ଚ ଜଙ୍ଗଲ ଓ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା କିଛି ସ୍ୱତନ୍ତ୍ର ଶ୍ରେଣୀର ଆଦିବାସୀଙ୍କୁ କେନ୍ଦ୍ର ସରକାର 'ପୁରାତନ ଜନଜାତି' *(Particularly Vulnerable Tribal Group)* ଭାବେ ଘୋଷଣା କରିଛନ୍ତି । (ବି.ଦ୍ର. : ପୂର୍ବରୁ ଏହି ଜନଜାତି ଗୋଷ୍ଠୀକୁ 'ଆଦିମ ଜନଜାତି' *(Primitive Tribal Group)* ଭାବେ ସମ୍ବୋଧନ କରାଯାଉଥିଲା । ମାତ୍ର 'ଆଦିମ' ବା '*Primitive*' ଶବ୍ଦଟିକୁ ନେଇ ବିଭିନ୍ନ ମହଲରେ ଆପତ୍ତି ଉଠିବାରୁ ସରକାର ଏହି ଶବ୍ଦ ବଦଳରେ 'ପୁରାତନ' ବା '*Particularly Vulnerable*' ଶବ୍ଦ ବ୍ୟବହାର କରି ଆସୁଛନ୍ତି ।) ସମଗ୍ର ଦେଶରେ ମୋଟ୍ ୭୫ଟି ସ୍ୱତନ୍ତ୍ର ଅନଗ୍ରସର ଆଦିବାସୀ ଗୋଷ୍ଠୀକୁ 'ପୁରାତନ ଜନଜାତି' ଭାବେ ଘୋଷଣା କରାଯାଇଛି । ଏହା ମଧ୍ୟରୁ ଓଡ଼ିଶାର ୧୩ଟି ଗୋଷ୍ଠୀକୁ 'ପୁରାତନ

ଜନଜାତି' ଭାବେ ଚିହ୍ନିତ କରାଯାଇଛି । ସେମାନେ ହେଉଛନ୍ତି;

୧. ବିର୍‌ହର
୨. ବଣ୍ଡା
୩. ଚକୋଟିଆ ଭୁଞ୍ଜିଆ
୪. ଡିଡାୟୀ
୫. ଡଙ୍ଗରିଆ କନ୍ଧ
୬. ଜୁଆଙ୍ଗ
୭. ଖଡ଼ିଆ
୮. କୁଟିଆ କନ୍ଧ
୯. ଲାଞ୍ଜିଆ ସଉରା
୧୦. ଲୋଧା
୧୧. ମାଙ୍କଡ଼ିଆ
୧୨. ପାଉଡ଼ି ଭୂୟାଁ
୧୩. ସଉରା ।

ବିର୍‌ହର୍ ଆଦିମ ଜନଜାତି ସମ୍ବଲପୁର ଜିଲ୍ଲାରେ ବସବାସ କରୁଥିବାବେଳେ ବଣ୍ଡା ଓ ଡିଡାୟୀ ଆଦିମ ଜନଜାତି ମାଲ୍‌କାନ୍‌ଗିରି ଜିଲ୍ଲାରେ ଦେଖା ଯାଆନ୍ତି । ସେହିଭଳି ଲୋଧା ଓ ମାଙ୍କଡ଼ିଆମାନେ ମୟୂରଭଞ୍ଜ ଜିଲ୍ଲାରେ ବସବାସ କରୁଥିବାବେଳେ ଡଙ୍ଗରିଆ କନ୍ଧ ରାୟଗଡ଼ା ଓ କଳାହାଣ୍ଡି ଜିଲ୍ଲାରେ ଦେଖାଯାଆନ୍ତି । ଚକୋଟିଆ ଭୁଞ୍ଜିଆମାନେ ନୂଆପଡ଼ା ଜିଲ୍ଲାରେ, ପାଉଡ଼ି ଭୂୟାଁ ଦେବଗଡ଼ ଓ କେନ୍ଦୁଝର ଜିଲ୍ଲାରେ କିଛି ସଂଖ୍ୟାରେ ଦେଖାଯାଆନ୍ତି । ଜୁଆଙ୍ଗମାନେ କେନ୍ଦୁଝର ଜିଲ୍ଲାର ଗୋନାସିକା ପାର୍ବତ୍ୟାଞ୍ଚଳ (ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ)ରେ ଦେଖିବାକୁ ମିଳନ୍ତି । ଜୁଆଙ୍ଗମାନେ କେନ୍ଦୁଝର ଜିଲ୍ଲାର ବାଂଶପାଳ, ହରିଚନ୍ଦନପୁର, ତେଲକୋଇ ଓ ଘଟଗାଁ ବ୍ଲକ୍‌ର ପାର୍ବତ୍ୟ ଅଞ୍ଚଳରେ ବସବାସ କରନ୍ତି । କେନ୍ଦୁଝରର ମୂଳ ଜୁଆଙ୍ଗମାନେ କିଛି ମାତ୍ରାରେ ଢେଙ୍କାନାଳ ଓ ଅନୁଗୁଳର ପାଲଲହଡା ଅଞ୍ଚଳକୁ ଚାଲିଯାଇ ସେଠାରେ ବସବାସ କରି ଆସୁଛନ୍ତି । କେନ୍ଦୁଝର ଜିଲ୍ଲାର ଗୋନାସିକା ପାର୍ବତ୍ୟ ଅଞ୍ଚଳକୁ ଜୁଆଙ୍ଗମାନଙ୍କର ମୂଳ ବାସସ୍ଥଳୀ ଭାବେ ଧରାଯାଏ । ଜୁଆଙ୍ଗମାନେ ଅତି ନମ୍ର ଓ ଲାଜକୁଳା ସ୍ୱଭାବର ଅଟନ୍ତି । ସେମାନେ ଖୁବ୍ ସରଳ ଓ ଅତିଥି ପରାୟଣ । ଜୁଆଙ୍ଗମାନଙ୍କର ଗୋଟିଏ ବିଶେଷ ଗୁଣ ହେଉଛି ସେମାନଙ୍କର 'ଗୋଷ୍ଠୀ ଜୀବନ' *(community life)*। ସେମାନେ ଗୋଷ୍ଠୀଗତ ଭାବେ ଜୀବନକୁ ଉପଭୋଗ କରିବା ଶିଖିଛନ୍ତି ।

[ତଥ୍ୟ ସହାୟତା:

୧· 'ଜୁଆଙ୍ଗ ପର୍ବପର୍ବାଣି' (୨୦୧୪), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡ଼ା, ପୃଷ୍ଠା: ୪୩-୪୮

*2. Notes on the Juang-Man in India, Vol. XXVIII No 1 &2 - Elwin Verrier (1948)*]

## ବୈତରଣୀର ପୌରାଣିକ ଓ ଧାର୍ମିକ ଗୁରୁତ୍ୱ

*(Mythological significance of the Baitaranee)*

ବୈତରଣୀ ନଦୀ ସଂପର୍କରେ ପ୍ରାଚୀନ ଭାରତୀୟ ପୁରାଣଶାସ୍ତ୍ରମାନଙ୍କରେ ବହୁ କଥା ଉଲ୍ଲେଖ ରହିଛି । ବ୍ୟାସଦେବଙ୍କ ରଚିତ ସଂସ୍କୃତ ମହାଭାରତର ୮୫ତମ ଅଧ୍ୟାୟରେ ବୈତରଣୀ ସଂପର୍କରେ ବର୍ଣ୍ଣନା ରହିଛି । ମହାଭାରତ ଯୁଦ୍ଧ ପରେ ଲୋମଶ ମୁନି ପାଣ୍ଡବମାନଙ୍କୁ ବିଭିନ୍ନ ତୀର୍ଥ ସ୍ଥାନ ଭ୍ରମଣ ପାଇଁ ଉପଦେଶ ଦେବା ପ୍ରସଙ୍ଗ 'ବନ ପର୍ବ'ର ୮୫ତମ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

ବ୍ୟାସକୃତ ସଂସ୍କୃତ ମହାଭାରତର 'ବନ ପର୍ବ'ରେ ଲୋମଶ ମୁନି ଯୁଧିଷ୍ଠିରଙ୍କୁ କହୁଛନ୍ତି- "ଏହା ପରେ ତୁମେ ବୈତରଣୀ ନଦୀକୁ ଯାଅ । ବୈତରଣୀ ନଦୀ ପାଖରେ ବିରଜାତୀର୍ଥ ଚନ୍ଦ୍ର ପରି ବିରାଜମାନ ହୋଇଛି । ମଣିଷ ଏଠାରେ କୁଳପୁଣ୍ୟ କରି ସର୍ବପାପ ଦୂର କରେ ଏବଂ ଗୋସହସ୍ର ଦାନର ଫଳ ଲାଭ କରି ନିଜ ବଂଶକୁ ପବିତ୍ର କରେ ।" ଏହି ଶ୍ଲୋକଟି ନିମ୍ନରେ ଉଦ୍ଧାର କରାଗଲା-

"ତତୋ **ବୈତରଣୀଂ** ଗଚ୍ଛେତ୍ ସର୍ବପାପ ପ୍ରମୋଚନୀଂ ।
ବିରଜମ୍ ତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ" ॥୬॥
ପ୍ରତରେଚତ୍ କୁଳଂ ପୁଣ୍ୟଂ ସର୍ବପାପଂ ବ୍ୟାପୋହତି ।
ଗୋସହସ୍ର ଫଳମ୍ ଲବ୍ଧା ପୁନାତିସ୍ୱକୁଳଂ ନରଃ ॥୭॥

[ତଥ୍ୟ ଉତ୍ସ

୧· ବ୍ୟାସଦେବଙ୍କ ରଚିତ ସଂସ୍କୃତ ମହାଭାରତ (ବନପର୍ବ, ୮୫ତମ ଅଧ୍ୟାୟ)

୨· ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା' (୧୯୭୩), ପୃଷ୍ଠା-୨୫ ଓ ୨୬ ]

ଏହାପରେ ମଧ୍ୟ ବ୍ୟାସଦେବଙ୍କ ଲିଖିତ ସଂସ୍କୃତ ମହାଭାରତର 'ବନପର୍ବ'ର ୧୧୪ତମ ଅଧ୍ୟାୟରେ ବୈତରଣୀ ନଦୀ ଓ ବିରଜା କ୍ଷେତ୍ର ମାହାତ୍ମ୍ୟ ସଂପର୍କରେ ବର୍ଣ୍ଣନା ରହିଛି ।

"ତତଃ ସମୁଦ୍ରତୀରେଣ ଜଗାମ ବସୁଧାଧିପଃ ।
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତିଭାରତ ।।୩।।
ଲୋମଶ ଉବାଚ
ଏତେ କଳିଙ୍ଗାଃ କୌନ୍ତେୟ ତତ୍ର **ବୈତରଣୀ** ନଦୀ ।
ଯତ୍ରୋଽଯଜତ ଧର୍ମୋଽପି ଦେବାନ୍ ଶରଣମେତ୍ୟ ବୈ ।।୪।।
ଋଷିଭିଃ ସମୁପାଯୁକ୍ତଂ ଯାଜ୍ଞିୟଂ ଗିରି ଶୋଭିତମ୍ ।
ଉତ୍ତରଂ ତୀରମେତଦ୍ଧି ସତତଂ ଦ୍ୱିଜ ସେବିତମ୍ ।।୫।।
ସମାନଂ ଦେବଯାନେନ ପଥା ସ୍ୱର୍ଗମୁପେୟୁଷଃ ।
ଅତ୍ର ବୈଋଷୟୋ ଧନ୍ୟୋଽପି ପୁରା କ୍ରତୁଭିରାଜିରେ ।।୬।।

ସରଳାର୍ଥ : ଏହାପରେ ବସୁଧାଧିପ ବୀର ଯୁଧିଷ୍ଠିର ଭ୍ରାତାମାନଙ୍କ ସହିତ ସମୁଦ୍ର ତୀରେତୀରେ କଳିଙ୍ଗ ଅଭିମୁଖେ ଯାତ୍ରା କଲେ । ଲୋମଶ ମୁନି କହିଲେ- ଏହା ହିଁ କଳିଙ୍ଗ ଜାତିର ଦେଶ, ଏହାରି ମଧ୍ୟରେ **ବୈତରଣୀ** ନଦୀ ପ୍ରବାହିତ ହେଉଛି । ଏହାର ତୀରରେ ନିଜେ ଧର୍ମଦେବ ମଧ୍ୟ ଦେବତାମାନଙ୍କ ଆଶ୍ରୟରେ ଯଜ୍ଞ କରିଥିଲେ । ଏ ନଦୀର ଉତ୍ତର ତୀର ଋଷିମାନଙ୍କ ଦ୍ୱାରା ଅଧ୍ୟୁଷିତ, ଯଜ୍ଞ କରିବାର ଯୋଗ୍ୟଭୂମି, ପର୍ବତ ଦ୍ୱାରା ସୁଶୋଭିତ ଓ ଦ୍ୱିଜମାନଙ୍କ ଦ୍ୱାରା ସର୍ବଥା ସମାକୁଳ । ଏହି ସ୍ଥାନ ସ୍ୱର୍ଗକୁ ଯିବାର ଯୋଗ୍ୟ ବ୍ୟକ୍ତିର ଦେବତାବାସଭୂମି ସ୍ୱର୍ଗର ଦ୍ୱାର ପରି । ଏହି ସ୍ଥାନରେ ପୁରାକାଳରେ ଋଷିମାନେ ଯଜ୍ଞ କରୁଥିଲେ ।

ସଂସ୍କୃତ ମହାଭାରତର 'ବନପର୍ବ'ର ୧୧୪ତମ ଅଧ୍ୟାୟର ୩୦ଟି ଶ୍ଳୋକରେ କେବଳ ବିରଜା କ୍ଷେତ୍ରର ମାହାତ୍ମ୍ୟ ସଂପର୍କରେ ଉଲ୍ଲେଖ ରହିଛି ।

[ ତଥ୍ୟ ଉତ୍ସ

୧. ବ୍ୟାସଦେବଙ୍କ ରଚିତ ସଂସ୍କୃତ ମହାଭାରତ (ବନପର୍ବ, ୧୧୪ତମ ଅଧ୍ୟାୟ)

୨. ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା' (୧୯୭୩), ପୃଷ୍ଠା- ୨୬ ]

ଗଙ୍ଗା ପରି ବୈତରଣୀ ମଧ୍ୟ ସ୍ୱର୍ଗଗାମିନୀ ଅଟେ । ଗଙ୍ଗାଠାରୁ ଦ୍ୱାଦଶ ବ୍ରହ୍ମ ବର୍ଷ ବୟୋଧିକ ବୈତରଣୀକୁ ସ୍ୱର୍ଗର ସରଣୀ କୁହାଯାଏ । ବୈତରଣୀ ନଦୀ ଗୋଟିଏ ଧାରରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳପୁରରେ ପ୍ରବାହିତ ହୋଇ ତ୍ରିପୁରକୁ ତ୍ରାଣ କରୁଥିବାରୁ ଏହାର ନାମ ବୈତରଣୀ ଅଟେ ।

ବୈତରଣୀ ନଦୀର ମାହାତ୍ମ୍ୟ ସଂପର୍କରେ ବିଭିନ୍ନ ପୁରାଣମାନଙ୍କରେ ବହୁ ବର୍ଣ୍ଣନା ରହିଛି । ବ୍ୟାସଦେବଙ୍କ ସଂସ୍କୃତ ମହାଭାରତଠାରୁ ଆରଂଭ କରି ଗରୁଡ଼ ପୁରାଣ, ବ୍ରହ୍ମ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ପଦ୍ମ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ, ଶାରଳା ଦାସଙ୍କ ଓଡ଼ିଆ ମହାଭାରତ ଭଳି ବିବିଧ ପୁରାଣମାନଙ୍କରେ ବୈତରଣୀ ନଦୀ ସଂପର୍କରେ ଉଲ୍ଲେଖ ରହିଛି ।

ବୈତରଣୀ ନଦୀର ମାହାତ୍ମ୍ୟ ସଂପର୍କରେ ଗରୁଡ଼ ପୁରାଣରେ ସବୁଠୁ ଅଧିକ ଓ ପ୍ରାଞ୍ଜଳ ବର୍ଣ୍ଣନା ରହିଛି । କଳିଯୁଗ ପ୍ରବେଶ ହେଲା ପରେ ପୃଥିବୀ ପୃଷ୍ଠରେ ଦେଖାଦେଇଥିବା ନାନାପ୍ରକାର ପାପ, ଦୁଷ୍କର୍ମ, ଅନ୍ୟାୟ ଅନୀତିର ପ୍ରତିକାର ଉଦ୍ଦେଶ୍ୟରେ ଭଗବାନ ବିଷ୍ଣୁ ଯାହା ସବୁ ଉପଦେଶ ଦେଉଛନ୍ତି, ମୂଳତଃ ତାହା ହିଁ ଗରୁଡ଼ ପୁରାଣର ବିଷୟବସ୍ତୁ । ଭଗବାନ ବିଷ୍ଣୁ ମୃତ୍ୟୁ ସଂସ୍କାର, ଯମପୁର ବର୍ଣ୍ଣନା, ନର୍କପୁର ବର୍ଣ୍ଣନା, ବୈକୁଣ୍ଠପୁର ଏବଂ ପିତୃପୁରୁଷଙ୍କ ପିଣ୍ଡଦାନ ସଂପର୍କରେ ନିଜର ଭକ୍ତ ଗରୁଡ଼ ଏବଂ ସୁତ ମୁନିଙ୍କୁ ଯାହା ବୁଝାଇଛନ୍ତି ତାହା ହେଉଛି ଗରୁଡ଼ ପୁରାଣର ଭାବବସ୍ତୁ । ଏଥିରେ ଭଗବାନ ବିଷ୍ଣୁ ପାପରୁ ମୁକ୍ତି ପାଇବା ଏବଂ ମୃତ୍ୟୁ ପରେ ନର୍କପୁରରୁ ଉଦ୍ଧାର ପାଇବା ପାଇଁ ମର୍ତ୍ତ୍ୟପୁରରେ ପ୍ରବାହିତ ବୈତରଣୀ ନଦୀରେ ପାର ହେବାକୁ କିମ୍ବା ବୁଡ଼ ପକାଇବାକୁ ସମସ୍ତ ପାପାତ୍ମାମାନଙ୍କ ଉଦ୍ଦେଶ୍ୟରେ ପରାମର୍ଶ ଦେଇଛନ୍ତି । ବ୍ୟାସଦେବଙ୍କ ମୂଳ ସଂସ୍କୃତ ଗରୁଡ଼ ପୁରାଣକୁ ଓଡ଼ିଆ ଭାଷାରେ ଅନୁବାଦିତ କରିଥିବା ପଣ୍ଡିତ ଦ୍ୱିଜ ଆର୍ତ୍ତତ୍ରାଣ ଦାସଙ୍କ ବିରଚିତ ଓଡ଼ିଆ ଗରୁଡ଼ ପୁରାଣରୁ ବୈତରଣୀ ନଦୀ ମାହାତ୍ମ୍ୟ ସଂପର୍କିତ କିଛି ଉକ୍ତି ବା ଉଦ୍ଧୃତାଂଶ ନିମ୍ନରେ ପ୍ରଦାନ କରାଗଲା ।

"ଏହା ଶୁଣିଣ ଗରୁଡ଼ ଶିରେ କର ଦେଇ
କମଳା ବଲ୍ଲଭ ପାଦେ ଭକତି କରଇ ।
ଶାସ୍ତ୍ରମାନଙ୍କରେ ପୁଣ ହୋଇଛି ଉକତ
**ବୈତରଣୀ** ନଦୀ ଗର୍ଭେ ହୁଅନ୍ତି ପତିତ ।"

(ଶ୍ରୀଗରୁଡ଼ ଉବାଚ)

"ଯମରାଜ ଭୁବନରେ ତିନିଗୋଟି ଦ୍ୱାରେ
ଧାର୍ମିକମାନେ ଗମନ କରନ୍ତି ସତ୍ୱରେ ।
ପୂର୍ବ ପଶ୍ଚିମ ଉତ୍ତର ଦ୍ୱାରପଥ ଦେଇ
ଜ୍ଞାନୀ ସୁକୃତି ସୁଜନ ଗମନ କରଇ ।
ପାପୀମାନଙ୍କ ପାଇଁକି ଏକ ଗୋଟି ବାଟ
ଦକ୍ଷିଣ ଦୁଆର ପଥୁ ଅତ୍ୟନ୍ତ ସଂକଟ ।

ସେହିପଥେ ଯିବାବେଳେ ନାନା ଦୁଃଖମାନ
**ବୈତରଣୀ** ନଦୀ ଆଦି ତହିଁ ବିଦ୍ୟମାନ ।
ସେ **ନଦୀ**ରେ ପଡେ ଯେଉଁ ପାତକୀ ପାମର
ତାହା କହୁଅଛି ଏବେ ମନ କର ସ୍ଥିର ।"

(ଶ୍ରୀଭଗବାନ ଉବାଚ)

"ଯେ ଜନ ପଡ଼ଇ **ବୈତରଣୀ** ନଦୀ ମଧ୍ୟେ
ନାନାଦି ଦୁଃଖ ଭୋଗଇ ସେ ପାପୀ ସଂଶ୍ରଦ୍ଧେ ।"

(ଶ୍ରୀଭଗବାନ ଉବାଚ)

"ଯମପୁର ମାର୍ଗେ ନେଇ **ବଇତରଣୀ**ରେ
ବୁଡାନ୍ତି ତାହାକୁ ମାଡ ମାରିଣ ସତ୍ୱରେ
ସେ ନଦୀରେ ବହୁତ ଯେ କୁମ୍ଭୀର ମଗର
ପାପୀ ଶରୀରେ ଆଘାତ କରନ୍ତି ଅପାର"

(ଶ୍ରୀଭଗବାନ ଉବାଚ)

"ଚିତ୍ର ଗୁପତ କହୁଛି ପାଞ୍ଜି ପୋଥି ଦେଖି
**ବୈତରଣୀ** ନଦୀ ମଧ୍ୟେ ପଡ଼ି ହେବ ଦୁଃଖୀ ।"

(ଶ୍ରୀଭଗବାନ ଉବାଚ)

"ତାହାଶୁଣି ଦୂତମାନେ ପୁଣି ଯାନ୍ତି ନେଇ
**ବୈତରଣୀ** ନଦୀରେ ଯେ ଦିଅନ୍ତି ବୁଡାଇ ।"

(ଶ୍ରୀଭଗବାନ ଉବାଚ)

"ଚୌରାଶି କୋଟି ନରକ ଯେ ପୁରେ ଅଛଇ
**ବୈତରଣୀ** ସବୁଠାରୁ ବଡ଼ ଯେ ଅଟଇ ।
ସବୁ ନରକ ଅଟଇ କଷ୍ଟଦାୟ ପୁଣି
ନାନା ଦଣ୍ଡ ସେମାନଙ୍କ ଭୋଗ କରେ ପ୍ରାଣୀ ।

କେତେକ ନରକ **ବୈତରଣୀ**ରେ ମିଳିଛି
ତେଣୁ **ବୈତରଣୀ** ସର୍ବଶ୍ରେଷ୍ଠ ବୋଲାଇଛି ।
ଅତ୍ୟନ୍ତ ପାତକ ଯେଉଁମାନେ କରିଥା'ନ୍ତି
**ବୈତରଣୀ** ନଦୀ ଗର୍ଭେ ତାହାଙ୍କୁ ପକାନ୍ତି ।
ସର୍ବ ନର୍କର ଯାତନା ସେଠାରେ ପୂରିଛି
ପାପୀ ତାହା ଭୋଗ କରେ ରହିକାଳ କିଛି ।"

(ଶ୍ରୀଭଗବାନ ଉବାଚ)

"ତପ୍ତ **ବୈତରଣୀ** ନଦୀ ହେଲେ ହୁଏ ପାରି
ସ୍ୱର୍ଗ ସୁଖ ଭୋଗ କଲେ ଫଳରେ ତାହାରି ।"

(ଶ୍ରୀଭଗବାନ ଉବାଚ)

"ଅଳଙ୍କାର ପାଟବସ୍ତ୍ର ଆଦି ସମର୍ପିବ
ଦକ୍ଷିଣା ସହିତେ ଧେନୁ ତାଙ୍କୁ ଦାନ ଦେବ ।
ଏହି ଦାନେ **ବୈତରଣୀ** ନଦୀ ହୁଏ ପାର
ମୋକ୍ଷଦାନ ଏହାକୁ କହନ୍ତି ପକ୍ଷୀବର ।"

(ଶ୍ରୀଭଗବାନ ଉବାଚ)

"ଏହିପରି ସ୍ତୁତି କରି ପ୍ରଣତି କରିବ
ତପ୍ତ **ବୈତରଣୀ** ତରି ଭେଳାରେ ସେ ଯିବ ।"

(ଶ୍ରୀଭଗବାନ ଉବାଚ)

"ତୁମ୍ଭ ପୁଚ୍ଛ ଧରି **ବୈତରଣୀ** ହେବି ପାରି
ଜନ୍ତୁନାଥ ଆଗୋ ମାତ କହିବୁ ବିସ୍ତାରି ।"

(ଶ୍ରୀଭଗବାନ ଉବାଚ)

ବୈତରଣୀ ସର୍ବ ପାପ ହରଣକାରୀ । ଏହି ନଦୀରେ ସ୍ନାନ କଲେ ସମସ୍ତ ପାପ ମୋଚନ ହେବା ସାଙ୍ଗକୁ ମଣିଷ ଶ୍ରେଷ୍ଠତ୍ୱ ପ୍ରାପ୍ତି ହୋଇଥାଏ । ବୈତରଣୀ ନଦୀ କୂଳରେ ତପସ୍ୟାରତ ସିଦ୍ଧ ଋଷିମାନଙ୍କୁ ବୈକୁଣ୍ଠପ୍ରାପ୍ତି ହୋଇଥାଏ ବୋଲି 'ଗରୁଡ଼ ପୁରାଣ'ରେ କୁହାଯାଇଛି । ମଣିଷର ମୃତ୍ୟୁ ପରେ ମହାପ୍ରସ୍ଥାନ

ପଥରେ ତପ୍ତ ବୈତରଣୀ ପଥିକମାନଙ୍କର କ୍ଳେଶ ଦୂର କରିବା ସହିତ ମୋକ୍ଷ ପ୍ରାପ୍ତ କରାଇଥାଏ । ଇହ ଜଗତରେ ଯେଉଁ ବ୍ୟକ୍ତି ଗୋପୁଚ୍ଛ ଧାରଣ କରି ବୈତରଣୀ ନଦୀ ସନ୍ତରଣ କରି ଧେନୁଦାନ କରିଥାଏ, ମରଣ ପରେ ତାହାର ଆତ୍ମା ଗୋପୁଚ୍ଛ ଧରି ତପ୍ତ ବୈତରଣୀ ଅତିକ୍ରମ କରି ସ୍ୱର୍ଗଲୋକ ପ୍ରାପ୍ତ ହୁଏ ।

ଗରୁଡ଼ ପୁରାଣ ବର୍ଣ୍ଣନା ଅନୁସାରେ, ବୈତରଣୀ ହେଉଛି ପାପୀ ଆତ୍ମାଙ୍କୁ ନର୍କରୁ ଉଦ୍ଧାର କରିବାର ଶ୍ରେଷ୍ଠ ଏବଂ ଏକମାତ୍ର ମାଧ୍ୟମ । ବୈତରଣୀ ନଦୀ ଯମପୁର ପର୍ଯ୍ୟନ୍ତ ପ୍ରବାହିତ ହୋଇଛି ଏବଂ ମୃତ୍ୟୁ ପରେ ପାପୀ ଆତ୍ମା ବୈତରଣୀ ନଦୀ ଦେଇ ପାର ହୋଇ ଯମଲୋକରେ ପହଞ୍ଚିଥାଏ । ବୈତରଣୀ ନଦୀ ରୁଧିର, ହାଡ଼, ପୂଜ, ମାଂସରେ ପରିପୂର୍ଣ୍ଣ ଏକ ନର୍କ ବୋଲି ଗରୁଡ଼ ପୁରାଣରେ ବର୍ଣ୍ଣିତ ହୋଇଛି । କୁଂଭୀର ଓ ଅନ୍ୟାନ୍ୟ ହିଂସ୍ରଜନ୍ତୁପୂର୍ଣ୍ଣ ବୈତରଣୀରେ ପାର ହେବା ପାପୀ ଆତ୍ମା ପାଇଁ ଏକ ପରୀକ୍ଷାର ମୁହୂର୍ତ୍ତ ହୋଇଥାଏ । ଜଣେ ପାପୀ ଆତ୍ମାକୁ ଏହି ରକ୍ତ, ମାଂସ, ହାଡ଼, ପୂଜପୂର୍ଣ୍ଣ ନଦୀରେ ପାର ହୋଇ ଯମ ପୁରକୁ ଯିବାକୁ ହୋଇଥାଏ । ପୁଣ୍ୟ ଅର୍ଜନ କରିଥିବା ବ୍ୟକ୍ତିର ଆତ୍ମାକୁ ଏଭଳି ଭୟଙ୍କର ବୈତରଣୀ (ନର୍କ) ପାର ହେବାକୁ ପଡ଼ିନଥାଏ । କିଂତୁ ଜଣେ ପାପୀ ଆତ୍ମାକୁ ଯମପୁର ପର୍ଯ୍ୟନ୍ତ ଯିବାକୁ ହେଲେ ରକ୍ତ, ପୂଜ, ମାଂସ, ହାଡ଼, କୁଂଭୀର, ମଗର, ଜୋକ, ଅନ୍ୟାନ୍ୟ ଭୟଙ୍କର ଜଳଚର ଜୀବଜନ୍ତୁପୂର୍ଣ୍ଣ ଏହି ବୈତରଣୀ ନଦୀ ପାର ହେବାକୁ ପଡ଼ିଥାଏ । ଯଦି ଜଣେ ପାପୀ ବୈତରଣୀ ନଦୀ ପାର ହେବାକୁ ଅସମର୍ଥ ହୋଇଥାଏ ତେବେ ତାକୁ ଯମଦୂତମାନେ ଆସି ଘୋଷାଡ଼ି ଘୋଷାଡ଼ି ନେଇଥା'ନ୍ତି ଏବଂ ତାକୁ ନାନା ଯାତନା ଭୋଗିବାକୁ ପଡ଼ିଥାଏ । ବୈତରଣୀ ନଦୀର ପୀଡ଼ାପୂର୍ଣ୍ଣ ଯାତ୍ରା ସମାପ୍ତ ପରେ ଜଣେ ପାପୀ ଆତ୍ମା ଯମ ରାଜ୍ୟର ଦକ୍ଷିଣ ଦ୍ୱାରରେ ପ୍ରବେଶ କରନ୍ତି । ଏଠାରେ ଯମରାଜା ଉକ୍ତ ଆତ୍ମାର କୃତକର୍ମର ବିଚାରକରି ନର୍କ କିମ୍ବା ସ୍ୱର୍ଗକୁ ପଠାଇଥା'ନ୍ତି । ମାତ୍ର ବୈତରଣୀ ନଦୀରେ ପାର ହେଉଥିବା ସମୟରେ ପାପୀ ଆତ୍ମାର ସମସ୍ତ ପାପ ନାଶ ହୋଇଥାଏ ଏବଂ ଅଜସ୍ର ପୁଣ୍ୟ ମିଳିଥାଏ ବୋଲି ଗରୁଡ଼ ପୁରାଣରେ ଉଲ୍ଲେଖ ରହିଛି ।

[ ତଥ୍ୟ : ଗରୁଡ଼ ପୁରାଣ (ଓଡ଼ିଆ) -ଦ୍ୱିଜ ଆର୍ତ୍ତତ୍ରାଣ ଦାସ, ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶା ବଜାର, କଟକ, ପୃଷ୍ଠା- ୧୪, ୧୫, ୧୬, ୧୭, ୩୬, ୩୮, ୩୯ ]

ବୈତରଣୀ ତୀର୍ଥର ପୁଣ୍ୟଫଳ ଏବଂ ଏଠାରେ ବୁଡ଼ ପକାଇଲେ ଯେଉଁ ପୁଣ୍ୟ ପ୍ରାପ୍ତ ହୋଇଥାଏ ସେ ସଂପର୍କରେ ଶୁଦ୍ରମୁନି ଶାରଳା ଦାସଙ୍କ ବିରଚିତ ମହାଭାରତରେ ଉଲ୍ଲେଖ ରହିଛି । ଭାରତବର୍ଷରେ ଯେତେ ତୀର୍ଥସ୍ଥଳ ରହିଛି ସେମାନଙ୍କ ମଧ୍ୟରୁ ବୈତରଣୀ ତୀର୍ଥ ସାର ଅଟେ ବୋଲି ମହାଭାରତରେ କୁହାଯାଇଛି ।

ବେଦପୁର (ଯଜ୍ଞପୁର/ଯାଜପୁର)ରେ ପ୍ରବାହିତ ପବିତ୍ର ପୁଣ୍ୟତୋୟା ବୈତରଣୀରେ ସ୍ନାନ କଲେ ସମସ୍ତ ପ୍ରକାର ମୋକ୍ଷପ୍ରାପ୍ତି ମିଳିବ ବୋଲି ମାର୍କଣ୍ଡ ଋଷି ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଛନ୍ତି । ସେହିଭଳି ଲୋମଶ ମୁନି ମଧ୍ୟ ବୈତରଣୀ ତୀର୍ଥର ଶ୍ରେଷ୍ଠତା ସଂପର୍କରେ ଯୁଧିଷ୍ଠିରଙ୍କୁ ବୁଝାଇଛନ୍ତି ।ଶାରଳା ଦାସଙ୍କ ମହାଭାରତର ବନପର୍ବରେ ବୈତରଣୀ ମାହାତ୍ମ୍ୟ ସଂପର୍କରେ ବହୁଳ ଭାବେ ଉଲ୍ଲେଖ କରାଯାଇଛି । ଧର୍ମରାଜ ଯୁଧିଷ୍ଠିର ମାତା ଓ ଭ୍ରାତାଗଣଙ୍କୁ ସଙ୍ଗରେ ନେଇ ତୀର୍ଥଯାତ୍ରା କରୁଥିବାବେଳେ ଗଙ୍ଗାସାଗର ସଙ୍ଗମ କ୍ଷେତ୍ରରେ ପ୍ରବେଶ କଲେ । ସେତେବେଳେ କଳିଙ୍ଗ ସାଗର (ବଙ୍ଗୋପସାଗର) ତୀର୍ଥ କ୍ଷେତ୍ର କଳିଙ୍ଗ ରାଜ୍ୟର ଅଙ୍ଗବିଶେଷ ଥିଲା । ଏହିଠାରେ ଧର୍ମରାଜ ଯୁଧିଷ୍ଠିର ଲୋମଶ ଋଷିଙ୍କଠାରୁ ପୁଣ୍ୟତୋୟା ବୈତରଣୀ ତୀର୍ଥ କ୍ଷେତ୍ରର ମାହାତ୍ମ୍ୟ ଶ୍ରବଣ କରିଥିଲେ ।

"କହନ୍ତି ସେ ମାରକଣ୍ଡ ଶୁଣ ଧର୍ମବସ୍ତି
ମାଘ ସ୍ନାହାନ ଫଳ ଏହିପରି ଅଛି
**ବୈତରଣୀ**ର କୂଳେ ଗ୍ରାମ ବେଦପୁର
ବ୍ରହ୍ମା ନାଭି ବୋଲି ତହିଁ ଛନ୍ତି ଭଦ୍ରନୀର"

"କହନ୍ତି ଲୋମଶ ଋଷି ଶୁଣ ଯୁଧିଷ୍ଠିର
**ବୈତରଣୀ** ତୀର୍ଥ କ୍ଷେତ୍ର କ୍ଷେତ୍ର ମଧ୍ୟେ ସାର ।"

"**ବୈତରଣୀ** କୂଳେ ରୁଦ୍ର ବୋଲିଣ ଶାସନ
ବାବନ ଲକ୍ଷ ତହିଁରେ ଥିଲେ ମହାଜନ ।"

"**ବୈତରଣୀ** କୂଳେ ବେଦପୁର ବୋଲି ଗ୍ରାମ ।"

ବୈତରଣୀ ସଭ୍ୟତାର ପ୍ରାଣକେନ୍ଦ୍ର ହେଉଛି ବିରଜାକ୍ଷେତ୍ର । ମହାଭାରତ ଯୁଗରେ ବିରଜା ମଣ୍ଡଳର ପ୍ରାଧାନ୍ୟ ରହିଥିଲା । ଶାରଳା ମହାଭାରତରେ ବର୍ଣ୍ଣିତ ବେଦପୁର ହେଉଛି 'ଯଜ୍ଞପୁର' ବା 'ଯାଜପୁର' । ବନପର୍ବର ବର୍ଣ୍ଣନା ଅନୁସାରେ, ପୁରାଣ ଯୁଗରେ ବୈତରଣୀ ନଦୀକୂଳରେ ବିଶାଳ ଜନବସତି ଗଢି ଉଠିଥିବାର ଅନୁମାନ କରାଯାଇପାରେ ।

[ ତଥ୍ୟ: ମହାଭାରତ (ଓଡ଼ିଆ) -ଶୁଦ୍ରମୁନି ଶାରଳାଦାସ, ବନପର୍ବ, ଧର୍ମଗ୍ରନ୍ଥ ଷ୍ଟୋର୍, କଟକ, ପୃଷ୍ଠା-୧୯୩ ]

ବୈତରଣୀ ଓ ବିରଜା ତୀର୍ଥର ମାହାତ୍ମ୍ୟ ସଂପର୍କରେ ପଦ୍ମପୁରାଣରେ ମଧ୍ୟ ବର୍ଣ୍ଣିତ ରହିଛି । ପଦ୍ମପୁରାଣର ସ୍ୱର୍ଗ ଖଣ୍ଡ ଊନବିଂଶ ଅଧ୍ୟାୟ 'ଗୟା ପ୍ରଭୃତି ତୀର୍ଥ ବର୍ଣ୍ଣନ'ରେ ବୈତରଣୀ ଓ ବିରଜା ତୀର୍ଥ ସଂପର୍କରେ ଉଲ୍ଲେଖ କରାଯାଇଛି । ବ୍ରହ୍ମର୍ଷି ନାରଦ ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିରଙ୍କୁ ଭାରତବର୍ଷର ବିଭିନ୍ନ ତୀର୍ଥ ସଂପର୍କରେ ଧାରଣା ପ୍ରଦାନ କରିବା ଅବସରରେ ଉତ୍କଳର ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ରର ମାହାତ୍ମ୍ୟ ସଂପର୍କରେ ସୂଚନା ଦେଇଛନ୍ତି । ଯୁଧିଷ୍ଠିର ଭାରତବର୍ଷର ତୀର୍ଥ ସଂପର୍କରେ ଜାଣିବାକୁ ଆଗ୍ରହ ପ୍ରକାଶ କରିବାରୁ ନାରଦ ତାଙ୍କୁ ବିଭିନ୍ନ ତୀର୍ଥର ମାହାତ୍ମ୍ୟ ସଂପର୍କରେ ବୁଝାଇଛନ୍ତି । ଦେବର୍ଷି ନାରଦ ପଣ୍ଡୁ ପୁତ୍ର ଯୁଧିଷ୍ଠିରଙ୍କୁ ପୁଷ୍କର ମାହାତ୍ମ୍ୟ, କାବେରୀ-ନର୍ମଦା ସଂଗମ ମାହାତ୍ମ୍ୟ, ନର୍ମଦା ମାହାତ୍ମ୍ୟ, ରେବା ମାହାତ୍ମ୍ୟ, ଯମୁନା ମାହାତ୍ମ୍ୟ, ବାରଣାସୀ, ମାହାତ୍ମ୍ୟ, ପ୍ରୟାଗ ମାହାତ୍ମ୍ୟ, ବୈତରଣୀ ମାହାତ୍ମ୍ୟ ଏବଂ ବିରଜା କ୍ଷେତ୍ର ମାହାତ୍ମ୍ୟ ସଂପର୍କରେ ସୂଚନା ଦେଇଛନ୍ତି । ଏହିସବୁ ତୀର୍ଥ ବୁଲିଲେ ସକଳ ପାପ କ୍ଷୟ ହେବା ସହିତ କୋଟିଜନ୍ମର ପୁଣ୍ୟ ମିଳିବ ବୋଲି ନାରଦ ଯୁଧିଷ୍ଠିରଙ୍କୁ କହିଛନ୍ତି । ନାରଦ ଯୁଧିଷ୍ଠିରଙ୍କୁ ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ର ସଂପର୍କରେ ଯାହା ଉଲ୍ଲେଖ କରିଛନ୍ତି ତାହା ନିମ୍ନରେ ଦିଆଗଲା-

"ତହୁଁ **ବିରଜା ତୀର୍ଥ**କୁ ଯିବ ଯୁଧିଷ୍ଠିର
**ବଇତରଣୀ**ର ନୀର ସର୍ବ ପାପହର ।
ତହିଁ ସ୍ନାନ କରି ଚନ୍ଦ୍ର ପ୍ରାୟ ବିରାଜିବ
କୁଳ ତୀର୍ଥେ ଯାଇ ସର୍ବ ପାପ ଛଡାଇବ ।
ଗୋ ସହସ୍ର ଦାନ ଫଳ ପାଇ କୁଳ ତାରି
ଯହିଁ ଜ୍ୟୋତିରଥ୍ୟା ନଦୀ ଶୋଣ ନଦୀବାରି ।
ଏ ଦୁଇ ସଙ୍ଗମ ସ୍ଥାନେ ରହିବ ହେ ଯାଇଁ
ପିତୃ ଦେବତା ତର୍ପଣ କରିବ ଯେ ତହିଁ ।" (ପଦ୍ମପୁରାଣ, ସ୍ୱର୍ଗଖଣ୍ଡ, ପୃଷ୍ଠା-୮୬)

[ ତଥ୍ୟ: ପଦ୍ମପୁରାଣ (ସ୍ୱର୍ଗଖଣ୍ଡ) -ଓଡ଼ିଆ ଅନୁବାଦ (ନୂତନ ମୁଦ୍ରଣ), ଗୋପୀନାଥ କରଶର୍ମା ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶାବଜାର, କଟକ, ପୃଷ୍ଠା-୮୬ ]

ମହାଭାରତ ବର୍ଣ୍ଣନା ଅନୁସାରେ, ବୈତରଣୀ ନଦୀ କୂଳରେ ଦକ୍ଷଙ୍କ ଯଜ୍ଞ ଭଗ୍ନ କରାଯାଇଥିଲା । ମୟୁରଭଞ୍ଜରୁ ମିଳିଥିବା ତାମ୍ର ଶାସନରୁ ଜଣାଯାଏ, ବୈତରଣୀ ନଦୀ ତୀରରେ ଅବସ୍ଥିତ କେନ୍ଦୁଝର ରାଜ୍ୟ 'ଯମଗର୍ତ୍ତ' ମଣ୍ଡଳ ନାମରେ ଖ୍ୟାତ ଥିଲା । ଦୀର୍ଘତମା ଋଷି ଏହି 'ଯମଗର୍ତ୍ତ' ମଣ୍ଡଳରେ ଅବସ୍ଥାନ କରି ଯମ ସାଧନା ପୂର୍ବକ ସମାଜରେ ସର୍ବ ପ୍ରଥମେ ଗାନ୍ଧର୍ବ ବିବାହ ବ୍ୟବସ୍ଥା ପ୍ରଚଳନ କରିଥିଲେ ।

ନବମ ଶତାବ୍ଦୀରେ ରଚିତ ସଂସ୍କୃତ ପୁରାଣ 'କପିଳ ସଂହିତା'ରେ ମଧ୍ୟ ବୈତରଣୀ ନଦୀ ଓ ବିରଜା କ୍ଷେତ୍ରର ବିଶେଷତ୍ୱ ସଂପର୍କରେ ଉଲ୍ଲେଖ ରହିଛି । ବୈତରଣୀ ମୁକ୍ତିଦାୟିନୀ, ପୁଣ୍ୟପ୍ରଦା ନଦୀ ଭାବେ ବର୍ଣ୍ଣିତ ହୋଇଛି । ଏହାସହିତ ବିରଜା କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀଙ୍କୁ ଦର୍ଶନ କଲେ ସାତ୍ତ୍ୱିକ ମନୋଭାବ ମିଳେ ଏବଂ ତାମସିକତା ଦୂର ହୁଏ । କପିଳ ସଂହିତାରେ ବୈତରଣୀକୁ ଗଙ୍ଗା ରୂପେ ବର୍ଣ୍ଣନା କରାଯାଇଛି ।

"ବୈତରଣୀ ପାପହାରିଣୀ ଗଙ୍ଗାୟା ପ୍ରତିରୂପିଣୀ,
ସ୍ନାନେ ପାପହାରୀ ଦେବୀ ! ବୈତରଣୀ ନମୋସ୍ତୁତେ ।
ତତ୍ର **ବୈତରଣୀ** ଦେବୀ ନଦୀ ମୁକ୍ତି ପ୍ରଦାୟିନୀ,
ଗଙ୍ଗା ଦେବୀହ୍ୟସୌ ବିପ୍ରଃ ସତ୍ୟଂ ସତ୍ୟଂ ନ ସଂଶୟଃ ।"

"ତସ୍ମିନ୍ କ୍ଷେତ୍ରେ (ବିରଜା କ୍ଷେତ୍ରେ) ଦ୍ୱିଜଶ୍ରେଷ୍ଠା ବିରଜା ବିରଜଃ ପ୍ରଦା
ବିରଜା ମୁଖୋଲୋକ୍ୟ ରଜଃ ପ୍ରକ୍ଷାଳନଂ ଭବେତ୍ ସଦା ।"

ସେହିଭଳି ବାୟୁ ପୁରାଣରେ ମଧ୍ୟ ବୈତରଣୀ ନଦୀ ସଂପର୍କରେ ଉଲ୍ଲେଖ ରହିଛି । ବୈତରଣୀରେ ପିତୃତର୍ପଣ କଲେ ୨୧ କୁଳ ଉଦ୍ଧାର ହୁଏ ।

"ଯାଃସ୍ତେ **ବୈତରଣୀ** ନାମ ନଦୀ ତ୍ରୈଲୋକ୍ୟ ବିଶ୍ରୁତା
ଯାଃବତୀର୍ଣ୍ଣା ଗୟାକ୍ଷେତ୍ରେ ପିତୃଣାଂ ତାରଣାୟ ବୈ
ସ୍ନାତ୍ୱା **ଗୋଦୋ ବୈତରଣ୍ୟାଂ** ତ୍ରିସପ୍ତ କୁଳମୁଦ୍ଧରେତ୍ ।" (ବାୟୁ ପୁରାଣ, ଗୟା ମାହାତ୍ମ୍ୟ)

'ବିରଜା କ୍ଷେତ୍ର ମାହାତ୍ମ୍ୟ'ରେ ମଧ୍ୟ ବୈତରଣୀ ସଂପର୍କରେ ବର୍ଣ୍ଣନା ରହିଛି । ନାଭିଗୟାରେ ତପସ୍ୟା କରି ମା' ବିରଜା ମୃତ୍ୟୁକୁ ଜୟ କରିଥିଲେ ।

"ଅତିମେଧ୍ୟାତ୍ ଭଗବତୀ ଗୟାନାଭୌ ତପଃକୃତମ୍
ମୃତ୍ୟୁଂ ଜିଗାୟ ତତ୍ରୈବ ତସ୍ମାତ୍ ମୃତ୍ୟୁଞ୍ଜୟଃ ସଦା ।" (ବିରଜା କ୍ଷେତ୍ର ମାହାତ୍ମ୍ୟ)

ସେହିଭଳି 'କପିଳ ସଂହିତା'ର ଅନ୍ୟ ଏକ ଶ୍ଲୋକରେ ବୈତରଣୀ ନଦୀର ମାହାତ୍ମ୍ୟ ସଂପର୍କରେ ଉଲ୍ଲେଖ କରାଯାଇଛି ।

"**ବୈତରଣ୍ୟାଂ** ଗୋଦାନଂ ଗୟାୟାଂ ପିଣ୍ଡ ପାତନମ୍
ବାରଣାସ୍ୟାଂ ତନୁଂ ତ୍ୟକ୍ତ୍ୱ ନ ଭୂୟୋର୍ଭୁବିଜାୟତେ ।" (କପିଳ ସଂହିତା)

"**ବୈତରଣୀ** ପାପହାରୀ ଗଙ୍ଗାୟାଃ ପ୍ରତିରୂପିଣୀ,
ସ୍ନାନେ ପାପହାରୀ ଦେବୀ ! **ବୈତରଣୀ** ନମୋସ୍ତୁତେ ।
ଅତ୍ର **ବୈତରଣୀ** ଦେବୀ ! ନଦୀମୁକ୍ତି ପ୍ରଦାୟିନୀ,
ଗଙ୍ଗାଦେବୀତ୍ୱସୌ ବିପ୍ରାଃ ସତ୍ୟଂ ସତ୍ୟଂ ନ ସଂଶୟଃ ।
**ବୈତରଣୀ** ମହାପୁଣ୍ୟାଃ ଭୁକ୍ତିଦା ମୁକ୍ତିଦା ନୃଣାମ୍,
ମହାପାତକ କୋଟିଘ୍ନି ସକୃଦ୍ଦର୍ଶନ ମାତ୍ରତଃ ।" (କପିଳ ସଂହିତା)

ବିରଜା କ୍ଷେତ୍ରର ପ୍ରାଚୀନତା ଓ ବୈତରଣୀ ନଦୀର ମାହାତ୍ମ୍ୟ ସଂପର୍କରେ ପଣ୍ଡିତ ରାମକୃଷ୍ଣ ପାଢୀଙ୍କ ରଚିତ ସଂସ୍କୃତ ପୁରାଣ 'ଅବଧୂତ ଗୀତା'ରେ ମଧ୍ୟ ଉଲ୍ଲେଖ ରହିଛି ।

"ଧନ୍ୟାସ୍ତୁଭୁବି ମାତୃକା ବିକସିତା କ୍ଷେତ୍ରସ୍ୟ ଯା ସୋଦରା
ଖ୍ୟାତ **ବୈତରଣୀ** ନଦୀ ପ୍ରବହତି ଯତ୍ରୋତ୍ତରାବାହିନୀ
ଯତ୍ରାଷ୍ଟୌ ବଟପୀଠ ସିଦ୍ଧପୁରୁଷଃ ସିଦ୍ଧେଶ୍ୱରଃ କଥ୍ୟତେ
ତତୋ ଯସ୍ୟା ନିଶାକର ଅବଧୂତ ମାତା ସୁବର୍ଣ୍ଣେ କ୍ଷଣା ।"

[ ତଥ୍ୟ ସହାୟତା: ବିଜୟ ଭୂଷଣ ନନ୍ଦ, 'ଯଯାତି', ଯାଜପୁର ଜିଲ୍ଲା ମହୋତ୍ସବ:୨୦୧୪ ସ୍ମରଣିକା, 'ପ୍ରାଚୀନ ପୁରାଣସଂହିତା ପୃଷ୍ଠାରେ ବିରଜା କ୍ଷେତ୍ର']

ଦେବ ଅର୍ଥାତ୍ ବରାହନାଥଙ୍କ ଦକ୍ଷିଣ ପାର୍ଶ୍ୱରେ ଥିବା ବୈତରଣୀ ନଦୀ କୂଳସ୍ଥ ବାରୁଣୀ ତୀର୍ଥରେ ସ୍ନାନ କରି ଶୁଚିପୂର୍ବକ ଦେବଦର୍ଶନ ସହିତ ପିତୃପୁରୁଷଙ୍କୁ ପିଣ୍ଡଦାନ କଲେ ଦଶପାତକରୁ ମୁକ୍ତି ମିଳେ ବୋଲି 'ବିରଜା କ୍ଷେତ୍ର ମାହାତ୍ମ୍ୟ'ରେ ବର୍ଣ୍ଣନା ରହିଛି ।

"ନଦୀ ବୈତରଣୀ ଦେବୀ ! ସଦା ବହତି ନିର୍ମଳା,
ଦେବସ୍ୟ ଦକ୍ଷିଣେ ପାର୍ଶ୍ୱେ ପଶ୍ଚିମେଷ୍ଟୈବ ସର୍ବତଃ ।
ତୟୋରନ୍ତୟୋର୍ଦେବୀ ! ତୀର୍ଥ ବାରୁଣମୁଚ୍ୟତେ,
ତସ୍ମାଦାଚମନଂ ସମ୍ୟକ ଶୁଚିସ୍ତଦ୍‌ଗତ ମାନସଃ ।
ଦେବସ୍ୟ ଦର୍ଶନେ ଦେବୀ ! ମୁଚ୍ୟତେ ଦଶପାତକୈଃ ।" (ବିରଜା କ୍ଷେତ୍ର ମାହାତ୍ମ୍ୟ)

ବ୍ରହ୍ମ ପୁରାଣରେ ଉଲ୍ଲେଖ ରହିଛି, ଯେଉଁମାନେ ପୁଣ୍ୟତୋୟା ବୈତରଣୀରେ ସ୍ନାନ କରନ୍ତି ସେମାନେ ସର୍ବପାତକରୁ ମୁକ୍ତ ହୁଅନ୍ତି ।

"ଆସ୍ତେ ବୈତରଣୀ ତତ୍ର ସର୍ବପାପହରା ନଦୀ,

ଯସ୍ୟାଂ ସ୍ନାତ୍ୱା ନରଶ୍ରେଷ୍ଠ ସର୍ବପାପୈ ପ୍ରମୁଚ୍ୟତେ । (ବ୍ରହ୍ମ ପୁରାଣ, ଅଧ୍ୟାୟ-୪୨)

ବାମନ ପୁରାଣରେ ମଧ୍ୟ ବୈତରଣୀ ନଦୀର ପବିତ୍ରତା ସଂପର୍କରେ ଉଲ୍ଲେଖ କରାଯିବା ସହିତ ଏହାକୁ ଏକ ପିତୃତୀର୍ଥ ଭାବେ ବର୍ଣ୍ଣନା କରାଯାଇଛି ।

"ଉପୋଷ୍ୟ ରଜନୀମେକାଂ ବିରଜାଂ ସ ନଦୀଂ ଯଯୌ,

ସ୍ନାତ୍ୱା ବିରଜସେ ତୀର୍ଥେ ଦତ୍ତ୍ୱା ପିଣ୍ଡଂ ପିତୁସ୍ତଥା । (ବାମନ ପୁରାଣ)

ଆହୁରି ମଧ୍ୟ ଅନ୍ୟାନ୍ୟ ହିନ୍ଦୁ ଧର୍ମଶାସ୍ତ୍ରରେ ବୈତରଣୀ ନଦୀର ପବିତ୍ରତା ଓ ଧାର୍ମିକ ଗୁରୁତ୍ୱ ସଂପର୍କରେ ବହୁ ଉଲ୍ଲେଖ ରହିଛି । ପୁରାଣରେ କଥିତ ଅଛି, ଯେଉଁଠାରେ ଶିବ, ବିଷ୍ଣୁ ଓ ପାର୍ବତୀ ଏକତ୍ର ବାସ କରନ୍ତି ସେଠାରେ ଗଙ୍ଗା ବାସ କରନ୍ତି । ଶିବ, ବିଷ୍ଣୁ ଓ ଦୁର୍ଗାଙ୍କ ଏକତ୍ର ଅବସ୍ଥାନ ଫଳରେ ବିରଜାକ୍ଷେତ୍ରରେ ବୈତରଣୀ ଗଙ୍ଗା ପରମପାବନୀ ଭାବେ ପରିଚିତ । ଯାଜପୁରର ବୈତରଣୀ ନଦୀ କୂଳରେ ଶିବ, ବିଷ୍ଣୁ ଓ ପାର୍ବତୀ ଏକତ୍ର ଅବସ୍ଥାନ କରନ୍ତି, ସେହି ଦୃଷ୍ଟିରୁ ଯାଜପୁର ସର୍ବାପେକ୍ଷା ପବିତ୍ର ସ୍ଥାନ । 'ବିରଜା କ୍ଷେତ୍ର ମହାତ୍ମ୍ୟ'ରେ ବୈତରଣୀ ନଦୀର ପବିତ୍ରତା ନେଇ ବହୁ କଥା ଉଲ୍ଲେଖ ରହିଛି । ଏଥିରୁ କିଛି ନିମ୍ନରେ ଉଦ୍ଧାର କରାଗଲା-

"ଅସ୍ମାଭିରେବନାସ୍ମାକଂ ବିୟୋଗଃ କୁତ୍ରଚିତ୍ ଭବେତ୍,

ବୟଂ ଯତ୍ର ମହାଦେବୀ ! ତତ୍ର ଗଙ୍ଗା ସ୍ୱୟଂ ଭବେତ୍ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

"କୃଷ୍ଣା ବେଗବତୀ ପୁଣ୍ୟା କାବେରୀ ବିଚିମାଳିନୀ,

ରେବା ଗୋଦା ଶତଦ୍ରୁ ଶ୍ଚ ସିନ୍ଧୁ ତୀରମ୍ ବିଶେଷତଃ ।

କ୍ଷେମଦା ବିଶ୍ୱରୂପାଶ୍ଚ ମାନଦା ବୈତରଣ୍ୟପି,

ଏତଦାଶ୍ରୟିଷୁ ସ୍ଥାନେ ଷ୍ୱସ୍ତି ସାନ୍ନିଧ୍ୟାମମ୍ବିକେ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

(ଏଠାରେ 'ମାନଦା' ମହାନଦୀକୁ ବୁଝାଉଛି ।)

"ଭଗିରଥ ସମାନୀତା ଯା ବିମୁକ୍ତେ ସୁରାପଗା,

ଯତ୍ର ବୈତରଣୀ ଦେବୀ ! ଶୈବ ଗଙ୍ଗା ନ ସଂଶୟ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

"ରସାତଳ ମହିନାକେ ସ୍ୱେଷାବହତି ନିର୍ମଳା,
ତ୍ରିଧାଭୁତ୍ୱା ହୈମବତୀ ଶ୍ରୀୟମାତନ୍ୱତିପରାମ୍ ।
କ୍ଷେତ୍ରେ ବୈରଜସେ ଦେବୀ ! ହରବରାହ ମଧ୍ୟଗା,
ଭୂମୌ ମମାପି ବିଷ୍ଣୋଷ୍ଟ ପ୍ରୀତୟେ ତତ୍ରକାରଣମ୍ ।
ବଦାମିତେ ସରେଜାକ୍ଷୀ ! ଶୃଣୁତତ୍ ଶୈଳନନ୍ଦିନୀ,
ମଧ୍ୟେ ବହତି କଲ୍ୟାଣୀ ଗଙ୍ଗା ହରବରାହୟୋଃ ।
**ବୈତିରଣ୍ୟାକ୍ଷୟା** ଭୂମୌ ଯା ଗଙ୍ଗା କୀର୍ତ୍ତ୍ୟତେ ବୁଧୌ,
ଆଖଣ୍ଡଳାଭିଷେକାୟ ପ୍ରଭାସ ବିହିତା ମହୀମ୍ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ଭାରତର ବିଭିନ୍ନ ଅଞ୍ଚଳରୁ ତୀର୍ଥଯାତ୍ରୀମାନେ ବିରଜା କ୍ଷେତ୍ରକୁ ଆସି ବୈତରଣୀରେ ତୀର୍ଥ ସ୍ନାନ କରି ପିତୃପୁରୁଷଙ୍କୁ ପିଣ୍ଡଦାନ କରିଥା'ନ୍ତି । ବୈତରଣୀର ଉତ୍ତର ତୀର ଅତ୍ୟନ୍ତ ପାବନ ଭୂମି ଅଟେ । ବୈତରଣୀରେ ସ୍ନାନ କରିବା ପୂର୍ବରୁ ଭକ୍ତମାନେ ମାତା ବୈତରଣୀଙ୍କୁ ନମସ୍କାର ପୂର୍ବକ ପ୍ରାର୍ଥନା କରିଥା'ନ୍ତି ।

"**ବୈତରଣ୍ୟାଉରେ** ତୀରେ ସ୍ନାନମତ୍ୟନ୍ତ ଦୁର୍ଲଭମ୍ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ବୈତରଣୀରେ ସ୍ନାନ ସମୟରେ ସବୁ ପ୍ରକାର ପାପରୁ ମୁକ୍ତି ପାଇବା ନିମନ୍ତେ ଅନ୍ୟ ଏକ ପ୍ରାର୍ଥନା ବୋଲାଯାଏ ।

"**ବୈତରଣୀ** ! ମହାଭାଗେ ! ଗୋବିନ୍ଦ ଶଙ୍କର ପ୍ରିୟେ,
ସ୍ନାନଂ କରୋମି ଦେବୀ ! ତ୍ୱମାନୁଜ୍ଞାଂଦାତୁମର୍ହସି ।
**ଗୋନାସିକାତଃ ସଂଭୂତେ** ! ଧାତୃଯଜ୍ଞ ସମଙ୍ଗତେ,
ଜନ୍ମଜନ୍ମନି ଯତ୍ପାପଂ ସ୍ନାନେନାନେନ ନଶ୍ୟତୁ ।
**ବୈତରଣୀ** ! ପାପହାରିଣୀ ! ଗଙ୍ଗାୟାଃ ପ୍ରତିରୂପିଣୀ,
ପାପାନି ହର ମେ ଦେବୀ ! **ବୈତରଣୀ** ନମସ୍ତୁତେ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ହିନ୍ଦୁ ତୀର୍ଥଯାତ୍ରୀମାନେ ପବିତ୍ର ସ୍ନାନ ଉଦ୍ଦେଶ୍ୟରେ ପ୍ରୟାଗ, ଗୟା, ପୁଷ୍କର, କାଶୀ ଓ ମହୋଦଧି ଆଦି ଯାଇଥାନ୍ତି । ଏସବୁ ତୀର୍ଥକ୍ଷେତ୍ର ଅପେକ୍ଷା ବୈତରଣୀ ସ୍ନାନ ଅତି ପବିତ୍ର ବୋଲି 'ବିରଜାକ୍ଷେତ୍ର ମାହାତ୍ମ୍ୟ'ରେ ବର୍ଣ୍ଣନା କରାଯାଇଛି ।

"ପ୍ରୟାଗାତ୍ ପୁଷ୍କରାତ୍ କାଶ୍ୟାଃ ସାଗରାଦ୍ରଜନୀପତେ,
ଦ୍ରୁତଂ ବୈ ତାରୟେତ୍ ଯସ୍ମାତ୍ତସ୍ମାତ୍ **ବୈତରଣୀ** ସ୍ମୃତା ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

"ଗୋନାସିକାତଃ ସଂଭୂତା ପୂଣ୍ୟା **ବୈତରଣୀ** ନଦୀ,
ଭୁକ୍ତିଦା ମୁକ୍ତିଦା ନୃଣାମ୍ ସକୃଦ୍ଦର୍ଶନ ମାତ୍ରତଃ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ପ୍ରାଚୀନ କାଳରେ ଯାଜପୁର ନିକଟବର୍ତ୍ତୀ ପଣସା ଗ୍ରାମର ହରନ୍ତେଶ୍ୱର ଓ ମୁକୁନ୍ଦେଶ୍ୱର ମଧ୍ୟବର୍ତ୍ତୀ ସ୍ଥାନରେ ବାରୁଣୀ ତୀର୍ଥ ଅବସ୍ଥିତ ଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଏହି ତୀର୍ଥ ଦଶାଶ୍ୱମେଧ ଘାଟର ପାର୍ଶ୍ୱରେ ବରାହନାଥଙ୍କ ନିକଟସ୍ଥ ବିଶ୍ୱରୂପେଶ୍ୱରଙ୍କ ପଶ୍ଚାତ୍‌ଭାଗରେ ନଦୀର ଉତ୍ତର ତୀରକୁ ସ୍ଥାନାନ୍ତରିତ ହୋଇଯାଇଛି । 'ବିରଜା କ୍ଷେତ୍ର ମାହାତ୍ମ୍ୟ'ରେ ବାରୁଣୀ ତୀର୍ଥର ଅବସ୍ଥିତି ଓ ଗୁରୁତ୍ୱ ସଂପର୍କରେ ସ୍ପଷ୍ଟ ଭାବେ ବର୍ଣ୍ଣିତ ରହିଛି ।

"ବୈତରଣ୍ୟୁତ୍ତରେ ତୀରେ ସ୍ଥାନମତ୍ୟନ୍ତ ଦୁର୍ଲଭମ୍,
ଦୃଷ୍ଟୈବ ତତ୍ର ସାନ୍ନିଧ୍ୟମ୍ ମନୋମେ ରୋଚତେ ସଦା ।
ଦେବୈ ସମେତୈ ଦେବେଶି ! ବସତେସ୍ମ ଗିରୀନ୍ଦ୍ରଜେ,
ଅଷ୍ଟଭିର୍ବସୁଭି ଦେବୀ ! ସମେତୈ ପୂଜତୋହ୍ୟହମ୍ ।
ଅତୁଳଂ ହର୍ଷମ୍‌ପେଦେ ଦେବୈରପି ସୁଦୁର୍ଲଭମ୍,
ନଦୀ **ବୈତରଣୀ ଦେବୀ** ! ସଦା ବହତି ନିର୍ମଳା ।
ଦେବସ୍ୟ ଦକ୍ଷିଣେ ପାର୍ଶ୍ୱେ ପଶ୍ଚିମେ ଚୈବସର୍ବତଃ,
ତୟୋ ରନ୍ତରୟୋ ଦେବୀ ! ତୀର୍ଥ ବାରୁଣମୁଚ୍ୟତେ ।
ତତ୍ର ସ୍ନାତ୍ୱା ମହାଦେବୀ ! ସନ୍ତର୍ପ୍ୟ ପିତୃଦେବତାଃ,
ତସ୍ମାଦାଚମନମ୍ ସମ୍ୟକ ଶୁଚିସ୍ତଦଗତ ମନସଃ ।
ଦେବସ୍ୟ ଦର୍ଶନେ ଦେବୀ ! ମୁଚ୍ୟତେ ଦଶପାତକୈଃ,
ତସ୍ମାଦାହମ୍ ସୁରଶ୍ରେଷ୍ଠ ! ହରନ୍ତେଶଃ ସୁବିଶ୍ରୁତଃ ।
ବସୁଭିଃ ପୂଜିତୋ ଯୋଽପି ହରନ୍ତେଶ ନଦୀତଟେ,
**ବୈତରଣ୍ୟାଂ** ନିମଜ୍ଜୈବ ଯଃ ପଶ୍ୟେତଃ ମହେଶ୍ୱରମ୍ । (ବିରଜାକ୍ଷେତ୍ର ମାହାତ୍ମ୍ୟ)

'ବିରଜାକ୍ଷେତ୍ର ମାହାତ୍ମ୍ୟ'ରେ ବୃହତ୍ତର ବୈତରଣୀର ଧାର୍ମିକ ଗୁରୁତ୍ୱ ବହନ କରୁଥିବା 'ତ୍ରିବେଣୀ' ନାମରେ ଏକ ସ୍ଥାନ ସଂପର୍କରେ ଉଲ୍ଲେଖ ରହିଛି । ଏଠାରୁ ବୈତରଣୀ ତିନି ଭାଗରେ ବିଭକ୍ତ ହୋଇ ବହିଯାଇଛି । ତ୍ରିବେଣୀ ଦୁଇ ପ୍ରକାର । ଯଥା- ବଦ୍ଧତ୍ରିବେଣୀ ଓ ମୁକ୍ତ ତ୍ରିବେଣୀ । ବୈତରଣୀରେ ଅବସ୍ଥିତ ତ୍ରିବେଣୀ ତୀର୍ଥ ମୁକ୍ତ ତ୍ରିବେଣୀ ଅଟେ । ଏହି ତିନିଗୋଟି ଜଳଧାରକୁ ଯଥାକ୍ରମେ ଶଙ୍କର, ବ୍ରହ୍ମା ଓ ବିଷ୍ଣୁଙ୍କ ଶକ୍ତିଶଙ୍କରୀ, ବ୍ରହ୍ମାଣୀ ଓ ବୈଷ୍ଣବୀଙ୍କର ପରିପ୍ରକାଶ ବୋଲି କୁହାଯାଏ । ଏହି ସ୍ଥାନ ହିନ୍ଦୁମାନଙ୍କ ପାଇଁ ଅତ୍ୟନ୍ତ ପବିତ୍ର ସ୍ଥାନ ।କାରଣ ତିନିଗୋଟି ଜଳଧାରର ଅଧିଶ୍ୱରୀ ରୂପେ ତିନି ଦେବୀଙ୍କର ଏହା ମିଳନ ସ୍ଥଳ ଅଟେ । ଏହି ତିନିଗୋଟି ଜଳଧାରର ନାମ ହେଲା - ତ୍ରିଜଟା, ବେଗବତୀ ଓ ବୈତରଣୀ ।

"ତ୍ରିଜଟା ବେଗବତ୍ୟାଖ୍ୟା **ବୈତରଣ୍ୟା**ପଗା ଇମାଃ,

ଯତ୍ରୈତାଃ ସଙ୍ଗତାସ୍ତିସ୍ର ସାତ୍ରିବେଣିତି କଥ୍ୟତେ ।

ତ୍ରିଜଟା ଶଙ୍କରୀପ୍ରୋକ୍ତା ବ୍ରାହ୍ମୀ ବେଗବତୀ ନଦୀ,

ବୈଷ୍ଣବୀ **ବୈତରଣ୍ୟା**ସନ୍ ତ୍ରୟୋଦେବୀଷୁ ସଂଗତା ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ବର୍ତ୍ତମାନ ଯାଜପୁରର ଭୌଗୋଳିକ ଅବସ୍ଥିତିରେ ଯଥେଷ୍ଟ ପରିବର୍ତ୍ତନ ଦେଖା ଦେଇଥିବାରୁ ତ୍ରିଜଟା ଓ ବେଗବତୀ ନଦୀକୁ ଚିହ୍ନିତ କରିବା କଷ୍ଟକର ମନେ ହୋଇଥାଏ । ତଥାପି ଯାଜପୁର ସହରର ଅଳ୍ପ ପୂର୍ବକୁ ଉତ୍ତରାଭିମୁଖୀ ପ୍ରବାହିତ ଏକ ଶାଖା ନଦୀ ଗେଙ୍ଗୁଟିକୁ ତ୍ରିଜଟା ସହ ତୁଳନା କରାଯାଇଥାଏ । ସେହିଭଳି ବୈତରଣୀ ନଦୀରୁ ଗେଙ୍ଗୁଟି ସୃଷ୍ଟି ହୋଇଥିବା ସ୍ଥାନରୁ ଦକ୍ଷିଣକୁ ପ୍ରବାହିତ ବେଗବତୀ ନାମରେ ଏକ ଶାଖା ନଦୀ ଥିଲା । ଯଦିଓ ଯାଜପୁର ସହର ତଥା ପୂର୍ବ ଦିଗର ତଳ ଅଞ୍ଚଳକୁ ରକ୍ଷା କରିବା ପାଇଁ ବୈତରଣୀର ଦକ୍ଷିଣ ତଟରେ ବଡ଼ ବନ୍ଧ ନିର୍ମାଣ କରାଯାଇ ବେଗବତୀର ସ୍ରୋତକୁ ବନ୍ଦ କରି ଦିଆଯାଇଛି ତଥାପି ଏହାର ତଳ ଅଂଶ 'ବେଙ୍ଗା' ନାମରେ ବହୁ କ୍ଷୁଦ୍ରକ୍ଷୁଦ୍ର ଶାଖା କେଉଁଠାରେ ଗଭୀର ତ କେଉଁଠାରେ ଅଗଭୀର ଜଳଧାର ରୂପେ ଏବେ ମଧ୍ୟ ପ୍ରବାହିତ ହୋଇଥାଏ ।

ପୁଣି ମଧ୍ୟ, ଉତ୍ତରରେ 'ମୁଦ୍‌ଗଲେଶ୍ୱର ମୁହଁ' ନିକଟରୁ ଭଦ୍ରକ ଜିଲ୍ଲାର ଆନନ୍ଦପୁର ପାର୍ଶ୍ୱକୁ ଗେଙ୍ଗୁଟି ଓ ଦକ୍ଷିଣରେ 'ସିନ୍ଦୁରାଇ ମୁହଁ' ନିକଟରୁ ବେଗବତୀ ବୈତରଣୀର ଦୁଇ ପ୍ରମୁଖ ଶାଖା ଭାବେ ପ୍ରବାହିତ ହେଉଥିଲେ ବୋଲି କୁହାଯାଏ । ବ୍ରହ୍ମା ଯଜ୍ଞ କରି ସ୍ୱର୍ଣ୍ଣଗଙ୍ଗାକୁ ଆବାହନ କରିଥିଲେ । ଫଳସ୍ୱରୂପ ବିରଜାକ୍ଷେତ୍ରରେ ସ୍ୱର୍ଣ୍ଣଦୀ (ସ୍ୱର୍ଣ୍ଣଗଙ୍ଗା) ଅବତରିତ ହୋଇ ମନ୍ଦାକିନୀ ନାମରେ ପ୍ରବାହିତ ହେଲେ । ପଣସା ଗ୍ରାମର ପୂର୍ବକୁ କିଆନାଳି କୂଳ ଛକ ନିକଟରୁ ବୈତରଣୀରୁ ଏହି ମନ୍ଦାକିନୀର ସୃଷ୍ଟି ହୋଇଥିଲା । ଏହି ନଦୀର ଉପର ଅଂଶ ଅବଲୁପ୍ତ ହୋଇଥିଲେ ମଧ୍ୟ ସେହି ନାମରେ ଏହାର ଶେଷାଂଶ ଏବେ ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ । 'ମନ୍ଦାକିନୀ' ନାମ ଅପଭ୍ରଂଶ ହୋଇ ତାହା 'ମଦାଗିନୀ' ନାମରେ ପରିଚିତ ହୋଇଛି । ଯାଜପୁରର ଅଠରନଳା ପୋଲ ଏହି ଲୁପ୍ତପ୍ରାୟ ନଦୀ ଉପରେ ନିର୍ମିତ ଏବଂ ଏହାର ତୀରେତୀରେ ବହୁ ଶିବ ମନ୍ଦିର ରହିଛି ।

"ଆବାହ୍ୟ ସ୍ୱର୍ଣ୍ଣଦୀମ୍ ସାର୍ଦ୍ଧଂ ଦେବୈରବଭୃଥମ୍ ବ୍ୟାଧାତ୍,

ମନ୍ଦାକିନୀତି ତାଂ ନାମ୍ନା ବିଧାତା ସମଭାବୟତ୍ ।"

"ଯତ୍ର ମନ୍ଦାକିନୀ ପୂର୍ବମୁକ୍ତା ହୂତା ଦିବୋନଦୀ,

ବେଧସାବଭୃଥାର୍ଥମ୍ ସା ସର୍ବପାପ ପ୍ରଣାଶିନୀ ।

ତସ୍ମିନ୍ନବଭୃଥସ୍ଥାନେ ଯତ୍ରଯତ୍ରାବଗାହିତା,

ଦେବ ମହର୍ଷୟଃ ସ୍କନ୍ଦ ! ତତ୍ତତ୍ତୀର୍ଥମଭୁନ୍ମହତ୍ । (ବିରଜାକ୍ଷେତ୍ର ମାହାତ୍ମ୍ୟ)

ମନ୍ଦାକିନୀ ବା ସ୍ୱର୍ଗ ଗଙ୍ଗାର ଯେଉଁ ସ୍ଥାନରେ ଦେବଗଣ ଓ ମୁନିଗଣ ଅବଭୃଥ ସ୍ନାନ କରିଥିଲେ ସେହି ସ୍ଥାନଗୁଡ଼ିକ କାଳକ୍ରମେ ତୀର୍ଥକ୍ଷେତ୍ରରେ ପରିଣତ ହୋଇଥିଲା । ମନ୍ଦାକିନୀ ନଦୀ ଜଳବହୁଳତା ହେତୁ କୂଳ ଅତିକ୍ରମ କରିବାରୁ ଦକ୍ଷିଣକୁ ଚାରିଗୋଟି ଓ ଉତ୍ତରକୁ ତିନିଗୋଟି କ୍ଷୁଦ୍ର ଜଳଧାର ବା ଜଳରେଖା ସୃଷ୍ଟି ହେଲା । ଏମାନଙ୍କୁ 'ସପ୍ତରେଖା' କୁହାଯାଏ । ଏହି ରେଖାଗୁଡ଼ିକର ନାମ ହେଉଛି- ମଦ୍‌ଗୁରେଖା, ଜମ୍ବୁରେଖା, ହଂସରେଖା, ବାସୁକୀରେଖା, ଚିତ୍ରରେଖା, ପଦ୍ମରେଖା ଓ ଶଶୀରେଖା । ଏହି ରେଖାମାନଙ୍କ ତୀରରେ ଅସଂଖ୍ୟ ମନ୍ଦିର ରହିଛି । ଏହି ରେଖାମାନଙ୍କରେ ସ୍ନାନ କଲେ ସମସ୍ତ ପାପ ନାଶ ହୋଇଥାଏ ବୋଲି ବିଶ୍ୱାସ ରହିଛି ।

"ତସ୍ୟାମ୍ ତସ୍ୟାମ୍ ତୁ ରେଖାୟାମ୍ ଯସ୍ତୁ ସ୍ନାତି ଦିନେଦିନେ
ସର୍ବପାପ ବିନିର୍ମୁକ୍ତଃ ଶିବଲୋକେ ମହିୟତେ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

ମୁନି, ଋଷି, ସିଦ୍ଧ, ଗନ୍ଧର୍ବ, ବସୁ ଆଦିଙ୍କ ପାଇଁ ବ୍ରହ୍ମା ଯାଜପୁରଠାରେ ଅନ୍ୟ ଏକ ନଦୀ ସୃଷ୍ଟି କରିଥିଲେ । ଏହା ଯାଜପୁରର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ କୁଶୀ ଗ୍ରାମ ନିକଟରୁ ବାହାରି ବିରଜା କ୍ଷେତ୍ରର ଦକ୍ଷିଣକୁ ପ୍ରବାହିତ ହୋଇଥିଲା । ନଦୀର ଉତ୍ପତ୍ତି ସ୍ଥଳରୁ ମୁନିଋଷିମାନଙ୍କର ବ୍ୟବହାର ପାଇଁ ବହୁ ପରିମାଣରେ କୁଶ ପ୍ରବାହିତ ହେଉଥିବାରୁ ଏହି ନଦୀର ନାମ 'କୁଶ' ହୋଇଥିଲା । ଏହି ନଦୀ ତୀରରେ ଅବସ୍ଥିତ ବରୁଣେଶ୍ୱର ପୀଠ ତ୍ରିକୋଣାକାର ବିରଜାକ୍ଷେତ୍ରର ଦକ୍ଷିଣ କୌଣିକ ବିନ୍ଦୁ ଅଟେ । ଏଠାରେ ସୂଚନାଯୋଗ୍ୟ, 'କୁଶେଇ' ବା 'କୁଶଭଦ୍ରା' ନାମରେ ବୈତରଣୀର ଅନ୍ୟ ଏକ ଉପନଦୀ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡରେ ପ୍ରବାହିତ ହେଉଛି ।

"କୁଶନାଦାୟ ତାଂ ଦୃଷ୍ଟ୍ୱା ବହନ୍ତୀଂ ବିଚିମାଳିନୀମ୍,
ବ୍ରହ୍ମା କୁଶନଦୀ ତାଂ ତୁ କଲ୍ପୟାମାସ ବୈ ପ୍ରଭୁଃ ।" (ବିରଜାକ୍ଷେତ୍ର ମାହାତ୍ମ୍ୟ)

[ ତଥ୍ୟ ସହାୟତା: ଡ. ଏକାଦଶୀ ପାଢ଼ୀ, ଯୁଗେ ଯୁଗେ ଯାଜପୁର, ପ୍ରକାଶକ: ଚିତ୍ରୋତ୍ପଳା ପବ୍ଲିକେଶନ୍‌ସ, ବଟେଶ୍ୱର, ସାଲେପୁର, ୨୦୦୨, ପୃଷ୍ଠା: ୧୪୮-୧୫୮]

କେବଳ ପୁରାଣରେ ବୈତରଣୀ ସଂପର୍କରେ ଉଲ୍ଲେଖ କରାଯାଇନାହିଁ ବରଂ, ବୈତରଣୀ ନଦୀକୁ ନେଇ ରାଶିରାଶି ସାହିତ୍ୟ ସର୍ଜନା ହୋଇଛି । ପ୍ରାଚୀନ ଓଡ଼ିଆ ସାହିତ୍ୟଠାରୁ ଆରମ୍ଭ କରି ଆଜିର ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ଅନେକ ସାହିତ୍ୟିକ, କବି, ଲେଖକ ସେମାନଙ୍କ ରଚନାରେ ବୈତରଣୀକୁ ସ୍ଥାନ ଦେଇଛନ୍ତି । ମଧ୍ୟଯୁଗୀୟ ପ୍ରଖ୍ୟାତ ଓଡ଼ିଆ କବି ତଥା ପ୍ରମୁଖ ପଞ୍ଚସଖା ଜଗନ୍ନାଥ ଦାସ ବୈତରଣୀ ସଂପର୍କରେ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି । ଜଗନ୍ନାଥ ଦାସଙ୍କ ରଚିତ 'ବଟ ଅବକାଶ' ପୁସ୍ତକରେ ବୈତରଣୀ ସଂପର୍କରେ ଉଲ୍ଲେଖ ଥିବା ପଙ୍‌କ୍ତି ହେଲା-

"କାମେଶ୍ୱର କୁର୍ମେଶ୍ୱର **ବୈତରଣୀ** ଆଖଣ୍ଡଳ
ଏମାନେ ରେଖ କରାଉ ଅଛନ୍ତି ଆସ୍ଥାନ ମଣ୍ଡଳ"

ଏଠାରେ ଓଡ଼ିଶାର ଦେବଦେବୀଙ୍କ ମଧ୍ୟରେ ବୈତରଣୀକୁ ସ୍ଥାନିତ କରାଯାଇଥିବାବେଳେ ବୈତରଣୀ କୂଳରେ ଅବସ୍ଥିତ ଆଖଣ୍ଡଳମଣିଙ୍କ କଥା କୁହାଯାଇଛି ।

[ ତଥ୍ୟ ସହାୟତା: ଡ· ତୀର୍ଥାନନ୍ଦ ମିଶ୍ର, ବିରଜା କ୍ଷେତ୍ର, ସଂପାଦନା ଓ ପ୍ରକାଶକ: ଉତ୍କଳ ପାଠକ ସଂସଦ, କଟକ, ୧୯୯୬, ପୃଷ୍ଠା: ୨୦୧]

## ବୈତରଣୀ ଅବବାହିକାରେ ଶୈବ, ବିଷ୍ଣୁ ଓ ଶାକ୍ତ ଉପାସନା

ବୈତରଣୀ ନଦୀକୁ ପୁଣ୍ୟତୋୟା ବୋଲି କୁହାଯାଇଥାଏ । ଏହାର କୂଳେକୂଳେ ଗଢିଉଠିଛି ଶହଶହ ମଠ, ମନ୍ଦିର ଭଳି ଧାର୍ମିକ ଉପାସନାସ୍ଥଳ । ବୈତରଣୀର ଧାରେଧାରେ ୧୦୮ଟି ଶିବଲିଙ୍ଗ ଥିବାରୁ ଏହା ପବିତ୍ର ନଦୀ ଭାବେ ପରିଚିତ । ନଦୀର ଉତ୍ପତ୍ତି ସ୍ଥଳ ଗୋନାସିକା ବ୍ରହ୍ମେଶ୍ୱର ମହାଦେବଙ୍କ ଠାରୁ ଆରମ୍ଭ କରି ଆରଡ଼ିର ଆଖଣ୍ଡଳମଣିଙ୍କ ପର୍ଯ୍ୟନ୍ତ ବୈତରଣୀର କୂଳେକୂଳେ ଓଡ଼ିଶାର ପ୍ରସିଦ୍ଧ ଶୈବକ୍ଷେତ୍ରମାନ ରହିଛି । ସେହିଭଳି ବୈତରଣୀ ଉପତ୍ୟକାରେ ରାଜ୍ୟର ପ୍ରମୁଖ ବିଷ୍ଣୁ ଓ ଶାକ୍ତ ଉପାସନାସ୍ଥଳ ରହିଛି । କେନ୍ଦୁଝର ଜିଲ୍ଲାରୁ ଆରମ୍ଭ କରି ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ ନଦୀ କୂଳରେ ଅନେକ ଶୈବ, ବିଷ୍ଣୁ ଓ ଶକ୍ତିପୀଠ ଅବସ୍ଥିତ । ଏମିତିକି ଝାଡ଼ଖଣ୍ଡ ରାଜ୍ୟ ଅନ୍ତର୍ଗତ ପଶ୍ଚିମସିଂହଭୂମି ଜିଲ୍ଲାର ପ୍ରସିଦ୍ଧ ରାମତୀର୍ଥ ବୈତରଣୀ ନଦୀ କୂଳରେ ଅବସ୍ଥିତ ଅନ୍ୟ ଏକ ପ୍ରମୁଖ ଶୈବକ୍ଷେତ୍ର ଭାବେ ବେଶ୍ ଜଣାଶୁଣା ।

### କେନ୍ଦୁଝର ଜିଲ୍ଲା

କେନ୍ଦୁଝର ଜିଲ୍ଲା ଗୋନାସିକାର ବ୍ରହ୍ମେଶ୍ୱର ଶୈବପୀଠ ବୈତରଣୀ କ୍ଷେତ୍ରର ଏହା ଆଦି ଶୈବକ୍ଷେତ୍ର ଭାବେ ପରିଚିତ । ଏହି ଜିଲ୍ଲାର ଝୁଂପୁରା ବ୍ଲକ ଅନ୍ତର୍ଗତ **ନୟାଗଡ଼** ଗ୍ରାମରେ ଅବସ୍ଥିତ **ମୁକ୍ତେଶ୍ୱର** ମନ୍ଦିର ବୈତରଣୀ ଅବବାହିକାର ଅନ୍ୟତମ ପ୍ରାଚୀନ ଶୈବକ୍ଷେତ୍ର । ସେହିଭଳି ଚଂପୁଆ ସବ୍ ଡିଭିଜନ ଅନ୍ତର୍ଗତ ଯୋଡ଼ା ବ୍ଲକ୍‌ର ଐତିହାସିକ **ଚମକପୁର** ଗ୍ରାମର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ଏହି **ଛେଳିଡେଗା** ପ୍ରତ୍ନତାତ୍ତ୍ୱିକ କ୍ଷେତ୍ରଟି ଅବସ୍ଥିତ । ଏଠାରେ ମହାଦେବ **ଧବଳେଶ୍ୱର**ଙ୍କ ଏକ ପ୍ରାଚୀନ ମନ୍ଦିର ରହିଛି । ଦେଓଝର ଜଳପ୍ରପାତ ନିକଟରେ ରହିଛି ପ୍ରସିଦ୍ଧ **ମୁର୍ଗା ମହାଦେବ** ଧବଳେଶ୍ୱରଙ୍କ ପୀଠ । **ଘ୍ୱାମ୍‌ପାଟଣା**ର ନବନିର୍ମିତ **ପରମେଶ୍ୱର ଶୈବକ୍ଷେତ୍ର** ରାଜ୍ୟର ଏକ ପ୍ରମୁଖ ଧାର୍ମିକସ୍ଥଳର ମାନ୍ୟତା ପାଇଛି । **ଘସିପୁରା** ଗ୍ରାମର **ଝାଡ଼େଶ୍ୱର** ଶୈବ ପୀଠ ବୈତରଣୀ

ଉପତ୍ୟକାର ଏକ ବହୁ ପ୍ରସିଦ୍ଧ ଶୈବକ୍ଷେତ୍ର । ଏହି ଶୈବପୀଠଟି ବୈତରଣୀର ବକ୍ଷ ଦେଶରେ ଅବସ୍ଥିତ । **ଆନନ୍ଦପୁର** ବ୍ଲକ୍ ଅନ୍ତର୍ଗତ **ଟୁଙ୍ଗୁଣା**ଠାରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ରହିଛି ଐତିହାସିକ **କୁଣ୍ଡେଶ୍ୱର** ଶୈବପୀଠ । **ହାଟଡ଼ିହି** ବ୍ଲକ୍ ଅନ୍ତର୍ଗତ **ହାବଳେଶ୍ୱର** ପୀଠ ହେଉଛି ବୈତରଣୀ ଉପତ୍ୟକାର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଓ ପ୍ରାଚୀନ ଶୈବକ୍ଷେତ୍ର ।

କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ଐତିହାସିକ **ଜ୍ୟୋତିପୁରଗଡ଼** ନିକଟସ୍ଥ **ନନ୍ଦପୁର** ଗ୍ରାମର **କପିଳ ମୁନି ପୀଠ** ଜିଲ୍ଲା କାହିଁକି ରାଜ୍ୟର ଏକ ପ୍ରସିଦ୍ଧ ବିଷ୍ଣୁ କ୍ଷେତ୍ର ଭାବେ ଜଣାଶୁଣା । ଏଠାରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁଙ୍କର ଅନେକ ପୁରାତନ ମୂର୍ତ୍ତି ରହିଛି । ଏଠାରେ **ମହାଦେବ କପିଳେଶ୍ୱର**ଙ୍କର ଏକ ମନ୍ଦିର ରହିଛି । କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ଭାବେ ପରିଚିତ ଜ୍ୟୋତିପୁରଗଡ଼ର **ଦଧିବାମନଜିଉ ପୀଠ, ରାଜନଗରର ଦଧିବାମନଜିଉ ପୀଠ, କେନ୍ଦୁଝର ସହରର ପ୍ରସିଦ୍ଧ ବଳଦେବଜିଉ ଓ ସିଦ୍ଧଜଗନ୍ନାଥ ପୀଠ, ଆନନ୍ଦପୁରର ଗୋପାଳଜିଉ, ବଞ୍ଚୋର ଦଧିବାମନ ପୀଠ, ଉଦୟପୁରର ମଦନ ଗୋପାଳ ପୀଠ, କୁଣ୍ଡେଶ୍ୱରର ଲକ୍ଷ୍ମୀନାରାୟଣ ପୀଠ** ଆଦି ରାଜ୍ୟର ପ୍ରାଚୀନ ବିଷ୍ଣୁ ଉପାସନାସ୍ଥଳ ଭାବେ ବେଶ୍ ଜଣାଶୁଣା । ଐତିହାସିକ **ରାଜନଗର** ଗ୍ରାମରେ **ଦଧିବାମନଜିଉ**ଙ୍କ ବ୍ୟତୀତ **ମା' ଅନ୍ଧାରୀ ଠାକୁରାଣୀ ପୀଠ, ରଘୁନାଥଜିଉ ମଠ, ପଞ୍ଚମୁଖୀ ହନୁମାନ ମନ୍ଦିର** ସମେତ ବୈତରଣୀ ନଦୀ ପଠାରେ **ଲକ୍ଷ୍ମୀପାଦ, ଭୀମପାଦ, ଜଳେଶ୍ୱର ମହାଦେବଙ୍କ** ମୂର୍ତ୍ତି ରହିଛି । ବୈତରଣୀ ନଦୀ କୂଳରେ ଅବସ୍ଥିତ ବିଷ୍ଣୁ କ୍ଷେତ୍ର ମଧ୍ୟରେ **ଆନନ୍ଦପୁରର ଗୋପାଳଜିଉ** ମନ୍ଦିରଟି ବହୁତ ପ୍ରାଚୀନ । ଐତିହାସିକ ଦୃଷ୍ଟିକୋଣରୁ ଏହି ମନ୍ଦିରଟି ବେଶ୍ ଗୁରୁତ୍ୱ ବହନ କରିଥାଏ । ବୈତରଣୀ ନଦୀର ବାମ ପାର୍ଶ୍ୱରେ ଅବସ୍ଥିତ ଆନନ୍ଦପୁରର ବୈଷ୍ଣବକ୍ଷେତ୍ର **କୋଡ଼ପଡ଼ା**ଠାରେ ରହିଛି ଏହି **ଗୋପାଳଜିଉ**ଙ୍କ ପ୍ରାଚୀନ ମନ୍ଦିର । ବୈତରଣୀ ନଦୀ କୂଳରେ **ଆନନ୍ଦପୁର ସହର** ମଧ୍ୟରେ ଅନ୍ୟତମ ପ୍ରାଚୀନ ବିଷ୍ଣୁ ପୀଠ **ଦଧିବାମନଜିଉ** ମନ୍ଦିର ଅବସ୍ଥିତ । ଏଠାରେ ମହାଦେବ **ପାତଳେଶ୍ୱରଙ୍କ** ଏକ ମନ୍ଦିର ରହିଛି । ମନ୍ଦିର ବେଢାରେ ଏକ **ରାମ ମନ୍ଦିର, ରାଧାକୃଷ୍ଣ ମନ୍ଦିର** ଏବଂ **ଢେଙ୍କା ଠାକୁର**ଙ୍କ ମନ୍ଦିର ରହିଛି । ଢେଙ୍କା ମନ୍ଦିରଟି ମଧ୍ୟ ଏକ ଜଗନ୍ନାଥ ମନ୍ଦିର ।

ଆନନ୍ଦପୁର ଉପଖଣ୍ଡ ହାଟଡିହି ବ୍ଲକ୍‌ର **ବଂଚୋ**ଠାରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ରହିଛି ଐତିହାସିକ **ଦଧିବାମନଜିଉ** ମନ୍ଦିର । ବୈତରଣୀ ନଦୀକୂଳରେ ଘସିପୁରା ବ୍ଲକ୍‌ର ଗୋହିରା ପଞ୍ଚାୟତର **ବୀରଗୋବିନ୍ଦପୁର** ଗ୍ରାମରେ ପ୍ରାଚୀନ **ରଘୁନାଥଜିଉ ମନ୍ଦିର** ଅବସ୍ଥିତ ।

କେନ୍ଦୁଝର ଜିଲ୍ଲାରେ ବୈତରଣୀ କୂଳେକୂଳେ ଅନେକ ଦେବୀ ପୀଠ (ଶାକ୍ତ ଉପାସନାସ୍ଥଳ) ରହିଛି । ବୈତରଣୀ ଉପତ୍ୟକାର ଶାକ୍ତ ଉପାସନା ପରମ୍ପରା ବେଶ୍ ପ୍ରାଚୀନ । **ଘଟଗାଁର ମା' ତାରିଣୀ**ଙ୍କଠାରୁ ଆରମ୍ଭ କରି ଐତିହାସିକ **ଚମକପୁରର ମା'** ବାସୁଳୀ, **ଉଦୟପୁରର ମା' ଅନ୍ଧାରୀ, କନକଦୁର୍ଗା, କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ଜ୍ୟୋତିପୁରଗଡ଼ର ମା'**

**ବାସୁଳି, ମା' ଅନ୍ଧାରୀ ଏବଂ ମା' ଦୁର୍ଗା ମନ୍ଦିର, ଆନନ୍ଦପୁର ଉପଖଣ୍ଡସ୍ଥ ଗୋହିରାର ପ୍ରସିଦ୍ଧ ପତରପଡରୁଣୀ ପୀଠ, ବୀରଗୋବିନ୍ଦପୁରର ବନଦୁର୍ଗା ପୀଠ, ବଂଚୋ ଗ୍ରାମର ମା' ବରାହୀ, ହାବଳେଶ୍ୱରର ସପ୍ତମାତୃକା** ପୀଠ ଜିଲ୍ଲାର ପ୍ରମୁଖ ଶାକ୍ତ ଉପାସନାସ୍ଥଳ ଭାବେ ପରିଚିତ ।

## ଯାଜପୁର ଜିଲ୍ଲା

**ବିରଜା କ୍ଷେତ୍ର** ସମଗ୍ର ଦେଶର ଏକ ପ୍ରାଚୀନତମ ଶକ୍ତି ପୀଠମାନଙ୍କ ମଧ୍ୟରେ ଅନ୍ୟତମ । ବିରଜା କ୍ଷେତ୍ରଟି **'ନାଭିଗୟା'** ଭାବେ ମଧ୍ୟ ପରିଚିତ । ଏଠାରେ ପିଣ୍ଡଦାନ କଲେ ସପ୍ତପୁରୁଷ ଉଦ୍ଧାର ହେବାର ବିଶ୍ୱାସ ରହିଛି । ସତ୍ୟ ଯୁଗରେ ବିଷ୍ଣୁଙ୍କ ଚକ୍ରରେ ନିହତ ହୋଇଥିବା ଭକ୍ତ ଗୟାସୁରର ନାଭି ଏଠାରେ ପଡିଥିବାରୁ ଏହାକୁ 'ନାଭିଗୟା' ବୋଲି କୁହାଯାଇଥାଏ । ଗୟାସୁର ଜଣେ ବିଷ୍ଣୁ ଭକ୍ତ ଥିଲେ । ଏଣୁ ଗୟାସୁରର ମୃତ୍ୟୁ ପରେ ତାହାର ଅଙ୍ଗପ୍ରତ୍ୟଙ୍ଗ ଯେଉଁସବୁ ସ୍ଥାନରେ ପତିତ ହୋଇଥିଲା, ସେସବୁ ସ୍ଥାନର ପବିତ୍ରତା ବୃଦ୍ଧି ପାଇଥିଲା । ଗୟାସୁରର ମୁଣ୍ଡ ବିହାରର ଗୟା ନିକଟସ୍ଥ ଫଲ୍‌ଗୁ ନଦୀରେ ପଡି ସେ ସ୍ଥାନ **'ଶ୍ରୀଗୟା'** ନାମରେ ବିଖ୍ୟାତ ହୋଇଥିବାବେଳେ ତାର ପାଦ ଗୋଦାବରୀ ନଦୀରେ ପଡି ଏହା **'ପାଦଗୟା'** ଏବଂ ନାଭି ବିରଜାକ୍ଷେତ୍ର ବୈତରଣୀ ନଦୀରେ ପତିତ ହୋଇ ଏହା **'ନାଭିଗୟା'** ନାମରେ ବିଖ୍ୟାତ ହେଲା । ବିରଜା ଦେବୀ ଉଷ୍ଣପା ପିତୃଗଣଙ୍କ ମାନସୀ କନ୍ୟା ହୋଇଥିବାରୁ ଏହି କ୍ଷେତ୍ରରେ ପିତୃଗଣଙ୍କୁ ପିଣ୍ଡ ପ୍ରଦାନ କଲେ ସେମାନେ ସନ୍ତୋଷ ହୋଇ ବଂଶର କଲ୍ୟାଣ କାମନା କରନ୍ତି । ଦେବୀ ସତୀଙ୍କର ନାଭି ଅଂଶଟି ଏଠାରେ ପତିତ ହୋଇଥିବାରୁ ଏହାକୁ **'ପାର୍ବତୀ ତୀର୍ଥ'** କୁହାଯାଇଥାଏ ।

ବୈତରଣୀ ନଦୀ କୂଳସ୍ଥ ଦଶାଶ୍ୱମେଧ ଘାଟରେ ଅବସ୍ଥିତ ପ୍ରସିଦ୍ଧ **ସପ୍ତମାତୃକା ପୀଠ** ଦେଶର ଏକ ପ୍ରମୁଖ ଶାକ୍ତ ଉପାସନାସ୍ଥଳ ଭାବେ ଜଣାଶୁଣା । ଏହି ପୀଠଟି ଭାରତବର୍ଷର ଏକ ପ୍ରାଚୀନତମ ହିନ୍ଦୁ ତାନ୍ତ୍ରିକ ପୀଠ ଭାବେ ପରିଚିତ । ମନ୍ଦିରର ମୁଖ୍ୟ ଦ୍ୱାର ପଶ୍ଚିମ ଦିଗକୁ ଥିବାବେଳେ ଉତ୍ତର ଦିଗକୁ ଚାରିଗୋଟି ଦ୍ୱାର ରହିଛି । ଏହି ମନ୍ଦିରରେ ସାତଜଣ ମାତୃକାଗଣ ପୂଜିତ ହୋଇଥାନ୍ତି । ସେମାନେ ହେଲେ- ୧· ଚାମୁଣ୍ଡା, ୨· ବରାହୀ, ୩· ଇନ୍ଦ୍ରାଣୀ, ୪· ବୈଷ୍ଣବୀ, ୫· ବ୍ରାହ୍ମଣୀ (ଶିବଦୂତୀ), ୬· କୁମାରୀ, ୭· ମାହେଶ୍ୱରୀ । ଏହି ସପ୍ତମାତୃକା ମୂର୍ତ୍ତିଙ୍କ ଗହଣରେ ନରସିଂହଙ୍କର ଏକ ବିଶାଳ ମୂର୍ତ୍ତି ମଧ୍ୟ ରହିଛି ।

ଯାଜପୁରର ସହର ମଧ୍ୟରେ ବୈତରଣୀ ନଦୀ କୂଳରେ ଅବସ୍ଥିତ ଦଶାଶ୍ୱମେଧ ଘାଟରେ **ଜଗନ୍ନାଥଙ୍କ ମନ୍ଦିର** ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରୁ ଅନ୍ୟତମ । ଗଙ୍ଗବଂଶୀ ରାଜା ତୃତୀୟ ଅନଙ୍ଗଭୀମ ଦେବ (ଖ୍ରୀ·ଅ·୧୨୧୧-ଖ୍ରୀ·ଅ·୧୨୩୮)ଙ୍କ ସମୟରେ ବୈତରଣୀ ନଦୀ କୂଳସ୍ଥ ଏହି ଦଶାଶ୍ୱମେଧ ଘାଟ ନିକଟରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଶୈଳୀରେ ଜଗନ୍ନାଥ ମନ୍ଦିର

ପ୍ରତିଷ୍ଠାଲାଭ କରିଥିଲା ।

ବିରଜା ଦେବୀଙ୍କ ଅବସ୍ଥିତି ଯୋଗୁଁ ଯାଜପୁରକୁ ଯେଭଳି ବିରଜାକ୍ଷେତ୍ର କୁହାଯାଏ, ଅନୁରୂପ **ବରାହ ବିଷ୍ଣୁଙ୍କ** ଅବସ୍ଥିତି ଯୋଗୁଁ ଏହା ମଧ୍ୟ **ବରାହ କ୍ଷେତ୍ର** ନାମରେ ପରିଚିତ । ଯାଜପୁର ଉପକଣ୍ଠରେ ପ୍ରବାହିତ ପୁଣ୍ୟତୋୟା ବୈତରଣୀ କୂଳରେ ରହିଛି ବରାହନାଥଙ୍କ ଏକ ପ୍ରାଚୀନ ମନ୍ଦିର । ଏହା **ଯଜ୍ଞ ବରାହ** ମନ୍ଦିର ନାମରେ ପରିଚିତ । ଏହି ସ୍ଥାନଟି ଦେଶର ଏକ ପ୍ରମୁଖ ବିଷ୍ଣୁ କ୍ଷେତ୍ର ଭାବେ ଜଣାଶୁଣା । ମନ୍ଦିର ଗର୍ଭ ଗୃହରେ ଶ୍ୱେତ ବରାହ, ଯଜ୍ଞ ବରାହ ଏବଂ ଲକ୍ଷ୍ମୀ ବରାହଙ୍କ ତ୍ରିମୂର୍ତ୍ତିଙ୍କୁ ସ୍ୱତନ୍ତ୍ର ଭାବେ ପୂଜାର୍ଚ୍ଚନା କରାଯାଇଥାଏ ।

**ସିଦ୍ଧେଶ୍ୱର ଶୈବକ୍ଷେତ୍ର**ଟି ଯାଜପୁର ଜିଲ୍ଲା କାହିଁକି ସମଗ୍ର ରାଜ୍ୟର ଏକ ପ୍ରାଚୀନ ଶୈବପୀଠ ଭାବେ ଜଣାଶୁଣା । ଯାଜପୁର ସହରଠାରୁ ମାତ୍ର ପାଞ୍ଚ କିଲୋମିଟର ଦୂରରେ ଦଶରଥପୁର ବ୍ଲକ୍ ଶ୍ରୀବସ୍ତପୁର ଗାଁରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ପ୍ରାଚୀନ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏହା ଏକ ହରିହର ପୀଠ ।

ଯାଜପୁର ଜିଲ୍ଲାର ପୁରାତନ **ଶ୍ୟାମ ସୁନ୍ଦରଜିଉ ମଠ**ଟି ମଧ୍ୟ ବୈତରଣୀ ନଦୀ କୂଳରେ ଗଢ଼ିଉଠିଥିଲା । ଏହି ପ୍ରାଚୀନ ମଠଟି ଦଶରଥପୁରର ବୈତରଣୀ ନଦୀ କୂଳରେ ଶାନ୍ତ ଶୀତଳ ପରିବେଶରେ ଅବସ୍ଥିତ । କୟାଁ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ **କୟାଁ ଗ୍ରାମ**ରେ ବୈତରଣୀ ନଦୀ କୂଳରେ ଅବସ୍ଥିତ **ଜୟଚଣ୍ଡୀଙ୍କ** ମନ୍ଦିର ଅନ୍ୟତମ ପ୍ରାଚୀନ ଶକ୍ତିପୀଠ ଭାବେ ଜଣାଶୁଣା । ମା' ଜୟଚଣ୍ଡୀ ତ୍ରିମୁଖୀ ଓ ଷଡ଼ଭୂଜାବିଶିଷ୍ଟ ।

## ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା

ବୈତରଣୀର ଅନ୍ତିମ ଯାତ୍ରା ସ୍ଥଳରେ ଓଡ଼ିଶାର ପ୍ରସିଦ୍ଧ ଶୈବକ୍ଷେତ୍ର **ଆରଡ଼ିର ଆଖଣ୍ଡଳମଣି** ମନ୍ଦିର ଅବସ୍ଥିତ । ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଅନ୍ତର୍ଗତ ଆରଡ଼ି ଗ୍ରାମ ପଞ୍ଚାୟତ ସଦର ମହକୁମାଠାରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ବାବା ଆଖଣ୍ଡଳମଣି ପୂଜା ପାଇଆସୁଛନ୍ତି ।

ଭଦ୍ରକ ଜିଲ୍ଲାର ଭଣ୍ଡାରିପୋଖରୀ ବ୍ଲକ୍‌ରେ ପୁଣ୍ୟତୋୟା **ବୈତରଣୀ** ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ଐତିହାସିକ ଓ ପ୍ରାଚୀନ ବୌଦ୍ଧକ୍ଷେତ୍ର, ଷୋଳମପୁର । ଯାଜପୁର ସହରର ଦଶାଶ୍ୱମେଧ ଘାଟର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲାରେ ଏହି ପ୍ରସିଦ୍ଧ ପୀଠଟି ଅବସ୍ଥିତ । **ଷୋଳମପୁରର ରଘୁନାଥଜିଉ ମନ୍ଦିର** ଏକ ବିଷ୍ଣୁ ଉପାସନାସ୍ଥଳ ହୋଇଥିଲେ ମଧ୍ୟ ଏହା ଏକ ବୌଦ୍ଧକ୍ଷେତ୍ର ଭାବେ ସମଗ୍ର ବିଶ୍ୱରେ ପରିଚିତ । ସେହିଭଳି **ଷୋଳମପୁରରେ ମା' ସନ୍ଥେଶ୍ୱରୀ (ଶାନ୍ତେଶ୍ୱରୀ)** ମନ୍ଦିର ରହିଛି । ଏହା ଏକ ବୌଦ୍ଧ ଦେବୀ ମନ୍ଦିର । ମାତ୍ର ଏହାକୁ ହିନ୍ଦୁ ଦେବୀ ଭାବେ ପୂଜା କରାଯାଉଛି ।

**ଧାମରାଈ ପୀଠ**କୁ ବାଦ୍ ଦେଲେ ବୈତରଣୀ ଓ ଭଦ୍ରକ ଜିଲ୍ଲା କଥା ଚିନ୍ତା କରିହେବନି । ଭଦ୍ରକ ଜିଲ୍ଲା ଚାନ୍ଦବାଲି ବ୍ଲକ୍‌ରେ ଧାମରାଈ ମନ୍ଦିର ଅବସ୍ଥିତ । ଏଠାରେ ବୈତରଣୀ ଓ ବ୍ରାହ୍ମଣୀ ନଦୀର ମିଳିତ ସ୍ରୋତ ପ୍ରବାହିତ ହୋଇ କ୍ରମଶଃ ବଙ୍ଗୋପସାଗରରେ ମିଶିଛି । ଏହାକୁ ସ୍ଥାନୀୟ ଅଞ୍ଚଳବାସୀ ବୈତରଣୀ ନଦୀ ଭାବେ ପୂଜା କରିଥା'ନ୍ତି ।ପୁଣ୍ୟତୋୟା ବୈତରଣୀ ନଦୀର ଧାମରା ମୁହାଣରେ ମା' ଧାମରାଈ ପୂଜା ପାଇଥାନ୍ତି । ବୈତରଣୀ ନଦୀର କୂଳକୁ ଲାଗି ମା' ଧାମରାଈଙ୍କର ଏକ ସୁବିଶାଳ ମନ୍ଦିର ରହିଛି । ଏଠାକାର ଧୀବର ସଂପ୍ରଦାୟଙ୍କ ଦ୍ୱାରା ମା' ପୂଜା ପାଇଥାନ୍ତି । ଓଡ଼ିଶାରେ ଚିଲିକା ମୁହାଁଣରେ ପୂଜା ପାଉଥିବା ବାଲି ହରଚଣ୍ଡୀ, କୁଶଭଦ୍ରା ମୁହାଁଣରେ ରାମଚଣ୍ଡୀ, ବରୁଣେଇ ମୁହାଁଣରେ ମାଁ ବରୁଣେଇଙ୍କ ଭଳି ବୈତରଣୀ-ବ୍ରାହ୍ମଣୀ ମୁହାଁଣରେ ଧାମରାଠାରେ ମା' ଧାମରାଈ କାହିଁ କେଉଁ କାଳରୁ ପୂଜା ପାଇଆସୁଛନ୍ତି । ଧାମରାଈ ମା'ଙ୍କୁ ସାଗର ଦୁଲଣି ମା' ଲକ୍ଷ୍ମୀଙ୍କ ଭଗିନୀ ଭାବେ ସ୍ଥାନୀୟ ଧୀବର ସଂପ୍ରଦାୟର ଭକ୍ତମାନେ ବିଶ୍ୱାସ କରିଥା'ନ୍ତି ।

**ଖିଲାଟେଶ୍ୱର** ମନ୍ଦିରଟି ଭଦ୍ରକ ଜିଲ୍ଲାର ଏକ ପ୍ରମୁଖ ଶୈବକ୍ଷେତ୍ର ଭାବେ ପରିଚିତ । ଧାମନଗର ବ୍ଲକ୍‌ରେ ବୈତରଣୀର ଶାଖାନଦୀ 'କାଳନ୍ଦୀ' କୂଳରେ ଏହି ପ୍ରାଚୀନ ଖିଲାଟେଶ୍ୱର ପୀଠଟି ଅବସ୍ଥିତ । ଏଠାରେ ମହାଦେବ ଖିଲାଟେଶ୍ୱର ପୂଜା ପାଉଛନ୍ତି । ଯାଜପୁର ଜିଲ୍ଲାର ପ୍ରାଚୀନ ବେଲେଶ୍ୱର, ବରୁଣେଶ୍ୱର ଶୈବକ୍ଷେତ୍ର ଓ ଭଦ୍ରକ ଜିଲ୍ଲାର ଖିଲାଟେଶ୍ୱର ଶୈବପୀଠ ଏକ ସମକୋଣୀ ତ୍ରିଭୁଜର ତିନୋଟି କୋଣରେ ଅବସ୍ଥିତ ଥିବାରୁ ଏହାକୁ ସ୍ୱର୍ଣ୍ଣ ତ୍ରିଭୁଜ ବୋଲି କୁହାଯାଇଥାଏ । ଏହି ତ୍ରିଭୁଜର କେନ୍ଦ୍ର ସ୍ଥଳରେ ବୈତରଣୀ ନଦୀ କୂଳରେ ମା' ବିରଜାଙ୍କ ପୀଠ ଅବସ୍ଥିତ । ଏଣୁ ଏହି କ୍ଷେତ୍ରର ସର୍ବାଧିକ ଗୁରୁତ୍ୱ ରହିଛି ।

ଭଦ୍ରକ ଜିଲ୍ଲାର ଧାମନଗର ଓ ତିହିଡି ବ୍ଲକ୍‌ର ସୀମା ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ଓ ବୈତରଣୀର ଶାଖା ନଦୀ ଗେଙ୍ଗୁଟିର ସଂଗମ ସ୍ଥଳରେ **ଦପାନାୟିକା** ଦେବୀ ପୀଠଟି ଅବସ୍ଥିତ । ଶାଳନ୍ଦୀ ଓ ଗେଙ୍ଗୁଟି ନଦୀର ମିଳନ ସ୍ଥଳରେ ଅବସ୍ଥିତ ଦପାନାୟକାଣୀ (ଦପାନାୟିକା) ପୀଠରେ ପ୍ରତିବର୍ଷ ମକର ମେଳା ମହାସମାରୋହରେ ପାଳିତ ହୋଇଥାଏ ।

**କେନ୍ଦ୍ରାପଡ଼ା** ଜିଲ୍ଲାର ରାଜନଗର ବ୍ଲକ୍ ଅନ୍ତର୍ଗତ **ରିଘାଗଡ଼ର ଶ୍ରୀ ଜଗନ୍ନାଥ ମନ୍ଦିର** ରାଜ୍ୟର ଏକ ପ୍ରମୁଖ ବିଷ୍ଣୁ ଉପାସନାସ୍ଥଳ ଭାବେ ପରିଚିତ । ସେହିଭଳି ବୈତରଣୀ ଓ ଖରସ୍ରୋତା ନଦୀ ଉପତ୍ୟକା ମଧ୍ୟରେ ଆଳିର ପ୍ରସିଦ୍ଧ **ବରାହଜିଉ ମନ୍ଦିର** ଅବସ୍ଥିତ । ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଅବସ୍ଥିତ କେନ୍ଦ୍ରାପଡ଼ା ଜିଲ୍ଲା **ସାତଭାୟାର ପଞ୍ଚୁବରାହୀ** ମନ୍ଦିର ଏବଂ **ମଙ୍ଗଳା ପୀଠ** ରାଜ୍ୟର ବହୁପ୍ରସିଦ୍ଧ ଶାକ୍ତ ଉପାସନାସ୍ଥଳ ଅଟେ ।

# ବୈତରଣୀ ନଦୀ ଅବବାହିକାରେ ବୌଦ୍ଧ ଓ ଜୈନ ସଂସ୍କୃତି

*(Budhism and Jainism in the Baitaranee river basin area)*

ବୈତରଣୀ ନଦୀ ଅବବାହିକା ଅଞ୍ଚଳ ଓଡ଼ିଶାରେ ବୌଦ୍ଧ ଓ ଜୈନ ଧର୍ମ ପ୍ରଚାର ଓ ପ୍ରସାରର ଏକ ପ୍ରମୁଖ ପେଣ୍ଠସ୍ଥଳ ଥିଲା । କେନ୍ଦୁଝର ଜିଲ୍ଲାରୁ ଆରମ୍ଭ କରି ଯାଜପୁର ଓ ଭଦ୍ରକ ଜିଲ୍ଲାରେ ଶତାଧିକ ସଂଖ୍ୟାରେ ବୌଦ୍ଧ ଓ ଜୈନପୀଠମାନଙ୍କର ଉପସ୍ଥିତି ବୈତରଣୀ ନଦୀ ଅବବାହିକାର ସମୃଦ୍ଧ ବୌଦ୍ଧ ଓ ଜୈନ ପରମ୍ପରାର ସ୍ୱାକ୍ଷର ବହନ କରିଥାଏ । ଏକଦା ବୌଦ୍ଧ ଓ ଜୈନ ଧର୍ମ ପ୍ରଚାର ଓ ପ୍ରସାରର ପ୍ରମୁଖ ପେଣ୍ଠସ୍ଥଳି ଥିବା ବୈତରଣୀ ନଦୀ ଉପତ୍ୟକା ଅଞ୍ଚଳ ଏବେ ବି ତାର ସ୍ୱାତନ୍ତ୍ର୍ୟ ହରାଇନାହିଁ ।

କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି, ଶିଳାଲେଖକୁ ଅନୁଧ୍ୟାନ କଲେ ଏଠାରେ ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା ସଂପର୍କରେ ଜାଣିହୁଏ । ଜିଲ୍ଲାର ଚଂପୁଆରୁ ମିଳିଥିବା ପ୍ରାଚୀନ ଶିଳାଖଣ୍ଡଠାରୁ ଆରମ୍ଭ କରି ବୈତରଣୀ ନଦୀ ଅବବାହିକାର ରାମଲା, ପାଟଣା, ଜଗନ୍ନାଥପୁର, ଅସନପାଟ, ଧଳେଇପାଟ, ସିତାବିଞ୍ଜି ଆଦି ସ୍ଥାନରେ ପ୍ରାଚୀନ ବୌଦ୍ଧ ଓ ଜୈନ କୀର୍ତ୍ତି ଥିବାର ଅନେକ ପ୍ରମାଣ ମିଳେ । ସେହିଭଳି ଆନନ୍ଦପୁର ଉପଖଣ୍ଡ ଅଞ୍ଚଳରୁ ମିଳିଥିବା କିଛି ଅବଶେଷ ଷଷ୍ଠ ଓ ସପ୍ତମ ଶତାବ୍ଦୀର ଜୈନ ଧର୍ମ ଓ ପରଂପରାର ପ୍ରମାଣ ଦେଇଥାଏ । ଆନନ୍ଦପୁର ଉପଖଣ୍ଡର ଚକ୍ରତୀର୍ଥ, ପୋତାସିଙ୍ଗିଡ଼ି, ବୈଦାଖିଆ (ଗଡ଼ଚଣ୍ଡୀ), ଫକୀରପୁରର ବାଲୁଙ୍କେଶ୍ୱର ଆଦି ଅଞ୍ଚଳରେ ବୌଦ୍ଧ ଓ ଜୈନ ଧର୍ମର ସ୍ମୃତି ବହନ କରୁଥିବା ଅନେକ ପ୍ରାଚୀନ ଶିଳାଖଣ୍ଡ ଓ ବୌଦ୍ଧ, ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ସେହିପରି ଦେଓଗାଁର କୁଶଳେଶ୍ୱର ମନ୍ଦିରରେ ଅବଲୋକିତେଶ୍ୱର ମୂର୍ତ୍ତି ସେଠାରେ ବୌଦ୍ଧ ପରଂପରାର ପ୍ରମାଣ ବହନ କରିଥାଏ । ପୋତାସିଙ୍ଗିଡ଼ି ଓ ଆଖପାଖ ଅଞ୍ଚଳରୁ ସଂଗୃହୀତ ବହୁ ପୁରାତନ ଜୈନ ମୂର୍ତ୍ତିକୁ ଏବେ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହିସବୁ ଅଞ୍ଚଳକୁ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅଧିକ ଖନନ କରାଗଲେ ଏଠାରେ ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା ସଂପର୍କରେ ବହୁ ତଥ୍ୟ ଉନ୍ମୋଚନ ହୋଇପାରିବ ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତ ବଉଳା ପର୍ବତମାଳା ପ୍ରାଚୀନ କାଳରେ ଏକ ଜୈନକ୍ଷେତ୍ର ଥିବାର ଅନୁମାନ କରାଯାଏ । ଏହି ପର୍ବତରେ ଅନେକ ଜୈନ ମନ୍ଦିର ଥିଲା ଏବଂ ଏଠାରେ ଜୈନ ସନ୍ଥମାନେ ଜୈନ ଧର୍ମ ପ୍ରତିଷ୍ଠା କରିପାରିଥିବା ଗବେଷଣାରୁ ଜଣାପଡ଼ିଛି । ଏହାଛଡ଼ା ଆଖପାଖ ଅଞ୍ଚଳରେ ବହୁ ସଂଖ୍ୟାରେ ଜୈନ ଓ ଯକ୍ଷ ମୂର୍ତ୍ତିକୁ ଏବେ ମଧ୍ୟ ଲୋକମାନେ ଗ୍ରାମଦେବୀ ଭାବେ ପୂଜା କରିଆସୁଛନ୍ତି । କାଠକଟାଠାରେ ପୂଜିତ ବଉଳାଣୁଣି ଗ୍ରାମଦେବୀ ଏହାର ଏକ ଜ୍ୱଳନ୍ତ ଉଦାହରଣ ।

ଆନନ୍ଦପୁର ସହରର ଉତ୍ତର-ପୂର୍ବରେ ଅବସ୍ଥିତ ପୋତାସିଙ୍ଗିଡ଼ି ଗ୍ରାମରେ ବହୁ ଜୈନ ତୀର୍ଥଙ୍କର ମୂର୍ତ୍ତି ଆବିଷ୍କୃତ ହୋଇଛି ଯାହାକି ଅଷ୍ଟମ ଶତାବ୍ଦୀର ବୋଲି ଅନୁମାନ କରାଯାଉଛି । ଚକ୍ରତୀର୍ଥ ଓ ଏହାର ଆଖପାଖ ଅଞ୍ଚଳରେ ଏବେ ମଧ୍ୟ ଅନେକ କଳାକୃତିର ଭଗ୍ନାବଶେଷ ଏଣେତେଣେ ବିକ୍ଷିପ୍ତ ଭାବେ ପଡି ରହିଥିବାର ଦେଖିବାକୁ ମିଳେ । ଏଠାରୁ ଆବିଷ୍କୃତ ୨ ଫୁଟ୍ ୬ ଇଞ୍ଚ ଉଚ୍ଚତାର ପଦ୍ମ ଉପରେ ଯୋଗାସନରେ ଉପବିଷ୍ଟ ଜିନ ନାଥ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ରହିଛି । ରାମଚଣ୍ଡୀ ମନ୍ଦିରରେ ପୂଜା ପାଉଥିବା ଦେବୀଙ୍କ ପାର୍ଶ୍ୱରେ ଜୈନ ମୂର୍ତ୍ତି ମଧ୍ୟ ରହିଛି । ଆନନ୍ଦପୁର ଉପଖଣ୍ଡର ବୈଦାଖିଆ, ଜମ୍ବିରା, ଅଣା, ଠୁଣିଗାଁ, ବଂଚୋ, ସୋପୋ, ସାଇଁକୁଳ ଆଦି ଅଞ୍ଚଳରେ ଏବେ ବି ଜୈନମୂର୍ତ୍ତି ବିଭିନ୍ନ ଦେବଦେବୀ ଭାବେ ପୂଜିତ ହେଉଥିବାର ଦେଖାଯାଏ ।

ଆନନ୍ଦପୁରର ବାଲୁଙ୍କେଶ୍ୱର ଶିବ ମନ୍ଦିରର ଗର୍ଭଗୃହ ବାହାରେ ଏକ ବିଶାଳ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଏହି ମନ୍ଦିରର ପାର୍ଶ୍ୱରେ ଓ ମନ୍ଦିର ଭିତରେ ଜୈନ ଦେବଦେବୀଙ୍କର ଅନେକ ଛୋଟବଡ଼ ମୂର୍ତ୍ତି ସାଙ୍ଗକୁ ଜୈନ ତନ୍ତ୍ର ଦେବୀମାନଙ୍କର ମୂର୍ତ୍ତି ରହିଛି । ବଉଳା ପର୍ବତ ପାଦଦେଶରେ ଅବସ୍ଥିତ ପୋତାସିଙ୍ଗିଡି ଗ୍ରାମରୁ ମିଳିଥିବା ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ ଓ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିଛି । ଏଠାରେ ଜୈନ ଦେବୀ ଅମ୍ବିକା ରାମଚଣ୍ଡୀ ଭାବେ ପୂଜା ପାଉଛନ୍ତି ।

ଆନନ୍ଦପୁର ଉପଖଣ୍ଡ ବ୍ୟତୀତ କେନ୍ଦୁଝର ଓ ଚଂପୁଆ ଉପଖଣ୍ଡ ଅଞ୍ଚଳରେ ବୌଦ୍ଧ ପରଂପରାର ବହୁ ନିଦର୍ଶନ ଦେଖିବାକୁ ମିଳେ । ଦେଓଗାଁ କୁଶଳେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଥିବା ଅତି ପ୍ରାଚୀନ ବାମ୍ଫି ଯାହାକି ଯାଜପୁର ଜିଲ୍ଲାର ଉଦୟଗିରିର ବାମ୍ଫି ତୁଳନା କରାଯାଇପାରେ । ହାଟଡିହି ବ୍ଲକ୍‌ର ହାବଳେଶ୍ୱର ମନ୍ଦିର ନିକଟବର୍ତ୍ତୀ ପଞ୍ଚବୌଦ୍ଧା ମହାଶକ୍ତି (ପାଣ୍ଡରା, ମାସକି, ଲୋଚନା, ତାରା, ବଜ୍ରଅତ୍ରିଶ୍ୱରି)ଙ୍କ ମୂର୍ତ୍ତିକୁ ଅନୁଧ୍ୟାନ କଲେ ଏଠାରେ ବୌଦ୍ଧ ପରପଂରାର ପ୍ରାଚୀନତା ସଂପର୍କରେ ଅନେକ ତଥ୍ୟ ମିଳିଥାଏ । ଘସିପୁରା ଥାନା ନିକଟରେ ଅବସ୍ଥାପିତ ବୁଦ୍ଧଙ୍କ ମୂର୍ତ୍ତି, ଶୈଲଙ୍ଗ, ବୈତରଣୀ ନଦୀକୂଳସ୍ଥ ଶମଣା, ରକ୍ଷାସ, ବାସ୍ତୁ, ସୁଲଣ ଆଦି ଗ୍ରାମସମୂହ ବୌଦ୍ଧଧର୍ମର ସ୍ମୃତି ବହନ କରୁଛି । କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ପୂଜିତ ହେଉଥିବା ତାରା ମୂର୍ତ୍ତି ଓ ବିଭିନ୍ନ ସ୍ଥାନରୁ ଉଦ୍ଧାର କରାଯାଇଥିବା ଅବଶେଷରୁ ବୌଦ୍ଧଧର୍ମ, ପରଂପରାର ପ୍ରମାଣ ମିଳିଥାଏ ।

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ଘୁଟୁରୁ ଗାଁ ବିଷ୍ଣୁପାଟ ମୂର୍ତ୍ତିଟି ଏକ ବୌଦ୍ଧ ତନ୍ତ୍ରଯୁଗର ଦେବୀ ତାରାଙ୍କର ବୋଲି କୁହାଯାଉଛି । ବୈତରଣୀ ନଦୀ ଅବବାହିକାର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧ ଉପାସନାସ୍ଥଳ ହେଉଛି ସୀତାବିଞ୍ଜି । ଏଠାରେ ଏକ ଚତୁର୍ମୁଖୀ ଶିବଲିଙ୍ଗ, ପ୍ରାଚୀନ ପ୍ରସ୍ତର ଯୁଗର ହସ୍ତୀମୂର୍ତ୍ତି ଏବଂ ଏକ ଭଗ୍ନ ବୌଦ୍ଧବିହାରର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଏଠାରେ ଭୂମି ତଳେ ପୋତି ହୋଇଥିବା ଇଟାର ପ୍ରାଚୀନ ଧ୍ୱଂସ ସ୍ତୂପକୁ ଅନୁଧ୍ୟାନ କଲେ ଏଠାରେ ଦିନେ ଏକ ବୌଦ୍ଧବିହାର

ଥିଲା ବୋଲି ବିଶ୍ୱାସ ହୁଏ । ବୌଦ୍ଧ ଯୁଗରେ ଏଠାରେ ଏକ ବୃହତ୍ ଶିକ୍ଷାନୁଷ୍ଠାନ ଥିଲା । ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ ଏବଂ ବୌଦ୍ଧମାନଙ୍କ ଉପରେ ହୋଇଥିବା ଧାର୍ମିକ ଆକ୍ରମଣ କାରଣରୁ ଏହି ବୌଦ୍ଧବିହାରଟି ଧ୍ୱଂସ ପାଇଯାଇଛି ବୋଲି କୁହାଯାଉଛି ।

ଓଡ଼ିଶାର ପ୍ରାଚୀନତମ ଶୈବପୀଠମାନଙ୍କ ମଧ୍ୟରେ ଦେଓଗାଁର କୁଶଳେଶ୍ୱର ଅନ୍ୟତମ । କେନ୍ଦୁଝର ଜିଲ୍ଲାର ଘସିପୁରା ବ୍ଲକ୍ ଅନ୍ତର୍ଗତ ଦେଓଗାଁର କୁଶଭଦ୍ରା (କୁଶେଇ) ନଦୀ କୂଳରେ ରହିଛି ବହୁ ପୁରାତନ ଐତିହାସିକ କୁଶଳେଶ୍ୱର ଶୈବପୀଠ । 'ଦେବଗ୍ରାମ'ର ଅପଭ୍ରଂଶ ହୋଇ ଦେଓଗାଁ ହୋଇଛି । ଏହା ଓଡ଼ିଶାର ଏକ ପ୍ରାଚୀନତମ ବୌଦ୍ଧ ତନ୍ତ୍ର ଉପାସନା କ୍ଷେତ୍ର ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଶୈବପୀଠ ଭାବେ ପରିଚିତ ହୋଇପାରିଛି । ମନ୍ଦିରର ଜଗମୋହନ ଓ ଦକ୍ଷିଣ ପାର୍ଶ୍ୱରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ରହିଛି । ଏହି ଅବଲୋକିତେଶ୍ୱରଙ୍କ ଉପସ୍ଥିତି ଏଠାରେ ବୌଦ୍ଧ ପରଂପରାର ସୂଚନା ଦେଇଥାଏ । ଯାଜପୁର ଜିଲ୍ଲାର ଉଦୟଗିରି ଢାଞ୍ଚାର ଏକ ବାମ୍ପି ଏଠାରେ ରହିଛି । ଏହି ବାମ୍ପି ମଧ୍ୟ ବୌଦ୍ଧ ପରଂପରାର ସୂଚନା ପ୍ରଦାନ କରିଥାଏ । ଏଠାରେ ଥିବା ଏକପାଦୀ ଭୈରବ ମୂର୍ତ୍ତିଙ୍କର ନାମ 'ଘଣ୍ଟା କର୍ଣ୍ଣ' । ଏହି ଭୈରବ ମୂର୍ତ୍ତି ଜୈନ ସିଦ୍ଧଙ୍କର ମୂର୍ତ୍ତି ବୋଲି କୁହାଯାଏ ।

କେନ୍ଦୁଝରଗଡ଼ଠାରୁ ୩୦ କିଲୋମିଟର ଦୂରରେ ଘଟଗାଁ ବ୍ଲକ୍‌ରେ ଐତିହାସିକ **ଢେଂକିକୋଟ** ଅବସ୍ଥିତ । ଏହା ବୈତରଣୀ ଅବବାହିକାର ଅନ୍ୟ ଏକ ବୌଦ୍ଧକ୍ଷେତ୍ର ଭାବେ ଜଣାଶୁଣା । ଘଟଗାଁ ତାରିଣୀଙ୍କୁ ମଧ୍ୟ ଏକ ବୌଦ୍ଧ ଦେବୀ ବୋଲି କୁହାଯାଉଛି ।

କେନ୍ଦୁଝରଗଡ଼ଠାରୁ ପ୍ରାୟ କୋଡିଏ କିଲୋମିଟର ଦୂରରେ **'ପିପିଳିଆ'** ନାମରେ ଏକ ସ୍ଥାନ ଅବସ୍ଥିତ । ଏହା ଏକ ପ୍ରାଚୀନ ବୌଦ୍ଧକ୍ଷେତ୍ର ଭାବେ ଜଣାଶୁଣା ।

ବୈତରଣୀ ଅବବାହିକାର **ସନ୍ଥେଇଭଞ୍ଜ ପାହାଡ଼ ଓ ଗୁମ୍ଫା** ଅନ୍ୟତମ ବୌଦ୍ଧ ଉପାସନା ସ୍ଥଳ ଭାବେ ପରିଚିତ । କେନ୍ଦୁଝରର ସଦର ବ୍ଲକ୍ ଅନ୍ତର୍ଗତ ପଳାସପଂଗା ଗ୍ରାମର ପୂର୍ବ ଦିଗରେ ସନ୍ଥେଇଭଞ୍ଜ ଗୁମ୍ଫା ଅବସ୍ଥିତ । କେନ୍ଦୁଝର ଜିଲ୍ଲାର ପ୍ରାଚୀନ ପୀଠ **ଲକ୍ଷ୍ମୀପାଦ** ମଧ୍ୟ ଅନ୍ୟତମ ବୌଦ୍ଧ କ୍ଷେତ୍ର ।

**ଆନନ୍ଦପୁର ସବ୍ ଡ଼ିଭିଜନ** ଅନ୍ତର୍ଗତ **ପୋତାସିଙ୍ଗିଡ଼ିଠାରେ ଋଷଭନାଥ**ଙ୍କର ଏକ ଧ୍ୱଂସପ୍ରାପ୍ତ ମନ୍ଦିର ରହିଛି । ପ୍ରାଚୀନ କାଳରେ ଏହା ଜୈନମାନଙ୍କର ଏକ ପ୍ରସିଦ୍ଧ ପୀଠସ୍ଥଳୀ ଥିଲା । ଆନନ୍ଦପୁର ଓ ପୋତାସିଙ୍ଗିଡ଼ିଠାରେ ଜୈନ ସନ୍ନ୍ୟାସୀମାନେ ଏଠାକାର ଗୁମ୍ଫାରେ ତପସ୍ୟା କରୁଥିବାର ଲୋକକଥା ଶୁଣିବାକୁ ମିଳେ । ପୋତାସିଙ୍ଗିଡ଼ି ସ୍ଥାନଟି ଜୈନ ସଂସ୍କୃତିକର ଏକ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା । ଏବେ ମଧ୍ୟ ଏଠାରେ ଅନେକ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ପୋତାସିଙ୍ଗିଡିରୁ ମିଳିଥିବା ଅନେକ ଜୈନମୂର୍ତ୍ତି ଏବେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ରହିଛି । ପୋତାସିଙ୍ଗିଡିଠାରୁ ମିଳିଥିବା ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ଏକ ଦଣ୍ଡାୟମାନ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ଅବସ୍ଥାରେ ରହିଛି ।

ଛେନାପଦି ଛକଠାରୁ ଅଳ୍ପ ଦୂରରେ ପ୍ରାଚୀନ ଜୈନ କ୍ଷେତ୍ର ଠୁଣିଗାଁ ଅବସ୍ଥିତ । ଏହାକୁ ରାମଚଣ୍ଡୀ କ୍ଷେତ୍ର ମଧ୍ୟ କୁହାଯାଏ । ନିକଟରେ ବଉଳା ପାହାଡ଼ ଉପରେ ଏକ ପ୍ରକାଣ୍ଡ ଗୁମ୍ଫା ମଧ୍ୟ ରହିଛି । ଗୁମ୍ଫା ମଧ୍ୟକୁ ପ୍ରବେଶ କରିବା ପାଇଁ ପାହାଚ ରହିଛି । ଏହି ଗୁମ୍ଫାରେ ବହୁ ପ୍ରାଚୀନ କୀର୍ତ୍ତିରାଜି ଓ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଏଠାରେ ଅମ୍ବିକା ଓ ଜୈନ ମୂର୍ତ୍ତି ରହିଛି । ଜୈନ ଦେବୀ ଅମ୍ବିକାଙ୍କ ମନ୍ଦିରଟି ଏବେ ଜରାଜୀର୍ଣ୍ଣ ହୋଇପଡିଛି । ନିକଟରେ କଳିଙ୍ଗ ଦ୍ୱାର ରହିଥିବାବେଳେ ଐତିହାସିକ ପୋତାସିଙ୍ଗିଡ଼ି ଏବଂ ବୈଦ୍ୟାଖିଆ ରହିଛି ।

ବୈତରଣୀ ନଦୀ କୂଳରେ ଅବସ୍ଥିତ **ବୈଦ୍ୟାଖିଆରୁ** ମଧ୍ୟ ଅନେକ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଛି । ବୈଦ୍ୟାଖିଆରୁ ଉଦ୍ଧାର କରାଯାଇଥିବା ତ୍ରୟୋବିଂଶ ଜୈନ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଏକ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ଶୋଭା ପାଉଛି । ଏହା ଏକାଦଶ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି । ଆନନ୍ଦପୁର ସହରର ଉତ୍ତର ଦିଗରେ ବୈତରଣୀ ନଦୀ କୂଳରେ ଅବସ୍ଥିତ ଐତିହାସିକ **ସିଆଡିମାଳିଆ** ମଧ୍ୟ ଏକ ପ୍ରାଚୀନ ଜୈନକ୍ଷେତ୍ର ଅଟେ । କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ **ହାଣ୍ଡିଭଙ୍ଗା** ନିକଟସ୍ଥ **ଫକୀରପୁର** ଗ୍ରାମରେ ଐତିହାସିକ **ଧନେଇପାଟ** ମଧ୍ୟ ଅନ୍ୟତମ ବୌଦ୍ଧକ୍ଷେତ୍ର ଅଟେ ।

କେନ୍ଦୁଝରର ଦୁଇ ଜଣ ଭୂୟାଁ ବଣିକ **ତପସୁ ଓ ଭଲ୍ଲିକ** ବୁଦ୍ଧଙ୍କର ପ୍ରଥମ ଶିଷ୍ୟତ୍ୱ ଲାଭ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲେ । ଗୌତମ ବୁଦ୍ଧ ଯେତେବେଳେ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ସମାଧିରୁ ଉଠିଲେ ସେତେବେଳେ ତପସୁ ଓ ଭଲ୍ଲିକ ନାମକ ଦୁଇ ଜଣ ଭୂୟାଁ ବଣିକ ତାଙ୍କୁ ଆରିସା ପିଠା ଖାଇବାକୁ ଦେଇ ତାଙ୍କର ବ୍ରତ ଉଦ୍‌ଯାପନ କରାଇଥିଲେ । ବୁଦ୍ଧଦେବଙ୍କ ଶିଷ୍ୟ ତପସୁ ଓ ଭଲ୍ଲିକ ବୁଦ୍ଧଦେବଙ୍କ ମହାପ୍ରୟାଣ ପରେ ତାଙ୍କର କେଶକୁ ନେଇ କେଶସ୍ତୁପ ଓ ଦନ୍ତକୁ ନେଇ ଦନ୍ତସ୍ତୁପ ଏବଂ ବୁଦ୍ଧଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ସ୍ମୃତିପୀଠମାନ ସ୍ଥାପନ କରିଥିଲେ । ଏହି ଦୁଇ ବୌଦ୍ଧ ଭିକ୍ଷୁ କେନ୍ଦୁଝର ଜିଲ୍ଲାର ଭୂୟାଁ ସଂପ୍ରଦାୟର ହୋଇଥିବାରୁ ଏମାନଙ୍କ ଉଦ୍ୟମରେ କେନ୍ଦୁଝରରେ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାରଲାଭ ହୋଇଥାଇପାରେ ବୋଲି ବିଶ୍ୱାସ କରାଯାଉଛି ।

ବୈତରଣୀ ଅବବାହିକାର **ଯାଜପୁର** ଜିଲ୍ଲାରେ ବିଶ୍ୱପ୍ରସିଦ୍ଧ ବୌଦ୍ଧ କ୍ଷେତ୍ରମାନ ରହିଛି । **ଯାଜପୁର ଜିଲ୍ଲାର ରତ୍ନଗିରି, ଉଦୟଗିରି, ଲାଙ୍ଗୁଡ଼ି** ଓ **କଟକର ଲଳିତଗିରି** ବୌଦ୍ଧକ୍ଷେତ୍ର ବୈତରଣୀ ଅବବାହିକାର ଗୋଟିଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧକ୍ଷେତ୍ର ଭାବେ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି । ସେହିଭଳି ଯାଜପୁର ସହରର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ବ୍ଲକ୍‌ରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଥିବା ବୌଦ୍ଧକ୍ଷେତ୍ର **ଖୋଲମ୍‌ପୁର** ମଧ୍ୟ ସମଗ୍ର ବିଶ୍ୱରେ ପ୍ରସିଦ୍ଧିଲାଭ କରିପାରିଛି । ତତ୍କାଳୀନ ବିରଜାମଣ୍ଡଳ ଅଧୀନରେ ଖୋଳମପୁର ଏକ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧବିହାର ଭାବେ ମୁଣ୍ଡ ଟେକିଥିଲା । ଯାଜପୁର ଜିଲ୍ଲାର ବିଶ୍ୱପ୍ରସିଦ୍ଧ ରତ୍ନଗିରି,

ଉଦୟଗିରି ଓ ଲଳିତଗିରି (କଟକ ଜିଲ୍ଲା) ହୀରକ ତ୍ରିଭୁଜ ସହିତ ଷୋଳମପୁର ବୌଦ୍ଧ କ୍ଷେତ୍ରର ଏକ ନିବିଡ଼ ସଂପର୍କ ରହିଛି । ଷୋଳମପୁରକୁ ବାଦ୍ ଦେଲେ ବୈତରଣୀ ନଦୀ ଅବବାହିକାର ଆଉ ଏକ ପ୍ରାଚୀନ ଐତିହାସିକ ଏବଂ ପ୍ରସିଦ୍ଧ ବୌଦ୍ଧ ତନ୍ତ୍ର ପୀଠ ହେଉଛି ଭଦ୍ରକ ଜିଲ୍ଲା **ଧାମ୍ନଗର (ଧମ୍ମନଗର)** ବ୍ଲକ୍‌ର **ଭାରଦା କଟକ** । ଶାରଳା ମହାଭାରତରେ ଥିବା **'ଭାରଦା ଉପାଖ୍ୟାନ'**ଟି ମଧ୍ୟ ଏହି କ୍ଷେତ୍ର ସହିତ ଜଡ଼ିତ । ଏହା ଏକ ପ୍ରାଚୀନ ବୌଦ୍ଧକ୍ଷେତ୍ର । ଭାରଦା କଟକକୁ ଲାଗି ରହିଛି ଅନ୍ୟ ଏକ ପୁରାତନ କ୍ଷେତ୍ର, **ଖଡ଼ିପଦା ଓ ମୁହାଁଣପଡ଼ା** ।ବୌଦ୍ଧପୀଠ । ଏଠାରେ ଅନେକ ସଂଖ୍ୟାରେ ପ୍ରାଚୀନ ବୌଦ୍ଧମୂର୍ତ୍ତି ଦେଖିବାକୁ ମିଳିଥାଏ । ବୈତରଣୀ ନଦୀ ଅବବାହିକା ବୌଦ୍ଧ ଓ ଜୈନ ଧର୍ମ ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ଏଥିରେ କୌଣସି ସନ୍ଦେହ ନାହିଁ ।

ମୟୂରଭଞ୍ଜ ଜିଲ୍ଲାର **ଖିଚିଂ** ହେଉଛି ରାଜ୍ୟର ଅନ୍ୟତମ ପ୍ରାଚୀନ ବୌଦ୍ଧକ୍ଷେତ୍ର । ବୈତରଣୀ ନଦୀ ଅବବାହିକାରେ ଅବସ୍ଥିତ ଏହି ଖିଚିଂରୁ ଅନେକ ବୌଦ୍ଧ ମୂର୍ତ୍ତି ଅଣାଯାଇ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହାବ୍ୟତୀତ ଖିଚିଂଠାରେ ଥିବା ସଂଗ୍ରହାଳୟରେ ମଧ୍ୟ ଅନେକ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ସଂଗୃହୀତ ହୋଇରହିଛି ।

[ତଥ୍ୟ ଉତ୍ସ

୧· ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା

୨· ଶ୍ରୀ ଜଗବନ୍ଧୁ ପାଢୀ, ବିରଜା କ୍ଷେତ୍ର, ସଂପାଦନା ଓ ପ୍ରକାଶକ: ଉତ୍କଳ ପାଠକ ସଂସଦ, କଟକ (୧୯୯୬)

3. The Jagannath Temples in Eastern India, By Kedar Nath Mohapatra, p-23

୪· 'ଜୁଆଙ୍ଗ ପର୍ବପର୍ବାଣି' (୨୦୧୪), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା

୫· ଓଡ଼ିଶାରେ ବୌଦ୍ଧଧର୍ମ ଓ ବୌଦ୍ଧକୀର୍ତ୍ତି, ଲେଖକ: ଡ· ବିମଳେନ୍ଦୁ ମହାନ୍ତି, ପ୍ରକାଶକ: ଆମ ଓଡ଼ିଶା, ଭୁବନେଶ୍ୱର (୨୦୧୪)

୬· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ (ପ୍ରଥମ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରିଣ୍ଟିଂ ୱାର୍କ୍‌ସ, ବଡ଼ବିଲ (୧୯୮୦)

୭· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ (ଦ୍ୱିତୀୟ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରକାଶନୀ, ବଡ଼ବିଲ (୧୯୮୯)]

## ବୈତରଣୀ ନଦୀ ଉପତ୍ୟକାରେ ଗଢି ଉଠିଥିବା ପ୍ରାଚୀନ ସଭ୍ୟତା

*(The Baitaranee Valley Civilization)*

ପୃଥିବୀର ବିଭିନ୍ନ ଭାଗରେ ପ୍ରବାହିତ ନଦନଦୀ ମୁଖ୍ୟତଃ ସେହି ଅଞ୍ଚଳର ସଭ୍ୟତା, ସଂସ୍କୃତି, ସମାଜ, ପରଂପରା ଓ ଜୀବନଶୈଳୀକୁ ବିଶେଷ ଭାବେ ପ୍ରଭାବିତ କରିଥାଏ । ନଦୀମାନଙ୍କର ଆଚରଣ ଓ ପ୍ରବହମାନତାର ଲକ୍ଷଣକୁ ନେଇ ସଭ୍ୟତାର ରୂପରେଖ ପ୍ରସ୍ତୁତ ହୋଇଥାଏ । ଚୀନ୍‌ର ୟାଙ୍ଗ୍‌ସିକିୟାଂ, ମିଶରର ନୀଳନଦୀ, ମେସୋପୋଟାମିଆଁର ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍, ଭାରତର ସିନ୍ଧୁ ଓ ଗଙ୍ଗା ନଦୀ ସଭ୍ୟତା ଭଳି 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ଅତି ପ୍ରାଚୀନ ବୋଲି କୁହାଯାଏ ।

ଭାରତର ସିନ୍ଧୁ ଓ ଗଂଗା ନଦୀ ସଭ୍ୟତାଠାରୁ ବୈତରଣୀ ସଭ୍ୟତା ଅତି ପ୍ରାଚୀନ ବୋଲି ବିଭିନ୍ନ ଗବେଷଣାରୁ ଜଣାପଡିଛି । ଗଙ୍ଗାଠାରୁ ବୈତରଣୀ ଏଥିପାଇଁ ପ୍ରାଚୀନ, କାରଣ ଗଙ୍ଗା ନଦୀର ଉତ୍ପତ୍ତି ସ୍ଥଳ ହିମାଳୟ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ ପୂର୍ବଘାଟ ପର୍ବତମାଳା (କେନ୍ଦୁଝର ମାଳଭୂମି)ର ବହୁ ପରେ ସୃଷ୍ଟି ହୋଇଛି ।

ଆମେ ଆଜି ଯେଉଁଠି ହିମାଳୟ ଦେଖୁଛୁ ଅତୀତରେ ତାହା ଏକ ହ୍ରଦ ଥିଲା । ପରେ ଆଗ୍ନେୟ ଉଦ୍‌ଗୀରଣ ଓ ଭୂସ୍ଖଳନ ପ୍ରକ୍ରିୟାରେ ହିମାଳୟ ସୃଷ୍ଟି ହୋଇଛି । ମାତ୍ର ହିମାଳୟ ସୃଷ୍ଟି ହେବାର ବହୁ ପୂର୍ବରୁ ଭାରତରେ ପୂର୍ବଘାଟ ପର୍ବତମାଳା, ବିନ୍ଧ୍ୟ ପର୍ବତମାଳା ସୃଷ୍ଟି ହୋଇ ସାରିଥିଲା । ଏହା ହେଉଛି ଗଙ୍ଗାଠାରୁ ବୈତରଣୀର ପ୍ରାଚୀନତା ନେଇ ବୈଜ୍ଞାନିକ କାରଣ । ଏହାଛଡ଼ା ପୁରାଣଶାସ୍ତ୍ରମାନଙ୍କରେ ମଧ୍ୟ ବୈତରଣୀକୁ ଗଙ୍ଗାଠାରୁ ପ୍ରାଚୀନ ବୋଲି ଉଲ୍ଲେଖ କରାଯାଇଛି । ଗଙ୍ଗାଠାରୁ ବୈତରଣୀ ନଦୀ ବାର ବ୍ରହ୍ମ ବର୍ଷ ବଡ଼ ବୋଲି ପୌରାଣିକ ମତବାଦ ରହିଛି । ଏଣୁ ବୈତରଣୀ ନଦୀ ସଭ୍ୟତା ଅନ୍ୟାନ୍ୟ ନଦୀ ସଭ୍ୟତାଠାରୁ ପ୍ରାଚୀନ ବୋଲି ବିଶ୍ବାସ କରାଯାଇଥାଏ ।

ଆର୍ଯ୍ୟ ସଭ୍ୟତା ବିକାଶଲାଭ କରିବାର ବହୁ ପୂର୍ବରୁ ଦ୍ରାବିଡ଼ମାନେ ଆଜିକୁ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ସିନ୍ଧୁ ନଦୀ ଉପକୂଳ ସଭ୍ୟତା ମହେନ୍‌ଜୋଦାରୋ ଓ ହରପ୍‌ପାଠାରେ ନିର୍ମାଣ କରିଥିଲେ । ସେହିଭଳି ବୈତରଣୀ ନଦୀ ତୀରରେ ବାସ କରୁଥିବା ଆଦିମ ଅଧିବାସୀମାନେ ଖିଚିଂ, ସରେଇ, ଉର୍ଦ୍ଧି, ରାମଲା, ସୀତାବିଞ୍ଜି, ଅସନପାଟ ପ୍ରଭୃତି ସ୍ଥାନରେ ଉନ୍ନତ ନଗର ସଭ୍ୟତା ନିର୍ମାଣ କରିପାରିଥିଲେ । ସୀତାବିଞ୍ଜିର ଶୈଳଚିତ୍ର, ଶିଳାଲିପି ଏବଂ ଅସନପାଟରୁ ମିଳିଥିବା ପ୍ରସ୍ତର ଯୁଗର ଅଂଶବିଶେଷ ଓ ପ୍ରାଚୀନ ଶିଳାଲେଖ ବୈତରଣୀ ନଦୀ ଉପକୂଳ ସଭ୍ୟତାର ସ୍ବାକ୍ଷର ବହନ କରିଥାଏ ।

ଭାରତୀୟ ଧର୍ମଧାରଣାରେ ଗଂଗା ଯେଭଳି ପବିତ୍ର ନଦୀ ଅନୁରୂପ ବୈତରଣୀ ଓଡ଼ିଆମାନଙ୍କ ସର୍ବପୂଜିତ ନଦୀ ଭାବେ ପରିଚିତ । ପ୍ରତି ଓଡ଼ିଆଙ୍କ ମାନସପଟରେ ବୈତରଣୀ ନଦୀ ପୁଣ୍ୟତୋୟା

ଭାବେ ନିଜର ପରିଚୟ ସୃଷ୍ଟି କରିଛି । ଆଦିମ ଅଧିବାସୀ କାଳକ୍ରମେ ବିପଦସଂକୁଳ ଓ ଭୟଙ୍କର ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲ ଛାଡ଼ି ନଦୀକୂଳଗୁଡିକୁ ନିଜର ବସତି ପାଇଁ ଉପଯୁକ୍ତ ମନେକଲା ଏବଂ ନଦୀକୂଳରେ ଘରଦ୍ୱାର ଗଢି ବସବାସ ଆରମ୍ଭ କଲା । କାଳକ୍ରମେ ପୃଥିବୀର ବିଭିନ୍ନ ଭାଗରେ ଥିବା ନଦୀକୂଳଗୁଡିକରେ ସଭ୍ୟତାର ସୂତ୍ରପାତ ଆରମ୍ଭ ହେଲା । ଅନୁରୂପ ଭାବେ ଓଡ଼ିଶାର 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ମଧ୍ୟ ସୃଷ୍ଟି ହୋଇଛି ବୋଲି କୁହାଯାଇପାରେ ।

ଏ ଧରା ପୃଷ୍ଠରେ ଗୋନାସିକା ପାହାଡ଼ ଓ ବୈତରଣୀ ନଦୀ ଉତ୍ପତ୍ତି ସ୍ଥଳରେ ସର୍ବପ୍ରଥମେ ଜୁଆଙ୍ଗମାନେ ସୃଷ୍ଟିଲାଭ କରିଥିଲେ ବୋଲି ଦାବି କରାଯାଏ । ଏଥିନେଇ ଅନେକ ପୌରାଣିକ କିମ୍ବଦନ୍ତୀ ଓ ଲୋକକଥାମାନ ରହିଛି । ଜୁଆଙ୍ଗମାନେ ନିଜକୁ ଋଷିପୁତ୍ର ବୋଲି ଦାବି କରୁଥିଲାବେଳେ ପୃଥିବୀ ପୃଷ୍ଠରେ ସେମାନେ ପ୍ରଥମେ ସୃଷ୍ଟି ହୋଇଛନ୍ତି ବୋଲି କୁହାଯାଏ । ଯେତେବେଳେ ସମଗ୍ର ବିଶ୍ୱରେ ମାନବ ସୃଷ୍ଟି ହୋଇ ନଥିଲେ, ସେତେବେଳେ ଗୋନାସିକାଠାରେ ଦୀର୍ଘତମା ନାମକ ଜଣେ ଋଷି ସର୍ବପ୍ରଥମେ ଜଣେ ପୁରୁଷ ଓ ନାରୀ ସୃଷ୍ଟି କରି ସେମାନଙ୍କ ମଧ୍ୟରେ ବୈବାହିକ ସଂପର୍କ ପ୍ରତିଷ୍ଠା କରିଥିଲେ ବୋଲି ଲୋକକଥା ରହିଛି ।

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଂଗମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦି କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ବୈତରଣୀ ନଦୀ କୂଳରେ ବସବାସ କରୁଥିବା ଆଦିମ ଅଧିବାସୀମାନେ ଖିଚିଂ, ସୀତାବିଞ୍ଜି, ଅସନପାଟ ଆଦି ସ୍ଥାନରେ ନଗର ପ୍ରତିଷ୍ଠା କରି ବସବାସ କରୁଥିଲେ । ଏହିସବୁ ଅଞ୍ଚଳରେ ପ୍ରସ୍ତର ଯୁଗର ଅନେକ ଅବଶେଷ ଆଜି ବି ଦେଖିବାକୁ ମିଳିଥାଏ ।

ବୈତରଣୀ ଯେଉଁଯେଉଁ ଅଞ୍ଚଳ ଦେଇ ପ୍ରବାହିତ ହୋଇଛି ସେସବୁ ସ୍ଥାନଗୁଡିକ ଓଡ଼ିଶାରେ ସାଂସ୍କୃତିକ, ଐତିହାସିକ, ଧାର୍ମିକ ଓ ପବିତ୍ର ପୀଠର ମାନ୍ୟତା ଲାଭ କରିପାରିଛି । ବୈତରଣୀ ନଦୀର ଅବସ୍ଥିତି ଦୃଷ୍ଟିରୁ ଏହାର ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର (କେନ୍ଦୁଝର), ବକ୍ଷ ଦେଶରେ ଝାଡ଼େଶ୍ୱର (କେନ୍ଦୁଝର), ନାଭି ଦେଶରେ ବରାହେଶ୍ୱର (ଯାଜପୁର) ଏବଂ ପାଦଦେଶରେ ଆଖଣ୍ଡଳେଶ୍ୱର (ଭଦ୍ରକ) ଶୈବପୀଠ ରହିଛି । ଏହା ସହିତ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରୁ ଆରମ୍ଭ କରି ଧାମରା ମୁହାଣ ପର୍ଯ୍ୟନ୍ତ ନଦୀର କୂଳେକୂଳେ ଶତାଧିକ ଶୈବପୀଠ ରହିଛି । ଏହି ନଦୀର ପ୍ରତି ଏକ କୋଶ ଦୂରରେ ଜଳ ମଧ୍ୟରେ ଶିବ ଲିଙ୍ଗ ରହିଥିବାରୁ ବୈତରଣୀର ଜଳକୁ ପବିତ୍ର ମନେ କରାଯାଏ ।

ଅତୀତରେ ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱସ୍ଥ ଉପତ୍ୟକା ଅଞ୍ଚଳକୁ ମତ୍ସ୍ୟ ଦେଶ ଏବଂ ବୈତରଣୀର ଉତ୍ତର ଦିଗରୁ ଗଙ୍ଗା ନଦୀର ଦକ୍ଷିଣ ପାର୍ଶ୍ୱ ଅଞ୍ଚଳକୁ ମଘ ଦେଶ କୁହାଯାଉଥିଲା । ସାରଳା ମହାଭାରତର ବିରାଟ ପର୍ବର ବର୍ଣ୍ଣନା ଅନୁସାରେ, 'ମଘ-ମତ୍ସ୍ୟ' ରାଜ୍ୟଦ୍ୱୟ ବିରାଟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । 'ମଘ-ମତ୍ସ୍ୟ' ରାଷ୍ଟ୍ରଦ୍ୱୟ ମିଳିତ ହୋଇ ଏକ ବିଶାଳ ସାମ୍ରାଜ୍ୟରେ

ପରିଣତ ହୋଇଥିଲା । କାଳକ୍ରମେ 'ମଘ-ମତ୍ସ୍ୟ' ସାମ୍ରାଜ୍ୟ 'ଖିଜିଙ୍ଗ' ମଣ୍ଡଳ ନାମରେ ପରିଚିତ ହେଲା ।

ବର୍ତ୍ତମାନର ମୟୂରଭଞ୍ଜ ରାଜ୍ୟ ମହାଭାରତର ମଘ ଦେଶ ଥିଲା । ମୟୂରଭଞ୍ଜର ଖିଚିଂଠାରେ ବିରାଟଗଡ଼ ଓ କିଚକଗଡ଼ର ଧ୍ୱଂସାବଶେଷ ଓ କିଚକେଶ୍ୱରୀ ମନ୍ଦିର ଏବଂ ସେଠାରୁ ମିଳିଥିବା ପୁରାତନ ମୁଦ୍ରା, ତାମ୍ରଶାସନ, ପୁରାତନ ମୂର୍ତ୍ତି ସେଠାରେ ସୃଷ୍ଟି ହୋଇଥିବା ନଗର ସଭ୍ୟତା ସଂପର୍କରେ ସୂଚନା ପ୍ରଦାନ କରେ । ଅପରପକ୍ଷେ, ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ମତ୍ସ୍ୟ ଦେଶଟି ଆଧୁନିକ କେନ୍ଦୁଝରକୁ ବୁଝାଯାଇଥାଏ । କେନ୍ଦୁଝର ରାଜ୍ୟର ଚଂପୁଆ ନିକଟରେ ହସ୍ତିନା, ଉଇନ୍ତା, ବାରୁଣା, ଯମପ୍ରସ୍ଥ, ଇନ୍ଦ୍ରପ୍ରସ୍ଥ ନାମରେ ପାଞ୍ଚୋଟି ଗ୍ରାମ ପଞ୍ଚୁପାଣ୍ଡବଙ୍କୁ ସ୍ମରଣ କରାଇଥାଏ । ଏହାବ୍ୟତୀତ ଅସନପାଟ, ରାମଲା, ପାଟଣା, ସୀତାବିଞ୍ଜିରୁ ମିଳିଥିବା ଶିଳାଲିଲେଖରେ ପାଣ୍ଡବମାନଙ୍କର ଯୁଦ୍ଧ ଯାତ୍ରାର ଚିତ୍ରାଙ୍କନ ରହିଥିବା ଏବଂ ପାଣ୍ଡବମାନଙ୍କୁ ନେଇ ଏଠାରେ ପ୍ରଚଳିତ ଥିବା ଅନେକ ଲୋକକାହାଣୀ ଓ କିମ୍ବଦନ୍ତୀ ଏଠାକାର ପ୍ରାଚୀନ ନଗର ସଭ୍ୟତା ସଂପର୍କରେ ଅନେକ ଧାରଣା ପ୍ରଦାନ କରିଥାଏ ।

'ବିଶ୍ୱକୋଷ' ଗ୍ରନ୍ଥରେ ମୟୂରଭଞ୍ଜ ଅନ୍ତର୍ଗତ 'କୋଇଁସାରି' ଗ୍ରାମଟିକୁ ବିରାଟପୁର ନାମରେ ଅଭିହିତ କରାଯାଇଛି । କୋଇଁସାରିଠାରୁ ନୀଳଗିରି ପର୍ଯ୍ୟନ୍ତ ଅଞ୍ଚଳରେ ବିରାଟ ବଂଶ ରାଜ୍ୟ ଶାସନ କରୁଥିଲେ । ଏଣୁ ଦ୍ୱାପର ଯୁଗରେ 'ମଘ-ମତ୍ସ୍ୟ' ଦେଶଦ୍ୱୟ କିଛି କାଳ ପାଇଁ ବିରାଟ ରାଜାଙ୍କ ନେତୃତ୍ୱରେ ଗୋଟିଏ ସାମ୍ରାଜ୍ୟଭୁକ୍ତ ହୋଇ ପରେ ଖିଜିଂ ମଣ୍ଡଳ ନାମରେ ପରିଚିତ ହୋଇଥିଲା ବୋଲି କୁହାଯାଏ । ଏହାପରେ ଖିଜିଂ ମଣ୍ଡଳ ରାଜ୍ୟଟି ଭଞ୍ଜ ରାଜବଂଶର ଶାସନାଧୀନ ହୋଇଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଖିଜିଂ ମଣ୍ଡଳ ରାଜ୍ୟଟି ଦୁଇ ଭାଗରେ ବିଭକ୍ତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ନାମରେ ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଗଠିତ ହୋଇଛି ବୋଲି ଇତିହାସରେ ଉଲ୍ଲେଖ ରହିଛି ।

ଦ୍ୱାଦଶ ଶତାବ୍ଦୀ ପୂର୍ବରୁ କେନ୍ଦୁଝର ଓ ମୟୂରଭଞ୍ଜ ମିଶି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟର ନାମ ଥିଲା ହରିହରପୁର । ଏହି ରାଜ୍ୟଟି ସେତେବେଳେ ଖିଜିଂ (ଖିଚିଂ) ମଣ୍ଡଳରେ ଅନ୍ତର୍ଭୁକ୍ତ ଥିଲା । ଖିଚିଂ ଏହାର ରାଜଧାନୀ ଥିଲା । ଏହି ରାଜ୍ୟଟି ବୈତରଣୀ ନଦୀ କୂଳରେ ଗଢ଼ି ଉଠିଥିଲା । ଏହାର ବହୁ ପୂର୍ବରୁ ବୌଦ୍ଧ ଧର୍ମାବଲମ୍ବୀ ରାଜାଙ୍କ ଶାସନ କାଳରେ ହରିହରପୁରଗଡ଼ 'ଜାହୋର' ରାଜ୍ୟ ଭାବେ ପ୍ରସିଦ୍ଧିଲାଭ କରିଥିଲା । ଜାହୋର ରାଜ୍ୟ ଗଠନ ପୂର୍ବରୁ ଏହି ରାଜ୍ୟ 'ବିନ୍ଧ୍ୟାଟବୀ' ନାମରେ ପରିଚିତ ଥିଲା । ଏହା ପୂର୍ବରୁ ଏହି ଭୂ-ଖଣ୍ଡଟି ଯମଗର୍ତ୍ତ ମଣ୍ଡଳ ନାମରେ ଚିହ୍ନିତ ହେଉଥିଲା । ତେବେ ହରିହରପୁର ରାଜ୍ୟ ବିଭାଜିତ ହୋଇ ପରେ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଭାବେ ମୁଣ୍ଡ ଟେକିଲା ।

ରାୟସାହେବ କ୍ଷେତ୍ରମୋହନ ମିଶ୍ରଙ୍କ ରଚିତ 'କେନ୍ଦୁଝର' ପୁସ୍ତକରେ ଥିବା ତଥ୍ୟ ଅନୁସାରେ, କେନ୍ଦୁଝର ଓ ମୟୂରଭଞ୍ଜକୁ ମିଳିତ ଭାବେ ହରିହରପୁର ରାଜ୍ୟ କୁହାଯାଉଥିଲା । ଏହି ରାଜ୍ୟର ରାଜା ଜୟସିଂହଙ୍କର ଦୁଇ ପୁତ୍ର ଥିଲେ । ଜଣେ ଆଦି ସିଂ ଓ ଅନ୍ୟ ଜଣେ ଜ୍ୟୋତି ସିଂ । ପରବର୍ତ୍ତୀ କାଳରେ ହରିହରପୁରଗଡ଼ ବିଭାଜିତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ଅଲଗା ରାଜ୍ୟ ହୋଇଗଲେ । ଆଦି ସିଂ (ଆଦି ଭଞ୍ଜ) ହେଲେ ମୟୂରଭଞ୍ଜ ରାଜ୍ୟର ପ୍ରଥମ ରାଜା ଓ ଜ୍ୟୋତି ସିଂ (ଜ୍ୟୋତି ଭଞ୍ଜ) ହେଲେ କେନ୍ଦୁଝର ରାଜ୍ୟର ପ୍ରଥମ ରାଜା । କେନ୍ଦୁଝରର ପ୍ରଥମ ରାଜା ଭାବେ ଜ୍ୟୋତିଭଞ୍ଜ ଶାସନ ଗାଦିରେ ବସିଥିଲେ । ଜ୍ୟୋତିପୁରଗଡ଼ରେ ଜ୍ୟୋତିଭଞ୍ଜ ନିଜର ରାଜଧାନୀ ପ୍ରତିଷ୍ଠା କରି କେନ୍ଦୁଝରର ଶାସନ ଭାର ଗ୍ରହଣ କରିଥିଲେ । ଜ୍ୟୋତିପୁରଗଡ଼ରେ ଶାସନ ପ୍ରତିଷ୍ଠା ହେବାର ବହୁ ପରେ କେନ୍ଦୁଝରଗଡ଼କୁ ରାଜଧାନୀ ପରିବର୍ତ୍ତନ ହୋଇଥିଲା । ସେହିଭଳି ଆଦିପୁର ଗଡ଼ରୁ ପରେ ବାରିପଦାକୁ ରାଜଧାନୀ ସ୍ଥାନାନ୍ତର ହୋଇଥିଲା । ଉଭୟ ରାଜ୍ୟ ପାଇଁ ବୈତରଣୀ ନଦୀଟି ଏକ ସୀମାରେଖା ଭାବେ କାର୍ଯ୍ୟ କରିଥିଲା । ଏହାବ୍ୟତୀତ ବୈତରଣୀ ନଦୀ କୂଳରେ ଉଭୟ ମୟୂରଭଞ୍ଜ ଓ କେନ୍ଦୁଝରଗଡ଼ର ରାଜଧାନୀ ପ୍ରତିଷ୍ଠା କରାଯାଇଥିଲା । କାହିଁକି କେଜାଣି ତତ୍କାଳୀନ ରାଜାମାନେ ବୈତରଣୀ ନଦୀ କୂଳରେ ରାଜ୍ୟ ଓ ରାଜଧାନୀ ପ୍ରତିଷ୍ଠା କରିବାକୁ ବେଶ୍ ଆଗ୍ରହୀ ଥିଲେ । ଏହା ହିଁ ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ନଗର ସଭ୍ୟତା ସଂପର୍କରେ ଅନେକ ସୂଚନା ଦେଇଥାଏ ।

ବିରଜା କ୍ଷେତ୍ରର ବିକାଶରେ ପ୍ରମୁଖ ଭୂମିକା ତୁଲେଇଥିବା ସୋମବଂଶୀ ରାଜା ଦ୍ୱିତୀୟ ଯଯାତି କେଶରୀ (ଖ୍ରୀ.ଅ. ୧୦୨୫ - ଖ୍ରୀ.ଅ. ୧୦୪୦) ଏଠାରେ ଦଶାଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ ବୋଲି କୁହାଯାଏ । ଯଯାତିକେଶରୀ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଅବସ୍ଥିତ 'ଯାଜନଗ୍ର' (ଯଯାତି ନଗର) ଅର୍ଥାତ୍ ଆଜିର ଯାଜପୁରଠାରେ ଦଶାଶ୍ୱମେଧ ଯଜ୍ଞ ପାଇଁ କାନ୍ୟକୁବ୍ଜ ରାଜ୍ୟରୁ ଦଶ ସହସ୍ର ବୈଦିକ ବ୍ରାହ୍ମଣମାନଙ୍କୁ ଅଣାଇ ଏହି ଯଜ୍ଞ କରାଇଥିଲେ । ଏହା ପୂର୍ବରୁ ଭୌମକରମାନେ ବିରଜାକ୍ଷେତ୍ରକୁ ନିଜର ରାଜଧାନୀ ଭାବେ ପ୍ରତିଷ୍ଠା କରିସାରିଥିଲେ ।

ବହୁ ପ୍ରାଚୀନ କାଳରୁ ତତ୍କାଳୀନ ଓଡ଼ିଶାକୁ ଦୁଇଗୋଟି ସାଂସ୍କୃତିକ ମଣ୍ଡଳରେ ବିଭକ୍ତ କରାଯାଇଛି । ଗୋଟିଏ ହେଉଛି ଜଗନ୍ନାଥ ମଣ୍ଡଳ (ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ର ପୁରୀ) ଏବଂ ଅନ୍ୟଟି ହେଉଛି ବିରଜା ମଣ୍ଡଳ (ଯାଜପୁର) । ଏହି ଦୁଇଟି ମଣ୍ଡଳ ଉତ୍କଳରେ ପ୍ରସିଦ୍ଧିଲାଭ କରିଥିଲା । ସାରଳା ଦାସଙ୍କ 'ମହାଭାରତ'ରେ ଯାଜନଗ୍ର ସଂପର୍କରେ ବହୁ ବର୍ଣ୍ଣନା ରହିଛି । ବିରଜା ମଣ୍ଡଳ ବା ଯାଜନଗ୍ର ମଣ୍ଡଳ ଦକ୍ଷିଣରେ ଚିତ୍ରୋତ୍ପଳା ତୀରସ୍ଥ ବାରଣାସୀ କଟକ (ଆଧୁନିକ କଟକ) ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଣୁ ମହାନଦୀ ଜଗନ୍ନାଥ ମଣ୍ଡଳର ଏକ ପ୍ରମୁଖ ନଦୀ ଥିବାବେଳେ ବୈତରଣୀ ବିରଜା ମଣ୍ଡଳର ମୁଖ୍ୟ ନଦୀ ବା ସୀମାରେଖା ଭାବେ ନିର୍ଦ୍ଧାରିତ ହୋଇଥିଲା । ବାଲେଶ୍ୱର, ମେଦିନିପୁର, ମୟୂରଭଞ୍ଜ,

ସିଂହଭୂମି, କେନ୍ଦୁଝର ଆଦି ରାଜ୍ୟଗୁଡିକୁ ନେଇ ବିରଜା ମଣ୍ଡଳ ଗଠିତ ହୋଇଥିଲା ଏବଂ ଯାଜନଗ୍ର ଏହାର ରାଜଧାନୀ ଥିଲା ।

ଅଷ୍ଟମ ନବମ ଶତାବ୍ଦୀରେ ବିରଜା ମଣ୍ଡଳ ଉତ୍କଳ ନାମରେ ପରିଚିତ ଥିଲା ଏବଂ ଏହାର ରାଜଧାନୀ ଯାଜପୁର ଥିଲା ବୋଲି ଭୌମକର ଯୁଗର ତାମ୍ର ଅନୁଶାସନରୁ ଜଣାଯାଏ । ସୋମବଂଶୀ ରାଜା ଦ୍ୱିତୀୟ ଯଯାତି କେଶରୀଙ୍କ ଶାସନକାଳରେ ବିରଜା ମଣ୍ଡଳ ନାମ ପରିବର୍ତ୍ତେ 'ଯଯାତି ନଗର' ବା 'ଯାଯନଗ୍ର' ଭାବେ ପ୍ରସିଦ୍ଧିଲାଭ କରିଥିଲା । ମାଦଳା ପାଞ୍ଜିରେ ଯଯାତି ନଗର 'ଅଭିନବ ନଗ୍ର' ଭାବେ ବର୍ଣ୍ଣିତ ହୋଇଛି । ଏହି ଦୁଇଗୋଟି ମଣ୍ଡଳ ଅନୁସାରେ ଓଡ଼ିଶାରେ ଜଗନ୍ନାଥ ପଞ୍ଜିକା ଓ ବିରଜା ପଞ୍ଜିକା ନାମରେ ଦୁଇଗୋଟି ପାଞ୍ଜିର ପ୍ରଚଳନ କରାଯାଇଛି ।

[ତଥ୍ୟ ସହାୟତା

୧· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ (ଦ୍ୱିତୀୟ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରକାଶନୀ, ବଡ଼ବିଲ (୧୯୮୯), ପୃଷ୍ଠା: ୧୪୪, ୧୪୬)

୨· ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର, ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା (୨୦୧୨), ପୃଷ୍ଠା: ୫୦, ୫୧, ୫୨)

୩· ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା' (୧୯୭୩), ପୃଷ୍ଠା-୨୫ ଓ ୨୬]

# ବୈତରଣୀ ନଦୀ ଉପତ୍ୟକାରେ ଗଢି ଉଠିଥିବା ଏକ ପୁରାତନ ନଗର ସଭ୍ୟତାର କାହାଣୀ: ଖିଚିଂର ଧ୍ୱଂସପ୍ରାପ୍ତ ବିରାଟଗଡ଼ ଓ କିଚକଗଡ଼

*(The ruined fort Virat garha and Kichak garha in the basin of Baitaranee)*

ପୃଥିବୀର ଅନ୍ୟାନ୍ୟ ନଦୀ ଉପତ୍ୟକା ସଭ୍ୟତା ଭଳି ବୈତରଣୀ ଉପତ୍ୟକା ସଭ୍ୟତାର ଏକ ପ୍ରାଚୀନ ଇତିହାସ ରହିଛି । ଆଜି ମୟୂରଭଞ୍ଜ ଜିଲ୍ଲାର ଖିଚିଂଠାରେ ଯେଉଁ ଦୁଇଟି ଭଗ୍ନ ଓ ଧ୍ୱଂସପ୍ରାପ୍ତ ରାଜଦୁର୍ଗ ବା ଗଡ଼ **(ବିରାଟଗଡ଼ ଓ କିଚକଗଡ଼)**ର ଧ୍ୱଂସାବଶେଷ ଦେଖିବାକୁ ମିଳିଥାଏ, ସେଥିରୁ ବୈତରଣୀ ଓ ଏହାର ପ୍ରମୁଖ ଉପନଦୀ ଖଇରୀ-ଭଣ୍ଡନ ଉପତ୍ୟକାରେ ଗଢି ଉଠିଥିବା ପୁରାତନ ନଦୀ ସଭ୍ୟତା ଓ ଭଞ୍ଜ ରାଜବଂଶର ଇତିହାସ ସଂପର୍କରେ ଅନେକ ସୂଚନା ମିଳିଥାଏ । କେବଳ ଖିଚିଂର ବିରାଟଗଡ଼ ଓ କିଚକଗଡ଼ ନୁହେଁ ବରଂ ଏହା ସନ୍ନିକଟ ବୈତରଣୀ ନଦୀ କୂଳରେ ଅବସ୍ଥିତ ଅସନପାଟ ଓ ପ୍ରତ୍ନତାତ୍ତ୍ୱିକ ସ୍ଥଳ ବେଣୀସାଗରରୁ ମିଳିଥିବା ପ୍ରତ୍ନତାତ୍ତ୍ୱିକ ଅବଶେଷ ବୈତରଣୀ ନଦୀକୂଳ ସଭ୍ୟତାର ପ୍ରାଚୀନତା ସଂପର୍କରେ ଅନେକ ପ୍ରମାଣ ବହନ କରିଥାଏ । ଖିଚିଂର ବିରାଟଗଡ଼ ଓ କିଚକଗଡ଼ ଭଳି ଏହାର ସନ୍ନିକଟ **ବେଣୀସାଗର** (ବର୍ତ୍ତମାନ ପଶ୍ଚିମ ସିଂହଭୂମି ଜିଲ୍ଲାରେ ଅବସ୍ଥିତ)ଠାରେ ଦୁଇଟି ଗଡ଼ର ଅବଶେଷ ରହିଛି । ଏଠାରେ **କେସ୍‌ନାଗଡ଼** ଓ **ରୁଆମଗଡ଼** ନାମରେ ଦୁଇଟି ଦୁର୍ଗ ନବମ-ଦଶମ ଶତାବ୍ଦୀ ବେଳକୁ ଗଢିଉଠିଥିଲା ବୋଲି ଇତିହାସରେ ଉଲ୍ଲେଖ ରହିଛି ।

ଖିଜିଂକୋଟ୍ଟରୁ ମିଳିଥିବା ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ଅବଶେଷ ଭାବରେ ତିନିଗୋଟି ପ୍ରାଚୀନ ମନ୍ଦିର, ଦୁଇଗୋଟି ପ୍ରାଚୀନ ଦୁର୍ଗ **(ବିରାଟଗଡ଼ ଓ କିଚକଗଡ଼)**, ୪୦ ଗୋଟି ପ୍ରାଚୀନ ପୁଷ୍କରିଣୀ ଓ ନିକଟସ୍ଥ ବେଣୀସାଗର ପ୍ରତ୍ନତାତ୍ତ୍ୱିକ ଅବଶେଷସମୂହ ଏଠାକାର ପ୍ରାଚୀନ ନଗର ସଭ୍ୟତା ସଂପର୍କରେ ଅନେକ ଧାରଣା ପ୍ରଦାନ କରିଥାଏ । ଆଉ ଏ ସମସ୍ତ ପ୍ରତ୍ନତାତ୍ତ୍ୱିକ ଐତିହାସିକ ସ୍ଥଳ ବୈତରଣୀ ନଦୀର ଅବବାହିକା ଅଞ୍ଚଳରେ ରହିଥିବାରୁ ତତ୍କାଳୀନ ଭଞ୍ଜବଂଶୀ ରାଜାମାନେ ବୈତରଣୀ ନଦୀ କୂଳକୁ ସେମାନଙ୍କ ଆବାସସ୍ଥଳ ଭାବେ ବାଛିଥିଲେ । *'ଖିଚିଂର ତିନି ମାଇଲ୍ ଦୂରରେ ବୈତରଣୀ, ପୂର୍ବ ଭାଗକୁ ଅଧ ମାଇଲ ଦୂରରେ ଭଣ୍ଡନ (ଭଣ୍ଡିଣୀ) ଏବଂ ଅଧମାଇଲ ଦୂରରେ ପଶ୍ଚିମ ଦିଗରେ ଖଇରୀ ନଦୀ ପ୍ରବାହିତ'* ବୋଲି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କ ପୁସ୍ତକ 'ମୋ ସମୟର ଓଡ଼ିଶା'ରେ ଉଲ୍ଲେଖ କରିଛନ୍ତି । ଏଣୁ ବୈତରଣୀ ନଦୀ ଅବବାହିକାରେ ଭଞ୍ଜ ରାଜବଂଶୀଙ୍କ ସ୍ମାରକୀ ବହନ କରୁଥିବା ଏହି ଦୁଇଟି ପ୍ରାଚୀନ ଗଡ଼ର ଧ୍ୱଂସାବଶେଷ ଏକ ପୁରାତନ ସଭ୍ୟତା ସଂପର୍କରେ ବହୁ କଥା କହିଥାଏ ।



ଖିଚିଂର
କିଚକେଶ୍ୱରୀ ମନ୍ଦିର
ସାମ୍ନାରେ ଲେଖକ

ଖ୍ରୀ:ଅ ନବମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ତିନିଶହ ବର୍ଷ ଧରି ବୈତରଣୀ ନଦୀ ଉପତ୍ୟକାରେ ଖଇରୀ-ଭଣ୍ଡନ ନଦୀ କୂଳରେ ଗଢି ଉଠିଥିବା ଭଞ୍ଜଶାସିତ ଏହି ଖିଜିଂକୋଟ୍ଟଟି ତତ୍କାଳୀନ ଖିଜିଂ ମଣ୍ଡଳ ରାଜ୍ୟର ରାଜଧାନୀ ରହିଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଏହି ଖିଜିଂମଣ୍ଡଳ ରାଜ୍ୟଟି ଦୁଇ ଭାଗରେ ବିଭକ୍ତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ପୃଥକ ରାଜ୍ୟରେ ପରିଣତ ହେଲା । ଏହା ପରେ ଭଞ୍ଜବଂଶୀଙ୍କ ରାଜଧାନୀ ଖିଚିଂକୋଟ୍ଟରୁ ଉଠିଯାଇ ମୟୂରଭଞ୍ଜର ରାଜଧାନୀ ଆଦିପୁରଗଡ଼ ଓ କେନ୍ଦୁଝର ରାଜ୍ୟର ରାଜଧାନୀ ଜ୍ୟୋତିପୁରଗଡ଼ ପାଲଟିଲା । ସୂଚନାଯୋଗ୍ୟ, ମୟୂରଭଞ୍ଜର ପ୍ରଥମ ରାଜଧାନୀ ଆଦିପୁରଗଡ଼ ଓ କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ଜ୍ୟୋତିପୁରଗଡ଼ ମଧ୍ୟ ବୈତରଣୀ ନଦୀ କୂଳରେ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ଭଞ୍ଜ ରାଜାମାନେ ବୈତରଣୀ ନଦୀକୂଳରେ ନିଜ ରାଜ୍ୟର ରାଜଧାନୀ ପ୍ରତିଷ୍ଠା କରିବା ପାଇଁ ଅଧିକ ଉପଯୁକ୍ତ ମଣିଥିଲେ ।

ବୈତରଣୀ ନଦୀ କୂଳ (ଖଇରୀ-ଭଣ୍ଡନ ନଦୀ)ରେ ଅବସ୍ଥିତ ଆଧୁନିକ ମୟୂରଭଞ୍ଜ ଜିଲ୍ଲାର ଦେବୀ କିଚକେଶ୍ୱରୀଙ୍କ ବିଶାଳ କଳାମୁଗୁନି ପଥରରେ ନିର୍ମିତ ମନ୍ଦିର ସମଗ୍ର ଓଡ଼ିଶାରେ ଏକ ବିଶେଷ ସ୍ଥାନ ଅଧିକାର କରିପାରିଛି । ଏଠାରେ ନବମ ଶତାବ୍ଦୀରେ ନିର୍ମିତ କୁଟେଇତୁଣ୍ଡୀ ମନ୍ଦିରଟି

ଓଡ଼ିଶାର ଅନ୍ୟତମ ପ୍ରମୁଖ ପ୍ରାଚୀନ ମନ୍ଦିର ଭାବେ ଜଣାଶୁଣା । ଏହା ପାଖକୁ ଖିଚିଂଠାରେ ଥିବା **'କିଚକଗଡ଼'** ଓ **'ବିରାଟଗଡ଼'**ର ଧ୍ୱଂସାବଶେଷ ଏବଂ ଏଠାରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି, ଶିଳାଭିଲେଖ, ତାମ୍ରଲେଖ, କୁଶାଣ ଓ ଗୁପ୍ତ ଯୁଗର ତମ୍ବା ମୁଦ୍ରା ଓ ଅନ୍ୟାନ୍ୟ ଅବଶେଷ ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ଏକ ପ୍ରାଚୀନ ସଭ୍ୟତାର କାହାଣୀ ସଂପର୍କରେ ଅନେକ କଥା କହିଥାଏ । ଖିଚିଂଠାରେ ଥିବା ସଂଗ୍ରହାଳୟରେ ପ୍ରାଚୀନ ନଗର ସଭ୍ୟତାର ଅନେକ ଧ୍ୱଂସାବଶେଷ, ପ୍ରାଚୀନ ମୂର୍ତ୍ତି ଓ ଅନ୍ୟାନ୍ୟ ଅବଶେଷ ସଂଗୃହୀତ ହୋଇରହିଛି । ବିରାଟଗଡ଼ଟି ଖିଜିଂ ମଣ୍ଡଳର ଅଧୀନସ୍ଥ ଥିଲା । କୁଟେଇତୁଣ୍ଡୀ ମନ୍ଦିର ସନ୍ନିକଟ ଖଇରୀ-ଭଣ୍ଡନ ନଦୀର ଉପକଣ୍ଠରେ ବିରାଟଗଡ଼ ଓ କୀଚକଗଡ଼ର ଭଗ୍ନାବଶେଷ ରହିଛି । ପ୍ରତ୍ନତାତ୍ତ୍ୱିକ ଖନନ କରାଯାଇ ଏଠାରୁ ବିଭିନ୍ନ ପଦାର୍ଥ ସଂଗ୍ରହ କରାଯାଇଛି । ଏହି ଗଡ଼ ପ୍ଲେଟ୍ ଆକାରର ବିରାଟ ଇଟାଖଣ୍ଡ ଦ୍ୱାରା ନିର୍ମିତ ହୋଇ ଥିଲା ।

ବାରିପଦା ସଂଗ୍ରହାଳୟରେ ଥିବା ଶତ୍ରୁଭଞ୍ଜଙ୍କର ଧ୍ରୁବରାଜ ଏବଂ କୁମାର ଧର୍ମରାଜଙ୍କ ଶିଳାଭିଲେଖ, ଅବଲୋକିତେଶ୍ୱର ମୂର୍ତ୍ତିର ପାଦଦେଶରେ ଥିବା ଶିଳାଭିଲେଖ ଏବଂ ଅସନପାଟର ଶିଳାଭିଲେଖରୁ ଖିଜିଂ ମଣ୍ଡଳର ଭଞ୍ଜ ରାଜାଙ୍କ ବିଷୟରେ ସମ୍ୟକ ଧାରଣା ସୃଷ୍ଟି ହୋଇଥାଏ । ଖିଚିଂ ସଂଗ୍ରହାଳୟରେ ଥିବା ବିଭିନ୍ନ ପ୍ରଚୀନ ମୂର୍ତ୍ତିର ଶିଳ୍ପକଳା, ସୀତାବିଞ୍ଜିର ରାବଣଛାୟାରେ ଥିବା ରାଜା ଦିଶାଭଞ୍ଜଙ୍କର ରାଜକୀୟ ଶୋଭାଯାତ୍ରାର ଚିତ୍ରାଙ୍କନ, ପ୍ରତ୍ନତାତ୍ତ୍ୱିକ ଖନନରୁ ଆବିଷ୍କୃତ ବିରାଟଗଡ଼ ଓ କିଚକଗଡ଼, କିଚକେଶ୍ୱରୀ ମନ୍ଦିର ଓ ପ୍ରାଚୀନ ମୂର୍ତ୍ତି, ରଘୁନାଥ ଭଞ୍ଜଙ୍କ ଲିଖିତ 'ଚକଡ଼ା ଗୋବିନ୍ଦ ଦାସ' ଓ 'ରସ ଲହରୀ', ନୟାବସାଣରୁ ଆବିଷ୍କୃତ ଶ୍ୟାମ କରଣଙ୍କର ତାଳପତ୍ର ପୋଥି ଏବଂ ଆର୍କିଓଲୋଜିକାଲ୍ ସର୍ଭେ ଅଫ୍ ଇଣ୍ଡିଆ, ଆର୍କିଓଲୋଜିକାଲ୍ ସର୍ଭେ ଅଫ୍ ମୟୂରଭଞ୍ଜ (ଏନ୍.ଏନ୍. ବସୁ)ଙ୍କ ରିପୋର୍ଟରୁ ଖିଜିଂ ମଣ୍ଡଳ ଭଞ୍ଜରାଜ ବଂଶ ସଂପର୍କରେ ବହୁ ତଥ୍ୟ ମିଳିଥାଏ । ବୈତରଣୀ ନଦୀ ଓ ଏହାର ଉପନଦୀ ଖଇରିଭଣ୍ଡନ କୂଳରେ ଏ ଅଞ୍ଚଳରେ ଏକ ସମୃଦ୍ଧ ପ୍ରାଚୀନ ସଭ୍ୟତା ଗଢି ଉଠିଥିଲା; ଏହା ନିଃସନ୍ଦେହରେ କୁହାଯାଇପାରିବ ।

ବିରାଟଗଡ଼ ଓ କୀଚକଗଡ଼ ମହାଭାରତ ଯୁଗରେ ବିରାଟ ରାଜାଙ୍କର ରାଜପ୍ରାସାଦ ଥିଲା ବୋଲି କିମ୍ବଦନ୍ତୀ ରହିଛି । ମାତ୍ର ଏଥିରେ ସେମିତି କିଛି ଐତିହାସିକ ସତ୍ୟତା ପ୍ରମାଣିତ ହୋଇନି । ବାସ୍ତବରେ ଏହା ଭଞ୍ଜ ରାଜବଂଶୀମାନଙ୍କର ରାଜଧାନୀ ଥିଲା ଏବଂ ଭଞ୍ଜ ରାଜାମାନେ ଏଠାରେ ଦୁଇଟି ଗଡ଼ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ଏହି ଗଡ଼ଦ୍ୱୟ ଧ୍ୱଂସ ପାଇଯିବା ସହିତ ଇତିହାସ ନିରବ ରହିବା କାରଣରୁ ସ୍ଥାନୀୟ ଅନଭିଜ୍ଞ ଲୋକମାନେ ଏହାର ପୌରାଣିକ ନାମକରଣ କରିଛନ୍ତି ବୋଲି ଐତିହାସିକ ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତବ୍ୟକ୍ତ କରନ୍ତି । ଏଠାକାର ଭୂ-ଖନନ ଓ ଶିଳାଲେଖରୁ ଏହି ଦୁଇଟି ଗଡ଼ ଭଞ୍ଜ ରାଜବଂଶର ରାଜପ୍ରାସାଦ ଥିଲା ବୋଲି ଡ. ପାଣିଗ୍ରାହୀ ପ୍ରମାଣ କରିଛନ୍ତି ।

[ ତଥ୍ୟ : "ମୋ' ସମୟର ଓଡ଼ିଶା" -ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କିତାବ୍ ମହଲ, କଟକ, ଚତୁର୍ଥ ମୁଦ୍ରଣ (୨୦୦୭), ପୃଷ୍ଠା-୨, ୩]

ବୈତରଣୀ ନଦୀ ଅବବାହିକାରେ ଗଢି ଉଠିଥିବା ଖିଚିଂର କିଚକେଶ୍ୱରୀଙ୍କ ମନ୍ଦିର ଆଧୁନିକ ମୟୂରଭଞ୍ଜ ଜିଲ୍ଲାର ଶୁକୁଳି ବ୍ଲକ୍‌ରେ ଅବସ୍ଥିତ । ଏହା କେନ୍ଦୁଝରଗଡ଼ଠାରୁ ୫୦ କିଲୋମିଟର ଦୂର ପୂର୍ବ ଏବଂ କରଞ୍ଜିଆଠାରୁ ୨୭ କିଲୋମିଟର ପଶ୍ଚିମ ଦିଗରେ ଅବସ୍ଥିତ । ଏଠାରେ ଥିବା ଦେବୀ କିଚକେଶ୍ୱରୀଙ୍କ ପୁରୁଣା ମନ୍ଦିରଟି ସଂଭବତଃ ନବମ-ଦଶମ ଶତାବ୍ଦୀ ମଧ୍ୟରେ ଭଞ୍ଜ ରାଜାମାନଙ୍କ ଦ୍ୱାରା ନିର୍ମିତ ହୋଇଥାଇପାରେ ବୋଲି ଐତିହାସିକ ମତବ୍ୟକ୍ତ କରନ୍ତି । ମାତ୍ର ପୁରୁଣା ମନ୍ଦିରଟି କୌଣସି କାରଣରୁ ଧ୍ୱଂସ ପାଇଯିବାରୁ ତତ୍କାଳୀନ ମୟୂରଭଞ୍ଜ ରାଜାଙ୍କ ଦ୍ୱାରା ବିଂଶ ଶତାବ୍ଦୀର ଆରଂଭରେ ଏହାର ପୁନର୍ନିର୍ମାଣ କରାଯାଇଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଅର୍ଥାତ୍ ୧୯୩୪ ମସିହାରେ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ପୁରୁଣା ତଥା ଧ୍ୱଂସ ପାଇଯାଇଥିବା ମନ୍ଦିରକୁ ଭାଙ୍ଗି ନୂତନ ମନ୍ଦିର ନିର୍ମାଣ କରିଥିଲେ ।

ଦିଲ୍ଲୀର ସୁଲ୍‌ତାନ୍ ଫିରୋଜ ଶାହ ତୋଗଲକ୍ ୧୩୬୦-୬୧ ଖିଚିଂକୋଟ ଉପରେ ଆକ୍ରମଣ କରିଥିବାରୁ ସଂଭବତଃ ମନ୍ଦିର ସମେତ ଖିଚିଂର ଭଞ୍ଜରାଜବଂଶର ବିରାଟଗଡ଼ ଓ କୀଚକଗଡ଼ ଧ୍ୱଂସ ପାଇଯାଇଥାଇପାରେ ବୋଲି ଅନୁମାନ କରାଯାଉଛି ।

ଇଂରେଜ ଶାସନ କାଳରେ ୧୯୦୮ ମସିହାରେ ଯେତେବେଳେ ଖିଚିଂଠାରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ବିଭାଗ ପକ୍ଷରୁ ପ୍ରତ୍ନତାତ୍ତ୍ୱିକ ଖନନ ଆରଂଭ ହୋଇଥିଲା, ସେତେବେଳେ ବୈତରଣୀ ନଦୀର ଉପନଦୀ ଖଇରୀ-ଭଣ୍ଡନ କୂଳରେ ଥିବା ଭଞ୍ଜ ରାଜବଂଶର ଦୁଇ ଦୁଇଟି ରାଜପ୍ରାସାଦ ସଂପର୍କରେ ପ୍ରଥମେ ସୂଚନା ମିଳିଥିଲା । ଏଠାରୁ ମିଳିଥିବା ଏକ ଶିଳାଚିତ୍ରରେ ଦଶମ ଶତାବ୍ଦୀର ଭଞ୍ଜ ରାଜା ରାୟ ଭଞ୍ଜଙ୍କ ଦ୍ୱାରା ଗୋଟିଏ ପଥର ଖମ୍ବରେ ଖୋଦିତ ଚିତ୍ରରେ ରାଜା ବୀର ବେଶରେ ଖଣ୍ଡା ଓ ଢାଲ ଧରି ଯୋଦ୍ଧା ବେଶରେ ଦଣ୍ଡାୟମାନ ରହିଥିବାର ଦେଖାଯାଏ । ଅନ୍ୟ ଏକ ଚିତ୍ରରେ ରାଜା ହାତୀ ପିଠିରେ ବସି ଗୋଟିଏ ହାତରେ ଖଣ୍ଡା ଓ ଅନ୍ୟ ହାତରେ ଅଙ୍କୁଶ ଧରି ଯାତ୍ରା କରୁଥିବାର ଦୃଶ୍ୟ ରହିଛି । ଏହା ଦଶମ ଶତାବ୍ଦୀର ଚିତ୍ର ଅଟେ ବୋଲି କୁହାଯାଉଛି ।

ଖିଚିଂଠାରୁ ମିଳିଥିବା ମୂର୍ତ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ବୌଦ୍ଧ ମୂର୍ତ୍ତି ଥିଲା । ଏଠାରୁ ଦେବୀ ଦୁର୍ଗା, ଗଣେଶ, ଜୈନ ଦେବତା ପାର୍ଶ୍ୱନାଥ, ବୌଦ୍ଧ ଦେବୀ ତାରା, ପାର୍ବତୀ, ନନ୍ଦୀ, କାର୍ତ୍ତିକେୟ, ବୈଷ୍ଣବୀ, ଅବଲୋକିତେଶ୍ୱର, ଧ୍ୟାନ ମୁଦ୍ରାସ୍ଥ ବୁଦ୍ଧଙ୍କର ଅନେକ ମୂର୍ତ୍ତି ମିଳିଥିଲା । ଏଠାରୁ ମିଳିଥିବା ଧ୍ୟାନ ମୁଦ୍ରାସ୍ଥ ବୁଦ୍ଧ ଓ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ହିଁ ଏଠାକାର ପ୍ରାଚୀନ ବୌଦ୍ଧ ଧର୍ମ ଓ ସଂସ୍କୃତି ସଂପର୍କରେ ଅନେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରଦାନ କରିଥାଏ । ପୁଣ୍ୟତୋୟା ବୈତରଣୀ ନଦୀ କୂଳେକୂଳେ ସେତେବେଳେ ବୌଦ୍ଧ ଧର୍ମ ଓ ସଂସ୍କୃତି ବ୍ୟାପକ ହୋଇଥିବାର ପ୍ରମାଣ ମିଳେ । ଏହାବ୍ୟତୀତ ଏଠାରୁ ପ୍ରାଚୀନ କାଳର ବହୁ ବିରଳ ତମ୍ବା ମୁଦ୍ରା, ଲୌହ ଉପକରଣ, ମାଟି ନିର୍ମିତ ଉପକରଣ, ପ୍ରସ୍ତର ଯୁଗର ଉପକରଣ ମଧ୍ୟ ମିଳିଛି ।

କିଚକେଶ୍ୱରୀଙ୍କ ମନ୍ଦିର ବ୍ୟତୀତ ଖିଚିଂଠାରେ ପ୍ରସିଦ୍ଧ ନୀଳକଣ୍ଠେଶ୍ୱର ଓ ଅଷ୍ଟଶମ୍ଭୁ ଶୈବ କ୍ଷେତ୍ର ରହିଛି । ଆଦିପୁରଗଡ଼ (ଆଧୁନିକ ମୟୂରଭଞ୍ଜ)ରେ ବୈତରଣୀ ନଦୀ କୂଳରେ ଏକାଦଶ ରୁଦ୍ରଙ୍କର ଏକ ପୁରୁଣା ମନ୍ଦିର ରହିଛି । ଖିଚିଂଠାରୁ ପାଞ୍ଚ କିଲୋମିଟର ଦୂର ପଶ୍ଚିମ ସିଂହଭୂମି ଜିଲ୍ଲା (ଆଧୁନିକ ଝାଡ଼ଖଣ୍ଡ)ର **ବେଣୀସାଗର**ଠାରେ ଅଷ୍ଟଶମ୍ଭୁ ଶିବ ମନ୍ଦିର ମଧ୍ୟ ରହିଛି । ଏଠାକାର ରାଜା କେସ୍‌ନା ସିଂ ଓ ତାଙ୍କ ପୁତ୍ର ବେଣୁ ସିଂ ଯଥାକ୍ରମେ **କେସ୍‌ନାଗଡ଼** ଓ **ରୁଆମ୍‌ଗଡ଼** ପ୍ରତିଷ୍ଠା କରିଥିଲେ । ଏହି ଦୁଇଟି ଗଡ଼ ଓ ମନ୍ଦିର ମଧ୍ୟ ୧୩୬୦-୬୧ ମସିହାରେ ଫିରୋଜ୍ ଶାହା ତୋଗଲକ୍‌ଙ୍କ ଦ୍ୱାରା ଧ୍ୱଂସ ପାଇଯାଇଛି ବୋଲି ଅନୁମାନ କରାଯାଉଛି । ବେଣୁ ସିଂ ପ୍ରତିଷ୍ଠା କରିଥିବା ରାଜପ୍ରାସାଦ, ବେଣୀସାଗର ଓ ପ୍ରାଚୀନ ଅଷ୍ଟଶମ୍ଭୁ ଶିବ ମନ୍ଦିର ଧ୍ୱଂସ ପାଇଯାଇଥିଲେ ବି ଏହାର ଧ୍ୱଂସାବଶେଷ ଆଜି ବି ଉଜ୍ଜୀବିତ ରହିଛି । ଏହିସବୁ ନିର୍ମାଣ ନବମ ଶତାବ୍ଦୀର ବୋଲି ଏ ଅଞ୍ଚଳର ବରିଷ୍ଠ ଗବେଷକ ଐତିହାସିକ ଶ୍ୟାମ ସୁନ୍ଦର ପାଣିଗ୍ରାହୀ ମତବ୍ୟକ୍ତ କରନ୍ତି ।

ଖଇରିଭଣ୍ଡନ ନଦୀରେ **'ବିରାଟଗଡ଼'** ଲୀନ ହୋଇଯିବା ପରେ କିମ୍ବା କୌଣସି କାରଣରୁ 'ବିରାଟଗଡ଼' ଧ୍ୱଂସ ପାଇଯିବା ପରେ ଏଠାରେ ରାଜ୍ୟ ଶାସନ କରୁଥିବା ଭଞ୍ଜ ରାଜାମାନେ ନିଜର ରାଜଧାନୀକୁ ନିକଟସ୍ଥ **'କିଚକଗଡ଼'**କୁ ଉଠାଇ ନେଇଥିଲେ । **'ବିରାଟଗଡ଼'** ଏବଂ **'କିଚକଗଡ଼'** ଆଧୁନିକ ଝାଡ଼ଖଣ୍ଡ ରାଜ୍ୟର ସିଂହଭୂମି ଓ ଓଡ଼ିଶାର କେନ୍ଦୁଝର ଜିଲ୍ଲାର ସୀମାନ୍ତ ମୟୂରଭଞ୍ଜ ଜିଲ୍ଲାର ଖିଚିଂଠାରେ ଅବସ୍ଥିତ । ଏହି **'ବିରାଟଗଡ଼** ଓ **'କିଚକଗଡ଼'**ର ଚତୁର୍ପାର୍ଶ୍ୱରେ ପ୍ରତ୍ନତାତ୍ତ୍ୱିକ କ୍ଷେତ୍ର ବେଣୀସାଗର, ଆଦିପୁରଗଡ଼, ଖଇରିଭଣ୍ଡନ ଓ ବୈତରଣୀ ନଦୀର ମିଳନସ୍ଥଳ କୁହାଯାଉଥିବା ଐତିହାସିକ ଦୋ-ମୁହାଣୀ ଘାଟ, ଜ୍ୟୋତିପୁରଗଡ଼ ଆଦି ରହିଛି ।

ପୂର୍ବଭାରତର ଏହି ବିଶାଳ ଭଞ୍ଜ ସାମ୍ରାଜ୍ୟ ଆଧୁନିକ ମୟୂରଭଞ୍ଜ, କେନ୍ଦୁଝର, ସିଂହଭୂମି ଓ ବାଲେଶ୍ୱରର କେତେକ ଅଞ୍ଚଳକୁ ନେଇ ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଗଠିତ ହୋଇଥିଲା । ଖିଜିଂ ମଣ୍ଡଳର ରାଜା ରଣ ଭଞ୍ଜଙ୍କ ବାମନଘାଟି ତାମ୍ରଫଳକ, ରାଜା ମହେନ୍ଦ୍ର ଭଞ୍ଜଙ୍କ ଆଦିପୁର ତାମ୍ର ଫଳକ, ରାଜା ନରେନ୍ଦ୍ର ଭଞ୍ଜ ଦ୍ୱିତୀୟଙ୍କ ଆଦିପୁର ତାମ୍ର ଫଳକଗୁଡିକରେ ଖିଜିଂ ମଣ୍ଡଳ ସଂପର୍କରେ ବର୍ଣ୍ଣନା ରହିଛି । ଐତିହାସିକ ଅର୍ଜୁନ ଯୋଶୀଙ୍କ ମତରେ ନବମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଏକାଦଶ ଶତାବ୍ଦୀ ଯାଏ ଖିଜିଂ କୋଟା ଖିଜିଂ ମଣ୍ଡଳ ରାଜ୍ୟର ରାଜଧାନୀ ଥିଲା ଏବଂ ଏଠାରେ ଏକ ନଗର ସଭ୍ୟତା ଗଢି ଉଠିଥିଲା ।

[ତଥ୍ୟ ସହାୟତା: 'ଖିଚିଂର ପ୍ରାଚୀନ ଇତିହାସ' ପାଣ୍ଡୁଲିପିରୁ ସଂଗୃହୀତ କିଛି ତଥ୍ୟର ସହାୟତା ନିଆଯାଇଛି । ଏହି ପାଣ୍ଡୁଲିପିଟିର ଲେଖକ ହେଉଛନ୍ତି ଖିଚିଂର ଶ୍ୟାମ ସୁନ୍ଦର ପାଣିଗ୍ରାହୀ । ପାଣ୍ଡୁଲିପିଟି ଏବେ ପୁସ୍ତକ ପ୍ରକାଶନ ଅପେକ୍ଷାରେ ଅଛି]

ଖିଜିଂ ମଣ୍ଡଳରେ ଜୈନ, ବୌଦ୍ଧ, ବୈଷ୍ଣବ, ଶୈବ, ଶାକ୍ତ, ସୌର ଏବଂ ଗାଣପତ୍ୟ ଧର୍ମସମୂହର ସଂକେତ ଦେଖିବାକୁ ମିଳିଥାଏ । ସେଠାରେ ହିନ୍ଦୁ, ଜୈନ ଓ ବୌଦ୍ଧ ଧର୍ମର କ୍ରମବିକାଶ ଖ୍ରୀଷ୍ଟ ପୂର୍ବ ସମୟରୁ ଘଟିଥିଲେ ହେଁ ନବମରୁ ଏକାଦଶ ଶତାବ୍ଦୀ ମଧ୍ୟରେ ବିଶେଷ ଭାବେ ବିକାଶଲାଭ କରିପାରିଥିଲା । ଖିଜିଂ ମଣ୍ଡଳ ସନ୍ନିକଟ ବୈତରଣୀ ନଦୀ ପଥ ଏବଂ ସ୍ଥଳ ପଥ ଦେଇ ଦକ୍ଷିଣ ବିହାର ଓ ଛୋଟନାଗପୁରର ବ୍ୟବସାୟୀମାନେ ସିଂହଳ ଦ୍ୱୀପ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । ଏହି ବାଟ ଦେଇ ଉତ୍ତର ଭାରତର ଜୈନ ଦିଗମ୍ବର ଓ ବୌଦ୍ଧ ଭିକ୍ଷୁମାନେ ସିଂହଳ ତଥା ଦକ୍ଷିଣ ଭାରତକୁ ଯାତାୟତ କରୁଥିବାରୁ ଏଠାରେ ଏହିସବୁ ଧର୍ମର ପ୍ରଭାବ ପଡିଛି ବୋଲି ଦାବି କରାଯାଏ ।

ପ୍ରତ୍ନତାତ୍ତ୍ୱିକ ଖନନରୁ ଖିଜିଂ ମଣ୍ଡଳରୁ ମିଳିଥିବା କୁଶାଣ, ଗୁପ୍ତ ଓ ରୋମାନ୍ ମୁଦ୍ରା ପ୍ରଚଳନରୁ ଏଠାକାର ରାଜବଂଶ ଏବଂ ନୌବାଣିଜ୍ୟ ଇତିହାସ ବିଷୟରେ ଅନେକ ଧାରଣା ମିଳିଥାଏ । ସେତେବେଳେ ତାମ୍ରଲିପ୍ତ ବନ୍ଦର ଖିଜିଂ ମଣ୍ଡଳ ଅଧୀନରେ ରହିଥିବାରୁ ଏ ଅଞ୍ଚଳ ଏବଂ ବହିର୍ଦେଶ ମଧ୍ୟରେ ଏକ ସମୃଦ୍ଧ ବାଣିଜ୍ୟିକ ସଂପର୍କ ରହିଥିବାର ଜଣାପଡ଼େ । ଆଉ ମଧ୍ୟ ଖିଜିଂର ଭଞ୍ଜବଂଶୀଙ୍କ ପ୍ରୋତ୍ସାହନରେ ବୈତରଣୀ, ଖଇରିଭଣ୍ଡନ, ସୁବର୍ଣ୍ଣରେଖା, ବୁଢାବଳଙ୍ଗ ନଦୀ ମାଧ୍ୟମରେ ନୌବାଣିଜ୍ୟ କାରବାରକୁ ଅଧିକ ଦୃଢ କରାଯାଇଥିଲା । ଐତିହାସିକ ଡଃ କେ.କେ. ସାହୁଙ୍କ ମତରେ ଖିଜିଂ ମଣ୍ଡଳ ମୁଖ୍ୟତଃ କେନ୍ଦୁଝର ଓ ମୟୂରଭଞ୍ଜକୁ ନେଇ ଗଠିତ ହୋଇଥିଲା ଏବଂ ଖିଜିଂକୋଟା ଏହାର ରାଜଧାନୀ ଥିଲା । ଏହି ରାଜ୍ୟ ସହିତ ମେଦିନିପୁର ଓ ବାଲେଶ୍ୱରର କିଛି ଅଂଶ ସାମିଲ୍ ଥିଲା । ତାମ୍ରଲିପ୍ତ ବନ୍ଦର ଏହି ରାଜ୍ୟର ପ୍ରମୁଖ ସାମୁଦ୍ରିକ ବନ୍ଦର ଥିଲା ।

ରାଜା ପୃଥ୍ୱୀ ଭଞ୍ଜଙ୍କ ଉଖୁଣ୍ଡା ତାମ୍ର ଫଳକରୁ ଜଣାଯାଏ, ସେତେବେଳେ ଖିଜିଂ ମଣ୍ଡଳରରେ କେନ୍ଦୁଝର ରାଜ୍ୟର କିଛି ଅଂଶ ଥିଲା । ଉଖୁଣ୍ଡା ଗ୍ରାମ ଖିଜିଂ ମଣ୍ଡଳଠାରୁ ୧୫ ମାଇଲ୍ ଦୂରରେ ଦକ୍ଷିଣ-ପଶ୍ଚିମ ଦିଗରେ କେନ୍ଦୁଝର ସୀମା ମଧ୍ୟରେ ଅବସ୍ଥିତ । ରାଜା ନରେନ୍ଦ୍ର ଭଞ୍ଜଙ୍କ ଆଦିପୁର ତାମ୍ର ଫଳକରେ 'ଉର୍ଗ୍ଗି ବିଷୟ' (ଆଧୁନିକ କେନ୍ଦୁଝର ଜିଲ୍ଲାର ଏକ ଗ୍ରାମ) ଅନ୍ତର୍ଗତ ବୃହତ୍ ସରେଇ ଗ୍ରାମକୁ ଭଟ୍ଟପୁତ୍ର ଶୀତଳଦେବ ସର୍ମନଙ୍କୁ ଦାନ କରାଯାଇଥିଲା । ସେହିପରି ୯୨୯ ଖ୍ରୀଷ୍ଟାବ୍ଦରେ ରାଜା ରଣଭଞ୍ଜଙ୍କ ତାମ୍ର ଫଳକରେ ଉର୍ଗ୍ଗି ବିଷୟ ଅଧୀନରେ ଥିବା ସ୍ୱଳ୍ପ (ସାନ) ସରେଇ ଗ୍ରାମକୁ ଭଟ୍ଟପୁତ୍ର ତ୍ରିବିକ୍ରମଙ୍କୁ ଦାନ କରାଯାଇଥିଲା । ଉର୍ଗ୍ଗି ଗ୍ରାମ ଖିଜିଂ ମଣ୍ଡଳର ଉତ୍ତର-ପଶ୍ଚିମ ଦିଗରେ ୧୨ ମାଇଲ୍ ଦୂରରେ ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ କେନ୍ଦୁଝର ରାଜ୍ୟ ଅନ୍ତର୍ଗତ ଅଟେ । ଉର୍ଗ୍ଗି ନିକଟରେ ସରେଇ ନାମରେ ଏକ ଗ୍ରାମ ଅଛି ବୋଲି ତାମ୍ର ଫଳକରେ ଉଲ୍ଲେଖ ରହିଛି । ଏହି ଉର୍ଗ୍ଗି ଓ ସରେଇ ଗ୍ରାମରେ ବୈତରଣୀ ନଦୀ ଗର୍ଭରେ ପ୍ରସିଦ୍ଧ **କେଶରୀକୁଣ୍ଡ** ଅବସ୍ଥିତ । ଏହି ଦୁଇ ଗ୍ରାମ ଏବେ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ।

ବିରାଟଗଡ଼ ଓ କିଚକଗଡ଼ରେ ଥିବା ଇଟା ନିର୍ମିତ ଦୁର୍ଗ ଓ କୁଟିଂଠାରେ ଥିବା ବିରାଟ ଇଟାସ୍ତୁପରୁ ସେତେବେଳର ନିର୍ମାଣ ଶୈଳୀ ଅତି ଉଚ୍ଚ ମାନର ଥିବାର ଜଣାଯାଏ । ବାରିପଦା, ବାମନଘାଟି, ଆନନ୍ଦପୁର, ଫକୀରପୁର ଅଞ୍ଚଳରେ ସେତେବେଳେ ଟସର ସୁତା ଉତ୍ପାଦନ କରାଯାଉଥିଲା । ଖିଜିଂ ମଣ୍ଡଳ ଦେଇ ତାମ୍ରଲିପ୍ତ ବନ୍ଦରରୁ ପୂର୍ବଭାରତକୁ ରାଜପଥ ରହିଥିଲା ଏବଂ ବାଲେଶ୍ୱରଠାରୁ ବାମନଘାଟି ଦେଇ ବାରିପଦାକୁ ଗମନାଗମନ ନିମନ୍ତେ ଶଗଡ଼ ସହାୟତାରେ ଆଭ୍ୟନ୍ତରୀଣ ବାଣିଜ୍ୟ ବ୍ୟବସାୟ ଚାଲିଥିଲା । ଖିଜିଂ ମଣ୍ଡଳଟି ବୈତରଣୀ ଓ ଏହାର ଉପନଦୀ ଶାଳନ୍ଦୀ, ଖଇରଭଣ୍ଡନ, ବୁଢାବଳଙ୍ଗ ଓ ସୁବର୍ଣ୍ଣରେଖା ନଦୀ ଉପତ୍ୟକା ଅଞ୍ଚଳରେ ଗଢି ଉଠିଥିବାରୁ ସେତେବେଳେ ଜଳପଥ ଦେଇ ବାଣିଜ୍ୟ ପରିବହନ କରାଯାଉଥିଲା । ଖିଜିଂ ମଣ୍ଡଳର ବଣିକମାନେ ଟସର ବସ୍ତ୍ର, କୃଷି ସାମଗ୍ରୀ, ସୁନା, ରୁପା, ଲୁହା ଉପକରଣ, ମାଛ, ଶୁଖୁଆ ଆଦି ଏହି ଜଳପଥ ଦେଇ ବାଣିଜ୍ୟ ପରିବହନ କରୁଥିଲେ । ତଙ୍ଗା ଓ ବୋଇତ ମାଧ୍ୟମରେ ବୈତରଣୀ ଓ ଅନ୍ୟାନ୍ୟ ନଦୀପଥ ଦେଇ ପଣ୍ୟଦ୍ରବ୍ୟ ପରିବହନ କରାଯାଉଥିଲା ।

ଆଧୁନିକ ମୟୂରଭଞ୍ଜ, କେନ୍ଦୁଝର, ପଶ୍ଚିମ ସିଂହଭୂମି, ମେଦିନିପୁର ଓ ବାଲେଶ୍ୱର ଜିଲ୍ଲାର କିଛି ଅଂଶକୁ ନେଇ ଗଠିତ ହୋଇଥିବା ଖିଜିଂ ମଣ୍ଡଳ ପରବର୍ତୀ ସମୟରେ ବିଭାଜିତ ହୋଇଥିବା କଥା ରାଜା ଦୁର୍ଜୟ ଭଞ୍ଜଙ୍କ ତାମ୍ର ଫଳକରେ ଉଲ୍ଲେଖ ରହିଛି । ଦ୍ୱାଦଶ ଶତାବ୍ଦୀ ବେଳକୁ ଭଞ୍ଜ ରାଜାଙ୍କ ଶାସିତ ଖିଜିଂ ମଣ୍ଡଳ ବିଭାଜିତ ହୋଇ କେନ୍ଦୁଝର, ନୀଳଗିରି, କୋହ୍ଲାନ୍, ମେଦିନିପୁର, ନୟାବସାଣ ଆଦି ରାଜ୍ୟ ପ୍ରତିଷ୍ଠା ହେଲା । ୧୧୨୮ ଖ୍ରୀଷ୍ଟାବ୍ଦରେ ରାଜା ଜ୍ୟୋତିଭଞ୍ଜ ଆଧୁନିକ କେନ୍ଦୁଝର ରାଜ୍ୟ (ଜ୍ୟାତିପୁରଗଡ଼) ଗଠନ କରିଥିଲାବେଳେ ଆଦି ଭଞ୍ଜ ମୟୂରଭଞ୍ଜ (ଆଦିପୁରଗଡ଼) ଗଠନ କରିଥିଲେ । ଦୁର୍ଗମ ଶିମିଳିପାଳ ପର୍ବତକୁ କେନ୍ଦ୍ର କରି ବିଭିନ୍ନ ସମୟରେ ଏହିସବୁ ପରିବର୍ତ୍ତନ ସଂଭବ ହୋଇଥିଲା । ପ୍ରାଶାସନିକ ଅପହଞ୍ଚ ଓ ଦୁର୍ଗମ ବନଗିରିପଥ ଦୃଷ୍ଟିରୁ ଖିଜିଂ ମଣ୍ଡଳ ମୁଖ୍ୟତଃ ଦୁଇ ଭାଗ ହୋଇ ବୁଢାବଳଙ୍ଗ ନଦୀ ଉପତ୍ୟକାରେ 'ମୟୂରଭଞ୍ଜ ରାଜ୍ୟ' ଓ ବୁଢା ବୈତରଣୀ ନଦୀ ଉପତ୍ୟକାରେ 'କେନ୍ଦୁଝର ରାଜ୍ୟ' ନାମରେ ଦୁଇଟି ପୃଥକ ଭଞ୍ଜ ରାଜ୍ୟ ସୃଷ୍ଟି ହୋଇଥିଲା । ଏହି ଦୁଇ ରାଜ୍ୟର ରାଜଧାନୀ ଯଥାକ୍ରମେ ଆଦିପୁରଗଡ଼ ଓ ଜ୍ୟୋତିପୁରଗଡ଼ ସୃଷ୍ଟି ହେଲା ଏବଂ ବୈତରଣୀ ନଦୀ ଏହି ଦୁଇ ରାଜ୍ୟର ସୀମାରେଖା ଭାବେ ଚିହ୍ନଟ ହେଲା ।

[ତଥ୍ୟ ସହାୟତା:

୧· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ (ଦ୍ୱିତୀୟ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରକାଶନୀ, ବଡ଼ବିଲ (୧୯୮୯), ପୃଷ୍ଠା: ୧୪୪, ୧୪୬, ୧୪୭)

୨· ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା' (୧୯୭୩), ପୃଷ୍ଠା-୨୫ ଓ ୨୬]

## ବୈତରଣୀ ନଦୀ ସଭ୍ୟତାର ଆଉ ଏକ ପଦଚିହ୍ନ; ସୀତାବିଞ୍ଜି, ରାବଣଛାୟା ଚିତ୍ରାଙ୍କନ ଓ ପ୍ରାଚୀନ ଶିଳାଲେଖ

*(the Seetabinji, Ravanchhaya and ancient rock inscription; another foot print of Baitaranee civilization)*

ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ସୀତାବିଞ୍ଜି ସମଗ୍ର ଦେଶର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ଏଠାରେ ପ୍ରସ୍ତର ଯୁଗ(*stone age*)ର ନଗର ସଭ୍ୟତା ଗଢି ଉଠିଥିବାର ବହୁ ପ୍ରମାଣ ମିଳିଛି । ପରବର୍ତ୍ତୀ କାଳରେ ଏହା ଏକ ବୌଦ୍ଧ କ୍ଷେତ୍ର ଭାବେ ପ୍ରସିଦ୍ଧିଲାଭ କରିପାରିଥିଲା । ସୀତାବିଞ୍ଜି ପର୍ବତର ଉଚ୍ଚତା ୨୨୦୦ ଫୁଟ । ଏଠାରେ ୮୦ ଫୁଟ ଓ ୮୫ ଫୁଟ ଉଚ୍ଚତାର ଦୁଇଟି ଶୈଳଗୁମ୍ଫା ରହିଛି । ସୀତାବିଞ୍ଜି ପର୍ବତର ପାଦଦେଶରେ ପୁଣ୍ୟତୋୟା ବୈତରଣୀର ପ୍ରମୁଖ ଉପନଦୀ ସୀତାନଦୀ ବହିଯାଇଛି । ବୈତରଣୀ ନଦୀ ଉପକୂଳ ସଭ୍ୟତାର ପଦଚିହ୍ନସ୍ୱରୂପ ସୀତାବିଞ୍ଜିରୁ ଅନେକ ପ୍ରମାଣ ଓ ପରିଚୟ ମିଳିଥାଏ । ବୈତରଣୀ ନଦୀର ଉପନଦୀ ସୀତା ନଦୀ କୂଳରେ ଗଢି ଉଠିଥିଲା ଦେଶର ଏକ ପ୍ରମୁଖ ବୌଦ୍ଧବିହାର ସୀତାବିଞ୍ଜି ।

*"In the cave-shelter Ravanachhaya, a small inscription is found below the fresco-paintings which reads as Maharaja Sri Disabhanja. This inscription as well as the paintings have been attributed to 5th century A.D. Maharaja Sri Disabhanja, like Maharaja Satrubhanja of Asanapat inscription, may be attributed to the Naga dynasty"*

*(Orissa District Gazetteers, Kendujhar (1986, P-41, P-42, Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)*

ସୀତାବିଞ୍ଜି ନିକଟରେ ରହିଛି ପ୍ରସିଦ୍ଧ ରାବଣଛାୟା ପ୍ରାକୃତିକ ଆଶ୍ରୟସ୍ଥଳୀ । ଏହି ଆଶ୍ରୟସ୍ଥଳୀରେ ଥିବା ଛାତର ନିମ୍ନ ଭାଗରେ ଏକ ବିଶେଷ ଧରଣର ଚିତ୍ରାଙ୍କନ ରହିଛି । ଏହି ଚିତ୍ରାଙ୍କନ ହିଁ ସୀତାବିଞ୍ଜିର ଅନ୍ୟତମ ଆକର୍ଷଣ । ଏହି ଚିତ୍ରାଙ୍କନ କେତେ ପ୍ରାଚୀନ ତାହା ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ତେବେ ଏହି ଚିତ୍ରାଙ୍କନ ପଞ୍ଚମ ଶତାବ୍ଦୀରେ ଏଠାରେ ଶାସକ


ସୀତାବିଞ୍ଜ : ବାଲ୍ମିକୀ ଆଶ୍ରମ, ଲବକୁଶଙ୍କ ଏନ୍ତୁଡ଼ିଶାଳ

କରୁଥିବା ନାଗ ବଂଶୀୟ ଭଞ୍ଜ ରାଜା ମହାରାଜା ଦିଶାଭଞ୍ଜଙ୍କ ସମୟର ବୋଲି କୁହାଯାଉଛି । ଗୋଟିଏ ବିଶାଳକାୟ ପ୍ରସ୍ତରଖଣ୍ଡର ୨୨ ଫୁଟ ଉପରେ ଅନ୍ୟ ଏକ ପଥର ରହି ଏକ ଆଶ୍ରୟସ୍ଥଳୀ ସଦୃଶ କୋଠରୀଟିଏ ସୃଷ୍ଟି ହୋଇଛି । ଏହାକୁ କେହି ମଣିଷ ନିର୍ମାଣ କରିନାହାନ୍ତି, ପ୍ରାକୃତିକ ଉପାୟରେ ଏହା ସୃଷ୍ଟି ହୋଇଛି । ଏହି ଆଶ୍ରୟସ୍ଥଳୀର ଛାତର ନିମ୍ନଭାଗରେ ଏକ ରାଜକୀୟ ଯୁଦ୍ଧ ବିଜୟଯାତ୍ରାର ଚିତ୍ରାଙ୍କନ ରହିଛି । ଏହି ଚିତ୍ରରେ ମୁଖ୍ୟତଃ ମାଟିଆ, ଗେରୁଆ, ଧଳା, ଲାଲ୍ ଓ ହଳଦି ରଙ୍ଗ ବ୍ୟବହୃତ ହୋଇଛି । ଚିତ୍ରଟିରେ ଜଣେ ରାଜା ହସ୍ତୀ ଉପରେ ବସି ହାତରେ ଅସ୍ତ୍ରଶସ୍ତ୍ର ଧରି ଯାତ୍ରା କରୁଥିବାର ଦର୍ଶାଯାଇଛି । ଏହା ରାଜାଙ୍କର ଯୁଦ୍ଧରେ ବିଜୟୀ ହେବା ପରର ଦୃଶ୍ୟ କିମ୍ବା ଯୁଦ୍ଧ କ୍ଷେତ୍ରକୁ ଯାତ୍ରା କରିବା ବେଳର ମୁହୂର୍ତ୍ତର ଚିତ୍ର । ଏହା ସହିତ ରାଜାଙ୍କର ପଛପଟକୁ ଜଣେ ଅନୁଚର ହାତରେ ଚାମର ଓ ଛତ୍ର ଧରିଥିବାର ଚିତ୍ର ରହିଛି । ହାତୀ ସମ୍ମୁଖରେ ଜଣେ ଅଶ୍ୱାରୋହୀ ଓ କିଛି ପଦାତିକବାହିନୀ ମଧ୍ୟ ଅଛନ୍ତି । ଏହି ଚିତ୍ରରେ ଜଣେ ନାରୀ ସ୍ୱଳ୍ପ ବସ୍ତ୍ର ପରିଧାନ କରିଥିବାର ଦୃଶ୍ୟ ମଧ୍ୟ ଦେଖିବାକୁ ମିଳିଥାଏ । ହସ୍ତୀ ଚିତ୍ରର ଠିକ୍ ତଳେ ଏକ କ୍ଷୁଦ୍ର ଅଭିଲେଖ ଦେଖାଯାଏ ଏବଂ ଏହି ଅଭିଲେଖଟି 'ଚାଣକ ଦିଶାଭଞ୍ଜ' ବୋଲି ପାଠ କରାଯାଇଛି । ଏହି ଅଭିଲେଖଟିରେ ଦିଶାଭଞ୍ଜଙ୍କର ନାମ ଉଲ୍ଲେଖ ରହିଥିବାରୁ ଭଞ୍ଜବଂଶୀ ରାଜା ଦିଶାଭଞ୍ଜ ଚିତ୍ରାଙ୍କନଟି କରାଇଥାଇ ପାରନ୍ତି ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି । ଆଉ କିଛି ଗବେଷକ ଏହାକୁ ଖଣ୍ଡନ କରିବା ସହିତ ଏହି ଚିତ୍ରାଙ୍କନ ଦିଶାଭଞ୍ଜଙ୍କଠାରୁ ଆହୁରି ପ୍ରାଚୀନ ବୋଲି ଦାବି କରନ୍ତି ।

ସୀତାବିଞ୍ଜିରେ ଥିବା ଚିତ୍ରାଙ୍କନର ପ୍ରାଚୀନତା ନେଇ ଭିନ୍ନ ମତ ରହିଛି । ଟି·ଏନ୍· ରାମଚନ୍ଦ୍ରନ୍ ତାଙ୍କ ଲିଖିତ *'Tempera painting in Sitabinjhi, District Keonjhar, Orissa'* ଶିରୋନାମା ପ୍ରବନ୍ଧ ନିୟୁୟର୍କ ବିଶ୍ୱବିଦ୍ୟାଳୟର *institute of fine arts*ର ଏକ ପତ୍ରିକାରେ ପ୍ରକାଶ କରି ସୀତାବିଞ୍ଜିର ଚିତ୍ରକଳାକୁ *Tempera painting* ବୋଲି ବର୍ଣ୍ଣନା କରିଛନ୍ତି । ସେହିଭଳି ଗବେଷକ ଅର୍ଜୁନ ଯୋଶୀ ମଧ୍ୟ ଏହି ଚିତ୍ରାଙ୍କନକୁ *Tempera painting* ବୋଲି ଉଲ୍ଲେଖ କରିଛନ୍ତି । କାନ୍ଥ ବା ଛାତରେ ଜିଙ୍କ୍ ଅକ୍ସାଇଡ୍ ଲେପ ଦେଇ ଏହା ଉପରେ ଅଣ୍ଡା ଘୋଳରେ ଗୋଳାଯାଇଥିବା ରଙ୍ଗ ଦ୍ୱାରା ଚିତ୍ରାଙ୍କନକୁ *Tempera painting* କୁହାଯାଏ । ଏହି ଚିତ୍ରାଙ୍କନ ପଦ୍ଧତି ନବମ ଶତାବ୍ଦୀ ବେଳକୁ ୟୁରୋପରେ ପ୍ରଚଳିତ ହେଉଥିଲା । ମାତ୍ର ଗବେଷକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହାକୁ *Fresco painting* ବୋଲି କହିଛନ୍ତି । *Fresco painting* ବା ପାଣି ରଙ୍ଗ ଚିତ୍ରାଙ୍କନ ଶୈଳୀ ଭିନ୍ନ ଅଟେ । ଚୂନ ଲିପା କାନ୍ଥ ବା ଛାତ ଦେହରେ ପାଣିରେ ରଙ୍ଗ ଗୋଳେଇ ତୂଳୀରେ ଏହି ଚିତ୍ରାଙ୍କନ କରାଯାଏ । ଚୂନ ପାଣିକୁ ଶୀଘ୍ର ଶୋଷି ନେଇ ଚିତ୍ରକୁ ଶୁଖାଇ ଦିଏ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ କେତେକ ଇଟାଲୀୟ ଚିତ୍ରାଙ୍କନକୁ ଫ୍ରେସ୍କୋ ପେଣ୍ଟିଂ ବା ପାଣି ରଙ୍ଗଚିତ୍ର କୁହାଯାଇଛି । ଗବେଷକ ଇନାମ୍ ଅନସାରୀ ସୀତାବିଞ୍ଜି ସମ୍ପର୍କରେ ଏକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ସେ ଟି·ଏନ୍· ରାମଚନ୍ଦ୍ରନ୍ଙ୍କ ଲିଖିତ *'Tempera painting'* ଏବଂ ଗବେଷକ ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ *'Fresco painting'* ବା ପାଣି ରଙ୍ଗଚିତ୍ରାଙ୍କନକୁ ଖଣ୍ଡନ କରିଛନ୍ତି । ଏହି ଦୁଇଟି ଶୈଳୀର ଚିତ୍ରାଙ୍କନକୁ ଅନ୍‌ସାରୀ ଅଗ୍ରାହ୍ୟ କରିବା ସହ ସୀତାବିଞ୍ଜିଠାରେ ଥିବା ଏହି ଚିତ୍ରାଙ୍କନକୁ *'Mural painting'* ବା କାନ୍ଥଚିତ୍ର ବୋଲି ବର୍ଣ୍ଣନା କରିଛନ୍ତି ।

## ଧ୍ୱଂସପ୍ରାପ୍ତ ପ୍ରାଚୀନ ବୌଦ୍ଧବିହାର

*(The ruined Budhist Vihar of the Seetabinji)*

ସୀତାବିଞ୍ଜିଠାରେ ରହିଛି ଏକ ଚତୁର୍ମୁଖୀ ଶିବଲିଙ୍ଗ, ପ୍ରାଚୀନ ପ୍ରସ୍ତର ଯୁଗର ହସ୍ତୀମୂର୍ତ୍ତି ଏବଂ ଭଗ୍ନ ବୌଦ୍ଧବିହାର । ହଜାର ହଜାର ବର୍ଷ ତଳର ପ୍ରାଚୀନ ଇଟାଗଦା ଓ ଶିଳାଲିପିକୁ ଅନୁଧ୍ୟାନ କଲେ, ଏହା ଏକ ଭଗ୍ନ ବୌଦ୍ଧବିହାରର ସୂଚନା ଦେଇଥାଏ । ବୌଦ୍ଧ ଯୁଗରେ ଏଠାରେ ଏକ ବୃହତ୍ ଶିକ୍ଷାନୁଷ୍ଠାନ ଥିଲା ବୋଲି ଅନୁମାନ କରାଯାଏ । ସୀତାବିଞ୍ଜିରେ ନାଳନ୍ଦା, ତକ୍ଷଶିଳା ଭଳି ବିଶ୍ୱସ୍ତରର ବୌଦ୍ଧ ବିଶ୍ୱବିଦ୍ୟାଳୟ ଥିବାର ଐତିହାସିକମାନେ ଦାବି କରନ୍ତି । ଏହି ଧ୍ୱଂସପ୍ରାପ୍ତ ଇଟାସ୍ତୂପ ନିକଟରେ କୃଷ୍ଣବର୍ଣ୍ଣ ଅକର୍ମ ଶିଳା ଦେହରେ ଲିଖିତ ହୋଇଥିବା ଲିପିଗୁଡ଼ିକର ଆକାରପ୍ରକାର ଦକ୍ଷିଣ ଭାରତୀୟ ଲିପି ଭଳି ବୋଲି କିଛି ଗବେଷକ ମତବ୍ୟକ୍ତ କରିଛନ୍ତି । ଆଉ କିଛି ଗବେଷକ ଏଠାରେ ବସବାସ କରୁଥିବା ପ୍ରାଚୀନ ଆଦିବାସୀଙ୍କର ଲିପି ଭାବେ ବର୍ଣ୍ଣନା କରିଛନ୍ତି । ତେବେ ଏହି ଲିପିକୁ ନେଇ

ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଅପରପକ୍ଷେ, ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ ଏବଂ ବୌଦ୍ଧମାନଙ୍କ ଉପରେ ହୋଇଥିବା ଧାର୍ମିକ ଆକ୍ରମଣ କାରଣରୁ ଏହି ବୌଦ୍ଧବିହାରଟି ଧ୍ୱଂସ ପାଇ ଯାଇଛି ବୋଲି ଐତିହାସିକମାନେ ମତ ଦିଅନ୍ତି । ସୀତାବିଞ୍ଜିରୁ ମିଳିଥିବା ପ୍ରାଚୀନ ଧ୍ୱଂସାବଶେଷ ଏଠାରେ ଥିବା ବୌଦ୍ଧସ୍ତୁପ, ବୌଦ୍ଧ ସଂଘ, ବୌଦ୍ଧବିହାର ସଂର୍ପକରେ ଅନେକ ତଥ୍ୟ ପ୍ରଦାନ କରିଥାଏ । ଏଠାରେ ଥିବା ବୌଦ୍ଧ ଉପାସନା ଗୃହ, ବୌଦ୍ଧବିହାର, ବୌଦ୍ଧ ସନ୍ନ୍ୟାସୀଙ୍କ ଉପାସନାସ୍ଥଳ ଏବେ ଧ୍ୱଂସର କବର ତଳେ ପୋତି ହୋଇପଡ଼ିଛି । ଅଧିକ ପ୍ରତ୍ନତାତ୍ତ୍ୱିକ ଖନନ କରାଗଲେ ଏଠାରେ ଦିନେ ନାଳନ୍ଦା, ତକ୍ଷଶିଳା ଭଳି ଦେଶର ବୃହତ୍ ବୌଦ୍ଧ ମହାବିହାର ଥିବାର ପ୍ରମାଣ ମିଳିପାରନ୍ତା ।

ଯଦିଓ ପ୍ରତ୍ନତତ୍ତ୍ୱ ବିଭାଗ ଏହାର ସଂରକ୍ଷଣ ଦାୟିତ୍ୱ ନିଜ ହାତକୁ ନେଇଛି, ମାତ୍ର ତାହା ଉପରଠାଉରିଆ । କେବଳ ନାମକୁ ମାତ୍ର ପ୍ରତ୍ନତତ୍ତ୍ୱ ବିଭାଗ ଏଠାରେ ଏକ ଚେତାବନୀ ଫଳକ ଟାଂଗିଦେଇ ବସିଯାଇଛି । ମାତ୍ର ଏହାର ରକ୍ଷଣାବେକ୍ଷଣ ଓ ଉପଯୁକ୍ତ ଯତ୍ନ ପ୍ରତି କେହି ଧ୍ୟାନ ଦେଉନାହାନ୍ତି । ସୂଚନାଯୋଗ୍ୟ, ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଏଠାରେ ଏକ ଫଳକ ଲଗାଯାଇଛି, ଯେଉଁଥିରେ 'ଏହା ଏକ ପ୍ରତ୍ନତାତ୍ତ୍ୱିକ ସ୍ଥଳ ଏବଂ ଏହାର ସୁରକ୍ଷା ସମସ୍ତଙ୍କ ଦାୟିତ୍ୱ' ବୋଲି ଲେଖାଯାଇଛି । ଏହି ପ୍ରାଚୀନ ସ୍ଥଳର ସୌନ୍ଦର୍ଯ୍ୟହାନି କିମ୍ବା କ୍ଷୟକ୍ଷତି କଲେ ୩ ମାସ ଜେଲ୍ କିମ୍ବା ୫,୦୦୦ ଟଙ୍କା ଜୋରିମାନା ଦେବାକୁ ପଡ଼ିବ ବୋଲି ଫଳକରେ ଲେଖାଯାଇଛି । ମାତ୍ର, ଏହି ଐତିହାସିକ ସ୍ଥଳର କୌଣସି ଗୁରୁତ୍ୱ ସଂପର୍କରେ ଫଳକରେ ଧାଡ଼ିଏ ହେଲେ ବି ଲେଖାଯାଇନାହିଁ । କେଉଁ ମୁହୂର୍ତ୍ତରେ ଏଠାରେ ଥିବା ଶିଳାଲିପି ଓ ପ୍ରାଚୀନମୂର୍ତ୍ତିସବୁକୁ କିଏ ଚୋରି କରି ନେଇଯିବ ତାହା ମଧ୍ୟ କହିହେବନି ।

## ସୀତାବିଞ୍ଜିକୁ ନେଇ କିଛି କିମ୍ବଦନ୍ତୀ ଓ ଲୋକବିଶ୍ୱାସ

*(Myth and legend about the Seetabinji)*

ସୀତାବିଞ୍ଜି ଦସ୍ୟୁ ରତ୍ନାକରର ଆସ୍ଥାନସ୍ଥଳୀ ଥିବାର ପ୍ରମାଣସ୍ୱରୂପ ସୀତାବିଞ୍ଜି ପର୍ବତର ଅଳ୍ପ ଦୂରରେ **'ଖଣ୍ଡଘର'** ନାମରେ ଏକ ଗାଁ ଏବେବି ରହିଛି । ଏହି ଖଣ୍ଡଘର ଗ୍ରାମ ନିକଟରେ ପ୍ରାୟ ଏକ କିଲୋମିଟର ପରିଧି ବିଶିଷ୍ଟ ଗୋଟିଏ ଗୋଲାକାର ପଥର ଉପର ଦେଇ ଚାଲିଚାଲି ଗଲାବେଳେ ପଥର ଭିତରେ ଏକ ସୁଡ଼ଙ୍ଗ ଥିବା ପରି ମନେହୋଇଥାଏ । ଏହି ପଥର ସୁଡ଼ଙ୍ଗ ଭିତରକୁ ଯିବା ପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ଅଛି ଏବଂ ସେହି ଦ୍ୱାରଦେଶରେ ଖିଲାଣଲଗା ପଥର କବାଟ ଲାଗିଛି ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି ସୁଡ଼ଙ୍ଗଟି ଦସ୍ୟୁ ରତ୍ନାକରର ଚୋରି ସାମଗ୍ରୀର ଭଣ୍ଡାରଘର ଥିଲା ଏବଂ ରତ୍ନାକର ଏଠାରେ ଚୋରି ଜିନିଷ ଓ ଅଳଂକାର ସାଇତି ରଖିଥିବା କଥା ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ ।

ସୀତାବିଞ୍ଜି ପାହାଡ଼ର କିଛି ଦୂରରେ ଏକ ଛୋଟ ମୁଣ୍ଡିଆ ପାହାଡ଼ ରହିଛି ଯାହାକୁ **'ଡ଼ଙ୍ଗୋଇତ ହୁଡ଼ି'** କହନ୍ତି । ଏହି ହୁଡ଼ିରେ ଥିବା ଗୁମ୍ଫା ମଧ୍ୟରେ ଏକ ଦେବୀଙ୍କ ମୂର୍ତ୍ତି ରହିଛି । ଏହି ସ୍ଥାନଟି ଦସ୍ୟୁ ରତ୍ନାକରର ଆଖଡ଼ାଘର ଥିଲା ଏବଂ ଏଠାରେ ଦସ୍ୟୁ ରତ୍ନାକର ଦେବୀଙ୍କୁ ପୂଜା କରୁଥିଲା ବୋଲି ସ୍ଥାନୀୟ ଅଞ୍ଚଳରେ ଲୋକବିଶ୍ୱାସ ରହିଛି ।

ସୀତାବିଞ୍ଜି ନିକଟରେ ଥିବା ପିଠାଗୋଳା ଗାଁ (ହରିଚନ୍ଦନପୁର ବ୍ଲକ୍)ରେ ଚନ୍ଦନଗିରି ନାମରେ ଏକ ପର୍ବତ ରହିଛି । ଏହାର ଉଚ୍ଚତା ଏକ ହଜାର ଫୁଟ । ଏହି ପର୍ବତ ଉପରେ **'ପାଟହରା'** ନାମରେ ଏକ ଗୁମ୍ଫା ଅଛି । ଗୁମ୍ଫା ମଧ୍ୟକୁ ପ୍ରବେଶ ପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ରହିଛି । ଏହି ଗୁମ୍ଫା ମଧ୍ୟରେ ବିଭିନ୍ନ ପ୍ରକାର ମୂଲ୍ୟବାନ ରତ୍ନପଥର ଓ ଧନସଂପଦ ରହିଥିବାର ଲୋକବିଶ୍ୱାସ ରହିଛି । ଦସ୍ୟୁ ରତ୍ନାକର ବହୁ ମୂଲ୍ୟବାନ ରତ୍ନପଥର ଚୋରିକରି ଆଣି ଏହି ପାଟହରା ଗୁମ୍ଫାରେ ଗଚ୍ଛିତ ରଖିଥିବା କଥା ଲୋକେ କହନ୍ତି । ଏହି ଚନ୍ଦନଗିରି ପର୍ବତରୁ କେନ୍ଦୁଝରର ଅନ୍ୟତମ ଚିରସ୍ରୋତା ନଦୀ ମୁଷଳ ପ୍ରବାହିତ ହୋଇ ବୈତରଣୀରେ ମିଶିଛି ।

ସୀତାବିଞ୍ଜି ପର୍ବତର ଉତ୍ତର ଦିଗରେ ପିପିଳିଆ ଗ୍ରାମଠାରେ ଠାକୁରାଣୀ ନାମରେ ଏକ ପର୍ବତ ରହିଛି । ଏହି ପର୍ବତର ଶୀର୍ଷ ଦେଶରେ ଏକ ବିରାଟ ଗୋଲାକାର ଏବଂ ଚନ୍ଦନପେଡି ସଦୃଶ ପଥର ଖଣ୍ଡ ରହିଛି । ସ୍ଥାନୀୟ ଲୋକେ ଏହାକୁ **'ଚନ୍ଦନପେଡ଼ି'** କହିଥାନ୍ତି । ଏଠାରୁ ବିଭିନ୍ନ ରଂଗର ବର୍ତ୍ତୁଳାକାର ପଥରଖଣ୍ଡ ସଂଗ୍ରହ କରି ସ୍ଥାନୀୟ ଅଞ୍ଚଳର ଲୋକେ ମୂଲ୍ୟବାନ୍ ମାଳି ପ୍ରସ୍ତୁତ କରିଥାନ୍ତି । ଏହି ପର୍ବତରୁ ସ୍ୱର୍ଣ୍ଣ ରେଣୁ ଝରୁଥିବାର ପ୍ରବାଦ ରହିଛି । ଏହି ପଥର ମାଳିଗୁଡିକ ସ୍ୱର୍ଣ୍ଣରେଣୁ ଆକୃତିର ହୋଇଥିବାରୁ ଏହି ପର୍ବତକୁ **'ସ୍ୱର୍ଣ୍ଣଝରା'** ବୋଲି କୁହାଯାଇଥାଏ । ସୀତାବିଞ୍ଜିରେ ବ୍ୟବହୃତ ହୋଇଥିବା ପଥର ମାଳିଗୁଡିକ ଏଠାରୁ ସଂଗୃହୀତ ହୋଇଥିବା ବିଶ୍ୱାସ କରାଯାଏ ।

ସୀତାବିଞ୍ଜି ପର୍ବତର ଅଳ୍ପ ଦୂରରେ ଏକ ପର୍ବତ ରହିଛି ଯାହାର ନାମ **'ବୁଢିପାଟ'** । ଏଠାରେ ଥିବା ଗୁମ୍ଫାରୁ ନିକଟସ୍ଥ ଡାଂଗୁଆପଶି ଗ୍ରାମର ଧନେଶ୍ୱର ନାମକ ଜଣେ ଗଣ୍ଡଲୋକ ଏକ ବିଶାଳ ଲୌହ ଖଣ୍ଡା ପ୍ରାପ୍ତ ହୋଇଥିଲେ । ସବୁଠୁ ବଡ଼ କଥା ହେଉଛି, ଏହି ଖଣ୍ଡାରେ ଆଜି ପର୍ଯ୍ୟନ୍ତ କଳଙ୍କି ଲାଗିନାହିଁ । ଦସ୍ୟୁ ରତ୍ନାକର ଏହି ତରବାରୀ ବ୍ୟବହାର କରୁଥିଲା ବୋଲି ସ୍ଥାନୀୟ ଲୋକେ କହନ୍ତି ।

ସୀତାବିଞ୍ଜି ପର୍ବତର ପୂର୍ବ ଭାଗରେ ରହିଛି ଆଉ ଏକ ପାହାଡ଼ ଯାହାର ନାଁ **'ଜଇରାଷଣ୍ଢ'** ପାହାଡ଼ । ଏହାର ଉଚ୍ଚତା ଏକ ହଜାର ଫୁଟ । ଏଠାରେ ଥିବା ଗୁମ୍ଫା ମଧ୍ୟରେ ଏକ ଚିତ୍ରିତ ତମ୍ବୁରୁ ଚିହ୍ନ ଦେଖିବାକୁ ମିଳିଥାଏ । ଜଇରାଷଣ୍ଢ ଗୁମ୍ଫାରେ ଥିବା ପଥର ଉପରେ ଅନେକ ଶିଳାଭିଲେଖ ଦେଖାଯାଏ । ଏଠାରେ ରାତିରେ ଗୁମ୍ଫାର ଦ୍ୱାର ଦେଶରେ ହମ୍ବା ହମ୍ବା ରଡି ଶୁଭେ । ଏହି ପାହାଡ଼ଟି ଏକ ମସ୍ତକଶୂନ୍ୟ ଷଣ୍ଢର ଆକାର ଭଳି ଦିଶିଥାଏ । କଥିତ ଅଛି ଏହି ଷଣ୍ଢର

ମସ୍ତକକୁ ଛେଦନ କରି କୌଣସି ଋଷି ତାକୁ ଗୋନାସିକା ପର୍ବତ ଉପରେ ଫିଙ୍ଗି ଦେଇଥିଲେ । ସେହିଦିନଠୁ ଗୋନାସିକା ପର୍ବତରେ ଏହି ଷଣ୍ଢଟିର ମୁଣ୍ଡ ରହିଥିବାବେଳେ ଏଠାରେ ଶରୀର ରହିଛି ବୋଲି ଲୋକକଥା ରହିଛି ।

ସୀତାବିଞ୍ଜିର ପଶ୍ଚିମରେ ଗୋନାସିକା ପର୍ବତର ପାଦଦେଶରେ ରହିଛି ଏକ ପାହାଡ଼ ଯାହାର ନାମ '**ଚନ୍ଦ୍ରମଣ୍ଡଳ ଗିରି**' । ବ୍ରହ୍ମେଶ୍ୱର ମହାଦେବଙ୍କ ମସ୍ତକରୁ ଚନ୍ଦ୍ରକାନ୍ତମଣି ସଦୃଶ ବୈତରଣୀ ନଦୀ ଉତ୍ପତ୍ତିଲାଭ କରିଥିବାରୁ ଏହି ପର୍ବତର ନାମ ଚନ୍ଦ୍ରମଣ୍ଡଳ ଗିରି ହୋଇଛି ବୋଲି ଲୋକବିଶ୍ୱାସ ରହିଛି । ପ୍ରବାଦ ଅଛି, ଏହି ପର୍ବତରୁ ଚନ୍ଦ୍ରକାନ୍ତମଣି ପଥର ମିଳିଥାଏ । ସନ୍ଧ୍ୟା ସମୟରେ ଏହି ଚନ୍ଦ୍ରମଣ୍ଡଳ ଗିରିର ଶୀର୍ଷଦେଶ ଏକ ଧଳା ରଙ୍ଗର ଆଲୋକରେ ଉଦ୍‌ଭାସିତ ହୋଇ ସମଗ୍ର ଅଞ୍ଚଳ ଉଜ୍ଜ୍ୱଳ ଦିଶିଥାଏ ।

ସୀତାବିଞ୍ଜିର ଯୋଡାଗଡଠାରେ '**ଫୁଲବାଡ଼ି**' ନାମରେ ଏକ ସ୍ଥାନ ରହିଛି । ପୂର୍ବେ ଏହା ମହର୍ଷି ବାଲ୍ମିକଙ୍କ ତପୋବନରେ ଏକ ସୁନ୍ଦର ପୁଷ୍ପ ଉଦ୍ୟାନ ଥିବା କଥା ଲୋକବିଶ୍ୱାସ ରହିଛି । ଏଠାରେ '**ଷଣ୍ଢବଳଦ**' ନାମରେ ଏକ ପାହାଡ଼ ରହିଛି ଯେଉଁଠୁ '**କାଲିଂଜର**' ନଦୀ ପ୍ରବାହିତ ହୋଇଛି । ଥରେ ମହର୍ଷିଙ୍କ ଫୁଲ ବାଡରେ ଗୋଟିଏ ଷଣ୍ଢ ପଶି ସମସ୍ତ ଫୁଲକୁ ନଷ୍ଟ କରିଦେବାରୁ ମହର୍ଷି କ୍ରୋଧିତ ହୋଇ ପଡିଥିଲେ । ବାଲ୍ମିକଙ୍କ କ୍ରୋଧାଗ୍ନିରେ ଷଣ୍ଢର ମୁଣ୍ଡଟି ଛିଣ୍ଡିଯାଇ ଗୋନାସିକାରେ ପଡ଼ିଲା ଏବଂ ତହିଁରୁ ବୈତରଣୀ ନଦୀର ଉତ୍ପତ୍ତି ହୋଇଛି । ଏହାପରେ ଏହି ପର୍ବତର ନାମ ଗୋନାସିକା ହୋଇଛି ବୋଲି ଲୋକବିଶ୍ୱାସ ରହିଛି । ଏହି ଷଣ୍ଢର ଶରୀର ଫୁଲବାଡ଼ିଠାରେ ପଡିରହି ତହିଁରୁ କାଲିଂଜର ନଦୀର ଉତ୍ପତ୍ତି ହୋଇଛି ।

ସୀତାଠାକୁରାଣୀଙ୍କ ଏନ୍ତୁଡ଼ିଶାଳର ଦକ୍ଷିଣ-ପୂର୍ବରେ ଭଣ୍ଡାରଘର ପର୍ଯ୍ୟନ୍ତ ପ୍ରାୟ ତିନି କିଲୋମିଟର ବ୍ୟାପୀ ଏକ ଭଗ୍ନ ପ୍ରାଚୀର ରହିଛି । ଏହାକୁ '**ଯୋଡ଼ା ପ୍ରାଚୀର**' କୁହାଯାଏ । ଏହି ଯୋଡା ପ୍ରାଚୀର କାନ୍ଥଦ୍ୱୟ ମଧ୍ୟରେ ଜଣେ ଦୁଇଜଣ ଲୋକ ଯିବା ଭଳି ଏକ ସୁଡ଼ଙ୍ଗପଥ ରହିଛି । ଏଠାରେ ଏକ ପ୍ରାଚୀନ ଗଡ଼ ଥିବାର ବିଶ୍ୱାସ କରାଯାଏ । ଏହା ହେଉଛି '**ଯୋଡ଼ାଗଡ଼**' । ଏହି ଯୋଡାଗଡ ମଧ୍ୟରୁ ସ୍ଥାନୀୟ ଲୋକେ ବିଭିନ୍ନ ପ୍ରକାର ପଥର ମାଳି ସଂଗ୍ରହ କରିଥାନ୍ତି । ସବୁଠୁ ବଡ଼କଥା ହେଉଛି, ସୀତାବିଞ୍ଜି ନିକଟରୁ ପ୍ରାଚୀନ କାଳର ବହୁ ବୃହତ୍ ଆକାରର ଭଗ୍ନ ଇଟାମାନ ମିଳିଛି । ଇଟାର ଏହି ଭଗ୍ନସ୍ତୂପକୁ ଲକ୍ଷ୍ୟ କଲେ ଏଠାରେ ଏକ ପ୍ରାଚୀନ ଗଡ କିମ୍ବା ଦୁର୍ଗ ଥିବାର ଅନୁମାନ କରିହୁଏ । ଏହା ସାଙ୍ଗକୁ ଏଠାରୁ ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର, ଲୌହ, ତାମ୍ର ନିର୍ମିତ ଅନେକ ଧ୍ୱଂସାବଶେଷ ମିଳିଛି ।

ସୀତାବିଞ୍ଜି ପାହାଡ଼ର ଅନତି ଦୂରରେ ଏକ ବିରାଟ ପ୍ରସ୍ତର ଖଣ୍ଡ ରହିଛି ଯାହାକୁ ଦେବୀ ସୀତାଙ୍କ '**ଭଣ୍ଡାର ଘର**' ବୋଲି କୁହାଯାଉଛି । କୁହାଯାଉଛି, ବାଲ୍ମିକ ଆଶ୍ରମର ସମସ୍ତ ଧନରତ୍ନ

ଏହି ଭଣ୍ଡାର ଘରେ ଗଚ୍ଛିତ ରହିଛି । ଏହି ଭଣ୍ଡାରଘରଟି ଏତେ ବିଶାଳ ଯେ, ଆଖି ପାଏନା । ଭଣ୍ଡାରଘରର ଦୁଇ ପାର୍ଶ୍ୱରେ ଦୁଇଟି ପ୍ରସ୍ତର ଖଣ୍ଡ ଦୁଇଟି କବାଟ ସଦୃଶ ଏହାକୁ ଢାଙ୍କି ରହିଛି । ଦେବୀ ସୀତାଙ୍କ ଏହି ଭଣ୍ଡାର ଘରର ଏହି ଦୁଇଟି ପ୍ରସ୍ତର କବାଟକୁ ଯାଉଁଳି କବାଟ ବୋଲି କୁହାଯାଏ । ଏହି କବାଟ ଦୁଇଟିର ଉଚ୍ଚତା ୬୫ ଫୁଟ ହେବ ।

ଭଣ୍ଡାର ଘର ନିକଟରେ ଥିବା ଭଗ୍ନସ୍ତୂପକୁ ବାଲ୍ମିକ ଆଶ୍ରମର ରନ୍ଧାଘର ବୋଲି କୁହାଯାଏ । ଏହି **'ରାନ୍ଧୁଣୀଖନ୍ଦା'**ରୁ ପ୍ରାଚୀନ ଯୁଗର ବହୁ ମୃତ୍ତିକା ପାତ୍ର, ଭୋଜନ ପାତ୍ର ଓ ବାସନକୁସନ ମିଳିଛି ।

ସୀତାବିଞ୍ଜି ନିକଟରେ **'ଋଷି ଗୁମ୍ଫା'** ନାମରେ ଏକ ବୃହତ୍ ପଥର ସ୍ତୂପ ରହିଛି । ଚାରି ପାଞ୍ଚ ଖଣ୍ଡ ବିଶାଳ ଗୋଲାକୃତି ପଥରର ସମାହାରରେ ଏହି ଗୁମ୍ଫା ସୃଷ୍ଟି ହୋଇଛି । ଏହି ଗୁମ୍ଫାରେ ବିଶ୍ରାମ ନେଲେ ସମସ୍ତ ପ୍ରକାର ରିଷ୍ଟ ଖଣ୍ଡନ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏହାର ନିକଟରେ ଇଟାରେ ନିର୍ମିତ ପ୍ରାଚୀନ ଗଡର ଏକ ଭଗ୍ନସ୍ତୂପ ରହିଛି । ଏହି ଇଟାର ବିଶେଷତ୍ୱ ହେଉଛି, ମାଟି ସହିତ ଧାନ ଚଷୁର ମିଶ୍ରଣରେ ପ୍ରସ୍ତୁତ ହେବା ପରେ ପୋଡ଼ାଯାଇଛି । ଏହି ସ୍ତୂପ ନିକଟରେ ଅନେକ ଶିଳାଲିପି ଏଣେତେଣେ ପଡ଼ିରହିଛି । ତେବେ ସରକାରଙ୍କ ପକ୍ଷରୁ ତାହାକୁ ଏକ ତାରବାଡ଼ ଘେରେଇ ସୁରକ୍ଷିତ ରଖାଯାଇଛି । ମାତ୍ର, ଏହି ଲିପି ସଂପର୍କରେ ଅଧିକ ଜାଣିବା ପାଇଁ ସରକାରଙ୍କ ପକ୍ଷରୁ ସେମିତି କିଛି ପଦକ୍ଷପ ଗ୍ରହଣ କରାଯାଇପାରିନି ।

ସୀତାବିଞ୍ଜିର ଅଳ୍ପ ଦୂରରେ ଅବସ୍ଥିତ ଏକ ସ୍ଥାନକୁ ଘୋଡ଼ାବନ୍ଧା କୁହାଯାଏ । ଏଠାରେ ଲବ, କୁଶ ପ୍ରଭୁ ଶ୍ରୀରାମଙ୍କ ଯଜ୍ଞାଶ୍ୱ ବାନ୍ଧି ରଖିଥିବାର ଲୋକବିଶ୍ୱାସ ରହିଛି । ଲବ, କୁଶ ଯେଉଁଠାରେ ଘୋଡାର ମୁହଁରୁ ତୁଣ୍ଡି ଖୋଲି ଦେଇଥିଲେ ସେହି ସ୍ଥାନର ନାମ **'ତୁଣ୍ଡିବେଡ଼ା'** ବା 'ଚଣ୍ଡୀବେଡ଼ା' ହୋଇଛି । ଏହି ତୁଣ୍ଡିବେଡ଼ା ଗ୍ରାମରେ ସୀତାନଦୀ କୂଳରେ 'ଦିଗଧରା' ନାମରେ ଏକ ସ୍ଥାନ ରହିଛି । ପ୍ରବାଦ ଅଛି, ଶ୍ରୀରାମଙ୍କ ଯଜ୍ଞ ଅଶ୍ୱକୁ ମୁକୁଳେଇବା ପାଇଁ ଶତ୍ରୁଘ୍ନ ଓ ଲବ, କୁଶଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା ଏବଂ ଶତ୍ରୁଘ୍ନ ପରାସ୍ତ ହୋଇଥିଲେ । ସୀତାବିଞ୍ଜି ବାଲ୍ମୀକି ଆଶ୍ରମ ନିକଟରେ ଏକ ପାହାଡର ଶୀର୍ଷରେ ଏକ ବର୍ତ୍ତୁଳାକାର ପଥର ଆଶ୍ଚର୍ଯ୍ୟଜନକ ଭାବେ ସଂଯୋଗ ହୋଇ ରହିଛି । ଏହି ବର୍ତ୍ତୁଳାକାର ପଥରକୁ **'ଭରତ ବାଟୁଳି'** କୁହାଯାଏ । ହନୁମାନ ଅଯୋଧ୍ୟାର ଆକାଶରେ ଉଡ଼ିଉଡ଼ି ଯାଉଥିବାବେଳେ ଏହି ପଥର ଗୁଳି*(pellet)*କୁ ଭରତ ତାଙ୍କ ବାଟୁଳିଖଡ଼ାରୁ ନିକ୍ଷେପ କରିଥିଲେ ବୋଲି ଲୋକ ମୁହଁରୁ ଶୁଣିବାକୁ ମିଳେ ।

[ତଥ୍ୟ ସହାୟତା

୧· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ (ପ୍ରଥମ ଭାଗ), ଲେଖକ: ବିପିନ ବିହାରୀ ଦାସ, ନୀଳାଚଳ ପ୍ରିଣ୍ଟିଂ ୱାର୍କସ, ବଡ଼ବିଲ (୧୯୮୦), ପୃଷ୍ଠା: ୮୧-୯୮

୭· ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ, କେନ୍ଦୁଝର (୨୦୧୨), ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୫୮-୭୦]

## ବୈତରଣୀ ନଦୀ ଉପକୂଳ ସଭ୍ୟତା ଓ ଅସନପାଟ ଶିଳାଭିଲେଖ

*(the Asanpat inscription and the Baitaranee vally civilization)*



**ଅସନପାଟରୁ ଉଦ୍ଧୃତ ପ୍ରସ୍ତର ଯୁଗର ଉପକରଣ**

ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଗୁରୁତ୍ୱପୂର୍ଣ୍ଣ ଅବଶେଷ *(remains)* କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ବିଶେଷକରି କେନ୍ଦୁଝର ଜିଲ୍ଲାର 'ବୈତରଣୀ ନଦୀ ଉପତ୍ୟକା' ଅଞ୍ଚଳରୁ ପ୍ରସ୍ତର ଯୁଗର ବହୁ ଅଂଶବିଶେଷ ମିଳିଛି । କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡର ଚଂପୁଆ, ରାମଲା, ସରେଇ, ଅସନପାଟ, ଜଗନ୍ନାଥପୁର, ପାଟଣା, ସୀତାବିଞ୍ଜି ଆଦି ଅଞ୍ଚଳରୁ ପ୍ରସ୍ତର ଯୁଗର ବହୁ ଅଂଶବିଶେଷ ମିଳିଛି । ଏଥିମଧ୍ୟରୁ ଅସନପାଟ ଅଞ୍ଚଳରୁ ନୂତନ ପ୍ରସ୍ତର ଯୁଗର 'ନଗର ସଭ୍ୟତା'ର ବହୁ ଅଂଶବିଶେଷ ମିଳିବା ଘଟଣା ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ସର୍ବାଧିକ ଗୁରୁତ୍ୱ ବହନ କରିଥାଏ ।

ବୈତରଣୀ ନଦୀ ଉପତ୍ୟକାରେ ଅବସ୍ଥିତ ଅସନପାଟ ଗ୍ରାମରୁ ପଥର ନିର୍ମିତ ସ୍କାର୍ପର (ରାଂପିବା ଉପକରଣ), ମାଟି ଖୋଳା ଉପକରଣ, ମୁନିଆ ଅସ୍ତ୍ର, ବଟା ଶିଳ, ପଥର ଚକ, ପଥର ନିର୍ମିତ ଶାବଳ ଭଳି ପୁରାତନ ଓ ନୂତନ ପ୍ରସ୍ତର ଯୁଗରେ ଆଦିମ ଅଧିବାସୀମାନେ ବ୍ୟବହାର କରୁଥିବା କୃଷି ଓ ଶିକାର ଉପକରଣ ମିଳିଛି । ଅସନପାଟରୁ ମିଳିଥିବା ଏହିସବୁ ପ୍ରସ୍ତର ଯୁଗର ଅବଶେଷ *(remains)* ଏ ଅଞ୍ଚଳରେ ପ୍ରସ୍ତର ଯୁଗର ମାନବ ସଭ୍ୟତା ସଂପର୍କରେ ବହୁ ତଥ୍ୟ ପ୍ରଦାନ କରିଥାଏ । ଅସନପାଟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଖଗେଶ୍ୱର ନାଏକଙ୍କ ନିକଟରେ



କେନ୍ଦ୍ରୀୟ ରାଜ୍ୟ ସଂଗ୍ରହାଳୟରେ ଥିବା ଅସନପାଟର
ନଟରାଜ ମୂର୍ତ୍ତି ଓ ଶିଳାଲିପି

ପ୍ରାଚୀନ ଓ ନୂତନ ପ୍ରସ୍ତର ଯୁଗର ପଥର ନିର୍ମିତ କିଛି ଅସ୍ତ୍ରଶସ୍ତ୍ର ଓ କୃଷି ଉପକରଣଗୁଡିକ ରହିଛି ।

କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଝୁଂପୁରା ବ୍ଲକ୍‌ର ଅସନପାଟ ଗ୍ରାମଟି ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ଏହି ଗ୍ରାମରେ 'ବାଥୁଡି' ସଂପ୍ରଦାୟର ଆଦିମ ଅଧିବାସୀମାନେ ବସବାସ କରିଆସୁଛନ୍ତି । ଏହା କେବଳ କେନ୍ଦୁଝର ଜିଲ୍ଲା କାହିଁକି ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ସ୍ଥାନର ମାନ୍ୟତା ଲାଭ କରିଛି । ଏଠାରୁ ମିଳିଥିବା ଉଭୟ ପୁରାତନ ଓ ନୂତନ ପ୍ରସ୍ତର ଯୁଗ *(old stone age & new stone age)*ର ବହୁ ଅସ୍ତ୍ରଶସ୍ତ୍ର, କୃଷି ଉପକରଣ ଓ ଅନ୍ୟାନ୍ୟ ବ୍ୟବହାର ସାମଗ୍ରୀକୁ ଲକ୍ଷ୍ୟ କଲେ ଏହି ସ୍ଥାନରେ ପ୍ରସ୍ତର ଯୁଗ *(stone age)* ର ମଣିଷଙ୍କ ସଂପର୍କରେ ବହୁ କଥା ଜାଣିବାକୁ ମିଳେ । ଏହା ବ୍ୟତୀତ ଏଠାରୁ ମିଳିଥିବା ଅଷ୍ଟଭୂଜା ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଲେଖ ମଧ୍ୟ ଏଠାକାର ପ୍ରାଚୀନତା ସଂପର୍କରେ ବହୁ ପ୍ରମାଣ ଉପସ୍ଥାପନ କରିଥାଏ ।

ଅସନପାଟରୁ ଉଦ୍ଧାର କରାଯାଇଥିବା ଅଷ୍ଟଭୁଜା ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଲେଖ ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ରହିଛି । ଏହାବ୍ୟତୀତ ପୃଥିବୀର ସର୍ବପ୍ରାଚୀନ ଏକ ବିଶାଳ ପ୍ରସ୍ତରଖଣ୍ଡ ଅସନପାଟରେ ରହିଛି । ୧୦୦ ବର୍ଗକିଲୋମିଟର କ୍ଷେତ୍ରଫଳ ବିଶିଷ୍ଟ ଏହି ପ୍ରସ୍ତରଖଣ୍ଡଟି ପୃଥିବୀର ସବୁଠୁ ପ୍ରାଚୀନତମ ଶିଳା ବୋଲି ବିଚାର କରାଯାଉଛି । ଏହି ଶିଳା ୩୮,୦୦୦ ନିୟୁତ ବର୍ଷର ପୁରୁଣା ବୋଲି କୁହାଯାଉଛି । *"Kendujhar has the distinction of containing one of the oldest rocks of the world covering an area of 100 sq. km. at Asanpat. The rock is 38,000 million years old. It must have been there before peninsular India broke away from Antarctica and moved north."*

***(Orissa District Gazetteers, Kendujhar (1986, P-1), Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)***

ପୁରାତନ ପ୍ରସ୍ତର ଯୁଗର ବହୁ ପୂର୍ବରୁ ଏହି ଅସନପାଟ ଅଞ୍ଚଳଟି ପ୍ରାଚୀନ ଜାହୋର ରାଜ୍ୟର ଏକ ଐତିହାସିକ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର ଥିଲା । କୁଶାଣମାନେ ତତ୍କାଳୀନ କେନ୍ଦୁଝରକୁ ତିନୋଟି ଅଣ୍ଡୁ ଅଂଶରେ ବିଭକ୍ତ କରିଥିଲେ । ତନ୍ମଧ୍ୟରୁ ଚଂପୁଆ ଅଣ୍ଡୁ ଅଞ୍ଚଳ ବା ଅଣ୍ଡୁପାଟ ପରବର୍ତୀ କାଳରେ ଲୋକ ଭାଷାରେ ପରିବର୍ତ୍ତିତ ହୋଇ ଅସନପାଟ ନାମରେ ନାମିତ ହୋଇଛି । ଅସନପାଟ ଶିଳାଲେଖ ଓ ନଟରାଜ ମୂର୍ତ୍ତି ଐତିହାସିକ ଦୃଷ୍ଟିରୁ ବହୁ ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି । ଏହି ନଟରାଜ ମୂର୍ତ୍ତିରେ ଶିବଙ୍କର ନୃତ୍ୟରତ ଦୃଶ୍ୟ ଏବଂ ତଳେ ଶିବଙ୍କୁ ପ୍ରାର୍ଥନା କରୁଥିବା ଜଣେ ରାଜାଙ୍କ ବିଗ୍ରହ ଖୋଦିତ ହୋଇଥିବା ଜଣାଯାଏ । ଏହା ତଳକୁ ୧୩ ଧାଡିର ପ୍ରାଚୀନ ଶିଳାଲିପି ମଧ୍ୟ ଖୋଦିତ ହୋଇଛି । ଖ୍ରୀ:ଅ ପଞ୍ଚମ ଶତାବ୍ଦୀ ବେଳକୁ ଗୁପ୍ତ ଯୁଗର ନରପତିଙ୍କ ଦ୍ୱାରା ଏହି ଶିଳାଲିପି ଖୋଦିତ ହୋଇଥିବାର ଜଣାଯାଏ ।

*"The Asanpat inscriription paleographically belongs to the Gupta period and may be ascribed to about 5th century A.D. The donor Maharaja Satrubhanja, son of Maharaja Manabhanja, was of Naga lineage born of Mahadevi Damayanti. Maharaja Satrubhanja was the ruler of the territory known as Vindhyatavi..."*

***(Orissa District Gazetteers, Kendujhar (1986, P-41, P-42, Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)***

ଏଠାରେ ବିନ୍ଧ୍ୟାଟବୀ ନାମରେ ଏକ ବିଶାଳ ରାଜ୍ୟ ଥିବା କଥା ଏହି ଲିପିରୁ ଜଣାଯାଏ । ବିନ୍ଧ୍ୟ ପାର୍ବତ୍ୟାଞ୍ଚଳର ପୂର୍ବ ଭାଗରେ ଯେଉଁ ଅଞ୍ଚଳଟି ନାଗ ବଂଶୀୟ ରାଜାମାନଙ୍କର ଅଧିକାରଭୁକ୍ତ ହୋଇଥିଲା ତାହା ବିନ୍ଧ୍ୟାଟବୀ (ବିନ୍ଧ୍ୟ ଅଟବୀ) ନାମ ବହନ କରିଥିବା କଥା ଐତିହାସିକ ସତ୍ୟ ନାରାୟଣ ରାଜଗୁରୁ ମତବ୍ୟକ୍ତ କରନ୍ତି । ବିନ୍ଧ୍ୟାଟବୀରେ ଭଞ୍ଜ ଉପାଧିଧାରୀ ନାଗବଂଶୀୟ ରାଜାମାନେ ଚତୁର୍ଥ-ପଞ୍ଚମ ଖ୍ରୀ:ଅରେ ରାଜତ୍ୱ କରୁଥିଲେ । ଅସନପାଟ ଶିଳାଲିପିରୁ ପ୍ରାଚୀନ ବିନ୍ଧ୍ୟାଟବୀ ବା ଆଧୁନିକ କେନ୍ଦୁଝରର ଶାସନ ସଂପର୍କରେ ବହୁ ସୂଚନା ମିଳିଥାଏ । ଏହି ଶିଳାଲିପି ବ୍ୟତୀତ ବାମନଘାଟି ଶିଳାଲିପି, ଖଣ୍ଡଦେଉଳି ଶିଳାଲିପି, ସୀତାବିଞ୍ଜି ଶିଳାଲିପି ମଧ୍ୟ କେନ୍ଦୁଝରର ପ୍ରାଚୀନତା ସଂପର୍କରେ ଅନେକ ସୂଚନା ପ୍ରଦାନ କରିଥାଏ । ଏହିସବୁ ଶିଳାଲିପିରୁ ଜଣାଯାଏ, କେନ୍ଦୁଝର ଓ ମୟୂରଭଞ୍ଜ ଉଭୟ ଗଡ଼ରାଜ୍ୟ ପଞ୍ଚମ ଓ ଷଷ୍ଠ ଶତାବ୍ଦୀ ବେଳକୁ ବିନ୍ଧ୍ୟାଟବୀର ଅନ୍ତର୍ଭୁକ୍ତ ଥିଲା ।



ସୀତାବିଞ୍ଜିର ପୁରାତନ ରାବଣଛାୟା ପେଣ୍ଟିଂ

□

## ତୃତୀୟ ପରିଚ୍ଛେଦ

# କେନ୍ଦୁଝର-ମୟୂରଭଞ୍ଜ ମାଟିରେ ବୈତରଣୀର ଯାତ୍ରା

## କେନ୍ଦୁଝରର 'ଜୀବନ ରେଖା': ବୈତରଣୀ

*(the Baitarance : the 'life line of Kendujhar)*

ପୂଣ୍ୟତୋୟା ବୈତରଣୀ ହେଉଛି କେନ୍ଦୁଝର ଜିଲ୍ଲାର 'ଜୀବନ ରେଖା' *(life line)* । ଏହି ନଦୀଟି ପବିତ୍ର ଗୋନାସିକା ପୀଠରୁ ଉତ୍ପତ୍ତିଲାଭ କରି ସମଗ୍ର କେନ୍ଦୁଝର ଜିଲ୍ଲା ଦେଇ ପ୍ରବାହିତ ହେବାପରେ ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ଶେଷରେ ବଂଗୋପସାଗର (କଳିଙ୍ଗ ସାଗର)ରେ ପଡ଼ିଛି ।

ବୈତରଣୀ ନଦୀ ଗୋନାସିକା ପର୍ବତମାଳାରୁ ଉତ୍ପତ୍ତିଲାଭ କରିଛି । ମୋଟ ୧୪,୨୧୮ ବର୍ଗ କିଲୋମିଟର ବିଶିଷ୍ଟ ବୈତରଣୀ ଅବବାହିକା ମଧ୍ୟରୁ କେନ୍ଦୁଝର ଜିଲ୍ଲାରେ ଏହାର ପରିମାଣ ୬,୮୨୪ ବର୍ଗକିଲୋମିଟର । କେନ୍ଦୁଝର ଜିଲ୍ଲାଟି ମୁଖ୍ୟତଃ ବୈତରଣୀ ଓ ବ୍ରାହ୍ମଣୀ ନଦୀଦ୍ୱୟର ଅବବାହିକା ଅଞ୍ଚଳରେ ଅବସ୍ଥିତ । ଜିଲ୍ଲାର ଶତକଡା ୮୫ ଭାଗ ଅଞ୍ଚଳରେ ବୈତରଣୀ ନଦୀର ଅବବାହିକା ରହିଥିବାବେଳେ ପ୍ରାୟ ୧୫ ଭାଗ ଅଞ୍ଚଳରେ ବ୍ରାହ୍ମଣୀ ନଦୀର ଅବବାହିକା ଅଞ୍ଚଳ ରହିଛି ।



କେନ୍ଦୁଝର ଜିଲ୍ଲାରେ ବୈତରଣୀର ପଥୁରିଆ ଶଯ୍ୟା

ବୈତରଣୀ ଉତ୍ପତ୍ତି ସ୍ଥଳ ଗୋନାସିକାରୁ ବାହାରି ପ୍ରଥମେ ଦକ୍ଷିଣ ଦିଗକୁ, ପରେ ଉତ୍ତର ଏବଂ ପରେ ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହେବା ପରେ ଝାଡ଼ଖଣ୍ଡ ରାଜ୍ୟର ସୀମା ଦେଇ କିଛି ବାଟ ପଶ୍ଚିମକୁ ପ୍ରବାହିତ

ହୋଇଛି । ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲା, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତ ପଥ ଦେଇ ବୈତରଣୀ କ୍ରମେ ଦକ୍ଷିଣାଭିମୁଖୀ ହୋଇଛି । ଏଠାରେ ଝାଡ଼ଖଣ୍ଡ ପଟୁ ଆସିଥିବା ବୈତରଣୀର ଅନ୍ୟତମ ଉପନଦୀ **କଙ୍କିରା** ମିଶିଛି । ଏହାପରେ ବୈତରଣୀ ଦକ୍ଷିଣ-ପୂର୍ବ ଦିଗକୁ ଯୋଡ଼ା ବ୍ଲକ୍‌ର ବାସୁଦେବପୁର ଆଡକୁ ଗତି କରି ଉଭୟ କେନ୍ଦୁଝର-ମୟୂରଭଞ୍ଜ ସୀମା ଅଞ୍ଚଳ ଦେଇ ଚଂପୁଆ ବ୍ଲକ୍‌ର କେଶରୀକୁଣ୍ଡ, ରୂପାକୁଣ୍ଡ, ନନ୍ଦପୁର, ଜ୍ୟୋତିପୁରଗଡ଼, ପାଟଣା ବ୍ଲକ୍‌ର ତୁରୁମୁଙ୍ଗା ଆଡକୁ ପ୍ରବାହିତ ହୋଇଛି ।

ଚଂପୁଆ ବ୍ଲକ୍‌ର ପଦ୍ମପୁର ପଞ୍ଚାୟତର ଦୋ-ମୁହାଁଣୀ ଘାଟ ନିକଟରେ ବୈତରଣୀ ସହିତ ଏହାର ପ୍ରମୁଖ ଉପନଦୀ **ଖଇରିଭଣ୍ଡନ** ମିଶିଛି । କେନ୍ଦୁଝର ଜିଲ୍ଲାର ତୁରୁମୁଙ୍ଗା ଏବଂ ମୟୂରଭଞ୍ଜ ଜିଲ୍ଲାର ଚଡେଇଭୋଳ ସନ୍ନିକଟ ମହାଦେବଦେଉଳି ଗ୍ରାମରେ **ଦେଓ ନଦୀ** ବୈତରଣୀ ସହ ମିଳିତ ହୋଇଛି । ଏହାକୁ ତିନିଧାରିଆ କୁହାଯାଏ । ଏହାପରେ ବୈତରଣୀ କେନ୍ଦୁଝର-ମୟୂରଭଞ୍ଜ ସୀମା ରାଜନଗର, ଉଦୟପୁର, ସ୍ୱାମ୍‌ପାଟଣା, ଭୀମକୁଣ୍ଡ ଦେଇ ପ୍ରବାହିତ ହୋଇଛି । ଏଠାରେ ବୈତରଣୀର ଅନ୍ୟତମ ଉପନଦୀ **ସିମ୍** ବୈତରଣୀ ସହ ମିଶିଛି । ଏଠାରୁ ବୈତରଣୀ କିଛିବାଟ କେନ୍ଦୁଝର-ମୟୂରଭଞ୍ଜ ସୀମା ଦେଇ ପ୍ରବାହିତ ହେଲାପରେ ପୁନର୍ବାର ଦକ୍ଷିଣ ଦିଗରେ କେନ୍ଦୁଝର ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ଏହା ପରଠାରୁ ବୈତରଣୀ ଆନନ୍ଦପୁର ଉପଖଣ୍ଡ ଦେଇ ପ୍ରବାହିତ ହେଲାପରେ ଦକ୍ଷିଣ-ପୂର୍ବାଭିମୁଖୀ ହୋଇ ଯାଜପୁର ଓ ଭଦ୍ରକ ଜିଲ୍ଲାକୁ ସ୍ପର୍ଶ କରିଛି ।

ଭଦ୍ରକ ଜିଲ୍ଲାର ଆରଡ଼ି ନିକଟସ୍ଥ ତିନିତର ଘାଟରେ **ସାଳନ୍ଦୀ** ବୈତରଣୀ ସହ ମିଶିଛି । ଚାନ୍ଦବାଲିର କିଛି ବାଟ ଆଗକୁ କେନ୍ଦ୍ରାପଡା ଜିଲ୍ଲାର **ନଳିତାପାଟିଆ**ଠାରେ ବୈତରଣୀ ସହ ବ୍ରାହ୍ମଣୀ ସହ ମିଶି ଶେଷରେ ଧାମରାରେ ବଙ୍ଗୋପସାଗରରେ ମିଶିଛନ୍ତି । ଧାମରାର ଅଳ୍ପ କିଛିବାଟ ପୂର୍ବରୁ **ମନ୍ତେଇ** ନଦୀ ବୈତରଣୀରେ ପଡିଛି ।

ବୈତରଣୀ ନଦୀର ମୋଟ ଦୈର୍ଘ୍ୟ ୩୬୫ କିଲୋମିଟର ଥିଲାବେଳେ କେନ୍ଦୁଝର ଜିଲ୍ଲା ମଧ୍ୟରେ ଏହାର ଦୈର୍ଘ୍ୟ ୨୨୦ କିଲୋମିଟର । ଏହି ନଦୀ କୂଳରେ କେନ୍ଦୁଝର ଜିଲ୍ଲାର ପ୍ରସିଦ୍ଧ ପର୍ଯ୍ୟଟନ ସ୍ଥଳ ଗୋନାସିକାଠାରୁ ଆରମ୍ଭ କରି ବାଂଶପାଳ, ନୟାଗଡ଼, ତିନିଧାରିଆ, ଚମକପୁର, ଅସାଡୋଲା, ଛେଳିଡେଗା, ମିରିଗସିଙ୍ଗା, ବାସୁଦେବପୁର, ଉଚବାଲି, ଝାଡ଼ଖଣ୍ଡ ଏବଂ ଓଡ଼ିଶା ସୀମାନ୍ତବର୍ତ୍ତୀ ରାମତୀର୍ଥ, ଜୟନ୍ତୀଗଡ, ଚଂପୁଆ, କେଶରୀକୁଣ୍ଡ, ଦୋ-ମୁହାଁଣି ଘାଟ (ବୈତରଣୀ ଓ ଖଇରିଭଣ୍ଡନ ନଦୀର ମିଳନ ସ୍ଥଳ), ରୂପାକୁଣ୍ଡ, ବିଷ୍ଣୁପୀଠ ନନ୍ଦପୁର, କେନ୍ଦୁଝରଗଡ଼ର ପ୍ରଥମ ରାଜଧାନୀ ଜ୍ୟୋତିପୁରଗଡ଼, ତୁରୁମୁଙ୍ଗା, ରାଜନଗର, ଉଦୟପୁର, ସ୍ୱାମ୍‌ପାଟଣା, ଭୀମକୁଣ୍ଡ, ଗୋହିରା, ଆନନ୍ଦପୁର, ଘସିପୁରା, ଝାଡ଼େଶ୍ୱର ଶୈବପୀଠ, ଫକୀରପୁର, ଟୁକୁଣା, ମୁଗୁପୁର, ବଞ୍ଚୋ, ଆମ୍ବୋ, ଶମଣା, ଆଗିରିଆ, ଜମ୍ବିରା, ବାଲିବାରୁଆ, ପ୍ରାଚୀନ ଶୈବକ୍ଷେତ୍ର ହାବଳେଶ୍ୱର ଆଦି ସ୍ଥାନଗୁଡିକ ଅବସ୍ଥିତ ।

କେନ୍ଦୁଝର ଜିଲ୍ଲାର କୃଷିକାର୍ଯ୍ୟ ବିଶେଷକରି ବୈତରଣୀ ଓ ଏହାର ଉପନଦୀମାନଙ୍କର ଜଳ ଉପରେ ନିର୍ଭର କରିଥାଏ । ବୈତରଣୀ ଅବବାହିକା ଅଞ୍ଚଳଟି କୃଷି ପାଇଁ ଅନୁକୂଳ ହୋଇଥିବାରୁ କେନ୍ଦୁଝର ଜିଲ୍ଲାରେ ଧାନ, ମୁଗ, ବିରି, ଚିନାବାଦାମ, ସୂର୍ଯ୍ୟମୁଖୀ, ଗହମ, ମାଣ୍ଡିଆ ସମେତ ବିବିଧ ପନିପରିବା ଚାଷ କରାଯାଇଥାଏ । ଉତ୍କୃଷ୍ଟ ପନିପରିବା ଫସଲ ପାଇଁ ରାଜ୍ୟରେ କେନ୍ଦୁଝର ଜିଲ୍ଲାର ଏକ ସ୍ୱତନ୍ତ୍ର ପରିଚୟ ରହିଛି । ଜଳସେଚନ ନିମନ୍ତେ ବୈତରଣୀ ସମେତ ଏହାର ଉପନଦୀମାନଙ୍କରେ ଅନେକ କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଜଳସେଚନ ପ୍ରକଳ୍ପ କାର୍ଯ୍ୟ କରୁଛି । ତେବେ ବର୍ତ୍ତମାନ ଖଣିଖାଦାନ ଓ ଶିଳ୍ପାୟନର ପ୍ରଭାବରେ କୃଷିକାର୍ଯ୍ୟ ଅନେକ ମାତ୍ରାରେ ବ୍ୟାହତ ହୋଇଛି । ଏହାବ୍ୟତୀତ ବୈତରଣୀ ନଦୀ ଓ ଏହାର ଉପନଦୀମାନଙ୍କର ମଧୁର ମାଛ ଉପରେ କେନ୍ଦୁଝରବାସୀ ନିର୍ଭର କରିଥା'ନ୍ତି । କେନ୍ଦୁଝର ଜିଲ୍ଲାରେ ପ୍ରତିଷ୍ଠିତ ବିଭିନ୍ନ ଶିଳ୍ପାନୁଷ୍ଠାନ ମଧ୍ୟ ବୈତରଣୀରୁ ପାଣି ନେଇ ସେମାନଙ୍କ ଶିଳ୍ପକାରଖାନା ଚଳାଇଛନ୍ତି ।

## ବୈତରଣୀ ଓ ମା' ତାରିଣୀ: କେନ୍ଦୁଝରର ପରିଚୟ

*(The Baitaranee and Goddess Tarinee: two identities of Kendujhar)*

ବୈତରଣୀ ଓ ମା' ତାରିଣୀ; କେନ୍ଦୁଝର ଜିଲ୍ଲାର ଦୁଇଟି ପରିଚୟ । ବୈତରଣୀ ଓ ମା' ତାରିଣୀଙ୍କ ବିନା କେନ୍ଦୁଝର ସଂପର୍କରେ ଆଲୋଚନା କରିବା ନିରର୍ଥକ ମନେହେବ ।

ବୈତରଣୀ ନଦୀଟି କେନ୍ଦୁଝର ଜିଲ୍ଲାର ଗୋନାସିକାରୁ ବାହାରି ସମଗ୍ର ଜିଲ୍ଲାରେ ପ୍ରବାହିତ ହୋଇ ଜିଲ୍ଲାବାସୀଙ୍କୁ ଶୀତଳ ଜଳ ବାଣ୍ଟି ଚାଲିଛି । ଚୀନ୍‌ର ୟାଙ୍ଗ୍‌ସିକିୟାଂ, ମିଶରର ନୀଳନଦୀ, ମେସୋପୋଟାମିଆଁର ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍, ଭାରତର ସିନ୍ଧୁ ଓ ଗଙ୍ଗା ନଦୀ ସଭ୍ୟତା ଭଳି ଓଡ଼ିଶାର 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ଅତି ପ୍ରାଚୀନ ବୋଲି କୁହାଯାଏ । ବୈତରଣୀ ନଦୀ କୂଳରେ କେନ୍ଦୁଝର ଜିଲ୍ଲାର ସିଂହଭାଗ ଅଞ୍ଚଳ ରହିଥିବାରୁ ଏହା କେନ୍ଦୁଝର ଜିଲ୍ଲାବାସୀଙ୍କ ପାଇଁ ଏକ ପରମ ସୌଭାଗ୍ୟ ବୋଲି ବିଚାର କରାଯାଇଥାଏ ।

**ନଇକୂଳିଆ ମଣିଷମାନଙ୍କୁ ସୁଖୀ ବୋଲି ବିଚାର କରାଯାଏ ।** ବୈତରଣୀ ଭଳି ନଇଟିଏ ପାଇ କେନ୍ଦୁଝରବାସୀ ସେ ସୁଖର ଅଧିକାରୀ ହୋଇପାରିଛନ୍ତି । କେନ୍ଦୁଝର ଜିଲ୍ଲାରେ କାର୍ଯ୍ୟରତ କଳକାରଖାନାକୁ ପାଣି ଯୋଗାଇବା ସହ କୃଷି, ଜଳସେଚନ, ଅନ୍ୟାନ୍ୟ ଘରୋଇ ବ୍ୟବହାର ସମେତ ସାଧାରଣ ଲୋକଙ୍କ ପାନୀୟ ଜଳର ଚାହିଦା ମେଣ୍ଟାଇଥାଏ ବୈତରଣୀ । ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ପର୍ଯ୍ୟଟନସ୍ଥଳଗୁଡିକରେ ବର୍ଷର ବିଭିନ୍ନ ସମୟରେ ପର୍ଯ୍ୟଟକଙ୍କ ଭିଡ଼ ଜମିଥାଏ ।

ସେହିଭଳି କେନ୍ଦୁଝର ଜିଲ୍ଲାର ଆଉ ଏକ ପରିଚୟ ହେଉଛନ୍ତି, ଘଟଗାଁର ମା' ତାରିଣୀ । ଯେଉଁ ଦେବୀଙ୍କ ସ୍ମରଣରେ କେନ୍ଦୁଝରବାସୀଙ୍କ ପ୍ରତିଟି ସକାଳ ଆରମ୍ଭ ହୋଇଥାଏ, ସେ ହେଉଛନ୍ତି ଆରାଧ୍ୟା

ଦେବୀ ଘଟଗାଁର ମା' ତାରିଣୀ । କେନ୍ଦୁଝରବାସୀଙ୍କ ଇଷ୍ଟ ଦେବୀ ମା' ତାରିଣୀଙ୍କ ପ୍ରସିଦ୍ଧି ରାଜ୍ୟ କାହିଁକି ସମଗ୍ର ଦେଶରେ ବିସ୍ତାରଲାଭ କରିପାରିଛି । ଓଡ଼ିଶାରେ ପୁରୀ ଶ୍ରୀଜଗନ୍ନାଥ ପୀଠକୁ ଛାଡ଼ିଦେଲେ ବାକି ଯେଉଁ ସ୍ଥାନକୁ ସର୍ବାଧିକ ଭକ୍ତ ଓ ପର୍ଯ୍ୟଟକ ଆସିଥାନ୍ତି, ତାହା ହେଉଛି ଘଟଗାଁର ତାରିଣୀ ପୀଠ । ଏଠାକୁ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଭକ୍ତଙ୍କ ଆଗମନ ଘଟିଥାଏ । କେନ୍ଦୁଝର ଜିଲ୍ଲାକୁ ଆଗନ୍ତୁକଟିଏ ଆସିଲେ କିମ୍ବା ନୂଆକରି ଚାକିରିରେ ଯୋଗ ଦେଉଥିବା ଅଫିସରଟିଏ ପ୍ରଥମେ ତାରିଣୀଙ୍କଠାରୁ ଆଶୀର୍ବାଦ ଭିକ୍ଷା କରି ନିଜର କାମ ଆରମ୍ଭ କରିଥାନ୍ତି ।

ଘଟଗାଁ ପୀଠରେ ତାରିଣୀଙ୍କ ଆବିର୍ଭାବ ନେଇ ଏକ ଐତିହାସିକ କିମ୍ବଦନ୍ତୀ ରହିଛି । ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କର ଦ୍ୱିତୀୟ ବାର କାଞ୍ଚି ଅଭିଯାନ ସମୟରେ କେନ୍ଦୁଝର ରାଜ୍ୟର ଯୁବରାଜ ଗୋବିନ୍ଦ ଭଞ୍ଜ (କେନ୍ଦୁଝରରେ ଶାସନକାଳ ଖ୍ରୀ.ଅ.୧୪୮୦-ଖ୍ରୀ.ଅ.୧୫୩୪) ସେନାପତି ଥିଲେ । ସେ କାଞ୍ଚିର ଇଷ୍ଟଦେବୀ ତାରିଣୀଙ୍କର ଶରଣ ପଶି କାଞ୍ଚି ଯୁଦ୍ଧରେ ଗଜପତି ମହାରାଜାଙ୍କୁ ବିଜୟୀ କରାଇଥିଲେ ।

ଗୋବିନ୍ଦ ଭଞ୍ଜଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ମା' ତାରିଣୀ କାଞ୍ଚି ରାଜ୍ୟରୁ ତାଙ୍କ ସହିତ କେନ୍ଦୁଝର ଆସିଥିଲେ । ଗୋବିନ୍ଦ ଭଞ୍ଜଙ୍କ ପିତା ତ୍ରିଲୋଚନ ଭଞ୍ଜଙ୍କର କେନ୍ଦୁଝରଗଡ଼ଠାରେ ଦେହାନ୍ତ ହେବାର ଖବର ପାଇ ଗୋବିନ୍ଦ ଭଞ୍ଜ ମା' ତାରିଣୀଙ୍କୁ ଶ୍ରୀକ୍ଷେତ୍ର ପୁରୀ ଧାମରୁ କେନ୍ଦୁଝର ଆସିବା ପାଇଁ ପ୍ରାର୍ଥନା କରିଥିଲେ । ମା' ତାରିଣୀ ଗୋବିନ୍ଦଙ୍କ ସହ କେନ୍ଦୁଝର ଆସିବାକୁ ସମ୍ମତି ପ୍ରକାଶ କରିଥିଲେ । ମାତ୍ର, ମା' ଗୋଟିଏ ସର୍ତ୍ତ ରଖିଲେ ଯେ, ସେ ଗୋବିନ୍ଦ ଭଞ୍ଜଙ୍କ ପଛେପଛେ ଯିବେ ଏବଂ ତାଙ୍କ ପାଦର ନୂପୁର ଶବ୍ଦ ଶୁଣିଶୁଣି ଗୋବିନ୍ଦ ଆଗେଆଗେ ଯିବେ । ଯେଉଁଠି ଗୋବିନ୍ଦ ବୁଲିକରି ପଛକୁ ଚାହିଁଦେବେ, ସେଠାରେ ହିଁ ମା' ଅଟକିଯିବେ ବୋଲି ମା' ତାରିଣୀ ଏହି କଡ଼ା ସର୍ତ୍ତ ରଖିଥିଲେ । ଏହି ସର୍ତ୍ତରେ ମା' ତାରିଣୀ ଗୋବିନ୍ଦ ଭଞ୍ଜଙ୍କ ସହ ଆସୁଥା'ନ୍ତି, ବାଟରେ ଘଟଗାଁର ଘଞ୍ଚ ଜଂଗଲର ଶୁଖିଲା ପତ୍ରର ମର୍ମର ଶବ୍ଦରେ ସେ ଆଉ ମା'ଙ୍କ ନୂପୁର ଶବ୍ଦ ଶୁଣିପାରିଲେ ନାହିଁ । କାଳେ ମା' ଆଉ ଆସୁନାହାନ୍ତି ଭାବେ ଗୋବିନ୍ଦ ଭଞ୍ଜ ଯେତେବେଳେ ବୁଲିକରି ପଛକୁ ଚାହିଁଦେଲେ ମା' ତାରିଣୀ ସେହି ଘନ ଅରଣ୍ୟ ମଧ୍ୟରେ ଶୂନ୍ୟବାଣୀ ଦେଲେ -ହେ ରାଜନ୍, ତୁମେ, ତୁମ ପ୍ରତିଶ୍ରୁତି ରକ୍ଷା କରିବାରେ ବିଫଳ ହୋଇଛ । ଏଣୁ ମୁଁ ଏହି ଘଟଗାଁର ଘଞ୍ଚ ଜଂଗଲରେ ଅବସ୍ଥାନ କରିବି ଏବଂ ମୋର ପ୍ରତୀକ ଶିଳାକୁ ତୁମେ ଏଠାରେ ପୂଜା କରିବ । ବ୍ୟଥିତ ମନରେ ରାଜା ଏହି ବନ ମଧ୍ୟରେ ମା' ତାରିଣୀଙ୍କର ପୂଜାର ବ୍ୟବସ୍ଥା କରି କେନ୍ଦୁଝର ରାଜ ଉଆସକୁ ଫେରିଥିଲେ । ସେହି ଦିନଠାରୁ କାଞ୍ଚିର ମା' ତାରିଣୀ ଘଟଗାଁରେ ପୂଜା ପାଇଆସୁଛନ୍ତି ।

ଘଟଗାଁରେ ମା' ତାରିଣୀଙ୍କ ପ୍ରତିଷ୍ଠା ନେଇ ଭିନ୍ନଭିନ୍ନ ଗବେଷକଙ୍କ ଭିନ୍ନ ମତ ରହିଛି । ମା' ତାରିଣୀ ଜୈନ ପରଂପରା ସହ ଜଡ଼ିତ ଥିବା କଥା ଆଉ କିଛି ଗବେଷକ ମତବ୍ୟକ୍ତ କରନ୍ତି । ଜୈନ

ସିଦ୍ଧ ସାଧକ ନାଗାର୍ଜୁନ ଓ ବୌଦ୍ଧ ସିଦ୍ଧ ସାଧିକା ଢେଙ୍କିପାଦ ଏଠାରେ ମା' ତାରିଣୀଙ୍କ ତନ୍ତ୍ର ପୂଜାର୍ଚ୍ଚନା କରି ସିଦ୍ଧିଲାଭ କରିଥିଲେ । ଏ ଅଞ୍ଚଳ ଅତୀତରେ ଏକ ବୌଦ୍ଧକ୍ଷେତ୍ର ଭାବେ ଖ୍ୟାତି ଅର୍ଜନ କରିଥିଲା ବୋଲି ଗବେଷକମାନଙ୍କ ଯୁକ୍ତି । ସମ୍ଭବତଃ, ପ୍ରାଚୀନ କାଳର ଏହି ତନ୍ତ୍ରପୂଜା ଲୋପ ପାଇଯାଇଥିଲା ଏବଂ ରାଜା ଗୋବିନ୍ଦ ଭଞ୍ଜଙ୍କ ସମୟରେ ଏହି ପୀଠର ପୁନର୍ବିକାଶ ଘଟିଥାଇପାରେ ବୋଲି ଅନୁମାନ କରାଯାଏ ।

ଗୋବିନ୍ଦ ଭଞ୍ଜଙ୍କ ପରଠାରୁ ମା' ତାରିଣୀଙ୍କୁ କେନ୍ଦୁଝରର ରାଷ୍ଟ୍ର ଦେବୀ ଭାବେ ଗ୍ରହଣ କରାଯାଇଛି । ଘଟଗାଁ ମା' ତାରିଣୀଙ୍କ ନିକଟରେ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ତାରିଣୀଙ୍କ ପୀଠରେ ବର୍ଷର ବିଭିନ୍ନ ସମୟରେ ଆଷାଢି, ରଜ ପର୍ବ, ପଣା ସଂକ୍ରାନ୍ତି, ଚୈତ୍ର ପରବ, ନୂଆଖିଆ, ମକର ସଂକ୍ରାନ୍ତି, ବିଷୁବ ସଂକ୍ରାନ୍ତି ଆଦି ପ୍ରମୁଖ ପର୍ବ ପାଳନ କରାଯାଇଥାଏ ।

ମା' ତାରିଣୀ ଯେଉଁ ଶାଳଗଛ ମୂଳେ ପୂଜା ପାଉଥିଲେ, ସେଠାରେ ଭକ୍ତମାନେ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନଲାଭ କରିପାରୁନଥିଲେ । ସେହି ଅଞ୍ଚଳ ବାଘ, ଭାଲୁ ଆଦି ହିଂସ୍ରଜନ୍ତୁଙ୍କ ଉପଦ୍ରୁତ ଅଞ୍ଚଳ ଥିଲା । ମାତ୍ର, ଏବେ ମା' ତାରିଣୀ ୨୧୫ ନମ୍ବର ଜାତୀୟ ରାଜପଥର ପାର୍ଶ୍ୱସ୍ଥ ଘଟକେଶ୍ୱର ଶିବ ମନ୍ଦିର ନିକଟରେ ବିଦ୍ୟମାନ ହୋଇ ଭକ୍ତମାନଙ୍କୁ ଦର୍ଶନ ଦେଉଛନ୍ତି । କେହିକେହି ମା' ତାରିଣୀଙ୍କୁ ଦୁଆରଶୁଣୀ ମଧ୍ୟ କହିଥାନ୍ତି । କିନ୍ତୁ କିଛି ଭକ୍ତମାନେ ପ୍ରଥମେ ଉଭାଶାଳରେ ଦର୍ଶନ କରିବା ପରେ ମୁଖ୍ୟପୀଠକୁ ଯାଇ ଦେବୀଙ୍କୁ ଦର୍ଶନ କରି ଭୋଗରାଗ କରୁଛନ୍ତି ।

ଶ୍ରୀକ୍ଷେତ୍ର ଓ ବିରଜା କ୍ଷେତ୍ରରେ ଯେପରି ସ୍ୱତନ୍ତ୍ର ପଞ୍ଜିକା ରହିଛି ଠିକ ସେହିପରି ମା'ତାରିଣୀଙ୍କ ବାର, ତିଥି, ବ୍ରତ, ଦିନ, ଓଷା, ମେଳା ଆଦିକୁ ନେଇ ବାର୍ଷିକ ସରଣୀ ପ୍ରସ୍ତୁତ ହୋଇଛି । ତାରିଣୀ ସଂସ୍କୃତିର ପ୍ରଭାବରେ ଏହି ଅଞ୍ଚଳର ପ୍ରତି ଗ୍ରାମରେ ମା'ତାରିଣୀ ଗ୍ରାମଦେବୀ ହୋଇ ରହିଛନ୍ତି ଓ ପ୍ରତି ଗ୍ରାମର ସାମାଜିକ, ଧାର୍ମିକ କାର୍ଯ୍ୟରେ ମା'ତାରିଣୀଙ୍କୁ ଅରାଧନା କରାଯାଇଥାଏ । ତେବେ ମା'ତାରିଣୀ କେବଳ ଗୋଟିଏ ଅଞ୍ଚଳ କି ଜିଲ୍ଲାରେ ସୀମିତ ହୋଇ ରହିନାହାନ୍ତି, ସେ ସମଗ୍ର ସଂସାରର ତ୍ରାଣକର୍ତ୍ତ୍ରୀ, ମମତାମୟୀ ମାଆ ପାଲଟି ଯାଇଛନ୍ତି ।

କେନ୍ଦୁଝର ଜିଲ୍ଲା ପ୍ରଶାସନ ସହାୟତାରେ ମା' ତାରିଣୀ ମନ୍ଦିର ଟ୍ରଷ୍ଟର ଏକ 'ୱେବ୍ ସାଇଟ୍' *www.maatarini.nic.in* ପ୍ରସ୍ତୁତ କରାଯାଇଛି । ଏହି ସାଇଟ୍‌ରେ ମା' ତାରିଣୀଙ୍କ ମନ୍ଦିର ପ୍ରଶାସନ ଓ ମା'ଙ୍କ ରୀତିନୀତି, ପରଂପରା ଓ ଅନ୍ୟାନ୍ୟ ବହୁ ତଥ୍ୟ ଉପଲବ୍ଧ ହୋଇପାରିବ । ଏହି ୱେବ୍ ସାଇଟ୍ ସହାୟତାରେ ସମଗ୍ର ବିଶ୍ୱରେ ଥିବା ଭକ୍ତମାନେ ମା' ତାରିଣୀଙ୍କ ସଂପର୍କରେ, ମନ୍ଦିରର ପୂଜା ନୀତି, କାର୍ଯ୍ୟନିର୍ଘଣ୍ଟ, ଦର୍ଶନ ସମୟ, ଦାନ ଦକ୍ଷିଣା, ମନ୍ଦିର ପ୍ରଶାସନ ଓ ପରିଚାଳନା, ଟ୍ରଷ୍ଟ ବୋର୍ଡର କାର୍ଯ୍ୟାବଳି, ଘଟଗାଁକୁ ଗମନାଗମନ ସେବା, ଯାତ୍ରୀ ନିବାସ ବୁକିଂ ସଂପର୍କିତ ତଥ୍ୟ ପାଇପାରିବେ ।

# ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଏବଂ ଗୋନାସିକାର ବ୍ରହ୍ମେଶ୍ୱର ମନ୍ଦିର

*(The origin of river Baitaranee and Brahmeswar temple)*



**ଗୋନାସିକାର ବ୍ରହ୍ମେଶ୍ୱର ଶିବ ମନ୍ଦିର**

ଗୋନାସିକା ହେଉଛି ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ । ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକାଠାରେ ବ୍ରହ୍ମେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିରକୁ କେନ୍ଦୁଝରର ଭଞ୍ଜବଂଶୀ ରାଜା ଧନୁର୍ଜୟ ନାରାୟଣ ଭଞ୍ଜ (ଖ୍ରୀ·ଅ·୧୮୬୧-ଖ୍ରୀ·ଅ·୧୯୦୫) ନିର୍ମାଣ କରିଥିଲେ । ବୈତରଣୀ କ୍ଷେତ୍ରର ଏହା ଆଦି ଶୈବପୀଠ ଭାବେ ପରିଚିତ । ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଏହି ମନ୍ଦିର ନିର୍ମାଣ ସହିତ ଏଠାରେ ବ୍ରହ୍ମକୁଣ୍ଡ ପାହାଚ, କୁଣ୍ଡ ଚାରିପଟେ ପଥର କାନ୍ଥ ଏବଂ ଦଧିବାମନଙ୍କ ମନ୍ଦିର (ପକ୍କା ଘର) ନିର୍ମାଣ କରିଥିଲେ । ବ୍ରହ୍ମେଶ୍ୱର ପୀଠରେ ପ୍ରତିବର୍ଷ ମକରମେଳା, ମହାଶିବରାତ୍ରୀ ଓ ଶ୍ରାବଣ ମାସରେ ଭକ୍ତମାନେ ବୁଡ ପକାଇଥା'ନ୍ତି । ପ୍ରତିବର୍ଷ ବ୍ରହ୍ମେଶ୍ୱର ପୀଠରେ ଚୈତ୍ର ମାସ କୃଷ୍ଣ ଦ୍ୱାଦଶୀ/ତ୍ରୟୋଦଶୀ ତିଥି ଶତଭିଷା ନକ୍ଷତ୍ର ସଂଯୋଗରେ ବାରୁଣି ସ୍ନାନ ଓ ମେଳା ଅନୁଷ୍ଠିତ ହୋଇଥାଏ । ଏଥିରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

## ଋଷିଟାଙ୍ଗର

*(Saint hill)*



ଋଷିଟାଙ୍ଗରରେ ଶିଶୁ ବୈତରଣୀ

ଗୋନାସିକାର ନିକଟବର୍ତ୍ତୀ ଏକ ବିଶାଳ ପ୍ରସ୍ତର ଚଟାଣଟି 'ଋଷିଟାଙ୍ଗର' ଭାବେ ପରିଚିତ । ପ୍ରବାଦ ଅଛି ଭାର୍ଗବ ଋଷି ଭକ୍ତମାନଙ୍କ ଗହଣରେ ଏଠାରେ ଧର୍ମାଲୋଚନା କରୁଥିଲେ । ଏହି ବିରାଟ ପ୍ରସ୍ତର ଚଟାଣରେ ଗୋଟିଏ ପ୍ରାନ୍ତରେ ଏକ ଛୋଟ ଗର୍ତ୍ତ ରହିଛି । ବୈତରଣୀ ଗୋନାସିକାରୁ ବାହାରି କିଛି ବାଟ ପ୍ରବାହିତ ହେବାପରେ ବୈତରଣୀ ଗୁପ୍ତଗଙ୍ଗା ନିକଟରେ ପାତାଳି ହୋଇଯାଇଛନ୍ତି । ଗୁପ୍ତଗଙ୍ଗାଠାରେ ଅଦୃଶ୍ୟ ହୋଇଯିବା ପରେ 'ଋଷି ଟାଙ୍ଗର' ନାମକ ଏହି ପ୍ରସ୍ତର ଶଯ୍ୟା ନିକଟରେ ବୈତରଣୀ ପୁଣି ଦେଖା ଦେଇଛନ୍ତି । ଋଷି ଟାଙ୍ଗରର ଏକ ଛୋଟ ଗର୍ତ୍ତରୁ ବୈତରଣୀ ନିର୍ଗତ ହୋଇ ପୁନର୍ବାର ପାତାଳି ହୋଇଯାଇଛନ୍ତି । ଏଠାରୁ ପୁଣି ବୈତରଣୀ ପାତାଳି ହୋଇଯିବା ପରେ ଶେଷରେ 'ବ୍ରହ୍ମ କୁଣ୍ଡ' ଠାରେ ଆବିର୍ଭୂତ ହୋଇଛନ୍ତି । ବୈତରଣୀର ଏଭଳି ଲୁଚକାଳି ଖେଳ ବାସ୍ତବରେ ଖୁବ୍ ମନୋରମ । ପ୍ରବାଦ ଅଛି, ତ୍ରେତା ଯୁଗରେ ଲକ୍ଷ୍ମଣ-ଇନ୍ଦ୍ରଜିତ୍ ଯୁଦ୍ଧରେ ମୃତ୍ୟୁମୁଖରେ ପଡିଥିବା ଲକ୍ଷ୍ମଣଙ୍କୁ ବଞ୍ଚାଇବାକୁ ହନୁମାନ ଗନ୍ଧମାର୍ଦ୍ଦନ ପର୍ବତରୁ ଯେଉଁ ବିଶଲ୍ୟକରଣୀ ଆଣିଥିଲେ ତାକୁ ଏହି 'ଋଷି ଟାଙ୍ଗର' ପ୍ରସ୍ତର ଚଟାଣରେ ବାଟି ଲକ୍ଷ୍ମଣଙ୍କୁ ପିଆଇଥିଲେ ।

## ସାତକର୍ଣ୍ଣି ଆଶ୍ରମ

*(Satakarni hermitage)*

ପୁଣ୍ୟତୋୟା ବୈତରଣୀ ଗୋନାସିକା ପାହାଡ଼ରୁ ଉତ୍ପତ୍ତିଲାଭ କରିବା ପରେ ଗନ୍ଧମାର୍ଦ୍ଦନ ପର୍ବତର ପାଦଦେଶ ଦେଇ ପ୍ରବାହିତ ହୋଇଛି । ବିଭିନ୍ନ ପ୍ରକାର ସୁଗନ୍ଧ ବନସ୍ପତିରେ ପରିପୂର୍ଣ୍ଣ ଏହି ଗନ୍ଧମାର୍ଦ୍ଦନ ପର୍ବତଟି ପୌରାଣିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତ୍ରେତା ଯୁଗରେ ଶ୍ରୀରାମଙ୍କ କନିଷ୍ଠ ଭ୍ରାତା ଲକ୍ଷ୍ମଣ ଏବଂ ରାବଣପୁତ୍ର ଇନ୍ଦ୍ରଜିତଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ଏବଂ ଇନ୍ଦ୍ରଜିତଙ୍କ

ବାଣରେ ଲକ୍ଷ୍ମଣ ନିଜର ସଂଜ୍ଞା ହରାଇବସିଥିଲେ । ଲକ୍ଷ୍ମଣଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଇବା ପାଇଁ ମହାବୀର ହନୁମାନ ଏହି ଗନ୍ଧମାର୍ଦ୍ଦନ ପର୍ବତରୁ ମୃତ୍ୟୁ ସଂଜୀବନି ଓ ବିଶଲ୍ୟକରଣୀ ବୃକ୍ଷ ନେଇଥିଲେ । ଗନ୍ଧମାର୍ଦ୍ଦନ ପର୍ବତରେ ବିଶଲ୍ୟକରଣୀ, ମୃତ୍ୟୁ ସଞ୍ଜୀବନି, ଭ୍ରମରମାରି, ଅନନ୍ତକେଦାର, ପାତାଳଗରୁଡ଼ ଭଳି ଅନେକ ପ୍ରକାରର ମହୌଷଧି ବୃକ୍ଷ ରହିଛି ।

ଗନ୍ଧମାର୍ଦ୍ଦନ ପର୍ବତର ପାଦଦେଶରେ ପ୍ରବାହିତ ହେଉଥିବା ପୁଣ୍ୟତୋୟା ବୈତରଣୀ ନଦୀର ସୁଶୀତଳ ଉପତ୍ୟକା **ମଧୁବନ** ନାମରେ ଖ୍ୟାତ ଅଟେ । ଏଠାରେ **ଯାଗମରା** ନାମକ ସ୍ଥାନରେ ମୁନିରଷିମାନେ ଯାଗଯଜ୍ଞ କରୁଥିବାର କିମ୍ବଦନ୍ତୀ ରହିଛି ।

ବୈତରଣୀ ନଦୀ ପ୍ରବାହିତ ହେଉଥିବା ଗନ୍ଧମାର୍ଦ୍ଦନ ପବର୍ତର ଶୀର୍ଷ ଦେଶରେ **ସାତକର୍ଣ୍ଣି ଆଶ୍ରମ** ରହିଛି । ଏହି ପର୍ବତର ଶୀର୍ଷ ଦେଶରେ ଏକ ସୁବିସ୍ତୃତ ସମତଳ ପଥର ଚଟାଣ ଉପରେ ସୃଷ୍ଟିର ଆବହମାନ କାଳରୁ ସାତଗୋଟି ପୁଷ୍କରିଣୀ ରହିଛି । ଏହାର ଜଳ ସୁଶୀତଳ । ଗନ୍ଧମାର୍ଦ୍ଦନ ପର୍ବତର ବକ୍ଷ ଦେଶରେ ଥିବା ସାତକର୍ଣ୍ଣି ଆଶ୍ରମ ପରିସରରେ ଅନେକ ଗୁମ୍ଫା ରହିଛି । ଏଠାରେ ଥିବା ବ୍ୟାଘ୍ର ଗୁମ୍ଫା ମଧ୍ୟରେ ଚତୁର୍ଭୁଜ ନାରାୟଣଙ୍କର ଏକ ଭଗ୍ନ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଲୋକେ ଏହାକୁ ମାରଣ ମୂର୍ତ୍ତି ବୋଲି କହନ୍ତି । ପ୍ରବାଦ ଅଛି, ଦର୍ଶନ ସମୟରେ ଯଦି ଭକ୍ତର ଛାଇ ଏହି ମୂର୍ତ୍ତି ଉପରେ ପଡ଼ିଯାଏ, ତେବେ ସଂପୃକ୍ତ ଭକ୍ତର ମୃତ୍ୟୁ ହୋଇଯାଏ । ଏଣୁ ସାଧାରଣ ଭାବେ ଦର୍ଶକ ଓ ଭକ୍ତମାନେ ଏହି ଗୁମ୍ଫା ମଧ୍ୟକୁ ଯିବାକୁ ଭୟ କରନ୍ତି । ଗନ୍ଧମାର୍ଦ୍ଦନ ପାଦ ଦେଶରେ ପ୍ରବାହିତ ହେଉଥିବା ବୈତରଣୀ ନଦୀର ସୁଶୀତଳ ଉପତ୍ୟକା ସ୍ଥାନୀୟ ଅଞ୍ଚଳରେ 'ମଧୁବନ' ନାମରେ ପରିଚିତ ।

## ପ୍ରାଚୀନ ନୟାଗଡ଼ ମୁକ୍ତେଶ୍ୱର ଶିବମନ୍ଦିର

କେନ୍ଦୁଝର ଜିଲ୍ଲା ଝୁଂପୁରା ବ୍ଲକ ଅନ୍ତର୍ଗତ ନୟାଗଡ଼ ଗ୍ରାମ ଦେଇ ବହି ଯାଇଥିବା ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଏହି ପ୍ରାଚୀନ ଶୈବପୀଠଟି ଅବସ୍ଥିତ । ନୟାଗଡ଼ରେ ଥିବା ଜିଲ୍ଲାର ଏହି ପୁରାତନ ମୁକ୍ତେଶ୍ୱର ଶିବ ମନ୍ଦିରଟି ଏବେ ପ୍ରାୟ ଧ୍ୱଂସମୁଖୀ । କେଉଁ ମୁହୂର୍ତ୍ତରେ ଏହି ମନ୍ଦିରଟି ଭୁଶୁଡି ପଡ଼ିବ ତାହା କହିବା ମୁସ୍କିଲ୍ । କେବଳ ମହାଦେବଙ୍କ ଭରସାରେ ମନ୍ଦିରଟି ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି ବୋଲି ଏଠାରେ ପୂଜା କରୁଥିବା ପୂଜକ ପ୍ରକାଶ କରନ୍ତି ।

ମନ୍ଦିରଟି ଧ୍ୱଂସ ପାଇବା ପଛରେ ସ୍ଥାନୀୟ ଅଞ୍ଚଳବାସୀଙ୍କ ମଧ୍ୟ ନାନା କଥା ପ୍ରକାଶ ପାଏ । ମନ୍ଦିରଟି ବହୁ ପୁରୁଣା ହୋଇଯିବା ସହ ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଏହା ଧ୍ୱଂସ ପାଇଯାଇଥାଇପାରେ ବୋଲି କିଛି ଗବେଷକ କହୁଥିବାବେଳେ ଆଉ କିଛିଙ୍କ ମତରେ ଏହା ମୋଗଲ ଆକ୍ରମଣକାରୀଙ୍କ ଦ୍ୱାରା ଧ୍ୱଂସ ପାଇଯାଇଛି ବୋଲି ଜଣାଯାଏ ।

ମନ୍ଦିରଟି ଦ୍ୱାଦଶ ଶତାବ୍ଦୀ ବେଳର ବୋଲି ସ୍ଥାନୀୟ ଅଞ୍ଚଳର ପୁରୁଖା ଲୋକମାନେ ମତବ୍ୟକ୍ତ କରନ୍ତି । ଏହି ଭଗ୍ନ ମନ୍ଦିର ମଧ୍ୟରେ ମହାଦେବ ମୁକ୍ତେଶ୍ୱର ପୂଜା ପାଉଥିବାବେଳେ ମନ୍ଦିର ପ୍ରାଙ୍ଗଣରେ ଅନେକ ଶିବ ଲିଙ୍ଗ ରହିଛି । ଏହି ପୀଠଟି ପଞ୍ଚ ସଖା ମହାଦେବଙ୍କ ପୀଠ ଏବଂ ଏଠାରେ ବାବା ମୁକ୍ତେଶ୍ୱରଙ୍କ ସମେତ ମନ୍ଦିର ବାହାରେ ଆଉ ଚାରୋଟି ଶିବ ଲିଙ୍ଗ ପୂଜା ପାଉଛନ୍ତି । ମହାଦେବଙ୍କ ସମେତ ମନ୍ଦିର ପରିସରରେ ଅନେକ ପାର୍ଶ୍ୱଦେବଦେବୀ ପୂଜା ପାଉଛନ୍ତି । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ସାଙ୍ଗକୁ ବିଶାଳ ଯଜ୍ଞ ଅନୁଷ୍ଠିତ ହୋଇଥାଏ । ରଜ ସମୟରେ ଗଡ଼ଚଣ୍ଡୀଙ୍କଠାରେ ବଳିପୂଜା ହୋଇଥାଏ ଏବଂ ରଜ ସଂକ୍ରାନ୍ତି ଧୂମଧାମ୍‌ରେ ପାଳିତ ହୋଇଥାଏ ।

ସାଧାରଣତଃ ମନ୍ଦିରଗୁଡ଼ିକ ପୂର୍ବମୁଖା ହୋଇଥିବାବେଳେ ନୟାଗଡ଼ର ମୁକ୍ତେଶ୍ୱର ମନ୍ଦିର ଦକ୍ଷିଣମୁଖା । ଏଠାରେ ପାର୍ଶ୍ୱଦେବତା ଭାବେ କାର୍ତ୍ତିକେୟଙ୍କର ଏକ ପ୍ରାଚୀନ ମୂର୍ତ୍ତି ରହିଛି ଯାହାଙ୍କର ବାହନ ପୁରୁଷକୁକୁଡ଼ା । ସାଧାରଣତଃ କାର୍ତ୍ତିକେୟଙ୍କର ମୟୂର ବାହନ ହୋଇଥିବାବେଳେ ଏଠାରେ ଥିବା କାର୍ତ୍ତିକେୟଙ୍କ ବାହନ ଗଞ୍ଜା (ପୁରୁଷ କୁକୁଡ଼ା) । ଏହା ସହିତ ମୁକ୍ତେଶ୍ୱରଙ୍କ ପୀଠରେ ଏକ ସବୁଜ ରଙ୍ଗର ବିଶେଷ ପ୍ରକାରର ପ୍ରସ୍ତର ନିର୍ମିତ ବହୁ ପୁରାତନ ଗଡଚଣ୍ଡୀଙ୍କ ମୂର୍ତ୍ତି ମଧ୍ୟ ପୂଜା ପାଉଛନ୍ତି । ଗଡ଼ଚଣ୍ଡୀଙ୍କର ବାହନ ବରାହ ହୋଇଥିବାବେଳେ ସେ ଚତୁର୍ଭୁଜା । ଚତୁର୍ଭୁଜା ଗଡଚଣ୍ଡୀଙ୍କର ମୂର୍ତ୍ତିଟି ବହୁତ ପ୍ରାଚୀନ । ସବୁଜ ରଙ୍ଗର ଏକ ବିରଳ ପ୍ରସ୍ତରରେ ନିର୍ମିତ ଏହି ଗଡ଼ଚଣ୍ଡୀଙ୍କର ମୂର୍ତ୍ତି କେତେ ପ୍ରାଚୀନ ଏବଂ ଏହା କେଉଁଠାରୁ ଅଣାଯାଇଛି ସେ ସଂପର୍କରେ ଇତିହାସ








କେନ୍ଦୁଝର ଜିଲ୍ଲା ନୟାଗଡ଼ ନିକଟରେ ବୈତରଣୀ

ନିରବ । ଏହି ସ୍ୱତନ୍ତ୍ର ସବୁଜ ରଙ୍ଗର ପଥର ଏ ଅଞ୍ଚଳରେ ଦେଖିବାକୁ ମିଳୁ ନଥିବାବେଳେ ଏହି ମୂର୍ତ୍ତି କେଉଁଠୁ ଆସିଛି ତାହା ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଗଡ଼ଚଣ୍ଡୀଙ୍କ ମୁହଁ ସାମାନ୍ୟ ବକ୍ର ହୋଇଥିବାରୁ ମା' ବଗଳାମୁଖୀ ।

ଏଠାରେ ଅଷ୍ଟଭୂଜା ଦେବୀ ଦୁର୍ଗାଙ୍କର ଏକ ପ୍ରାଚୀନ ପ୍ରସ୍ତର ମୂର୍ତ୍ତି ମଧ୍ୟ ରହିଛି । ପ୍ରତିବର୍ଷ ପଣା ସଂକ୍ରାନ୍ତିରେ ଏହି ଅଷ୍ଟଭୂଜା ଦୁର୍ଗାଙ୍କ ନିକଟରେ ପୂଜା ହୋଇଥାଏ । ନୟାଗଡ଼ କେନ୍ଦୁଝର ଭଞ୍ଜ ବଂଶୀ ରାଜାଙ୍କର ଏକ ପୁରାତନ ଗଡ଼ ଥିଲା । ରାଜା ପାରିଧି ସମୟରେ ନୟାଗଡ଼ଠାରେ ଅବସ୍ଥାନ କରନ୍ତି । ଚତୁର୍ଭୁଜା ମା' ଗଡ଼ଚଣ୍ଡୀ ରାଜାଙ୍କ ଗଡ଼ରେ ରହି ପୂଜା ପାଉଥିଲେ । ମାତ୍ର ସେଠାରେ ତାଙ୍କ ପୂଜାରେ ନାନା ପ୍ରକାର ବିଭ୍ରାଟ ଉପୁଜିବାରୁ ରାଜା ଶେଷରେ ମା'ଙ୍କୁ ଆଣି ଏହି ଶିବ ମନ୍ଦିରରେ ସ୍ଥାପନା କରି ପୂଜା କରିବା ଆରମ୍ଭ କଲେ ବୋଲି ଏହି ମନ୍ଦିରର ପୂଜକ ଆନନ୍ଦ ଚନ୍ଦ୍ର ଷଡଙ୍ଗୀ ପ୍ରକାଶ କରନ୍ତି । ଗଡ଼ଚଣ୍ଡୀଙ୍କ ନିକଟରେ ପୂର୍ବରୁ ନରବଳି ପଡୁଥିବା କଥା ସ୍ଥାନୀୟ ଲୋକେ କୁହନ୍ତି । ମୁକ୍ତେଶ୍ୱର ମନ୍ଦିରରେ ଥିବା ସତୀ ଓ ଲିଙ୍ଗ ମଧ୍ୟରେ ଏକ ଫାଟ କାହିଁ କେଉଁ ଯୁଗରୁ ରହିଆସିଛି । ତାକୁ ଯେତେ ଚେଷ୍ଟା କଲେ ମଧ୍ୟ ତାହା ପୂରଣ ହୋଇପାରୁନି । ନୟାଗଡ ଶିବ ମନ୍ଦିର ଓ ଏଠାରେ ଥିବା ଚତୁର୍ଭୁଜା ବଗଳାମୁଖୀ ଗଡ଼ଚଣ୍ଡୀ, ଅଷ୍ଟଭୂଜା ଦେବୀ ଦୁର୍ଗାଙ୍କ

ନିକଟରେ ବର୍ଷରେ ବିଭିନ୍ନ ପର୍ବପର୍ବାଣି ଅନୁଷ୍ଠିତ ହୋଇଥାଏ । ମନ୍ଦିର ଜମିର ସୁରକ୍ଷା ଓ ଠାକୁରଙ୍କ ସେବା ପାଇଁ 'ବାବା ମୁକ୍ତେଶ୍ୱର ଲୋଡ଼ିଂ ଆଣ୍ଡ ଅନଲୋଡ଼ିଂ ସଂସ୍ଥା' ପକ୍ଷରୁ ପାଚେରୀ, ଭୋଗ ଘର ଓ ଅନ୍ୟାନ୍ୟ ବ୍ୟବସ୍ଥା କରାଯାଇଛି । ସ୍ଥାନୀୟ ସ୍ୱେଚ୍ଛାସେବୀ ବାବୁରାମ ନାଏକଙ୍କ ଉଦ୍ୟମରେ ଏହି ପୀଠର ଯଥେଷ୍ଟ ବିକାଶ ସଂଭବ ହୋଇପାରିଛି ।

## ଗୁରୁବେଡ଼ା, ଇଙ୍ଗାନିଝରନ୍ ଓ ଅସାଡ଼ୋଲାରେ ସନ୍ଧ୍ୟା ଆନମନା କରେ ବୈତରଣୀର ମୋହିନୀ ରୂପ !

ସେଦିନ ଥାଏ ଫଗୁଣ ମାସର ଏକ ଉଷ୍ମ ସନ୍ଧ୍ୟା । ବୈତରଣୀ ନଦୀର ପଥୁରିଆ ଶଯ୍ୟା ଦେଇ ଦୀର୍ଘ ପଥ ଅତିକ୍ରମ କରିବା ପରେ ଇଙ୍ଗାନିଝରନ୍ ମୁଣ୍ଡା ବସ୍ତିରେ ପହଞ୍ଚିଲା ବେଳକୁ ସଞ୍ଜ ନଇଁ ଆସୁଥିଲା । ମୁଣ୍ଡା ଯୁବକ, ଯୁବତୀମାନେ ଜଙ୍ଗଲରୁ ଜାଳେଣୀ କାଠ ଓ ଜଙ୍ଗଲଜାତ ସାମଗ୍ରୀ ଧରି ନିଜ ବସ୍ତିକୁ ଫେରୁଥିଲେ । ଗୋଟିଏ ପଟେ ବୈତରଣୀ ନଦୀର ଅପରୂପ ସୌନ୍ଦର୍ଯ୍ୟ, ଅସାଡ଼ୋଲା ପର୍ଯ୍ୟଟନସ୍ଥଳ, ସବୁଜିମାଭରା ଚୂଳିଆ ପାହାଡ଼, ନାଲାଫିଟ୍ ପାହାଡ଼ର ଆକର୍ଷଣୀୟ ଚେହେରା ଓ କୁଳୁକୁଳୁ ବହିଯାଉଥିବା ଇଙ୍ଗାନିଝରନ୍ ଝରଣାର ଦୃଶ୍ୟ ଘଡ଼ିଏ ଆନମନା କରିଦେଉଥିଲା । ଅନ୍ୟପଟେ ଇଙ୍ଗାନିଝରନ୍ ପାହାଡ଼ରେ ଖଣି କଂପାନୀଙ୍କ ଲୁହାଖୋଳା, ଖଣିର ଅପରପାର୍ଶ୍ୱରେ ବସବାସ କରୁଥିବା ଆଦିମ ଜନଜାତି ମୁଣ୍ଡା ଓ କୋହ୍ଲମାନଙ୍କର ଦୁର୍ଦ୍ଦଶା ଦେଖି ଦୀର୍ଘଶ୍ୱାସ ଛାଡି ଦେଇ ବାହାରକୁ ଚାଲିଯାଉଥିଲା ।


ବୈତରଣୀ :: ଯୋଡ଼ା ବ୍ଲକର ଗୁରୁବେଡ଼ା



ଗୁରୁବେଡ଼ାରେ ବୈତରଣୀର ମୋହିନୀ ରୂପ

ସତରେ ଏ କି ବିଚିତ୍ର ବିରୋଧାଭାଷ !

ଇଙ୍ଗାନିଝରନ୍ ଭଳି ଲୁହା ଓ ମାଙ୍ଗାନିଜ୍ ଖଣିଜ ସଂପଦଭରା ପ୍ରାଚୁର୍ଯ୍ୟର ପାହାଡ଼ ଉପରେ ବାସ କରୁଥିବା ଆଦିମ ଜନଜାତିମାନଙ୍କର ଦାରିଦ୍ର୍ୟର ଚିତ୍ର ଥିଲା ବେଶ୍ ହୃଦୟବିଦାରକ । ଦୀର୍ଘ ୫୦ ବର୍ଷ ଧରି ଏଠାରୁ ପାହାଡ଼ ଖୋଳା କାମ ଚାଲିଛି । ଇଙ୍ଗାନିଝରନ୍, ଚୁଳିଆ ପାହାଡ଼, ଅସାଡ଼ୋଲା, ନାଲାଫିଟ୍ ପାହାଡ଼ ଛାତିରେ କ୍ରସର ଅସୁର ବସି ପାହାଡ଼ର ଛାତିକୁ ଗୁଣ୍ଡ କରିଚାଲିଛି । ଏହାର ଖୁବ୍ ସନ୍ନିକଟରେ ରହିଛି ବୈତରଣୀ ନଦୀ ଓ ବୈତରଣୀ ନଦୀରେ ନିର୍ମାଣାଧୀନ କାନୁପୁର ବୃହତ୍ ଜଳଭଣ୍ଡାର ।

ଯୋଡ଼ା ବ୍ଲକ୍ ଅନ୍ତର୍ଗତ ବିରିକଳା ଗ୍ରାମପଞ୍ଚାୟତରେ ରହିଛି ଏହି ଇଙ୍ଗାନିଝରନ୍ ଓ ଅସାଡ଼ୋଲା ପର୍ଯ୍ୟଟନସ୍ଥଳ । ବୈତରଣୀ ନଦୀ ଶଯ୍ୟାରେ ସୃଷ୍ଟି ହୋଇଛି ଏହି ଅପରୂପ ପ୍ରାକୃତିକ ସମ୍ମୋହନକାରୀ ପ୍ରାକୃତିକ ସ୍ଥଳ, ଅସାଡ଼ୋଲା । ଇଙ୍ଗାନିଝରନ୍ ଅନ୍ୟ ପାର୍ଶ୍ୱରେ ରହିଛି 'ଇଙ୍ଗାନିଝରନ୍ ମଇଲ୍ କ୍ୟାଂପ୍ ହଟିଂ' । ଏହି ହଟିଂ (ବସ୍ତି)ଟିରେ ପାଖାପାଖି ୧୭୦ ମୁଣ୍ଡା ପରିବାର ଓ ୧୦୦୦ ପାଖାପାଖି ଲୋକ ରହନ୍ତି । ମୁଣ୍ଡାମାନଙ୍କ ସମେତ ଏଠାରେ ଓରାମ୍, ଗଣ୍ଡ, କୋହ୍ଲ ସଂପ୍ରଦାୟର ଜନଜାତି ମଧ୍ୟ ବସବାସ କରିଥା'ନ୍ତି ।

ସୂଚନାଯୋଗ୍ୟ, ଆଜିକୁ ପ୍ରାୟ ୫୦ ବର୍ଷ ପୂର୍ବେ ଏଠାରେ ଲୁହାପଥର ଅନୁସନ୍ଧାନ କରାଯିବା ପରେ 'ଏମ୍‌ଓଇଏଲ୍' ନାମ ଏକ ସଂସ୍ଥା ଏଠାରେ ଲୁହାପଥର ଖୋଳାଖୋଳି ଆରମ୍ଭ କରିଥିଲା । ଆଉ ଏହାକୁ କେନ୍ଦ୍ରକରି ଏଠାରେ ଏହି 'ଇଙ୍ଗାନିଝରନ୍ ମଇଲ୍ କ୍ୟାଂପ୍' ଗଢି ଉଠିଥିଲା ।

ଖଣି ସଂସ୍ଥାମାନେ ମାଇନିଂ ଲିଜ୍ ଆଳରେ ଏସବୁ ପାହାଡ଼, ଝରଣା, ବୈତରଣୀ, ଗଛଲତା, ଜୀବଜନ୍ତୁଙ୍କୁ ନିଜ କବ୍‌ଜାକୁ ନେଇଯିବା ପରେ ଏହି ଆଦିମ ଜନଜାତିମାନେ ବାସ୍ତୁହରା ହୋଇଉଠିଛନ୍ତି । ଏହି ମୁଣ୍ଡା ହଟିଂଟିକୁ ଆଜି ପର୍ଯ୍ୟନ୍ତ ବିଜୁଳି ଓ ରାସ୍ତା ନାହିଁ । ବସ୍ତିବାସିନ୍ଦାଙ୍କ ପାଇଁ ସ୍କୁଲ୍‌ଟିଏ ସାତ ସପନ ପାଲଟିଛି । ପିଇବା ପାଣି କଥା ନ କହିବା ଭଲ । ଲୁହାଖଣି କ୍ରସରର କରାଳ ଗର୍ଭରୁ ଅନ୍ତକେ ବର୍ତ୍ତିଯାଇଥିବା ଇଙ୍ଗାନି ଝରଣାର ଦୂଷିତ ପାଣି ହିଁ ଏମାନଙ୍କର ତୃଷା ମେଣ୍ଟେଇ ଥାଏ । ବସ୍ତିର ଜମିହୀନ ବୃଦ୍ଧ ଦଂପତି ମନୁ ପାତ୍ର ଓ ଶ୍ରଦ୍ଧା ପାତ୍ର, ବୃଦ୍ଧ ଗଣ୍ଡ ମୁଣ୍ଡା ଓ ନିରଞ୍ଜନ ଓରାମ୍, ସମରା ମୁଣ୍ଡା, ପାଣ୍ଡୁ ଚଂପିଆ (୬୫) ଓ ବୃଦ୍ଧା ଚାନ୍ଦ ଚଂପିଆମାନଙ୍କ ଭାଗ୍ୟ ଏବେ ଅନ୍ଧାରକୁ ଠେଲି ହୋଇଯାଇଛି । ଏମାନେ ନିଜର ପୁରୁଣା ଦିନର ଜଙ୍ଗଲୀ ଅନୁଭୂତି କଥା ମନେ ପକାଇଲା ବେଳେ ସେମାନଙ୍କ ଆଖିରୁ ଲୁହ ଝରି ପଡୁଥିଲା ।

କେନ୍ଦୁଝର ଜିଲ୍ଲାରେ ବୈତରଣୀ ନଦୀର ସବୁଠୁ ଆକର୍ଷଣୀୟ ଚେହେରା ଯେଉଁଠି ଅନୁଭବ



**ଅସାତୋଲା ବୈତରଣୀ ଶଯ୍ୟାରେ ଲେଖକ**

କରିଥୁଏ. ତାହା ହେଉଛି ଯୋଡ଼ା ବ୍ଲକ୍ ଅନ୍ତର୍ଗତ ଅସାଡ଼ୋଲା, ଚୁଳିଆ ପାହାଡ଼, ଇଙ୍ଗାନିଝରନ୍ ଓ ଗୁରୁବେଡ଼ା । ଅସାଡ଼ୋଲାଠାରେ ବୈତରଣୀ ନଦୀଟିର ଅଫୁରନ୍ତ ସୌନ୍ଦର୍ଯ୍ୟ ଦେଖିବାକୁ ପ୍ରତିବର୍ଷ ଏଠାକୁ ହଜାର ହଜାର ସଂଖ୍ୟାରେ ପର୍ଯ୍ୟଟକ ଆସିଥା'ନ୍ତି ।

ଇଙ୍ଗାନିଝରନ୍‌ର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ରହିଛି ଐତିହାସିକ ଚମକପୁର ଗ୍ରାମ । ଏହି ଚମକପୁରଟି କେନ୍ଦୁଝର ରାଜତନ୍ତ୍ର ବ୍ୟବସ୍ଥାର ଅନ୍ୟତମ ମୂକସାକ୍ଷୀ ଭାବେ ନିରବରେ ଦଣ୍ଡାୟମାନ । କେନ୍ଦୁଝର ରାଜାଙ୍କର ୪୪ଟି ଦଣ୍ଡପାଟ ମଧ୍ୟରୁ ଚମକପୁର ଦଣ୍ଡପାଟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ଦଣ୍ଡପାଟଟି ଛୋଟନାଗପୁର ମାଳଭୂମିକୁ ଲାଗି ରହିଥିବା ସହିତ ପଡୋଶୀ ଝାଡ଼ଖଣ୍ଡ (ତତ୍କାଳୀନ ବିହାର)ର ପଡ଼ୋଶୀ ହୋଇଥିବାରୁ ଏହା କେନ୍ଦୁଝର ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଦଣ୍ଡପାଟର ମାନ୍ୟତା ଅର୍ଜନ କରିପାରିଥିଲା ।

ଆହୁରି ମଧ୍ୟ ଏହାର ନିକଟରେ ରହିଛି ପ୍ରସିଦ୍ଧ ପ୍ରତ୍ନତାତ୍ତ୍ୱିକ ସ୍ଥାନ ଛେଳିଡ଼େଗା ପୀଠ ।





କେନ୍ଦୁଝର ଜିଲ୍ଲା ଯୋଡ଼ା ବ୍ଲକ୍ ଅସାଡ଼ୋଲାଠାରେ ବୈତରଣୀର କୁହୁକିନୀ ରୂପ

ଏଠାରୁ ଏକ ପ୍ରାଚୀନ ନଗର ସଭ୍ୟତା ସଂପର୍କରେ ଅନେକ ତଥ୍ୟ ପ୍ରମାଣ ହାସଲ ହୋଇପାରିଛି । ଏଠାରୁ ମିଳିଥିବା ପ୍ରାଚୀନ ଇଟା, ପୁରୁଣା ମୂର୍ତ୍ତି, ପ୍ରାଚୀର, ଶିଳାଲେଖ ଏଠାରେ ଥିବା ଏକ ପ୍ରାଚୀନ ନଗର ସଭ୍ୟତା ସଂପର୍କରେ ଅନେକ ଦସ୍ତାବିଜ୍ ବହନ କରିଛି । ମାତ୍ର ଏ ଅଞ୍ଚଳରେ ଖଣି ଖନନ ଏସବୁ ଐତିହ୍ୟ ଓ ସଂସ୍କୃତିକୁ ବିପର୍ଯ୍ୟୟ କରି ଦେଇଛି । ଏହା ସାଙ୍ଗକୁ ଏଠାରେ ବସବାସ କରୁଥିବା ପୁରାତନ ଜନଜାତିଙ୍କ ଜୀବନ, ଜୀବିକାକୁ ମଧ୍ୟ ଧୂଳିସାତ୍ କରିଦେଇଛି ।

କେନ୍ଦୁଝର ଜିଲ୍ଲାର ଯୋଡ଼ା ବ୍ଲକ୍ ଅନ୍ତର୍ଗତ ବାଂଶପାଣି ନିକଟରେ ବୈତରଣୀ ନଦୀ କୂଳରେ ଥିବା ଗୁରୁବେଡ଼ା ଅନ୍ୟତମ ଆକର୍ଷଣୀୟ ପ୍ରାକୃତିକ ପର୍ଯ୍ୟଟନସ୍ଥଳ । ଯୋଡ଼ା ସହରଠାରୁ ମାତ୍ର ୧୧ କିଲୋମିଟର ଗଲେ ପଡ଼ିଥାଏ ଏହି ପାହାଡ଼, ଜଙ୍ଗଲଘେରା ଏହି ପ୍ରାକୃତିକ ଶୋଭାଭରା ସ୍ଥାନ । ଏଠାରେ ବାସ୍ତବରେ ବୈତରଣୀର ମୋହିନୀ ରୂପ ଅବର୍ଣ୍ଣନୀୟ । ରାଶିରାଶି ସାବ୍‌ଜା ଜଙ୍ଗଲ ଓ ଧୂସର ପାହାଡ଼ର ଛାତି ଚିରି ବୈତରଣୀ ନଦୀ ଏଠାରେ କ୍ଷୀପ୍ର ବେଗରେ ପ୍ରବାହିତ ହେଉଥିବାର ଦୃଶ୍ୟ ବାସ୍ତବରେ ମନୋରମ । ନଦୀ କୂଳରେ ଥିବା ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟା, ପାହାଡ଼ ଖୋଲରେ ବୈତରଣୀ କୁଳୁକୁଳୁ ହୋଇ ବହି ଯାଉଥିବାର ଦୃଶ୍ୟ ଦେଖି ଯେ କେହି ବ୍ୟକ୍ତି ଘଡ଼ିଏ ଅଟକିଯିବ, ଏହା ନିଃସନ୍ଦେହ । ଏଠାରେ ପାହାଡ଼କୁ କାଟି ବୈତରଣୀ ତୀବ୍ର ବେଗରେ ପ୍ରବାହିତ ହେଉଥିବାବେଳେ ନଦୀ ଶଯ୍ୟାରେ ଏକ ବିଶାଳ ଗଣ୍ଡ ସୃଷ୍ଟି ହୋଇଛି । ଏହା ଏକ ହ୍ରଦର ଭ୍ରମ ସୃଷ୍ଟି କରିଥାଏ । ବୈତରଣୀର ଦୁଇ ଧାର ବିଶାଳ ପ୍ରସ୍ତର ପ୍ରାଚୀର ଭଳି ମନେହୋଇଥାଏ, ସତେ ଯେମିତି କୌଣସି ଏକ ପ୍ରାଚୀନ ରାଜଦୁର୍ଗର ଧ୍ୱଂସାବଶେଷ ଏଠାରେ ଦଣ୍ଡାୟମାନ! ବୈତରଣୀ ନଦୀକୂଳସ୍ଥ ଏହି ଅଞ୍ଚଳଟି ଘଞ୍ଚ ଜଙ୍ଗଲ ହୋଇଥିବାରୁ ଏଠାରେ ନାନା ପ୍ରକାର ଜଙ୍ଗଲୀ ଜୀବଜନ୍ତୁ ଦୃଶ୍ୟମାନ ହୋଇଥା'ନ୍ତି । ଏହି ଜଙ୍ଗଲଟିରେ ନାନା ପ୍ରକାର ଔଷଧୀୟ ବୃକ୍ଷରାଜି ଭରି ରହିଛି ।

ପ୍ରତିବର୍ଷ ଶୀତଦିନେ ଏଠାକୁ ହଜାର ହଜାର ସଂଖ୍ୟାରେ ପର୍ଯ୍ୟଟକଙ୍କ ସୁଅ ଛୁଟିଥାଏ । ପର୍ଯ୍ୟଟକମାନେ ଏଠାରେ ବଣଭୋଜିର ମଜା ଉଠାଇଥା'ନ୍ତି । ଏହାର ଆଖପାଖ ଅଞ୍ଚଳରେ ଆଦିମ ଜନଜାତି ସଂପ୍ରଦାୟର ଲୋକେ ବସବାସ କରିଥା'ନ୍ତି ।

**(ତଥ୍ୟ: ରଂଜନ ପ୍ରଧାନଙ୍କ ଲିଖିତ ଏକ ସ୍ୱତନ୍ତ୍ର ନିଉଜ୍ ଫିଚର, 'ସମ୍ବାଦ', ୨୬, ଏପ୍ରିଲ୍ ୨୦୧୪)**

## ଐତିହାସିକ ଚମକପୁର ଦଣ୍ଡପାଟ: ବୈତରଣୀ କୂଳରେ ଗଢ଼ି ଉଠିଥିବା ଭଞ୍ଜ ରାଜବଂଶୀଙ୍କ ଏକ ପୁରାତନ ଗଡ଼

ତତ୍କାଳୀନ କେନ୍ଦୁଝର ଗଡ଼ଜାତ ରାଜ୍ୟରେ କେତେଗୁଡିଏ ଗ୍ରାମକୁ ନେଇ ଗୋଟିଏ ଲେଖାଏ ଦଣ୍ଡପାଟ ଗଠିତ ହୋଇଥିଲା । କେନ୍ଦୁଝର ଗଡ଼ଜାତକୁ ମୋଟ ୪୪ଟି ଦଣ୍ଡାପାଟରେ ବିଭକ୍ତ କରାଯାଇଥିଲା । ଏହା ମଧ୍ୟରୁ ଆନନ୍ଦପୁର ଉପଖଣ୍ଡରେ ସର୍ବାଧିକ ୨୭ଟି ଦଣ୍ଡାପାଟ ରହିଥିବାବେଳେ କେନ୍ଦୁଝର ସଦର ଉପଖଣ୍ଡରେ ୧୩ଟି ଏବଂ ଚଂପୁଆ ଉବଖଣ୍ଡରେ ୪ଟି ଦଣ୍ଡପାଟ ରହିଥିଲା ।

ଆନନ୍ଦପୁର ସବ୍ ଡିଭିଜନରେ ଥିବା ଦଣ୍ଡପାଟଗୁଡ଼ିକ ହେଲେ-

୧· ସନ୍ତୋଷପୁର, ୨· ଆନନ୍ଦପୁର, ୩· ସିଙ୍ଗିଡ଼ି, ୪· ପଢ଼ିଆରୀପଲ୍ଲୀ, ୫· ବାଙ୍ଗୋର, ୬· ବାଲିବରେଇ, ୭· ସୋସୋ, ୮· ସଢ଼ା, ୯· ଓରାଳି, ୧୦· ତଅଁର, ୧୧· ଷଡ଼ଙ୍ଗ, ୧୨· ଜଳସରପୁର,



ଚମକପୁରରେ ବୈତରଣୀ ନଦୀ କୂଳରେ ଏକ ଅଭୁଲା ସନ୍ଧ୍ୟାକାଳୀନ ଦୃଶ୍ୟ

୧୩· ଜମିରା, ୧୪· ସମଣା, ୧୫· ବଞ୍ଚୋ, ୧୬· ବାରପଡା, ୧୭· ବାନ୍ଧଗୋଡା, ୧୮· ପଣ୍ଡୁଆ, ୧୯· ନୟାଗଡ଼, ୨୦· ପଞ୍ଚୁପଲ୍ଲୀ, ୨୧· ବରିପାଳ, ୨୨· ଖାଳିଆମେଣ୍ଟା, ୨୩· ଛ'ଖମାର, ୨୪· ବଳରାମପୁର, ୨୫· ତ୍ରିଲୋଚନପୁର, ୨୬· ଟିଲୋ, ୨୭· ଯୁଯୁପଦା ।

ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣ ପରେ ଟିଲୋ ଦଣ୍ଡପାଟଟି ଅବିଭକ୍ତ ବାଲେଶ୍ୱର (ବର୍ତ୍ତମାନର ଭଦ୍ରକ) ଜିଲ୍ଲାରେ ଏବଂ ଯୁଯୁପଦା ଦଣ୍ଡପାଟ ଅବିଭକ୍ତ କଟକ (ବର୍ତ୍ତମାନର ଯାଜପୁର) ଜିଲ୍ଲାରେ ମିଶିଛି ।

ସେହିଭଳି କେନ୍ଦୁଝର ସଦର ସବ୍ ଡିଭିଜନ ଅନ୍ତର୍ଗତ ଦଣ୍ଡପାଟଗୁଡିକ ହେଲେ-





ଚମକପୁର ଗ୍ରାମଦେବୀ ମା ବାଘୁଳୀ

୧· ରାଜନଗର, ୨· ନୟାକୋଟ, ୩· ଗୌଡ଼ଦେଶ, ୪· ଗଣ୍ଡିବେଢା, ୫· ରଘୁନାଥପୁର, ୬· ଉଦୟପୁର, ୭· ବାରପଡା ପାଞ୍ଚପଡା, ୮· ଚାରିଗଡ଼, ୯· କାଳିଆହତା, ୧୦· ହୁଣ୍ଡା, ୧୧· ରେବଣା, ୧୨· ଭୂୟାଁ ପିଢ, ୧୩· ଜୁଆଙ୍ଗ ପିଢ ।

ଚଂପୁଆ ଉପଖଣ୍ଡ ଅନ୍ତର୍ଗତ ଦଣ୍ଡପାଟଗୁଡିକ ହେଲେ-

୧· ଜ୍ୟୋତିପୁର, ୨· କାଳିକାପ୍ରସାଦ, **୩. ଚମକପୁର**, ୪· ନୟାଗଡ଼ ।

**ଆପଣ ଜାଣି ଆଶ୍ଚର୍ଯ୍ୟ ହେବେ ପ୍ରାୟ ସମସ୍ତ ଦଣ୍ଡପାଟଗୁଡ଼ିକ ବୈତରଣୀ ନଦୀକୂଳରେ ଗଢି ଉଠିଥିଲା** । ତତ୍‌କାଳୀନ ଭଞ୍ଜ ରାଜାମାନେ ବୈତରଣୀ କୂଳରେ ନିଜର ଶାସନ ବ୍ୟବସ୍ଥା ସ୍ଥାପନ କରିବାକୁ ଖୁବ୍ ଆଗ୍ରହୀ ଥିବାର ଏଥିରୁ ସ୍ପଷ୍ଟ ଅନୁମେୟ ।

ସବୁ ଦଣ୍ଡାପାଟଗୁଡିକ ମଧ୍ୟରୁ ଚମକପୁର ଦଣ୍ଡପାଟଟି ଟିକେ ନିଆରା ଥିଲା । ବୈତରଣୀ କୂଳରେ ପ୍ରତିଷ୍ଠିତ ଏହି ଦଣ୍ଡପାଟଟିରେ ରାଜାଙ୍କର ଏକ ପ୍ରାଚୀନଗଡ଼ ରହିଥିଲା । ଏଠାରେ ରାଜ ପରିବାରର ପୂର ଦେବୀ ମା' ବାସୁଳୀଙ୍କ ସ୍ଥାପନା କରାଯାଇ ପୂଜା କରାଯାଉଥିଲା । ଆଜି ବି ମା' ବାସୁଳୀଙ୍କ ମନ୍ଦିର ଏହି ଗାଁରେ ରହିଛି । ପ୍ରତିବର୍ଷ ମା' ବାସୁଳୀଙ୍କ ପୀଠରେ ଉଡ଼ାଯାତ୍ରା ଅନୁଷ୍ଠିତ ହୋଇଥାଏ । ସବୁଠୁ ବଡ଼କଥା ହେଉଛି, ଇଂରେଜ ଶାସନ କାଳରେ କେନ୍ଦୁଝର ଜିଲ୍ଲାର ପ୍ରଥମ ଥାନା ଏହି ଚମକପୁରରେ ପ୍ରତିଷ୍ଠା ହୋଇଥିଲା । ଆଜି ବି ଇଂରେଜ ଅମଳର ପୁରୁଣା ଥାନା କୋଠି ଜରାଜୀର୍ଣ୍ଣ ଅବସ୍ଥାରେ ପଡି ରହିଛି । ପରବର୍ତ୍ତୀ ସମୟରେ ଚମକପୁର ଥାନାଟି ଯୋଡା ଥାନା ଭାବେ ପରିଚିତ ହେଲା ଏବଂ ଏହା ଯୋଡାକୁ ସ୍ଥାନାନ୍ତର ହେଲା ।

ଏହି ଗ୍ରାମଟି ଐତିହାସିକ ଦୃଷ୍ଟିରୁ ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରାମ । ଏଠାରୁ ବହୁ ସଂଖ୍ୟାରେ ପ୍ରାଚୀନ ମୂର୍ତ୍ତି, ଶିଳାଲେଖ ଓ ପୁରୁଣା ମୁଦ୍ରାମାନ ମିଳିଛି । ଗ୍ରାମର ଏଣେତେଣେ ପୁରୁଣା ଖୋଦେଇକରା ପଥରଖଣ୍ଡ ଓ ମୂର୍ତ୍ତିମାନଙ୍କୁ ଲକ୍ଷ୍ୟ କଲେ ଏଠାକାର ପ୍ରାଚୀନ ଐତିହ୍ୟ ସଂପର୍କରେ ଅନୁମାନ କରିହୁଏ । ଏହି ଗ୍ରାମରେ ପ୍ରତ୍ନତତ୍ତ୍ୱ ଖନନ କରାଗଲେ ବହୁ କଥା ଜାଣିହେବ ।

## କାନୁପୁର ଜଳ ଭଣ୍ଡାରରେ ସଲିଳ ସମାଧି ନେବ: ପ୍ରାଚୀନ ଐତିହ୍ୟ ସ୍ଥଳ 'ଛେଳିଡେଗା ପୀଠ'

କେନ୍ଦୁଝର ଜିଲ୍ଲାର ଚଂପୁଆ ସବ୍ ଡିଭିଜନ ଅନ୍ତର୍ଗତ ଯୋଡ଼ା ବ୍ଲକ୍‌ର ଐତିହାସିକ ଚମକପୁର ଗ୍ରାମର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ଏହି ଛେଳିଡେଗା ପ୍ରତ୍ନତାତ୍ତ୍ୱିକ କ୍ଷେତ୍ରଟି ଅବସ୍ଥିତ । ଏହି ସ୍ଥାନଟି ପୂଣ୍ୟତୋୟା ବୈତରଣୀ ନଦୀ କୂଳରେ ଥିବା ଏକ ବିରାଟ ପ୍ରସ୍ତରଶଯ୍ୟା ଉପରେ ଅବସ୍ଥିତ । ଏଠାରେ ଛେଳିଡେଗା ଭାବେ ନିର୍ଦ୍ଦିଷ୍ଟ କୌଣସି ଗ୍ରାମନାହିଁ । ଅତୀତରେ ଏଠାରେ ମୁଣ୍ଡା ସଂପ୍ରଦାୟର ଆଦିବାସୀ ବସବାସ କରୁଥିଲେ, ମାତ୍ର ବର୍ତ୍ତମାନ ଏ ଅଞ୍ଚଳ ଜନଶୂନ୍ୟ । ଏଠାରେ ମହାଦେବ



**ପ୍ରାଚୀନ ପ୍ରତ୍ନତାତ୍ତ୍ୱିକ ପୀଠ; ଛେଳିଡେଗା**

ଧବଳେଶ୍ୱରଙ୍କ ଏକ ମନ୍ଦିର ରହିଛି ।

ରିମୁଳି-ଯୋଡ଼ା ରାସ୍ତା ମଧ୍ୟରେ ଥିବା ବିଲେଇପଦାଠାରୁ ଦକ୍ଷିଣକୁ ଏକ ପାଦଚଲା ରାସ୍ତାରେ ପାଞ୍ଚ କିଲୋମିଟର ଗଲେ ପଡ଼େ ଏହି ଛେଳିଡେଗା । ଛେଳିଡେଗା ଯିବା ବାଟରେ ସୁନା ନଈ ପଡ଼ିଥାଏ । ଛେଳିଡେଗାଠାରେ ଏକ ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟାରେ ପ୍ରାଚୀନ ଯୁଗର ବହୁ ପ୍ରାଚୀନ ମୂର୍ତ୍ତି, ପ୍ରାଚୀନ ଯୁଗର ଇଟା, ପ୍ରସ୍ତରଖଣ୍ଡ, ଶିଳାଲେଖ, ବହୁ ଦେବଦେବୀଙ୍କ ପ୍ରସ୍ତର ମୂର୍ତ୍ତି ପଡି ରହିଥିବାର ଦେଖିବାକୁ ମିଳେ । ଏହି ଭଗ୍ନ ପ୍ରସ୍ତର ମୂର୍ତ୍ତି, ଶିଳାଲେଖ ଉପରେ ଉପଯୁକ୍ତ ଗବେଷଣା ହୋଇପାରି ନଥିବାରୁ ଏହି ପୀଠ ଆଜିବି ଲୋକଲୋଚନର ଆଢୁଆଳରେ ରହିଯାଇଛି ।

ବୈତରଣୀ ନଦୀ କୂଳରେ ଥିବା ବୃହତ୍ ପ୍ରସ୍ତର ଶଯ୍ୟାରେ ଏକାଧିକ ଶିଳାଭିଲେଖ ମଧ୍ୟ ଦେଖିବାକୁ ମିଳେ । ଏଠାରେ ପ୍ରାଚୀନ ଯୁଗର ଧ୍ୱଂସପ୍ରାପ୍ତ ଏକ ବିହାର କିମ୍ବା ନଗରୀର ଛାପ ଦେଖିବାକୁ ମିଳିଥାଏ । ପ୍ରାଚୀନ ଯୁଗର ଇଟା ନିର୍ମିତ ଧ୍ୱଂସସ୍ତୁପକୁ ଦେଖିଲେ ଦିନେ ଏଠାରେ ବିହାର କିମ୍ବା ପ୍ରାସାଦ ଥିବାର ଅନୁମାନ ହୁଏ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ସ୍ୱାକ୍ଷର ବହନ କରୁଥିବା ସ୍ଥାନ ସରକାରଙ୍କ ଦୃଷ୍ଟିଗୋଚର ହୋଇପାରିନାହିଁ । ଏହାର ପ୍ରତ୍ନତାତ୍ତ୍ୱିକ ଖନନ ହୋଇପାରିଲେ ଏହି ପୀଠ ସଂପର୍କରେ ବହୁ ତଥ୍ୟ ଉନ୍ମୋଚିତ ହୋଇପାରନ୍ତା । ସବୁଠୁ ଦୁର୍ଭାଗ୍ୟଜନକ, ଏଠାରେ ପଡ଼ିରହିଥିବା ପ୍ରାଚୀନ ଇଟା, ପ୍ରସ୍ତରଗୁଡ଼ିକୁ ସ୍ଥାନୀୟ ଅଞ୍ଚଳର ଲୋକେ ଘରୋଇ ବ୍ୟବହାର କରୁଛନ୍ତି । ଏଠାରୁ ମଧ୍ୟ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଉପକରଣ, ହାତହତିଆର ମିଳିଛି । ଏହି

କ୍ଷେତ୍ରର ଚତୁର୍ଦ୍ଦିଗରେ ବହୁ ବିଶାଳ ଆକୃତିର ଗୋଲାକୃତି ପଥରଖଣ୍ଡମାନ ପୋତା ହୋଇଥିବାର ଦେଖାଯାଏ । ଏହାକୁ ସ୍ଥାନୀୟ ଅଞ୍ଚଳରେ ଭୀମକାଣ୍ଡ କହନ୍ତି । ପୋତା ହୋଇଥିବା ଏହି ଗୋଲାକୃତି ପଥରକୁ ଲକ୍ଷ୍ୟ କଲେ ଏହି ସ୍ଥାନର ସୀମା ନିର୍ଦ୍ଧାରଣ ସଂପର୍କରେ ଏକ ସ୍ପଷ୍ଟ ସୂଚନା ମିଳିଥାଏ । ଏହି ସ୍ଥାନରୁ ଉଦ୍ଧାର କରାଯାଇଥିବା ଏକ ଶିବଲିଙ୍ଗକୁ ଗ୍ରାମବାସୀମାନେ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରି ସ୍ଥାପନ କରିଛନ୍ତି । ଏହି ଶିବ ଧବଳେଶ୍ୱର ମହାଦେବ ଭାବେ ଏଠାରେ ପୂଜା ପାଉଛନ୍ତି । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏଠାରେ ଅନେକ କୁଣ୍ଡ ରହିଛି ।

ସବୁଠୁ ଦୁଃଖର କଥା ହେଉଛି, କେନ୍ଦୁଝର ଜିଲ୍ଲାର ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ସ୍ଥାନଟି ଏବେ କାନୁପୁର ଜଳଭଣ୍ଡାରରେ ବୁଡିଯିବାକୁ ବସିଛି । କାନୁପୁର ଜଳଭଣ୍ଡାର ନିର୍ମାଣ କାର୍ଯ୍ୟ ଶେଷ ହେବା ପରେ ଏହି ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନ ସ୍ଥଳଟି ଜଳଭଣ୍ଡାରରେ ସଂପୂର୍ଣ୍ଣ ଲୀନ ହୋଇଯିବ ।

## ମିରିଗସିଂଗା ଶୈବପୀଠ

ମିରିଗସିଙ୍ଗା ଶୈବପୀଠଟି ବୈତରଣୀ ନଦୀ କୂଳରେ ଅବସ୍ଥିତ । ରିମୁଳିରୁ ଯୋଡ଼ା ମଧ୍ୟରେ ୨୧୫



ବୈତରଣୀ: ମିରିଗସିଙ୍ଗା

ନମ୍ବର ଜାତୀୟ ରାଜପଥରେ ଏକ ଛକ ପଡିବ ଯାହାର ନାମ ଜଣ୍ଡରା । ଜଣ୍ଡରା ଛକରୁ ବାମ ପାର୍ଶ୍ୱକୁ ପାଞ୍ଚ କିଲୋମିଟର ଦୂର ଗଲେ ମିରିଗସିଙ୍ଗା ଆସିଯାଏ ।

ଏହି ଶୈବପୀଠର ପାର୍ଶ୍ୱରେ ରହିଛି ବିଶାଳ ପ୍ରସ୍ତରଖଣ୍ଡ ଏବଂ ଏହି ପ୍ରସ୍ତର ଉପରେ ପ୍ରଭୁ ରାମଚନ୍ଦ୍ରଙ୍କ ପାଦ ଓ ଆଣ୍ଠୁ ଚିହ୍ନ ରହିଛି । ମକର ଦିନ ପୁଣ୍ୟତୋୟା ବୈତରଣୀରେ ବୁଡ ପକେଇ ଶ୍ରୀରାମଙ୍କ ପାଦ ଦର୍ଶନ ସହ ଶିବ ପୂଜା କଲେ ପୁଣ୍ୟ ମିଳେ ବୋଲି ବିଶ୍ୱାସ ରହିଛି । ଅନ୍ୟପକ୍ଷରେ ଏଠାକାର ବୈତରଣୀ ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଏହା ଗର୍ଭରେ ଥିବା ରାଶିରାଶି ପଥର ଶଯ୍ୟା ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଶୀତଦିନେ ଏଠାରେ ପିକ୍‌ନିକ୍ କରିବାକୁ ବହୁ ସଂଖ୍ୟାରେ ଲୋକେ ଏକତ୍ରିତ ହୋଇଥାନ୍ତି ଏବଂ ବଣଭୋଜିର ମଜା ନେଇଥାନ୍ତି ।

ବୈତରଣୀ ନଦୀ କୂଳରେ ଅବସ୍ଥିତ ବହୁ ପୁରାତନ ଏହି ଶୈବପୀଠରେ ପ୍ରତିବର୍ଷ ମକର ମେଳା ମହା ସମାରୋହରେ ପାଳିତ ହୋଇଥାଏ ।

## ମୃଗେଶ୍ୱର ଶୈବ ପୀଠ ଓ ଦେଓଝର ଜଳ ପ୍ରପାତ

ମୃଗେଶ୍ୱର ଶୈବପୀଠ ଓ ମୁର୍ଗାଝର ପର୍ଯ୍ୟଟନସ୍ଥଳଟି ଯୋଡ଼ା ବ୍ଲକ୍ ଅନ୍ତର୍ଗତ ଦେଓଝର ପଞ୍ଚାୟତରେ ଓଡ଼ିଶା-ଝାଡ଼ଖଣ୍ଡ ସୀମା ବୈତରଣୀ ନଦୀ କୂଳରେ ଅବସ୍ଥିତ । କେନ୍ଦୁଝର ଜିଲ୍ଲା ଦେଇ ଯାଇଥିବା ୨୧୫ ନମ୍ବର ଜାତୀୟ ରାଜପଥର ବିଲେଇପଦା ଛକରୁ ମାତ୍ର ୧୩ କିଲୋମିଟର ଦୂରରେ ଏହି ପର୍ଯ୍ୟଟନ ସ୍ଥଳ ଅବସ୍ଥିତ ।

ବୈତରଣୀ ଦେଓଝର



ଠାକୁରାଣୀ ଜଙ୍ଗଲରୁ ବାହାରିଥିବା ଏକ ଜଳସ୍ରୋତ ମୁର୍ଗା ପାହାଡ଼ର ତଳକୁ ଖସି ଏକ ସୁନ୍ଦରତମ ମନୋରମ ଜଳପ୍ରପାତ ସୃଷ୍ଟି କରିଛି । ଏହାକୁ 'ମୁର୍ଗା ଜଳପ୍ରପାତ' କିମ୍ବା 'ଦେଓଝର ଜଳପ୍ରପାତ' କୁହାଯାଏ । ଏହି ଜଳପ୍ରପାତର ଜଳରାଶି ଜଳ ତଳକୁ ବହିଯାଇ ବିରିକଳା ନିକଟରେ ବୈତରଣୀ ନଦୀ ସହ ମିଶିଛି ।

ଦେଓଝର ଜଳପ୍ରପାତ ନିକଟରେ ରହିଛି ମହାଦେବ ଧବଳେଶ୍ୱରଙ୍କ ମନ୍ଦିର । ଏଠାକାର ଘଞ୍ଚ ଜଙ୍ଗଲ ପରିବେଶ ସାଙ୍ଗକୁ ପ୍ରାକୃତିକ ଶୋଭାରାଜି ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ । ଏହି ଜଙ୍ଗଲରେ ବହୁ ପରିମାଣରେ ମୁର୍ଗା ବୃକ୍ଷ ଥିବାରୁ ଏହାକୁ ମୁର୍ଗା ଜଙ୍ଗଲ ଓ ପାହାଡକୁ ମୁର୍ଗା ପାହାଡ ବୋଲି କୁହାଯାଇଥାଏ । ମୁର୍ଗା ପାହାଡରେ ବାବା ଧବଳେଶ୍ୱର ପୂଜା ପାଉଥିବାରୁ ତାଙ୍କୁ 'ମୁର୍ଗା ମହାଦେବ' ବୋଲି କୁହାଯାଏ ।

ପୁରାଣ ମତରେ ଏହି ବନ ମୃଗ ବନ ନାମରେ ଖ୍ୟାତ ଥିଲା । ଏଠାରେ ମୃଗଧର ମହାଦେବଙ୍କର ଏକ ଲିଂଗ ଥିଲା । ଶିବ ଏହି ବନରେ ବାସ କରୁଥିବା ସମୟରେ ମୃଗ ରୂପି ବ୍ରହ୍ମା ନିଜର ମୃଗ ରୂପି କନ୍ୟା ସନ୍ଧ୍ୟାକୁ ହରଣ କରିବାକୁ ଉଦ୍ୟମ କରିଥିଲେ । ପିତାଙ୍କ ଲୋଲୁପ ଦୃଷ୍ଟିରୁ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ବ୍ରହ୍ମା କନ୍ୟା ସନ୍ଧ୍ୟା ମହାଦେବ ଶିବଙ୍କ ଶରଣ ପଶିଥିଲେ । ଶିବ ବ୍ରହ୍ମାଙ୍କର ଏହି ସ୍ଖଳନକୁ ସହ୍ୟ କରି ନପାରି ମୃଗ ରୂପୀ ବ୍ରହ୍ମାଙ୍କର ଶିର ଛେଦନ କରିଥିଲେ । ସେହିଦିନଠାରୁ ଶିବଙ୍କର ନାମ 'ମୃଗଧର' (ମୃଗେଶ୍ୱର) ଏବଂ ଏହି ବନର ନାମ 'ମୃଗ ବନ' ହୋଇଛି ବୋଲି କୁହାଯାଏ ।

ପୂର୍ବେ ଏହି ବନରେ ବହୁ ସଂଖ୍ୟାରେ ମୃଗ ବାସ କରୁଥିଲେ । ଏହି ପର୍ଯ୍ୟଟନସ୍ଥଳୀକୁ କେନ୍ଦୁଝର ଜିଲ୍ଲା ସମେତ ରାଜ୍ୟର ବିଭିନ୍ନ କୋଣ ଏବଂ ପଡ଼ୋଶୀ ଝାଡଖଣ୍ଡର ଲକ୍ଷାଧିକ ପର୍ଯ୍ୟଟକ ବର୍ଷତମାମ୍ ଆସିଥାନ୍ତି । ଏଠାରେ ମକର ସଂକ୍ରାନ୍ତି ଓ ମହାଶିବରାତ୍ରୀ ବେଶ୍ ଧୁମଧାମରେ ପାଳିତ ହୋଇଥାଏ । ଶ୍ରାବଣ ମାସରେ ଲକ୍ଷାଧିକ ସଂଖ୍ୟାରେ ବୋଲ୍‌ବମ୍ ଭକ୍ତମାନେ ଏଠାରେ ଜଳାଭିଷେକ କରିଥାନ୍ତି ।

## ରାମତୀର୍ଥ ଶୈବ ପୀଠ (ଝାଡ଼ଖଣ୍ଡ)

ଓଡ଼ିଶା ଓ ଝାଡଖଣ୍ଡ ସୀମାରେ ଚଂପୁଆ ଉପଖଣ୍ଡର ବୈତରଣୀ ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ରାମତୀର୍ଥ ପର୍ଯ୍ୟଟନସ୍ଥଳ । ଏଠାରେ ପ୍ରତିବର୍ଷ ମକରମେଳାରେ ଉଭୟ ଓଡ଼ିଶା ଓ ଝାଡ଼ଖଣ୍ଡରୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

ଚଂପୁଆ ବ୍ଲକ୍‌ର ଗୋଧୁଳି ଗାଁ ନିକଟରେ ବହିଯାଇଥିବା ବୈତରଣୀ ନଦୀ କୂଳରେ ଏହି ରାମତୀର୍ଥ ଅବସ୍ଥିତ । ଏଠାରେ ବୈତରଣୀ ନଦୀଟି ଓଡ଼ିଶା ଓ ଝାଡ଼ଖଣ୍ଡର ସୀମାକୁ ଚିହ୍ନିତ କରିଥାଏ । ବୈତରଣୀର ଝାଡ଼ଖଣ୍ଡ ଏବଂ ଓଡ଼ିଶା ପାର୍ଶ୍ୱ ଉଭୟ ରାମତୀର୍ଥ ନାମରେ ଖ୍ୟାତ । ବୈତରଣୀ ନଦୀ

କୂଳରେ ଝାଡ଼ଖଣ୍ଡର ଦେଓଗାଁର ରାମତୀର୍ଥ ପର୍ଯ୍ୟଟନସ୍ଥଳୀକୁ ଲକ୍ଷାଧିକ ଭକ୍ତ ଆସୁଥିବାବେଳେ ଓଡ଼ିଶାର ଚଂପୁଆ ବ୍ଲକ୍‌ର ଗୋଧୂଳିର ରାମତୀର୍ଥ ପର୍ଯ୍ୟଟନ କ୍ଷେତ୍ରକୁ ମଧ୍ୟ ମକର ସଂକ୍ରାନ୍ତିରେ ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

ଝାଡ଼ଖଣ୍ଡ ରାଜ୍ୟ ପକ୍ଷରୁ ବୈତରଣୀ ନଦୀ କୂଳରେ ମହାଦେବ ରାମେଶ୍ୱରଙ୍କ ଏକ ଆକର୍ଷଣୀୟ ମନ୍ଦିର ନିର୍ମାଣ କରାଯିବା ସହିତ ବୈତରଣୀ କୂଳରେ 'ରାମତୀର୍ଥ ଘାଟ' ସ୍ଥାପନ କରାଯାଇଛି । ଏଠାରେ ମଧ୍ୟ ଏକ ରାମ ମନ୍ଦିର, ଜଗନ୍ନାଥଙ୍କ ମନ୍ଦିର, ଦେବୀ ପାର୍ବତୀଙ୍କ ଏକ ଆକର୍ଷଣୀୟ ମନ୍ଦିର ରହିଛି । ଏଠାରେ ପ୍ରତିବର୍ଷ ଶ୍ରୀଗୁଣ୍ଡିଚା ଦିନ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ ।

ବୈତରଣୀ ନଦୀର ଝାଡ଼ଖଣ୍ଡ ଭଳି ଓଡ଼ିଶା ପାର୍ଶ୍ୱରେ ଏହି ପୀଠର ବିକାଶ ସମ୍ଭବପର ହୋଇପାରିନି । ଖୁବ୍ ନିକଟରେ ଗୋଧୂଳି ଗ୍ରାମବାସୀଙ୍କ ସହଯୋଗରେ ବୈତରଣୀର ଚଂପୁଆ ପାର୍ଶ୍ୱରେ ଏକ ନୂତନ ଶିବ ମନ୍ଦିର ପ୍ରତିଷ୍ଠା କରାଯାଇଛି । ତେବେ ଅନ୍ୟାନ୍ୟ ଆନୁଷଙ୍ଗିକ ବିକାଶ ସମ୍ଭବପର ହୋଇନାହିଁ । ମକର ସଂକ୍ରାନ୍ତି ଦିନ ଏଠାକୁ ବୈତରଣୀରେ ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତ ଆସିଥାନ୍ତି । ମକର ସଂକ୍ରାନ୍ତି ଦିନ ଏଠାରେ ବୁଡ଼ ପକେଇଲେ ମୋକ୍ଷପ୍ରାପ୍ତ ହୋଇଥାଏ ବୋଲି ସ୍ଥାନୀୟ ଲୋକଙ୍କର ବିଶ୍ୱାସ ରହିଛି । ବୈତରଣୀ ନଦୀର ଏହି ରାମତୀର୍ଥ ଘାଟରେ ଝାଡଖଣ୍ଡ ସରକାରଙ୍କ ପକ୍ଷରୁ ଏବେ ଏକ ପୋଲ ନିର୍ମାଣ କାମ ଆରମ୍ଭ ହୋଇଛି । ଏହି ପୋଲ ନିର୍ମାଣ କାର୍ଯ୍ୟ ଶେଷ ହୋଇଗଲେ ଓଡ଼ିଶାର କେନ୍ଦୁଝର ଓ ଝାଡଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲାବାସୀଙ୍କ ମଧ୍ୟରେ ଯୋଗାଯୋଗ ସୁଗମ ହୋଇଯିବ । ତେବେ ଏଠାରେ ବୈତରଣୀ ନଦୀ ପଥୁରିଆ ଶଯ୍ୟାରୁ ପ୍ରବଳ ବେଗରେ ତଳକୁ ଖସି ପଡୁଥିବାରୁ ଏକ ଜଳପ୍ରପାତର ଭ୍ରମ ସୃଷ୍ଟି କରିଥାଏ । ଏଠାରେ ଏକ ଜଳ ବିଦ୍ୟୁତ୍ ପ୍ରକଳ୍ପ ଆରମ୍ଭ କରାଯାଇଥିଲା । ମାତ୍ର, ସରକାରଙ୍କ ଆନ୍ତରିକତା ଅଭାବରୁ ଏହା ବନ୍ଦ ହୋଇପଡ଼ିଛି ।

## ଫଗୁ ଘାଟ: ବୈତରଣୀ-କଙ୍ଗିରା ନଦୀର ସଂଗମ ସ୍ଥଳ (ଝାଡ଼ଖଣ୍ଡ-ଓଡ଼ିଶା ସୀମା)

*(The confluence of theBaitaranee and Kangira at Phagu)*

ବୈତରଣୀ ନଦୀ ଯୋଡ଼ା ବ୍ଲକ୍‌ର ବାସୁଦେବପୁର ଦେଇ ଝାଡ଼ଖଣ୍ଡ ସୀମାକୁ ଛୁଇଁବା ପରେ କିଛି ବାଟ ଓଡ଼ିଶା-ଝାଡ଼ଖଣ୍ଡ ସୀମା ଦେଇ ଗତି କରିଛି । ଝାଡ଼ଖଣ୍ଡର ଜୟନ୍ତୀଗଡ଼ ଓ ଓଡ଼ିଶାର ଚଂପୁଆ ସୀମା ଦେଇ ବୈତରଣୀ ଅତିକ୍ରମ କରୁଥିବାବେଳେ ଝାଡ଼ଖଣ୍ଡରୁ ଆସିଥିବା କଙ୍ଗିରା ନଦୀ ଏହା ସହିତ ମିଶିଛି । ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲାରୁ ପ୍ରବାହିତ କଙ୍ଗିରା ନଦୀଟି ମୟୂରଭଞ୍ଜ ଜିଲ୍ଲା



ବୈତରଣୀ-କଙ୍କିରା ମିଳନସ୍ଥଳ: ଫଗୁଘାଟ

ରରୁଆଁ ବ୍ଲକ୍‌ର ଫଗୁ, ପଶ୍ଚିମ ସିଂହଭୂମି ଜିଲ୍ଲାର ଜଗନ୍ନାଥପୁର ବ୍ଲକ୍‌ର ଜୟନ୍ତୀଗଡ଼ ଏବଂ କେନ୍ଦୁଝର ଜିଲ୍ଲାର ଚଂପୁଆ ସୀମାରେ ବୈତରଣୀ ସହ ମିଳିତ ହୋଇଛି । ଏଠାରେ ଉଭୟ ନଦୀର ଏକ ପ୍ରଶସ୍ତ ମୁହାଁଣ ସୃଷ୍ଟି ହୋଇଛି । ଏଠାରେ କଙ୍କିରା ନଦୀଟି ବୈତରଣୀ ଗର୍ଭରେ ବିଲୀନ ହୋଇଯିବା ପରେ ବୈତରଣୀ ଅଧିକ ପୁଷ୍ଟ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସୀମା ଦେଇ ଆଗକୁ ଆଗକୁ ଗତି କରିଛି ।

ବୈତରଣୀ ନଦୀର ସମସ୍ତ ପ୍ରମୁଖ ଉପନଦୀଗୁଡ଼ିକ ମଧ୍ୟରୁ **କଙ୍କିରା** ହେଉଛି ଏକ ବଡ଼ ଉପନଦୀ । ଏହି ନଦୀ ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରୁ ବାହାରିଛି । ମୟୂରଭଞ୍ଜ ଜିଲ୍ଲା ସୀମା ଦେଇ ଦକ୍ଷିଣ-ପଶ୍ଚିମ ଦିଗରେ ପ୍ରବାହିତ ହୋଇ ଚଂପୁଆର ତଳମୁଣ୍ଡରେ କେନ୍ଦୁଝର-ମୟୂରଭଞ୍ଜ-ଝାଡ଼ଖଣ୍ଡର ସୀମାରେ ଫଗୁ (ମୟୂରଭଞ୍ଜ) ନିକଟରେ ବୈତରଣୀ ନଦୀ ସହ ମିଳିତ ହୋଇଛି । ବୈତରଣୀ-କଙ୍କିରା ନଦୀ ମୁହାଁଣର ଏକ ପାର୍ଶ୍ୱରେ ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାର ଜଗନ୍ନାଥପୁର ବ୍ଲକ୍‌ର ଜୟନ୍ତୀଗଡ଼, ଘୁଟୁସାହି, ସରସ୍ୱତୀପୁର, ବାସୁଦେବପୁର ଆଦି ଅଞ୍ଚଳ ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ ମୟୂରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଫଗୁ ଗ୍ରାମଟି ରହିଛି । ମୁହାଁଣର କେନ୍ଦୁଝର ପାର୍ଶ୍ୱରେ ଚଂପୁଆ ରହିଛି ।



ଅତୀତରେ ଫଗୁଠାରେ ବୈତରଣୀ ନଦୀରେ ଏକ ପ୍ରାଚୀନ ନଦୀ ଘାଟ ରହିଥିଲା । ଏହି ଘାଟ ଦ୍ୱାରା ଚଂପୁଆରୁ ରରୁଆଁ ବ୍ଲକ୍ ଏବଂ ଚଂପୁଆରୁ ଜଗନ୍ନାଥପୁର (ଝାଡ଼ଖଣ୍ଡ) ମଧ୍ୟରେ ଯୋଗାଯୋଗ ହୋଇପାରୁଥିଲା । ବର୍ତ୍ତମାନ ଫଗୁ ନିକଟରେ ଏକ ଅତ୍ୟାଧୁନିକ ପୋଲ ନିର୍ମାଣ ହୋଇଯିବା ପରେ କେନ୍ଦୁଝର ଓ ମୟୂରଭଞ୍ଜ ମଧ୍ୟରେ ଯୋଗାଯୋଗ ସୁଗମ ହୋଇଯାଇଛି । ଅପରପକ୍ଷେ, ଚଂପୁଆରୁ ଜଗନ୍ନାଥପୁର (ଝାଡ଼ଖଣ୍ଡ) ମଧ୍ୟରେ ପୋଲ ହୋଇ ନଥିବାରୁ ଏଠାରେ ଏବେ ମଧ୍ୟ ଡଙ୍ଗା ଚଳାଚଳ କରୁଛି । ଖରାଦିନେ ଏଠାରେ କମ୍ ପାଣି ରହୁଥିବାରୁ ଚଂପୁଆର ଲୋକେ ବୈତରଣୀ ନଦୀରେ ଚାଲିଚାଲି ଜଗନ୍ନାଥପୁର (ଝାଡ଼ଖଣ୍ଡ) ଏବଂ ଜଗନ୍ନାଥପୁରର ଲୋକେ ଚଂପୁଆକୁ ଯା'ଆସ କରିଥା'ନ୍ତି ।

## ଚଂପୁଆ ବ୍ଲକ୍‌ର ପ୍ରସିଦ୍ଧ କେଶରୀକୁଣ୍ଡ

ପୁଣ୍ୟତୋୟା ବୈତରଣୀ ନଦୀରେ ମୟୂରଭଞ୍ଜ ଓ କେନ୍ଦୁଝର ସୀମାନ୍ତରେ ରହିଛି ଏହି ପ୍ରସିଦ୍ଧ ପବିତ୍ର କେଶରୀକୁଣ୍ଡ । କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ସରେଇ ଏବଂ ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍ ଅନ୍ତର୍ଗତ କେଶରୀ ଗ୍ରାମ ନିକଟସ୍ଥ ବୈତରଣୀ ନଦୀରେ ଥିବା ପ୍ରସ୍ତର ଶଯ୍ୟା ଉପରେ ଏକ ବିଶାଳ କୁଣ୍ଡ ରହିଛି । ଏହାର ନାମ କେଶରୀକୁଣ୍ଡ ।

ଐତିହାସିକ ସରେଇ ଗାଁଟିରେ ପ୍ରସ୍ତର ଯୁଗର ବହୁ ଅବଶେଷ ମିଳିଥିବାରୁ ଏହାର ସ୍ୱତନ୍ତ୍ର



କେଶରୀକୁଣ୍ଡ

ଗୁରୁତ୍ୱ ରହିଛି । ସରେଇ ଗ୍ରାମ ସମେତ ନିକଟସ୍ଥ ଅସନପାଟ, ରାମଲା, ଜଗନ୍ନାଥପୁର ଅଞ୍ଚଳରୁ ପ୍ରସ୍ତର ଯୁଗର ମଣିଷ ବ୍ୟବହାର କରୁଥିବା ନାନା ପ୍ରକାର ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ଓ କୃଷି ସରଞ୍ଜାମ ମିଳିଛି ।

ସରେଇ ଗ୍ରାମରେ ଥିବା କେଶରୀକୁଣ୍ଡଟି ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ପବିତ୍ର ମକର ସଂକ୍ରାନ୍ତିରେ କେଶରୀକୁଣ୍ଡରେ ବୁଡ଼ ପକାଇଲେ ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି । ଏହା ଉଭୟ ମୟୁରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସୀମାରେ ଥିବାରୁ ଉଭୟ ଜିଲ୍ଲାବାସୀ ଏହି ପୀଠଟିକୁ ନିଜର ବୋଲି ଦାବି କରନ୍ତି । ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ପାଳିତ ହୋଇଥାଏ ଏବଂ ଏହି ଅବସରରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।



କେଶରୀକୁଣ୍ଡରେ ମକରମେଳା



କେଶରୀକୁଣ୍ଡକୁ ନେଇ ଅନେକ କିମ୍ବଦନ୍ତୀ ରହିଛି । ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କ ବନବାସ କାଳରେ ମାତା ସୀତା ବୈତରଣୀ ନଦୀର ଏହି କୁଣ୍ଡରେ ସ୍ନାନ କରିଥିବାର ଲୋକମୁଖରୁ ଶୁଣିବାକୁ ମିଳେ । ଏହାକୁ ସ୍ଥାନୀୟ ଅଞ୍ଚଳରେ 'ସୀତାକୁଣ୍ଡ' କୁହାଯାଇଥାଏ । ମୟୁରଭଞ୍ଜ ଓ କେନ୍ଦୁଝର ଜିଲ୍ଲାକୁ ଦୁଇ ଭାଗ କରିଥିବା ବୈତରଣୀ ନଦୀର ଉଭୟ ବାଲୁକା ଶଯ୍ୟାରେ ପ୍ରତିବର୍ଷ ମକର ମେଳା ଧୁମ୍‌ଧାମରେ ପାଳିତ ହୋଇଥାଏ । ବୈତରଣୀ ନଦୀର ଏହି ସ୍ଥାନରେ ତିନୋଟି କୁଣ୍ଡ ରହିଛି । ଜଳ ପୂର୍ଣ୍ଣ ଏହି କୁଣ୍ଡଗୁଡିକ ଉପରକୁ ଅଲଗା ଅଲଗା ଜଣାଯାଉଥିଲେ ମଧ୍ୟ ଭିତରେ ପରସ୍ପର ସହ ସୁଡ଼ଙ୍ଗ ମାଧ୍ୟମରେ ସଂଯୁକ୍ତ ହୋଇଛନ୍ତି । ମକର ମେଳା ଅବସରରେ ଏଠାକୁ ଆସିଥିବା ଅନେକ ଭକ୍ତ ଗୋଟିଏ କୁଣ୍ଡରେ ବୁଡ଼ ପକେଇ ସୁଡ଼ଙ୍ଗ ମାଧ୍ୟମରେ ଅନ୍ୟ କୁଣ୍ଡରେ ବାହାରନ୍ତି । ଏହି ତିନି କୁଣ୍ଡରେ ସ୍ନାନ କଲେ ପୁଣ୍ୟପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି ।

ଏ ଅଞ୍ଚଳରେ ବସବାସ କରୁଥିବା ସାନ୍ତାଳ ଆଦିବାସୀମାନେ ପୁଣ୍ୟତୋୟା ବୈତରଣୀକୁ ମାଆ ବୋଲି ମାନିଥାନ୍ତି । ଏମାନେ ଶୁଦ୍ଧିକ୍ରିୟା ନିମନ୍ତେ କେଶରୀକୁଣ୍ଡକୁ ଆସିଥାନ୍ତି । ସେମାନଙ୍କ ଦ୍ୱାରା ଏଠାରେ **ଦାମୋଦର ପର୍ବ** (ସାମୁହିକ ଶୁଦ୍ଧିକ୍ରିୟା) ପାଳିତ ହୋଇଥାଏ ।

## ଚଂପୁଆ ବ୍ଲକ୍‌ର ରୂପା କୁଣ୍ଡ ଶୈବ ପୀଠ

ଚଂପୁଆ ବ୍ଲକ୍ ଅନ୍ତର୍ଗତ ଉଚବାଲି ପଞ୍ଚାୟତର କେମୁଣ୍ଡିଆରେ ବୈତରଣୀ ନଦୀ କୂଳରେ ରହିଛି ପବିତ୍ର ରୂପା କୁଣ୍ଡ ପର୍ଯ୍ୟଟନସ୍ଥଳ । ଏଠାରେ ବୈତରଣୀ ନଦୀର ଗଭୀରତା ସର୍ବାଧିକ ଏବଂ ଜଳସ୍ରୋତ ଅଧିକ ପ୍ରଖର ବୋଲି ସ୍ଥାନୀୟ ଲୋକେ କହନ୍ତି । ବୈତରଣୀ ନଦୀ ମଧ୍ୟରେ ଏଠାରେ ଏକ ବିରାଟ ଗଣ୍ଡ (*gorge*) ରହିଛି । ଏହା ହିଁ ରୂପାକୁଣ୍ଡ । ଏହି ଗଣ୍ଡ ମଧ୍ୟରେ ପାଣି ଭିତରେ ରୂପା ନିର୍ମିତ ଏକ ମନ୍ଦିର ରହିଛି ବୋଲି ସ୍ଥାନୀୟ ଲୋକେ କହନ୍ତି ।

ଖରାଦିନେ ବୈତରଣୀରେ ପାଣି କମି ଯାଇଥିବାବେଳେ ଗଣ୍ଡରେ ଧୀବରମାନେ ମାଛ ଧରିବାବେଳେ ପାଣି ଭିତରେ ଚକ୍‌ଚକ୍ କରୁଥିବା ଏହି ଧାତବ ମନ୍ଦିର ଦେଖାଯାଇଥାଏ ବୋଲି ଏଠାକାର ପୂଜକ ବିରଞ୍ଚି ନାରାୟଣ ମିଶ୍ର ଓ ଗଣେଶ୍ୱର ନାଏକ ପ୍ରକାଶ କରନ୍ତି । ଖରାଦିନେ ବୈତରଣୀର ଜଳ ସ୍ୱଚ୍ଛ ଓ ନିର୍ମଳ ହୋଇଯିବାରୁ ଗଣ୍ଡର ଗଭୀରତମ ପ୍ରଦେଶରେ ଥିବା ରୂପାର ମନ୍ଦିରଟିକୁ ସାଧାରଣ ଲୋକେ ମଧ୍ୟ ଦେଖିପାରନ୍ତି । ଏହା ସହିତ

ରୂପା କୁଣ୍ଡ





ସମୟ ସମୟରେ ଗଣ୍ଡ ମଧ୍ୟରେ ଏକ ବିଶାଳକାୟ ମାଛ ପହଁରୁଥିବାର ସ୍ଥାନୀୟ ଲୋକେ ଦେଖିଥିବା କଥା ଏଠାକାର ପୂଜକ କହନ୍ତି । ଏହି ମାଛଟି ଏକ ଦୈବ ମାଛ ବୋଲି ପୂଜକଙ୍କ ମତ ।

ଗଣ୍ଡ ମଧ୍ୟରେ ଥିବା ଏହି ରୂପା ମନ୍ଦିର ବ୍ୟତୀତ ବୈତରଣୀ କୂଳରେ ମହାଦେବଙ୍କ ଏକ ମନ୍ଦିର ରହିଛି । ଏଠାରେ ପୂଜା ପାଉଛନ୍ତି ରୂପେଶ୍ୱର ମହାଦେବ । ଗତ ୧୯୮୬ ମସିହାରେ ଏଠାରେ ଏକ ମନ୍ଦିର ନିର୍ମାଣ କରାଯାଇଛି । ରୂପେଶ୍ୱର ମହାଦେବ ବୈତରଣୀ ନଦୀ ବାଲିରୁ ଆବିର୍ଭାବ ହୋଇଛନ୍ତି । ଜଣେ ଚାଷୀ ନଦୀ କୂଳରେ ଚାଷ କରୁଥିବାବେଳେ ମହାଦେବଙ୍କ ଲିଙ୍ଗରେ କୋଦାଳ ବାଜିଥିଲା । ଏହାପରେ ଚାଷୀଟି ମହାଦେବ ଜାଣିଲାପରେ ଗ୍ରାମବାସୀଙ୍କ ସହଯୋଗରେ ଏଠାରେ ଶିବ ଲିଂଗ ସ୍ଥାପନ କରାଯାଇ ପରେପରେ ମନ୍ଦିର ପ୍ରତିଷ୍ଠା କରାଯାଇଛି । ନିକଟରେ ସୁନାପୋଇ ଠାକୁରାଣୀଙ୍କ ଶାଳ ରହିଛି । ରୂପାକୁଣ୍ଡ ନିକଟରେ ବୈତରଣୀ ନଦୀ କୂଳରେ ଏକ ଘଞ୍ଚ ଶାଳ ବନାନୀ ରହିଛି । ଏଠାରେ ହାତୀ ଦେଖାଯାଆନ୍ତି । ରୂପାକୁଣ୍ଡ ନିକଟରେ ଐତିହାସିକ ନନ୍ଦପୁର, ଅସନପାଟ, ରାମଲା ଆଦି ସ୍ଥାନ ଅବସ୍ଥିତ ଥିବାରୁ ଏ ଅଞ୍ଚଳ ବହୁ ପ୍ରାଚୀନ ବୋଲି ବିଶ୍ୱାସ କରାଯାଏ । ଏ ଅଞ୍ଚଳରୁ ଆଜିର ଦିନରେ ମଧ୍ୟ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଅବଶେଷ *(remains)* ମିଳିବାରେ ଲାଗିଛି । ରୂପାକୁଣ୍ଡଠାରେ ପ୍ରତିବର୍ଷ ମକର ମେଳା ମହାସମାରୋହରେ ପାଳିତ ହୋଇଥାଏ । ଏଠାରେ ମକର ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

## ବୈତରଣୀ-ଖଇରିଭଣ୍ଡନ ନଦୀର ମିଳନସ୍ଥଳ

## ଦୋ-ମୁହାଁଣୀ ଘାଟ



ବୈତରଣୀ-ଖଇରିଭଣ୍ଡନ ନଦୀର
ମିଳନ ସ୍ଥଳ: ଦୋ-ମୁହାଁଣୀ ଘାଟ

କେନ୍ଦୁଝର ଜିଲ୍ଲାର ଚଂପୁଆ ଓ ମୟୂରଭଞ୍ଜ ଜିଲ୍ଲାର ଖୁକୁଳି ବ୍ଲକ୍ ସୀମାରେ ରହିଛି ଏହି ପୁରାଣପ୍ରସିଦ୍ଧ ପ୍ରାଚୀନ ଦୋ-ମୁହାଁଣୀ ଘାଟ । ବୈତରଣୀ ଓ ଏହାର ଉପନଦୀ ଖଇରିଭଣ୍ଡନର ମିଳନ ସ୍ଥଳରେ ଥିବା ଏହି ଦୋ-ମୁହାଁଣୀ ଘାଟଟି ଐତିହାସିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ବୈତରଣୀ ଓ ଖଇରିଭଣ୍ଡନ (କଣ୍ଟାଖଇରି ଓ ଭଣ୍ଡନ ନଦୀର ମିଳନରେ ସୃଷ୍ଟି) ନଦୀର ସଙ୍ଗମ ସ୍ଥଳ ଭାବେ ପରିଚିତ ଏହି ଦୋ-ମୁହାଣୀ ଘାଟଟି ଉଭୟ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲା ପାଇଁ ଏକ ପ୍ରମୁଖ ପୌରାଣିକ ପର୍ଯ୍ୟଟନସ୍ଥଳ ଭାବେ ପ୍ରସିଦ୍ଧିଲାଭ କରିପାରିଛି ।

ଦୋ-ମୁହାଁଣି ଘାଟଟିର ଗୋଟିଏ ପଟେ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ର ପଦ୍ମପୁର (ପୁରାତନ ଜ୍ୟୋତିପୁରଗଡ଼ ସନ୍ନିକଟ) ଗ୍ରାମ ରହିଥିବାବେଳେ ଅନ୍ୟ ପଟରେ ମୟୂରଭଞ୍ଜ ଜିଲ୍ଲାର ଖୁକୁଳି ବ୍ଲକ୍‌ର ଆଦିପୁର (ପୁରାତନ ଆଦିପୁରଗଡ଼) ରହିଛି । ପୂର୍ବେ ଏହା ଏକ ନଦୀ ଘାଟ ଭାବେ ବିଶେଷ ଖ୍ୟାତି ଅର୍ଜନ କରିଥିଲା । ଏବେ ବି ଏହି ନଦୀ



ଦୋ-ମୁହାଁଣୀ ଘାଟରେ ବିଛେଇ ହୋଇ ପଡ଼ିଥିବା ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଏବଂ ପୁରୁଣା ମୂର୍ତ୍ତିସମୂହ



ଦୋ-ମୁହାଁଣୀ ଘାଟରେ ବୈତରଣୀ

ଘାଟରେ କାଠ ନିର୍ମିତ ଦେଶୀ ଡଙ୍ଗା ସହାୟତାରେ ମୟୂରଭଞ୍ଜ ଓ କେନ୍ଦୁଝରର ଲୋକେ ନଦୀ ପାର ହୋଇଥା'ନ୍ତି । ଏବେ ଏଠାରେ ଏକ ପୋଲ ହେବ ବୋଲି ଶୁଣିବାକୁ ମିଳୁଛି ।

ପୋଲ ହୋଇଗଲେ ସେମାନଙ୍କ ଜୀବିକା ବୁଡିଯିବ ବୋଲି ଏହି ଘାଟରେ ଡଙ୍ଗା ବାହୁଥିବା ନାଉରୀ ଭାଗବତ ଧୀବର ଦୁଃଖର ସହ ପ୍ରକାଶ କରନ୍ତି । ନାଉରୀ ଭାଗବତ ଧୀବର ପିଢି ସୂତ୍ରରେ ତାଙ୍କ ବାପାଙ୍କଠାରୁ ଏହି ନାଉରିଆ କାମକୁ ଆପଣେଇ ନେଇଛନ୍ତି । ଭାଗବତ ବୃଦ୍ଧ ହୋଇଯିବା ପରେ ତାଙ୍କର ଭଣଜା ବଲ୍ଲଭ ଭୂମିଜ ମଧ୍ୟ ଏହି ଡଙ୍ଗା ଘାଟର ଦାୟିତ୍ୱ ନେଇଛନ୍ତି ।

ଗଙ୍ଗା-ଯମୁନାର ସଂଗମ ସ୍ଥଳ ପ୍ରୟାଗ ଭଳି ବୈତରଣୀ-ଖଇରିଭଣ୍ଡନର ସଂଗମ ସ୍ଥଳ ଏହି ଦୋ-ମୁହାଁଣି ଘାଟଟି ଏକ ପବିତ୍ର ସ୍ଥଳ ଏବଂ ଏଠାରେ ବୁଡ଼ ପକେଇଲେ କିମ୍ବା ଅସ୍ଥି ବିସର୍ଜନ କଲେ ମୋକ୍ଷପ୍ରାପ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । ପ୍ରତିବର୍ଷ ଶୀତଦିନେ ଏହି ଦୋ-ମୁହାଁଣୀ ଘାଟକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି ଏବଂ ବୈତରଣୀ ନଦୀର ସୌନ୍ଦର୍ଯ୍ୟଭରା ରୂପକୁ ଉପଭୋଗ କରିଥାନ୍ତି ।

ଏଠାରେ ମାର୍କଣ୍ଡ ଋଷିଙ୍କ ପୁତ୍ର ମୃକଣ୍ଡ ମହର୍ଷିଙ୍କ ମଠ ସ୍ଥାପନ ହୋଇଥିଲା ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି କ୍ଷେତ୍ରର ପୂର୍ବ ଦିଗରେ ଆଦିପୁର, ପଶ୍ଚିମରେ ପଦ୍ମପୁର, ଦକ୍ଷିଣରେ ଜ୍ୟୋତିପୁର ଓ ଉତ୍ତର ଦିଗରେ ଦେଓଡିପା ଅବସ୍ଥିତ । ଆଦିପୁରର ଇଷ୍ଟଦେବତା ନୀଳକଣ୍ଠେଶ୍ୱର ମହାଦେବ

ହୋଇଥିବାବେଳେ ଏଠାରେ ତାଙ୍କର ଏକ କାରୁକାର୍ଯ୍ୟଭରା ପୁରୁଣା ମନ୍ଦିର ରହିଛି । ପୁରୁଣା ମନ୍ଦିରଟି ସମୟାନୁକ୍ରମେ ଭାଙ୍ଗିରୁଜି ଯାଇଛି । ତେବେ ସ୍ଥାନୀୟ ଅଞ୍ଚଳର ଲୋକମାନଙ୍କ ସହଯୋଗରେ ଏଠାରେ ଏକ ନୂତନ ମନ୍ଦିର ନିର୍ମିତ ହୋଇପାରିଛି ।

ଦୋ-ମୁହାଁଣୀ ଘାଟର ପବିତ୍ର ପାଣି ସଂଗ୍ରହ କରି ଯେଉଁ ସ୍ଥାନରେ ସିଞ୍ଚନ କରାଯିବ ସେ ସ୍ଥାନ ଶୁଦ୍ଧ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏଠାରେ ମହାଶିବରାତ୍ରୀ, ମକର ମେଳା ବେଶ୍ ଧୁମଧାମରେ ପାଳିତ ହୋଇଥାଏ । ଏହି ଦୋ-ମୁହାଁଣୀ ଘାଟକୁ ପଞ୍ଚତୀର୍ଥ ବୋଲି ବର୍ଣ୍ଣନା କରାଯାଇଥାଏ । ପୁରାଣର ବର୍ଣ୍ଣନା ଅନୁସାରେ, ଏହି ଘାଟ ଗଂଗାଠାରୁ ମଧ୍ୟ ପ୍ରାଚୀନ । ଏହି ପଞ୍ଚତୀର୍ଥରେ ଜଳେଶ୍ୱର ମହାଦେବ, ମହୋଦଧି, ମୁକ୍ତେଶ୍ୱର ମହାଦେବ, ଧବଳେଶ୍ୱର ଓ ନୀଳକଣ୍ଠେଶ୍ୱର ବିରାଜମାନ କରିଛନ୍ତି । ଦୋ-ମୁହାଁଣୀ ଘାଟ ସନ୍ନିକଟ ରୁପା କୁଣ୍ଡଠାରେ ମୁର୍କଣ୍ଡ ଋଷିଙ୍କର ଯଜ୍ଞକୁଣ୍ଡ ରହିଥିବାର ସ୍ଥାନୀୟ ଲୋକେ କୁହନ୍ତି । ଏହି କୁଣ୍ଡଟି ବୈତରଣୀ ନଦୀର ଏକ ଗଭୀର ଗଣ୍ଡ ମଧ୍ୟରେ ଅବସ୍ଥିତ । ନଦୀକୂଳରେ ଗୋ ସଂପଦର ସୁବିଧା ଦୃଷ୍ଟିରୁ ମହାଭାରତ କାଳର ବିରାଟ ରାଜାଙ୍କ ଏକ ଗୋଧନ ଶାଳା ଏଠାରେ ରହିଥିବାର କିମ୍ବଦନ୍ତୀ ରହିଛି ।

ବୈତରଣୀ ନଦୀର ଗୋଟିଏ ପଟେ ଆଦିପୁରରେ ଆଦି ଭଞ୍ଜଙ୍କର ରାଜଧାନୀ ରହିଥିବାବେଳେ

ଦୋ-ମୁହାଁଣୀ: ଏପଟେ ବୈତରଣୀ ଓ ସେପଟେ ଖଇରୀଭଣ୍ଡନ ନଦୀ ମିଳିତ ହୋଇଛନ୍ତି



ନଦୀର ଆରପଟେ ଜ୍ୟୋତିପୁରଠାରେ ଜ୍ୟୋତି ଭଞ୍ଜଙ୍କ ରାଜଧାନୀ ରହିଛି । ଆଦି ଭଞ୍ଜଙ୍କ ପ୍ରଥମ ରାଜଧାନୀ 'ଆଦିପୁରଗଡ଼' ପରବର୍ତ୍ତୀ ସମୟରେ ବାରିପଦାକୁ ସ୍ଥାନାନ୍ତର ହୋଇଥିବାବେଳେ ଜ୍ୟୋତି ଭଞ୍ଜଙ୍କ ପ୍ରଥମ ରାଜଧାନୀ ଜ୍ୟୋତିପୁରଗଡ଼ ପରବର୍ତ୍ତୀ ସମୟରେ କେନ୍ଦୁଝରଗଡ଼କୁ ସ୍ଥାନାନ୍ତରିତ ହୋଇଛି । ଅତୀତରେ ଏହି ଦୁଇ ରାଜ୍ୟ ଖିଜିଂ ମଣ୍ଡଳର ଅଧୀନ ଥିଲା । ଏହି ସ୍ଥାନରେ 'ମହାଭାରତ' ସଂପର୍କିତ ଅନେକ ସ୍ଥାନମାନ ରହିଥିବାର ଏବେବି ଦୃଷ୍ଟିଗୋଚର ହୋଇଥାଏ । 'ପାଣ୍ଡବ' ଶବ୍ଦ ଅନୁସାରେ ପାଣ୍ଡରାଶିଳି, ଅର୍ଜୁନଙ୍କ ନାମାନୁସାରେ ଅର୍ଜୁନବିଲା ଭଳି ସ୍ଥାନ ଏବେ ବି ରହିଛି ।

ତୋ-ମୁହାଁଣୀ ଘାଟରେ ମଧ୍ୟ ଜାତିର ପିତା ମହାତ୍ମା ଗାନ୍ଧୀ, ଶାନ୍ତି ଦୂତ ତଥା ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀ, ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁଙ୍କ ଚିତାଭସ୍ମ ବିସର୍ଜନ କରାଯାଇଛି । ପ୍ରାଚୀନ କୀର୍ତ୍ତି ବହନ କରିଆସୁଥିବା ନୀଳକଣ୍ଠେଶ୍ୱର ମନ୍ଦିର, ଭଗ୍ନ ଅବସ୍ଥାରେ ପଡିରହିଥିବା ବହୁ ପ୍ରାଚୀନ କୀର୍ତ୍ତିରାଜି ବୈତରଣୀ ଓ ଖଇରିଭଣ୍ଡନ ନଦୀର ଗତିପଥ ପରିବର୍ତ୍ତନ ଯୋଗୁଁ ନଦୀ ମଧ୍ୟରେ ଲୀନ ହୋଇଯାଇଛି ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୨୩୫, ୨୩୬, ୨୩୭)

## କେନ୍ଦୁଝର ଜିଲ୍ଲାର ପ୍ରାଚୀନ ବିଷ୍ଣୁପୀଠ: ନନ୍ଦପୁରର 'କପିଳ ମୁନି ପୀଠ'

ଚଂପୁଆ ବ୍ଲକ୍ ଅନ୍ତର୍ଗତ ଐତିହାସିକ ଜ୍ୟୋତିପୁରଗଡ଼ ନିକଟସ୍ଥ ନନ୍ଦପୁର ଗ୍ରାମରେ ବୈତରଣୀ କୂଳରେ ରହିଛି ବହୁ ପୁରାତନ ଐତିହାସିକ କପିଳମୁନି ପୀଠ । ଏଠାରେ ମହାଦେବ କପିଳେଶ୍ୱରଙ୍କର



ଏକ ମନ୍ଦିର ରହିଛି । ମାତ୍ର, ଏହା ଏକ ପ୍ରାଚୀନ ବିଷ୍ଣୁ ପୀଠ ଭାବେ ବେଶ୍ ପରିଚିତ । ଏଠାରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁଙ୍କର ଅନେକ ପୁରାତନ ମୂର୍ତ୍ତି ରହିଛି । ଏଠାରେ ମଧ୍ୟ କିଛି ବୌଦ୍ଧ ତନ୍ତ୍ର ଦେବୀଙ୍କର ମୂର୍ତ୍ତି ଦେଖିବାକୁ ମିଳିଥାଏ ।

ମନ୍ଦିର ନିର୍ମାଣ ଓ ମୂର୍ତ୍ତି ଗଠନ ଶୈଳୀରୁ ଏହା ବଲାଂଗୀରର ରାଣୀପୁର ଝରିଆଲ୍‌ର ଚଉଷଠୀ ଯୋଗିନୀ ପୀଠ ଓ ଭୁବନେଶ୍ୱର ନିକଟସ୍ଥ ହୀରାପୁରରେ ଥିବା ଯୋଗିନୀ ପୀଠ ସହ ଅନେକ ସାଦୃଶ୍ୟ ରଖିଥାଏ ।

ଏହା ଏକ ବିଷ୍ଣୁପୀଠ ହୋଇଥିଲାବେଳେ ସ୍ଥାନୀୟ ଅଞ୍ଚଳରେ ଏହା ଏକ ଶୈବପୀଠ ଭାବେ ଜଣାଶୁଣା । ପ୍ରାୟ ଦଶ ଏକର ବିଶିଷ୍ଟ ସୁଦୀର୍ଘ ବର୍ତ୍ତୁଳାକାର ପଥର ଚଟାଣ ଉପରେ ବିଷ୍ଣୁଙ୍କର ଅନେକ ମୂର୍ତ୍ତି ଓ ମନ୍ଦିରସମୂହ ଏବେ ଧ୍ୱଂସମୁଖୀ ଅବସ୍ଥାରେ ପଡ଼ିରହିଛି । ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ଆଜିଯାଏ ସମ୍ଭବପର ହୋଇପାରିନାହିଁ । ଏଠାରେ ଥିବା ବିଶାଳ ପଥର ଚଟାଣର ମଧ୍ୟ ସ୍ଥଳରେ ଏକ ପ୍ରାକୃତିକ ପୁଷ୍କରିଣୀ ରହିଛି । କପିଳେଶ୍ୱର ଚଟାଣରେ ଅବସ୍ଥିତ 'ପିହ୍ଲେଇ ପେଟି' ନାମରେ ଏକ ଦେବୀଶାଳ ରହିଛି । 'ପ୍ଲୀହା' ରୋଗାକ୍ରାନ୍ତ ଯେକୌଣସି ରୋଗୀ ଦେବୀଙ୍କ ପାଦୁକା ସେବନ କଲେ ରୋଗ ଉପଶମ ହୋଇଥାଏ ବୋଲି ବିଶ୍ୱାସ ରହିଛି । ଏଣୁ ବର୍ଷର ବିଭିନ୍ନ ସମୟରେ ଏଠାକୁ ବହୁ ପେଟ ରୋଗୀଙ୍କ ଆଗମନ ହୋଇଥାଏ ।



କପିଳେଶ୍ୱର ଚଟାଣ ଉପରେ 'ଦେବଖିରି' ନାମରେ ଏକ ପର୍ବ ପାଳିତ ହୋଇଥାଏ । ମହା ସପ୍ତମୀ ଦିନ ଏହି 'ଦେବଖିରି' ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ଦିନ ଜ୍ୟୋତିପୁର ଦଣ୍ଡପାଟର ପ୍ରାୟ ପ୍ରତ୍ୟକ ପରିବାରର ପ୍ରତିନିଧିମାନେ ଅରୁଆ ଚାଉଳ, ଗୁଡ, ମୁଗଡାଲି, ଦୁଗ୍ଧ, ଦହି, ଘିଅ, ବାଇଶ ମସଲା ଆଦି ମିଶ୍ରଣରେ ଦେବଖିରି ଖେଚୁଡ଼ି ପ୍ରସ୍ତୁତ କରାଯାଇ କପିଳେଶ୍ୱରଙ୍କୁ ଭୋଗ ଦିଆଯାଇଥାଏ । ଏହା ପରେ କପିଳେଶ୍ୱର ଚଟାଣ ଉପରେ ସମସ୍ତେ ଏକତ୍ର ବସି ପ୍ରସାଦ ସେବନ କରିଥାନ୍ତି । କପିଳ ମୁନିଙ୍କର କାମଧେନୁ ଗାଇକୁ ବାଘ ଏହି ଚଟାଣ ଉପରେ ମାରି ଦେଇଥିବାର ସଂକେତ ସ୍ୱରୂପ ଏହି ପଥର ଉପରେ ବାଘ ଓ ଗାଇ ଖୋଜର ଚିହ୍ନ ରହିଛି ।

ଗ୍ରାମର ପୁରୁଖା ଲୋକ ପୁରୁଷୋତ୍ତମ ପ୍ରଧାନଙ୍କ କହିବା ଅନୁସାରେ, ମୟୂରଭଞ୍ଜର ଖିଚିଂ ନିକଟସ୍ଥ ବିରାଟଗଡ଼ରେ ବିରାଟ ରାଜାଙ୍କ ନିକଟରେ ପଞ୍ଚ ପାଣ୍ଡବ ଅଜ୍ଞାତବାସରେ ରହିଥିଲେ । ବନବାସର ଏକବର୍ଷ ତେର ଦିନ ଅଜ୍ଞାତବାସ ପରେ ଯୁଧିଷ୍ଠିର ଭାଇମାନଙ୍କ ସହିତ ବିଷ୍ଣୁ ପୂଜା କରିବା ପାଇଁ ଚନ୍ଦନ ଯାତ୍ରାର ଆୟୋଜନ କରିଥିଲେ । ପାଣ୍ଡବମାନେ ଏହି ସମୟରେ କୀଚକ ବଧ କରି ନନ୍ଦପୁରଠାରେ ବିଷ୍ଣୁ ମୂର୍ତ୍ତି ସ୍ଥାପନ କରିଥିଲେ । ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରୁ ୩୬ତମ ନାମ ହେଉଛି କପିଳ ମୁନି । ତାଙ୍କରି ନାମାନୁସାରେ ଏହି ବିଷ୍ଣୁ ପୀଠର ନାମ 'କପିଳ ମୁନି ପୀଠ' ରଖାଯାଇଛି ।

ଅନ୍ୟ ଏକ ଲୋକ କାହାଣୀ ଅନୁସାରେ ଚତୁର୍ଦଶ ଶତାବ୍ଦୀରେ କୋଣାର୍କରେ ସୂର୍ଯ୍ୟ ମନ୍ଦିର ନିର୍ମାଣ ସମୟରେ ଶିଳ୍ପୀମାନେ କୋଣାର୍କକୁ ଯାଉଥିବା ସମୟରେ ଏହି ନନ୍ଦପୁର ଗାଁରେ ରାତ୍ରୀଯାପନ କରିଥିଲେ । ସେହି ରାତିକ ମଧ୍ୟରେ ଶିଳ୍ପୀମାନେ କପିଳ ମୁନିଙ୍କ ମନ୍ଦିରସମୂହ ନିର୍ମାଣ କରିଥିଲେ ଏବଂ ଏହା ସଂପୂର୍ଣ୍ଣ ହୋଇ ପାରି ନଥିଲା । ଏହି ମନ୍ଦିରସମୂହର ପୁନରୁଦ୍ଧାର କରାଯାଇପାରିଲେ ଚତୁର୍ଦଶ ଶତାବ୍ଦୀର ଏହି ଐତିହାସିକ କୀର୍ତ୍ତିରାଜି ସଂରକ୍ଷିତ ହୋଇପାରନ୍ତା ।

## ବୈତରଣୀ ନଦୀ କୂଳରେ ଅବସ୍ଥିତ ତତ୍କାଳୀନ କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ; 'ଜ୍ୟୋତିପୁରଗଡ' ଏବଂ ମୟୁରଭଞ୍ଜ ରାଜ୍ୟର ପ୍ରଥମ ରାଜଧାନୀ; 'ଆଦିପୁରଗଡ଼'

ରାଜାରାଜୁଡ଼ା କାଳରେ ବୈତରଣୀ ନଦୀକୁ ସର୍ବାଧିକ ଗୁରୁତ୍ୱ ଦିଆଯାଇଥିବା କଥା ଇତିହାସର ପୃଷ୍ଠା ଲେଉଟାଇଲେ ଜଣାପଡ଼େ । ଭଞ୍ଜବଂଶୀ ରାଜାମାନେ ନିଜର ସୁରକ୍ଷା ଦୃଷ୍ଟିରୁ ବୈତରଣୀ ନଦୀ କୂଳରେ ନିଜର ରାଜନଅର ଓ ରାଜଦୁର୍ଗ ପ୍ରତିଷ୍ଠା କରିବାକୁ ଅଧିକ ପସନ୍ଦ କରୁଥିଲେ । ଖିଚିଂର ବିରାଟଗଡ଼ ଓ କୀଚକଗଡ଼ଠାରୁ ଆରଂଭ କରି ଜ୍ୟୋତିପୁରଗଡ଼, ଆଦିପୁରଗଡ, ଉଦୟପୁରଗଡ଼,



**ଜ୍ୟୋତିପୁର ଗଡ଼ ବୈତରଣୀ କୂଳରେ ଲେଖକ**

ନୟାଗଡ଼, ଚମକପୁରଗଡ଼, ରାଜନଗର, ଆନନ୍ଦପୁର, ବଞ୍ଚୋ ପର୍ଯ୍ୟନ୍ତ ସମସ୍ତ ନିର୍ମାଣ ବୈତରଣୀ କୂଳେକୂଳେ ସଂଭବ ହୋଇଛି ।

ଐତିହାସିକ ଦୃଷ୍ଟିକୋଣରୁ ଜ୍ୟୋତିପୁରଗଡ଼ଟି କେନ୍ଦୁଝର ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ଏହି ଜ୍ୟୋତିପୁରଗଡ଼ଟି କେନ୍ଦୁଝର ରାଜ୍ୟର ସର୍ବପ୍ରଥମ ରାଜଧାନୀ ଥିଲା ।

ନୂତନ ଭାବେ କେନ୍ଦୁଝର ରାଜ୍ୟ ସୃଷ୍ଟି ହେବା ଦିନଠାରୁ ରାଜ୍ୟର ପ୍ରଥମ ରାଜା ଜ୍ୟୋତିଭଞ୍ଜ (ଖ୍ରୀ.ଅ ୧୧୨୮– ଖ୍ରୀ.ଅ. ୧୧୫୮) ଏଠାରେ ରାଜଧାନୀ ନିର୍ମାଣ କରି ଶାସନ କାର୍ଯ୍ୟ ଆରମ୍ଭ କରିଥିଲେ । ଏହାର ପ୍ରମାଣସ୍ୱରୂପ ଏବେ ବି ବୈତରଣୀ କୂଳରେ ଏହି ରାଜବାଟୀର ଧ୍ୱଂସସ୍ତୁପ ଏବଂ ରାଜପ୍ରାସାର ଚତୁର୍ପାର୍ଶ୍ୱରେ ଏକ ଗଡଖାଇ ରହିଛି ।

ଐତିହାସିକଙ୍କ ମତରେ, ପୂର୍ବେ କେନ୍ଦୁଝର ଓ ମୟୂରଭଞ୍ଜ ଉଭୟ ମିଶି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟର ନାମ ଥିଲା ହରିହରପୁର । ଏହି ରାଜ୍ୟଟି ସେତେବେଳେ ଖିଜିଂ (ଖିଚିଂ) ମଣ୍ଡଳରେ ଅନ୍ତର୍ଭୁକ୍ତ ଥିଲା । ଖିଚିଂକୋଟ ଏହାର ରାଜଧାନୀ ଥିଲା । ଏହା ପୂର୍ବରୁ ବୌଦ୍ଧ ଧର୍ମାବଲମ୍ବୀ ରାଜାଙ୍କ ଶାସନ କାଳରେ ଏହା ଜାହୋର ରାଜ୍ୟ ଭାବେ ପ୍ରସିଦ୍ଧିଲାଭ କରିଥିଲା । ଜାହୋର

ରାଜ୍ୟ ଗଠନ ପୂର୍ବରୁ ଏହି ରାଜ୍ୟ 'ବିନ୍ଧ୍ୟାଟବୀ' ନାମରେ ପରିଚିତ ଥିଲା । ଏହା ପୂର୍ବରୁ ଏହି ଭୂ-ଖଣ୍ଡଟି ଯମଗର୍ତ୍ତ ମଣ୍ଡଳ ନାମରେ ଚିହ୍ନିତ ହେଉଥିଲା । ତେବେ ହରିହରପୁର ରାଜ୍ୟ ବିଭାଜିତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଭାବେ ମୁଣ୍ଡ ଟେକିଲା ।

ରାୟ ସାହେବ କ୍ଷେତ୍ରମୋହନ ମିଶ୍ରଙ୍କ ରଚିତ 'କେନ୍ଦୁଝର' ପୁସ୍ତକରେ ଥିବା ତଥ୍ୟ ଅନୁସାରେ, କେନ୍ଦୁଝର ଓ ମୟୂରଭଞ୍ଜକୁ ମିଳିତ ଭାବେ ହରିହରପୁର ରାଜ୍ୟ କୁହାଯାଉଥିଲା । ଏହି ରାଜ୍ୟର ରାଜା ଜୟସିଂହଙ୍କର ଦୁଇ ପୁତ୍ର ଥିଲେ । ଜଣେ ଜଣେ ଆଦି ସିଂ ଓ ଅନ୍ୟ ଜଣେ ଜ୍ୟୋତି ସିଂ । ପରବର୍ତ୍ତୀ କାଳରେ ହରିହରପୁରଗଡ଼ ବିଭାଜିତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ପୃଥକ ରାଜ୍ୟ ହୋଇଗଲେ । ଆଦି ସିଂ (ଆଦି ଭଞ୍ଜ) ହେଲେ ମୟୂରଭଞ୍ଜର ରାଜା ଓ ଜ୍ୟୋତି ସିଂ (ଜ୍ୟୋତି ଭଞ୍ଜ) ହେଲେ କେନ୍ଦୁଝରର



ଜ୍ୟୋତିପୁରଗଡ଼ସ୍ଥ ବୈତରଣୀ ନଦୀରେ ଥିବା ନିୟମକରା ପଥର



ଭଗ୍ନ ଜ୍ୟୋତିପୁରଗଡ଼



ଭଗ୍ନ ଜ୍ୟୋତିପୁରଗଡ଼

ରାଜା । କେନ୍ଦୁଝରର ପ୍ରଥମ ରାଜା ଭାବେ ଜ୍ୟୋତିଭଞ୍ଜ ବୈତରଣୀ ନଦୀ କୂଳରେ ଜ୍ୟୋତିପୁରଠାରେ ନିଜର ଗଡ଼ ସ୍ଥାପନ କରି ଶାସନ କାର୍ଯ୍ୟ ଆରମ୍ଭ କରିଥିଲେ ।

ଜ୍ୟୋତିପୁରଗଡ଼ର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ମୟୁରଭଞ୍ଜର ପ୍ରଥମ ରାଜା ଆଦିଭଞ୍ଜଙ୍କ ଆଦିପୁରଗଡ଼ ମଧ୍ୟ ଅବସ୍ଥିତ । ଏହି ଦୁଇଟି ଗଡ଼କୁ କେବଳ ବୈତରଣୀ ନଦୀ ହିଁ ପୃଥକ କରିପାରିଛି । ଏଣୁ ଐତିହାସିକ ଦୃଷ୍ଟିକୋଣରୁ ଜ୍ୟୋତିପୁରଗଡ଼ ଅତ୍ୟନ୍ତ ଗୁରୁତ୍ୱ ବହନ କରିଥାଏ ।

ଜ୍ୟୋତିପୁରଗଡ଼ରେ ଭଗବାନ ଜଗନ୍ନାଥ ଦଧିବାମନଜିଉଙ୍କ ନାମରେ ପୂଜା ପାଇ ଆସୁଛନ୍ତି । ଏଠାରେ ରଥଯାତ୍ରା ଧୂମଧାମରେ ପାଳିତ ହୋଇଥାଏ । ଦଧିବାମନଜିଉଙ୍କ ବ୍ୟତୀତ ଏଠାରେ ମା' ବାସୁଳି, ମା' ଅଖାରୀ ଏବଂ ମା' ଦୁର୍ଗା ମନ୍ଦିର ରହିଛି । ଏଠାରେ ମହାଦେବ ଶିବଙ୍କର ଏକ ମନ୍ଦିର ସମେତ ହନୁମାନଙ୍କର ଏକ ମନ୍ଦିର ରହିଛି । ବୈତରଣୀ ନଦୀ କୂଳରେ ଅବସ୍ଥିତ ଜ୍ୟୋତିପୁର ଗଡ଼ର ପରିବେଶ ଓ ଭୌଗୋଳିକ ଅବସ୍ଥିତି ଅତ୍ୟନ୍ତ ମନମୁଗ୍ଧକର ।

ବୈତରଣୀ ନଦୀକୂଳରେ ଜ୍ୟୋତି ଭଞ୍ଜ ଓ ଆଦି ଭଞ୍ଜଙ୍କ ସ୍ମୃତି ବହନ କରୁଥିବା 'ନିୟମକରା ପଥର' ଏବେ ବି ଦୃଶ୍ୟମାନ ହୋଇଥାଏ । ଏହି ନିୟମକରା ପଥରକୁ ନେଇ ଏକ କିମ୍ବଦନ୍ତୀ ରହିଛି । ହରିହରପୁର ଗଡ଼ର ରାଜକୁମାର ଜ୍ୟୋତିଭଞ୍ଜ ଓ ଆଦିଭଞ୍ଜ ସାନ ପିଲା ଥିଲାବେଳେ ସେମାନେ ବୈତରଣୀକୁ ସ୍ନାନ କରିବାକୁ ଆସୁଥିଲେ । ନଦୀରେ ଥିବା ନିୟମକରା ପଥର ଉପରେ ବସି ଉଭୟ ସ୍ନାନ କରୁଥିଲେ । ଯେତେବେଳେ ଉଭୟ ଭାଇଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା, ସେତେବେଳେ ଏହି ନିୟମକରା ପଥରଟି ଦୁଇ ଫାଳ ହୋଇଯାଇଥିଲା । ପରେ ଜ୍ୟୋତିପୁର ଓ ଆଦିପୁର ଦୁଇଟି ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି ହୋଇଥିଲା । ସେହିଦିନଠାରୁ ଏହି ନିୟମକରା ପଥରଟି ଦୁଇ ଫାଳ ହୋଇ ବୈତରଣୀ ନଦୀରେ ପଡି ରହିଛି ବୋଲି ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ ।

[ତଥ୍ୟ ସହାୟତା

୧. 'ସମୟର ଆଇନାରେ କେନ୍ଦୁଝର' ଲେଖକ: ରମେଶ ଚନ୍ଦ୍ର ଚକ୍ରବର୍ତ୍ତୀ, ପୃଷ୍ଠା-୪୭

୨. 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା-୧୦୮, ୧୦୯, ୧୧୦ ]

## ଖଲି ଚୌପଦି ଘାଟ

ଚଂପୁଆ ବ୍ଲକ୍‌ର ସିଙ୍ଗିଡ଼ି ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଫୁଲକଅଁଳେଇ ଗ୍ରାମ ଉପକଣ୍ଠରେ ପୁଣ୍ୟତୋୟା ବୈତରଣୀ ନଦୀ ଘାଟକୁ 'ଖଲି ଚୌପଦି ଘାଟ' ବୋଲି କୁହାଯାଇଥାଏ । ଜ୍ୟୋତିପୁର ନିକଟରେ

ଏହି ଘାଟଟି ଅବସ୍ଥିତ । ପୌରାଣିକ ମତ ଅନୁସାରେ, ମତ୍ସ୍ୟ ଦେଶ (ପ୍ରାଚୀନ କେନ୍ଦୁଝର)ରେ ପାଣ୍ଡବମାନେ ଅଜ୍ଞାତ ବନବାସ କରିବା ପୂର୍ବରୁ ବୈତରଣୀ ନଦୀର ଏହି ଘାଟରେ ଅନ୍ନ ପାକ କରି ଏହି ପଥର ଚଟାଣ ଉପରେ ଭୋଜନ କରିଥିଲେ । ଆଜିର ଦିନରେ ମଧ୍ୟ ଏହି ପଥର ଚଟାଣ ଉପରେ ଖଲି, ଚୌପତି ଓ ଏକ ଘଟ (କଳସ)ର ଚିହ୍ନ ଦୃଶ୍ୟମାନ ହୋଇଥାଏ । ଏଣୁ ଲୋକେ ଏହି ନଦୀ ଘାଟକୁ 'ଖଲି ଚୌପତି ଘାଟ' କହିଥାନ୍ତି । ଏଠାରେ ମାଟି ତଳୁ ବହୁ ପ୍ରାଚୀନ ମୂର୍ତ୍ତି ମିଳିଛି । ଏଠାରୁ ମିଳିଥିବା ଏସବୁ ମୂର୍ତ୍ତି ମଧ୍ୟରେ ଚତୁର୍ଭୁଜା ବନଦୁର୍ଗାଙ୍କ ମୂର୍ତ୍ତି ରହିଛି । ସୂଚନାଯୋଗ୍ୟ, ଆଦିପୁର ଓ ଜ୍ୟୋତିପୁର ରାଜ୍ୟଦ୍ୱୟର ଅନତି ଦୂରରେ ବୈତରଣୀ କୂଳରେ ଏହି ଘାଟଟି ଅବସ୍ଥିତ । ବିରାଟଗଡ଼ର ଭଗ୍ନାବଶେଷ, ଖିଚିଂ ମନ୍ଦିର ଓ ଏକାଦଶ ରୁଦ୍ର ମନ୍ଦିର ମଧ୍ୟ ଏହାର ନିକଟରେ ଅବସ୍ଥିତ ।

## ବୈତରଣୀ ନଦୀ ଅବବାହିକାରେ ଅବସ୍ଥିତ 'ଶିମିଳିପାଳ ଜାତୀୟ ଅଭୟାରଣ୍ୟ' ଏବଂ 'ରାମତୀର୍ଥ କୁଂଭୀର ପ୍ରକଳ୍ପ'

*(Similipal National Park and Mugger Crocodile Project at Ramatirtha in the river basin of Baitaranee)*




ବୈତରଣୀ ନଦୀ ଅବବାହିକା *(The Baitaranee river basin)*ରେ ଓଡ଼ିଶାର ପ୍ରମୁଖ ୪ଟି ବିଶ୍ୱସ୍ତରୀୟ ସଂରକ୍ଷିତ ଜଙ୍ଗଲ ଓ ଜୈବମଣ୍ଡଳ ରହିଛି । ସେଗୁଡ଼ିକ ହେଉଛି-

୧. ଶିମିଳିପାଳ ଜୈବ ମଣ୍ଡଳ *(Similipal Biosphere)*

୨. ଶିମିଳିପାଳ ବନ୍ୟଜନ୍ତୁ ସଂରକ୍ଷଣ *(Similipal Wild Life*

*Sanctuary and National Park)*

୩· ଭିତର କନିକା ଜାତୀୟ ବନ୍ୟପ୍ରାଣୀ ଉଦ୍ୟାନ *(Bhitarkanika Wild Life Sanctuary and National Park)*

୪· ଗହୀରମଥା ସାମୁଦ୍ରିକ କଇଁଛ ଅଭୟାରଣ୍ୟ

*(Gahirmatha Sea Turtle Sanctuary)*

ଶିମିଳିପାଳ ଜାତୀୟ ଉଦ୍ୟାନଟି ମୟୂରଭଞ୍ଜ ଜିଲ୍ଲା ଯଶୀପୁର ବ୍ଲକ୍‌ରେ ସମୁଦ୍ରପତ୍ତନଠାରୁ ୯୦୦ ମିଟର ଉଚ୍ଚତାରେ  ଅବସ୍ଥିତ । ବୈତରଣୀ ନଦୀ ଉପର ଅବବାହିକାରେ ଥିବା ଏହି ଜାତୀୟ ଉଦ୍ୟାନଟିରେ ପ୍ରଚୁର ମାତ୍ରାରେ 'ଶିମିଳି' ଗଛ ଥିବାରୁ ଏହାର ନାମ ଶିମିଳିପାଳ ହୋଇଛି ବୋଲି କୁହାଯାଏ । ଏଠାରେ ଥିବା ଜାତିଜାତିକା ପଶୁ, ପକ୍ଷୀ, ଗଛବୃଛ, ନଦୀ, ନାଳ, ଝରଣା, ପାହାଡ଼ ପାଇଁ ଏହା ସମଗ୍ର ଦେଶର ଏକ ଆକର୍ଷଣୀୟ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଜଙ୍ଗଲ ଭାବେ ପରିଚିତ । ଏହା ପ୍ରାଚୀନ ମୟୂରଭଞ୍ଜ ରାଜ୍ୟର ଭଞ୍ଜବଂଶୀୟ ରାଜାଙ୍କର ଏକ ପଶୁ ଶିକାର କେନ୍ଦ୍ର (ବିହାର) ଥିଲା । ଭଞ୍ଜ ରାଜାମାନେ ଏହି ଘଞ୍ଚ ଜଙ୍ଗଲକୁ ପାରିଧି କରିବାକୁ ଆସୁଥିଲେ ।

ଶିମିଳିପାଳ ଜାତୀୟ ଉଦ୍ୟାନ ବିଶେଷ ଭାବେ ମହାବଳ ବାଘ, ଭାରତୀୟ ଜଙ୍ଗଲୀ ଗୟଳ, ହାତୀ, ଚଉଶିଙ୍ଗା ହରିଣ ଭଳି ବିରଳ ପ୍ରାଣୀ ଏବଂ ଶାଳ, ଅର୍କିଡ୍ ଉଦ୍ୟାନ ପାଇଁ ପ୍ରସିଦ୍ଧ । ଓଡ଼ିଶାରୁ ଜମିଦାରୀ ପ୍ରଥା ଉଚ୍ଛେଦ ହେବାପରେ ଅର୍ଥାତ ତତ୍କାଳୀନ ମୟୂରଭଞ୍ଜ ଷ୍ଟେଟ୍ ଭଞ୍ଜ ରାଜବଂଶ ଅଧୀନରୁ ମୁକ୍ତ ହେବା ପରେ ପ୍ରଥମଥର ପାଇଁ ୧୯୫୬ ମସିହାରେ ଶିମିଳିପାଳକୁ କେନ୍ଦ୍ର ସରକାର ବ୍ୟାଘ୍ର ସଂରକ୍ଷଣ ନିମନ୍ତେ ବ୍ୟବହାର କଲେ । ୧୯୭୩ ମସିହାରେ ଏଠାରେ 'ବ୍ୟାଘ୍ର ପ୍ରକଳ୍ପ'





*(Project Tiger)* କାର୍ଯ୍ୟକାରୀ ହେଲା । ମୋଟ ୨୭୫୦ ବର୍ଗ କିଲୋମିଟର ପରିମିତ ଜଙ୍ଗଲ, ପାର୍ବତ୍ୟ ଅଞ୍ଚଳକୁ ନେଇ ୧୯୭୯ ମସିହାରେ ଓଡ଼ିଶା ସରକାର ଶିମିଳିପାଳକୁ ବନ୍ୟପ୍ରାଣୀ ଅଭୟାରଣ୍ୟ *(Similipal Wild Life Sanctuary)* ଭାବେ ଘୋଷଣା କଲେ । ସେହି ବର୍ଷ ଖଇରୀ ନଦୀ କୂଳସ୍ଥ ରାମତୀର୍ଥଠାରେ ଏକ କୁଂଭୀର ପ୍ରଜନନ ପ୍ରକଳ୍ପ *(Mugger Crocodile Project)* ଆରଂଭ କରାଗଲା । ୧୯୮୦ ମସିହାରେ ଶିମିଳିପାଳ ବନ୍ୟପ୍ରାଣୀ ଅଭୟାରଣ୍ୟର ମୋଟ ୨୭୫୦ ବର୍ଗକିଲୋମିଟର ଅଞ୍ଚଳରୁ ୩୦୩ ବର୍ଗକିଲୋମିଟର ଅଞ୍ଚଳକୁ ନେଇ 'ଜାତୀୟ ଉଦ୍ୟାନ' *(National Park)* ଭାବେ ଘୋଷଣା କରାଗଲା ଏବଂ ପରବର୍ତ୍ତୀ ସମୟରେ ୧୯୮୬ ମସିହାରେ ଏହି ଜାତୀୟ ଉଦ୍ୟାନଟିର କ୍ଷେତ୍ରଫଳ ୮୪୫.୭୦ ବର୍ଗକିଲୋମିଟରକୁ ବୃଦ୍ଧି ପାଇଁ ଦେଶର ଏକ ଆକର୍ଷଣୀୟ ଜାତୀୟ ଉଦ୍ୟାନର ମାନ୍ୟତା ଲାଭ କଲା । ୧୯୯୪ ମସିହାରେ ଭାରତ ସରକାର ଶିମିଳିପାଳକୁ 'ସଂରକ୍ଷିତ ଜୈବ ମଣ୍ଡଳ' *(Similipal Reserve Biosphere)* ଭାବେ ଘୋଷଣା କଲେ ।

ଶିମିଳିପାଳ ଜାତୀୟ ଉଦ୍ୟାନରେ ବହୁ ସଂଖ୍ୟାରେ ଉଚ୍ଚ ପର୍ବତମାଳା ରହିଥିବାବେଳେ ଏଠାରୁ ବହୁ ନଦୀ, ଝରଣା ପ୍ରବାହିତ ହୋଇଛନ୍ତି । ବୈତରଣୀର ଅଧିକାଂଶ ଉପନଦୀ ଶିମିଳିପାଳ ଜଙ୍ଗଲରୁ ଉତ୍ପତ୍ତିଲାଭ କରିଛନ୍ତି । ଏହି ଜୈବମଣ୍ଡଳଟି ବିଭିନ୍ନ ପ୍ରଜାତିର ବୃକ୍ଷଲତା, ଜୀବଜନ୍ତୁ ଏବଂ ସାନ୍ତାଳ, ଖଡ଼ିଆ, ଲୋଧା, ମାଙ୍କଡ଼ିଆ ଆଦି ପୁରାତନ ଜନଜାତିଙ୍କର ଏକ ପ୍ରାକୃତିକ ଆବାସିକ ସ୍ଥଳୀ ଭାବେ ବେଶ ପରିଚିତ ।

ଶିମିଳିପାଳ ଜାତୀୟ ଉଦ୍ୟାନରୁ ମୋଟ ୧୨ଟି ନଦୀ ଉତ୍ପତ୍ତିଲାଭ କରି ମୟୂରଭଞ୍ଜ, କେନ୍ଦୁଝର, ଭଦ୍ରକ ଏବଂ ବାଲେଶ୍ୱର ଜିଲ୍ଲା ଦେଇ ପ୍ରବାହିତ ହୋଇଛନ୍ତି । ଶିମିଳିପାଳ ଜାତୀୟ ଉଦ୍ୟାନଟି ବୈତରଣୀ ନଦୀର ଏକ ପ୍ରମୁଖ ଅବବାହିକା ଅଞ୍ଚଳ । ଏହି ଅଞ୍ଚଳରୁ ବହିଆସୁଥିବା ଜଳରେ




ବୈତରଣୀ ନଦୀ ପୁଷ୍ଟ ହୋଇଥାଏ । **ବୁଢାବଳଙ୍ଗ, ପାଳପଳା, ଭଣ୍ଡନ, ଖଇରୀ, ଦେଓ, ଶାଳନ୍ଦୀ** ପ୍ରମୁଖ ନଦୀ ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ଉତ୍ପତ୍ତିଲାଭ କରିଛନ୍ତି । ଏହାବ୍ୟତୀତ ଶିମିଳିପାଳ ଜାତୀୟ ଉଦ୍ୟାନରେ **ଜୋରନ୍ଦା** (୧୫୦ ମିଟର) ଓ **ବରେହିପାଣି** (୪୦୦ ମିଟର) ଭଳି ଓଡ଼ିଶା ପ୍ରସିଦ୍ଧ ଆକର୍ଷଣୀୟ ଜଳପ୍ରପାତ ରହିଛି । **'ଖଇରିବୁରୁ'** (୧୧୭୮ ମିଟର) ଏବଂ **'ମେଘାସନୀ'** (୧୧୫୮ ମିଟର) ଶିମିଳିପାଳ ଜାତୀୟ ଉଦ୍ୟାନରେ ଥିବା ଦୁଇ ପ୍ରମୁଖ ଉଚ୍ଚତମ ଗିରିଶୃଙ୍ଗ । ଶିମିଳିପାଳ ଜାତୀୟ ଉଦ୍ୟାନରେ ଥିବା ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ **'ଚହଲା'** *(Chahala Salt lick)* କୁ ବାଘମାନେ


ଖଇରୀ ନଦୀରେ ଥିବା ରାମତୀର୍ଥ କୁମ୍ଭୀର ପ୍ରଜନନ କେନ୍ଦ୍ର

ପାଣି ପିଇବା ସହିତ ଲବଣାକ୍ତ ମାଟିକୁ ଚାଟିବାକୁ ଆସିଥା'ନ୍ତି । ଶିମିଳିପାଳକୁ ବୁଲି ଆସୁଥିବା ଭାଗ୍ୟବାନ ପର୍ଯ୍ୟଟକମାନେ ହିଁ ଏ ଦୃଶ୍ୟ ଦେଖିବାକୁ ସମର୍ଥ ହୋଇଥା'ନ୍ତି ।

ଶିମିଳିପାଳ ଜାତୀୟ ଉଦ୍ୟାନରେ ୧୦୭୬ ପ୍ରଜାତିର ଉଦ୍ଭିଦ ଦେଖିବାକୁ ମିଳିଥାଏ । ଏହି ଜଙ୍ଗଲର ଅଧିକାଂଶ ଉଦ୍ଭିଦ ଚିରହରିତ୍ ଏବଂ ଆଂଶିକ ବୃକ୍ଷଲତା ପତ୍ରଝଡ଼ା ଦେଇଥା'ନ୍ତି । ଶାଳ ହେଉଛି ଶିମିଳିପାଳ ଜଙ୍ଗଲର ପ୍ରମୁଖ ଉଦ୍ଭିଦ । ଏଠାରେ ଥିବା ଘଞ୍ଚ ଶାଳ ଜଙ୍ଗଲ, ମାଳମାଳ ପାହାଡ, ଝରଣା ଓ ଜୀବଜନ୍ତୁ ଏଠାକୁ ଆସୁଥିବା ପର୍ଯ୍ୟଟକଙ୍କ ମନ ମୋହିଥାଏ । ଶିମିଳିପାଳର ବିଶାଳ କ୍ରାନ୍ତିମଣ୍ଡଳୀୟ 'ତୃଣଭୂମି' *(Savanna)* ତୃଣଭୋଜୀ ପ୍ରାଣୀଙ୍କ ସ୍ୱର୍ଗ ଭାବେ ପରିଚିତ । ଶିମିଳିପାଳ ଜାତୀୟ ଉଦ୍ୟାନଟି **'ଅର୍କିଡ୍'** ପାଇଁ ସମଗ୍ର ଦେଶରେ ବେଶ୍ ପ୍ରସିଦ୍ଧିଲାଭ କରିଛି । ଏଠାରେ ୯୨ ପ୍ରଜାତିର 'ଅର୍କିଡ୍' *(Orchid)* ଦେଖିବାକୁ ମିଳିଥାଏ । ଏହା ସହିତ ଶିମିଳିପାଳ ଜଙ୍ଗଲଟି ବହୁ ମୂଲ୍ୟବାନ ଔଷଧୀୟ ବୃକ୍ଷର ଭଣ୍ଡାର ଭାବେ ନିଜର ଏକ ନିଆର ପରିଚୟ ସୃଷ୍ଟି କରିପାରିଛି ।

ଶିମିଳିପାଳ ଜାତୀୟ ଉଦ୍ୟାନଟି ନାନା ପ୍ରଜାତିର ପ୍ରାଣୀଙ୍କ ପ୍ରାକୃତିକ ଆବାସସ୍ଥଳୀ ଭାବେ ସମଗ୍ର ଓଡ଼ିଶାରେ ଖୁବ୍ ପରିଚିତ । ଏଠାରେ ୪୨ ପ୍ରଜାତିର ସ୍ତନ୍ୟପାୟୀ ପ୍ରାଣୀ *(Mammals)*, ୨୪୨ ପ୍ରଜାତିର ପକ୍ଷୀ *(Birds)* ଏବଂ ୩୦ ପ୍ରଜାତିର ସରୀସୃପ *(Reptiles)* ଦେଖିବାକୁ

**ଖଇରୀ ନଦୀରେ ଥିବା ରାମତୀର୍ଥ କୁଂଭୀର ପ୍ରଜନନ କେନ୍ଦ୍ର**



ମିଳିଥା'ନ୍ତି । ଶିମିଳିପାଳ ଜାତୀୟ ପ୍ରାଣୀ ଉଦ୍ୟାନରେ ଦେଖାଯାଉଥିବା ପ୍ରମୁଖ ସ୍ତନ୍ୟପାୟୀ ପ୍ରାଣୀଙ୍କ ମଧ୍ୟରେ ବାଘ, ଚିତାବାଘ, ସିଂହ, ହାତୀ, ସମ୍ବର, ହରିଣ, ଚିତ୍ରାହରିଣ, ଗୟଳ, ବାର୍ହା, ଜଙ୍ଗଲୀ ବିଲେଇ, ବିଲୁଆ, ଗଧିଆ, ନୀଳଗାଈ ଏବଂ ପକ୍ଷୀଙ୍କ ମଧ୍ୟରେ ଲାଲ୍ ବଣ କୁକୁଡ଼ା, ମୟୂର, ପାହାଡିଆ ବଣି, ଶୁଆ, ଇଗଲ, ହର୍ଣ୍ଣବିଲ୍, କପୋତ ଭଳି ବହୁ ପ୍ରକାର ପକ୍ଷୀ ଦେଖିବାକୁ ମିଳନ୍ତି । ନାନା ପ୍ରଜାତିର ବିଷଧର ସାପ, କଇଁଛ, କୁମ୍ଭୀର, ଗୋଧି ଆଦି ସରୀସୃପ ଶିମିଳିପାଳ ଜାତୀୟ ଉଦ୍ୟାନର ଶୋଭା ବଢାଇଥା'ନ୍ତି ।

ଶିମିଳିପାଳ ଅଭୟାରଣ୍ୟ ଅନ୍ତର୍ଗତ ଯଶୀପୁର ନିକଟରେ ବୈତରଣୀର ପ୍ରମୁଖ ଉପନଦୀ 'ଖଇରୀ' କୂଳରେ ରହିଛି ଓଡ଼ିଶାର ପ୍ରାଚୀନତମ କୁମ୍ଭୀର ପ୍ରଜନନ ପ୍ରକଳ୍ପ *(Mugger Crocodile Project)* ।ଏଠାରେ କୁମ୍ଭୀର ଅଣ୍ଡାକୁ ସଂରକ୍ଷଣ କରାଯାଇ ଛୁଆ ଫୁଟାଯାଇଥାଏ । ଯଶୀପୁର ଫରେଷ୍ଟ ରେଞ୍ଜ ଅଧୀନସ୍ଥ ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ ଅନ୍ତର୍ଗତ ଏହି କୁମ୍ଭୀର ପ୍ରଜନନ ପ୍ରକଳ୍ପଟି ୧୯୭୯ ମସିହାରେ ପ୍ରତିଷ୍ଠାଲାଭ କରିପାରିଥିଲା । ଶିମିଳିପାଳ ଜାତୀୟ ଉଦ୍ୟାନରେ ଥିବା ଅନେକ ଛୋଟବଡ଼ ଜଳ ଉତ୍ସ ଓ ନଦୀମାନଙ୍କରେ କୁମ୍ଭୀର ଥିବାର ଲକ୍ଷ୍ୟ କରାଯିବା ପରେ ରାମତୀର୍ଥଠାରେ ଖଇରୀ ନଦୀରେ ଏହି କୁମ୍ଭୀର ପ୍ରକଳ୍ପ କରାଯିବାକୁ ନିଷ୍ପତ୍ତି ନିଆଯାଇଥିଲା । ସୂଚନାଯୋଗ୍ୟ, ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ଏହି ଖଇରୀ ନଦୀଟି ବାହାରି ଯଶୀପୁର, ଶୁକୁଳି, ଖିଚିଂ ଦେଇ ପ୍ରବାହିତ ହୋଇଛି । ପୁଣି ମଧ୍ୟ ଶିମିଳିପାଳରୁ ବାହାରିଥିବା ଅନ୍ୟ ଏକ ନଦୀ 'ଭଣ୍ଡନ' ମଧ୍ୟ ଯଶୀପୁରଠାରୁ କିଛି ଦୂରରେ 'ଖଇରୀ' ସହିତ ମିଳିତ ହୋଇ 'ଖଇରୀ-ଭଣ୍ଡନ' ନଦୀ ବୋଲାଇ କେନ୍ଦୁଝର ଜିଲ୍ଲାର ଚଂପୁଆ ନିକଟରେ ବୈତରଣୀ ସହିତ ମିଳିତ ହୋଇଛନ୍ତି । ୧୯୮୪ ମସିହାଠାରୁ ଏଠାରେ ବିଧିବଦ୍ଧ ଭାବେ ମଗର ପ୍ରଜାତିର କୁମ୍ଭୀର ଛୁଆ ପ୍ରଜନନ କରାଯାଇ ଶିମିଳିପାଳ ଜାତୀୟ ଉଦ୍ୟାନ ମଧ୍ୟରେ ଥିବା ନଦୀ (ଖଇରି, ଭଣ୍ଡନ, ବୁଢାବଳଙ୍ଗ ପ୍ରମୁଖ) ଓ ଜଳ ଉତ୍ସମାନଙ୍କରେ ଛଡ଼ାଯାଇଥିଲା । ୨୦୧୪ ମସିହା ସୁଦ୍ଧା ଏକ ହଜାରରୁ ଊର୍ଦ୍ଧ୍ୱ ମଗର ପ୍ରଜାତିର କୁମ୍ଭୀର ଛୁଆ ଏଠାରୁ ସୃଷ୍ଟି କରାଯାଇପାରିଛି ।

ଶିମିଳିପାଳ ଜାତୀୟ ଉଦ୍ୟାନକୁ ଦୁଇଟି ବାଟ ରହିଛି । କେବଳ ଏହି ଦୁଇ 'ପ୍ରବେଶ ପଥ' ଦେଇ 'ଶିମିଳିପାଳ ଜାତୀୟ ଉଦ୍ୟାନ' ମଧ୍ୟକୁ ଯିବାକୁ ପଡ଼ିଥାଏ । ଜାତୀୟ ଉଦ୍ୟାନ ମଧ୍ୟକୁ **'ତୁଳସୀବଣି'** *(Tulasibani Entrance)* (ଯଶୀପୁରରୁ ୧୫ କିଲୋମିଟର) ଏବଂ **'ପିଠାବଟା'** *(Pithabata Entrance)* (ଲୁଲୁଂ ନିକଟସ୍ଥ, ବାରିପଦା ସହରରୁ ୨୫ କିଲୋମିଟର ଦୂର) ପ୍ରବେଶପଥ (ଫାଟକ) ଦେଇ ପ୍ରବେଶ କରିବାକୁ ହୋଇଥାଏ । ଏହି ଦୁଇଟି ପ୍ରବେଶ ପଥରେ ଥିବା କାଉଣ୍ଟରରୁ ଟିକେଟ୍ କାଟି ପର୍ଯ୍ୟଟକମାନେ ଶିମିଳିପାଳ ଜାତୀୟ ଉଦ୍ୟାନ ମଧ୍ୟକୁ ପ୍ରବେଶ କରିଥା'ନ୍ତି । ପ୍ରତିବର୍ଷ ନଭେମ୍ବର ମାସରୁ ଜୁନ୍ ମାସ ପର୍ଯ୍ୟନ୍ତ ଶିମିଳିପାଳ ଜାତୀୟ ଉଦ୍ୟାନଟି ସାଧାରଣ ପର୍ଯ୍ୟଟକଙ୍କ ନିମନ୍ତେ ଉନ୍ମୁକ୍ତ

ଥାଏ । ଅନ୍ୟ ଋତୁମାନଙ୍କରେ ଏହା ସାଧାରଣ ପର୍ଯ୍ୟଟକଙ୍କ ପାଇଁ ନିଷିଦ୍ଧ ଥାଏ ।

ଶିମିଳିପାଳ ପାର୍ବତ୍ୟାଞ୍ଚଳଟି ଭୟଙ୍କର ଭାବେ ମ୍ୟାଲେରିଆପ୍ରବଣ ହୋଇଥିବାରୁ ଏଠାକୁ ଆସୁଥିବା ପର୍ଯ୍ୟଟକମାନଙ୍କୁ ମଶାମାନଙ୍କ କବଳରୁ ରକ୍ଷା କରିବା ନେଇ ସଚେତନତା ସୃଷ୍ଟି କରାଯାଇଥାଏ । ଶିମିଳିପାଳକୁ ଆସି ମସ୍ତିଷ୍କ ମ୍ୟାଲେରିଆ, ଜଣ୍ଡିସ୍ ଏବଂ ଭୟଙ୍କର ସଂକ୍ରମଣଜନିତ ରୋଗରେ ବହୁ ପର୍ଯ୍ୟଟକଙ୍କର ମୃତ୍ୟୁ ହୋଇଥିବା ଜଣାଯାଇଛି ।

[ତଥ୍ୟ ସହାୟତା

୧· ଶଙ୍କର ହେମ୍ବ୍ରମ୍, ଗାଇଡ୍, ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ, ଯଶୀପୁର

୨· ଶିମିଳିପାଳ ଜାତୀୟ ଉଦ୍ୟାନ ସଂପର୍କିତ ୱେବ୍‌ସାଇଟ]

## ବୈତରଣୀ ଓ ଦେଓ ନଦୀର ସଂଗମ ସ୍ଥଳ: ମହାଦେବଦେଉଳିର 'ତିନିଧାରିଆ କ୍ଷେତ୍ର'

ବୈତରଣୀ ନଦୀ ଉପତ୍ୟକାରେ 'ତିନିଧାରିଆ' ନାମରେ ଅନେକ ସ୍ଥାନ ରହିଥିଲେ ବି ଡୁରୁମୁଣ୍ଡା ଏବଂ ଚଢେଇଭୋଳ ନିକଟସ୍ଥ ମହାଦେବଦେଉଳିରେ ଥିବା 'ତିନିଧାରିଆ' ସ୍ଥଳଟିର ନିଆରା ଗୁରୁତ୍ୱ



ବୈତରଣୀ ଓ ଦେଓ ନଦୀର ସଂଗମ ସ୍ଥଳ ମହାଦେବଦେଉଳିର 'ତିନିଧାରିଆ'

ରହିଛି । ଏଠାରେ **ବୈତରଣୀ** ନଦୀ ସହିତ ତାହାର ଉପନଦୀ ପବିତ୍ର **ଦେଓ (ଦେବ ନଦୀ)**ର ସଂଗମ ହୋଇଛି । ବୈତରଣୀ ଓ ଦେଓ ନଦୀର ସଂଗମ ସ୍ଥଳଟିକୁ ସ୍ଥାନୀୟ ଲୋକେ ତିନିଧାରିଆ ବୋଲି କହିଥା'ନ୍ତି । ଏହି ସ୍ଥାନଟିରେ ବୈତରଣୀ-ଦେଓ ନଦୀର ମିଳନ ସ୍ଥଳରେ ନଦୀ ଗର୍ଭ ମଧ୍ୟରେ ଏକ ବିଶାଳ ପ୍ରସ୍ତର ଶଯ୍ୟା ରହିଛି । ଦେଓ ନଦୀଟି ଶିମିଳିପାଳ ପାର୍ବତ୍ୟାଞ୍ଚଳରୁ ବାହାରି ଯଶୀପୁର, କରଞ୍ଜିଆ, ସାହାରପଡ଼ା (କେନ୍ଦୁଝର) ଦେଇ ପ୍ରବାହିତ ହେବାପରେ ମୟୂରଭଞ୍ଜ ଜିଲ୍ଲାର ମହାଦେବଦେଉଳି ନିକଟରେ ବୈତରଣୀ ସହ ମିଳିତ ହୋଇଛି । କେନ୍ଦୁଝର ଜିଲ୍ଲାର ତୁରୁମୁଙ୍ଗା ଓ ମୟୂରଭଞ୍ଜ ଜିଲ୍ଲାର ଚଢେଇଭୋଳ ମଧ୍ୟ ଭାଗରେ ମହାଦେବଦେଉଳି ଗ୍ରାମଟି ଅବସ୍ଥିତ ।


ତିନିଧାରିଆ

ତିନିଧାରିଆଠାରେ ବୈତରଣୀ ନଦୀ ଗର୍ଭରେ ଏକ ବିରାଟ ଆକାରର ପ୍ରସ୍ତର କୁଦ ରହିଛି । ଏହାକୁ ସ୍ଥାନୀୟ ଭାଷାରେ **'ନିମିତି କୁଦର'** ବୋଲି କୁହାଯାଇଥାଏ । ଏଠାରେ ପ୍ରତିବର୍ଷ ମକର ମେଳା ଏବଂ ସାନ୍ତାଳମାନଙ୍କର ଦାମୋଦର ପର୍ବ ବେଶ୍ ଧୁମ୍‌ଧାମ୍‌ରେ ପାଳନ କରାଯାଇଥାଏ । ଏହି ତିନିଧାରିଆର ପୂର୍ବପାର୍ଶ୍ୱରେ କେନ୍ଦୁଝର ଜିଲ୍ଲାର ତୁରୁମୁଙ୍ଗା, ତ୍ରିବିନ୍ଧା, ଡିଣ୍ଡା ଆଦି ସ୍ଥାନ ରହିଥିବାବେଳେ ପଶ୍ଚିମରେ ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ ବ୍ଲକ୍‌ର ଚଢେଇଭୋଳ, ମହାଦେବଦେଉଳି ଆଦି ସ୍ଥାନ ରହିଛି । ଏହି ମହାଦେବଦେଉଳି ଗ୍ରାମରେ ମହାଦେବ ଝାଡେଶ୍ୱରଙ୍କ ଏକ ମନ୍ଦିର ରହିଛି ।

(ତଥ୍ୟ ସହାୟତା: ମହାଦେବଦେଉଳି ଗ୍ରାମର ଦୁଇ ଯୁବକ ଭବାନୀ ଶଙ୍କର ଦେହୁରୀ ଓ କୈବର୍ତ୍ତ ଦେହୁରୀ)

## ଐତିହାସିକ ରାଜନଗର: ଦଧିବାମନଜିଉ ମନ୍ଦିର; ଧ୍ୱଂସପ୍ରାପ୍ତ ପୁରୁଣା ରାଜବାଟୀ ଓ ଶୈବ୍ୟାକାବେରୀ ବୈତରଣୀ ଘାଟ

ଐତିହାସିକ ଦୃଷ୍ଟିକୋଣରୁ ରାଜନଗର କେନ୍ଦୁଝର ଜିଲ୍ଲାର ଅନ୍ୟ ଏକ ପ୍ରମୁଖ ସ୍ଥାନ ଅଟେ । ଜିଲ୍ଲାର ସ୍ୱାମ୍‌ପାଟଣା ବ୍ଲକ୍‌ରେ ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ଗାଁଟି ବୈତରଣୀ ନଦୀ ଧାରରେ ଅବସ୍ଥିତ । ଏଠାକାର ପ୍ରାଚୀନ କୀର୍ତ୍ତୀରାଜି, ମନ୍ଦିର ଓ ସର୍ବୋପରି ବୈତରଣୀର ମୋହିନୀ ରୂପ ଆଗନ୍ତୁକଙ୍କୁ ଘଡ଼ିଏ ଆନମନା କରିଦେବାର କ୍ଷମତା ରଖିଛି । କେନ୍ଦୁଝରଗଡ଼କୁ ରାଜପ୍ରାସାଦ ସ୍ଥାନାନ୍ତର

ପୂର୍ବରୁ ତତ୍କାଳୀନ ଭଞ୍ଜ ରାଜାମାନେ ଏଠାରେ ରାଜପ୍ରାସାଦ ନିର୍ମାଣ କରି ଶାସନ କରୁଥିଲେ । ପରେପରେ ରାଜପ୍ରାସାଦ କେନ୍ଦୁଝରଗଡ଼କୁ ସ୍ଥାନାନ୍ତର ହୋଇଥିଲା ।

ରାଜନଗର ଠାରେ ଦଧିବାମନଜିଉଙ୍କ ପୁରୁଣା ମନ୍ଦିର, ମା' ଅନ୍ଧାରୀ ଠାକୁରାଣୀ ପୀଠ, ଧ୍ୱଂସପ୍ରାପ୍ତ ରାଜପ୍ରାସାଦ, ରଘୁନାଥଜିଉ ମଠ, ପଞ୍ଚମୁଖୀ ହନୁମାନ ମନ୍ଦିର, ଶୈବ୍ୟାକାବେରୀ ଘାଟ ସମେତ ବୈତରଣୀ ନଦୀ ପଠାରେ ଲକ୍ଷ୍ମୀପାଦ, ଭୀମପାଦ, ଜଳେଶ୍ୱର ମହାଦେବଙ୍କ ମୂର୍ତ୍ତି ରହିଛି । ବୈତରଣୀ ନଦୀ କୂଳରେ ଭଞ୍ଜବଂଶୀୟ ରାଜାଙ୍କର ଏକ ପୁରୁଣା ଧ୍ୱଂସପ୍ରାପ୍ତ ରାଜ ଉଆସ ମଧ୍ୟ ରହିଛି । ଏଠାରେ ବୈତରଣୀ ନଦୀ ଅତ୍ୟନ୍ତ ଆକର୍ଷଣୀୟ ଏବଂ ଏହାର ପଥୁରିଆ ଶଯ୍ୟାରେ ମାତା ଲକ୍ଷ୍ମୀ ଏବଂ ଭୀମଙ୍କର ଦୁଇଟି ଭିନ୍ନ ଭିନ୍ନ ପାଦ ଚିହ୍ନ ରହିଛି । ବୈତରଣୀ ନଦୀର ପଥୁରିଆ ଶଯ୍ୟାରେ ମଧ୍ୟ ମହାଦେବ ଜଳେଶ୍ୱରଙ୍କ ଏକ ଶିବ ଲିଙ୍ଗ








ବୈତରଣୀ କୂଳରେ ଅବସ୍ଥିତ ଐତିହାସିକ ରାଜନଗରର ଦଧିବାମନଜିଉ ମନ୍ଦିର, ଶୈବ୍ୟାକାବେରୀ ଘାଟ, ଚନ୍ଦ୍ରଜଗନ୍ନାଥ ପୀଠ

ପୂଜିତ ହୋଇଥାନ୍ତି । ବର୍ଷାଦିନେ ନଦୀ ଜଳପୂର୍ଣ୍ଣ ଥିବା ସମୟରେ ଏହି ଲକ୍ଷ୍ମୀପାଦ, ଭୀମପାଦ ଓ ଜଳେଶ୍ୱର ମହାଦେବ ଦୃଶ୍ୟମାନ ହୋଇ ନଥାନ୍ତି । ବର୍ଷାଦିନ ବ୍ୟତୀତ ଅନ୍ୟ ସମୟରେ ଏସବୁ ଦୃଶ୍ୟ ହୋଇଥାନ୍ତି ।

ଏଠାରେ ବୈତରଣୀ ନଦୀ କୂଳରେ ଅତି ଆକର୍ଷଣୀୟ ବୈତରଣୀ ଘାଟ ରହିଛି । ଏହାକୁ 'ଶୈବ୍ୟାକାବେରୀ ତୀର୍ଥ' କୁହାଯାଏ । ଏହି ଶୈବ୍ୟାକାବେରୀ ଘାଟର ମନୋରମ ଶାନ୍ତ ପରିବେଶ ମଧ୍ୟରେ ରହିଛି ବହୁ ପୁରାତନ ରଘୁନାଥଜିଉ ମଠ । ଏହା ମହାପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପୀଠ । ଏଠାରେ ପ୍ରଭୁ ଶ୍ରୀରାମ, ଲକ୍ଷ୍ମଣ ଓ ମାତା ସୀତା ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା ଭାବେ ପୂଜା ପାଉଛନ୍ତି । ଏହି ମଠ ମଧ୍ୟରେ ଏକ ସ୍ୱତନ୍ତ୍ର ଏକକ ଜଗନ୍ନାଥଙ୍କ ମୂର୍ତ୍ତି ପୂଜା ପାଇଥାଏ । ଏହାକୁ 'ତନ୍ତ୍ର ଜଗନ୍ନାଥ' ବୋଲି କୁହାଯାଏ । ତନ୍ତ୍ର ଜଗନ୍ନାଥ ରଘୁନାଥଜିଉ ମଠର ଏକ ବିଶେଷ ଆକର୍ଷଣ । ଏଠାରେ ଥିବା ତନ୍ତ୍ର ଜଗନ୍ନାଥଙ୍କୁ ନେଇ ଅତୀତରେ ଅନେକ ଗବେଷଣା ହୋଇଛି । କାହିଁକି ଏଠାକାର ଜଗନ୍ନାଥଙ୍କୁ ତନ୍ତ୍ର ଜଗନ୍ନାଥ କୁହାଯାଉଛି ତାହା ରହସ୍ୟମୟ । ସବୁଠୁ ବଡ଼ କଥା ହେଉଛି, ଏହି ଜଗନ୍ନାଥଙ୍କ ସହିତ ଭ୍ରାତା ବଳଭଦ୍ର କିମ୍ବା ଭଗ୍ନୀ ସୁଭଦ୍ରା ନାହାନ୍ତି । ଏହି ତନ୍ତ୍ର ଜଗନ୍ନାଥଙ୍କର ନବକଳେବର ହୋଇ ନଥାଏ ବୋଲି ଏଠାକାର ପୂଜକ ମୃତ୍ୟୁଞ୍ଜୟ ପାଣି କହନ୍ତି ।

ରଘୁନାଥଜିଉ ମଠରେ ପ୍ରତିବର୍ଷ ଶ୍ରୀରାମ ନବମୀ, କାର୍ତ୍ତୀକ ପୂର୍ଣ୍ଣିମା, ମକର ମେଳା, ହନୁମାନ ଜୟନ୍ତୀ ମହାସମାରୋହରେ ପାଳିତ ହୋଇଥାଏ । ଏହି ମଠ ପରିସରରେ ରହିଛି ପଞ୍ଚମୁଖୀ ହନୁମାନ ମନ୍ଦିର । ଏହି ମଠର ଅଚଳାଚଳ ସଂପତି ଥିଲେ ମଧ୍ୟ ମଠଟି ଏବେ ଶ୍ରୀହିନ ହୋଇପଡିଛି । ଅତୀତରେ ଏହି ମଠଟି ଏକ ପ୍ରଖ୍ୟାତ ତନ୍ତ୍ର ପୀଠ ଥିଲା ବୋଲି ଗାଁର ବରିଷ୍ଠ ନାଗରିକ ବେଣୁଧର ବେଜ୍ ଓ ଭାଗିରଥୀ ସିଂ ପ୍ରକାଶ କରନ୍ତି । ୧୯୭୫ ମସିହାରେ ଏହି ମଠର ଶେଷ ମହନ୍ତ ପଦ୍ମଲୋଚନ ଦାଶଙ୍କ ଦେହାନ୍ତ ପରେ ଏହା ଶ୍ରୀହିନ ହୋଇପଡିଛି ।

କେନ୍ଦୁଝରଗଡ଼ରେ ଶ୍ରୀବଳଦେବଜିଉଙ୍କ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବରୁ କେନ୍ଦୁଝରଗଡ଼ ରାଜପ୍ରାସାଦ ଓ ରାଜନଗର ଗ୍ରାମରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ ମୂର୍ତ୍ତିତ୍ରୟଙ୍କୁ ଦଧିବାମନଜିଉ ଭାବେ ସ୍ଥାପନ କରାଯାଇ ପୂଜାର୍ଚ୍ଚନା କରାଯାଉଥିଲା । ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ (୧୬୫୪-୧୬୮୮) କେନ୍ଦୁଝରଗଡ଼ଠାରେ ବଳଦେବଜିଉଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ସେଠାରେ ସେ ଗୋବିନ୍ଦ ଭଞ୍ଜଙ୍କ ଦ୍ୱାରା ପୁରୀ ଧାମରୁ ଅଣାଯାଇଥିବା ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ସହିତ ବଞ୍ଚୋ ଗ୍ରାମରେ ପୋତି ହୋଇ ରହିଥିବା ବଳଭଦ୍ରଙ୍କ ମୂର୍ତ୍ତିକୁ ଉଦ୍ଧାର କରି ଏକତ୍ର ପ୍ରତିଷ୍ଠା କରିଥିଲେ । ରାଜନଗରରେ ଥିବା ରାଜ ଉଆସର ଅନତିଦୂରରେ ବୈତରଣୀ ନଦୀ କୂଳରେ ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ ଦଧିବାମନଜିଉଙ୍କ ନିମନ୍ତେ ଏକ ମନୋରମ ମନ୍ଦିର ନିର୍ମାଣ କରାଇଥିଲେ । ମାତ୍ର, ସେହି ମନ୍ଦିରଟି ୧୯୨୭ ମସିହାରେ ବୈତରଣୀର ପ୍ରଳୟଙ୍କର ବନ୍ୟାରେ ଭାଂଗି ଯାଇଥିଲା ।

କେବଳ ମନ୍ଦିର ନୁହେଁ, ରାଜନଗରର ପକ୍କା ଉଆସ ମଧ୍ୟ ବନ୍ୟା ସ୍ରୋତରେ ଧ୍ୱଂସ ପାଇଯାଇଥିଲା ।

ରାଜା ରାଜନଗରଠାରେ ନିଜ ନାମରେ 'ଲକ୍ଷ୍ମୀ ନାରାୟଣପୁର' ବ୍ରାହ୍ମଣ ଶାସନ ବସାଇଥିଲେ । ମାତ୍ର, ବନ୍ୟାରେ ଏହି ବ୍ରାହ୍ମଣ ଶାସନ ସମେତ ମନ୍ଦିର, ରାଜ ଉଆସ ନଷ୍ଟ ହୋଇଯାଇଥିଲା । ତେବେ ବନ୍ୟା ଦାଉରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ନଦୀଠାରୁ ଦୂରରେ ଆଉ ଏକ ମନ୍ଦିର ନିର୍ମାଣ କରାଯାଇଥିଲା । ଦଧିବାମନଜିଉଙ୍କ ମନ୍ଦିର ରତ୍ନ ସିଂହାସନରେ ଶ୍ରୀଜିଉଙ୍କ ବିଜେ ପ୍ରତିମା ଭାବେ ଆଣ୍ଠୁଆ ଗୋପାଳ, ଶାଳଗ୍ରାମ ଏବଂ ରତ୍ନ ସିଂହାସନ ତଳେ ବାମ ଭାଗରେ ମହାଲକ୍ଷ୍ମୀ ବିରାଜିତ । ଶ୍ରୀ ଦଧିବାମନଜିଉଙ୍କ ମନ୍ଦିର ସମ୍ମୁଖରେ ଏକ ଶିବ ମନ୍ଦିର ରହିଛି । ରାଜନଗର ଦଧିବାମନଜିଉଙ୍କ ପୀଠରେ ଶ୍ରୀଗୁଣ୍ଡିଚା ଯାତ୍ରା ଓ ବାହୁଡା ଯାତ୍ରା ସବୁଠୁ ବଡ଼ ଭାବେ ଗଣାଯାଇଥାଏ । ଏହା ବ୍ୟତୀତ ଏଠାରେ ହରିଶୟନ ଏକାଦଶୀ, ଗହ୍ମାପୂର୍ଣ୍ଣିମା, ଚିତାଲାଗି ଅମାବାସ୍ୟା, ହରିଜନ୍ମ, ସପ୍ତପୁରୀ ଅମାବାସ୍ୟା, କାର୍ତ୍ତୀକ ପଞ୍ଚୁକ, ଆକାଶଦୀପ, ମାର୍ଗଶିର ଗୁରୁବାର, ବକୁଳ ଅମାବାସ୍ୟା, ଓଢଣ ଷଷ୍ଠୀ, ପୌଷ ପୂର୍ଣ୍ଣିମା, ମାଘ ପୂର୍ଣ୍ଣିମା, ମକର ସଂକ୍ରାନ୍ତି, ପଣା ସଂକ୍ରାନ୍ତି, ଅକ୍ଷୟ ତୃତୀୟା ଆଦି ପାଳନ କରାଯାଇଥାଏ ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୧୧୧, ୧୧୨, ୧୧୩, ୧୧୪, ୧୧୫)

## ବୈତରଣୀ ନଦୀ କୂଳର ପ୍ରାଚୀନ ଉଦୟପୁର ଘାଟ ଓ ଧ୍ୱଂସପ୍ରାପ୍ତ ଉଦୟପୁରଗଡ଼

ଉଦୟପୁର ନଦୀଘାଟ



କେନ୍ଦୁଝର ଭଞ୍ଜ ରାଜାଙ୍କ ପୁରାତନ ଧ୍ୱଂସପ୍ରାପ୍ତ ଉଦୟପୁରଗଡ଼ଟିର କଙ୍କାଳ ଆଜି ସାହାରପଡ଼ା ବ୍ଲକ୍‌ରେ ଦେଖିବାକୁ ମିଳିଥାଏ । ଦିନେ ଭଞ୍ଜବଂଶୀ ରାଜାଙ୍କର ଏକ ପ୍ରାଚୀନଗଡ଼ ଏଠାରେ ଥିଲା । ମାତ୍ର ଆଜି ଏହି ଗଡ଼ ନାହିଁ । ପ୍ରାକୃତିକ ବିପର୍ଯ୍ୟୟ ଓ ବୈତରଣୀର ପ୍ରଳୟଙ୍କରୀ ବନ୍ୟାରେ ଏହି ପ୍ରାଚୀନ ରାଜବାଟୀଟି ନଷ୍ଟ ହୋଇଯାଇଛି । ତେବେ ଉଦୟପୁର ବୈତରଣୀ ଘାଟଟି କେନ୍ଦୁଝର ଜିଲ୍ଲାର ଏକ ପ୍ରାଚୀନ ଘାଟ ଭାବେ ଖୁବ୍ ପରିଚିତ । ଉଦୟପୁରଗଡ଼ ଏବଂ ଉଦୟପୁର ଡଙ୍ଗା ଘାଟ; ଏ ଦୁଇଟି ଆଜି ଇତିହାସ ।

କେନ୍ଦୁଝରଗଡ଼ର ପ୍ରଥମ ଭଞ୍ଜବଂଶୀ ରାଜା ଜ୍ୟୋତିଭଞ୍ଜ (ଖ୍ରୀ·ଅ ୧୧୨୮-ଖ୍ରୀ·ଅ· ୧୧୫୮)ଙ୍କ ପରେ ତାଙ୍କ ପୁତ୍ର ଉଦୟ ଭଞ୍ଜ (ଖ୍ରୀ·ଅ· ୧୧୫୮-ଖ୍ରୀ·ଅ· ୧୧୭୬) ହୋଇଥିଲେ ଦ୍ୱିତୀୟ ରାଜା । ଜ୍ୟୋତି ଭଞ୍ଜ ଜ୍ୟୋତିପୁରଠାରେ ବୈତରଣୀ ନଦୀ କୂଳରେ ଗଡ଼ ପ୍ରତିଷ୍ଠା କରି ରାଜ୍ୟ ଶାସନ କରିଥିବାବେଳେ ତାଙ୍କ ପରେ ତାଙ୍କ ପୁତ୍ର ଉଦୟ ଭଞ୍ଜ ଉଦୟପୁରଠାରେ ପୁଣ୍ୟତୋୟା ବୈତରଣୀ କୂଳରେ ଏକ ନୂତନ ଗଡ଼ ନିର୍ମାଣ କରିଥିଲେ । ତାଙ୍କ ନାମାନୁସାରେ ଏହି ସ୍ଥାନର ନାମ ଉଦୟପୁର ଗଡ଼ ହୋଇଥିଲା । ରାଜା ଉଦୟ ଭଞ୍ଜଙ୍କ







ଉଦୟପୁର ଘାଟ

ଦ୍ୱାରା ମାଟିରେ ନିର୍ମିତ ରାଜ ଉଆସ ବୈତରଣୀର କରାଳ ଗର୍ଭରେ ଲୀନ ହୋଇଯାଇଛି । ସଂଭବତଃ ୧୯୨୭ ମସିହା ଜୁଲାଇ ମାସରେ ହୋଇଥିବା ପ୍ରଳୟଙ୍କରୀ ବନ୍ୟାରେ ଏହି ଉଦୟପୁରଗଡ଼ଟି ଧ୍ୱଂସ ପାଇଯାଇଥାଇପାରେ ବୋଲି ଅନୁମାନ କରାଯାଏ । ରାଜା ଉଦୟ ଭଞ୍ଜଙ୍କ ଦ୍ୱାରା ତାଙ୍କର ପୀଠ ଦେବୀ ବା ଗ୍ରାମଦେବୀ ଭାବେ ମା' ଅନ୍ଧାରୀ ପ୍ରତିଷ୍ଠିତ ହୋଇଥିଲେ । ଆଜି ମଧ୍ୟ ଉଦୟପୁର ଗ୍ରାମର ପୀଠ ଦେବୀ ଭାବେ ମା' ଅନ୍ଧାରୀ ପୂଜା ପାଇ ଆସୁଛନ୍ତି । ଏଠାରେ ଗ୍ରାମବାସୀଙ୍କ ଦ୍ୱାରା ମା' ଅନ୍ଧାରୀଙ୍କ ନିମନ୍ତେ ଏକ ମନ୍ଦିର ନିର୍ମିତ ହୋଇଛି । ଏହାବ୍ୟତୀତ ଉଦୟପୁରରେ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ଗଡ଼ଚଣ୍ଡୀ, କନକ ଦୁର୍ଗା ଏବଂ ପୁରୋ ଦେବତା ଭାବେ ମଦନ ଗୋପାଳ ଆଜି ବି ପୂଜା ପାଇ ଆସୁଛନ୍ତି । ଉଦୟପୁରର କିଛି ଦୂରରେ **କେନ୍ଦୁଆପଦା** ନିକଟରେ ବୈତରଣୀର ପ୍ରମୁଖ ଉପନଦୀ **କାଣିଜୋରି (କାନ୍‌ଝାରୀ ବା କାଳିଞ୍ଜର)** ନଦୀଟି ମିଳିତ ହୋଇଛି ।

ଉଦୟପୁରର ଗ୍ରାମଦେବୀ ମା' ଅନ୍ଧାରୀ ଗ୍ରାମବାସୀଙ୍କ ସୁଖଦୁଃଖରେ ସାହା ହୋଇଥା'ନ୍ତି ବୋଲି ଗ୍ରାମବାସୀଙ୍କ ବିଶ୍ୱାସ ରହିଛି । ଉଦୟ ଭଞ୍ଜଙ୍କ ଶାସନ କାଳ ଶେଷ ହୋଇଯିବା ପରେ ଏବଂ ଉଦୟପୁରଗଡ଼ ଧ୍ୱଂସ ପାଇଯିବା ପରେ ଉଦୟପୁରଗଡ଼ ଇତିହାସ ପାଲଟିଯାଇଥିଲା । ପରବର୍ତ୍ତୀ ଶାସକଙ୍କ ସମୟରେ ଏହାକୁ ଏକ ଦଣ୍ଡପାଟର ମାନ୍ୟତା ମିଳିଥିଲା । ଏହି ଦଣ୍ଡପାଟର ମୁଖିଆ ଭାବେ ଜଣେ ଗଡ଼ନାୟକ ପ୍ରାଶାସନିକ କାର୍ଯ୍ୟ ତୁଲାଉଥିଲେ । ଗଡ଼ନାୟକ ରାଜାଙ୍କର ପ୍ରତିନିଧି ଭାବେ ଦଣ୍ଡପାଟର ସମସ୍ତ ପ୍ରଜାଙ୍କ ସୁଖଦୁଃଖ ବୁଝୁଥିଲେ । ଏବେ ଗଣତନ୍ତ୍ର ବ୍ୟବସ୍ଥାରେ ଉଦୟପୁର ଦଣ୍ଡପାଟଟି ସାହାରପଡ଼ା ବ୍ଲକ୍‌ର ଏକ ଗ୍ରାମ ପଞ୍ଚାୟତର ମାନ୍ୟତା ପାଇଛି ।

ସାଧାରଣ ଭାବେ ବୈତରଣୀ ନଦୀ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାକୁ ବିଭକ୍ତ କରିଥାଏ । ଏହା କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ସୀମାରେଖା ନିର୍ଦ୍ଧାରଣ କରିଥାଏ । ବୈତରଣୀ ନଦୀର ଏପଟେ କେନ୍ଦୁଝର ଓ ସେପଟେ ମୟୂରଭଞ୍ଜ ବୋଲି ସ୍ଥାନୀୟ ଅଞ୍ଚଳବାସୀ ପରିଚିତ । ତେବେ କେନ୍ଦୁଝର ଜିଲ୍ଲାର ସାହାରପଡ଼ା ବ୍ଲକ୍‌ଟି ଏକ ବ୍ୟତିକ୍ରମ । ସାହାରପଡ଼ା ବ୍ଲକ୍‌ଟି କେନ୍ଦୁଝର ଜିଲ୍ଲା ଅନ୍ତର୍ଭୁକ୍ତ ହୋଇଥିଲେ ହେଁ ବୈତରଣୀ ନଦୀର ଅପରପାର୍ଶ୍ୱରେ ରହିଛି । ସାହାରପଡ଼ାର ଲୋକେ କେନ୍ଦୁଝର ସଦର ମହକୁମାକୁ ଆସିବାକୁ ହେଲେ ବୈତରଣୀ ନଦୀ ପାର ହୋଇ ଆସିବାକୁ ପଡ଼ିଥାଏ ।

ସାହାରପଡ଼ା ବ୍ଲକ୍‌ଟି କେନ୍ଦୁଝର ଜିଲ୍ଲାର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ଏହା ମୟୂରଭଞ୍ଜ ଜିଲ୍ଲା ସହିତ ବେଶ୍ ସାମଞ୍ଜସ୍ୟ ରଖିଥାଏ । ସାହାରପଡ଼ା ବ୍ଲକ୍ ସଦରମହକୁମାଠାରୁ କରଞ୍ଜିଆ ସବ୍‌ଡିଭିଜନ ସଦରମହକୁମାର ଦୂରତା ମାତ୍ର ପାଞ୍ଚ କିଲୋମିଟର । କିନ୍ତୁ ସାହାରପଡ଼ାର ଲୋକଙ୍କୁ ବୈତରଣୀ ପାର ହୋଇ କେନ୍ଦୁଝର ଜିଲ୍ଲା ସଦର ମହକୁମାକୁ ଆସିବାକୁ ପଡ଼ିଥାଏ । ପାଟଣା ନିକଟରେ ବୈତରଣୀ ଉପରେ ଏକ ପୋଲ ନିର୍ମାଣ ହୋଇଯିବାରୁ ସାହାରପଡ଼ାବାସୀ ପାଟଣା ବୈତରଣୀ ପୋଲିଆ

(ସ୍ଥାନୀୟ ଭାଷା) ଦେଇ କିମ୍ବା ତୁରୁମୁଙ୍ଗା ପୋଲିଆ ଦେଇ କେନ୍ଦୁଝରକୁ ଯିବାଆସିବା କରିଥା'ନ୍ତି । ତେବେ ଏହି ଦୁଇ ରାସ୍ତା ଦେଇ କେନ୍ଦୁଝରକୁ ଆସିବା ବହୁ ଦୂର ହେଉଥିବାରୁ ମଝି ଭାଗରେ ଅବସ୍ଥିତ ଉଦୟପୁରଠାରେ ଥିବା ବୈତରଣୀ ଡଙ୍ଗା ଘାଟ ହିଁ ସାହାରପଡାବାସୀଙ୍କ ଯାତାୟତର ଅନ୍ୟ ଏକ ପ୍ରମୁଖ ମାର୍ଗ ପାଲଟିଥାଏ ।

ପ୍ରାଚୀନ କାଳରୁ ଉଦୟପୁରର ଡଙ୍ଗାଘାଟଟି ସାହାରପଡ଼ାବାସୀଙ୍କ ପାଇଁ ଯୋଗାଯୋଗର ଏକମାତ୍ର ମାର୍ଗ ଥିଲା । ଏହି ଡଙ୍ଗାଘାଟ ଦେଇ ମୟୂରଭଞ୍ଜର କରଞ୍ଜିଆ, ସାହାରପଡ଼ାର ଲୋକେ କେନ୍ଦୁଝରକୁ ଆସୁଥିବାବେଳେ କେନ୍ଦୁଝର ଜିଲ୍ଲାର କେନ୍ଦୁଝର ସଦର, ପାଟଣା ବ୍ଲକ୍‌ର ଲୋକେ କରଞ୍ଜିଆ, ସାହାରପଡ଼ାକୁ ଯାତାୟତ କରିଥା'ନ୍ତି । ମୋଟ ଉପରେ କହିବାକୁ ଗଲେ, କେନ୍ଦୁଝର ଓ କରଞ୍ଜିଆ ମଧ୍ୟରେ ଯାତାୟତ କରିବା ପାଇଁ ଉଦୟପୁର ଡଙ୍ଗା ଘାଟଟି ପ୍ରମୁଖ ଭୂମିକା ତୁଲେଇଥାଏ ।

ଉଦୟପୁର ଡଙ୍ଗାଘାଟର ଅପରପାର୍ଶ୍ୱରେ ସାହାରପଡ଼ା ବ୍ଲକ୍‌ର ସାହାରପଡ଼ା, ଉଦୟପୁର ଗ୍ରାମ ପଞ୍ଚାୟତ ସମେତ ଗଦଗଦି, ଗୁଜିଟାଙ୍ଗିରୀ, କରଞ୍ଜିଆ ଆଦି ସ୍ଥାନ ରହିଥିବାବେଳେ ଏପଟେ କେନ୍ଦୁଝର ଜିଲ୍ଲାର ପାଟଣା ବ୍ଲକ୍‌ର ଅଁଳାଡ଼ିହା, ଖୁଣ୍ଟାପଡା, କେନ୍ଦେଇପଶି, ଗମ୍ଭୀରିଆ, ରାଜନଗର, ଶ୍ରୁଷାପୁର, ମୈଦାନ୍‌କେଲ୍ ଆଦି ସ୍ଥାନ ରହିଛି । ତେବେ ଏହି ଘାଟଟିରେ ଏକ ପୋଲ ନିର୍ମାଣ ହେବାକୁ ସ୍ଥାନୀୟ ଅଞ୍ଚଳବାସୀ ଦୀର୍ଘଦିନ ଧରି ଦାବି କରିଆସୁଥିଲେ ମଧ୍ୟ ଆଜିଯାଏ ଏଠାରେ ପୋଲ ନିର୍ମାଣ ସଂଭବପର ହୋଇପାରିନାହିଁ । ଏହି ଘାଟରେ ନାଉରିଆ ଭାବେ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି କାର୍ଯ୍ୟକରି ସନାତନ ବେହେରା ସ୍ଥାନୀୟ ଅଞ୍ଚଳରେ ଜଣେ ଦକ୍ଷ ଡଙ୍ଗାବାହକ ଭାବେ ଖୁବ୍ ପରିଚିତ ହୋଇପାରିଥିଲେ । ତେବେ ସନାତନଙ୍କର ପରଲୋକ ହୋଇଯିବା ପରେ ଏବେ ଅନ୍ୟ ନାଉରୀମାନେ ଏହି କାମକୁ ଆଗେଇ ନେବାରେ ସହାୟକ ହୋଇଛନ୍ତି । ମାତ୍ର ପୋଲ ହେଲେ ସେମାନଙ୍କର ଜୀବିକା ବୁଡ଼ିଯିବ ବୋଲି ବର୍ତ୍ତମାନର ଯୁବ ନାଉରିଆ ଟିପୁ ମହାନ୍ତ କହନ୍ତି ।

[ତଥ୍ୟ ସହାୟତା:

୧. ଟିପୁ ମହାନ୍ତ, ନାଉରିଆ, ଉଦୟପୁର ଘାଟ

୨. 'ସମୟର ଆଇନାରେ କେନ୍ଦୁଝର', ଲେଖକ: ରମେଶ ଚନ୍ଦ୍ର ଚକ୍ରବର୍ତ୍ତୀ, ମଣ୍ଡୁଆ, କେନ୍ଦୁଝରଗଡ଼ (ପ୍ରକାଶନ ସମୟ ପୁସ୍ତକରେ ଉଲ୍ଲେଖ ନାହିଁ), ପୃଷ୍ଠା: ୫୫-୫୯ ]

## ବୈତରଣୀ ଘାଟରେ ନବ ନିର୍ମିତ ପାଟଣାର ପରମେଶ୍ୱର ମନ୍ଦିର

କେନ୍ଦୁଝର ଜିଲ୍ଲାକୁ ଆସୁଥିବା ପର୍ଯ୍ୟଟକମାନଙ୍କ ପାଇଁ ପାଟଣାର ପରମେଶ୍ୱର ମନ୍ଦିର ଅନ୍ୟତମ ଆକର୍ଷଣ । ପୁଣ୍ୟତୋୟା ବୈତରଣୀ ନଦୀକୂଳରେ ଏକ ବିରାଟ ମନ୍ଦିର ପ୍ରତିଷ୍ଠା କରାଯାଇଛି । ଘରୋଇ ଉଦ୍ୟମରେ ପ୍ରତିଷ୍ଠା କରାଯାଇଥିବା ଏହି ମନ୍ଦିର ପରିସରରେ ଶ୍ରୀଶ୍ରୀ ପରମେଶ୍ୱରଙ୍କ



ସ୍ୱାମ୍‌ପାଟଣାର ପରମେଶ୍ୱର ଶିବ ମନ୍ଦିର

ମୁଖ୍ୟ ବିଗ୍ରହ ସମେତ ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ, ତାରିଣୀ ମନ୍ଦିର, ମଙ୍ଗଳା ମନ୍ଦିର, ବିଷ୍ଣୁ ମନ୍ଦିର ଓ ନଦୀ ମଧ୍ୟକୁ ଅନସୂୟା ଘାଟ ଆଦି ପ୍ରତିଷ୍ଠା କରାଯାଇଛି । ଏହି ମନ୍ଦିରଟି ଖୁବ୍ ନିକଟରେ ନିର୍ମିତ ହୋଇଥିଲେ ମଧ୍ୟ କାରୁକାର୍ଯ୍ୟ ଦୃଷ୍ଟିରୁ ବେଶ୍ ଚମତ୍କାର । ବୈତରଣୀରେ ବୁଡ ପକେଇ ଦେବଦର୍ଶନ କରିବା ସହ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଦର୍ଶନ ଏଠାକାର ମୁଖ୍ୟ ଆକର୍ଷଣ । ଏଠାରେ ଥିବା ପାଞ୍ଚ ଟନ୍ ଓଜନର ଅଖଣ୍ଡ ମୁଗୁନି ପଥରରେ ନିର୍ମିତ ବୃଷଭ ମଧ୍ୟ ଅନ୍ୟତମ ଆକର୍ଷଣ । ପରମେଶ୍ୱରଙ୍କ ମୁଖ୍ୟ ମନ୍ଦିର ବ୍ୟତୀତ ଏଠାରେ ଅନେକ ମନ୍ଦିର ନିର୍ମିତ ହୋଇଛି । ଏହି ମନ୍ଦିରସମୂହ ଓ ବୈତରଣୀ ଘାଟ ପର୍ଯ୍ୟଟକଙ୍କୁ ବିଶେଷ ଭାବେ ଆକର୍ଷିତ କରିଥାଏ ।

## ଭୀମକୁଣ୍ଡରେ ବୈତରଣୀର ଭୀମଗର୍ଜନ ରୂପ

୨୦୧୧ ମସିହାର ଫଗୁଣ ମାସର ଏକ ପୂର୍ବାହ୍ନ । କେନ୍ଦୁଝରରେ ଏହି ସମୟକୁ ଗ୍ରୀଷ୍ମର ପ୍ରକୋପ ଅନୁଭୂତ ହୋଇ ନଥାଏ । ଆମ ମୋଟର କାର୍‌ଟି କେନ୍ଦୁଝରରୁ ଢେଙ୍କିକୋଟ ଅଭିମୁଖେ ଯାତ୍ରା କରି ସେଠାରୁ ସିଧା ସ୍ୱାମ୍‌ପାଟଣାରେ ପହଞ୍ଚିଲା । ସ୍ୱାମ୍‌ପାଟଣାରୁ ଭୀମକୁଣ୍ଡରେ ପହଞ୍ଚିଲାବେଳକୁ ସୂର୍ଯ୍ୟ ଟାଣ ହୋଇସାରିଥାଏ । ମୋ' ସାଥୀରେ ଥାଆନ୍ତି 'କେନ୍ଦୁଝର ନାଗରିକ ମଞ୍ଚ'ର ସଭାପତି ଅବସରପ୍ରାପ୍ତ ଉଇଙ୍ଗ୍ କମାଣ୍ଡର କିରଣ ଶଙ୍କର ସାହୁ ଏବଂ ତତ୍‌କାଳୀନ କେନ୍ଦୁଝର କ୍ଷୁଦ୍ର ଓ ମଧ୍ୟମ ଜଳସେଚନ



**ଭୀମକୁଣ୍ଡରେ ଲେଖକ**

ଡିଭିଜନର ନିର୍ବାହୀଯନ୍ତ୍ରୀ ବି.ଏନ୍. ତ୍ରିପାଠୀ । କେନ୍ଦୁଝର ଜିଲ୍ଲାରେ ଜଳସେଚନ ବାବଦରେ ଏ ଦୁହେଁ ଖୁବ୍ ଅଭିଜ୍ଞ । ସେଦିନ ଆମ ଯାତ୍ରାର ଉଦ୍ଦେଶ୍ୟ ଥିଲା ପ୍ରସ୍ତାବିତ ଭୀମକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପର ସକରାତ୍ମକ ଦିଗ ସଂପର୍କରେ ଆକଳନ କରିବା । ଭୀମକୁଣ୍ଡର ୱାଚ୍ ଟାୱାର୍ ଉପରେ ବସି କିରଣ ମାମୁ ଏବଂ ତ୍ରିପାଠୀବାବୁ ପ୍ରକଳ୍ପର ନାନା ଦିଗ ସଂପର୍କରେ ଆଲୋଚନାରେ ବ୍ୟସ୍ତ ଥା'ନ୍ତି । ନକ୍ସା ଓ ମ୍ୟାପ୍ ଧରି ଉଭୟ ନିଜନିଜର ଯନ୍ତ୍ରପାତି ସାହାଯ୍ୟରେ ମାପଚୁପ କରୁଥା'ନ୍ତି । ଭୀମକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ ସଂପର୍କରେ 'ସମ୍ବାଦ' ଖବରକାଗଜରେ ଏକ ବିଶେଷ ନିଉଜ୍ ଷ୍ଟୋରି ପ୍ରସ୍ତୁତ କରିବାକୁ ମୁଁ ସେମାନଙ୍କ ସହ ସେହି ଅଧ୍ୟୟନରେ ସାମିଲ୍ ହେଉଥାଏ । ଏମିତି ଏମିତି, ସେଦିନ, ପୂରା ଗୋଟିଏ ଦିନ ବିତିଗଲା । ସେଦିନର ସେହି ଗୋଟିଏ ଦିନର ରହଣି ଓ ଭୀମକୁଣ୍ଡରେ ବୁଲାବୁଲି ବେଶ୍ ଆମୋଦଦାୟକ ଥିଲା । ଏହି ସ୍ମୃତି ମୋ' ମନରେ ସବୁଦିନ ପାଇଁ ତାଜା ହୋଇରହିବ ।

ଭୀମକୁଣ୍ଡ ପର୍ଯ୍ୟଟନସ୍ଥଳଟି ଉଭୟ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ସୀମାରେ ବୈତରଣୀ ନଦୀ ଗର୍ଭରେ ଅବସ୍ଥିତ । ଏଠାରେ ବୈତରଣୀ ନଦୀରେ ଥିବା ଏକ କୁଣ୍ଡରେ ଦ୍ୱିତୀୟ ପାଣ୍ଡବ ଭୀମ ସ୍ନାନ କରିଥିବାରୁ ଏହାର ନାମ 'ଭୀମ କୁଣ୍ଡ' ହୋଇଛି ବୋଲି ବିଶ୍ୱାସ କରାଯାଏ । କେନ୍ଦୁଝର ଜିଲ୍ଲାର ସ୍ୱାମ୍‌ପାଟଣା ବ୍ଲକ୍‌ରେ ଏହି ଭୀମକୁଣ୍ଡ ପର୍ଯ୍ୟଟନସ୍ଥଳଟି ଅବସ୍ଥିତ । ପାଣ୍ଡବମାନେ ବନବାସ





ଭୀମକୁଣ୍ଡ

କରୁଥିବା ସମୟରେ ଭୀମ ବୈତରଣୀ ନଦୀ କୂଳରେ ପହଞ୍ଚିଥିଲେ ଏବଂ ସେ ଏଠାରେ ସ୍ନାନ କରିଥିବାରୁ ଏହାର ନାମ 'ଭୀମକୁଣ୍ଡ' ହୋଇଛି ବୋଲି ମହାଭାରତରେ ବର୍ଣ୍ଣିତ ରହିଛି । ଭୀମକୁଣ୍ଡର ଉଭୟ ପାର୍ଶ୍ୱରେ ଦୁଇଟି ଶୈବପୀଠ ରହିଛି ।

ଭୀମକୁଣ୍ଡରେ ଦେବୀ ସୁନାମୁହିଁ ମଧ୍ୟ ପୂଜା ପାଆନ୍ତି । ନଦୀର ସୁଅ ମୁହଁରେ ଦେବୀ ସୁନାମୁହିଁଙ୍କର ଆସ୍ଥାନ ଅବସ୍ଥିତ । ସବୁଠୁ ବଡ଼ କଥା ହେଉଛି, ଦେବୀ ସୁନାମୁହିଁଙ୍କର ସେମିତି କିଛି ନିର୍ଦ୍ଦିଷ୍ଟ ମୂର୍ତ୍ତି ନାହିଁ । ପ୍ରସ୍ତରଶଯ୍ୟା ଦେଇ ବୈତରଣୀ ନଦୀର ଜଳ ପ୍ରବାହକୁ ଠାକୁରାଣୀ ମନେକରି ପୂଜାର୍ଚ୍ଚନା କରାଯାଇଥାଏ । ମକର ମେଳା ସମୟରେ ଏଠାକୁ ଲକ୍ଷାଧିକ ଭକ୍ତମାନେ ଆସି ମା'ଙ୍କ ନିକଟରେ ମାନସିକ କରିଥାନ୍ତି । ଏହି ସ୍ଥାନଟି ଅଧିକ ବିପଦପୂର୍ଣ୍ଣ ହୋଇଥିଲେ ହେଁ ପୂଜାପାଠ ସମୟରେ କୌଣସି ଅଘଟଣ ଘଟିଥିବା ନଜରକୁ ଆସିନାହିଁ । ସ୍ଥାନୀୟ ଲୋକେ ବୈତରଣୀ ନଦୀକୁ ଗଙ୍ଗାମାତା ଭାବେ ପୂଜା କରୁଥିବାବେଳେ ସୁନାମୁହିଁ ଠାକୁରାଣୀଙ୍କୁ ନାଗମାତା, ବରୁଣେଇ ମାତା ବା ପାଟମୁଖୀ ଠାକୁରାଣୀ ଭାବେ ପୂଜା କରନ୍ତି । ଏହି ସ୍ଥାନରେ ବୈତରଣୀ ନଦୀର ଉଭୟ ପାର୍ଶ୍ୱରେ ଅର୍ଥାତ୍ କେନ୍ଦୁଝର ଓ ମୟୂରଭଞ୍ଜ ସୀମାରେ ଦୁଇଟି ଭିନ୍ନଭିନ୍ନ ମହାଦେବଙ୍କ ମନ୍ଦିର ରହିଛି ।

ଭୀମକୁଣ୍ଡ ନିକଟରେ ବୈତରଣୀ ନଦୀ ଗର୍ଭ ମଧ୍ୟ ଭାଗରେ କଳାମୁଗୁନି ପଥରର ଏକ ସୁଦୀର୍ଘ ଶଯ୍ୟା ରହିଛି । ଏହା ନଦୀ ଗର୍ଭ ମଧ୍ୟ ଦେଇ ଏକ ରାସ୍ତା ଭଳି ନଦୀକୁ ଦୁଇ ଭାଗରେ ବିଭକ୍ତ କରିଛି ।

ଭୀମକୁଣ୍ଡଠାରେ ବୈତରଣୀର ଉଗ୍ର ଓ ଭୟଙ୍କର ରୂପ ଯିଏ ଦେଖିଛି, ଭୟରେ ତା' ଶରୀର ରୋମାଞ୍ଚିତ ହୋଇଛି । ପଥରଶଯ୍ୟା ଦେଇ ବୈତରଣୀ ନଦୀ ଗତି କରୁଥିବାବେଳେ ଭୀମକୁଣ୍ଡଠାରେ

ହଠାତ୍ ବହୁତଳକୁ ଖସି ପଡ଼ିଛି ଏବଂ ଏଠାରେ ଏହାର ସ୍ରୋତ ଏତେ ପ୍ରଖର ଓ ତଳକୁ ଖସି ପଡୁଥିବା ଜଳରାଶି ଏତେ ଜୋର୍‌ରେ ଶବ୍ଦ ସୃଷ୍ଟି କରିଥାଏ ସାଧାରଣ ଲୋକେ ଏହାକୁ ଦେଖି ଭୟଭୀତ ହୋଇ ପଡ଼ିଥାନ୍ତି । ବୈତରଣୀ ନଦୀର ଜଳ ଏଠାରେ ଏକ କୁଣ୍ଡ ମଧ୍ୟରେ ଘର୍ଘର ନାଦ କରି ଖସିପଡୁଥାଏ । କୁଣ୍ଡ ମଧ୍ୟରୁ ଏହି ଜଳରାଶି ପାତାଳଗାମୀ ହୋଇଥିବାର ବିଶ୍ୱାସ କରାଯାଏ । ଏଠାରୁ ବୈତରଣୀ ନଦୀ ଆଉ ଦୃଷ୍ଟିଗୋଚର ନହୋଇ ଅନ୍ତର୍ଧାନ ହୋଇଯାଇଛି । ଏଠାରୁ ପ୍ରାୟ ୧୫ କିଲୋମିଟର ପଥ ପରେ ବୈତରଣୀ ନଦୀ ପୁନଃ ଦୃଷ୍ଟିଗୋଚର ହୋଇଥାଏ ।

ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲା ପ୍ରଶାସନ ପକ୍ଷରୁ ପ୍ରତିବର୍ଷ ଏଠାରେ ମକରମେଳା ମହା ଆଡମ୍ବରରେ ପାଳନ କରାଯାଇଥାଏ । ଭୀମକୁଣ୍ଡ କେବଳ ଦର୍ଶନୀୟ ସ୍ଥାନ ପାଇଁ ନୁହେଁ ଏକ ଧାର୍ମିକ କ୍ଷେତ୍ର ଭାବରେ ଉଭୟ କେନ୍ଦୁଝର ଓ ମୟୁରଭଞ୍ଜ ଜିଲ୍ଲାର ଜନସାଧାରଣଙ୍କ ବିଶ୍ୱାସକୁ ଦୃଢ଼ କରି ପାରିଛି । ବର୍ଷତମାମ ଏହି ଦର୍ଶନୀୟ ସ୍ଥାନକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସନ୍ତି ଏବଂ ଏଠାରେ ଥିବା ଭୀମକୁଣ୍ଡ, ଜଳପ୍ରପାତ, ବୈତରଣୀର ନୀଳ ଜଳରାଶି ଏବଂ କଳା ଓ ଧଳା ପଥୁରିଆ ଶଯ୍ୟାକୁ ଉପଭୋଗ କରନ୍ତି ।

ବୈତରଣୀ ନଦୀ ଏହି ସ୍ଥାନରେ ଭୀମ ରୂପ ଧାରଣ କରି ପଥର ଶଯ୍ୟା ଉପରୁ ତଳକୁ ଲମ୍ଫ ପ୍ରଦାନ କରିଛି । ଏକ ପ୍ରକାଣ୍ଡ ଓ ସୁନ୍ଦର ଗର୍ତ୍ତ ଭିତରକୁ ବୈତରଣୀର ଜଳ ଶୋଷି ହୋଇ ଯାଉଥିବାର ଦୃଶ୍ୟ ବାସ୍ତବରେ ଭୟଙ୍କର ଓ ଉପଭୋଗ୍ୟ । ନଦୀର ଉପର ଶଯ୍ୟାରୁ ପ୍ରସ୍ତର ଗର୍ତ୍ତ ମଧ୍ୟକୁ ଜଳଧାର ତେଇଁ ପଡୁଥିବାରୁ ଘୋଘୋ ଶବ୍ଦ ସୃଷ୍ଟି ହୋଇଥାଏ । ଏହି ଭୀମ ଗର୍ଜନ ଶବ୍ଦ ମନରେ ଭୟ ସଞ୍ଚାର କରିଥାଏ । ପବିତ୍ର କାର୍ତ୍ତୀକ ମାସର ପଞ୍ଚୁକ ତିଥିରେ ହଜାର ହଜାର ଶ୍ରଦ୍ଧାଳୁ ବୈତରଣୀର ଏହି କୁଣ୍ଡରେ ବୁଡ଼ ପକେଇଥାନ୍ତି । ମକର ସଂକ୍ରାନ୍ତି ଅବସରରେ ଏଠାରେ 'ଭୀମକୁଣ୍ଡ ମହୋତ୍ସବ' ପାଳିତ ହୋଇଥାଏ । ମକର ସଂକ୍ରାନ୍ତିରେ ଭୀମକୁଣ୍ଡରେ ବୁଡ଼ ପକେଇବା ପାଇଁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ମକର ସଂକ୍ରାନ୍ତି ଦିନ ବୈତରଣୀ ନଦୀର ଭୀମକୁଣ୍ଡରେ ବୁଡ଼ ପକାଇଲେ ରୋଗ ଓ ପାପରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । କିନ୍ତୁ ରାଜ୍ୟର ଏହି ପ୍ରାକୃତିକ ଐତିହ୍ୟ ପର୍ଯ୍ୟଟନ ବିଭାଗ ଓ ପ୍ରଶାସନର ଆଢୁଆଳରେ ରହିଆସିଛି । ପ୍ରତିବର୍ଷ ମକର ମେଳା ଅବସରରେ ଦୂରଦୂରାନ୍ତରୁ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକମାନେ ଏହି ସ୍ଥାନକୁ ଆସିଥାନ୍ତି । ବୈତରଣୀ ନଦୀର ଗୋଟିଏ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ଯିବା ପାଇଁ ସାମୟିକ ଭାବେ ଏକ ଅସ୍ଥାୟୀ ଝୁଲାପୋଲ ନିର୍ମାଣ କରାଯାଇଥାଏ । ଅନ୍ୟ ଦିନରେ ଏହି ପୋଲ ନଥାଏ । ଏହାବ୍ୟତୀତ ସାନ୍ତାଳ ସଂପ୍ରଦାୟର ଆଦିବାସୀମାନେ ଏଠାରେ **'ଦାମୋଦର ପର୍ବ'** ପାଳନ କରିଥା'ନ୍ତି । ଦାମୋଦର ପର୍ବ ମାଧ୍ୟମରେ ସାନ୍ତାଳମାନେ ନିଜ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସମୂହ ଶ୍ରାଦ୍ଧ କ୍ରିୟା ସମାପନ କରିଥା'ନ୍ତି । ଏଠାରେ 'ଭୀମକୁଣ୍ଡ ଜଳବିଦ୍ୟୁତ୍ ଯୋଜନା' କାର୍ଯ୍ୟକାରୀ ହେବା ନେଇ ସରକାରଙ୍କ ପକ୍ଷରୁ ପ୍ରସ୍ତାବ ରହିଛି । ମାତ୍ର, ଏଥିନେଇ ବିଶେଷ ଅଗ୍ରଗତି ଲାଭ କରିପାରିନାହିଁ ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୧୫୧, ୧୫୨)

## ବୀରଗୋବିନ୍ଦପୁରର ରଘୁନାଥଜିଉ ମନ୍ଦିର ଓ ବ୍ରହ୍ମେଶ୍ୱର ଶୈବପୀଠ

ଏକଦମ୍ ବୈତରଣୀ ନଦୀ କୂଳରେ ଏହି ଦୁଇ ପ୍ରାଚୀନ ପୀଠ ଅବସ୍ଥିତ । କେନ୍ଦୁଝର ଜିଲ୍ଲାର ଘସିପୁରା ବ୍ଲକ୍‌ର ଗୋହିରା ପଞ୍ଚାୟତର ବୀରଗୋବିନ୍ଦପୁର ଗ୍ରାମରେ ପ୍ରାଚୀନ ରଘୁନାଥଜିଉ ମନ୍ଦିର ଅବସ୍ଥିତ । କେନ୍ଦୁଝରର ମହାରାଜା ଗୋବିନ୍ଦ ଭଞ୍ଜ (ଖ୍ରୀ·ଅ· ୧୪୮୦-ଖ୍ରୀ·ଅ· ୧୫୩୪)ଙ୍କ ଦ୍ୱାରା ଏହି ମନ୍ଦିର ନିର୍ମିତ ହୋଇଛି ବୋଲି କୁହାଯାଏ । ମହାରାଜା ଗୋବିନ୍ଦ ଭଞ୍ଜଙ୍କ ଶାସନ କାଳ ନେଇ ଭିନ୍ନ ମତ ରହିଛି । କ୍ଷେତ୍ରମୋହନ ମିଶ୍ରଙ୍କ 'କେନ୍ଦୁଝର' ପୁସ୍ତକରେ ରାଜା ଗୋବିନ୍ଦ ଭଞ୍ଜଙ୍କ ଶାସନ କାଳକୁ (ଖ୍ରୀ·ଅ· ୧୪୮୦-ଖ୍ରୀ·ଅ· ୧୫୩୪) ମଧ୍ୟରେ ଦର୍ଶାଯାଇଥିଲାବେଳେ ଅଜୟ ଚନ୍ଦ୍ର ଦାସଙ୍କ ବନ୍ଦୋବସ୍ତ ବିବରଣୀରେ ଏହି ଶାସନକାଳକୁ (ଖ୍ରୀ·ଅ· ୧୬୦୩-ଖ୍ରୀ·ଅ· ୧୬୩୪) ବୋଲି ଦର୍ଶାଯାଇଛି । ଯେହେତୁ କେନ୍ଦୁଝରର ମହାରାଜା ଗୋବିନ୍ଦ ଭଞ୍ଜଙ୍କୁ ସୂର୍ଯ୍ୟବଂଶୀ ଗଜପତି ରାଜା ପୁରୁଷୋତ୍ତମ



**ଆନନ୍ଦପୁର ଉପଖଣ୍ଡସ୍ଥ ବୀରଗୋବିନ୍ଦପୁର ରଘୁନାଥଜିଉ ମନ୍ଦିର**







ରଘୁନାଥ ମନ୍ଦିର ପରିସରରେ ଥିବା ପ୍ରାଚୀନ ମୂର୍ତ୍ତି

ଦେବ (ଖ୍ରୀ.ଅ. ୧୪୬୭-ଖ୍ରୀ.ଅ. ୧୪୯୭)ଙ୍କ ସମସାୟିକ ଭାବେ ଇତିହାସରେ ଚିତ୍ରଣ କରାଯାଇଛି. ଏ ଦୃଷ୍ଟିରୁ କ୍ଷେତ୍ରମୋହନ ମିଶ୍ରଙ୍କ ନିର୍ଦ୍ଧାରିତ ସମୟସୀମା ଯୁକ୍ତିଯୁକ୍ତ ବୋଲି ମନେ ହୋଇଥାଏ । ଏହା ଉପରେ ଅଧିକ ବିତର୍କ ଆବଶ୍ୟକ ।

ପାଣିକୋଇଲି-ରାଜାମୁଣ୍ଡା ୨୧୫ ନମ୍ବର ଜାତୀୟ ରାଜପଥରେ ଘସିପୁରାଠାରୁ ମାତ୍ର ୭ କିଲୋମିଟର ଦୂରରେ ଏହି ଐତିହାସିକ ବୀରଗୋବିନ୍ଦପୁର ଗାଁଟି ଅବସ୍ଥିତ । ଏଠାରେ କେନ୍ଦୁଝର ଭଞ୍ଜବଂଶୀ ରାଜାଙ୍କ ପୁରୋଦେବତା ପ୍ରଭୁ ଶ୍ରୀରାମ (ରଘୁନାଥ) ପୂଜା ପାଇଆସୁଛନ୍ତି । ଏଠାରେ ପ୍ରଭୁ ଶ୍ରୀରାମ, ମାତା ସୀତା ଓ ଭ୍ରାତା ଲକ୍ଷ୍ମଣଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି ।

କିମ୍ବଦନ୍ତୀ ଅନୁସାରେ କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜ କାଞ୍ଚି ଯୁଦ୍ଧରେ (ସୂର୍ଯ୍ୟବଂଶୀ ଗଜପତି ରାଜା

ପୁରୁଷୋତ୍ତମ ଦେବଙ୍କ ପ୍ରଧାନ ସେନାପତି ଭାବେ ଲଢ଼ି) ବିଜୟଲାଭ କରିବା ପରେ ସୁଦୂର କାଂଚି ରାଜ୍ୟରୁ ମା' ତାରିଣୀଙ୍କୁ କେନ୍ଦୁଝର ଆଣିବା ବେଳେ ସାଂଗରେ ଶ୍ରୀ ମଦନମୋହନ ଓ ଶ୍ରୀ ରଘୁନାଥଜିଉଙ୍କୁ ମଧ୍ୟ ଆଣିଥିଲେ । ପୁରୀରୁ କେନ୍ଦୁଝର ଆସିବା ସମୟରେ ରଘୁନାଥଜିଉ ଯେଉଁ ହାତୀ ଉପରେ ବସିଥିଲେ ସେ ହାତୀଟି ବୀରଗୋବିନ୍ଦପୁରଠାରୁ ଆଉ ଆଗକୁ ନଯାଇ ଆଣ୍ଠୁମାଡି ବସି ରହିଥିଲା । ଗୋବିନ୍ଦ ଭଞ୍ଜ ରଘୁନାଥଜିଉଙ୍କୁ ସ୍ମରଣ କରିବାରୁ ପ୍ରଭୁ ତାଙ୍କୁ ସେଠାରେ ଅବସ୍ଥାପିତ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ଏହାପରେ ଏଠାରେ ରାଜାଙ୍କ ଦ୍ୱାରା ରଘୁନାଥଜିଉଙ୍କ ଏକ ମନ୍ଦିର ନିର୍ମାଣ କରାଯାଇଥିଲା । ମନ୍ଦିର ନିର୍ମାଣ ସଂପର୍କରେ ଏଠାରେ ଥିବା ଏକ ଫଳକରେ ପାର୍ସି ଭାଷାରେ କିଛି ଉଲ୍ଲେଖ ରହିଛି । କୁହାଯାଏ, ମା' ତାରିଣୀଙ୍କ ସହିତ ରଘୁନାଥଜିଉ ମଧ୍ୟ କାଞ୍ଚିରୁ ଆସିଥିଲେ । ତାରିଣୀ ଆଜି ବିଶ୍ୱ ପ୍ରସିଦ୍ଧ ଦେବୀ ହୋଇ ପାରିଥିବାବେଳେ ରଘୁନାଥଜିଉ ଲୋକଲୋଚନରେ ଅଜ୍ଞାତ ହୋଇ ରହିଛନ୍ତି ।

ନୟାଗଡ଼ର ଓଡ଼ଗାଁ ପରେ ରାଜ୍ୟରେ ଦ୍ୱିତୀୟ ରାମ ମନ୍ଦିରର ଅବସ୍ଥା ଏବେ ଶୋଚନୀୟ ହୋଇ ପଡିଛି । ରାଜା ଗୋବିନ୍ଦ ଭଞ୍ଜଙ୍କ ନାମାନୁସାରେ ଏହି ସ୍ଥାନର ନାମ ମଧ୍ୟ ବୀରଗୋବିନ୍ଦପୁର ରଖାଯାଇଥିଲା । ଶ୍ରୀରଘୁନାଥଙ୍କୁ ପୂଜା କରିବା ପାଇଁ କେନ୍ଦୁଝର ରାଜା ଏଠାରେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ଶ୍ରୀରଘୁନାଥଜିଉଙ୍କ ମୁଖ୍ୟ ମନ୍ଦିରରେ ପ୍ରଭୁ ଶ୍ରୀରାମ, ମାତା ସୀତା ଓ ଲକ୍ଷ୍ମଣ ପୂଜା ପାଉଥିବାବେଳେ ଏହାର ଦକ୍ଷିଣ ପାର୍ଶ୍ୱରେ ରାମେଶ୍ୱର ମହାଦେବଙ୍କର ଏକ ମନ୍ଦିର ରହିଛି । ଏହି ରାମେଶ୍ୱର ଶିବ ମନ୍ଦିରଟି ପୂଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକା ବ୍ରହ୍ମେଶ୍ୱର ମନ୍ଦିରର ସମସାମୟିକ ବୋଲି କୁହାଯାଏ ।

ରଘୁନାଥଜିଉଙ୍କ ମନ୍ଦିରର ଡାହାଣ ପାର୍ଶ୍ୱରେ ଜଗନ୍ନାଥଙ୍କ ମନ୍ଦିର ରହିଛି । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ ଏକକ ଭାବେ ପୂଜା ପାଆନ୍ତି । ଭାଇ ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ଏଠାରେ ନାହିଁ । ୧୯୨୭ ମସିହା ପ୍ରଳୟଙ୍କର ବନ୍ୟାରେ ସୁଦୂର ରାଜନଗର ଅଞ୍ଚଳରୁ ଶ୍ରୀଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଭାସିଆସି ଶ୍ରୀରଘୁନାଥଜିଉଙ୍କ ମନ୍ଦିର ନିକଟସ୍ଥ ବୈତରଣୀ କୂଳରେ ଲାଗିଥିଲେ । ତତ୍କାଳୀନ ପୂଜକଙ୍କୁ ସ୍ୱପ୍ନାଦେଶ ହେବା ପରେ ନଦୀରୁ ଜଗନ୍ନାଥଙ୍କ ମୂର୍ତ୍ତି ଅଣାଯାଇ ଏଠାରେ ସ୍ଥାପନା କରାଯାଇଥିଲା । ସ୍ଥାନୀୟ ଲୋକେ ଏଠାରେ ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିବାକୁ ଉଦ୍ୟମ କରିଥିଲେ ମଧ୍ୟ ବିଫଳ ହୋଇଛନ୍ତି ବୋଲି ଶୁଣାଯାଏ । ଏଠାରେ ଜଗନ୍ନାଥଙ୍କ ରଥଯାତ୍ରା କିମ୍ବା ପ୍ରଭୁଙ୍କର କୌଣସି ବେଶ ଅନୁଷ୍ଠିତ ହୋଇ ନଥାଏ ।

ବୀରଗୋବିନ୍ଦପୁରର ରଘୁନାଥଜିଉଙ୍କ ମନ୍ଦିରରେ ଶ୍ରୀରାମ ନବମୀ ବେଶ ଧୁମଧାମରେ ପାଳନ କରାଯାଇଥାଏ । ରାମଚନ୍ଦ୍ରଙ୍କ ଜନ୍ମଦିବସଠାରୁ ଅଭିଶେକ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମ ପାରଂପରିକ ଭାବେ ଏଠାରେ ପାଳନ ହୋଇଥାଏ । ତେବେ ଏଭଳି ଏକ ପ୍ରାଚୀନ ମନ୍ଦିର ପର୍ଯ୍ୟଟନ ବିଭାଗର

ଦୃଷ୍ଟି ଆଢୁଆଳରେ ରହିଯାଇଛି । ମନ୍ଦିରର ଚଟାଣ, ଚାନ୍ଦିନୀ, ରୋଷେଇ ଘର, ବିବାହ ମଣ୍ଡପ ଏବଂ ହନୁମାନ ମନ୍ଦିର ମୁଖଶାଳା ଏବେ ଭାଂଗିରୁଜି ଗଲାଣି । ଏହାର ମରାମତି ଏବେ ଜରୁରୀ ହୋଇପଡିଛି ।

ଘସିପୁରା ବ୍ଲକର ମନ୍ଦିର ଗ୍ରାମ ଭାବେ ପରିଚିତ ବୀରଗୋବିନ୍ଦପୁରଠାରେ ରହିଛି ବହୁ ପୁରାତନ ବ୍ରହ୍ମେଶ୍ୱର ମହାଦେବଙ୍କ ପୀଠ । ଶ୍ୟାମା ଦାଶ ନାମରେ ଜଣେ ସାଧୁ ଏଠାରେ ମହାଦେବଙ୍କୁ ପ୍ରତିଷ୍ଠା କରିବା ସହିତ ମନ୍ଦିର ନିର୍ମାଣ କରିଥିବା କଥା ଲୋକମୁଖରୁ ଶୁଣିବାକୁ ମିଳେ । ଘସିପୁରାଠାରୁ ୨୧୫ ନମ୍ବର ଜାତୀୟ ରାଜପଥ ଦେଇ ଆସିଲେ, ମୁହାଁଣନାଳ ପୋଲଠାରୁ ବାମ ପାର୍ଶ୍ୱରେ ଗୋଟିଏ କିଲୋମିଟର ଦୂରରେ ଏକ ମୁଣ୍ଡିଆ ପାହାଡ ଉପରେ ଏହି ବ୍ରହ୍ମେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ ।

କିମ୍ବଦନ୍ତୀ କହେ, ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ ଶ୍ୟାମ ଦାସ ନାମକ ଜଣେ ସାଧୁ ଏଠାରେ ମହାଦେବଙ୍କୁ ପ୍ରତିଷ୍ଠା କରାଇବା ସହ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିରରେ ପୂଜାର୍ଚ୍ଚନା ପାଇଁ ସାଧୁ ଦୈନିକ ପାଣି ଆଣିବାକୁ ତିନିକିଲୋମିଟର ଦୂର ବୈତରଣୀ ନଦୀକୁ ଯାଇଥାନ୍ତି । କିନ୍ତୁ ସାଧୁ ବୃଦ୍ଧ ହୋଇଯିବାରୁ ଏତେବାଟ ଯାଇ ପାଣି ଆଣିବା ଅସମ୍ଭବ ହୋଇପଡିଲା । ପାଣି ପାଇଁ ସେ ଲୋକଙ୍କ ଉଦ୍ୟମରେ ମନ୍ଦିର ସମ୍ମୁଖରେ ଏକ ପୁଷ୍କରିଣୀ ଖନନ କଲେ । ତେବେ ପାହାଡ଼ ଉପରେ ପାଣି ଆସିବ କେଉଁଠୁ? ପାଣି ପାଇଁ ସେ ପାହାଡ଼ ଉପର ଗୁମ୍ଫାରେ ଧ୍ୟାନ କରିବାକୁ ଆରମ୍ଭ କଲେ । ଦୀର୍ଘ ଦିନର ତପସ୍ୟା ପରେ କୌଣସି ଫଳ ନ ମିଳିବାରୁ ସାଧୁ ରାଗିଯାଇ ଗଛମୂଳେ ରହିଥିବା ମା' ଦୁର୍ଗାଙ୍କ ମୂର୍ତ୍ତିକୁ ଖଣ୍ଡାରେ ହାଣି ମୁଣ୍ଡକୁ ଶରୀରରୁ ଅଲଗା କରି ଦେଇଥିଲେ । ଏହାପରେ ମା'ଙ୍କ ଆବିର୍ଭାବ ହୋଇଥିଲା ।

ବାବା ଶ୍ୟାମଦାସ ପାଣି ପାଇଁ ମା'ଙ୍କୁ ଗୁହାରୀ କରିଥିଲେ ଏବଂ ଏହାପରେ ଶୁଷ୍କ ପୁଷ୍କରିଣୀଟି ସଙ୍ଗେସଙ୍ଗେ ଜଳପୂର୍ଣ୍ଣ ହୋଇଯାଇଥିଲା । ପାହାଡ ଉପରେ ଥାଇ ମଧ୍ୟ ସେହିଦିନଠୁ ଆଜି ପର୍ଯ୍ୟନ୍ତ ଏହି ପୁଷ୍କରିଣୀଟି ଶୁଖିବା ତ ଦୂରର କଥା ବରଂ ଗ୍ରୀଷ୍ମଋତୁରେ ଏହାର ଜଳପତ୍ତନ ଆଶ୍ଚର୍ଯ୍ୟଜନକ ଭାବେ ବୃଦ୍ଧିପାଇଥାଏ । ଏହି ଜଳାଶୟରେ ସାଧାରଣ ଲୋକେ ସ୍ନାନ କରନ୍ତିନାହିଁ । କେବଳ ମହାଦେବଙ୍କ ପୂଜାର୍ଚ୍ଚନା କରାଯାଇଥାଏ । ପାହାଡ ଉପରେ ଅନ୍ୟ କୌଣସି ସ୍ଥାନରେ ଜଳ ଉତ୍ସ ନଥିବା ବେଳେ ଏହି ପୋଖରୀକୁ କେଉଁଠୁ ପାଣି ଆସୁଛି ତାହା ଆଜି ପର୍ଯ୍ୟନ୍ତ ରହସ୍ୟମୟ ହୋଇ ରହିଛି । ଏହି ପୁଷ୍କରିଣୀର ଜଳ ଚଂପା ରଙ୍ଗର ହୋଇଥିବାବେଳେ ଏହାର ସ୍ଥିର ଜଳରାଶି ଅତ୍ୟନ୍ତ ମନମୁଗ୍ଧକର ହୋଇଥାଏ । ଏହି ପାହାଡର ଶୀର୍ଷ ଦେଶରେ ଏକ ଗୁମ୍ଫା ରହିଛି । ଏହି ଗୁମ୍ଫାଟି ପର୍ଯ୍ୟଟକଙ୍କୁ ବେଶ୍ ଆକର୍ଷିତ କରିଥାଏ । ଏଠାରେ ମକର ସଂକ୍ରାନ୍ତି ଓ ଶିବରାତ୍ରି ମହା ସମାରୋହରେ ପାଳିତ ହୋଇଥାଏ । ଅପରପକ୍ଷେ, ଶୀତଦିନେ ଏଠାରେ ବଣଭୋଜି ପାଇଁ ସ୍ଥାନୀୟ ଅଞ୍ଚଳର ପର୍ଯ୍ୟଟକଙ୍କ ଭିଡ ଜମିଥାଏ ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୧୭୯, ୧୮୦, ୧୮୧)

## ଦରଗୁଡ଼ିଶିଳା: ବୈତରଣୀ ଶଯ୍ୟାରେ ପଥରଙ୍କ ମେଳା

କେଶରୀକୁଣ୍ଡ ଓ ଭୀମକୁଣ୍ଡକୁ ଛାଡ଼ିଲେ ସେହିଭଳି ବୈତରଣୀ ନଦୀର ଆଉ ଏକ ଆକର୍ଷଣୀୟ ପଥୁରିଆ ଶଯ୍ୟା ବିଶିଷ୍ଟ ଆକର୍ଷଣୀୟ ସ୍ଥାନ ହେଉଛି ଆନନ୍ଦପୁରର ଦରଗୁଡ଼ିଶିଳା । ବୈତରଣୀର ଶଯ୍ୟାରେ ମାଳମାଳ ଆକର୍ଷଣୀୟ ପଥରଖଣ୍ଡ ଓ ପଥର ଫାଙ୍କ ମଧ୍ୟ ଦେଇ ପ୍ରବାହିତ ନିର୍ମଳ ଜଳରାଶିକୁ ଦେଖିଲେ ମନ ପୂରିଉଠିଥାଏ । ଭୀମକୁଣ୍ଡ ଛାଡ଼ିଲା ପରେ ବୈତରଣୀ ପୁଣି ଏହି ଦରଗୁଡ଼ିଶିଳା ନିକଟରେ ଦୀର୍ଘ କିଲୋମିଟର ବ୍ୟାପି ପାହାଡ଼ିଆ ଅଞ୍ଚଳକୁ ଭେଦ କରି ପୁଣି ଆନନ୍ଦପୁରଠାରେ ସମତଳ ଭୂମିକୁ ସ୍ପର୍ଶ କରିଛି ।



ଦରଗୁଡ଼ିଶିଳାରେ ବୈତରଣୀ ନଦୀର ପଥୁରିଆ ଶଯ୍ୟା

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ କୋଳିମାଟି ଗ୍ରାମ ପଞ୍ଚାୟତରେ ଦରଗୁଡ଼ିଶିଳା ପର୍ଯ୍ୟଟନସ୍ଥଳଟି ଅବସ୍ଥିତ । ଏଠାକୁ ଶୀତଦିନେ ପର୍ଯ୍ୟଟକଙ୍କ ସୁଅ ଛୁଟିଥାଏ । କେନ୍ଦୁଝରପଟୁ ୨୧୫ ନମ୍ବର ଜାତୀୟ ରାଜପଥ ଦେଇ ଆନନ୍ଦପୁର ଆଡ଼କୁ ଆସିଲେ କୋଳିମାଟି ଛକ ନିକଟରେ ପଡ଼େ ଏକ ଛୋଟିଆ ଛକ, ଯାହାର ନାମ କୁମଡ଼ । କୁମଡ଼ ଛକରୁ ବାମ ଦିଗକୁ ୧୦ କିଲୋମିଟର ରାସ୍ତାରେ ଗଲେ ପଡ଼ିଥାଏ ବୈତରଣୀ ନଦୀର ଏହି ମନୋରମ ପ୍ରସ୍ତର ଶଯ୍ୟା । ପର୍ବତ ଓ ଜଙ୍ଗଲଘେରା ଏହି ପ୍ରାକୃତିକ ପରିବେଶ ପର୍ଯ୍ୟଟକଙ୍କୁ ବେଶ୍ ଆକର୍ଷିତ କରିଥାଏ । ବଣଭୋଜି ପାଇଁ ଏବେ ଦରଗୁଡ଼ିଶିଳାଟି କେନ୍ଦୁଝର ଜିଲ୍ଲାର ସବୁଠୁ ଅଧିକ ଯୋଗ୍ୟତମ ସ୍ଥାନ ପାଲଟିଛି ।

## ଗୋହିରାର ପତର ସଉରୁଣୀ ପୀଠ

ଘସିପୁରା ବ୍ଲକ୍ ଅନ୍ତର୍ଗତ ଗୋହିରା ନିକଟରେ ୨୧୫ ନମ୍ବର ଜାତୀୟ ରାଜପଥର ପାର୍ଶ୍ୱରେ ଏବଂ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ପତର ସଉରୁଣୀ ପୀଠ । ଏଠାରେ ଦେବୀ ବନ ଦୁର୍ଗା ପୂଜା ପାଉଥାନ୍ତି । ଏହି ପତର ସଉରୁଣୀ ବିଶେଷକରି ସ୍ଥାନୀୟ ବାଥୁଡି ଆଦିବାସୀ ଗୋଷ୍ଠୀ ଦେବୀ ଭାବେ ପରିଚିତ । ଏ ଅଞ୍ଚଳରେ ସଂଖ୍ୟାଗରିଷ୍ଠ ବାଥୁଡି ସଂପ୍ରଦାୟର ଆଦିବାସୀମାନେ ରହୁଥିବାରୁ ସେମାନେ ନିଜର ଗ୍ରାମ ଦେବୀ ବନ ଦୁର୍ଗାଙ୍କୁ ଏଠାରେ ଶାଳ ଗଛ ମୂଳେ ପ୍ରତିଷ୍ଠା କରି ପୂଜା କରୁଛନ୍ତି । ଏହା ନିକଟରେ ବଜରୀ ନାଳ ବହି ଯାଇଛି । ଏଠାରେ ପ୍ରତି

ମଙ୍ଗଳବାର ଦିନ ପତର ସଉରୁଣୀଙ୍କୁ ପୂଜା କରାଯାଇଥାଏ । ପ୍ରତି ବର୍ଷ ଦୁର୍ଗାଷ୍ଟମୀ, ମକର ମେଳା ଧୁମ୍‌ଧାମରେ ପାଳିତ ହୋଇଥାଏ । ଅପରପକ୍ଷେ, ବୈତରଣୀ ନଦୀ କୂଳରେ ଏହି ପୀଠଟି ଏକ ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସ୍ଥାନରେ ଅବସ୍ଥିତ ହୋଇଥିବାରୁ ଜିଲ୍ଲା ତଥା ଜିଲ୍ଲା ବାହାରୁ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକମାନେ ଆସିଥାନ୍ତି । ପିକ୍‌ନିକ୍ ପାଇଁ ଏହି ସ୍ଥାନଟି ଅତ୍ୟନ୍ତ ଅନୁକୂଳ । ପତର ସଉରୁଣୀ ଏ ଅଞ୍ଚଳର ପ୍ରତ୍ୟକ୍ଷ ଦେବୀ ବୋଲି ବାଥୁଡି ପୂଜକ ଭାବଗ୍ରାହୀ ନାଏକ ଓ ବାଥୁଡି ବୃଦ୍ଧ ମଧୁ ନାଏକ କହନ୍ତି । କେବଳ ବାଥୁଡିମାନେ ନୁହଁନ୍ତି ବରଂ ଅନ୍ୟ ସଂପ୍ରଦାୟର ଭକ୍ତମାନଙ୍କର ପ୍ରତ୍ୟକ୍ଷ ଦେବୀ ହେଉଛନ୍ତି ମା' ପତର ସଉରୁଣୀ ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୨୧୨, ୨୧୩)

## ବୈତରଣୀର ବକ୍ଷଦେଶରେ ଅବସ୍ଥିତ ପ୍ରସିଦ୍ଧ ଝାଡ଼େଶ୍ୱର ଶୈବପୀଠ ଏବଂ ମଣିତୋଟା

ବୈତରଣୀ ନଦୀର ଅବସ୍ଥିତି ଦୃଷ୍ଟିରୁ ଏହାର ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର (ଗୋନାସିକା, କେନ୍ଦୁଝର), ବକ୍ଷ ଦେଶରେ ଝାଡ଼େଶ୍ୱର (ଘସିପୁରା, କେନ୍ଦୁଝର), ନାଭି ଦେଶରେ ବରାହେଶ୍ୱର (ଯାଜପୁର)



ଝାଡ଼େଶ୍ୱର ମନ୍ଦିର

ଏବଂ ପାଦଦେଶରେ ଆଖଣ୍ଡଳେଶ୍ୱର (ଭଦ୍ରକ) ଶୈବପୀଠ ରହିଛି । ଏହା ସହିତ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରୁ ଆରମ୍ଭ କରି ଧାମରା ମୁହାଣ ପର୍ଯ୍ୟନ୍ତ ନଦୀର କୂଳେକୂଳେ ଶତାଧିକ ଶୈବପୀଠ ରହିଛି । ଏହି ନଦୀର ପ୍ରତି ଏକ କୋଶ ଦୂରରେ ଜଳ ମଧ୍ୟରେ ଶିବ ଲିଙ୍ଗ ରହିଥିବାରୁ ବୈତରଣୀର ଜଳ ପବିତ୍ର ବୋଲି କୁହାଯାଏ ।

ଆନନ୍ଦପୁର ସହରର ଦକ୍ଷିଣ ପାର୍ଶ୍ୱରେ ଘସିପୁରା ଗ୍ରାମର ଶ୍ମଶାନ ମଧ୍ୟରେ ବୈତରଣୀ କୂଳରେ ଝାଡ଼େଶ୍ୱର ଶୈବ ପୀଠ ଅବସ୍ଥିତ । ଏହି ଶୈବପୀଠଟି ବୈତରଣୀର ବକ୍ଷ ଦେଶରେ ଅବସ୍ଥିତ । ନିଘଞ୍ଚ ଝାଡ଼ ବଣ ମଧ୍ୟରେ ପ୍ରାକୃତିକ ଶୋଭାଭରା ପରିବେଶ ମଧ୍ୟରେ ଏହି ପୀଠଟି ଅବସ୍ଥିତ । ସର୍ବୋପରି ବୈତରଣୀ କୂଳରେ ଅବସ୍ଥିତ ହୋଇଥିବାରୁ ପ୍ରତି ମୁହୂର୍ତ୍ତରେ ବୈତରଣୀର ଜଳ ମନ୍ଦିରର ପାଦଦେଶକୁ ପ୍ରକ୍ଷାଳିତ କରିଥାଏ ।

ଏହି ପୀଠର ଦକ୍ଷିଣ-ପଶ୍ଚିମରେ ପ୍ରସିଦ୍ଧ 'ଶୈଲଙ୍କ ହୁଡ଼ି' ଅବସ୍ଥିତ । ଝାଡ଼େଶ୍ୱର ପୀଠକୁ ନେଇ ଏକ କିମ୍ବଦନ୍ତୀ ରହିଛି । ପଞ୍ଚଦଶ ଶତାବ୍ଦୀରେ ଆନନ୍ଦପୁରରେ ପାଟ ବସ୍ତ୍ର ବୟନ କରୁଥିବା ଏକ ପାଟରା ପରିବାରରେ ଆନନ୍ଦ ଓ ପୁନି ନାମକ ଦୁଇ ଜଣ ବାଳକ ବାଳିକା ଦୈନିକ ବୈତରଣୀ ନଦୀ ପାର ହୋଇ ଆସି ଝାଡବଣରେ ଥିବା ଏହି ଝାଡ଼େଶ୍ୱରଙ୍କ ସେବା ପୂଜା କରୁଥିଲେ । ଏକଦା ଆନନ୍ଦପୁରର ଗୋଟିଏ ଶଂଖରା ଜାତିର ବୁଢା ଶଂକର୍ଷଣ ଦାଶର ଦୁଆଁଳିଆ ଗାଈ ହଜିଗଲା । ବୁଢାଟି ଗାଈ ଖୋଜିଖୋଜି ଆସି ଝାଡ଼ବଣରେ ଗୋଟିଏ ବେଲ ଗଛମୂଳରେ ଅର୍ଦ୍ଧ ଉନ୍ମୋଚିତ ଏକ ଶିବ ଲିଂଗ ରହିଥିବାର ଦେଖିବାକୁ ପାଇଥିଲା । ଗାଈଟିର ପହ୍ନାରୁ କ୍ଷୀର ଝରି ସେଠାରେ ଥିବା ସେହି ଲିଙ୍ଗ ଉପରେ ପଡୁଥିବାର ଦେଖି ବୁଢାଟି ଆଶ୍ଚର୍ଯ୍ୟ ହୋଇଯାଇଥିଲା । ସେହିଦିନଠାରୁ ଆନନ୍ଦ ଓ ପୁନିର ପରାମର୍ଶରେ ବୃଦ୍ଧଜଣକ ଝାଡ଼େଶ୍ୱରଙ୍କ ପୂଜା ଆରାଧନା କରିବା ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ଆନନ୍ଦ ଓ ପୁନିର ମିଳିତ ନାମରେ 'ଆନନ୍ଦପୁର' ନାମର ସୃଷ୍ଟି ହୋଇଛି ବୋଲି କୁହାଯାଉଛି ।

କେନ୍ଦୁଝରର ତତ୍କାଳୀନ ରାଜା ତ୍ରିଲୋଚନ ଭଞ୍ଜ ଝାଡେଶ୍ୱରଙ୍କ ପୂଜା ଆରାଧନା ନିମନ୍ତେ ଏଠାରେ ଗୋଟିଏ ମଣ୍ଡପ ନିର୍ମାଣ କରି ପୂଜକ ନିଯୁକ୍ତି କରିଥିଲେ । ତେବେ ବୈତରଣୀ ନଦୀ ବନ୍ୟାରେ ଏହି ମଣ୍ଡପଟି ଭାଂଗିଯିବା ପରେ ପୁନର୍ବାର ୧୮୫୦ ମସିହାରେ ରାଜା ଗଦାଧର ଭଞ୍ଜ ଆଉ ଗୋଟିଏ ମଣ୍ଡପ ନିର୍ମାଣ କରିଥିଲେ । ୧୮୮୦ ମସିହାରେ ରାଜା ଧର୍ନୁଜୟ ନାରାୟଣ ଭଞ୍ଜ (ଖ୍ରୀ·ଅ· ୧୮୬୮-ଖ୍ରୀ·ଅ·୧୯୦୫) ଏଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରାଇଥିଲେ ।

ଝାଡ଼େଶ୍ୱର ମନ୍ଦିର ନିକଟରେ ବୈତରଣୀ ନଦୀ କୂଳରେ ବହୁ ପ୍ରସିଦ୍ଧ ମଣିତୋଟା ପର୍ଯ୍ୟଟନସ୍ଥଳ ରହିଛି । ଦୁର୍ଭାଗ୍ୟର ବିଷୟ ଏହି ପ୍ରାଚୀନ ତୋଟାଟି ଏବେ ଶ୍ରୀହୀନ ହୋଇଯାଇଛି । ୧୫୦ ବର୍ଷ ତଳେ ଘସିପୁରାର କିଛି ଯୁବକ ଏଠାକାର ବରିଷ୍ଠ ନାଗରିକ ମଣି ଚରଣ ସାହୁଙ୍କ ଉଦ୍ୟମରେ

ବୈତରଣୀ କୂଳରେ ଝାଡ଼େଶ୍ୱର ମନ୍ଦିରର ପଛପଟେ ଦୁଇଶହରୁ ଊର୍ଦ୍ଧ୍ୱ ଆଂବ ଗଛ ଲଗାଇ ଏହି ତୋଟାଟିର ପରିକଳ୍ପନା କରିଥିଲେ । ତାଙ୍କ ନାମାନୁସାରେ ଏହି ତୋଟାଟି ମଣିତୋଟା ନାମରେ ପ୍ରସିଦ୍ଧିଲାଭ କରିପାରିଛି । ଏହି ତୋଟାଟି ସ୍ଥାନୀୟ ଅଞ୍ଚଳବାସୀଙ୍କ ପାଇଁ ଏକ ପ୍ରମୁଖ ମନୋରଂଜନ ସ୍ଥଳୀ ଭାବେ ବେଶ ସୁନାମ ଅର୍ଜନ କରିପାରିଛି । ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ପ୍ରାଚୀନ ଆମ୍ର ବଗିଚାଟି ରାଜନୈତିକ ଦଳମାନଙ୍କଠାରୁ ଆରଂଭ କରି ବିଭିନ୍ନ ଅନୁଷ୍ଠାନମାନଙ୍କର ସମାବେଶ ସ୍ଥଳୀ ପାଲଟିଛି । ବାହାରୁ ଆସୁଥିବା ପର୍ଯ୍ୟଟକମାନେ ଏଠାରେ ବୈତରଣୀରେ ସ୍ନାନ କରି ମଣିତୋଟାରେ କିଛି ସମୟ ବିଶ୍ରାମ କରିବାକୁ ପସନ୍ଦ କରିଥା'ନ୍ତି । ତେବେ ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବ କାରଣରୁ ଏହି 'ମଣି ତୋଟା'ଟି ଏବେ ଧ୍ୱଂସ ହୋଇଯିବାକୁ ବସିଲାଣି ।

(ତଥ୍ୟ ସହାୟତା: 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୧୭୪, ୧୭୫, ୧୭୬)

## ଟୁକୁଣାର ଲକ୍ଷ୍ମୀ ନାରାୟଣ ମନ୍ଦିର, କୁଣ୍ଡେଶ୍ୱର ଶୈବ ପୀଠ

ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ ଟୁକୁଣାଠାରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ରହିଛି ଐତିହାସିକ କୁଣ୍ଡେଶ୍ୱର ଶୈବପୀଠ । ପ୍ରତିବର୍ଷ ମହାଶିବରାତ୍ରୀ, ମକର ମେଳା ଓ ଶୀତଳ ଷଷ୍ଠୀ ଯାତ୍ରା ଅବସରରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏଠାରେ ମକର ମେଳା ଅବସରରେ ସପ୍ତାହେ




ଟୁକୁଣାର କୁଣ୍ଡେଶ୍ୱର ଓ ଲକ୍ଷ୍ମୀନାରାୟଣ ମନ୍ଦିର

ବ୍ୟାପୀ ଅପେରା, ମୀନାବଜାର ଓ ହାଟବଜାର ବସିଥାଏ । ବିଭିନ୍ନ ଅଞ୍ଚଳରୁ ସହସ୍ରାଧିକ ଭକ୍ତଙ୍କ ସମାଗମ ହୋଇଥାଏ । ମକରମେଳାରେ ଏଠାରେ ବୈତରଣୀ ନଦୀରେ ବହୁ ସଂଖ୍ୟାରେ ବୁଡ଼ ପକାଇଥା'ନ୍ତି ।

କୁଣ୍ଡେଶ୍ୱର ମନ୍ଦିର ନିକଟରେ ଏକ ବିଶାଳକାୟ ହନୁମାନ ମୂର୍ତ୍ତି ରହିଛି । କୁଣ୍ଡେଶ୍ୱର ମନ୍ଦିର ବ୍ୟତୀତ ଟୁକୁଣାରେ ରହିଛି ଏକ ଆକର୍ଷଣୀୟ ଲକ୍ଷ୍ମୀ ନାରାୟଣ ମନ୍ଦିର । ଏହା ଏକ ବିଷ୍ଣୁପୀଠ ଭାବେ ସମଗ୍ର ଜିଲ୍ଲାରେ ପରିଚିତ ହୋଇପାରିଛି । ଏହି ମନ୍ଦିର ନିକଟରେ ମଧ୍ୟ ହନୁମାନଙ୍କର ଏକ ବିଶାଳ ମୂର୍ତ୍ତି ରହିଛି । ଲକ୍ଷ୍ମୀ ନାରାୟଣ ମନ୍ଦିରର ଅନତି ଦୂରରେ ମା' ମଙ୍ଗଳାଙ୍କ ଏକ ମନ୍ଦିର ରହିଛି ।

## ଆନନ୍ଦପୁରର ଗୋପାଳଜିଉ ମନ୍ଦିର

ବୈତରଣୀ ନଦୀ କୂଳରେ ଅବସ୍ଥିତ ବିଷ୍ଣୁ କ୍ଷେତ୍ରମାନଙ୍କ ମଧ୍ୟରେ ଆନନ୍ଦପୁରର ଏହି ଗୋପାଳଜିଉ ମନ୍ଦିରଟି ବହୁତ ପ୍ରାଚୀନ । ଐତିହାସିକ ଦୃଷ୍ଟିକୋଣରୁ ଏହି ମନ୍ଦିରଟି ବେଶ୍ ଗୁରୁତ୍ୱ ବହନ କରିଥାଏ । ବୈତରଣୀ ନଦୀର ବାମ ପାର୍ଶ୍ୱରେ ଅବସ୍ଥିତ ଆନନ୍ଦପୁରର ବୈଷ୍ଣବକ୍ଷେତ୍ର କୋଡ଼ପଡ଼ାଠାରେ ରହିଛି ଏହି ଗୋପାଳଜିଉଙ୍କ ପ୍ରାଚୀନ ମନ୍ଦିର । ସର୍ଭେ ଅଫ୍ ଇଣ୍ଡିଆ ଅନୁସାରେ ଏହି ମନ୍ଦିରଟି ୧୨୧୧ ସାଲରେ ନିର୍ମାଣ କରାଯାଇଥିଲା । ଏହି ମନ୍ଦିରଟିର ଶାନ୍ତଶୀତଳ ପରିବେଶ ପର୍ଯ୍ୟଟକଙ୍କୁ ବାନ୍ଧି ରଖିବାରେ ସହାୟକ ହୋଇଥାଏ । ଦେବୋତ୍ତର ବିଭାଗ ହାତରେ ମନ୍ଦିର ପରିଚାଳନା ଦାୟିତ୍ୱ ଥିଲେ ମଧ୍ୟ ଅଧିକାଂଶ ସମୟରେ ଏଥିରେ ଅନିୟମିତତା ଘଟୁଥିବାରୁ ସ୍ଥାନୀୟ ଅଞ୍ଚଳରେ ଅସନ୍ତୋଷ ପ୍ରକାଶ ପାଇଛି ।

## ଆନନ୍ଦପୁରର ଦଧିବାମନଜିଉ ମନ୍ଦିର

ବୈତରଣୀ ନଦୀ କୂଳରେ ଆନନ୍ଦପୁର ସହର ମଧ୍ୟ ଭାଗରେ ଦଧିବାମନଜିଉ ମନ୍ଦିର ଅବସ୍ଥିତ । ତତ୍କାଳୀନ କେନ୍ଦୁଝର ରାଜା ଗୋପୀନାଥ ନାରାୟଣ ଭଞ୍ଜ (ଖ୍ରୀ·ଅ·୧୯୦୫-ଖ୍ରୀ·ଅ·୧୯୨୬)ଙ୍କ ଦ୍ୱାରା ଏହି ବିଷ୍ଣୁକ୍ଷେତ୍ରଟି ପ୍ରତିଷ୍ଠା ଲାଭ କରିଥିଲା । ଦଧିବାମନଜିଉଙ୍କ ମନ୍ଦିର ପାର୍ଶ୍ୱରେ ନବ ନିର୍ମିତ ଲକ୍ଷ୍ମୀ ମନ୍ଦିର ରହିଛି । ଏହା ବ୍ୟତୀତ ମହାଦେବ ପାତକେଶ୍ୱରଙ୍କ ଏକ ମନ୍ଦିର ରହିଛି । ମନ୍ଦିର ବେଢାରେ ଏକ ରାମ ମନ୍ଦିର, ରାଧାକୃଷ୍ଣ ମନ୍ଦିର ଏବଂ ଢେଂକା ଠାକୁରଙ୍କ ମନ୍ଦିର ରହିଛି ।

ଢେଙ୍କା ମନ୍ଦିରଟି ମଧ୍ୟ ଏକ ଜଗନ୍ନାଥ ମନ୍ଦିର । ଢେଂକାରୁ ଅଣାଯାଇଥିବା ଜଗନ୍ନାଥ ମୂର୍ତ୍ତିଙ୍କୁ ଏଠାରେ ପ୍ରତିଷ୍ଠା କରାଯାଇଥିବାରୁ ଏହାକୁ ଢେଙ୍କା ମନ୍ଦିର କୁହାଯାଉଛି । ଦଧିବାମନଜିଉଙ୍କ ମନ୍ଦିର ପରିସରରେ ପ୍ରତିବର୍ଷ ରଥଯାତ୍ରା ମହାସମାରୋହରେ ପାଳିତ ହୋଇଥାଏ । ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ରୀତିନୀତି ଅନୁସାରେ ଆନନ୍ଦପୁରର ଦଧିବାମନଜିଉଙ୍କ ମନ୍ଦିରରେ ସମସ୍ତ ପୂଜାବିଧି


ଆନନ୍ଦପୁରର ଦଧିବାମନଜିଉ ମନ୍ଦିର

ଅନୁଷ୍ଠିତ ହୋଇଥାଏ । କେନ୍ଦୁଝରର ବଳଦେବଜିଉଙ୍କ ରଥଯାତ୍ରା ପରେପରେ ଆନନ୍ଦପୁରର ଦଧିବାମନଙ୍କ ରଥ ଯାତ୍ରା କେନ୍ଦୁଝର ଜିଲ୍ଲାର ଦ୍ୱିତୀୟ ବୃହତ୍ତମ ରଥଯାତ୍ରାର ମାନ୍ୟତା ହାସଲ କରିପାରିଛି ।

## ବଂଚୋର ଦଧିବାମନଜିଉ ମନ୍ଦିର

ଆନନ୍ଦପୁର ଉପଖଣ୍ଡ ହାଟଡ଼ିହି ବ୍ଲକ୍‌ର ବଂଚୋଠାରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ରହିଛି ଐତିହାସିକ ଦଧିବାମନଜିଉ ମନ୍ଦିର । ମହାରାଜା ଗୋବିନ୍ଦ ଭଞ୍ଜ (ଖ୍ରୀ·ଅ· ୧୪୮୦-ଖ୍ରୀ·ଅ· ୧୫୩୪) ଓଡ଼ିଶାର ଗଜପତି ମହାରାଜାଙ୍କଠାରୁ ବଞ୍ଚୋ ରାଜ୍ୟଟି ଉପହାର ସୂତ୍ରରେ ପାଇଥିଲେ । ଏହି ରାଜ୍ୟରେ ଆଠଗୋଟି ଗଡ଼ ରହିଥିଲା । ଏଣୁ ଏହାକୁ ଆଠଗଡ଼ ମଧ୍ୟ କୁହାଯାଇଥାଏ । ବଞ୍ଚୋ ରାଜ୍ୟର ଆନନ୍ଦପୁର ଥିଲା ଏକ ପ୍ରମୁଖ ଗ୍ରାମ । ରାଜା ଏଠାରେ ଏକ ରାଜ ନଅର ନିର୍ମାଣ କରାଇଥିଲେ । ରାଜା ଯେତେବେଳେ ଅଞ୍ଚଳ ଗସ୍ତ କରୁଥିଲେ ସେତେବେଳେ ଏହି ବଞ୍ଚୋ ରାଜପ୍ରାସାଦରେ ଅବସ୍ଥାନ କରୁଥିଲେ । ଏଠାରେ କିନ୍ତୁ କୌଣସି ଦେବ ମନ୍ଦିର ପ୍ରତିଷ୍ଠ ହୋଇ ନଥିଲା । କେନ୍ଦୁଝରଗଡ଼ ବ୍ୟତୀତ ରାଜା ଆନନ୍ଦପୁରକୁ ନିଜ ରାଜ୍ୟର ଦ୍ୱିତୀୟ ରାଜଧାନୀର ମାନ୍ୟତା ପ୍ରଦାନ କରିଥିଲେ ।

## ବଂଚୋର ଦଧିବାମନଜିଉ ମନ୍ଦିର



ସପ୍ତଦଶ ଶତାବ୍ଦୀରେ ଏହି ଗାଁରେ ତତ୍କାଳୀନ ରାଜାଙ୍କ ଦ୍ୱାରା ଦଧିବାମନଜିଉଙ୍କ ବିଗ୍ରହ ପ୍ରତିଷ୍ଠା ସମ୍ଭବ ହୋଇଥିଲା, ମାତ୍ର ମନ୍ଦିର ନିର୍ମାଣ ହୋଇ ପାରି ନଥିଲା । ତେବେ ନିକଟରେ ସ୍ଥାନୀୟ ଗ୍ରାମବାସୀଙ୍କ ଉଦ୍ୟମରେ ଦଧିବାମନଜିଉଙ୍କ ଏକ କାରୁକାର୍ଯ୍ୟପୂର୍ଣ୍ଣ କମନୀୟ ମନ୍ଦିର ନିର୍ମାଣ କରାଯାଇପାରିଛି । କେନ୍ଦୁଝରର ମହାରାଜା ଶ୍ରୀ ଶ୍ରୀ ଲକ୍ଷ୍ମୀ ନାରାୟଣ ଭଞ୍ଜ (୧୬୫୪ରୁ ୧୬୮୮)ଙ୍କ ଦ୍ୱାରା କେନ୍ଦୁଝରରେ ବଳଦେବଜିଉଙ୍କ ମନ୍ଦିର ନିର୍ମାଣ ହୋଇଥିଲା । ସେତେବେଳେ ରାଜା ବଂଚୋ ପାଟରୁ ପ୍ରଭୁ ବଳଦେବଙ୍କୁ ଆଣି କେନ୍ଦୁଝରରେ ସ୍ଥାପନ କରିଥିବା କଥା କୁହାଯାଏ । ସେହି ସମୟରେ ବଂଚୋବାସୀଙ୍କ ଅନୁରୋଧ ରକ୍ଷା କରି ତତ୍କାଳୀନ ରାଜା ବଳଦେବଜିଉଙ୍କୁ ଆଣିବା ସହିତ ଦଧିବାମନଜିଉଙ୍କୁ ସେଠାରେ ଛାଡ଼ିଦେଇ ଆସିଥିଲେ ।

ପରବର୍ତ୍ତୀ ସମୟରେ ରାଜା ଗଦାଧର ନାରାୟଣ ଭଂଜ (୧୮୩୯-୧୮୬୧) ଦଧିବାମନଜିଉଙ୍କ ପୀଠର ବିକାଶ ପାଇଁ ବହୁ ଉଦ୍ୟମ କରିଥିଲେ । ମାତ୍ର ମନ୍ଦିର ନିର୍ମାଣ ସମ୍ଭବ ହୋଇ ପାରି ନଥିଲା । କେବଳ ବିଗ୍ରହ ପୂଜା ପାଇ ଆସୁଥିଲେ । ଗତ ୨୦୦୮ ମସିହାରୁ ଗ୍ରାମବାସୀଙ୍କ ଦ୍ୱାରା ଏଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୨୦୧୨ ମସିହାରେ ଶେଷ ହୋଇଛି ।

୨୦୧୨ ମସିହା ଜାନୁୟାରୀ ୧୩ରୁ ୧୭ ତାରିଖ ମଧ୍ୟରେ ଏହି ଭବ୍ୟ ମନ୍ଦିରର ପ୍ରତିଷ୍ଠା ଉତ୍ସବ ପାଳନ କରାଯାଇଥିଲା । ଏହାବ୍ୟତୀତ ବଂଚୋ ଗ୍ରାମରେ ପୁରୁଣା ମୁକସାକ୍ଷୀ ଭାବେ ବଂଚୋ

ଗ୍ରାମଦେବତୀ ମା' ବରାହୀଙ୍କ ବହୁ ପ୍ରାଚୀନ ମୂର୍ତ୍ତି ରହିଛି । ପୁଣି ମଧ୍ୟ ଏଠାରେ ବହୁ ପ୍ରାଚୀନ ଜୈନକୀର୍ତ୍ତି ଦେଖିବାକୁ ମିଳେ । ରାଜାରାଜୁଡ଼ା ଅମଳର ଐତିହାସିକ 'ମାତୁଆ ତୋଟା' ଏଠାକାର ଅନ୍ୟ ଏକ ପ୍ରମୁଖ ଆକର୍ଷଣ । ବଂଚୋ ଗ୍ରାମଟି ଇତିହାସ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ବଂଚୋ ଗ୍ରାମକୁ ନେଇ ତତ୍କାଳୀନ କେନ୍ଦୁଝର ରାଜା ଗଦାଧର ନାରାୟଣ ଭଞ୍ଜ (୧୮୩୯-୧୮୬୧) ନିଜର କାବ୍ୟରେ ଉଲ୍ଲେଖ କରିଥିବା ଏକ ପଙ୍‌କ୍ତି ନିମ୍ନରେ ପ୍ରଦାନ କରାଗଲା-

"ଏ କେନ୍ଦୁଝରୀ ରାଜ୍ୟେ ନିୟତ ବୃତ
ବଞ୍ଚୋ ରାଜ୍ୟ ମିଳିଛି ଏହା ସଂଗତ
ଏ ବେନି ରାଜ୍ୟ କେନ୍ଦୁଝରୀ ବୋଲାଇ
ଉତ୍ର ଦେଶରେ ସାର ଅଟଇ ମହୀ ଯେ··"

ଏଣୁ ତତ୍କାଳୀନ କେନ୍ଦୁଝର ରାଜ୍ୟର ବଂଚୋ ଗ୍ରାମଟି ଐତିହାସିକ ଦୃଷ୍ଟିକୋଣରୁ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ଏବଂ ଏଠାରେ ବହୁ ପ୍ରାଚୀନ ପାରଂପରିକ, ଐତିହାସିକ ପ୍ରମାଣ ଦେଖିବାକୁ ମିଳିଥାଏ ।

(ତଥ୍ୟ ସହାୟତା:

୧· 'ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର' (୨୦୧୨), ଲେଖକ: ରଞ୍ଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପୃଷ୍ଠା: ୨୦୯, ୨୧୦

୨· କବି ଅଶୋକ ପୁହାଣ, ଆନନ୍ଦପୁର)

# ବୈତରଣୀ ଘାଟ ଓ ପ୍ରସିଦ୍ଧ ହାବଳେଶ୍ୱର ପୀଠ

*(ancient Habaleswar temple on the bank of river Baitarani)*

ଏକ ବୈଶାଖ ମାସିଆ ଝାଞ୍ଜି ଅପରାହ୍ନରେ ଆମେ ବାହାରିଲୁ ଆନନ୍ଦପୁର ଅଭିମୁଖେ । ଆନନ୍ଦପୁରରୁ ହାଟଡ଼ିହି ଦେଇ ହାବଳେଶ୍ୱରରେ ପହଞ୍ଚିଲାବେଳକୁ ସଞ୍ଜ ଉତରତ । ସୂର୍ଯ୍ୟ ବୁଡ଼ିବାକୁ ଯାଉଥା'ନ୍ତି । ସୂର୍ଯ୍ୟଙ୍କ ସୁନେଲି କିରଣ ହାବଳେଶ୍ୱର ବୈତରଣୀ ଘାଟର ପବିତ୍ର ଜଳରାଶିରେ ବିଛାଡ଼ି ହୋଇ ପଡୁଥାଏ । ଖରାଦିନିଆ ସଞ୍ଜୁଆ ପବନରେ ବୈତରଣୀରେ ସୃଷ୍ଟି ହେଉଥିବା ଛୋଟଛୋଟ ଢେଉଙ୍କ ନାଚରେ ଆମେ ବିଭୋର ହୋଇ ଉଠୁଥିଲୁ । ପ୍ରକୃତରେ ସେ ସମ୍ମୋହନକାରୀ ଦୃଶ୍ୟ ଅବର୍ଣ୍ଣନୀୟ । ଏହି ଯାତ୍ରାରେ ମୋ' ସାଥୀରେ ପତ୍ନୀ ପ୍ରଜ୍ଞା ଓ ବଡ଼ଝିଅ ଆଦି ଥିଲେ । ହାବଳେଶ୍ୱର ମନ୍ଦିର ପାଚେରୀ ଉପରେ ଚଢି ବୈତରଣୀ ଗର୍ଭକୁ ଦେଖିବାର ଅନୁଭୂତି ଖୁବ ନିଆରା ଥିଲା ।

ହାବଳେଶ୍ୱର ଘାଟର ଏପଟେ କେନ୍ଦୁଝର ଜିଲ୍ଲାର ହାଟଡ଼ିହି ବ୍ଲକ୍, ସେପେଟ ଯାଜପୁର ଜିଲ୍ଲାର କୋରେଇ ବ୍ଲକ୍ ଏବଂ ଅନ୍ୟ ଏକ ପାର୍ଶ୍ୱରେ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ବ୍ଲକ୍ । ଏଠାରେ



**ହାବଳେଶ୍ୱର ମନ୍ଦିର**

ବୈତରଣୀର ଗର୍ଭ ବେଶ୍ ପ୍ରଶସ୍ତ ଓ ଗଭୀର । ବୈତରଣୀ ଏଇଠି ଏକ ପ୍ରାକୃତିକ ପୋତାଶ୍ରୟ ସୃଷ୍ଟି କରିବାରେ ସକ୍ଷମ ହୋଇଛି । ପ୍ରକୃତରେ ହାବଳେଶ୍ୱର ଘାଟଟି ବୈତରଣୀ ଯାତ୍ରାର ଏକ ଅନନ୍ୟ ଉପହାର । ଏକଦା ହାବଳେଶ୍ୱର ଘାଟଟି ଏକ ପ୍ରାଚୀନ ନୌବାଣିଜ୍ୟ କେନ୍ଦ୍ର ଭାବେ ଆନନ୍ଦପୁର ଉପଖଣ୍ଡରେ ଖୁବ୍ ନାଁ କରିପାରିଥିଲା । ଏହି ଘାଟ ମାଧ୍ୟମରେ ବୈତରଣୀ ନଦୀରେ କେନ୍ଦୁଝର, ଅବିଭକ୍ତ କଟକ ଓ ବାଲେଶ୍ୱର ଜିଲ୍ଲା ମଧ୍ୟରେ ନୌପରିବହନ କାର୍ଯ୍ୟ ହେଉଥିଲା । ଏଠାରୁ ପରିବହନ ସାମଗ୍ରୀ ସିଧାଯାଇ ଚାନ୍ଦବାଲି ଓ ଧାମରା ବନ୍ଦରରେ ପହଞ୍ଚି ପାରୁଥିଲା ।

ସଂପୂର୍ଣ୍ଣ ବୈତରଣୀ ନଦୀ ଗର୍ଭରେ ଅବସ୍ଥିତ ଏହି ପ୍ରାଚୀନ ଶୈବପୀଠଟି ଏବେ ବିପନ୍ନ ହୋଇପଡ଼ିଛି । ପ୍ରତିବର୍ଷ ବୈତରଣୀରେ ଆସୁଥିବା ପ୍ରଳୟଙ୍କରୀ ବନ୍ୟା ଏହି ପ୍ରାଚୀନ ମନ୍ଦିର ପ୍ରତି ବିପଦ ସୃଷ୍ଟି କରିଥାଏ । ଗୋନାସିକାରୁ ବହିଆସିଥିବା ବୈତରଣୀ ଏଠାରେ ୯୦ ଡିଗ୍ରୀ କୋଣ କରି ବାମ ମୋଡ଼ ନେଇଛି । ଆଉ ଏହି କୋଣ ସ୍ଥାନରେ ନଦୀ ଗର୍ଭର ମଧ୍ୟ ଭାଗରେ ହାବଳେଶ୍ୱର ମନ୍ଦିରଟି ପ୍ରତିଷ୍ଠାଲାଭ କରିପାରିଛି । କିଭଳି ଏଭଳି ଏକ ବିପଦଜନକ ସ୍ଥାନରେ ଆମର ପୁରୁଣାକାଳର ରାଜାରାଜୁଡ଼ା ଏକ ମନ୍ଦିର ସ୍ଥାପନ କରିବାକୁ ନିଷ୍ପତ୍ତି ନେଇଥିବେ ତାହା ବିସ୍ମୟକର ମନେହୋଇଥାଏ । ବୈତରଣୀ ନଦୀରେ ବନ୍ୟା ଆସିଲେ ଏହି ମନ୍ଦିରଟି ଏବଂ ହାବଳେଶ୍ୱର ଗ୍ରାମ ପ୍ରତି ସର୍ବାଧିକ ବିପଦ

ସୃଷ୍ଟି ହୋଇଥାଏ । ଗ୍ରାମବାସୀଙ୍କ ମନରେ ଆତଙ୍କ ଖେଳିଯାଇଥାଏ । ମାତ୍ର ପ୍ରଭୁ ହାବଳେଶ୍ୱର ମହେଶଙ୍କ ଅପାର କରୁଣାରୁ ବିପଦ ଟଳି ଯାଇଥାଏ ବୋଲି ଗ୍ରାମବାସୀ କହନ୍ତି ।

କେନ୍ଦୁଝର ଜିଲ୍ଲାର ହାଟଡ଼ିହି ବ୍ଲକ୍ ଅନ୍ତର୍ଗତ ହାବଳେଶ୍ୱର ପଞ୍ଚାୟତ ହାବଳେଶ୍ୱର ଗ୍ରାମରେ ଏହି ପୀଠଟି ଅବସ୍ଥିତ । ଏହି ସ୍ଥାନଟି କେନ୍ଦୁଝର, ଭଦ୍ରକ ଓ ଯାଜପୁର ଜିଲ୍ଲାର ସୀମାଂତବର୍ତୀ ଅଞ୍ଚଳରେ ଅବସ୍ଥିତ କହିଲେ ଠିକ୍ ହେବ । ଏହାର ଟିକେ ଆଗକୁ ଗଲେ ନୂଆଗାଁ । ଆଉ ସେହିଠାରୁ ହିଁ ବୈତରଣୀ ନଦୀ କେନ୍ଦୁଝର ଛାଡ଼ି ଭଦ୍ରକ ଜିଲ୍ଲାକୁ ଛୁଇଁଛି । ହାବଳେଶ୍ୱର ନିକଟରେ ବୈତରଣୀର ଗୋଟିଏ ପାର୍ଶ୍ୱରେ କେନ୍ଦୁଝର ଜିଲ୍ଲା ହୋଇଥିବାବେଳେ ଅପରପାର୍ଶ୍ୱରେ ଯାଜପୁର ଜିଲ୍ଲା । ଏପଟେ ହାଟଡ଼ିହି ବ୍ଲକ୍‌ର ହାବଳେଶ୍ୱର ଥିବାବେଳେ ଅପରପାର୍ଶ୍ୱରେ ଯାଜପୁର ଜିଲ୍ଲା କୋରେଇ ବ୍ଲକ୍‌ର ଐତିହାସିକ **ମୁକୁନ୍ଦପୁର** ଗ୍ରାମ ରହିଛି । ଏହା ଏକ ପ୍ରାଚୀନ ନଦୀ ଘାଟ ଥିଲା । ଏପଟ ଘାଟକୁ **'ହାବଳେଶ୍ୱର ଘାଟ'** କୁହାଯାଉଥିବାବେଳେ ଅପରପାର୍ଶ୍ୱ ଘାଟକୁ **ମୁକୁନ୍ଦପୁର ଘାଟ** କୁହାଯାଇଥାଏ ।



ହାବଳେଶ୍ୱର ମନ୍ଦିର ଓ ପ୍ରାଚୀନ ମୂର୍ତ୍ତି

ଓଡ଼ିଶାରେ ମନ୍ଦିରଗୁଡିକ ପ୍ରାୟ ପୂର୍ବମୁଖା ଥିବାବେଳେ ଏହି ମନ୍ଦିରଟି ପଶ୍ଚିମ ମୁଖା । ଏଠାରେ ମହାଶିବରାତ୍ରୀ, କାର୍ତ୍ତୀକ ପୂର୍ଣ୍ଣିମା ପାଳିତ ହୋଇଥାଏ ବୋଲି ମନ୍ଦିର ପୂଜକ ଗୌରାଙ୍ଗ ପଣ୍ଡା କହନ୍ତି । ଏଠାରେ ବୈତରଣୀ ନଦୀଟି ଭୀଷଣ ଭାବେ ମୋଡ଼ ନେଇଥିବାରୁ ନଦୀରେ ତଥା ମହାଦେବଙ୍କ ମନ୍ଦିରର ଠିକ୍ ତଳକୁ ଭୟଙ୍କର ଜଳସ୍ରୋତ ଓ ଭଉଁରୀ ଖେଳିଥାଏ । ପ୍ରତିବର୍ଷ



**ହାବଳେଶ୍ୱର ଘାଟରେ ଏକ ଗ୍ରୀଷ୍ମ ଅପରାହ୍ନରେ ଲେଖକ**

ବନ୍ୟାରେ ମନ୍ଦିରଟିର ଅନେକ ଅଂଶ ବୁଡ଼ିଯାଇଥାଏ । ତଥାପି ମନ୍ଦିରର କିଛି କ୍ଷୟକ୍ଷତି ହୋଇ ନଥାଏ ବୋଲି ଗାଁ ଲୋକେ କହନ୍ତି ।

ହାବଳେଶ୍ୱର ମହେଶଙ୍କ ଏହି ପ୍ରାଚୀନ ମନ୍ଦିରକୁ କେନ୍ଦୁଝରର ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜ (ଖ୍ରୀ·ଅ· ୧୮୬୮– ଖ୍ରୀ·ଅ· ୧୯୦୫) ନିର୍ମାଣ କରିଥିଲେ । ଏହା କେନ୍ଦୁଝରର ଶେଷ ସୀମା ହୋଇଥିବାରୁ ତତ୍କାଳୀନ କେନ୍ଦୁଝର ରାଜ୍ୟର ଏକ ସ୍ମାରକୀ ବହନ କରିବା ଉଦ୍ଦେଶ୍ୟରେ ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଏଠାରେ ଏକ ଆକର୍ଷଣୀୟ ମନ୍ଦିର ନିର୍ମାଣ କରିଥିଲେ । ଏହି ମନ୍ଦିରର ଦ୍ୱାରଦେଶରେ ଏକ ଆକର୍ଷଣୀୟ ପଥର ଖୋଦେଇକରା ପ୍ରାଚୀର ରହିଛି ଯାହାକି ଅତି ପ୍ରାଚୀନ ବୋଲି ଅନୁମାନ କରାଯାଏ । ଆହୁରି ମଧ୍ୟ ରାଜା ଏହି ମନ୍ଦିରଠାରୁ ବୈତରଣୀ ନଦୀର ଶଯ୍ୟା ପର୍ଯ୍ୟନ୍ତ ପଥର ପ୍ୟାକିଂ କରାଇ ଆଡିବନ୍ଧ ନିର୍ମାଣ କରିଥିଲେ ।

ଯାଜପୁର ସହରର ଦଶାଶ୍ୱମେଧ ଘାଟରେ ଥିବା ସପ୍ତମାତୃକା ମନ୍ଦିର ଭଳି ଏଠାରେ ମଧ୍ୟ 'ସାତ ଭଉଣୀ' ମନ୍ଦିର ଅଛି । ଏହି ମନ୍ଦିରରେ କଳା ମୁଗୁନି ପଥରରେ ନିର୍ମିତ ସାତଗୋଟି ଦେବୀ ମୂର୍ତ୍ତି ପୂଜା ପାଉଛନ୍ତି । କେନ୍ଦୁଝର ଜିଲ୍ଲାର ଏକ ପ୍ରାଚୀନ ଶକ୍ତିପୀଠ ଭାବେ ଏହା ପରିଚିତ । ଏହି ହାବଳେଶ୍ୱର ଗ୍ରାମରେ ହନୁମାନ ଏବଂ ଶ୍ରୀରାମ ମନ୍ଦିର ରହିଛି ।

**(ତଥ୍ୟ ସହାୟତା: ଗୌରାଙ୍ଗ ପଣ୍ଡା, ହାବଳେଶ୍ୱର ମନ୍ଦିର ପୂଜକ)**

## ଚତୁର୍ଥ ପରିଚ୍ଛେଦ

# ଯାଜପୁରରେ ବୈତରଣୀ

## ପ୍ରାଚୀନ ଉତ୍କଳର ରାଜଧାନୀ: ଯାଜପୁର

*(Jajpur; the historic city of heritage and culture)*

ବିରଜା କ୍ଷେତ୍ର 'ଯାଜପୁର' ବା 'ଯାଜନଗ୍ର'ଠାରେ ବୈତରଣୀ ନଦୀ କୂଳରେ ଭାରତର ଏକ ପ୍ରାଚୀନ ନଗର ସଭ୍ୟତା ଆରଂଭ ହୋଇଥିଲା । ଯାଜପୁରଟି ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷର ପ୍ରାଚୀନ ସହରମାନଙ୍କ ମଧ୍ୟରେ ଏକ ପ୍ରମୁଖ ସହର । ଦୀର୍ଘ ଚାରିଶହ ବର୍ଷ ଧରି ଯାଜପୁର ପ୍ରାଚୀନ ଓଡ଼ିଶାର ରାଜଧାନୀ ଭାବେ ଗୌରବ ବହନ କରିଥିଲା । ଯାଜପୁର ହେଉଛି ସର୍ବଧର୍ମ ସମନ୍ୱୟର ପୀଠ । ଏଠାରେ ବୌଦ୍ଧ, ଜୈନ, ହିନ୍ଦୁ ଓ ମୁସଲମାନ ଭଳି ଅନେକ ଧର୍ମର ପ୍ରଚାର ଓ ପ୍ରସାରଲାଭ ହୋଇପାରିଛି । ଏଠାକୁ ଦିନେ ଗୌତମ ବୁଦ୍ଧ ଓ ଶ୍ରୀଚୈତନ୍ୟଙ୍କ ଭଳି ସନ୍ଥମାନଙ୍କ




ଆଗମନ ଘଟିଥିଲା । ରତ୍ନଗିରି, ଉଦୟଗିରି, ଲାଙ୍ଗୁଡ଼ି, ରାଧାନଗର ଏବଂ ଲଳିତଗିରି (କଟକ ଜିଲ୍ଲା) ଭଳି ବୌଦ୍ଧ ଉପାସନାସ୍ଥଳ ଓ ବୌଦ୍ଧବିହାରମାନ ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଗଢି ଉଠିଥିଲା । ହୁଏନ୍‌ସାଂଙ୍କ ବିବରଣୀ (ଖ୍ରୀ·ଅ· ୬୩୯) ବର୍ଣ୍ଣିତ ପୁଷ୍ପଗିରି ବୌଦ୍ଧବିହାର ଯାଜପୁର ଜିଲ୍ଲାର ବୋଲି ଗ୍ରହଣ କରାଯାଇଥାଏ । ବୈତରଣୀ ନଦୀ ଅବବାହିକାରେ ଯାଜପୁର ଜିଲ୍ଲାରେ ବୌଦ୍ଧ ଧର୍ମର ବ୍ୟାପକ ପ୍ରଚାର ଓ ପ୍ରସାର ଘଟିଥିଲା । ପ୍ରାଚୀନ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ **ରାଜା ମୁକୁନ୍ଦ ଦେବ** କଳାପାହାଡ଼ ସହିତ ଯୁଦ୍ଧ କରି **ଗୋହିରାଟିକିରି**ଠାରେ ପ୍ରାଣତ୍ୟାଗ କରିଥିଲେ ।

ଐତିହାସିକ ଦୃଷ୍ଟିକୋଣରୁ ଯାଜପୁର ସହରଟି ସମଗ୍ର ଭାରତବର୍ଷର ଏକ ପ୍ରମୁଖ ପ୍ରାଚୀନ ସହର ଭାବେ ପରିଚିତ । ଏହି ଐତିହାସିକ ପୁରୁଣା ସହରଟି ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଗଢି ଉଠିଥିଲା । ଭୌମକର ଏବଂ ସୋମବଂଶୀଙ୍କ ରାଜତ୍ୱ ସମୟରେ ଯାଜପୁର ତତ୍କାଳୀନ

ଓଡ଼ିଶାର ରାଜଧାନୀ ଥିଲା । ଏହା ପ୍ରାଚୀନ ଉତ୍କଳର ଧାର୍ମିକ, ସାଂସ୍କୃତିକ ଓ ଅର୍ଥନୈତିକ ପ୍ରାଣକେନ୍ଦ୍ର ଭାବେ ପ୍ରତିଷ୍ଠା ଅର୍ଜନ କରିପାରିଥିଲା । ଏଭଳିକି ଓଡ଼ିଶାରେ ଗଙ୍ଗ ବଂଶୀ ଓ ସୂର୍ଯ୍ୟବଂଶୀ ଗଜପତି ଶାସନ କାଳରେ ଯାଜପୁର ସହରଟି ଏକ ପ୍ରମୁଖ ପ୍ରାଶାସନିକ କେନ୍ଦ୍ରର ମାନ୍ୟତା ବଜାୟ ରଖିପାରିଥିଲା ।

ଯାଜପୁର, ଦୀର୍ଘ ଚାରିଶହ ବର୍ଷଧରି ପ୍ରାଚୀନ ଓଡ଼ିଶାର ଦୁଇଟି ପ୍ରମୁଖ ରାଜବଂଶର ରାଜଧାନୀ ହୋଇରହିଥିଲା । ଗଙ୍ଗ ରାଜତ୍ୱ କାଳରେ ଏହାର ରାଜନୈତିକ ଗୁରୁତ୍ୱ ହ୍ରାସ ପାଇଥିଲା । ଯାଜପୁର ଭୌମକର (ଖ୍ରୀ·ଅ·୭୩୬-ଖ୍ରୀ·ଅ·୯୨୩) ଓ ସୋମବଂଶୀ (ଖ୍ରୀ·ଅ·୯୨୫-ଖ୍ରୀ·ଅ·୧୧୧୦)ମାନଙ୍କ ରାଜଧାନୀ ଭାବେ ଚାରିଶହ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ରହିଆସିଥିଲା । ପ୍ରାୟ ଦୁଇ ଶହ ବର୍ଷ (ଖ୍ରୀ·ଅ·୭୩୬-ଖ୍ରୀ·ଅ·୯୨୩) ଧରି ଭୌମକରମାନେ ଓଡ଼ିଶାରେ ଶାସନ କରିଥିଲେ । ଭୌମକର ରାଜ୍ୟର ରାଜଧାନୀ **'ଗୁହଦେବପାଟକ'** ଅର୍ଥାତ୍ ଆଧୁନିକ ଯାଜପୁର ଥିଲା । ଏହି ସମୟରେ କୋଶଳ (ଆଧୁନିକ ସମ୍ବଲପୁର, ବଲାଙ୍ଗୀର)ରେ ଜନ୍ମେଜୟ (ମହାଭବଗୁପ୍ତ) (ଖ୍ରୀ·ଅ·୮୮୨-ଖ୍ରୀ·ଅ·୯୨୨) ନାମରେ ଜଣେ ରାଜା ଶାସନ କରୁଥିଲେ । ସେ ପଶ୍ଚିମରେ କୋଶଳ ରାଜ୍ୟ ପ୍ରତିଷ୍ଠା କରିବା ପରେ ନିଜର ସାମ୍ରାଜ୍ୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ରଣଭଞ୍ଜଙ୍କୁ ଯୁଦ୍ଧରେ ପରାସ୍ତ କରି ଭୌମକରମାନଙ୍କ ସହଯୋଗରେ ଉପକୂଳ ଓଡ଼ିଶାକୁ ଦଖଲ କଲେ । ଏତିକି ବେଳକୁ ଭୌମକରମାନେ ଦୁର୍ବଳ ହୋଇପାରିଥିଲେ । **ଜନ୍ମେଜୟଙ୍କ ପୁତ୍ର ପ୍ରଥମ ଯଯାତି** (ଖ୍ରୀ·ଅ·୯୨୨-ଖ୍ରୀ·ଅ·୯୫୫) ଭୌମକରମାନଙ୍କ ରାଜଧାନୀ **ଗୁହଦେବପାଟକ** ଦଖଲ କରି ଏହାର ନାମ **'ଯଯାତି ନଗର' (ଯାଯନଗ୍ର)** ରଖିଲେ । ଏଠାରେ ସେ ବିଧିବଦ୍ଧ ଭାବେ **ସୋମବଂଶ** ପ୍ରତିଷ୍ଠା କଲେ । ପ୍ରଥମ ଜନ୍ମେଜୟଙ୍କୁ ସୋମବଂଶର ପ୍ରଥମ ରାଜା କୁହାଯାଉଥିବାବେଳେ ଯାଜପୁରଠାରେ ନୂତନ ରାଜଧାନୀ ପ୍ରତିଷ୍ଠା କରି ନୂତନ ସୋମବଂଶର ପ୍ରଥମ ରାଜା ଭାବେ ପ୍ରଥମ ଯଯାତି କେଶରୀ (ଖ୍ରୀ·ଅ·୯୨୨-ଖ୍ରୀ·ଅ·୯୫୫)ଙ୍କୁ ଗ୍ରହଣ କରାଯାଇଥାଏ । ପ୍ରଥମ ଯଯାତି କେଶରୀଙ୍କ ନାମାନୁସାରେ ବୈତରଣୀ କୂଳରେ ପ୍ରତିଷ୍ଠା ହୋଇଥିବା ସୋମବଂଶର ନୂତନ ରାଜଧାନୀର ନାମ 'ଯଯାତି ନଗର' ବା 'ଯାଯନଗ୍ର' ରଖାଗଲା । ଆଉ ଏହା ପରଠୁ ପୁଣି ଦୁଶ ଶହ ବର୍ଷର ଶାସନ ଅବଧି ଯୋଡ଼ି ହୋଇଗଲା ଯାଜପୁର ସହିତ ।

ଭୌମକରମାନଙ୍କ ପତନ ପରେ ଖ୍ରୀ·ଅ· ୯୨୨ରୁ ସୋମବଂଶୀମାନେ ଯାଜପୁରର ବୈତରଣୀ କୂଳରେ ନଗର ପ୍ରତିଷ୍ଠାକରି ଶାସନ ଆରମ୍ଭ କଲେ । ଏହି ଶାସନକାଳ ଓଡ଼ିଶାରେ ଗଙ୍ଗ ବଂଶର ଉତ୍‌ଥାନ (ଖ୍ରୀ·ଅ· ୧୧୧୦) ପର୍ଯ୍ୟନ୍ତ ପ୍ରାୟ ଦୁଇ ଶହ ବର୍ଷ ଧରି ଚାଲୁ ରହିଥିଲା । ସୋମବଂଶର ଶେଷ ରାଜା କର୍ଣ୍ଣଦେବ ପଞ୍ଚମ ମହାଶିବଗୁପ୍ତ (ଖ୍ରୀ·ଅ·୧୧୦୦-ଖ୍ରୀ·ଅ୧୧୧୦)ଙ୍କ ପରେ ଯାଜପୁର ଗଙ୍ଗ ବଂଶ ଅଧୀନକୁ ଚାଲିଯାଇଥିଲା । ଏହି ସମୟରେ ଗଙ୍ଗବଂଶୀମାନେ ଦକ୍ଷିଣରେ ଶାସନ

କରୁଥିଲେ ଏବଂ **କଳିଙ୍ଗନଗର** (**ମୁଖଲିଙ୍ଗମ୍**, ବର୍ତ୍ତମାନ ଆନ୍ଧ୍ରପ୍ରଦେଶରେ ଅବସ୍ଥିତ) ସେମାନଙ୍କର ରାଜଧାନୀ ଥିଲା । ଗଙ୍ଗବଂଶର ପ୍ରଥମ ରାଜା ଅନନ୍ତ ବର୍ମା ବଜ୍ରହସ୍ତ (ଖ୍ରୀ·ଅ·୧୦୩୮–ଖ୍ରୀ·ଅ·୧୦୬୯) ମୁଖଲିଙ୍ଗମ୍ (କଳିଙ୍ଗନଗର)ଠାରେ ରାଜଧାନୀ ପ୍ରତିଷ୍ଠା କରି ଶାସନ ଚଳାଇଥିଲେ । ମାତ୍ର ତାଙ୍କ ପରବର୍ତ୍ତୀ **ଗଙ୍ଗବଂଶୀ ସମ୍ରାଟ ଚୋଡ଼ଗଙ୍ଗଦେବ** (ଖ୍ରୀ·ଅ· ୧୦୭୬–ଖ୍ରୀ·ଅ· ୧୧୪୭) ୧୧୧୨ ଖ୍ରୀଷ୍ଟାବ୍ଦରେ ଯାଜପୁରକୁ ନିଜ ଦଖଲକୁ ନେଇ ଓଡ଼ିଶାରେ ସଂପ୍ରସାରିତ ବୃହତ୍ ଗଙ୍ଗ ବଂଶ ପ୍ରତିଷ୍ଠା କରିଥିଲେ । ମାତ୍ର, ଚୋଡ଼ଗଙ୍ଗଦେବ ତାଙ୍କ ରାଜଧାନୀକୁ ଯାଜପୁରରେ ରଖିବାକୁ ମନ ବଳାଇଲେ ନାହିଁ । ସେ ରାଜଧାନୀକୁ **ଯାଜପୁରରୁ ବାରାଣାସୀ କଟକ**କୁ ସ୍ଥାନାନ୍ତର କରି ନେଇଥିଲେ । ରାଜଧାନୀ ଯାଜପୁରରୁ କଟକକୁ ଆସିବା ପରେ ଯାଜପୁରର ରାଜନୈତିକ ଓ ସାଂସ୍କୃତିକ ଗୁରୁତ୍ୱ ହ୍ରାସ ପାଇଥିଲା । ତେବେ ଦୀର୍ଘ ଚାରିଶହ ବର୍ଷ ଧରି ଓଡ଼ିଶାର ରାଜଧାନୀ ଥିବା ପୁରାତନ ଯାଜପୁର ସହର ଏବେ ବି ତାର ପ୍ରାଚୀନ ଗୌରବ ଓ ଅତୀତର ସ୍ମୃତିକୁ ନେଇ ଗର୍ବ କରିଥାଏ ।

[ତଥ୍ୟ ସହାୟତା:

୧· ଓଡ଼ିଶା ଇତିହାସ, ସଂ: ପ୍ରୀତୀଶ ଆଚାର୍ଯ୍ୟ, ପ୍ରକାଶକ: ଆମ ଓଡ଼ିଶା, ୨୦୧୧, ପୃଷ୍ଠା : ୪୮, ୪୯, ୫୦, ୫୧, ୫୨, ୫୩ ଓ ୬୭, ୬୮, ୬୯, ୭୦

*2. Chronology of the Bhaumakaras and Somavamsis of Odisha, Dr. K.C. Panigrahi, Bhopal, 1961, p: 10-15*]

ଯାଜପୁର ସହରଟିର ନାମକରଣ ନେଇ ଭିନ୍ନଭିନ୍ନ ମତ ରହିଛି । 'ଯଜ୍ଞପୁର'ରୁ ଯାଜପୁର ସହରର ନାମକରଣ ହୋଇଥାଇପାରେ ବୋଲି କିଛି ଗବେଷକ ମତ ଦେଉଥିବାବେଳେ ଆଉ କିଛି କହନ୍ତି ଏହା 'ଯଯାତିପୁର' (ଯଯାତିନଗର)ରୁ ସୃଷ୍ଟି ହୋଇଛି । ସୋମବଂଶୀ ସମ୍ରାଟ ପ୍ରଥମ ଯଯାତି କେଶରୀ (ଖ୍ରୀ·ଅ·୯୨୨–ଖ୍ରୀ·ଅ·୯୫୫) ପୁଣ୍ୟତୋୟା ବୈତରଣୀ ତଟରେ ଦଶାଶ୍ୱମେଧ ଯଜ୍ଞ ସମାପନ କରି ଦିଗ୍‌ବିଜୟୀ ହୋଇଥିଲେ । ସେ କାନ୍ୟକୁବ୍‌ଜରୁ ଦଶ ହଜାର ବ୍ରାହ୍ମଣଙ୍କୁ ଅଣାଇ ଯାଜପୁରଠାରେ ବୈତରଣୀ ଘାଟରେ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ଏଠାରେ ରାଜା ପ୍ରଥମ ଯଯାତି କେଶରୀଙ୍କ ଦ୍ୱାରା ଏକ ବିଶାଳ ଯଜ୍ଞର ଆୟୋଜନ କରାଯାଇଥିବାରୁ ଏହାକୁ 'ଯଜ୍ଞପୁର' କୁହାଯାଇଥାଏ । ଏହି 'ଯଜ୍ଞପୁର'ରୁ ସମ୍ଭବତଃ ଯାଜପୁରର ସୃଷ୍ଟି ହୋଇଥାଇପାରେ ବୋଲି ବିଶ୍ୱାସ କରାଯାଏ ।

ପୌରାଣିକ ମତ ଅନୁସାରେ, ବ୍ରହ୍ମାଙ୍କ ଦ୍ୱାରା ବୈତରଣୀ ନଦୀ ତୀରରେ ଯଜ୍ଞ ସମାପନ ହେତୁ ଏହାକୁ 'ଯଜ୍ଞପୁର' ଏବଂ ବିଷ୍ଣୁଙ୍କ ଆୟୁଧ ଗଦା ସ୍ଥାପନ ହେତୁ ଏହା ମଧ୍ୟ 'ଗଦାକ୍ଷେତ୍ର' ଭାବେ ପରିଚିତ । ପୁରାତନ ଯାଜପୁର କ୍ଷେତ୍ରଟି ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ, ବୌଦ୍ଧ, ଜୈନ, ଇସ୍‌ଲାମ୍ ଧର୍ମ ସଂସ୍କୃତିର ସମନ୍ୱୟ ରକ୍ଷା କରିପାରିଛି ।

ଏକଦା ପ୍ରାଚୀନ ଉତ୍କଳରେ ଭୌମକର ବଂଶୀୟ (ଖ୍ରୀ·ଅ ୭୩୬-ଖ୍ରୀ·ଅ· ୯୨୩) ଶାସକମାନଙ୍କ ଅଧୀନରେ ଥିବା ସୁପ୍ରସିଦ୍ଧ ଯାଜପୁର କଳା, ସ୍ଥାପତ୍ୟ, ଐତିହ୍ୟ, ସଂସ୍କୃତି କ୍ଷେତ୍ରରେ ସମଗ୍ର ଭାରତବର୍ଷରେ ଏକ ନିଆରା ପରିଚୟ ସୃଷ୍ଟି କରିପାରିଥିଲା । ଏହି ଭୌମକର ରାଜ୍ୟର ରାଜଧାନୀ **'ଗୁହଦେବପାଟକ'** (ଆଧୁନିକ ଯାଜପୁର) ଥିଲା । ବୈତରଣୀ ନଦୀ କୂଳରେ ନିଜର ରାଜଧାନୀ ପ୍ରତିଷ୍ଠା କରି ଭୌମକରମାନେ ନିଜର ସାମ୍ରାଜ୍ୟକୁ ଉତ୍ତରରେ ମେଦିନିପୁରରୁ ଦକ୍ଷିଣରେ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ବିସ୍ତାରଲାଭ କରିପାରିଥିଲେ । ଭୌମକର ରାଜାମାନେ ପ୍ରାଥମିକ ଅବସ୍ଥାରେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ, ମାତ୍ର ପରବର୍ତ୍ତୀ ସମୟରେ ବ୍ରାହ୍ମଣ୍ୟ ଧର୍ମରେ ପ୍ରଭାବିତ ହୋଇ ଶୈବ ଧର୍ମର ଉପାସକ ପାଲଟିଥିଲେ । **କ୍ଷେମଙ୍କର ଦେବ** (ଖ୍ରୀ·ଅ· ୭୩୬-ଖ୍ରୀ·ଅ· ୭୫୬)ଙ୍କୁ **ପ୍ରଥମ ଭୌମ ରାଜା** ବୋଲି ଗ୍ରହଣ କରାଯାଏ । ଯଦିଓ କ୍ଷେମଙ୍କର ଦେବ ଭୌମ ବଂଶର ପ୍ରତିଷ୍ଠାତା ଥିଲେ ତେବେ ତାଙ୍କ ପରବର୍ତ୍ତୀ ରାଜା ପ୍ରଥମ ଶିବକର ଦେବ (ଖ୍ରୀ·ଅ· ୭୫୬-ଖ୍ରୀ·ଅ· ୭୮୬) ହିଁ ଏହି ରାଜବଂଶକୁ ଦେଇପାରିଥିଲେ ଏକ ନୂତନ ପରିଚୟ । ତାଙ୍କ ସମୟରେ ଭୌମବଂଶ ଏକ ନୂତନ ପରିଚୟ ଲାଭ କରିପାରିଥିଲା ।

(ତଥ୍ୟ ସହାୟତା: ଓଡ଼ିଶା ଇତିହାସ, ସଂ: ପ୍ରୀତୀଶ ଆଚାର୍ଯ୍ୟ, ପ୍ରକାଶକ: ଆମ ଓଡ଼ିଶା, ୨୦୧୧, ପୃଷ୍ଠା ୪୮-୫୩)

ଭୌମକରବଂଶୀଙ୍କ ପରେ ସୋମବଂଶୀ କେଶରୀ ରାଜା ଓ ଗଙ୍ଗ ବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ଏହି ପୁରାତନ କ୍ଷେତ୍ରଟି ବେଶ୍ ପ୍ରସିଦ୍ଧି ଅର୍ଜନ କରିପାରିଥିଲା । ପ୍ରଥମ ଜନ୍ମେଜୟ (ଖ୍ରୀ·ଅ· ୮୮୨-ଖ୍ରୀ·ଅ· ୯୨୨)ଙ୍କୁ ସୋମବଂଶର ପ୍ରତିଷ୍ଠାତା ବୋଲି ଗ୍ରହଣ କରାଯାଇଥାଏ । ସୋମବଂଶୀମାନେ ପ୍ରଥମେ କୋଶଳ (ଆଧୁନିକ ସମ୍ବଲପୁର-ବଲାଙ୍ଗୀର) ଅଞ୍ଚଳରେ ଶାସକ ଥିଲେ । ସେମାନଙ୍କ ରାଜଧାନୀ ସୁବର୍ଣ୍ଣପୁର (ଆଧୁନିକ ସୋନପୁର)ରେ ଥିଲା । ପରେ ପ୍ରଥମ ଜନ୍ମେଜୟଙ୍କ ପୁତ୍ର ପ୍ରଥମ ଯଯାତି (ଖ୍ରୀ·ଅ· ୯୨୨- ଖ୍ରୀ·ଅ· ୯୫୫) ଭୌମକରମାନଙ୍କ ଶାସିତ ରାଜ୍ୟ ତୋଷାଳୀ (ତତ୍କାଳୀନ ରାଜଧାନୀ: ଯାଜପୁର)କୁ ନିଜ ଅଧୀନକୁ ଆଣିଥିଲେ ।

ପ୍ରଥମ ଯଯାତି କେଶରୀ (ଖ୍ରୀ·ଅ·୯୨୨-ଖ୍ରୀ·ଅ·୯୫୫)ଙ୍କ ଶାସନ କାଳରେ ଯାଜପୁରରେ ବ୍ରାହ୍ମଣ ଧର୍ମ ପ୍ରସାରଲାଭ କରିଥିଲା । ପ୍ରଥମ ଯଯାତି ନିଜ ରାଜଧାନୀକୁ ପ୍ରଥମେ ସୁବର୍ଣ୍ଣପୁରରୁ ବିନୀତପୁର (ଆଧୁନିକ ବିନିକା) ଏବଂ ପରେ ବିନୀତପୁରରୁ ଯଯାତି ନଗର (ଆଧୁନିକ ଯାଜପୁର)କୁ ରାଜଧାନୀ ସ୍ଥାନାନ୍ତର କରିଥିଲେ । ଆଉ ଏହି ସମୟରେ ହିଁ ଯାଜପୁରର ସର୍ବାଧିକ ବିକାଶ ସମ୍ଭବପର ହୋଇପାରିଥିଲା ।

ଏହାପରେ ଦ୍ୱିତୀୟ ଯଯାତି କେଶରୀ (ଖ୍ରୀ·ଅ· ୧୦୨୫-ଖ୍ରୀ·ଅ· ୧୦୪୦)ଙ୍କ ସମୟରେ ଯାଜପୁରର ପ୍ରକୃତ ବିକାଶ ସାଧନ ହୋଇପାରିଥିଲା । ଦ୍ୱିତୀୟ ଯଯାତି କେଶରୀ ଏବଂ ତାଙ୍କ ପୁତ୍ର

ଉଦ୍ୟୋତ କେଶରୀ (ଖ୍ରୀ·ଅ· ୧୦୪୦- ଖ୍ରୀ·ଅ· ୧୦୬୫)ଙ୍କୁ ହିଁ ସୋମବଂଶୀ ରାଜାମାନଙ୍କ ମଧ୍ୟରେ ଅଗ୍ରାଧିକାର ଦିଆଯାଇଥାଏ । ମାଦଳା ପାଞ୍ଜିରୁ ଜଣାଯାଏ, ଦ୍ୱିତୀୟ ଯଯାତି କେଶରୀ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ।

**(ସୂଚନା: ଓଡ଼ିଶା ଇତିହାସ, ସଂ: ପ୍ରୀତୀଶ ଆଚାର୍ଯ୍ୟ, ପ୍ରକାଶକ: ଆମ ଓଡ଼ିଶା, ୨୦୧୧, ପୃଷ୍ଠା ୬୨-୬୭)**

ଖ୍ରୀ·ଅ· ୭୩୬ରୁ ଖ୍ରୀ·ଅ· ୧୧୧୦ ମଧ୍ୟରେ ପ୍ରାୟ ଚାରିଶହ ବର୍ଷ ଧରି ଯାଜପୁର ତତ୍କାଳୀନ ଉତ୍କଳର ସାଂସ୍କୃତିକ ଓ ରାଜନୈତିକ ପ୍ରାଣକେନ୍ଦ୍ର ଭାବେ ପ୍ରତିଷ୍ଠାଲାଭ କରିଥିଲା । ଏହି ସମୟ ମଧ୍ୟରେ ଯାଜପୁରଠାରେ ଭୌମକରମାନେ (ଖ୍ରୀ·ଅ ୭୩୬-ଖ୍ରୀ·ଅ· ୯୨୩) ଶାସନ କରିବା ପରେ ସୋମବଂଶୀ (ଖ୍ରୀ·ଅ· ୯୨୩- ଖ୍ରୀ·ଅ· ୧୧୧୦)ମାନେ ଶାସନ କରିଥିଲେ । ସୋମବଂଶୀମାନଙ୍କ ଶେଷ ରାଜା ଥିଲେ କର୍ଣ୍ଣଦେବ (ଖ୍ରୀ·ଅ୧୧୦୦-ଖ୍ରୀ·ଅ·୧୧୧୦) । ଗଙ୍ଗ ବଂଶୀ ରାଜା ଚୂଡ଼ଙ୍ଗଦେବ (ଖ୍ରୀ·ଅ·୧୦୭୬-ଖ୍ରୀ·ଅ·୧୧୪୭) ଉତ୍କଳ ଆକ୍ରମଣ କରିବାରୁ ସୋମବଂଶୀ ଶେଷ ରାଜା କର୍ଣ୍ଣଦେବ ସିଂହାସନଚ୍ୟୁତ ହେଲେ । ଏହା ଫଳରେ ସୋମବଂଶ (କେଶରୀ ବଂଶ)ର ବିଲୟ ଘଟିଲା । ତେବେ ଚୂଡ଼ଗଙ୍ଗଦେବ (ଚୂଡ଼ଙ୍ଗ ଦେବ, ଶାସନ ସମୟ: ଖ୍ରୀ·ଅ·୧୦୭୬-ଖ୍ରୀ·ଅ·୧୧୪୭) ଯାଜପୁରର ଅମରାବତୀ କଟକ (ବର୍ତ୍ତମାନ ଛତିଆ ନିକଟସ୍ଥ)ରେ ଦୁର୍ଗ ନିର୍ମାଣ କରି ଯାଜପୁର ବିରଜାମଣ୍ଡଳର ସୁରକ୍ଷା ପାଇଁ ପଦକ୍ଷେପ ନେଇଥିବା ଇତିହାସରେ ନଜିର ରହିଛି । ମାଦଳାପାଞ୍ଜିର ବର୍ଣ୍ଣନା ଅନୁସାରେ, ଗଙ୍ଗବଂଶ ରାଜତ୍ୱ କାଳରେ ଓଡ଼ିଶାର ରାଜଧାନୀ ଯଯାତିନଗର ବା ଯାଜପୁରରୁ ବାରଣାସୀ କଟକକୁ ସ୍ଥାନାନ୍ତରିତ ହୋଇଥିଲା । ଯାଜପୁରରୁ ରାଜଧାନୀ କଟକକୁ ସ୍ଥାନାନ୍ତର ହେବା ପରେ ଯାଜପୁରର ଐତିହାସିକ ଓ ରାଜନୈତିକ ଗୁରୁତ୍ୱ ହ୍ରାସ ପାଇଥିଲା । ମାତ୍ର ଆଜି ବି ଏଠାକାର ପ୍ରାଚୀନ ସଂସ୍କୃତି, କୀର୍ତ୍ତିରାଜି, ଐତିହ୍ୟ, ଭାସ୍କର୍ଯ୍ୟକଳା ଓ ରାଜନୈତିକ ନେତୃତ୍ୱ ଓ ସମୃଦ୍ଧ ଇତିହାସକୁ ନେଇ ଯାଜପୁରବାସୀ ଗର୍ବ କରିଥା'ନ୍ତି ।

ପ୍ରାଚୀନ କାଳରୁ ତତ୍କାଳୀନ ଓଡ଼ିଶାକୁ ଦୁଇଗୋଟି ସାଂସ୍କୃତିକ ମଣ୍ଡଳରେ ବିଭକ୍ତ କରାଯାଇଛି । ଗୋଟିଏ ହେଉଛି ଜଗନ୍ନାଥ ମଣ୍ଡଳ (ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ର ପୁରୀ) ଏବଂ ଅନ୍ୟଟି ହେଉଛି ବିରଜା ମଣ୍ଡଳ (ଯାଜପୁର) । ଏହି ଦୁଇଟି ମଣ୍ଡଳ ଉତ୍କଳରେ ପ୍ରସିଦ୍ଧିଲାଭ କରିଥିଲା । ସାରଳା ଦାସଙ୍କ 'ମହାଭାରତ'ରେ ଯାଜନଗ୍ର ସଂପର୍କରେ ବହୁ ବର୍ଣ୍ଣନା ରହିଛି । ବିରଜା ମଣ୍ଡଳ ବା ଯାଜନଗ୍ର ମଣ୍ଡଳ ଦକ୍ଷିଣରେ ଚିତ୍ରୋତ୍ପଳା ତୀରସ୍ଥ ବାରଣାସୀ କଟକ (ଆଧୁନିକ କଟକ) ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଣୁ ମହାନଦୀ ଜଗନ୍ନାଥ ମଣ୍ଡଳର ଏକ ପ୍ରମୁଖ ନଦୀ ଥିବାବେଳେ **ବୈତରଣୀ ବିରଜା ମଣ୍ଡଳର ମୁଖ୍ୟ ନଦୀ ବା ସୀମାରେଖା ଭାବେ ନିର୍ଦ୍ଧାରିତ ହୋଇଥିଲା** । ବାଲେଶ୍ୱର, ମେଦିନିପୁର, ମୟୂରଭଞ୍ଜ, ସିଂହଭୂମ୍, କେନ୍ଦୁଝର ଆଦି ରାଜ୍ୟଗୁଡିକୁ ନେଇ ବିରଜା ମଣ୍ଡଳ ଗଠିତ ହୋଇଥିଲା

ଏବଂ ଯାଜନଗ୍ର ଏହାର ରାଜଧାନୀ ଥିଲା ।

ଅଷ୍ଟମ ନବମ ଶତାବ୍ଦୀରେ ବିରଜା ମଣ୍ଡଳ ଉତ୍କଳ ନାମରେ ପରିଚିତ ଥିଲା ଏବଂ ଏହାର ରାଜଧାନୀ ଯାଜପୁର ଥିଲା ବୋଲି ଭୌମ ଯୁଗର ତାମ୍ର ଅନୁଶାସନରୁ ଜଣାଯାଏ । କେଶରୀ ବଂଶର ରାଜା ପ୍ରଥମ ଯଯାତି କେଶରୀଙ୍କ ଶାସନକାଳରେ ବିରଜା ମଣ୍ଡଳ ନାମ ପରିବର୍ତ୍ତେ 'ଯଯାତି ନଗର' ବା 'ଯାଯନଗ୍ର' ଭାବେ ପ୍ରସିଦ୍ଧିଲାଭ କରିଥିଲା । ମାଦଳା ପାଞ୍ଜିରେ ଯଯାତି ନଗର 'ଅଭିନବ ନଗ୍ର' ଭାବେ ବର୍ଣ୍ଣିତ ହୋଇଛି । ଏହି ଦୁଇଗୋଟି ମଣ୍ଡଳ ଅନୁସାରେ ଓଡ଼ିଶାରେ ଜଗନ୍ନାଥ ପଞ୍ଜିକା ଓ ବିରଜା ପଞ୍ଜିକା ନାମରେ ଦୁଇଗୋଟି ପାଞ୍ଜିର ପ୍ରଚଳନ କରାଯାଇଛି ।

(ତଥ୍ୟ: ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'- ୧୯୭୩, ପୃଷ୍ଠା-୩୫, ୩୬)

## ବିରଜା କ୍ଷେତ୍ର; ଯାଜପୁରର ପୌରାଣିକ ଗରୁତ୍ୱ

*(Mythological significance of Jajpur)*

ବିରଜାମଣ୍ଡଳର ସର୍ବପ୍ରାଚୀନ ତୀର୍ଥ ଓ ସର୍ବପ୍ରଧାନ ସାଂସ୍କୃତିକ କ୍ଷେତ୍ର ଥିଲା ଯାଜପୁର । ଭାରତର ଅଧିକାଂଶ ତୀର୍ଥ ମହାଭାରତରେ ସ୍ଥାନ ପାଇ ନଥିବାବେଳେ ବିରଜାକ୍ଷେତ୍ର ମହାଭାରତରେ ସ୍ଥାନିତ ହୋଇଛି । ଏଥରୁ ବିରଜା କ୍ଷେତ୍ରର ପ୍ରାଚୀନତା ସଂପର୍କରେ ଅନୁମାନ କରିହୁଏ ।



ବିରଜା ମନ୍ଦିର

ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀରେ ସଂସ୍କୃତ ଭାଷାରେ ମହାଭାରତ ରଚନା କରାଯାଇଛି ବୋଲି ଗ୍ରହଣ କରାଯାଉଛି । ଯେଉଁ ତୀର୍ଥସବୁ ମହାଭାରତ ରଚନା କାଳର ବହୁ ପୂର୍ବରୁ ପ୍ରତିଷ୍ଠିତ ହୋଇସାରିଥିଲା, ସେହିସବୁ ତୀର୍ଥମାନଙ୍କ ସଂପର୍କରେ ମହାଭାରତରେ ଉଲ୍ଲେଖ କରାଯାଇଛି । ମହାଭାରତ ରଚନା ସମୟର ବହୁ ପୂର୍ବରୁ ଖ୍ରୀଷ୍ଟ ପୂର୍ବ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀ ବେଳକୁ ବିରଜା କ୍ଷେତ୍ର ପ୍ରତିଷ୍ଠାଲାଭ କରିସାରିଥିଲା । ଏଣୁ ଏହି କ୍ଷେତ୍ର ସଂପର୍କରେ ମହାଭାରତରେ ଉଲ୍ଲେଖ ରହିବା ସ୍ୱାଭାବିକ । ମହାଭାରତର ପରବର୍ତ୍ତୀ କାଳରେ ଯେତେସବୁ ସଂସ୍କୃତ ଗ୍ରନ୍ଥ ରଚନା କରାଯାଇଛି, ସେସବୁ ଗ୍ରନ୍ଥରେ ମଧ୍ୟ ବିରଜା କ୍ଷେତ୍ର ସଂପର୍କରେ ଉଲ୍ଲେଖ ରହିଛି । ବାୟୁ ପୁରାଣ ଓ ହରିବଂଶରେ ବିରଜାଙ୍କୁ ଆଦ୍ୟପା ନାମକ ପିତୃଗଣଙ୍କ ମାନସୀକନ୍ୟା ରୂପେ ବର୍ଣ୍ଣନା କରାଯାଇଛି । ସବୁଠୁ ବଡ଼ କଥା ହେଉଛି, ବିରଜାକ୍ଷେତ୍ରକୁ ଛାଡ଼ି ସଂସ୍କୃତ ମହାଭାରତରେ ଶ୍ରୀକ୍ଷେତ୍ର ପୁରୀ ବା କଳିଙ୍ଗର ଅନ୍ୟ କୌଣସି ତୀର୍ଥ ସଂପର୍କରେ ଉଲ୍ଲେଖ ନାହିଁ । ଏଥିରୁ ଜଣାପଡ଼େ, ବିରଜା କ୍ଷେତ୍ର ଶ୍ରୀକ୍ଷେତ୍ର ପୁରୀଠାରୁ ମଧ୍ୟ ପ୍ରାଚୀନ ।

ବିରଜା ଦେବୀଙ୍କ ସଂପର୍କରେ ବାୟୁପୁରାଣ ଓ ହରିବଂଶରୁ କେତେକ ସୂଚନା ମିଳେ । ବାୟୁପୁରାଣରେ ବର୍ଣ୍ଣିତ ଅଛି -

"ଆଜ୍ୟପା ନାମ ପିତରଃ କର୍ଦମସ୍ୟ ପ୍ରଜାପତେଃ ।<br>
ସମୁତ୍ପନ୍ନସ୍ୟ ପୁଲହାଦୁତ୍ପନ୍ନାସ୍ତସ୍ୟ ବୈ ପୁନଃ ॥<br>
ଲୋକେଷ୍ୱେତେଷୁବର୍ତ୍ତନ୍ତେ କାମଗେଷୁ ବିହଙ୍ଗମାଃ ।<br>
ଏତାନ୍ୱୈଂଶ୍ୟଗଣାଃ ଶ୍ରାଦ୍ଧେ ଭାବୟନ୍ତି ଫଳାର୍ଥିନଃ ॥<br>
ଏତେଷାଂ ମାନସୀ କନ୍ୟା ବିରଜା ନାମ ବିଶ୍ରୁତ ।<br>
ଯଯାତେର୍ଜନନୀ ସାଧ୍ୱୀ ପତ୍ନୀ ସା ନହୁଷସ୍ୟତୁ ॥

ସରଳାର୍ଥ: ପୁଲହଙ୍କଠାରୁ ଉତ୍ପନ୍ନ କର୍ଦମ ପ୍ରଜାପତିଙ୍କ ଆଜ୍ୟପା ନାମକ ପିତୃଗଣ ଅଛନ୍ତି । ଏମାନେ ସର୍ବଲୋକରେ ଯଥେଚ୍ଛ ବିହଙ୍ଗମ ପରି ରହନ୍ତି । ଏହି ପିତୃଗଣଙ୍କୁ ଫଳାର୍ଥୀ ବୈଶ୍ୟମାନେ ଶ୍ରାଦ୍ଧ ସମୟରେ ଆହ୍ୱାନ କରନ୍ତି । ବିରଜା ହେଉଛନ୍ତି ଏହି ଆଜ୍ୟପା ପିତୃଗଣଙ୍କ ମାନସୀ କନ୍ୟା, ଯଯାତିଙ୍କ ଜନନୀ ଓ ନହୁଷଙ୍କ ସାଧ୍ୱୀ ପତ୍ନୀ । ଏଣୁ ତାଙ୍କଠାରେ ପିଣ୍ଡଦାନ କଲେ ପିତୃଗଣ ତାହା ପାଇଥା'ନ୍ତି ।

[ତଥ୍ୟ:

୧· ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'-୧୯୭୩, ପୃଷ୍ଠା-୧୯, ୨୦, ୨୫, ୨୭)

*2. Quoted in H.H. Wilson, Visnu-purana (translation), London, 1865, edited by Fitzedward Hall. vol.III, p.164* ]

ଓଡ଼ିଶାର ପ୍ରାଚୀନତମ ତଥା ଐତିହ୍ୟପୂର୍ଣ୍ଣ କ୍ଷେତ୍ର ଯାଜନଗ୍ର ସଂପର୍କରେ ଉଭୟ ବ୍ୟାସଦେବଙ୍କ ସଂସ୍କୃତ ଓ ଶାରଳା ଦାସଙ୍କ ଓଡ଼ିଆ ମହାଭାରତରେ ଉଲ୍ଲେଖ ରହିଛି । ଏପରିକି ବିରଜା ମଣ୍ଡଳରେ ଲଙ୍କେଶ୍ୱର ରାବଣ ବ୍ରହ୍ମାଙ୍କୁ ତପସ୍ୟା କରି ବରପ୍ରାପ୍ତ ହୋଇଥିଲେ । ବ୍ରହ୍ମା ଏହି କ୍ଷେତ୍ରରେ ବରାହନାଥଙ୍କ ପ୍ରାଣ ପ୍ରତିଷ୍ଠା କରିବା ସହିତ ଅଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ । ବ୍ୟାସଦେବଙ୍କ ରଚିତ ମହାଭାରତରେ କଳିଙ୍ଗର ଏହି ବିରଜା କ୍ଷେତ୍ର ସଂପର୍କରେ ଉଲ୍ଲେଖ ଥିବାରୁ ବୈତରଣୀ ନଦୀ ଗଂଗାଠାରୁ ପ୍ରାଚୀନ ବୋଲି ଗବେଷକମାନେ ଦାବି କରନ୍ତି । ଏହି ବିରଜା କ୍ଷେତ୍ରଟି 'ନାଭିଗୟା' ଭାବେ ମଧ୍ୟ ପରିଚିତ । ଏଠାରେ ପିଣ୍ଡଦାନ କଲେ ସପ୍ତପୁରୁଷ ଉଦ୍ଧାର ହେବାର ବିଶ୍ୱାସ ରହିଛି ।

ସତ୍ୟ ଯୁଗରେ ବିଷ୍ଣୁଙ୍କ ଚକ୍ରରେ ନିହତ ହୋଇଥିବା ଭକ୍ତ ଗୟାସୁରର ନାଭି ଏଠାରେ ପଡିଥିବାରୁ ଏହାକୁ '**ନାଭିଗୟା**' ବୋଲି କୁହାଯାଇଥାଏ । ଗୟାସୁର ଜଣେ ବିଷ୍ଣୁ ଭକ୍ତ ଥିଲେ । ଏଣୁ ଗୟାସୁରର ମୃତ୍ୟୁ ପରେ ତାହାର ଅଙ୍ଗପ୍ରତ୍ୟଙ୍ଗ ଯେଉଁସବୁ ସ୍ଥାନରେ ପତିତ ହୋଇଥିଲା, ସେସବୁ ସ୍ଥାନର ପବିତ୍ରତା ବୃଦ୍ଧି ପାଇଥିଲା । ଗୟାସୁରର ମୁଣ୍ଡ ବିହାରର ଗୟା ନିକଟସ୍ଥ ଫଲ୍‌ଗୁ ନଦୀରେ ପଡି ସେ ସ୍ଥାନ 'ଶ୍ରୀଗୟା' ନାମରେ ବିଖ୍ୟାତ ହୋଇଥିବାବେଳେ ତାର ପାଦ ଗୋଦାବରୀ ନଦୀରେ ପଡି ଏହା 'ପାଦଗୟା' ଏବଂ ନାଭି ବିରଜାକ୍ଷେତ୍ର ବୈତରଣୀ ନଦୀରେ ପତିତ ହୋଇ ଏହା 'ନାଭିଗୟା' ନାମରେ ବିଖ୍ୟାତ ହେଲା । ବିରଜା ଦେବୀ ଉଷ୍ଣପା ପିତୃଗଣଙ୍କ ମାନସୀ କନ୍ୟା ହୋଇଥିବାରୁ ଏହି କ୍ଷେତ୍ରରେ ପିତୃଗଣଙ୍କୁ ପିଣ୍ଡ ପ୍ରଦାନ କଲେ ସେମାନେ ସନ୍ତୋଷ ହୋଇ ବଂଶର କଲ୍ୟାଣ କାମନା କରନ୍ତି ।

ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ର ସର୍ବଭାରତୀୟ ସ୍ତରରେ ଜଣାଶୁଣା ଏକ ତୀର୍ଥକ୍ଷେତ୍ର । ମହାଭାରତର ବର୍ଣ୍ଣନା ଅନୁସାରେ, ଗଙ୍ଗାସାଗର ସଂଗମଠାରୁ କଳିଙ୍ଗ ରାଜ୍ୟ ଆରଂଭ ହୋଇଛି ବୋଲି ଲୋମଶ ଋଷି ଧର୍ମରାଜ ଯୁଧିଷ୍ଠିରଙ୍କୁ କହନ୍ତି । **କଳିଙ୍ଗରେ ବୈତରଣୀ ନଦୀ ପ୍ରଧାନ ନଦୀ ଅଟେ** ଏବଂ ଏହି ନଦୀର ଜଳରେ ଧର୍ମଦେବ ବା ବ୍ରହ୍ମା ଦେବତାମାନଙ୍କ ଗହଣରେ ଯଜ୍ଞ ଅନୁଷ୍ଠିତ କରିଥିଲେ ବୋଲି ଲୋମଶ ଋଷି ଧର୍ମରାଜଙ୍କୁ କହିଥିବାର ମହାଭାରତରେ ବର୍ଣ୍ଣନା ରହିଛି ।

ସେହିଭଳି ନାଭିଗୟାକୁ ନେଇ ଅନ୍ୟ ଏକ ପୌରାଣିକ ମତ ରହିଛି । ଯେତେବେଳେ ମହାଦେବଙ୍କ ପତ୍ନୀ ସତୀଙ୍କର ମୃତ୍ୟୁ ହୋଇଗଲା, ସେତେବେଳେ ମହାଦେବ ଶିବ ଏକ ପ୍ରକାର ଉନ୍ମତ୍ତ ହୋଇପଡ଼ିଥିଲେ । ପତ୍ନୀ ସତୀଙ୍କ ଶବକୁ ଧରି ଶିବ ତାଣ୍ଡବ ନାଚିବା ଆରଂଭ କରିଦେଇଥିଲେ । ଏହି କାରଣରୁ ମହାପ୍ରଳୟ ସୃଷ୍ଟି ହେବାର ଆଶଙ୍କା କରି ଭଗବାନ ବିଷ୍ଣୁ ନିଜର ସୁଦର୍ଶନ ଚକ୍ର

ସହାୟତାରେ ଦେବୀ ସତୀଙ୍କ ମର ଶରୀରକୁ ତିନି ଖଣ୍ଡ କରି କାଟି ପକାଇଥିଲେ । **ଦେବୀ ସତୀଙ୍କର ନାଭି ଅଂଶଟି ବୈତରଣୀ ତୀର୍ଥ ବିରଜା କ୍ଷେତ୍ରରେ ପଡିବାରୁ ଏହାର ନାମ 'ନାଭିଗୟା' ହୋଇଛି ବୋଲି ବିଶ୍ୱାସ କରାଯାଏ** । ଏଠାରେ ଦେବୀ ସତୀଙ୍କର ଏକ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । ପରବର୍ତ୍ତୀ ସମୟରେ ଦେବୀ ସତୀ ମା' ବିରଜା ନାମରେ ଖ୍ୟାତ ହେଲେ ବୋଲି ବିଶ୍ୱାଧ କରାଯାଏ । ଦେବୀ ସତୀଙ୍କର ନାଭି ଅଂଶଟି ଏଠାରେ ପତିତ ହୋଇଥିବାରୁ ଏହାକୁ ମଧ୍ୟ **'ପାର୍ବତୀ ତୀର୍ଥ'** ବୋଲି କୁହାଯାଇଥାଏ ।

ବ୍ରହ୍ମପୁରାଣ ମତରେ, ସ୍ୱୟଂ ବ୍ରହ୍ମା ହିଁ ଦେବୀ ବିରଜାଙ୍କୁ ଏଠାରେ ସ୍ଥାପନ କରିଥିଲେ ବୋଲି ବିଶ୍ୱାସ କରାଯାଏ । ଦଶାଶ୍ୱମେଧ ବୈତରଣୀ ଘାଟରେ ଭଗବାନ ବ୍ରହ୍ମା ଦଶଟି ଅଶ୍ୱକୁ ବଳି ଚଢାଇ ଯଜ୍ଞ କରିଥିଲେ । ବ୍ରହ୍ମା ଏହି ଯଜ୍ଞସ୍ଥଳକୁ ଅନ୍ୟ ଦେବଦେବୀଙ୍କ ସମେତ ଗଙ୍ଗାମାତାଙ୍କୁ ମଧ୍ୟ ନିମନ୍ତ୍ରଣ କରିଥିଲେ । ଗଙ୍ଗାମାତା ନିଜ ଶରୀରର ଏକ ପ୍ରବାହ ପୃଥିବୀ ପୃଷ୍ଠକୁ ନିକ୍ଷେପ କରିଥିଲେ । ଏହି ପ୍ରବାହ କେନ୍ଦୁଝରର ଗୋନାସିକାଠାରେ ପତିତ ହୋଇ ବୈତରଣୀ ନାମ ଧାରଣ କରିଥିଲେ ଏବଂ ବ୍ରହ୍ମାଙ୍କ ଯଜ୍ଞସ୍ଥଳ ଅଭିମୁଖେ ଯାତ୍ରା କରିଥିଲେ ।

ଲିଙ୍ଗ ପୁରାଣ ମତରେ ଦେବୀ ବିରଜା ବ୍ରହ୍ମାଙ୍କ ଯଜ୍ଞ କୁଣ୍ଡରୁ ଆବିର୍ଭୂତ ହୋଇଛନ୍ତି ବୋଲି କୁହାଯାଉଛି । ଜଣେ ବିରଜା କ୍ଷେତ୍ରକୁ ଆସି ପିଣ୍ଡଦାନ କଲେ ଆଗାମୀ ସାତ ପୁରୁଷ ପର୍ଯ୍ୟନ୍ତ ପିତୃପୁରୁଷଙ୍କର ମୋକ୍ଷପ୍ରାପ୍ତି ଘଟିଥାଏ । ବିରଜା କ୍ଷେତ୍ରରେ ବୈତରଣୀ ନଦୀ କୂଳରେ ଆହୁରି ୬୮ଟି ସହାୟକ ତୀର୍ଥସ୍ଥଳ ରହିଛି । ଏସବୁ ତୀର୍ଥ ଦର୍ଶନ କରି ତୀର୍ଥଯାତ୍ରୀମାନେ ପୁଣ୍ୟ ଅର୍ଜନ କରିଥା'ନ୍ତି । ଲୋମଶ ମୁନିଙ୍କ ସମେତ ପାଣ୍ଡବ ପାଞ୍ଚଭାଇ ମହାଭାରତ ଯୁଦ୍ଧ ପରେପରେ ଏହି ବିରଜା କ୍ଷେତ୍ରକୁ ଆସି ପବିତ୍ର ବୈତରଣୀ ନଦୀରେ ବୁଡ଼ ପକାଇଥିବାର ବ୍ୟାସଦେବଙ୍କ ମହାଭାରତରେ ବର୍ଣ୍ଣିତ ରହିଛି ।

ଉତ୍କଳର ପଞ୍ଚ ମହାକ୍ଷେତ୍ର ମଧ୍ୟରେ ବିରଜାକ୍ଷେତ୍ର (ପାର୍ବତୀ କ୍ଷେତ୍ର) ଏକ ପ୍ରମୁଖ କ୍ଷେତ୍ର । ସେହିଭଳି ଉତ୍କଳର ପଞ୍ଚକଟକ ମଧ୍ୟରେ ଯାଜପୁର ଗୋଟିଏ ପ୍ରଧାନ କଟକ । ଯଯାତିନଗର (ଯାଜପୁର), ଅମରାବତୀ କଟକ (ଛତିଆ), ଯଜନ ନଗର (ଚୌଦ୍ୱାର), ଅଭିନବ ବାରଣାସି (କଟକ) ଓ ଶାରଙ୍ଗଗଡ଼ (ଚୂଡ଼ଙ୍ଗ କଟକ) ଆଦି ପଞ୍ଚ କଟକ ମଧ୍ୟରେ ଯାଜପୁର କଟକର ଏକ ସ୍ୱତନ୍ତ୍ର ଗୁରୁତ୍ୱ ରହିଥିଲା ।

(ତଥ୍ୟ: ଡ· ଏକାଦଶୀ ପାଢୀ, ଯୁଗେ ଯୁଗେ ଯାଜପୁର, ପ୍ରକାଶକ: ଚିତ୍ରୋତ୍ପଳା ପବ୍ଲିକେଶନ୍ସ, ବଟେଶ୍ୱର, ସାଲେପୁର, ୨୦୦୨, ପୃଷ୍ଠା: ୯୯)

## ବଙ୍କିମ୍‌ଚନ୍ଦ୍ର ଓ ବୈତରଣୀ

ଭାରତୀୟ ଜାତୀୟ ସଂଗୀତ 'ବନ୍ଦେ ମାତରଂ'ର ରଚୟିତା ବଙ୍କିମ୍ ଚନ୍ଦ୍ର ଚାଟାର୍ଜୀ ଯାଜପୁରରେ ଡେପୁଟି ମାଜିଷ୍ଟ୍ରେଟ୍ (ଖ୍ରୀ.ଅ. ୧୮୮୨- ଖ୍ରୀ.ଅ. ୧୮୮୪) ଥିଲେ ବୋଲି ବହୁତ କମ୍ ଲୋକେ ଜାଣିଥା'ନ୍ତି । ଇଂରେଜ ଶାସନ କାଳରେ ଓଡ଼ିଶା ବଙ୍ଗଳା ପ୍ରେସିଡେନ୍‌ସି ଅନ୍ତର୍ଭୁକ୍ତ ଥିଲା ଏବଂ ୧୮୫୯ ମସିହାରେ ଯାଜପୁର ଏକ ସବ୍ ଡିଭିଜନ୍ ସୃଷ୍ଟି ହୋଇଥିଲା । ବଙ୍କିମ୍ ଚନ୍ଦ୍ର ଚାଟାର୍ଜୀ ଯାଜପୁର ସହରର ବୈତରଣୀ ନଦୀ କୂଳରେ ନିଜ ସରକାରୀ ବାସଭବନରେ ଅବସ୍ଥାନ କରୁଥିଲେ । ବୈତରଣୀ ନଦୀ କୂଳରେ ବାସ କରୁଥିବାରୁ ବଙ୍କିମ୍ ଚନ୍ଦ୍ର ନିଜକୁ ଖୁବ୍ ଭାଗ୍ୟବାନ୍ ମନେ କରୁଥିଲେ । ଯାଜପୁରରେ ରହଣୀ କାଳରେ ବଙ୍କିମ୍ ଚନ୍ଦ୍ର ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ଦେବୀ ଚୌଧୁରୁଣୀ' ରଚନା କରିଥିଲେ । ଏହା ୧୮୮୪ ମସିହାରେ ପ୍ରକାଶ ପାଇଥିଲା । ବୈତରଣୀ ନଦୀ ବଙ୍କିମ୍‌ଚନ୍ଦ୍ରଙ୍କୁ ସର୍ବାଧିକ ପ୍ରଭାବିତ କରିଥିଲା ବୋଲି କୁହାଯାଇଥାଏ ।

## ମନ୍ଦାକିନୀ ନଦୀ ଓ ଅଠରନଳା

*(Biraja Kshetra and river Mandakinee)*

ଯାଜପୁର ମଧ୍ୟରେ ମନ୍ଦାକିନୀ ନାମରେ ଯେଉଁ ନଦୀ ପ୍ରବାହିତ ହେଉଛି ଜୟସିଂହଙ୍କ ଢେଙ୍କାନାଳ ତାମ୍ରଶାସନରେ ସେ ସଂପର୍କରେ ଉଲ୍ଲେଖ ରହିଛି । ଏହି ତାମ୍ର ଶାସନର ପ୍ରାରମ୍ଭରେ ଲେଖା ଅଛି - "ମନ୍ଦାକିନୀ ବାମକାତ୍ ପ୍ରାପ୍ତ ପଞ୍ଚମହାଶବ୍ଦ" । ଏହାର ଅର୍ଥ ହେଉଛି - ଜୟସିଂହ ମନ୍ଦାକିନୀ ଦାସଙ୍କଠାରୁ ଅର୍ଥାତ୍ ବିରଜା ନିବାସୀ ଭୌମକର ରାଜାଙ୍କଠାରୁ ପଞ୍ଚମହାଶବ୍ଦ ପାଇଥିଲେ । ଏହି ପଞ୍ଚମହାଶବ୍ଦ ହେଉଛି ମହାରାଜ, ମହାସାମନ୍ତ, ମହାମଣ୍ଡଳାଧିପତି, ମହାପ୍ରତିହାର ଓ ମହାବିଷୟପତି । ଜୟସିଂହ ନିଶ୍ଚୟ ଯାଜପୁରର ଭୌମକର ରାଜାମାନଙ୍କର କରଦ ରାଜା ଥିଲେ ଏବଂ ସେ ଭୌମକର ରାଜାଙ୍କଠାରୁ ପଞ୍ଚମହାଶବ୍ଦ ପାଇଥିଲେ । ତେବେ ଏଠାରେ ଉଲ୍ଲେଖ କରାଯାଇଥିବା ମନ୍ଦାକିନୀ ନଦୀ ନେଇ ପ୍ରଶ୍ନ ଉଠେ । ସମ୍ଭବତଃ ବୈତରଣୀ ନଦୀ କିମ୍ବା ଏହାର ଏକ ଶାଖା ନଦୀକୁ ମନ୍ଦାକିନୀ ନଦୀ ଭାବେ ସମ୍ବୋଧନ କରାଯାଉଥିଲା ବୋଲି ଗବେଷକମାନେ ମତ ଦିଅନ୍ତି ।

ବିରଜାକ୍ଷେତ୍ରରେ ପ୍ରବାହିତ ମନ୍ଦାକିନୀ ନଦୀଟି ଏବେ ଲୁପ୍ତ ହୋଇଯିବାକୁ ବସିଛି । ଏହି ନଦୀ ଉପରେ ନିର୍ମିତ ସେତୁ ସ୍ଥାପତ୍ୟକଳା ଦୃଷ୍ଟିରୁ ଯାଜପୁରର ଏକ ପ୍ରସିଦ୍ଧ କୀର୍ତ୍ତି ଭାବେ ପରିଚିତ । ପୁରୀ ନିକଟବର୍ତ୍ତୀ ଅଠରନଳା ନାମାନୁସାରେ ସ୍ଥାନୀୟ ଲୋକେ ଏହାକୁ ମଧ୍ୟ 'ଅଠରନଳା' କହିଥା'ନ୍ତି । ତେବେ ଏଥିରେ ବର୍ତ୍ତମାନ ୧୧ଟି ନଳା ଦେଖିବାକୁ ମିଳିଥାଏ । ସେତୁଟିର ମଧ୍ୟ ଭାଗ ଉଚ୍ଚା ହୋଇ ଦୁଇପାର୍ଶ୍ୱ ଗଡ଼ାଣିଆ ଏବଂ ଏହା ଏକ ପିଢ ଦେଉଳ ପରି ମନେ ହୋଇଥାଏ । ଭୁବନେଶ୍ୱରରେ ଗଙ୍ଗବତୀ ନଦୀରେ ଶିଶୁପାଳଗଡ଼ର ପଶ୍ଚିମ ଦ୍ୱାରରେ ନିର୍ମିତ ସେତୁ ସଦୃଶ ଏହି ଅଠରନଳାଟି

ଯାଜପୁରର ପ୍ରାଚୀନ ଐତିହ୍ୟ, କୀର୍ତ୍ତିରାଜି ମଧ୍ୟରୁ ଅନ୍ୟତମ । ଏହାକୁ ଗଙ୍ଗବଂଶୀୟ କୀର୍ତ୍ତି ଭାବେ ଅଭିହିତ କରାଯାଇଥାଏ ।

(ତଥ୍ୟ ସହାୟତା:

୧· କେଦାରନାଥ ମହାପାତ୍ର, ବିରଜା କ୍ଷେତ୍ର, ସଂକଳକ: ଡ· ବ୍ରଜମୋହନ ମହାନ୍ତି, ପ୍ରକାଶକ: ଉତ୍କଳ ପାଠକ ସଂସଦ, କଟକ, ୧୯୯୬, ପୃଷ୍ଠା: ୫୮

2. *Journal of Bihar and Orissa Research Society, Vol XIV, pp 417-419)*

## ବୈତରଣୀ ତୀର୍ଥ: ବିରଜା କ୍ଷେତ୍ର ଓ ଗଦାକ୍ଷେତ୍ର

*(Baitarani teertha: Biraja kshetra)*

ଯାଜପୁର **ବିରଜା କ୍ଷେତ୍ର** ବା **ବୈତରଣୀ ତୀର୍ଥ** ଭାବେ ପରିଚିତ । ଏହାର ତଟରେ ବାରୁଣୀ ତୀର୍ଥ, ଗୋକର୍ଣ୍ଣ ତୀର୍ଥ, କପିଳ ତୀର୍ଥ, ସୋମ ତୀର୍ଥ, ସଜି ତୀର୍ଥ ଭଳି ଅନେକ ପୌରାଣିକ ତୀର୍ଥ ରହିଛି । ପରଂବ୍ରହ୍ମ ନାରାୟଣ ଏଠାରେ ଦ୍ୱାଦଶ ମାଧବ ରୂପେ ଅବସ୍ଥାନ କରିଛନ୍ତି । ସାତଭଉଣୀ ବା ସପ୍ତ ମାତୃକା, ସିଦ୍ଧ ଗଣେଶ, ବରାହ, ଜଗନ୍ନାଥ ଆଦି ଦେବଗଣଙ୍କ ଅବସ୍ଥିତି ଏହି ସ୍ଥାନର ଗୁରୁତ୍ୱ ବଢାଇଛି । **ମନ୍ଦାକିନୀର ଶାଖା ନଦୀ 'ସପ୍ତରେଖା' (ବୈତରଣୀ)** ଏ କ୍ଷେତ୍ରର ଶୋଭାବର୍ଦ୍ଧନ କରିଥାଏ । ଯାଜପୁରର ହର ଓ ବରାହ ତୀର୍ଥର ମଧ୍ୟବର୍ତ୍ତୀ ସ୍ଥାନରେ ଚୈତ୍ରମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ଯଦି କୌଣସି ବ୍ୟକ୍ତି ଗଙ୍ଗାରୂପିଣୀ ବୈତରଣୀରେ ସ୍ନାନ କରେ ତେବେ ତାକୁ ଶତସୂର୍ଯ୍ୟ ଦର୍ଶନର ଫଳ ମିଳେ ବୋଲି ବିଶ୍ୱାସ ରହିଛି । ଏହାକୁ ବାରୁଣୀ ଯୋଗ କହନ୍ତି । ବିରଜା କ୍ଷେତ୍ରର ମହିମା ସଂପର୍କରେ ଗରୁଡ଼ ପୁରାଣ, ପଦ୍ମ ପୁରାଣ, ବ୍ୟାସଦେବଙ୍କ ସଂସ୍କୃତ ମହାଭାରତ, ଶାରଳା ଦାସଙ୍କ ଓଡ଼ିଆ ମହାଭାରତ, ବ୍ରହ୍ମାଣ୍ଡ ପୁରାଣ, କପିଳ ସଂହିତା, ବାୟୁ ପୁରାଣ, ବିରଜା କ୍ଷେତ୍ର ମାହାତ୍ମ୍ୟ, ଅବଧୂତ ଗୀତା ଭଳି ପୁରାଣମାନଙ୍କରେ ବର୍ଣ୍ଣନା ରହିଛି ।



କ୍ଷେତ୍ରେଶ୍ୱରୀ ବିରଜାଙ୍କ ପ୍ରାଧାନ୍ୟକୁ ଗ୍ରହଣ କରାଯାଇ ବିଭିନ୍ନ ସମୟରେ ବିରଜା, ବିରଜା କ୍ଷେତ୍ର, ବିରଜା ପୀଠ, ବିରଜା ମଣ୍ଡଳ ଓ ବିରଜା ନଗର ଆଦି ନାମକରଣ କରାଯାଇଛି । ଏହି କ୍ଷେତ୍ରରେ ପିତୃପୁରୁଷମାନଙ୍କ ମୁକ୍ତି ଓ ତୃପ୍ତିର ବିଧାନ ଥିବାରୁ ଏହା 'ପିତୃ ତୀର୍ଥ'ର ମାନ୍ୟତା ପାଇଛି । ଏହି ପିତୃତୀର୍ଥରୁ କାଳକ୍ରମେ 'ନାଭିଗୟା'ର ନାମକରଣ ହୋଇଛି । ପରବର୍ତ୍ତୀ ସମୟରେ ଯାଜପୁର ଅବିମୁକ୍ତ କ୍ଷେତ୍ର, ପାର୍ବତୀ ତୀର୍ଥ, ବ୍ରହ୍ମକ୍ଷେତ୍ର ଓ ଗଣପତି କ୍ଷେତ୍ର ପ୍ରଭୃତି ଦେବଦେବୀଙ୍କ ନାମାନୁସାରେ ନାମିତ ହୋଇଛି । ତେବେ ସୋମବଂଶୀ ସମ୍ରାଟ ଯଯାତି କେଶରୀଙ୍କ ନାମାନୁସାରେ ଏହା ଯଯାତି ନଗର (ଯାଯନଗ୍ର) ଭାବେ ପରିଚିତ ହୋଇଥିଲା ।

ଚତୁର୍ଭୁଜ ଭଗବାନ ବିଷ୍ଣୁଙ୍କର ଚାରି ବାହୁରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଇଥାଏ । ପୁରୁଷୋତ୍ତମ ଧାମ (ପୁରୀ)କୁ ବିଷ୍ଣୁଙ୍କର ଆୟୁଧ ଶଙ୍ଖ ସହିତ ସଂଯୁକ୍ତ କରାଯାଇ 'ଶଙ୍ଖ କ୍ଷେତ୍ର' କୁହାଯାଏ । ସେହିଭଳି ଏକାମ୍ର କ୍ଷେତ୍ର ଭୁବନେଶ୍ୱରକୁ ବିଷ୍ଣୁଙ୍କର ଆୟୁଧ ଚକ୍ର ସହିତ ସଂଯୁକ୍ତ କରାଯାଇ ଏହାକୁ 'ଚକ୍ରକ୍ଷେତ୍ର' ଏବଂ ଗଦା ସହିତ ସଂଯୁକ୍ତ ହୋଇ ବିରଜା ତୀର୍ଥଟି 'ଗଦାକ୍ଷେତ୍ର' ଏବଂ ପଦ୍ମ ସହିତ ସଂଯୁକ୍ତ ହୋଇ ଅର୍କକ୍ଷେତ୍ର କୋଣାର୍କ 'ପଦ୍ମ କ୍ଷେତ୍ର' ନାମରେ ପରିଚିତ ଅଟେ । 'ବାମଦେବ ସଂହିତା'ର ଶ୍ଲୋକ ଅନୁସାରେ

"ଗଦାକ୍ଷେତ୍ରଞ୍ଚ ବିରଜାମେକାମ୍ରଂ ଚକ୍ରସଂଜ୍ଞକମ୍
କୋଣାର୍କଂ ପଦ୍ମକ୍ଷେତ୍ରଞ୍ଚ ଶଙ୍ଖକ୍ଷେତ୍ରଂ ନୀଳାଚଳମ୍ ।"

ଅନ୍ୟ ଏକ ପୁରାଣ ମତ ଅନୁସାରେ, ଗୟାସୁରର ମୃତ୍ୟୁରେ ଭଗବାନ ବିଷ୍ଣୁ ଅତି ଆନନ୍ଦରେ ନୃତ୍ୟ କରିବାବେଳେ ତାଙ୍କ ଶ୍ରୀହସ୍ତରୁ ଚାରୋଟି ଆୟୁଧ ଭୂମିରେ ପଡ଼ି ଚାରିଗୋଟି ତୀର୍ଥ ସୃଷ୍ଟି ହୋଇଥିଲା । ଚାରୋଟି ଆୟୁଧ ମଧ୍ୟରୁ ଗଦାଟି ଏହି ବିରଜା କ୍ଷେତ୍ରରେ ପଡ଼ିଥିବାରୁ ଏହି ତୀର୍ଥ ଗଦାକ୍ଷେତ୍ର ଭାବେ ପରିଚିତ ହେଲା ।

## ପ୍ରାଚୀନ ବିରଜା ମନ୍ଦିର

*(ancient Biraja temple)*

ବିରଜା କ୍ଷେତ୍ର ଦେଶର ଏକ ପ୍ରାଚୀନତମ ଶକ୍ତି ପୀଠମାନଙ୍କ ମଧ୍ୟରେ ଅନ୍ୟତମ । ପୂର୍ବରୁ କୁହାଯାଇଛି ବିରଜା କ୍ଷେତ୍ର ମହାଭାରତ ରଚନାର ପୂର୍ବରୁ ପ୍ରତିଷ୍ଠିତ ହୋଇସାରିଥିଲା । ପ୍ରାୟ ଖ୍ରୀଷ୍ଟ ପୂର୍ବ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀ ବେଳକୁ ବିରଜା କ୍ଷେତ୍ର ପ୍ରତିଷ୍ଠାଲାଭ କରିସାରିଥିଲା । ଏଣୁ ମୌର୍ଯ୍ୟ ଯୁଗ ଓ ଏହା ପରବର୍ତ୍ତୀ ଯୁଗମାନଙ୍କର କଳାସ୍ଥାପତ୍ୟ ଏଠାରେ ଥିବାର ବିଶ୍ୱାସ କରାଯାଉଛି । କିନ୍ତୁ ଅତି ପୁରାତନ ସମୟର କୌଣସି ଧ୍ୱଂସାବଶେଷ ଏଠାରୁ ମିଳିନାହିଁ କିମ୍ବା ଏ ଦିଗରେ ପ୍ରତ୍ନତତ୍ତ୍ୱ ଖୋଦନ ମଧ୍ୟ ହୋଇନାହିଁ । ଏଭଳି ସ୍ଥଳେ ଏଠାରୁ ମିଳିଥିବା ପ୍ରାଚୀନ ମୂର୍ତ୍ତିମାନଙ୍କୁ ମୌର୍ଯ୍ୟ ଯୁଗର କିମ୍ବା




ଖ୍ରୀଷ୍ଟ ପୂର୍ବ ସମୟର ବୋଲି କହିବା କଷ୍ଟକର ହେବ ।

ଯାଜପୁରରୁ ମିଳିଥିବା ମୂର୍ତ୍ତିମାନଙ୍କ ମଧ୍ୟରେ ଦେବୀ ବିରଜାଙ୍କ ମୂର୍ତ୍ତି ସର୍ବ ପୁରାତନ ବୋଲି ବିଶ୍ୱାସ କରାଯାଏ । ଏହି ମୂର୍ତ୍ତିର ଗଠନ ଦୃଷ୍ଟିରୁ ଏହା ଦ୍ୱିଭୁଜା ଏବଂ ବାମ ହସ୍ତରେ ମହିଷରୂପୀ ଦାନବର ପୁଚ୍ଛ ଧରି ଦକ୍ଷିଣ ହସ୍ତରେ ତାର ଶରୀରକୁ ଶୂଳବିଦ୍ଧ କରୁଥିବାର ଦେଖାଯାଏ । ଭାରତରେ ଆଜିପର୍ଯ୍ୟନ୍ତ ଯେତିକି ମହିଷମର୍ଦ୍ଦିନୀଙ୍କ ମୂର୍ତ୍ତି ଆବିଷ୍କୃତ ହୋଇଛି ସେଥିମଧ୍ୟରୁ ସର୍ବପ୍ରାଚୀନ ହେଉଛି ଷଷ୍ଠ ଶତାବ୍ଦୀରେ ନିର୍ମିତ ଭୂମରାଠାରେ ଥିବା ଶିବମନ୍ଦିରର ମହିଷମର୍ଦ୍ଦିନୀ ମୂର୍ତ୍ତି । ଏହି ଦେବୀ ଚତୁର୍ଭୁଜା । ବିରଜାଙ୍କ ଭଳି ଦ୍ୱିଭୁଜା ନୁହଁନ୍ତି । ଏହାକୁ ଭିତ୍ତି କରି ଐତିହାସିକ ରମା


ବିରଜା ମନ୍ଦିର ସାମ୍ନାରେ ଲେଖକ

ପ୍ରସାଦ ନନ୍ଦ ବିରଜାଙ୍କ ମୂର୍ତ୍ତିକୁ ପଞ୍ଚମ ଶତାବ୍ଦୀ ଅର୍ଥାତ୍ ଗୁପ୍ତ ଯୁଗର ବୋଲି ଦାବି କରନ୍ତି । *(Memories of Archaeological Survey of India, No.16, plate XIV)* । ସୂଚନାଯୋଗ୍ୟ, ଗୁପ୍ତ ଯୁଗରେ ଭାରତବର୍ଷରେ ବ୍ରାହ୍ମଣ ଧର୍ମର ପୁନରୁତ୍‌ଥାନ ଘଟି ଏହା ସର୍ବବ୍ୟାପୀ ହୋଇପାରିଥିଲା ।


...ମନ୍ଦିର ପ୍ରାଚୀର

ବିରଜାଙ୍କ ମୂର୍ତ୍ତି ତତ୍ତ୍ୱରୁ ଅନୁମିତ ହୁଏ ଯେ, ପଞ୍ଚମ ଶତାବ୍ଦୀ ବେଳକୁ ଯାଜପୁରକୁ ବୌଦ୍ଧ ପ୍ରଭାବରୁ ମୁକ୍ତ କରାଯିବାକୁ ଉଦ୍ୟମ ହୋଇଥିଲା । ଏହି ସମୟରେ ବିରଜାଙ୍କ ନୂତନ ମୂର୍ତ୍ତି ଓ ମନ୍ଦିର ନିର୍ମାଣ କରାଯାଇଥିଲା । ତେବେ ସେହି ପ୍ରାଚୀନ ମନ୍ଦିର ଧ୍ୱଂସ ପାଇଯିବା ଯୋଗୁଁ ଏହାକୁ ଯାଜପୁରର ସ୍ୱର୍ଗତ ଜମିଦାର ଚୌଧୁରୀ ସୁଦର୍ଶନ ମହାପାତ୍ର ଉନ୍ନବିଂଶ ଶତାବ୍ଦୀରେ ନିର୍ମାଣ କରିଛନ୍ତି ।

ଦେବୀ ବିରଜା ବ୍ରହ୍ମାଗ୍ନିରୁ ଜାତ ହୋଇଥିଲେ । ସ୍ୱୟଂ ବ୍ରହ୍ମା ଏଠାରେ ଦେବୀ ବିରଜାଙ୍କୁ ପ୍ରତିଷ୍ଠା କରିଛନ୍ତି ବୋଲି ପୁରାଣରେ ଉଲ୍ଲେଖ ରହିଛି । ମା' ବିରଜାଙ୍କ କ୍ଷେତ୍ର ସଂପର୍କରେ ବ୍ୟାସଦେବଙ୍କ ସଂସ୍କୃତ ମହାଭାରତ, ବାୟୁ ପୁରାଣ, ବାମନ ପୁରାଣ, କପିଳ ସଂହିତା, ବ୍ରହ୍ମ ପୁରାଣ, ବ୍ରହ୍ମାଣ୍ଡ ପୁରାଣ ଆଦି ବିଭିନ୍ନ ପୁରାଣରେ ଉଲ୍ଲେଖ ରହିଛି । ମା' ବିରଜା ରଜଗୁଣ ରହିତା, ରାଜସିକତାବିହୀନ ପରମ ବୈଷ୍ଣବୀ । ଦେବୀ ଦ୍ୱିଭୁଜା । ସିଂହବାହିନୀ ମହିଷାମର୍ଦ୍ଦିନି ଦୁର୍ଗା । ଦକ୍ଷିଣ ହସ୍ତରେ ଧାରଣ କରିଥିବା ଶୂଳରେ ମହିଷାସୁର ଶରୀରକୁ ବିଦ୍ଧ କରିଛନ୍ତି । ବାମ ହସ୍ତରେ ମହିଷର ଲାଙ୍ଗୁଡ ଭିଡ଼ି ଧରିଛନ୍ତି । ଦେବୀଙ୍କ ବାମ ପାଦ ମହିଷର ମସ୍ତକ ଉପରେ ରହିଛି । ଭାରତବର୍ଷରେ ଥିବା ଦୁର୍ଗା


ବିରଜା ମନ୍ଦିର ପରିସରରେ ଥିବା ପ୍ରାଚୀନ କାରୁକାର୍ଯ୍ୟ

ବିଗ୍ରହମାନଙ୍କ ମଧ୍ୟରେ ଦେବୀ ବିରଜାଙ୍କ ବିଗ୍ରହ ସର୍ବ ପ୍ରାଚୀନତମ । ଏହି କ୍ଷେତ୍ରରେ ଦେବୀଙ୍କୁ ବୈଦିକ ଓ ତାନ୍ତ୍ରିକ ବିଧିରେ ପୂଜାର୍ଚ୍ଚନା କରାଯାଇଥାଏ ।

ଶାରଦୀୟ ଦୁର୍ଗା ପୂଜା ମା' ବିରଜାଙ୍କ ପୀଠରେ ଧୂମଧାମ୍‌ରେ ପାଳନ କରାଯାଇଥାଏ । ମା' ବିରଜା ଦୈନନ୍ଦିନ ଏକାକ୍ଷର ମନ୍ତ୍ରରେ ପୂଜିତ ହୁଅନ୍ତି । ପୁରାଣଶାସ୍ତ୍ରରେ କାଶୀ ତୀର୍ଥ ଓ ପୁରୁଷୋତ୍ତମ ତୀର୍ଥ ଅପେକ୍ଷା ବିରଜା ତୀର୍ଥକୁ ସର୍ବାଧିକ ପ୍ରାଧାନ୍ୟ ଦିଆଯାଇଛି । କାଶୀରେ ଅଷ୍ଟଯୁଗ ରହିଲେ ଯେଉଁ ଫଳ ମିଳେ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଦିନେ ଅବସ୍ଥାନ କଲେ ସମାନ ଫଳ ମିଳେ । ମାତ୍ର ବିରଜାଙ୍କ ମୁହୂର୍ତ୍ତେମାତ୍ର ଦର୍ଶନରେ ତାର କୋଟିଗୁଣ ଫଳ ମିଳିଥାଏ ବୋଲି ପୁରାଣଶାସ୍ତ୍ରରେ ବର୍ଣ୍ଣିତ ରହିଛି ।

ମା' ବିରଜାଙ୍କ ମନ୍ଦିରରେ ବହୁ ସଂଖ୍ୟାରେ ପାର୍ଶ୍ୱଦେବତା ପୂଜା ପାଉଛନ୍ତି । ମନ୍ଦିର ପରିସରରେ ଦୁଇଟି ବିଶାଳ ଗଣେଷଙ୍କ ମୂର୍ତ୍ତି, ମୟୂର ଉପରେ ବସିଥିବା ଦ୍ୱିବାହୁବିଶିଷ୍ଟ କାର୍ତ୍ତୀକେୟଙ୍କ ମୂର୍ତ୍ତି, ଦୁଇଟି ଏକପାଦ ଭୈରବ ମୂର୍ତ୍ତି, ଚାମୁଣ୍ଡା, ମଣିଷ ଶବକୁ ଧରିଥିବା ତିନିପାଦିଆ ଭୈରବ, ରୁଦ୍ଧିରେଶ୍ୱର ଶିବଲିଙ୍ଗ, ହର-ପାର୍ବତୀ, ଗଜଲକ୍ଷ୍ମୀ, ନବଗ୍ରହ, ବିଷ୍ଣୁଙ୍କ ମୂର୍ତ୍ତି ପୂଜିତ ହୋଇଥାନ୍ତି । ମନ୍ଦିର ପରିସରରେ ଏକ ଚଣ୍ଡୀ ମଣ୍ଡପ ରହିଛି ।

ଯାଜପୁର ମୂଳତଃ ଏକ ପିତୃତୀର୍ଥ । ଏଠାରେ ଦେବୀ ବିରଜା ପରମ ବୈଷ୍ଣବୀ ଓ ପିତୃରୂପିଣୀ ଭାବେ ବିରାଜିତ । ନାଭିଗୟାର କୂପ ନିକଟରେ ସ୍ୱୟଂ ବିଷ୍ଣୁ ଗଦାଧର ନାମରେ ଶୋଭା ପାଉଛନ୍ତି । ବିରଜାଙ୍କୁ ପିତୃରୂପିଣୀ ଭାବେ ଗ୍ରହଣ କରାଯାଇ ବୈଷ୍ଣବ ତୀର୍ଥର ମାନ୍ୟତା ପ୍ରଦାନ କରିବା ସହ ଏହାକୁ ଗଦାକ୍ଷେତ୍ର ଭାବେ ନାମିତ କରାଯାଇଛି । ବିରଜାଙ୍କୁ ମହାଶକ୍ତି ଭାବେ ଗ୍ରହଣ କରି ଏହାକୁ ଦେଶର ଏକ ପ୍ରମୁଖ ଶକ୍ତିପୀଠର ମାନ୍ୟତା ପ୍ରଦାନ କରାଯାଇଛି । ଦେବୀ ବିରଜା ହେଉଛନ୍ତି ପିତୃରୂପିଣୀ ବୈଷ୍ଣବୀ ଦେବୀ । ଏଣୁ ତାଙ୍କର ବାହନ ସିଂହ ନାହିଁ । କେବଳ ଶାରଦୀୟ ଉତ୍ସବରେ ଦେବୀଙ୍କୁ ମହିଷାମର୍ଦ୍ଦିନୀ ଦୁର୍ଗା ରୂପେ ପୂଜା କରାଯାଉଥିବାରୁ ତାଙ୍କର ବାହନ ସିଂହର ପରିକଳ୍ପନା କରାଯାଇ 'ଦ୍ୱିଭୂଜାଂ ସିଂହ ବାହିନୀଂ' ବୋଲି ଧ୍ୟାନ କରାଯାଏ । ମୂଳତଃ ବୈଷ୍ଣବ ଚିନ୍ତନ ଆଧାରରେ ଦେବୀଙ୍କୁ ଉପାସନା କରାଯାଇଥାଏ । ଏଣୁ ବିରଜା କ୍ଷେତ୍ର ଅନ୍ୟ ଅର୍ଥରେ 'ଗଦାକ୍ଷେତ୍ର' ଭାବେ ପରିଚିତ ।

'କପିଳ ସଂହିତା'ରେ ବିରଜା କ୍ଷେତ୍ରର ବିଶେଷତ୍ୱ ସଂପର୍କରେ ଉଲ୍ଲେଖ ରହିଛି । ବିରଜା କ୍ଷେତ୍ରରେ ପ୍ରବାହିତ ପ୍ରମୁଖ ନଦୀ ବୈତରଣୀ ମୁକ୍ତିଦାୟିନୀ, ପୁଣ୍ୟପ୍ରଦା ନଦୀ ଭାବେ ବର୍ଣ୍ଣିତ ହୋଇଛି । ବିରଜା କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀଙ୍କୁ ଦର୍ଶନ କଲେ ରାଜସିକ ମନୋଭାବ ମିଳେ ଏବଂ ତାମସିକ ଦୂର ହୁଏ ।

"ତସ୍ମିନ୍ କ୍ଷେତ୍ରେ (ବିରଜା କ୍ଷେତ୍ରେ) ଦ୍ୱିଜଶ୍ରେଷ୍ଠା ବିରଜା ବିରଜଃ ପ୍ରଦା
ବିରଜା ମୁଖୋଲୋକ୍ୟ ରଜଃ ପ୍ରକ୍ଷାଳନଂ ଭବେତ୍ ସଦା ।"

[ ତଥ୍ୟ ଉତ୍ସ

୧· ଭୂପତି ଭୂଷଣ ମିଶ୍ର, 'ପୁରାଣ ପୃଷ୍ଠାରେ ଗଦାକ୍ଷେତ୍ର ଯାଜପୁର' , ଯଯାତି, ଯାଜପୁର ଜିଲ୍ଲା ମହୋତ୍ସବ ସ୍ମରଣିକା-୨୦୧୪.

୨· ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'-୧୯୭୩, ପୃଷ୍ଠା-୪୪ ଓ ୪୫

*3. Memories of Archaeological Survey of India, No.16, plate XIV* ]

## ନାଭିଗୟା

*(Navi Gaya)*

ଯାଜପୁରର ବିରଜା ଦେବୀଙ୍କ ମନ୍ଦିର ପରିସରରେ ଥିବା ଚଣ୍ଡୀମଣ୍ଡପର ବାମ ପାର୍ଶ୍ୱରେ ପବିତ୍ର 'ନାଭିଗୟା' ରହିଛି । ଏଠାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରାଯାଇଥାଏ । ଏହା



ଭାରତବର୍ଷର ଏକ ପ୍ରମୁଖ ମୋକ୍ଷ ପ୍ରାପ୍ତିର କ୍ଷେତ୍ର ଭାବେ ପରିଚିତ । ପ୍ରାଚୀନ ଭାରତର ନାଭି କ୍ଷେତ୍ର ଭାବେ ପରିଚିତ ଏହି ପୀଠରେ ପିଣ୍ଡଦାନ କରି ଦେବୀ ବିମଳା ବିରଜାଙ୍କୁ ଦର୍ଶନ କଲେ ୨୧ ପୁରୁଷ ପର୍ଯ୍ୟନ୍ତ ପିତୃପୁରୁଷ ମୁକ୍ତିଲାଭ କରନ୍ତି ବୋଲି ବିଶ୍ୱାସ ରହିଛି । ଏ ସଂପର୍କରେ ବାୟୁ ପୁରାଣ ଓ ହରିବଂଶରେ ମଧ୍ୟ ଉଲ୍ଲେଖ ରହିଛି ।

ନାଭିଗୟା ହିନ୍ଦୁମାନଙ୍କର ପ୍ରସିଦ୍ଧ ତୀର୍ଥଭୂମି ଅଟେ । ଏହି ପବିତ୍ର ପୀଠରେ ଭୌମକର ବଂଶୀ, ସୋମବଂଶୀ, ଗଙ୍ଗବଂଶୀ ରାଜା ଓ ପ୍ରଜାମାନଙ୍କଠାରୁ ଆରମ୍ଭ କରି ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ଲୋକମାନେ ଆସି ଆଶ୍ୱିନ ପିତୃପକ୍ଷରେ ପିଣ୍ଡଦାନ କରିଥା'ନ୍ତି ।

ସତ୍ୟ ଯୁଗରେ ବିଷ୍ଣୁଙ୍କ ଚକ୍ରରେ ନିହତ ହୋଇଥିବା ଭକ୍ତ ଗୟାସୁରର ନାଭି ଏଠାରେ ପଡିଥିବାରୁ ଏହାକୁ 'ନାଭିଗୟା' ବୋଲି କୁହାଯାଇଥାଏ । ଗୟାସୁର ଜଣେ ବିଷ୍ଣୁ ଭକ୍ତ ଥିଲେ । ଏଣୁ ଗୟାସୁରର ମୃତ୍ୟୁ ପରେ ତାହାର ଅଙ୍ଗପ୍ରତ୍ୟଙ୍ଗ ଯେଉଁସବୁ ସ୍ଥାନରେ ପତିତ ହୋଇଥିଲା, ସେସବୁ ସ୍ଥାନର ପବିତ୍ରତା ବୃଦ୍ଧି ପାଇଥିଲା । ଗୟାସୁରର ମୁଣ୍ଡ ବିହାରର ଗୟା ନିକଟସ୍ଥ ଫଲ୍‌ଗୁ ନଦୀରେ ପଡି ସେ ସ୍ଥାନ 'ଶ୍ରୀଗୟା' ନାମରେ ବିଖ୍ୟାତ ହୋଇଥିବାବେଳେ ପାଦ ଗୋଦାବରୀ ନଦୀରେ ପଡି ଏହା 'ପାଦଗୟା' ଏବଂ ନାଭି ବିରଜାକ୍ଷେତ୍ର ବୈତରଣୀ ନଦୀରେ ପତିତ ହୋଇ ଏହା 'ନାଭିଗୟା' ନାମରେ ବିଖ୍ୟାତ ହେଲା । ବିରଜା ଦେବୀ ଉଷ୍ଣପା ପିତୃଗଣଙ୍କ ମାନସୀ କନ୍ୟା ହୋଇଥିବାରୁ ଏହି କ୍ଷେତ୍ରରେ ପିତୃଗଣଙ୍କୁ ପିଣ୍ଡ ପ୍ରଦାନ କଲେ ସେମାନେ ସନ୍ତୋଷ ହୋଇ ବଂଶର କଲ୍ୟାଣ କାମନା କରନ୍ତି ।

ନାଭିଗୟାକୁ ନେଇ ଅନ୍ୟ ଏକ ପୌରାଣିକ ମତ ରହିଛି । ପତ୍ନୀ ସତୀଙ୍କ ମୃତ୍ୟୁରେ ମହାଦେବ ଶିବ ଏକ ପ୍ରକାର ଉନ୍ମତ୍ତ ହୋଇପଡିଥିଲେ । ଏହି କାରଣରୁ ପତ୍ନୀଙ୍କ ଶବକୁ ଧରି ଶିବ ତାଣ୍ଡବ ନାଚିବା ଆରମ୍ଭ କରିଦେଇଥିଲେ । ଶିବ ତାଣ୍ଡବ ଯୋଗୁଁ ମହାପ୍ରଳୟ ସୃଷ୍ଟି ହେବାର ଆଶଙ୍କା କରି ଭଗବାନ ବିଷ୍ଣୁ ନିଜର ସୁଦର୍ଶନ ଚକ୍ର ସହାୟତାରେ ଦେବୀ ସତୀଙ୍କ ମର ଶରୀରକୁ ତିନି ଖଣ୍ଡ କରି କାଟି ପକାଇଥିଲେ । ଦେବୀ ସତୀଙ୍କର ନାଭି ଅଂଶଟି ବୈତରଣୀ ତୀର୍ଥ ବିରଜା କ୍ଷେତ୍ରରେ ପଡିବାରୁ ଏହାର ନାମ 'ନାଭିଗୟା' ହୋଇଛି ବୋଲି ବିଶ୍ୱାସ କରାଯାଏ । ଏଠାରେ ଦେବୀ ସତୀଙ୍କର ଏକ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । ପରବର୍ତ୍ତୀ ସମୟରେ ଦେବୀ ସତୀ ମା' ବିରଜା ନାମରେ ଖ୍ୟାତ ହେଲେ ବୋଲି ବିଶ୍ୱାସ କରାଯାଏ । ଦେବୀ ସତୀଙ୍କର ନାଭି ଅଂଶଟି ଏଠାରେ ପତିତ ହୋଇଥିବାରୁ ଏହାକୁ ମଧ୍ୟ 'ପାର୍ବତୀ ତୀର୍ଥ' ବୋଲି କୁହାଯାଇଥାଏ ।

## ବ୍ରହ୍ମାକୁଣ୍ଡ

*(Brahma Kunda)*

ମା' ବିରଜାଙ୍କ ମନ୍ଦିର ନିକଟରେ ରହିଛି ପବିତ୍ର ବ୍ରହ୍ମାକୁଣ୍ଡ । ଏହା ଏକ ବଡ଼ ପୁଷ୍କରିଣୀ ଅଟେ । ଏହାକୁ ସ୍ୱୟଂ ବ୍ରହ୍ମାଙ୍କର ଯଜ୍ଞ କୁଣ୍ଡ ବୋଲି ଅନେକ କହନ୍ତି । ଏହି ପବିତ୍ର ଯଜ୍ଞ କୁଣ୍ଡରୁ ଦେବୀ ସାବିତ୍ରୀ ଅର୍ଥାତ୍ ମା' ବିରଜା ଆବିର୍ଭୁତ ହୋଇଥିଲେ ବୋଲି କୁହାଯାଏ । ଏହି କାରଣରୁ ମା' ବିରଜାଙ୍କୁ 'ଯଜ୍ଞ ବିରଜା' ଏବଂ ଏଠାରେ ଅବସ୍ଥାପିତ ବରାହନାଥଙ୍କୁ 'ଯଜ୍ଞ ବରାହ' ବୋଲି କୁହାଯାଇଥାଏ । ଏହି ପ୍ରସିଦ୍ଧ ବ୍ରହ୍ମକୁଣ୍ଡ ସୋମବଂଶୀ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ବିଶେଷକରି 'ଯଜ୍ଞପୁର' ବା 'ଯାଜପୁର'ରେ ସମ୍ରାଟ ପ୍ରଥମ ଯଯାତି କେଶରୀ ଯଜ୍ଞାନୁଷ୍ଠାନ ପାଇଁ କାନ୍ୟକୁବ୍‌ଜରୁ ଯେଉଁ ଦଶସହସ୍ର ବ୍ରାହ୍ମଣମାନଙ୍କୁ ଆଣିଥିଲେ ସେମାନଙ୍କୁ ଏହି ବ୍ରହ୍ମକୁଣ୍ଡ ନିକଟରେ ବସତି ସ୍ଥାପନ କରି ରଖାଯାଇଥିଲା । ସେମାନଙ୍କ ସୁବିଧା ପାଇଁ ଏହି ପୁଷ୍କରିଣୀ ଖନନ କରାଯାଇଥାଇ ପାରେ ବୋଲି ବିଶ୍ୱାସ କରାଯାଏ ।

## ଶୁଭସ୍ତମ୍ଭ

*(monolithic pillar of Jajpur; Subha stambha)*

ଯାଜପୁର ସହରରେ ଅବସ୍ଥିତ ଶୁଭସ୍ତଂଭଟି ତତ୍କାଳୀନ ସୋମବଂଶୀ ରାଜା ପ୍ରଥମ ଯଯାତି କେଶରୀ (ଖ୍ରୀ·ଅ·୯୨୨-ଖ୍ରୀ·ଅ·୯୫୫)ଙ୍କ ଏକ ବିଜୟ ସ୍ମାରକୀ ଭାବେ ଆଜି ପର୍ଯ୍ୟନ୍ତ ଓଡ଼ିଶା ଇତିହାସର ଗୌରବ ବହନ କରିଆସୁଛି । ମା' ବିରଜାଙ୍କ ମନ୍ଦିର ନିକଟରେ ଏହି ଶୁଭସ୍ତମ୍ଭ ବା ଗରୁଡ଼ସ୍ତଂଭଟି ଅବସ୍ଥିତ । ସୋମବଂଶୀ ସମ୍ରାଟ ପ୍ରଥମ ଯଯାତି କେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ଶୁଭସ୍ତଂଭଟି ଯାଜପୁରବାସୀଙ୍କ ଭାବାବେଗ ସହିତ ଓତପ୍ରୋତ ଭାବେ ଜଡ଼ିତ । ଯାଜପୁର ସହରରେ ଥିବା ବହୁ ପୁରାତନ ପ୍ରତ୍ନତାତ୍ତ୍ୱିକ ସଂପଦ ମଧ୍ୟରେ ଏହା ଏକ ପ୍ରମୁଖ କୀର୍ତ୍ତିରାଜି । ସ୍ତଂଭଟିର ଉଚ୍ଚତା ୧୦ ମିଟର ହୋଇଥିବାବେଳେ ଏହା ପ୍ରସ୍ତରର ବର୍ଗାକାର ପିଣ୍ଡି ଉପରେ ସ୍ଥାପିତ । ଏହି ଶୁଭସ୍ତମ୍ଭର ମୂଳ ଅଷ୍ଟକୋଣୀ ଏବଂ ଏହାର ଗୋଲେଇ ପ୍ରାୟ ଏକ ମିଟର । ଶୀର୍ଷ ଭାଗରେ କୀର୍ତ୍ତିମୁଖ ଓ ପ୍ରସ୍ତରମାଳାର ଖୋଦିତ ଅଂଶ ରହିଛି । ଏହାର ଅଗ୍ରଭାଗରେ ପ୍ରସ୍ଫୁଟିତ ପଦ୍ମ ଫୁଲ ଶୋଭା ପାଉଛି । ଏହା ଉପରେ ପୂର୍ବରୁ ଗରୁଡ଼ଙ୍କର ଏକ ବିଶାଳ ମୂର୍ତ୍ତି ସ୍ଥାପିତ ହୋଇଥିଲା । କିଂତୁ କୌଣସି କାରଣରୁ ଏହା ସ୍ଥାନଚ୍ୟୁତ ହୋଇ ଯାଜପୁର ସହର ଉପକଣ୍ଠ ମାଧପୁର ଗ୍ରାମ ମଧ୍ୟସ୍ଥ ନୃସିଂହ ନାଥ



ଶୁଭ ସ୍ତଂଭ

ମନ୍ଦିରରେ ପୂଜା ପାଉଛନ୍ତି । ଦଶମ ଶତାବ୍ଦୀରେ ନିର୍ମିତ ଏହି ଶିଳ୍ପକଳା ଓ ଭାସ୍କର୍ଯ୍ୟ ଓଡ଼ିଆ ଜାତିର ସାଂସ୍କୃତିକ ବିଭବର ପରିଚୟ ଦେଇଥାଏ । ଯାଜପୁର ସହରକୁ ଆସୁଥିବା ପ୍ରତ୍ୟକ ପର୍ଯ୍ୟଟକ ଶୁଭସ୍ତମ୍ଭର ଦର୍ଶନ କରି ଓଡ଼ିଆମାନଙ୍କ ପ୍ରାଚୀନ କୀର୍ତ୍ତିରାଜିର ପ୍ରଶଂସାରେ ଶତମୁଖ ହୋଇ ଉଠନ୍ତି ।

ଶୁଭସ୍ତମ୍ଭଟି କଳାମୁଗୁନି ପଥରରେ ନିର୍ମିତ ହୋଇଛି । ଏହି ବିଶାଳ ସ୍ତମ୍ଭର ପଦଦେଶ ଓ ମସ୍ତକ ବ୍ୟତୀତ ଅନ୍ୟ କୌଣସି ଅଂଶରେ କାରୁକଳା ନାହିଁ । ଏଥିରେ ଯାହା କାରୁକଳା ଖୋଦିତ ହୋଇଛି ତାହା ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରରେ ଥିବା ତୋରଣର କାରୁକଳା ସହିତ ସାମଞ୍ଜସ୍ୟ ରଖିଥାଏ । ମୁକ୍ତେଶ୍ୱର ପ୍ରାୟ ଦଶମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ମୌଳିକ ଅବସ୍ଥାରେ ଏହା ଏକ ଗରୁଡ଼ ସ୍ତମ୍ଭ ଥିଲା । ଏହାର ଶୀର୍ଷ ଭାଗରେ ଯେଉଁ ଗରୁଡ଼ ମୂର୍ତ୍ତି ଥିଲା, ମାତ୍ର ତାହା ବିଚ୍ୟୁତ ହୋଇ ଅନ୍ୟତ୍ର ପୂଜା ପାଉଛନ୍ତି ।

ଯାଜପୁରରେ ସୋମବଂଶୀ ରାଜଧାନୀର ସ୍ଥାପନକର୍ତ୍ତା ପ୍ରଥମ ଯଯାତି କେଶରୀ ଶୈବ ଓ ବୈଷ୍ଣବ ଧର୍ମାବଲମ୍ବୀ ଥିବାରୁ ସେ ଏହି ଗରୁଡ଼ ସ୍ତମ୍ଭ ନିର୍ମାଣ କରିଥିବା ଅଧିକ ବିଶ୍ୱାସଯୋଗ୍ୟ ମନେହୋଇଥାଏ ।

[ ତଥ୍ୟ ଉତ୍ସ

୧. ଯଯାତି, ଯାଜପୁର ଜିଲ୍ଲା ମହୋତ୍ସବ ସ୍ମରଣିକା, ୨୦୧୪

୨. ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'-୧୯୭୩, ପୃଷ୍ଠା-୪୯ ଓ ୫୦ ]

## ସପ୍ତମାତୃକା ମନ୍ଦିର

*(Saptamatruka temple)*

ଯାଜପୁର ସହରରେ ବୈତରଣୀ ନଦୀ କୂଳର ଦଶାଶ୍ୱମେଧ ଘାଟରେ ରହିଛି ପ୍ରସିଦ୍ଧ ସପ୍ତମାତୃକା ମନ୍ଦିର । ଏହି ପୀଠଟି ଭାରତବର୍ଷର ଏକ ପ୍ରାଚୀନତମ ହିନ୍ଦୁ ତାନ୍ତ୍ରିକ ପୀଠ ଭାବେ ପରିଚିତ । ମନ୍ଦିରର ମୁଖ୍ୟ ଦ୍ୱାର ପଶ୍ଚିମ ଦିଗକୁ ଥିବାବେଳେ ଉତ୍ତର ଦିଗକୁ ଚାରିଗୋଟି ଦ୍ୱାର ରହିଛି । ଏହି ମନ୍ଦିରରେ ସାତଜଣ ମାତୃକାଗଣ ପୂଜିତ ହୋଇଥାନ୍ତି । ସେମାନେ ହେଲେ-

୧. ଚାମୁଣ୍ଡା

୨. ବରାହୀ

୩. ଇନ୍ଦ୍ରାଣୀ

୪. ବୈଷ୍ଣବୀ

୫. ବ୍ରାହ୍ମଣୀ (ଶିବଦୂତୀ)

୬. କୁମାରୀ

୭. ମାହେଶ୍ୱରୀ

ଏହି ସପ୍ତମାତୃକା ମୂର୍ତ୍ତିଙ୍କ ଗହଣରେ **ନରସିଂହ**ଙ୍କର ଏକ ବିଶାଳ ମୂର୍ତ୍ତି ମଧ୍ୟ ରହିଛି ।

**୧. ଚାମୁଣ୍ଡା:** ସପ୍ତମାତୃକା ମନ୍ଦିରକୁ ମୁଖ୍ୟଦ୍ୱାର ଅତିକ୍ରମ କରି ପ୍ରବେଶ କଲେ ସର୍ବପ୍ରଥମେ ଉତ୍ତରାଭିମୁଖୀ ଯେଉଁ ବିଗ୍ରହ ଦେଖିବାକୁ ମିଳେ ସେ ହେଉଛନ୍ତି ଚାମୁଣ୍ଡା । ଦେବୀ ଚାମୁଣ୍ଡା ପ୍ରେତାସନା । ତାଙ୍କ ପାଦତଳେ ଗୋଟିଏ ପ୍ରେତ ବା ଶବ ରହିଥିବାବେଳେ ସେ ଚଣ୍ଡ ଓ ମୁଣ୍ଡଙ୍କୁ ବଧ କରିଥିବାରୁ ଚାମୁଣ୍ଡା ନାମରେ ପରିଚିତା । ସପ୍ତମାତୃକାଙ୍କ ମଧ୍ୟରେ ଚାମୁଣ୍ଡା ଅତି ଭୟଙ୍କର ଦେବୀ ଭାବେ ଜଣାଶୁଣା । ଉପବାସୀ ବୁଦ୍ଧଙ୍କ ସଦୃଶ ଚାମୁଣ୍ଡା ଅସ୍ଥିକଙ୍କାଳସାର ହୋଇଥିବାରୁ ତାଙ୍କୁ ଉପବାସୀ ବୁଦ୍ଧଙ୍କ ଶକ୍ତି ଭାବେ ଅଭିହିତ କରାଯାଇଥାଏ । ଚାମୁଣ୍ଡା ଚତୁର୍ଭୁଜା ଅଟନ୍ତି । ଦେବୀ ଊର୍ଦ୍ଧ୍ୱ ଦୁଇ ହସ୍ତରେ ଖଡ୍‌ଗ ଓ ଖଟ୍ୱାଙ୍ଗ ଧାରଣ କରିଥିବାବେଳେ ନିମ୍ନ ଦୁଇ ହସ୍ତରେ ନରକରୋଟି ଖର୍ପର ଓ କର୍ତ୍ତିତ ନରମୁଣ୍ଡ ଧାରଣ କରିଛନ୍ତି । ଭୀଷଣାକୃତି ଏହି ମୂର୍ତ୍ତି ଦର୍ଶନରେ ଦର୍ଶକ ମନରେ ଭୟ ସଞ୍ଚାର ହୋଇଥାଏ । ବିଶ୍ୱ ପଦ୍ମାସନ ପରି ଶାୟିତ ଏକ ଶବ ଉପରେ ଆରୁଢ ଶୀର୍ଣ୍ଣକାୟ ଏହି ଦେବୀଙ୍କର ସମଗ୍ର ଶରୀର ମାଂସହୀନ ତଥା ଅସ୍ଥି କଙ୍କାଳସାର । ଦେବୀଙ୍କର ଗଳିତ କୁଚଦ୍ୱୟ ସହ ପେଟ ଉପବାସରେ ଭିତରକୁ ପଶିଯାଇଛି । ସମଗ୍ର ବିଗ୍ରହରେ ଶିରାପ୍ରଶିରା ସ୍ପଷ୍ଟ ଭାବେ ଜାଣିହୁଏ । ଦେବୀଙ୍କର କେଶବାସ ଟାଙ୍କୁରିତ, ବିକଟ ବଦନ, ପ୍ରସାରିତ ମୁଖରେ କୁଟିଳ ହସ, କୋଟରାଗତ ଚକ୍ଷୁ, ଲୋଳ ଜିହ୍ୱା ଏବଂ ନରମୁଣ୍ଡ କଙ୍କଣ ପରିହିତା । ତାଙ୍କ ଗଳାରୁ ବକ୍ଷ ପର୍ଯ୍ୟନ୍ତ ନରମୁଣ୍ଡର ଏକ ମାଳା ଝୁଲି ରହିଛି ଏଭଳି ଭୟଙ୍କର ମୂର୍ତ୍ତି ଓଡ଼ିଶାରେ ଦେଖିବାକୁ ବିରଳ । ଐତିହାସିକ ରମାପ୍ରସାଦ ଚନ୍ଦ ତାଙ୍କୁ ଦନ୍ତୁରା ଚାମୁଣ୍ଡା ଭାବେ ଅଭିହିତ କରିଛନ୍ତି । ଏହି ଚାମୁଣ୍ଡାଙ୍କ ପାଟିରେ ଏକ ଲୋଳାୟମାନ ଜିହ୍ୱ ସଂଯୋଗ କରାଯାଇ ତାଙ୍କୁ କାଳିକା ରୂପେ ସଜାଯାଇଛି ।


ଚାମୁଣ୍ଡା


ବାରାହୀ


ଇନ୍ଦ୍ରାଣୀ

**୨. ବରାହୀ:** ଦ୍ୱିତୀୟ ମାତୃକା ହେଉଛନ୍ତି ବରାହୀ । ଏହି ଦେବୀ ରକ୍ତବୀର୍ଯ୍ୟ ବଧ ସମୟରେ ଦୁର୍ଗାଙ୍କ ଶରୀରରୁ ଉତ୍ପନ୍ନ ହୋଇଥିଲେ । କିନ୍ତୁ ତାଙ୍କର ପୌରାଣିକ ପରିଚୟ ହେଉଛି, ସେ ବରାହ ବିଷ୍ଣୁଙ୍କର ଶକ୍ତି ସ୍ୱରୂପିଣୀ । ଚତୁର୍ଭୁଜା ଏହି ଦେବୀ ବାମ ଦୁଇ ହସ୍ତରେ ଊର୍ଦ୍ଧ୍ୱରୁ ଅଧଃ କ୍ରମରେ ରୋହିତ ମତ୍ସ୍ୟ ଓ ଶିଶୁ ସନ୍ତାନ ଧାରଣ କରିବା ସହିତ ଦକ୍ଷିଣ ହସ୍ତଦ୍ୱୟରେ ସେହି କ୍ରମରେ ନରକରୋଟି ଓ ବରଦମୁଦ୍ରା ଧାରଣ କରିଛନ୍ତି । ଦେବୀଙ୍କର ମୁଖ ଓ ତିନୋଟି ହସ୍ତ ବିକଳାଙ୍ଗ ହୋଇଯାଇଛି । ତାଙ୍କ ପାଦତଳେ ମହିଷ ବିଦ୍ୟମାନ ।


ବରାହୀ

**୩. ଇନ୍ଦ୍ରାଣୀ:** ତୃତୀୟ ମାତୃକା ହେଉଛନ୍ତି ଇନ୍ଦ୍ରାଣୀ । ଏହି ମାତୃକା ଇନ୍ଦ୍ର ଦେବତାଙ୍କ ଶକ୍ତି ଭାବେ ଆବିର୍ଭୂତ । ଚତୁର୍ଭୁଜା ଏହି ଦେବୀ ଉପର ଦୁଇ ହସ୍ତରେ ଦୁଇ ପ୍ରକାରର ବଜ୍ର ଧାରଣ କରିଥିବାରୁ କେହିକେହି ଏହାଙ୍କୁ ବୌଦ୍ଧ ଦେବୀ ଭାବେ ମତବ୍ୟକ୍ତ କରିଥା'ନ୍ତି । ଦେବୀଙ୍କର ନିମ୍ନ ବାମହସ୍ତରେ ସନ୍ତାନ ଓ ଦକ୍ଷିଣ ହସ୍ତରେ ବରଦ ମୁଦ୍ରା ରହିଛି । କିରୀଟ ମୁକୁଟଧାରିଣୀ ଏହି ଦେବୀ ଗଜବାହନା ଅଟନ୍ତି । ମାତୃକାଙ୍କ ପାଦତଳେ ଗଜ ରହିଛନ୍ତି ।


ବ୍ରାହ୍ମଣୀ

**୪. ବୈଷ୍ଣବୀ:** ବିଷ୍ଣୁଙ୍କ ଶକ୍ତି ବୈଷ୍ଣବୀ ହେଉଛନ୍ତି ଚତୁର୍ଥ ମାତୃକା । ବସ୍ତ୍ରାଳଙ୍କାର ପରିଶୋଭିତା ଚତୁର୍ଭୁଜା ଏହି ମାତୃକା ଉପର ଦୁଇ ହସ୍ତରେ ଶଙ୍ଖ, ଚକ୍ର ଓ ନିମ୍ନ ଦୁଇ ହସ୍ତରେ ଅନ୍ୟ ମାତୃକାଙ୍କ ସଦୃଶ ଅଭୟ ମୁଦ୍ରା ଓ ସନ୍ତାନ ଧାରଣ କରିଛନ୍ତି । ପାଦତଳେ ହାତ ଯୋଡ଼ିଥିବା ଅବସ୍ଥାରେ ବାହନ ଗରୁଡ଼ଙ୍କ ଏକ ମୂର୍ତ୍ତି ରହିଛି ।

**୫. ବ୍ରାହ୍ମଣୀ (ଶିବଦୂତୀ):** ଏହି ଦେବୀ ହେଉଛନ୍ତି ପଞ୍ଚ ମାତୃକା । ଏହି ମୂର୍ତ୍ତିଟି ଦେଖିବାକୁ ଏକ କଦାକାର ବୃଦ୍ଧାଙ୍କ ଭଳି । ଏହାଙ୍କର ମୁଖମଣ୍ଡଳ ଶୁଷ୍କ ଏବଂ ଶ୍ରୀହୀନ । ଚକ୍ଷୁ କୋଟରଗତ, କେଶବାସ ଜଟାସଦୃଶ । ସ୍ତନଯୁଗଳ


ମାହେଶ୍ୱରୀ

ନିମ୍ନାବନତ । ଏହି ଦେବୀଙ୍କୁ ସୂର୍ଯ୍ୟ ପତ୍ନୀ ଛାୟା ବା ଯମମାତା ବୋଲି କହିଥା'ନ୍ତି । ଏହି ବିଗ୍ରହର ନିମ୍ନାଂଶରେ ଶିବଦୂତୀ ବୋଲି ଉଲ୍ଲେଖ କରାଯାଇଛି । ରାୟ ବାହାଦୂର ରମାପ୍ରସାଦ ଚନ୍ଦ ଏହି ମୂର୍ତ୍ତିକୁ ଶିବଦୂତୀ ବୋଲି ପ୍ରକାଶ କରିଛନ୍ତି । ଏହି ବିଗ୍ରହର ହସ୍ତସବୁ ଆୟୁଧଶୂନ୍ୟ ଏବଂ ପାଦତଳେ ମଧ୍ୟ କୌଣସି ବାହନ ନାହିଁ । ଅନ୍ୟ ସପ୍ତମାତୃକାମାନେ ଚତୁର୍ଭୁଜା ହୋଇଥିବାବେଳେ ଏହି ମୂର୍ତ୍ତିଟି ଦ୍ୱିଭୁଜା ଅଟନ୍ତି ।


କୁମାରୀ

୬. **କୁମାରୀ:** ଦେବସେନାପତି କାର୍ତ୍ତିକେୟଙ୍କ ଶକ୍ତିସ୍ୱରୂପିଣୀ ଦେବୀ ବିଶ୍ୱପଦ୍ମାସନ ପରି ଆସୀନା, ପ୍ରସନ୍ନବଦନା, ପୀନ ଉରଜା ଓ ରୂପଲାବଣ୍ୟସଂପନ୍ନ । ମୁକୁଟ, କିରୀଟ, କର୍ଣ୍ଣପାସ, ତ୍ରିସରୀ ରତ୍ନହାର, ଯଜ୍ଞପୋବିତ, କଙ୍କଣ, କେୟୁର, କଟୀସୂତ୍ର, ନୂପୁର, ପାଉଁଜି ଆଦି ଅଳଙ୍କାର ଦେବୀଙ୍କ ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଛି । ଶିଖିବାହନା ଏହି ଦେବୀଙ୍କର ଦକ୍ଷିଣ ହସ୍ତଦ୍ୱୟରେ ଊର୍ଦ୍ଧ୍ୱରୁ ଅଧଃ କ୍ରମରେ ଦଣ୍ଡ ଓ ଅଭୟ ମୁଦ୍ରା ଏବଂ ବାମ ଉପର ହସ୍ତରେ ତ୍ରିଶୂଳ ଓ ନିମ୍ନ ହସ୍ତରେ ଦେବୀ ସ୍ତନକୁ ସତୃଷ୍ଣ ନୟନରେ ଚାହିଁ ରହିଥିବା ଏକ ସୁସ୍ଥ ସବଳ ଶିଶୁ ବିରାଜିତ । ପାଦର ଝରାକାମ ଅତି ନିଖୁଣ । ରୂପ ଯୌବନସଂପନ୍ନା ଏହି ଦେବୀ ଉତ୍କଳୀୟ ନାରୀଙ୍କ ସହ ତୁଳନୀୟ ।

୭. **ମାହେଶ୍ୱରୀ:** ଦଶାଶ୍ୱମେଧ ଘାଟସ୍ଥିତ ସପ୍ତମାତୃକାଦ୍ୱୟରେ ସପ୍ତମ ତଥା ଶେଷ ମାତୃକା ହେଉଛନ୍ତି ମାହେଶ୍ୱରୀ । ବୃଷଭବାହନା ଏହି ଦେବୀ ତ୍ରିଶୂଳଧାରିଣୀ ଅଟନ୍ତି । ଦେବୀଙ୍କର ଦୁଇ ହସ୍ତ କଙ୍କଣ ସଦୃଶ ଅନନ୍ତ, ତକ୍ଷକ ନାଗରାଜଦ୍ୱାରା ବେଷ୍ଟିତ ହୋଇଛି । ଦେବୀଙ୍କର ଲଲାଟ ଦେଶରେ ମନୋହର ଚନ୍ଦ୍ରକଳା ପରିଶୋଭିତ । ଦକ୍ଷିଣ ଊର୍ଦ୍ଧ୍ୱ ହସ୍ତରେ ଜପାମାଳା ଧାରଣ କରିଥିବାବେଳେ ନିମ୍ନ ହସ୍ତ ଅଭୟ ମୁଦ୍ରାଯୁକ୍ତ ଏବଂ ନିମ୍ନ ବାମ ହସ୍ତରେ ସନ୍ତାନ ଧାରଣ କରିଛନ୍ତି ।

ସମସ୍ତ ମାତୃକାମାନଙ୍କ ମୁହଁ ବୈତରଣୀ ନଦୀ ପାର୍ଶ୍ୱକୁ ରହିଛି । ଓଡ଼ିଶାରେ ଥିବା ପ୍ରାଚୀନ ତନ୍ତ୍ର ପୀଠମାନଙ୍କ ମଧ୍ୟରୁ ଯାଜପୁରର ସପ୍ତମାତୃକା ପୀଠ କେବଳ ଭାରତବର୍ଷରେ ନୁହେଁ ସମଗ୍ର ବିଶ୍ୱରେ ପ୍ରାୟତଃ ବିରଳ । ସ୍ଥାନୀୟ ଲୋକେ ଏହି ସପ୍ତମାତୃକାଙ୍କୁ **'ଯମ ମାଆ ସାତଭଉଣୀ'** ବୋଲି କହିଥା'ନ୍ତି । ଭୁବନେଶ୍ୱର ନିକଟସ୍ଥ ହୀରାପୁରର ୬୪ ଯୋଗିନୀ ମନ୍ଦିର ଓ ମୂର୍ତ୍ତି ଶୈଳୀରେ ଏହି ମନ୍ଦିର ଓ ମୂର୍ତ୍ତି ଗଠିତ ହୋଇଥିବାର ଅନୁମାନ କରାଯାଏ ।

ଏହି ସମସ୍ତ ଦେବୀ ପ୍ରତିମାଗୁଡିକ କଳାମୁଗୁନି ପଥରରେ ନିର୍ମିତ ଏବଂ ସବୁ ମୂର୍ତ୍ତିଗୁଡକ ଆକାରରେ


ନରସିଂହ

ବିଶାଳକାୟ । ଭାରତବର୍ଷରେ ଏହି ସପ୍ତମାତୃକା ମନ୍ଦିର ତନ୍ତ୍ର ପୂଜା ପାଇଁ ଅନ୍ୟତମ ପ୍ରସିଦ୍ଧ ପୀଠ ଭାବେ ପରିଚିତ । ଭୌମକର ବଂଶ ଶାସନ ଆରମ୍ଭରୁ ସପ୍ତମାତୃକା ମନ୍ଦିର ଓ ମୂର୍ତ୍ତି ଏଠାରେ ସ୍ଥାପିତ ହୋଇଛି । ଶକ୍ତିକ୍ଷେତ୍ର ଯାଜପୁରରେ ଶକ୍ତିମାନଙ୍କର ଭିନ୍ନଭିନ୍ନ ରୂପ ଯଥା- କାଳୀ, ତାରା, ଛିନ୍ନମସ୍ତା, ଭୁବନେଶ୍ୱରୀ, ବଗଳାମୁଖୀ, ଧୁମାବତୀ, ତ୍ରିପୁରାସୁନ୍ଦରୀ, ମାତଙ୍ଗୀ, ଷୋଡ଼ଶୀ, ଭୈରବୀ ଆଦି ଦଶ ମହାବିଦ୍ୟା, ଉଗ୍ରଚଣ୍ଡୀ ଓ ଭଦ୍ରକାଳୀ ପ୍ରଭୃତି ଚତୁଃଷଷ୍ଠୀ ଯୋଗିନୀମାନଙ୍କର ମଧ୍ୟ ଉପାସନା କରାଯାଇଥାଏ ।

ବୈତରଣୀ ଘାଟରେ ଦଶାଶ୍ୱମେଧ ଯଜ୍ଞ କରିବା ସମୟରେ ରାଜା ପ୍ରଥମ ଯଯାତି କେଶରୀ ଏଠାରେ ଏହି ସପ୍ତ ମାତୃକା ମୂର୍ତ୍ତିମାନଙ୍କୁ ସ୍ଥାପନ କରିଥିଲେ । ଏଣୁ ଏହି ମୂର୍ତ୍ତି ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ବୋଲି ଗବେଷକମାନେ ଅନୁମାନ କରନ୍ତି । ଏହି ମୂର୍ତ୍ତିଗୁଡିକ କଳାମୁଗୁନି ପଥରରେ ନିର୍ମିତ ଏବଂ ବିଶାଳ ଆକାରର । ପ୍ରଥମ ଯଯାତି କେଶରୀଙ୍କ ଦ୍ୱାରା ନିର୍ମିତ ମୂଳ ସପ୍ତମାତୃକା ମନ୍ଦିରଟି ଆଫଗାନ୍ ଶାସକମାନଙ୍କ ଦ୍ୱାରା ୧୫୬୮ ମସିହାରେ ଧ୍ୱଂସ ପାଇଯାଇଥିଲା । ଆଫଗାନ ଶାସକମାନେ ଏହି ମନ୍ଦିରକୁ ଧ୍ୱଂସ କରି ଏହି ମୂର୍ତ୍ତିଗୁଡିକୁ ବୈତରଣୀ ନଦୀରେ ଫିଙ୍ଗିଦେଇଥିଲେ । ପରେ ମରହଟ୍ଟା ଶାସନ କାଳରେ କଟକର ଜଣେ ବ୍ୟବସାୟୀଙ୍କ ଉଦ୍ୟମରେ ବୈତରଣୀ ନଦୀରୁ ଏହି ସପ୍ତମାତୃକାଙ୍କ ମୂର୍ତ୍ତିଗୁଡିକୁ ଉଦ୍ଧାର କରି ପୁନର୍ବାର ନଦୀ କୂଳରେ ସ୍ଥାପନ କରାଯାଇଥିଲା ।

(ତଥ୍ୟ ସହାୟତା: ପଙ୍କଜ ସାହୁ, ବିରଜା କ୍ଷେତ୍ର, ସଂକଳକ: ଡ. ବ୍ରଜମୋହନ ମହାନ୍ତି, ପ୍ରକାଶକ: ଉତ୍କଳ ପାଠକ ସଂସଦ, କଟକ, ୧୯୯୬, ପୃଷ୍ଠା: ୧୫୦, ୧୫୧, ୧୫୨, ୧୫୩)

## ଦଶାଶ୍ୱମେଧ ଘାଟ

*(Dasaswamedha Ghat)*

**ଦଶାଶ୍ୱମେଧ ଘାଟ**



ଯାଜପୁର ସହର ଦେଇ ବହିଯାଇଥିବା ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ପବିତ୍ର ଦଶାଶ୍ୱମେଧ ଘାଟ ଅବସ୍ଥିତ । ସୋମବଂଶୀ ରାଜା ପ୍ରଥମ ଯଯାତି କେଶରୀ (ଖ୍ରୀ·ଅ·୯୨୨-ଖ୍ରୀ·ଅ·୯୫୫) ଯାଜପୁର (ଯଯାତିନଗର)ରେ ନିଜର ନୂତନ ରାଜଧାନୀ ପ୍ରତିଷ୍ଠା କରିବା ପରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଦଶାଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ । କାନ୍ୟକୁବ୍‌ଜରୁ ଦଶହଜାର ବ୍ରାହ୍ମଣଙ୍କୁ ଅଣାଇ ଯାଜପୁର ସହରର ବୈତରଣୀ ନଦୀ କୂଳରେ ଏହି ଦଶାଶ୍ୱମେଧ ଘାଟରେ ଯଜ୍ଞ କରିଥିଲେ ।

**ଦଶାଶ୍ୱମେଧ ଘାଟରେ** ପିଣ୍ଡ କର୍ମ





**ଦଶାଶ୍ୱମେଧ ଘାଟରେ କାଉଡ଼ିଆ**

ବୈତରଣୀ ନଦୀର ଏହି ଘାଟରେ ଦଶାଶ୍ୱମେଧ ଯଜ୍ଞର ଆୟୋଜନ କରାଯାଇଥିବାରୁ ଏହାର ନାମ ଦଶାଶ୍ୱମେଧ ଘାଟ ହୋଇଛି ।

ଦଶାଶ୍ୱମେଧ ବୈତରଣୀ ନଦୀ ଘାଟରେ ବାରୁଣୀ ସ୍ନାନ କଲେ କୋଟି ଜନ୍ମର ପୁଣ୍ୟ ଫଳ ମିଳିଥାଏ ବୋଲି ବିଶ୍ୱାସ ରହିଛି । ଏଣୁ ପ୍ରତିବର୍ଷ ଫେବୃୟାରୀରୁ ମାର୍ଚ୍ଚ ମାସରେ ପଡୁଥିବା ବାରୁଣୀ ଯାତ୍ରାରେ ବୈତରଣୀରେ ବୁଡ଼ ପକାଇବାକୁ ଦେଶର ବିଭିନ୍ନ କୋଣରୁ ଲକ୍ଷାଧିକ ସଂଖ୍ୟାରେ ତୀର୍ଥଯାତ୍ରୀ ଆସିଥାନ୍ତି । ଏଠାରେ ପିତୃପୁରୁଷଙ୍କ ନିମନ୍ତେ ପିଣ୍ଡଦାନ କଲେ ସପ୍ତ ପୁରୁଷଙ୍କ ଆତ୍ମା ଉଦ୍ଧାର ପାଇଥାଏ ଓ ଆତ୍ମା ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି ।

ଯାଜପୁରର ଦଶାଶ୍ୱମେଧ ଘାଟଟି ଐତିହାସିକ ଓ ପୌରାଣିକ ଦୃଷ୍ଟିକୋଣରୁ ଏକ ଗୁରୁତ୍ୱପୂର୍ଣ୍ଣ ପୀଠ ଅଟେ । ପୁରାଣ ମତ ଅନୁସାରେ, ସ୍ୱୟଂ ବ୍ରହ୍ମା ଏହି ଘାଟରେ ଅଶ୍ୱମେଧ ଯଜ୍ଞ କରି ସ୍ୱର୍ଗଲୋକର ସମସ୍ତ ଦେବଦେବୀଙ୍କୁ ନିମନ୍ତ୍ରଣ କରିଥିଲେ । ବ୍ରହ୍ମାଙ୍କ ନିମନ୍ତ୍ରଣ ରକ୍ଷା କରି ଦେବୀ ଗଙ୍ଗାଙ୍କର ଏକ ଅଂଶ ଧରାପୃଷ୍ଠରେ ବୈତରଣୀ ଭାବେ ପ୍ରବାହିତ ହୋଇଥିଲେ । ବ୍ରହ୍ମାଙ୍କ ନିମନ୍ତ୍ରଣ ରକ୍ଷା କରି ମା' ବିରଜା ଓ ସ୍ୱୟଂ ବିଷ୍ଣୁ ତାଙ୍କ ଯଜ୍ଞ କୁଣ୍ଡରୁ ଆବିର୍ଭୂତ ହୋଇଥିଲେ । ଯଜ୍ଞକୁଣ୍ଡରୁ ଆବିର୍ଭୂତ ହୋଇଥିବାରୁ ଦେବୀ ବିରଜାଙ୍କୁ 'ଯଜ୍ଞ ବିରଜା' ଏବଂ ବିଷ୍ଣୁ (ବରାହନାଥ)ଙ୍କୁ 'ଯଜ୍ଞ ବରାହ' ବୋଲି କୁହାଯାଇଥାଏ ।

ଦଶାଶ୍ୱମେଧ ଘାଟ ନିକଟରେ ରହିଛି ପ୍ରସିଦ୍ଧ ସପ୍ତମାତୃକା ମନ୍ଦିର, ଶ୍ରୀଜଗନ୍ନାଥ ଏବଂ ଦେବୀ ବୈତରଣୀଙ୍କ ଏକ ମନ୍ଦିର । ନଦୀର ଅପରପାର୍ଶ୍ୱରେ ବରାହନାଥଙ୍କ ମନ୍ଦିର ଏବଂ ପବିତ୍ର ସ୍ୱର୍ଗଦ୍ୱାର, ବାରୁଣୀ ପଡିଆ ଅବସ୍ଥିତ । ପ୍ରତିବର୍ଷ ବାରୁଣୀ ମେଳାରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ଘଟିଥାଏ ।

ଓଡ଼ିଶାରେ ସୋମବଂଶୀ ରାଜାମାନଙ୍କ ରାଜତ୍ୱ କାଳରେ ଯାଜପୁର ଯଯାତିନଗର ନାମରେ ନାମିତ ହୋଇଥିଲା । ଯାଜନଗ୍ର ତତ୍କାଳୀନ ଓଡ଼ିଶାର ରାଜଧାନୀ ଭାବେ ବେଶ୍ ଖ୍ୟାତ ହୋଇପାରିଥିଲା । ରାଜା ପ୍ରଥମ ଯଯାତି କେଶରୀ ବୈତରଣୀ ନଦୀ କୂଳରେ ଦଶାଶ୍ୱମେଧ ଯଜ୍ଞ କରି ଏ କ୍ଷେତ୍ରର ପ୍ରସିଦ୍ଧି ବୃଦ୍ଧି କରିଥିଲେ । ସେହି ଯଜ୍ଞର ସ୍ମାରକୀ ସ୍ୱରୂପ ଦଶଗୋଟି ବୃହଦାକାର ପାବଛ ନଦୀ ପର୍ଯ୍ୟନ୍ତ ନିର୍ମାଣ କରିଥିଲେ । ପ୍ରଥମ ଯଯାତି କେଶରୀଙ୍କ ଦ୍ୱାରା ନିର୍ମିତ ପାବଛ ଆଜି ବି ଭୂମି ତଳେ ପୋତି ହୋଇଛି ବୋଲି ସ୍ଥାନୀୟ ଲୋକେ ବିଶ୍ୱାସ କରନ୍ତି ।

## ଯାଜପୁର ସହରରେ ବୈତରଣୀ

*(Baitaranee at Jajapur town)*

ଆଖୁଆପଦା ନିକଟରେ ବୈତରଣୀ ଦୁଇଟି ଶାଖାରେ ବିଭକ୍ତ ହୋଇ ମୂଳ ଶାଖାଟି ବୈତରଣୀ ଭାବେ ଯାଜପୁର ସହର ଆଡ଼କୁ ବହିଯାଇଥିବାବେଳେ ଆଉ ଏକ ଶାଖା 'ବୁଢାନଦୀ' କୁଆଖିଆ

ଆଡ଼କୁ ଯାଇ ଖରସ୍ରୋତା ନଦୀରେ ମିଳିତ ହୋଇଛି ।

ଦଶାଶ୍ୱମେଧ ଘାଟର ଅପରପାର୍ଶ୍ୱ ବରାହନାଥ ଗ୍ରାମର ଉତ୍ତର ସୀମାରେ ପ୍ରବାହିତ ନଦୀକୁ ବୈତରଣୀ ବୋଲି କୁହାଯାଉଛି । କିନ୍ତୁ ବାସ୍ତବରେ ଏହା ବୈତରଣୀର ଶାଖା ନଦୀ ଗେଙ୍ଗୁଟି କହିଲେ ଠିକ୍ ହେବ । ଏହା ମୂଳ ବୈତରଣୀ (ବୁଢ଼ୀ ବୈତରଣୀ)ରୁ କୁଞ୍ଜବିହାରୀପୁରଶାସନର ପଶ୍ଚିମକୁ ଶଙ୍ଖାରିମୁହଁଠାରୁ ବାହାରିଥିଲା । ଏହି ସ୍ଥାନର ଉତ୍ତରରେ ବାଲିପୋଖରୀ ଓ ପଶ୍ଚିମରେ ମାଳଆନନ୍ଦପୁର ମୌଜା ଅବସ୍ଥିତ ।

ପ୍ରକୃତ ବୈତରଣୀ ଯାଜପୁର ସହରର ଉତ୍ତରରେ ଓ ଶ୍ରୀବରାହଙ୍କ ଦକ୍ଷିଣରେ ବାରଭାଗିଆ, କୁଶି, ବିଲେଶ୍ୱର, ଲାଲ୍‌ବାଗ, ପଣସା ଓ ବିନ୍ଧାଣ ନିକଟ ଦେଇ ସାହି ମସ୍‌ଜିଦ୍ ପାର୍ଶ୍ୱରେ ପ୍ରବାହିତ ହୋଇ ଦଶାଶ୍ୱମେଧ ଘାଟକୁ ଅତିକ୍ରମ କରିଥିଲା । ପରେ ପୂର୍ବ ଦିଗରେ ବରାହନାଥଠାରୁ ଅଳ୍ପଦୂରରେ ଏହାର ଶାଖା ନଦୀ ଗେଙ୍ଗୁଟି ସହିତ ମିଶିଥିଲା । ଆଉ କିଛି ଦୂର ଅତିକ୍ରମ କରିବା ପରେ ମୁଦ୍‌ଗଲେଶ୍ୱର ମୁହଁ ନିକଟରେ ତ୍ରିଜଟା ଓ ସିନ୍ଦୁରାଇ ମୁହଁ ନିକଟରେ ବେଗବତୀ ନଦୀ ସୃଷ୍ଟି ହୋଇଥିଲା । ଏହି ତ୍ରିଜଟାର ନାମ ଏବେ ଗେଙ୍ଗୁଟି ଏବଂ ବେଗବତୀର ନାମ ବେଙ୍ଗା ହୋଇଛି । ଏମାନେ ଯଥାକ୍ରମେ ଉତ୍ତର-ପୂର୍ବ ଓ ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇଥିଲେ । ଗେଙ୍ଗୁଟି ଏବେ ପ୍ରବାହିତ ହେଉଥିଲେ ମଧ୍ୟ ଲୁପ୍ତ ହେବାକୁ ବସିଥିବା ବେଙ୍ଗା ପୂର୍ବ ଯାଜପୁର ଅଞ୍ଚଳରେ ବିଭିନ୍ନ ନାମରେ ପରିଚିତ ହୋଇଛି ।

କାଳକ୍ରମେ ବୈତରଣୀର ଶାଖା ନଦୀ ଗେଙ୍ଗୁଟି ଅଧିକ ଗଭୀର ଓ ପ୍ରଶସ୍ତ ହୋଇ ଶଙ୍ଖରୀମୁହଁଠାରୁ ମୁଦ୍‌ଗଲେଶ୍ୱର ମୁହଁ ମଧ୍ୟରେ ବୈତରଣୀ ନାମରେ ନାମିତ ହୋଇଛି । ଅନ୍ୟ ପକ୍ଷରେ ମୂଳ ବୈତରଣୀର ଉଦ୍‌ଗମ ସ୍ଥାନ ପୋତି ହୋଇପଡ଼ିବା ସଙ୍ଗେସଙ୍ଗେ ଏହା ଏକ ଶାଖା ନଦୀ ଭଳି ମନେ ହେଉଛି । କେବଳ ବର୍ଷା ଦିନରେ ଅଧିକ ଜଳ ମୂଳ ବୈତରଣୀ ମଧ୍ୟରେ ପ୍ରବାହିତ ହୋଇଥାଏ ।

ଇଂରେଜ ଶାସନ ସମୟରେ ପାଟପୁର ଗ୍ରାମର ପୂର୍ବ ଦିଗରେ ଥିବା ମୁଣ୍ଡିମୁହଁ ନିକଟରେ ଗେଙ୍ଗୁଟି ସହିତ ଦଶାଶ୍ୱମେଧ ଘାଟକୁ ଏକ ନାଳ ଦ୍ୱାରା ସଂଯୁକ୍ତ କରାଯାଇଥିଲା । ଏହି ନାଳକୁ ଲୋକମାନେ ରାଧାଗୋବିନ୍ଦ ନାଳ କହନ୍ତି । ବର୍ତ୍ତମାନ ଏହି ରାଧାଗୋବିନ୍ଦ ନାଳଟି ବୈତରଣୀର ଏକ ଶାଖା ନଦୀ ଭାବେ ପ୍ରବାହିତ ହେଉଛି ଏବଂ ଦଶାଶ୍ୱମେଧ ଘାଟ ନିକଟରେ ବୈତରଣୀ ରୂପେ ପରିଚିତ ହେଉଛି ।

## ବୈତରଣୀ ମନ୍ଦିର

*(Baitarani temple)*

ପୁଣ୍ୟତୋୟା ବୈତରଣୀ ହେଉଛନ୍ତି ସ୍ୱର୍ଗର ଏକ ନଦୀ ଏବଂ ପର୍ବତରାଜା ଗୋନାସିକାଙ୍କ କନ୍ୟା ।

ଗୋନାସିକାଠାରେ ଦେବୀ ବୈତରଣୀଙ୍କ ମୂର୍ତ୍ତି ପୂଜା ପାଉଥିବାବେଳେ ବିରଜାକ୍ଷେତ୍ର ଯାଜପୁରର ଦଶାଶ୍ୱମେଧ ଘାଟ ନିକଟରେ ସପ୍ତମାତୃକା ମନ୍ଦିର ସନ୍ନିକଟ ଦେବୀ ବୈତରଣୀଙ୍କର ଏକ ସ୍ୱତନ୍ତ୍ର ମନ୍ଦିର ରହିଛି । ଏହି ମନ୍ଦିରରେ ଦେବୀ ବୈତରଣୀ ପୂଜା ପାଉଛନ୍ତି । ଏଠାରେ କଳାମୁଗୁନି ପଥରରେ ନିର୍ମିତ ଦେବୀ ବୈତରଣୀଙ୍କର ଏକ ପୂର୍ଣ୍ଣ ଅବୟବ ମୂର୍ତ୍ତି ରହିଛି । ଦେବୀ ବୈତରଣୀ ଚତୁର୍ଭୁଜା ଏବଂ ଗୋ-ମାତାରୂପୀ ବାହନ ଉପରେ ଉପବିଷ୍ଟ ହୋଇଛନ୍ତି । ଚାରିଗୋଟି ହାତ ମଧ୍ୟରୁ ଦେବୀ ଗୋଟିଏ ହାତରେ ତ୍ରିଶୂଳ ଧାରଣ କରିଥିବାବେଳେ ଅନ୍ୟ ଏକ ହାତରେ ଶଙ୍ଖ, ଅନ୍ୟ ଏକ ହାତରେ ପଦ୍ମ ଧାରଣ କରିଛନ୍ତି ।ବୈତରଣୀଙ୍କ ଗୋଟିଏ ହାତ ଶୂନ୍ୟ ଏବଂ ଅଭୟ ମୁଦ୍ରାରେ ଦେବୀ ଏହି ଶୂନ୍ୟ ହସ୍ତରେ ଭକ୍ତମାନଙ୍କୁ କେବଳ ଆଶିର୍ବାଦ ପ୍ରଦାନ କରିଥା'ନ୍ତି । ଓଡ଼ିଶାର ପ୍ରାଚୀନ ମୂର୍ତ୍ତିମାନଙ୍କ ମଧ୍ୟରୁ ଦେବୀ ବୈତରଣୀଙ୍କର ଏହି ମୂର୍ତ୍ତିଟି ଅନ୍ୟତମ । ଏହି ମୂର୍ତ୍ତିଟି ନବମ-ଦଶମ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି । ଭୌମକର ରାଜତ୍ୱ କାଳରେ ଏହି ମୂର୍ତ୍ତି ନିର୍ମିତ ହୋଇଥିବାର ଅନୁମାନ କରାଯାଉଛି । ବୈତରଣୀ ତୀର୍ଥରେ ବୈତରଣୀ ଠାକୁରାଣୀଙ୍କୁ ପ୍ରତ୍ୟେକ୍ଷ ଦେବୀ ଭାବେ ପୂଜା କରାଯାଇଥାଏ ବୋଲି ମନ୍ଦିରର ପୂଜକ ବ୍ରଜରାଜ ପତି ସୂଚନା ଦେଇଥିଲେ ।

**(ତଥ୍ୟ: ବ୍ରଜରାଜ ପତି, ବୈତରଣୀ ମନ୍ଦିର ପୂଜକ, ଯାଜପୁର)**

## ଜଗନ୍ନାଥ ମନ୍ଦିର

*(Jagannath temple)*



ଯାଜପୁରର ସହର ମଧ୍ୟରେ ବୈତରଣୀ ନଦୀ କୂଳ ଦଶାଶ୍ୱମେଧ ଘାଟରେ ଅବସ୍ଥିତ ଜଗନ୍ନାଥଙ୍କ ମନ୍ଦିର ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରୁ ଅନ୍ୟତମ । ଗଙ୍ଗବଂଶୀ ରାଜା ତୃତୀୟ ଅନଙ୍ଗଭୀମ ଦେବ (ଖ୍ରୀ·ଅ·୧୨୧୧-ଖ୍ରୀ·ଅ·୧୨୩୮)ଙ୍କ ସମୟରେ ଦଶାଶ୍ୱମେଧ ଘାଟରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଶୈଳୀରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠାଲାଭ କରିଥିଲା ବୋଲି ଐତିହାସିକ ମତବ୍ୟକ୍ତ କରନ୍ତି । ଆଉ କିଛି କୁହନ୍ତି ମରହଟ୍ଟା ଶାସନ କାଳରେ ଅଷ୍ଟାଦଶ ଶତାବ୍ଦୀରେ ଏହି ମନ୍ଦିର ନିର୍ମିତ ହୋଇଛି ।

ଉତ୍କଳରେ ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧି ଯୋଗୁଁ ବିଭିନ୍ନ ସ୍ଥାନରେ ମନ୍ଦିର ନିର୍ମାଣ କରାଗଲା । ପ୍ରସିଦ୍ଧ ବିରଜା କ୍ଷେତ୍ରରେ ମଧ୍ୟ ଶ୍ରୀମନ୍ଦିର ନିର୍ମାଣ କରାଗଲା । ଯାଜପୁରଠାରେ ନିର୍ମିତ ଜଗନ୍ନାଥ ମନ୍ଦିରର ନିର୍ମାଣ ନେଇ ସଠିକ୍ ଐତିହାସିକ ପ୍ରମାଣ ନଥିଲେ ମଧ୍ୟ ଅନେକ ପାରିପାର୍ଶ୍ୱିକ ଘଟଣାବଳୀରୁ ଏହା କେବେ ନିର୍ମିତ ହୋଇଥିଲା ବୋଲି ଅନୁମାନ କରାଯାଇପାରେ । ୧୫୧୧ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟ ଯାଜପୁର ବରାହନାଥ ମନ୍ଦିର ପରିଦର୍ଶନରେ ଆସିଲାବେଳକୁ ସେଠାରେ ଜଗନ୍ନାଥ ମନ୍ଦିର ନଥିଲା । ଚୈତନ୍ୟ ଭାଗବତ ଓ ଚୈତନ୍ୟ ଚରିତାମୃତ ପୁସ୍ତକ ଦ୍ୱୟରେ ବରାହ ଉପାସନା ଓ ବରାହନାଥଙ୍କ ମନ୍ଦିର ସଂପର୍କରେ ଯାହା ଉଲ୍ଲେଖ କରାଯାଇଛି ଅନୁରୂପ ଯାଜପୁରର ଜଗନ୍ନାଥ ମନ୍ଦିର ସଂପର୍କରେ କେଉଁଠି ଉଲ୍ଲେଖ ନାହିଁ । ଶ୍ରୀଚୈତନ୍ୟ ଯାଜପୁରର ବରାହଦେବଙ୍କୁ ଦର୍ଶନ କରି ତାଙ୍କ ସମ୍ମୁଖରେ ନୃତ୍ୟ ଗୀତ କରିଥିଲେ । ଯଦି ସେହି ସମୟରେ ଯାଜପୁରରେ ଶ୍ରୀଜଗନ୍ନାଥ ପୂଜିତ ହେଉଥା'ନ୍ତେ



ସପ୍ତମାତୃକା ମନ୍ଦିର ପରିସରରେ ଥିବା ପ୍ରାଚୀନ ମୂର୍ତ୍ତି





ସପ୍ତମାତୃକା ମନ୍ଦିର ପରିସରରେ ଥିବା ପ୍ରାଚୀନ ମୂର୍ତ୍ତି (ରାବଣ)

ତେବେ ତେବେ ଶ୍ରୀଚୈତନ୍ୟ ନିଶ୍ଚୟ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଭଜନ, କୀର୍ତ୍ତନ, ନୃତ୍ୟଗୀତ କରିଥା'ନ୍ତେ । ଏ ସଂପର୍କରେ ଏହି ଦୁଇ ପୁସ୍ତକରେ କିଛି ଉଲ୍ଲେଖ ରହିଥା'ନ୍ତା, ମାତ୍ର ପୁସ୍ତକଦ୍ୱୟରେ ବରାହ ଦେବତାଙ୍କ ସଂପର୍କରେ ଉଲ୍ଲେଖ ଥିବାବେଳେ ଜଗନ୍ନାଥଙ୍କ ସଂପର୍କରେ କିଛି ବି ସୂଚନା ନାହିଁ । ଏଣୁ ଏଥିରୁ ପ୍ରମାଣିତ ହୁଏ ଯେ, ଷୋଡ଼ଶ' ଖ୍ରୀଷ୍ଟାବ୍ଦ ପରେ ଅର୍ଥାତ୍ ଶ୍ରୀଚୈତନ୍ୟ ଦେବଙ୍କ ଯାଜପୁର ପରିଦର୍ଶନ ପରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ହୋଇଥାଇପାରେ ।

ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ, ମରହଟ୍ଟାଙ୍କ ଓଡ଼ିଶା ଅଧିକାର ପରେ ପ୍ରଥମ ରଘୁଜୀ ଭୋନ୍‌ସଲାଙ୍କ ଶାସନ କାଳ (ଖ୍ରୀ·ଅ·୧୭୫୧-ଖ୍ରୀ·ଅ·୧୭୬୫)ରେ ବୈତରଣୀ ନଦୀ କୂଳରେ ଗୋଟିଏ ନୂତନ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା ଏବଂ ସ୍ଥାନୀୟ ଷୋଳମପୁର ଦୁର୍ଗରେ ଲୁକ୍କାୟିତ ଭାବରେ ରଖାଯାଇଥିବା ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ଅଣାଯାଇ ଏହି ମନ୍ଦିରରେ ସ୍ଥାପନ କରାଯାଇଥିଲା । କଟକ ଜିଲ୍ଲା ଗେଜେଟିୟରରେ ମଧ୍ୟ ଏହି ତଥ୍ୟ ଉପସ୍ଥାପିତ ହୋଇଛି । *'On the bank of the sacred Baitaranee stand side by side a modern temple of Jagannath ereated in the time of Raghuji Bhonsla containing an image removed from the fort at Salampur and a much older temple of Kali of the usual Orissaic type' (District Gazetteer, Cuttack by O' malley, 1906, p-215)* । ସେହିଭଳି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ଯାଜପୁରରେ ସପ୍ତଦଶ କିମ୍ବା ଅଷ୍ଟାଦଶ ଶତାବ୍ଦୀରେ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଛି ବୋଲି ପ୍ରକାଶ କରିଛନ୍ତି ।

ଯାଜପୁରର ଜଗନ୍ନାଥ ମନ୍ଦିରଟି ଏକ ବିମାନ ମନ୍ଦିର ଏବଂ ଗୋଟିଏ ଜଗମୋହନକୁ ନେଇ ଗଠିତ । ବିମାନଟି ଏକ ପଞ୍ଚରଥ ପିଢ ଦେଉଳ ଏବଂ ଜଗମୋହନଟି ଏକ ରେଖ ଦେଉଳ । ଉଭୟ ବିମାନ ଓ ଜଗମୋହନରେ ଖୋଦିତ କାରୁକାର୍ଯ୍ୟ ଓ ଶିଳ୍ପକଳା ବେଶ୍ ଆକର୍ଷଣୀୟ । ମନ୍ଦିର ବେଢାରେ ଥିବା ସ୍ନାନମଣ୍ଡପ ତଳେ ଏବଂ ମନ୍ଦିର ପଛପଟେ ଅନେକ କାରୁକାର୍ଯ୍ୟମଣ୍ଡିତ ପଥରଖଣ୍ଡ ପଡ଼ିଛି । ଏଥିରୁ ଅନୁମାନ ହୁଏ, ବର୍ତ୍ତମାନର ମନ୍ଦିର ପୂର୍ବରୁ ନିଶ୍ଚୟ ଏକ ପ୍ରାଚୀନ ମନ୍ଦିର ଥିଲା ।

ଏହି ପୁରୁଣା ମନ୍ଦିରଟି କୌଣସି କାରଣରୁ ଭାଙ୍ଗିଯିବା ପରେ ମରହଟ୍ଟା ଶାସକ ପ୍ରଥମ ରଘୁଜୀ ଭୋନ୍‌ସଲା ଏହାର ପୁନର୍ନିର୍ମାଣ କରିଛନ୍ତି ।

ମନ୍ଦିରର ମୂଳଦୁଆ ଅଂଶକୁ ଲକ୍ଷ୍ୟ କଲେ ଏଠାରେ ଯେ, ଏକ ପ୍ରାଚୀନ ମନ୍ଦିର ଥିଲା ତାହା ସ୍ପଷ୍ଟ ଭାବେ ଜାଣିହୁଏ । ମନ୍ଦିରର ତିନି ପାର୍ଶ୍ୱରେ ଯଥାକ୍ରମେ ବରାହ, ନୃସିଂହ ଓ ବାମନ ମୂର୍ତ୍ତି ପାର୍ଶ୍ୱଦେବତା ଭାବେ ପୂଜା ପାଉଛନ୍ତି । ମନ୍ଦିରର ଜଗମୋହନରେ ଥିବା ମୂର୍ତ୍ତିଟିକୁ ଗଦାଧର ମୂର୍ତ୍ତି ବୋଲି କୁହାଯାଉଛି । ଜଗମୋହନରେ ଏକ ପୁରୁଣା ହନୁମାନଙ୍କ ବିଗ୍ରହ ରହିଛି । ଶ୍ରୀ ମନ୍ଦିର ବେଢାରେ ଏକ ଶିବ ମନ୍ଦିର ରହିଛି । ଏହା ମୁକ୍ତେଶ୍ୱର ନାମରେ ପରିଚିତ । ଶ୍ରୀମନ୍ଦିରର ସମ୍ମୁଖ ଭାଗରେ ସିଂହଦ୍ୱାରରେ ଗରୁଡ଼ ସ୍ତମ୍ଭ ରହିଛି । ଗରୁଡ଼ ସ୍ତଂଭର ଦକ୍ଷିଣ ଭାଗରେ ଲକ୍ଷ୍ମୀ ମନ୍ଦିର ରହିଛି । ମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା, ସୁଦର୍ଶନ ଚତୁର୍ଦ୍ଧା ମୂର୍ତ୍ତି ପୂଜା ପାଉଛନ୍ତି ।

[ ତଥ୍ୟ ସହାୟତା

-ଶ୍ରୀ ଜଗବନ୍ଧୁ ପାଢୀ, ବିରଜା କ୍ଷେତ୍ର, ସଂପାଦନା ଓ ପ୍ରକାଶକ: ଉତ୍କଳ ପାଠକ ସଂସଦ, କଟକ, ୧୯୯୬, ପୃଷ୍ଠା: ୩୦୧

*-The Jagannath Temples in Eastern India, By Kedar Nath Mohapatra, p-23*

*-District Gazetteer, Cuttack by O' malley, 1906, p-215*]

## ବରାହନାଥ ମନ୍ଦିର ଓ ଶ୍ରୀଚୈତନ୍ୟ ମଠ

*(Barahanatha and Shree Chaitanya temple on the island of river Baitaranee)*



ବରାହନାଥ ମନ୍ଦିର

ବିରଜା ଦେବୀଙ୍କ ଅବସ୍ଥିତି ଯୋଗୁଁ ଯାଜପୁରକୁ ଯେଭଳି **ବିରଜାକ୍ଷେତ୍ର** କୁହାଯାଏ, ଅନୁରୂପ ବରାହ ବିଷ୍ଣୁଙ୍କ ଅବସ୍ଥିତି ଯୋଗୁଁ ଏହା ମଧ୍ୟ **ବରାହ କ୍ଷେତ୍ର** ନାମରେ ପରିଚିତ ।

ଯାଜପୁର ଉପକଣ୍ଠରେ ପ୍ରବାହିତ ପୁଣ୍ୟତୋୟା ବୈତରଣୀ କୂଳରେ ରହିଛି ବରାହନାଥଙ୍କ ଏକ ପ୍ରାଚୀନ ମନ୍ଦିର । ଏହା ଯଜ୍ଞ ବରାହ ମନ୍ଦିର ନାମରେ ପରିଚିତ । ଏହି ସ୍ଥାନଟି ଦେଶର ଏକ ପ୍ରମୁଖ ବିଷ୍ଣୁ କ୍ଷେତ୍ର ଭାବେ ଜଣାଶୁଣା । ମନ୍ଦିର ଗର୍ଭ ଗୃହରେ ଶ୍ୱେତ ବରାହ, ଯଜ୍ଞ ବରାହ ଏବଂ ଲକ୍ଷ୍ମୀ ବରାହଙ୍କ ତ୍ରିମୂର୍ତ୍ତିଙ୍କୁ ସ୍ୱତନ୍ତ୍ର ଭାବେ ପୂଜାର୍ଚ୍ଚନା କରାଯାଇଥାଏ । ମନ୍ଦିରରେ ବର୍ତ୍ତମାନ ଶ୍ୱେତ ବରାହ ଓ ଯଜ୍ଞ ବରାହଙ୍କ ମୂର୍ତ୍ତି ପୂଜା ପାଉଥିବାବେଳେ ଲକ୍ଷ୍ମୀ ବରାହଙ୍କ ମୂର୍ତ୍ତି ଆଳି ରାଜ୍ୟ (ବର୍ତ୍ତମାନର କେନ୍ଦ୍ରାପଡ଼ା ଜିଲ୍ଲାର ଆଳି ବ୍ଲକ୍)କୁ



ବରାହନାଥ ମନ୍ଦିର ଭିତରର ଆକର୍ଷଣୀୟ ଚିତ୍ରକଳା



ବରାହନାଥ ମନ୍ଦିରରେ ପୂଜା ପାଉଥିବା ମୂର୍ତ୍ତି



ଚାଲିଯାଇଥିବାର କିମ୍ବଦନ୍ତୀ ରହିଛି । ଯାଜପୁର ହେଉଛି ସମଗ୍ର ଭାରତବର୍ଷରେ ଏକମାତ୍ର ସ୍ଥାନ ଯେଉଁଠି ବିଷ୍ଣୁ ବରାହ ରୂପରେ ପୂଜା ପାଇଥା'ନ୍ତି ।

ଶ୍ୱେତ ବରାହ ଏହି ମନ୍ଦିରର ମୁଖ୍ୟ ଦେବତା ଭାବେ ପୂଜା ପାଇଥା'ନ୍ତି । ଏହି ମନ୍ଦିରଟି ପୂର୍ବ ମୁଖା ଏବଂ କଳିଙ୍ଗ କଳାଶୈଳୀରେ ନିର୍ମିତ । ବୈତରଣୀ ଓ ଏହାର ଶାଖା ନଦୀ ଗେଙ୍ଗୁଟି ଦ୍ୱାରା ସୃଷ୍ଟି ହୋଇଥିବା ଏକ ଦ୍ୱୀପାଞ୍ଚଳରେ ବରାହପୁର ଗ୍ରାମଟିରେ ବରାହନାଥଙ୍କ ମନ୍ଦିର ରହିଛି । ବ୍ରହ୍ମା ବୈତରଣୀ ନଦୀ କୂଳରେ ଦଶାଶ୍ୱମେଧ ଘାଟରେ ଯଜ୍ଞ କରୁଥିବାବେଳେ ବ୍ରହ୍ମାଙ୍କ ଅନୁରୋଧ ରକ୍ଷା କରି ଯଜ୍ଞ କୁଣ୍ଡରୁ ଭଗବାନ ବିଷ୍ଣୁ ବରାହ ରୂପରେ ଆବିର୍ଭୂତ ହୋଇଥିଲେ ।

ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରେ କପିଳେନ୍ଦ୍ର ଦେବଙ୍କ ନାତି ଓ ପୁରୁଷୋତ୍ତମ ଦେବଙ୍କ ପୁତ୍ର ସୂର୍ଯ୍ୟବଂଶୀ ଗଜପତି ରାଜା ପ୍ରତାପରୁଦ୍ର ଦେବ (ଖ୍ରୀ·ଅ· ୧୪୯୭- ଖ୍ରୀ·ଅ· ୧୫୩୮)ଙ୍କ ଦ୍ୱାରା ଏହି ବରାହନାଥ ମନ୍ଦିର



ବରାହନାଥ ମନ୍ଦିରରେ ପୂଜା ପାଉଥିବା ମୂର୍ତ୍ତି



ଗରୁଡ଼ ମୂର୍ତ୍ତି

ନିର୍ମିତ ହୋଇଥିବାର ମାଦଳା ପାଞ୍ଜିରେ ଉଲ୍ଲେଖ ରହିଛି । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ପକ୍ଷରୁ ଏହି ପୁରାତନ ମନ୍ଦିର ଓ ତତ୍‌ସଂଲଗ୍ନ କୀର୍ତ୍ତିରାଜିଗୁଡିକୁ ସଂରକ୍ଷିତ ଘୋଷଣା କରାଯାଇଛି । ମନ୍ଦିର ସମ୍ମୁଖରେ ଗରୁଡ଼ ସ୍ତମ୍ଭ ରହିଛି । ଏହି ଗରୁଡ଼ ମୂର୍ତ୍ତିଟି ଗଠନ ଦୃଷ୍ଟିରୁ ଅତି କମନୀୟ ।

ବରାହନାଥଙ୍କ ମନ୍ଦିରରେ ବରାହନାଥଙ୍କ ମୂର୍ତ୍ତି ବ୍ୟତୀତ କିଛି ବୁଦ୍ଧ ଦେବଦେବୀଙ୍କ ମୂର୍ତ୍ତି ମନସା ଦେବୀ, ପ୍ରଜ୍ଞାପାରମିତା, ଶିବ-ପାର୍ବତୀଙ୍କ ବିବାହ ବେଳର ମୂର୍ତ୍ତି, ନରସିଂହ, ଗଙ୍ଗାମାତା, ଗିରିଧାରି ଗୋବର୍ଦ୍ଧନଙ୍କ ବ୍ୟତୀତ ମନ୍ଦିର କାନ୍ଥରେ ବହୁ ଯୌନ ଉଦ୍ଦୀପକ ପ୍ରସ୍ତର ମୂର୍ତ୍ତିମାନ ରହିଛି । ବରାହନାଥ ମନ୍ଦିରର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ହର-ଗୌରୀ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ପରିସରରେ ଚତୁର୍ବାହୁ ବିଶିଷ୍ଟ ଗଣେଷଙ୍କ ମୂର୍ତ୍ତି ଓ ବିଷ୍ଣୁଙ୍କ ମୂର୍ତ୍ତି ରହିଛି । ବରାହନାଥ ମନ୍ଦିରର ଦକ୍ଷିଣ ଭାଗରେ ଦେବୀ ବିମଳାଙ୍କର ଏକ ମନ୍ଦିର ରହିଛି । ଏହି ମନ୍ଦିରଟି ସୂର୍ଯ୍ୟବଂଶୀ ଗଜପତି ରାଜାଙ୍କ ଦ୍ୱାରା ନିର୍ମିତ ବୋଲି କୁହାଯାଏ ।

ବରାହନାଥଙ୍କ ମନ୍ଦିର ପରିସରରେ ଦକ୍ଷିଣ ଦିଗରେ ଖରାଖିଆ ବରାହଙ୍କର ଏକ ମନ୍ଦିର ଅବସ୍ଥିତ । ଏହି ମନ୍ଦିରଟି ଉତ୍ତରମୁଖା ଏବଂ ଏଥିରେ ତିନୋଟି ବରାହଙ୍କ ମୂର୍ତ୍ତି ପୂଜା ପାଉଛନ୍ତି । ବରାହନାଥଙ୍କ ମନ୍ଦିର ପରିସରରେ ମୁଖ୍ୟ ମନ୍ଦିରର ଦକ୍ଷିଣ ଭାଗକୁ ଏକ ଶିବ ମନ୍ଦିର ରହିଛି । ଏହାର ନାମ ମୁକ୍ତେଶ୍ୱର ଶିବ ମନ୍ଦିର । ଏହାବ୍ୟତୀତ ବରାହନାଥ ମନ୍ଦିର ପରିସରରେ ଆହୁରି ଅନେକ ଛୋଟବଡ଼ ମନ୍ଦିର ଓ ଦେବପୀଠ ରହିଛି । ବରାହନାଥଙ୍କ ମନ୍ଦିର ପରିସରରେ ଗଦାଧର ବିଷ୍ଣୁଙ୍କର ଏକ ମନ୍ଦିର ରହିଛି । ମନ୍ଦିର ପରିସରରେ ଏକ ସୂର୍ଯ୍ୟ ମନ୍ଦିର ଅଛି । ଚାମୁଣ୍ଡାଙ୍କର ଏକ ମନ୍ଦିର ମଧ୍ୟ ବରାହନାଥ ମନ୍ଦିର ପରିସରରେ ରହିଛି ।



ଶ୍ରୀଚୈତନ୍ୟଙ୍କ ପଦଚିହ୍ନ

ବରାହନାଥଙ୍କ ମନ୍ଦିର ନିକଟରେ ଶ୍ରୀଚୈତନ୍ୟଙ୍କ ପଦ୍ମପାଦ ଅଙ୍କିତ ଏକ କ୍ଷୁଦ୍ର ମନ୍ଦିର ରହିଛି । ଏହି ମନ୍ଦିର ମଧ୍ୟରେ ଶ୍ରୀଚୈତନ୍ୟଙ୍କ ପବିତ୍ର ପାଦ ଚିହ୍ନ ରହିଛି । ହିନ୍ଦୁ ସନ୍ଥ ଶ୍ରୀଚୈତନ୍ୟ ମହାପ୍ରଭୁ (ଖ୍ରୀ·ଅ· ୧୪୮୬- ଖ୍ରୀ·ଅ· ୧୫୩୪) ୧୫୧୦ ମସିହାରେ ଏହି ସ୍ଥାନକୁ ଆସିଥିଲେ । ତାଙ୍କ

ଉଦ୍ୟମରେ ଏଠାରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ଲାଭ କରିପାରିଥିଲା । ବରାହନାଥ ମନ୍ଦିରର ଗର୍ଭଗୃହ ଭିତର ଛାତରେ ନିର୍ମିତ ହୋଇଥିବା ଆକର୍ଷଣୀୟ ଖୋଦେଇ ଚିତ୍ରକଳା ଓ ଭାସ୍କର୍ଯ୍ୟ ପ୍ରାଚୀନ ଓଡ଼ିଆ ଶିଳ୍ପକଳା ଚାତୁରୀର ପ୍ରମାଣ ବହନ କରିଥାଏ ।

ପ୍ରତିବର୍ଷ ବକୁଳ ଅମାବାସ୍ୟା ତିଥିରେ ବୈତରଣୀ ନଦୀ କୂଳରେ ବରାହନାଥଙ୍କ ଉତ୍ସବ ପାଳିତ ହୋଇଥାଏ । ବକୁଳ ଅମାବାସ୍ୟା ହେଉଛି ଯଜ୍ଞ ବରାହଙ୍କ ଜନ୍ମଦିନ । ଭାରତବର୍ଷରେ ଯାଜପୁରକୁ ଛାଡ଼ିଲେ ଅନ୍ୟ କୌଣସି ସ୍ଥାନରେ ବକୁଳ ଅମାବାସ୍ୟା ଦିନ ବରାହଙ୍କୁ ପୂଜା କରାଯାଇ ନଥାଏ । ଗୁପ୍ତ ବଂଶୀୟ ସମ୍ରାଟମାନେ ଶ୍ୱେତବରାହଙ୍କ ପୂଜକ ଥିଲେ ଏବଂ ସେମାନଙ୍କ ଶାସନକାଳଠାରୁ ଯାଜପୁରରେ ବରାହ ଉପାସନା ଚାଲି ଆସିଛି ବୋଲି ଅନୁମାନ କରାଯାଏ ।

[ତଥ୍ୟ ଉତ୍ସ

୧. ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'-୧୯୭୩, ପୃଷ୍ଠା-୨୫, ୨୬ ଓ ୫୧ ।

୨. ମାଦଳା ପାଞ୍ଜି, ପ୍ରକାଶକ: ପ୍ରାଚୀ ସମିତି, ୧୯୪୦, ପୃଷ୍ଠା-୫୨

୩. ଡ. ଏକାଦଶୀ ପାଢ଼ୀ, ଯୁଗେ ଯୁଗେ ଯାଜପୁର, ପ୍ରକାଶକ: ଚିତ୍ରୋତ୍ପଳା ପବ୍ଲିକେଶନ୍ସ, ବଟେଶ୍ୱର, ସାଲେପୁର, ୨୦୦୨, ପୃଷ୍ଠା: ୧୩୨, ୧୩୩, ୧୩୫]

## ସ୍ୱର୍ଗଦ୍ୱାର ଓ ବାରୁଣୀ ପଡ଼ିଆ

*(the holy cremation ground)*

ବରାହନାଥଙ୍କ ପୀଠ ନିକଟରେ ବୈତରଣୀ କୂଳରେ ଦଶାଶ୍ୱମେଧ ଘାଟର ଅପରପାର୍ଶ୍ୱରେ ବାରୁଣୀ ପଡ଼ିଆ ଏବଂ ସ୍ୱର୍ଗଦ୍ୱାର (ମହାଶ୍ମଶାନ) ରହିଛି । ବରାହ ମନ୍ଦିର ସଂଲଗ୍ନ ବାରୁଣୀ ପଡ଼ିଆରେ ସୁପ୍ରସିଦ୍ଧ ବାରୁଣୀ ଯାତ୍ରା ପ୍ରତିବର୍ଷ ଅନୁଷ୍ଠିତ ହୋଇଥାଏ । ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ଏଠାରେ ଏହି ସ୍ୱର୍ଗଦ୍ୱାର ପ୍ରତିଷ୍ଠିତ ହୋଇଥିଲା । ଏହି ସ୍ୱର୍ଗଦ୍ୱାରରେ ଆଜିଯାଏଁ ଯାଜପୁର ଜିଲ୍ଲାର ବହୁ





ସ୍ୱର୍ଗଦ୍ୱାର ଓ ବାରୁଣୀ ପଡ଼ିଆ

ପ୍ରଖ୍ୟାତ ବ୍ୟକ୍ତିଙ୍କର ଶବଦାହ ହେବା ସହିତ ସମାଧି ପ୍ରତିଷ୍ଠା ହୋଇପାରିଛି । ବିଶିଷ୍ଟ କବି କୃଷ୍ଣ ପ୍ରସାଦ ବସୁ, ଗାନ୍ଧୀବାଦି ବିରୁପାକ୍ଷ କର, ଚିତ୍ରଶିଳ୍ପୀ ଧନେଶ୍ୱର ମହାରଣା, ବିଶିଷ୍ଟ ଶିକ୍ଷାବିତ୍ ବୈଷ୍ଣବ ଦତ୍ତ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୁରୁ ଚରଣ ନାୟକ ପ୍ରମୁଖଙ୍କ ସମାଧି ଏଠାରେ ପ୍ରତିଷ୍ଠିତ ହୋଇପାରିଛି । ଏବେ ଏହି ମହାଶ୍ମଶାନରେ ବିଜୁଳିଚୁଲା ପ୍ରତିଷ୍ଠା କରାଯାଇ ଖୁବ୍ ସହଜରେ ଶବଦାହ କରାଯାଇପାରୁଛି ।

## ପ୍ରାଚୀନ ସିଦ୍ଧେଶ୍ୱର (ସିଦ୍ଧନାଥ) ମନ୍ଦିର ଓ ସିଦ୍ଧନାଥ ନଦୀ ଘାଟ

*(Sidheswar temple)*

ଯାଜପୁର ସହରଠାରୁ ମାତ୍ର ପାଞ୍ଚ କିଲୋମିଟର ଦୂରରେ ଦଶରଥପୁର ବ୍ଲକ୍ ଶ୍ରୀବତ୍ସପୁର ଗାଁରେ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ପ୍ରାଚୀନ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରୁ ଏହା ଏକ ପ୍ରମୁଖ ମନ୍ଦିର ଅଟେ । ଏହା ଏକ ହରିହର ପୀଠ ଭାବେ ପରିଚିତ । ମାତ୍ର କିଛି ଗବେଷକ ଏହାକୁ ଏକ ବୌଦ୍ଧକ୍ଷେତ୍ର ଭାବେ ଉପସ୍ଥାପନ କରନ୍ତି ।





ସିଦ୍ଧେଶ୍ୱର ମନ୍ଦିରରେ ଥିବା ପ୍ରାଚୀନ ବିରଳ ମୂର୍ତ୍ତି

ଏହି ମନ୍ଦିରର ଗଠନ ଶୈଳୀ ଓ ଏଠାରୁ ମିଳିଥିବା ପ୍ରାଚୀନ ମୂର୍ତ୍ତିମାନଙ୍କୁ ଲକ୍ଷ୍ୟ କଲେ ଏହା ନିଶ୍ଚୟ ଏକ ବୌଦ୍ଧ ପୀଠ ଥିବାର ମନେ ହୋଇଥାଏ । ଏଠାରେ ଥିବା ବୁଦ୍ଧ ଓ ଅନ୍ୟାନ୍ୟ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ସମେତ ବହୁ ସଂଖ୍ୟାରେ ବୁଦ୍ଧସ୍ତୁପକୁ ଦେଖି ଏହାକୁ ଏକ ବୌଦ୍ଧ କ୍ଷେତ୍ର ବୋଲି ଅନେକ କହିଥାନ୍ତି । ସିଦ୍ଧେଶ୍ୱରଙ୍କ ପୀଠରେ ଅନେକ ବୌଦ୍ଧ ମୂର୍ତ୍ତି ମିଳିଥିବାରୁ ଏହା ଭୌମକର ସମୟର ବୋଲି ଅନୁମାନ କରାଯାଉଛି । ପୂର୍ବରୁ କୁହାଯାଇଛି ଭୌମକରମାନେ ବୌଦ୍ଧ ଧର୍ମାବଲମ୍ବୀ



ସିଦ୍ଧେଶ୍ୱର ମନ୍ଦିରରେ ଥିବା ପ୍ରାଚୀନ ବିରଳ ମୂର୍ତ୍ତି

ଥିଲେ । ଏଣୁ ଭୌମକର ସମୟରେ ଏଠାରେ ବୌଦ୍ଧ ମନ୍ଦିର ଓ ମୂର୍ତ୍ତି ନିର୍ମାଣ ସମ୍ଭବ ହୋଇଥାଇପାରେ ବୋଲି କୁହାଯାଇପାରେ ।

ଯାଜପୁରର ସିଦ୍ଧେଶ୍ୱର ମନ୍ଦିରରୁ ଗଙ୍ଗବଂଶୀ ରାଜା ଚତୁର୍ଥ ନରସିଂହ ଦେବ (ଖ୍ରୀ·ଅ·୧୩୭୮-ଖ୍ରୀ·ଅ·୧୪୧୪)ଙ୍କ ଅମଳର ପ୍ରାଚୀନ ଓଡ଼ିଆ ଲିପିରେ ଗୋଟିଏ ଶିଳାଲେଖ ମିଳିଛି । ଏହାବ୍ୟତୀତ ଏଠାରୁ ଗଙ୍ଗବଂଶୀୟ ଅନ୍ୟ କୌଣସି ଅଭିଲେଖ ମିଳିନାହିଁ । ଏଠାରୁ ମିଳିଥିବା ଅଭିଲେଖକୁ ଭିତ୍ତିକରି ସିଦ୍ଧେଶ୍ୱର ମନ୍ଦିର ଚତୁର୍ଥ ନରସିଂହ ଦେବ (ଖ୍ରୀ·ଅ·୧୩୭୮-ଖ୍ରୀ·ଅ·୧୪୧୪)ଙ୍କ ଦ୍ୱାରା ନିର୍ମିତ ହୋଇଛି ବୋଲି ବିଶ୍ୱାସ କରାଯାଏ । ଏଠାରେ ଏକ ଶିବ ମନ୍ଦିର ନିର୍ମାଣ କରାଯାଇଥିଲା । ରାଜା ଚତୁର୍ଥ ନରସିଂହ ଦେବଙ୍କ ମନ୍ତ୍ରୀଙ୍କ ନାମ ସିଦ୍ଧେଶ୍ୱର ଜେନାଙ୍କ ନାମାନୁସାରେ ଏହି ସ୍ଥାନର ନାମ ସିଦ୍ଧେଶ୍ୱରପୁର ରଖାଯାଇଥିଲା ଏବଂ ପରବର୍ତ୍ତୀ ସମୟରେ ମହାଦେବଙ୍କ ନାମ ମଧ୍ୟ ସିଦ୍ଧନାଥ ରଖାଯାଇଥିଲା ବୋଲି କୁହାଯାଏ ।

ସବୁଠୁ ବଡ଼ କଥା ହେଉଛି, ଏହି ମନ୍ଦିରରେ ପୂଜା ପାଉଥିବା ଲିଙ୍ଗଟି ଉଭୟ ହରି ଓ ହର ଭାବେ ପୂଜା ପାଇଥା'ନ୍ତି । ଏହି ଲିଙ୍ଗର ଗୋଟିଏ ପାଖରେ ଶିବ ଓ ଅନ୍ୟ ପାଖରେ ନାରାୟଣଙ୍କ ପୂଜାର୍ଚ୍ଚନା କରାଯାଇଥାଏ । ଗୋଟିଏ ଲିଙ୍ଗରେ ଉଭୟ ଠାକୁର ପୂଜା ପାଉଥିବାରୁ ଗୋଟିଏ ପଟେ ଶିବଙ୍କୁ ବେଲପତ୍ର ଚଢାଯାଉଥିବାବେଳେ ଲିଙ୍ଗର ଅନ୍ୟପାଖରେ ହରିଙ୍କ ଉଦ୍ଦେଶ୍ୟରେ ତୁଳସୀ ଚଢାଯାଇଥାଏ ।







ସିଦ୍ଧେଶ୍ୱର ମନ୍ଦିର ବେଢ଼ାର ଚାରିପଟେ ଗୋଟିଏ ଅତି ପ୍ରାଚୀନ ମନ୍ଦିରର କାରୁକଳା ଖଚିତ ସ୍ଥାପତ୍ୟାଂଶମାନ ଦେଖିବାକୁ ମିଳିଥାଏ । ଏଗୁଡ଼ିକର ଆକୃତି, ପ୍ରକୃତି ଓ ଶୈଳୀରୁ ଜଣାଯାଏ, ଏହା ଭୌମକର ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । ଭୌମକର ଯୁଗରେ ଓଡ଼ିଶାରେ ବୌଦ୍ଧ ଧର୍ମ ପ୍ରାଧାନ୍ୟଲାଭ କରିଥିଲା । ଏଣୁ ଯାଜପୁରରୁ ମିଳୁଥିବା ଅଧିକାଂଶ ବୌଦ୍ଧ କୀର୍ତ୍ତିରାଜି ଭୌମକର ଯୁଗର ବୋଲି ବିଚାର କରାଯାଇଥାଏ । ଅପରପକ୍ଷେ, ସିଦ୍ଧେଶ୍ୱର ମନ୍ଦିରର ପ୍ରାଚୀନ ବୌଦ୍ଧ ମୂର୍ତ୍ତି ଓ କୀର୍ତ୍ତିରାଜିମାନଙ୍କରୁ ଏହି ମନ୍ଦିର ଓ ଭାସ୍କର୍ଯ୍ୟକଳା ନବମ-ଦଶମ ଶତାବ୍ଦୀର ହୋଇଥାଇପାରେ ବୋଲି ଅନୁମାନ କରାଯାଏ । ଏମିତି ବି ହୋଇପାରେ, ନବମ-ଦଶମ ଶତାବ୍ଦୀରେ ଭୌମମାନଙ୍କ ଦ୍ୱାରା ନିର୍ମିତ ଏହି ପ୍ରାଚୀନ ମନ୍ଦିର ଧ୍ୱଂସ ପାଇଯିବା ପରେ ଗଙ୍ଗବଂଶୀ ରାଜା ଚତୁର୍ଥ ନରସିଂହ ଦେବ (ଖ୍ରୀ·ଅ·୧୩୭୮-ଖ୍ରୀ·ଅ·୧୪୧୪) ଏହାକୁ ପୁନର୍ନିର୍ମିତ କରିଥିବେ ।

ସିଦ୍ଧେଶ୍ୱର ମନ୍ଦିରଟିର ଉଚ୍ଚତା ୮୦ ଫୁଟ । ଏଠାରେ ହରି ଓ ହର ସିଦ୍ଧେଶ୍ୱର ଭାବେ ପୂଜିତ ହୋଇଥା'ନ୍ତି । ସିଦ୍ଧେଶ୍ୱରଙ୍କ ବ୍ୟତୀତ ଏହି ମନ୍ଦିରରେ ଅନେକ ଦେବଦେବୀଙ୍କ ମୂର୍ତ୍ତି ରହିଛି । ଏଠାରେ ଦ୍ୱିଭୂଜ ଗଣେଷଙ୍କ ଏକ ବିଶାଳ ବିଗ୍ରହ ରହିଛି । ମନ୍ଦିର ବେଢ଼ା ଭିତରେ ନାଗମୂର୍ତ୍ତି, ନବଗ୍ରହ, ନଟରାଜ, କାଳ ଭୈରବ, ଉମା ମହେଶ୍ୱର, ଦ୍ୱାରପାଳ, ଅଷ୍ଟଭୂଜ ଭୈରବଙ୍କ ବିଗ୍ରହ ରହିଛି । ଏହା ବ୍ୟତୀତ ଏଠାରେ ଏକ ଭଗ୍ନ ମନ୍ଦିରର ଅବଶେଷ ଦେଖିବାକୁ ମିଳିଥାଏ । ଏହାକୁ



ଉତ୍ତରମୁଖୀ ବୈତରଣୀ କୂଳରେ ଲେଖକ

ସ୍ଥାନୀୟ ଲୋକେ ସିଦ୍ଧନାଥ ମହାଦେବ ବୋଲି କହିଥାନ୍ତି । ଅନ୍ୟପକ୍ଷରେ 'ସିଦ୍ଧ' ଓ 'ନାଥ' ଏହି ଦୁଇଟି ଶବ୍ଦ ବୌଦ୍ଧ ଧର୍ମ ସହିତ ଜଡ଼ିତ ଥିବାରୁ ଏହା ଏକ ବୌଦ୍ଧ ପୀଠ ଥିଲାବୋଲି ଅନୁମାନ କରାଯାଏ ।

ସାଧାରଣତଃ ପ୍ରତ୍ୟକ ମନ୍ଦିର ପୂର୍ବମୁଖା ହୋଇଥିବାବେଳେ ଏହି ମନ୍ଦିରଟି ଉତ୍ତରମୁଖା ବୋଲି ମନ୍ଦିରର ପୂଜକ ରଘୁନାଥ ଦୀକ୍ଷିତ୍ ଆମକୁ ସୂଚନା ଦେଇଥିଲେ । ମନ୍ଦିରଟି ବୈତରଣୀ ନଦୀ କୂଳରେ ଅବସ୍ଥିତ ଏବଂ ଏହାର ଅପରପାର୍ଶ୍ୱରେ ରହିଛି ଭଦ୍ରକ ଜିଲ୍ଲା । ପୁଣ୍ୟତୋୟା ବୈତରଣୀ ଏହି ମନ୍ଦିର ବେଢାକୁ ଲାଗି ପଶ୍ଚିମରୁ ବହିଆସି ଉତ୍ତରକୁ ଏବଂ ପରେ ପୁନର୍ବାର ପୂର୍ବ ଦିଗକୁ ପ୍ରବାହିତ ହୋଇଛି । ସେଥିପାଇଁ ସିଦ୍ଧେଶ୍ୱର ପୀଠକୁ 'ଉତ୍ତରବାହିନୀ ତୀର୍ଥ' ବୋଲି କୁହାଯାଇଥାଏ ।

ମନ୍ଦିର ନିକଟସ୍ଥ ବୈତରଣୀ ନଦୀର ପଶ୍ଚିମ ଦିଗରେ ଏକ ଗଭୀର ଗଣ୍ଡ ରହିଛି । ଏହି ଗଣ୍ଡଟି କେତେ ଗଭୀର ତାହା ଆଜି ପର୍ଯ୍ୟନ୍ତ ଆକଳନ କରାଯାଇପାରିନାହିଁ । ଏହି ଗଣ୍ଡଟି ଅନେକ ଜୀବନ ନେଇଛି ବୋଲି ମନ୍ଦିରର ପୂଜକ ଶ୍ରୀ ଦୀକ୍ଷିତ୍ ସୂଚନା ଦେଇଥିଲେ । ଏହି ଗଣ୍ଡଟି 'ପ୍ରଦ୍ୟୁମ୍ନ ଗଣ୍ଡ' ନାମରେ ପରିଚିତ । ଏଠାରେ ରୁକ୍ମିଣୀଙ୍କ ପୁତ୍ର ପ୍ରଦ୍ୟୁମ୍ନ ତପସ୍ୟା କରୁଥିଲେ ଏବଂ ତପସ୍ୟା କରୁଥିବା ପଥର ଉପରେ ତାଙ୍କର ପାଦ ଓ ଆଣ୍ଠୁର ଚିହ୍ନ ଥିବାରୁ ଗଣ୍ଡଟିର ନାମ 'ପ୍ରଦ୍ୟୁମ୍ନ ଗଣ୍ଡ' ହୋଇଛି ବୋଲି ବିଶ୍ୱାସ କରାଯାଏ ।

ବନ୍ୟା ସମୟରେ ଏହି ମନ୍ଦିରଟି ସଂପୂର୍ଣ୍ଣ ଜଳମଗ୍ନ ହୋଇଯାଇଥାଏ ଏବଂ ଡଙ୍ଗାରେ ପାର ହୋଇ ଏଠାକୁ ପୂଜା କରିବାକୁ ଆସିବାକୁ ପଡିଥାଏ ବୋଲି କହନ୍ତି ପୂଜକ ରଘୁନାଥ । ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ, ଅଶୋକାଷ୍ଟମୀ, କାର୍ତ୍ତୀକ ପୂର୍ଣ୍ଣମୀ, ରାମନବମୀ ମହାସମାରୋହରେ ପାଳିତ ହୋଇଥାଏ । ବୈଶାଖ ମାସରେ ଏଠାରେ ଠାକୁରଙ୍କୁ ଜଳଛାୟା କରାଯାଇଥାଏ । ସନ୍ଧ୍ୟାରେ ଏହି ଜଳ ନିଷ୍କାସନ କରାଯାଇ ଠାକୁରଙ୍କ ଦର୍ଶନ ମିଳିଥାଏ । ମନ୍ଦିରଟି ବୈତରଣୀ କୂଳରେ ଅବସ୍ଥିତ ହୋଇଥିବାରୁ ବର୍ଷା ଦିନେ ଏହା ବୁଡ଼ିଯାଇଥାଏ । ବର୍ଷା ଚାରିମାସ ଠାକୁର ମନ୍ଦିର ପରିବର୍ତ୍ତେ ଉଚ୍ଚ ସ୍ଥାନରେ ଥିବା ରୋଷଘରେ ପୂଜା ପାଇଥା'ନ୍ତି । ଶାରଦୀୟ ଦୁର୍ଗାପୂଜା ସମୟରେ ବେଢା ମଧ୍ୟରେ ଥିବା ସିଦ୍ଧେଶ୍ୱରୀ ମନ୍ଦିରରେ ନବରାତ୍ର ପର୍ବ ପାଳନ କରାଯାଇଥାଏ । ବେଢାର ଦକ୍ଷିଣରେ ଥିବା ସାବିତ୍ରୀ ଦେବୀଙ୍କ ମନ୍ଦିରରେ ସାବିତ୍ରୀ ଅମାବାସ୍ୟାରେ ଦେବୀ ସାବିତ୍ରୀଙ୍କ ପୂଜା ଅନୁଷ୍ଠିତ ହୋଇଥାଏ ।

ସିଦ୍ଧନାଥଙ୍କ ଦକ୍ଷିଣ-ପଶ୍ଚିମ ଭାଗରେ ଏକ ଅମୁହାଁ କ୍ଷୁଦ୍ର ମନ୍ଦିରଟିଏ ରହିଛି । ଏହି ମନ୍ଦିରଟି ଚଳମାନ ବୋଲି ସ୍ଥାନୀୟ ଲୋକେ ବିଶ୍ୱାସ କରନ୍ତି । ଯେଉଁଦିନ ଏହି ମନ୍ଦିରଟି ସିଦ୍ଧନାଥ ମନ୍ଦିରକୁ ସ୍ପର୍ଶ କରିବ ସେହିଦିନ କଳିଯୁଗର ଅନ୍ତ ଘଟିବ ବୋଲି ପୂଜକ ଶ୍ରୀ ଦୀକ୍ଷିତ୍ ସୂଚନା ଦେଇଥିଲେ ।

ରାଜ୍ୟ ଏବଂ ରାଜ୍ୟ ବାହାରୁ ବହୁ ସଂଖ୍ୟାରେ ଶ୍ରଦ୍ଧାଳୁମାନେ ପିତୃପୁରୁଷଙ୍କ ଅସ୍ଥିଶଲ୍ୟ ବିସର୍ଜନ ନିମନ୍ତେ ଏହି ସିଦ୍ଧେଶ୍ୱର ପୀଠକୁ ଆସିଥା'ନ୍ତି । ଏଠାରେ ବୈତରଣୀ ଘାଟରେ ପିତୃପୁରୁଷଙ୍କ ଅସ୍ଥିଶଲ୍ୟ

ବିସର୍ଜନ କଲେ ଆତ୍ମାର ସ୍ୱର୍ଗପ୍ରାପ୍ତ ହୋଇଥାଏ ବୋଲି ବିଶ୍ୱାସ ରହିଛି । ମନ୍ଦିର ବେଢା ମଧ୍ୟରେ ଶତାଧିକ ଲିଙ୍ଗ ମାଟି ତଳେ ପୋତି ହୋଇ ରହିଛି । ଏଗୁଡିକ ବୁଦ୍ଧସ୍ତୁପ ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି ।

ସିଦ୍ଧେଶ୍ୱର ମନ୍ଦିର ନିକଟରେ ରହିଛି ଏକ ବହୁ ପ୍ରାଚୀନ ନଦୀ ଘାଟ । ଏହି ଘାଟଟି ଯାଜପୁର ଜିଲ୍ଲା ସହିତ ଭଦ୍ରକ ଜିଲ୍ଲାକୁ ସଂଯୋଗ କରିଥାଏ । ଯାଜପୁର ଜିଲ୍ଲାର ଯାଜପୁର, ବିଞ୍ଝାରପୁର ଓ ଦଶରଥପୁର ବ୍ଲକ୍‌ର ଲୋକେ ଏହି ନଦୀ ଘାଟ ମାଧ୍ୟମରେ ଭଦ୍ରକ ଜିଲ୍ଲାର ଧାମ୍‌ନଗର ଓ ଭଣ୍ଡାରୀପୋଖରୀ ବ୍ଲକ୍ ସହିତ ଯୋଗାଯୋଗ ରକ୍ଷା କରିଥା'ନ୍ତି । ଉଭୟ ଜିଲ୍ଲାର ଲୋକଙ୍କୁ ଏକସୂତ୍ରରେ ବାନ୍ଧି ରଖିବାରେ ଏହି ଡଙ୍ଗା ଘାଟଟି କାହିଁ କେଉଁ ଅନାଦି କାଳରୁ ନିଜର କର୍ତ୍ତବ୍ୟ ତୁଲେଇ ଆସିଛି । ରାତି ପାହିଲେ ଭଦ୍ରକ ଜିଲ୍ଲାର ଦିହୁଡି-ଆନନ୍ଦପୁର, ଦାଣ୍ଡକୁଳ, ପୋଲାପାରି ଗାଁର ଲୋକେ ଯାଜପୁର ସହରକୁ ଆସିଥାନ୍ତି ଏବଂ ଶ୍ରୀବସ୍ତପୁର, ଯାଜପୁର ସହରର ଲୋକେ ଏହି ଡଙ୍ଗା ଘାଟ ପାର ହୋଇ ସେପଟକୁ ଯାଇଥା'ନ୍ତି । ସିଦ୍ଧନାଥ ମନ୍ଦିର ଓ ନଦୀ ଘାଟକୁ ଲାଗିକରି ରହିଛି ଏକ ମହାଶ୍ମଶାନ । ଏଠାରେ ସ୍ଥାନୀୟ ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ସମାଧି ପ୍ରତିଷ୍ଠିତ ହୋଇଛି । ଖୁବ୍ ଶାନ୍ତଶୀତଳ ପରିବେଶ ଓ ନଦୀକୂଳ ସିଦ୍ଧନାଥ ମନ୍ଦିରକୁ ଭକ୍ତ ଓ ଦର୍ଶକମାନଙ୍କୁ ଟାଣି ଆଣିଥାଏ ।

[ 'ତଥ୍ୟ ଉତ୍ସ

୧. ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, 'ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର', ବିରଜା ବକ୍ତୃତାମାଳା-୧, ନରସିଂହ ଚଉଧୁରୀ ମହାବିଦ୍ୟାଳୟର ମୁଖପତ୍ର 'ଜିଜ୍ଞାସା'-୧୯୭୩, ପୃଷ୍ଠା-୨୫ ଓ ୨୬

2. *Epigraphia Indica, Vol. XXIX, pp 1055-ff*

୩. ରଘୁନାଥ ଦୀକ୍ଷିତ, ସିଦ୍ଧେଶ୍ୱର ମନ୍ଦିରର ପୂଜକ ]

## ନିମ୍ନ ବୈତରଣୀ ଅବବାହିକାର କିଛି ପ୍ରତ୍ନତାତ୍ତ୍ୱିକ ବିଭବ

*(Archeological monuments of lower Baitaranee basin area)*

ନିମ୍ନ ବୈତରଣୀ ଅବବାହିକା କହିଲେ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡରୁ ଆରମ୍ଭ କରି ଯାଜପୁର ଓ ଭଦ୍ରକ ଜିଲ୍ଲାର ଅଧିକାଂଶ ଅଞ୍ଚଳକୁ ବୁଝାଯାଇଥାଏ । କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡର ପ୍ରତ୍ନତାତ୍ତ୍ୱିକ ବିଭବ ସଂପର୍କରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ଏଠାକାର ବୌଦ୍ଧ ଓ ଜୈନ ସଂସ୍କୃତିର ପ୍ରାଚୀନତା ନେଇ ଅନେକ ପ୍ରମାଣ ଏବେବି ଦେଖିବାକୁ ମିଳିଥାଏ । ସେହିଭଳି ଯାଜପୁର ଓ ଭଦ୍ରକ ଜିଲ୍ଲାରେ ବୈତରଣୀ ଅବବାହିକାରେ ମଧ୍ୟ ଅନେକ ପ୍ରାଚୀନ ଐତିହ୍ୟସ୍ଥଳ ରହିଛି ।

ବିଶ୍ୱପ୍ରସିଦ୍ଧ ହୀରକ ତ୍ରିଭୁଜ ରତ୍ନଗିରି-ଉଦୟଗିରି-ଲଳିତଗିରି, ଲାଙ୍ଗୁଡ଼ି, ରାଧାନଗର ଏବଂ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ସୀତାବିଞ୍ଜି, ଅସନପାଟ, ଧଳେଇପାଟ, ଖିଚିଂ, ଫକୀରପୁର, ବୈଦାଖିଆ, ଗଡ଼ଚଣ୍ଡୀ, ଚକ୍ରତୀର୍ଥ ବ୍ୟତୀତ ବୈତରଣୀର ନିମ୍ନ ଅବବାହିକା ଅଞ୍ଚଳରେ ଆହୁରି ଅନେକ ପ୍ରାଚୀନ ଐତିହ୍ୟଭରା ସ୍ଥାନ ରହିଛି । ବୈତରଣୀର ନିମ୍ନ ଅବବାହିକା ଅନ୍ତର୍ଗତ ଭଦ୍ରକ ଜିଲ୍ଲାର ଷୋଳମପୁରଠାରୁ ଆରମ୍ଭ କରି ଖଡ଼ିପଦା, ଗୋହିରାଟିକିରି, ଦିହୁଡ଼ି ଆନନ୍ଦପୁର, ଖିଲାଟେଶ୍ୱର, ପାଳିଆବିନ୍ଧା (ବିରଞ୍ଚି ନାରାୟଣ ମନ୍ଦିର), ସ୍ଥାନେଶ୍ୱର, ଛତାବର ଆଦି ଗୋଟିଏ ଗୋଟିଏ ପ୍ରାଚୀନ ଐତିହ୍ୟଭରା ସ୍ଥାନ । ଏହିସବୁ ସ୍ଥାନମାନଙ୍କରୁ ବହୁ ପ୍ରାଚୀନ କୀର୍ତ୍ତିରାଜି ଉଦ୍ଧାର କରାଯାଇପାରିଛି ।

ସେହଭଳି ଯାଜପୁର ଜିଲ୍ଲାର ସିଦ୍ଧେଶ୍ୱର ମନ୍ଦିର ନିକଟରେ ଗାରଡ଼େଶ୍ୱର ଗ୍ରାମଟି ଅବସ୍ଥିତ । ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ଗ୍ରାମରେ ବୌଦ୍ଧଧର୍ମ ସଂପର୍କିତ ବହୁ ପ୍ରାଚୀନ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏହି ଗ୍ରାମରେ ରହିଛି ଏକ ଦ୍ୱାଦଶ ଭୁଜଯୁକ୍ତ ବୈକୁଣ୍ଠନାଥ ମୂର୍ତ୍ତି, ଅଭିଚାରିକ ସ୍ଥାନକ ମୂର୍ତ୍ତି ଏବଂ ଏକ ତାରା ମୂର୍ତ୍ତି । ଏହି ଗାଁର ଶସ୍ୟକ୍ଷେତ୍ରରେ ରହିଛି ଏକ ଚାମୁଣ୍ଡା ମୂର୍ତ୍ତି । ନିକଟସ୍ଥ ପେଣ୍ଠବାଡ଼ ଗ୍ରାମରେ ଦ୍ୱିଭୁଜ ଗଣେଶଙ୍କର ଏକ ମୂର୍ତ୍ତି ଏବଂ ବହୁ ସଂଖ୍ୟାରେ ପ୍ରାଚୀନ ମିଥୁନ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏହି ମୂର୍ତ୍ତିସବୁ ଭୌମଯୁଗୀୟ ବୋଲି ଅନୁମାନ କରାଯାଉଛି ।

ହୀରାପୁର ଯାଜପୁର ଜିଲ୍ଲାର ଏବଂ ବୈତରଣୀ ନଦୀ ଅବବାହିକାର ଅନ୍ୟତମ ପ୍ରାଚୀନ ବୌଦ୍ଧକ୍ଷେତ୍ର ଭାବେ ଜଣାଶୁଣା । ଭୌମକରବଂଶୀ ରାଣୀ ହୀରା ମହାଦେବୀଙ୍କ ନାମାନୁସାରେ ଏହି ଗ୍ରାମର ନାମକରଣ ସଂଭବ ହୋଇଛି ବୋଲି କୁହାଯାଏ । ଏହି ଗ୍ରାମରେ ଥିବା ଗୋପୀନାଥ ମନ୍ଦିରର କଳା ଓ ସ୍ଥାପତ୍ୟ ବେଶ୍ ପ୍ରାଚୀନ । ତେବେ ମୂଳ ମନ୍ଦିରଟି କାଳର କରାଳ ଗର୍ଭରେ ଲୀନ ହୋଇ ଯାଇଥିବାବେଳେ ପରବର୍ତ୍ତୀ ଗଙ୍ଗ ଶାସନକାଳରେ ଏହି ମନ୍ଦିରଟି ପୁନର୍ନିର୍ମାଣ ହୋଇଛି । ଭୁବନେଶ୍ୱରର ରାଜାରାଣୀ ମନ୍ଦିର ଶୈଳୀରେ ନିର୍ମିତ ଏହି ମନ୍ଦିରଟି ଗଙ୍ଗବଂଶୀଙ୍କ ଆଉ ଏକ ଶ୍ରେଷ୍ଠ ନିର୍ମାଣ ବୋଲି ଧରାଯାଏ । ଏହି ମନ୍ଦିରରେ ଅନେକ ବୌଦ୍ଧମୂର୍ତ୍ତି ଓ ଭୌମକର ଯୁଗର ମିଥୁନ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳିଥାଏ ।

ଏହାବ୍ୟତୀତ ବୈତରଣୀ ନଦୀର ନିମ୍ନ ଅବବାହିକା ଅଞ୍ଚଳରେ ଅନେକ ବୌଦ୍ଧ ଓ ଜୈନ କ୍ଷେତ୍ର ରହିଛି । ଏହିସବୁ ସ୍ଥାନରୁ ବହୁ ପ୍ରାଚୀନ ବୌଦ୍ଧ ମୂର୍ତ୍ତି ସମେତ ଭୌମକର ଯୁଗର ପ୍ରାଚୀନ ମୂର୍ତ୍ତି ଉଦ୍ଧାର କରାଯାଇଛି । ନିମ୍ନ ବୈତରଣୀ ନଦୀ ଅବବାହିକା ଅନ୍ତର୍ଗତ ଯାଜପୁର ଜିଲ୍ଲାର ରାମବାଗ, ବରିଆନା, ଚଂପେଇପାଳ, ତରାଙ୍ଗସାଗରପୁର, କୁଆଁସ, ହାଟଡ଼ିହ, କଂସାଳଡ଼ିହ, ରଂଭିଳା, ମଲ୍ଲିକାପୁର, ତନ୍ତୁଳିଡ଼ିହ, କମାରଡ଼ିହ, ନନ୍ଦୀପୁର, ମୁଗପଦା, ରାହାସୋଇ, ଭେଲଙ୍ଗ, ଖଣ୍ଡରା, କପିଳେଶ୍ୱର, ଦୋଗଡ଼ା, କଳସପୁର, ବରୁଣେଶ୍ୱର, ସଇଲୋ ବାସୁଦେବପୁର ଆଦି ଗ୍ରାମରୁ ପ୍ରାଚୀନ ଯୁଗର ବହୁ ବିରଳ ମୂର୍ତ୍ତି ମିଳିଛି । ବୈତରଣୀ ନଦୀ ଅବବାହିକା ଅନ୍ତର୍ଗତ ଅଞ୍ଚଳମାନଙ୍କରୁ ମିଳୁଥିବା ପ୍ରାଚୀନ

ମୂର୍ତ୍ତିମାନଙ୍କୁ ସଂଗ୍ରହ ନିମନ୍ତେ ଏକ ସ୍ୱତନ୍ତ୍ର ସଂଗ୍ରହାଳୟର ଆବଶ୍ୟକତା ଜରୁରୀ ହୋଇପଡ଼ିଛି ।

## ଦଶରଥପୁରର କଟିକଟା ଓ ଦତ୍ତପୁର ତଙ୍ଗା ଘାଟ

## ଅପରନ୍ତି ସ୍ମୃତି ଓ ଅନେକ ଘଟଣା, ଦୁର୍ଘଟଣାର ମୂକସାକ୍ଷୀ..

*(ancient Katikata and Dattapur river ghat of Dasharathapur)*

ନଈକୂଳିଆ ଗାଁର ଚିତ୍ର ଟିକେ ନିଆରା । ଗାଁ ଦେଇ ବହିଯାଇଥିବ ନଈ । ନଈ ଆରପଟକୁ ଯା'ଆସ୍ କରିବାକୁ ଥିବ ଏକ ନଦୀ ଘାଟ । ତଙ୍ଗାରେ ପାର ହେଉଥିବେ ଗ୍ରାମାଞ୍ଚଳର ଲୋକେ । ଘାଟରେ ନାଉରୀଆକୁ ଅପେକ୍ଷା କରି ବସିଥିବ ପଥିକ । ଚା' ଜଳଖିଆ ଦୋକାନରେ ବିକ୍ରିବଟା ଚାଲିଥିବ । ଢେଙ୍କିଶାଳଠୁଁ ଢେଙ୍କାନାଳ ପର୍ଯ୍ୟନ୍ତ କଥାର ଖିଅ ଲମ୍ବୁଥିବ । ନାଉରୀଟି ନାଆ ବାହି ଘାଟ ଆଡ଼କୁ ଆସୁଥିବ । ଆଃ, କି ସୁନ୍ଦର ଦୃଶ୍ୟ । ସେ ଅନୁଭୂତି ଆଜି ବିରଳ । ଅତୀତର ସେ ନଦୀ ଘାଟ, ନାଉରିଆ, ତଙ୍ଗା ଓ ପଥିକଙ୍କ ଅନୁଭୂତି ଆଜି ପାଲଟିଛି ଇତିହାସ ।

ଅଗଷ୍ଟ ମାସର ଏକ ବର୍ଷାଭିଜା ମଧ୍ୟାହ୍ନରେ ଆମେ ପହଞ୍ଚିଥିଲୁ ଦଶରଥପୁରର କଟିକଟା ତଙ୍ଗାଘାଟରେ । କେନ୍ଦୁଝରରୁ ଆନନ୍ଦପୁର ଦେଇ ଯାଜପୁର ରୋଡ୍ । ଯାଜପୁର ରୋଡ୍‌ରୁ



ଦଶରଥପୁରର କଟିକଟା ବୈତରଣୀ ଘାଟ

ପାଣିକୋଇଲି । ଆଉ ପାଣିକୋଇଲିରୁ ଯାଜପୁର ଟାଉନ୍, ରାମବାଗ୍ ଓ ସିଦ୍ଧେଶ୍ୱର ମନ୍ଦିର ଦେଇ ଆମଗାଡ଼ି ଦଶରଥପୁର ବଜାରରେ ପହଞ୍ଚିଲାବେଳକୁ ମଧ୍ୟାହ୍ନ ହୋଇସାରିଥିଲା । ଏହି ଯାତ୍ରାରେ ମୋ' ସାଥୀରେ ଥାଆନ୍ତି ସାମ୍ବାଦିକ ପ୍ରଦୀପ ମହାନ୍ତି । ସେ କେନ୍ଦୁଝରରେ ସାମ୍ବାଦିକତା କରୁଥିଲେ ମଧ୍ୟ ତାଙ୍କ ପୈତୃକଘର ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍ ଅନ୍ତର୍ଗତ ନନ୍ଦିପୁର ଗାଁରେ । ଯାଜପୁର ଜିଲ୍ଲାରେ ବୈତରଣୀ ସଂପର୍କରେ ଅଧିକ ଜାଣିବା ପାଇଁ ସେ ମୋତେ ବେଶ୍ ସହାୟକ ହୋଇଥିଲେ । ଆମେ କଟିକଟା ଡଙ୍ଗାଘାଟରେ ପହଞ୍ଚି କାର୍‌କୁ ଘାଟରେ ରଖି ଡଙ୍ଗାରେ ଚଢ଼ିଲୁ । ଡଙ୍ଗାରେ ପାର ହୋଇ ଧାମନଗର ପଟକୁ ଗଲୁ ଓ ପୁଣି କଟିକଟା ଘାଟକୁ ଫେରିଲୁ । ସେଦିନ ନୌକାବିହାର ବେଶ୍ ରୋମାଞ୍ଚିତ କରିଥିଲା ।

ଆଜି ଆଉ ନଦୀ ଘାଟ ନାହିଁ କି ଡଙ୍ଗା, ନାଉରୀଆଙ୍କର ଦେଖାନାହିଁ । ନଦୀଘାଟଗୁଡିକରେ ଏବେ ଠିଆ ହୋଇଛନ୍ତି ପୋଲ । ଏହି ପୋଲମାନଙ୍କ ଛାତି ଦେଇ ତୀବ୍ର ବେଗରେ ଉଡିଯାଉଛନ୍ତି ଶହଶହ ସଂଖ୍ୟାରେ ଗାଡି, ମୋଟର । ନାଉରୀଆମାନେ ଜୀବିକା ହରାଇ ସର୍ବସ୍ୱାନ୍ତ ହୋଇଛନ୍ତି । ନଦୀ ଘାଟର ଚିତ୍ର ବଦଳିଯାଇଛି ।

ଦଶରଥପୁରର କଟିକଟା ବୈତରଣୀ ଘାଟଟି କାହିଁ କେଉଁ କାଳରୁ ଲୋକମାନଙ୍କୁ ନଦୀ ପାର କରାଇ ଆସୁଛି । ଏହି ଘାଟଟି ଯାଜପୁର ଜିଲ୍ଲା ସହିତ ଭଦ୍ରକ ଜିଲ୍ଲାର ଲୋକମାନଙ୍କ ମଧ୍ୟରେ ଏକ ଭାବର ସେତୁ ଭଳି କାମ କରିଥାଏ । ଭଦ୍ରକ ଜିଲ୍ଲାର ଲୋକେ ବନ୍ଧୁ ଘରକୁ ଯାଜପୁରକୁ ଆସିଥା'ନ୍ତି, ଅନୁରୂପ ଯାଜପୁରର ଲୋକେ ଭଦ୍ରକକୁ ଯାଇଥା'ନ୍ତି । ଏହି ଘାଟକୁ ନେଇ ଦଶରଥପୁରର ଲୋକଙ୍କଠାରୁ କେତେ ରୋମାଞ୍ଚକର କାହାଣୀ ଓ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ । ଏସବୁ ଆବେଗପୂର୍ଣ୍ଣ ଓ ଭାବପ୍ରବଣ ବର୍ଣ୍ଣନା ଦେହ ଓ ମନରେ ଶିହରଣ ସୃଷ୍ଟି କରିଥାଏ ।

ପ୍ରତିବର୍ଷ ବୈତରଣୀରେ ବନ୍ୟା ଆସିଲେ ଦଶରଥପୁର ଓ ଧାମନଗରବାସୀ କିଭଳି ଆତଙ୍କିତ ହୋଇ ପଡନ୍ତି ତାହାର ଅନେକ କରୁଣ କାହାଣୀ ରହିଛି । ବନ୍ୟା ସମୟରେ ବୈତରଣୀ କେତେ ଉଗ୍ର ହୋଇଉଠେ, ସେ ସଂପର୍କରେ ବର୍ଣ୍ଣନା କରୁକରୁ କଟିକଟା ଘାଟର ନାଉରୀଆ ଗୋପୀନାଥ ତରେଇଙ୍କ ଆଖିରୁ ଦୁଇ ଧାର ଲୁହ ବହି ଆସିଥିଲା ।

୨୦ ବର୍ଷ ତଳେ ଏହି ଘାଟରେ ଥରେ ଡଙ୍ଗା ବୁଡିଯାଇଥିଲା । ପାଖାପାଖି ୨୦ ଜଣ ଲୋକ ନଦୀରେ ବୁଡ଼ି ମରିଯାଇଥିଲେ ଏବଂ ସେ ଦୃଶ୍ୟ ଅତ୍ୟନ୍ତ ଲୋମହର୍ଷଣକାରୀ ଓ ସେ ସମୟର ସବୁଠୁ ବଡ଼ ଖବର ହୋଇଥିଲା ବୋଲି କହନ୍ତି ଗୋପୀନାଥ । ଚାରିଆଡ଼େ ଶୁଣାଯାଉଥିଲା କ୍ରନ୍ଦନର ରୋଳ ଓ ସବୁଠି ସୃଷ୍ଟି ହୋଇଥିବା କରୁଣ ପରିବେଶ ତାଙ୍କ ବାପା (ସେତେବେଳର ନାଉରିଆ)ଙ୍କୁ ଖୁବ୍ ବ୍ୟଥିତ କରି ଦେଇଥିଲା । ତେବେ ସେହି ଘଟଣା ପରଠୁ ଆଉ କେବେ ଏଭଳି ଦୁର୍ଘଟଣା ଘଟିନାହିଁ ବୋଲି କହନ୍ତି ଗୋପୀନାଥ । ଏହି ଡ଼ଙ୍ଗା ଦେଇ କେତେ ବର-କନ୍ୟା ଓ ବରଯାତ୍ରୀ ପାର ହୋଇଛନ୍ତି, କେତେ ରୋଗୀ, ଡାକ୍ତର, ସ୍କୁଲ୍ ଛାତ୍ରଛାତ୍ରୀ, କଲେଜ ପଢୁଆ ପିଲା, ନବବିବାହିତା ଯୁବତୀ, ଦୂର ବିଦେଶୀ ପାର ହୋଇଛନ୍ତି ଏବଂ ସେମାନଙ୍କ ସହିତ ଅନେକ ମଧୁର ସଂପର୍କ ଆଜି ବି ତାଜା ହୋଇ

ରହିଛି ' ବୋଲି କହନ୍ତି ଗୋପୀନାଥ ।

ଗୋପୀନାଥଙ୍କ କହିବା ଅନୁସାରେ, ତାଙ୍କ ବାପା, ତାଙ୍କ ବାପାଙ୍କ ବାପା ଏବଂ ତାଙ୍କ ବାପାଙ୍କ ବାପା ଅମଳରୁ ସେ ଏହି ଡଙ୍ଗା ଘାଟଟିକୁ ଦେଖି ଆସୁଛନ୍ତି । ତାଙ୍କ ଜେଜେଙ୍କ ବେଳେ ଦୁଇ ପଇସାରେ ଘାଟ ପାର କରି ହେଉଥିଲା । ତାଙ୍କ ଦେଖିବାରେ ଘାଟ ପାଉଣା ଚାରିଅଣା ଥିଲା । ଏବେ ମଣିଷ ପିଛା ୫ ଟଙ୍କା ଏବଂ ମୋଟର ସାଇକେଲ ୨୦ ଟଙ୍କା ହୋଇଛି । ନିଲାମ ଦର ଅଧିକ ହୋଇ ପଡୁଥିବାରୁ ଡଙ୍ଗା ଚଳାଇବା ଏବେ କଷ୍ଟକର ହୋଇପଡୁଛି । ଅପରପକ୍ଷେ, ଏବେ ସରକାର ଏହି ନଦୀ ଘାଟରେ ଏକ ପୋଲ ନିର୍ମାଣ ଆରଂଭ କରିଥିବାରୁ ଆସନ୍ତା ବର୍ଷେ କି ଦୁଇ ବର୍ଷ ମଧ୍ୟରେ ତାଙ୍କର ଜୀବିକା ମଧ୍ୟ ବୁଡ଼ିଯିବ ବୋଲି କହନ୍ତି ଗୋପୀନାଥ ।

କଟିକଟା ଘାଟ ଦେଇ ଭଦ୍ରକ ଜିଲ୍ଲାର ଧାମନଗର, ଚାନ୍ଦବାଲି ବ୍ଲକ୍ ସହିତ ଯାଜପୁର ଜିଲ୍ଲାର ଦଶରଥପୁର, ଯାଜପୁର, ବିଞ୍ଝାରପୁର, କୋରେଇ ବ୍ଲକ୍‌ର ଲୋକେ ପାର ହୋଇଥା'ନ୍ତି । ତେବେ ଏହି ଘାଟରେ ଯାଜପୁର ଓ ଭଦ୍ରକକୁ ସଂଯୋଗ କରିବା ଉଦ୍ଦେଶ୍ୟରେ ଏବେ ଏକ ପୋଲ ନିର୍ମାଣାଧୀନ ଅବସ୍ଥାରେ ରହିଛି । ପୋଲ ନିର୍ମାଣ ଶେଷ ହୋଇଗଲେ ଏହି ଘାଟର ଆଉ କିଛି ଆବଶ୍ୟକତା ରହିବ ନାହିଁ । ତେବେ ଏହି ଘାଟକୁ ନେଇ ସ୍ଥାନୀୟ ଲୋକଙ୍କ ମନରେ ସୃଷ୍ଟି ହୋଇଥିବା ବିରଳ ସ୍ମୃତି ଓ ଅନୁଭୂତି ସବୁଦିନ ପାଇଁ ତାଜା ହୋଇ ରହିବ ନିଶ୍ଚୟ ।

ସେହିଭଳି ଦଶରଥପୁର ବ୍ଲକ୍‌ରେ ବୈତରଣୀ ନଦୀରେ ଆଉ ଏକ ପୁରାତନ ଘାଟ ରହିଛି, ଯାହାର ନାଁ ଦତ୍ତପୁର ଘାଟ । ଏହି ଘାଟ ଦେଇ ଯାଜପୁର ଓ ଭଦ୍ରକ ଜିଲ୍ଲାର ଲୋକେ ନଦୀ ପାର ହୋଇଥାନ୍ତି । ଯାଜପୁରର ଲୋକେ ପଡୋଶୀ ଭଦ୍ରକ ଜିଲ୍ଲାର ପ୍ରସିଦ୍ଧ ଶୈବକ୍ଷେତ୍ର ଆଖଣ୍ଡଳମଣି, ଭଦ୍ରକ ଜିଲ୍ଲା ସଦର ମହକୁମାକୁ ଯିବାକୁ ହେଲେ ଏହି ନଦୀ ଘାଟ ଦେଇ ପାର ହୋଇଥା'ନ୍ତି । ସେହିଭଳି ଭଦ୍ରକ ଜିଲ୍ଲାର ଲୋକେ ଯାଜପୁର ଜିଲ୍ଲାର ମା' ବିରଜାଙ୍କ ପୀଠ, ଦଶାଶ୍ୱମେଧ ଘାଟ, ମଙ୍ଗଳପୁର, ଝୁଂପୁରି, ବଉଲାଙ୍ଗ, ବିଞ୍ଝାରପୁର, ସିଂପୁର ଆଦି ବଜାରମାନଙ୍କୁ ଆସିଥାନ୍ତି । ବିଶେଷକରି ଦଶରଥପୁର ବ୍ଲକ୍‌ର ଦତ୍ତପୁର, ସୁସୁଆ, ଦୁଦୁରାଅଣ୍ଟା, ନିଜାମପୁର, ଖାନ୍‌ନଗର, ମଙ୍ଗଳପୁର ଆଦି ପଞ୍ଚାୟତ ସମେତ ପ୍ରାୟ ଦେଢଶହରୁ ଉର୍ଦ୍ଧ୍ୱ ଗ୍ରାମ ଏହି ଘାଟ ଉପରେ ନିର୍ଭର କରୁଥିବାବେଳେ ଭଦ୍ରକ ଜିଲ୍ଲାର ପାଳସାହି, ସୁନ୍ଦରପୁର, ଦୋହରା, ରଇପୁର, ଶ୍ୟାମସୁନ୍ଦରପୁର ଆଦି ପଞ୍ଚାୟତର ଶତାଧିକ ଗାଁର ଲୋକେ ଏହି ଘାଟରେ ନଦୀ ପାର ହୋଇଥା'ନ୍ତି । ବନ୍ୟା ସମୟରେ ଘାଟଟିର ଅବସ୍ଥା ସଂକଟାପନ୍ନ ହୋଇପଡିଥାଏ ।

**(ତଥ୍ୟ ସହାୟତା: ଗୋପୀନାଥ ତରେଇ, ନାଉରିଆ, କଟିକଟା ଡଙ୍ଗାଘାଟ, ଦଶରଥପୁର)**

# ବୈତରଣୀ କୂଳରେ ଗଢି ଉଠିଥିବା ଦଶରଥପୁରର ପ୍ରାଚୀନ ଶ୍ୟାମସୁନ୍ଦରଜିଉ ମଠ

*(Shyama Sundarjew Matha of Dasharathpur)*

ଅତୀତରେ ପ୍ରାୟ ନଦୀ କୂଳମାନଙ୍କରେ ଜନବସତି ଗଢି ଉଠିବା ସହିତ ଧାର୍ମିକ ଓ ସାଂସ୍କୃତିକ କେନ୍ଦ୍ରମାନ ସୃଷ୍ଟି ହୋଇଥିଲା । ଯାଜପୁର ଜିଲ୍ଲାର ଏକ ପୁରାତନ ଶ୍ୟାମ ସୁନ୍ଦରଜିଉ ମଠଟି ଦଶରଥପୁରର ବୈତରଣୀ ନଦୀ କୂଳରେ ଶାନ୍ତ ଶୀତଳ ପରିବେଶରେ ଗଢି ଉଠିଥିଲା । ଖ୍ରୀ·ଅ· ୧୨୮୦ ମସିହାରେ ଏହି ମଠଟି ସ୍ଥାପିତ ହୋଇଥିଲା । ମଠଟିକୁ ବିଶିଷ୍ଟ ହିନ୍ଦୁ ସନ୍ଥ ଶ୍ରୀଚୈତନ୍ୟ ମଧ୍ୟ ବୁଲି ଆସି ଏଠାରେ ଅବସ୍ଥାନ କରିଥିଲେ ବୋଲି ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ । ବର୍ତ୍ତମାନ 'ଶ୍ରୀ ଶ୍ୟାମସୁନ୍ଦରଜିଉ ଟ୍ରଷ୍ଟବୋର୍ଡ' ଏହି ମଠର ପରିଚାଳନା ଦାୟିତ୍ୱ ତୁଲାଉଛି ।

ଶ୍ରୀ ଶ୍ରୀ ରାଧାଶ୍ୟାମସୁନ୍ଦରଜିଉ ବିଜେ ଦଶରଥପୁର ମଠଟି ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ ଭକ୍ତମାନଙ୍କର ଭକ୍ତିଯୋଗର ଏକ ଆରାଧନା ପୀଠ ଭାବେ ପରିଚିତ । ଶ୍ରୀମଧ୍ୱ-ଗୌରେଶ୍ୱର ବୈଷ୍ଣବ ପରଂପରାରେ ଶ୍ରୀପାଟ ଗୋପୀବଲ୍ଲଭପୁର ଶ୍ରୀ ହୃଦୟ ଚୈତନ୍ୟଙ୍କ ଶିଷ୍ୟ ପ୍ରଭୁ ଶ୍ୟାମାନନ୍ଦ ପରବାରିୟ ଶ୍ରୀ ବୃନ୍ଦାବନ ଯୋଗପୀଠ ଉତ୍ତର ଦଳ ଲଳିତା ନନ୍ଦକୁଞ୍ଜ ଅଧୀନସ୍ଥ ପୁରୀ କୁଞ୍ଜ ମଠ, ଯାଜପୁର ମଣ୍ଡଳ ଶାଖା ଦଶରଥପୁର ଗ୍ରାମରେ ଏହି ରାଧାଶ୍ୟାମସୁନ୍ଦର ଜିଉ ମଠ ଅବସ୍ଥିତ । ଗୋପୀବଲ୍ଲଭପୁର ପଶ୍ଚିମବଙ୍ଗ ମେଦିନାପୁର ଜିଲ୍ଲାସ୍ଥ ବୈଷ୍ଣବ ଧର୍ମାବଲମ୍ବୀମାନଙ୍କ ସ୍ୱତନ୍ତ୍ର ପୀଠ ଅଟେ । ଏହା ଗୁପ୍ତ ବୃନ୍ଦାବନ ନାମରେ ନାମିତ । ଏହି କ୍ଷେତ୍ର ସୁବର୍ଣ୍ଣରେଖା ନଦୀ କୂଳରେ ଅବସ୍ଥିତ । ପୂର୍ବକାଳରେ ଏହା ମୟୂରଭଞ୍ଜ ଜିଲ୍ଲା ଅନ୍ତର୍ଭୁକ୍ତ ଥିଲା । ଏହି ପୀଠର ପୀଠାଧୀଶ ଶ୍ରୀ ଶ୍ୟାମାନନ୍ଦ ଶ୍ରୀହୃଦୟ ଶ୍ରୀଚୈତନ୍ୟଙ୍କ ଶିଷ୍ୟ ଥିଲେ । ଏହି ମଠର ସର୍ବପ୍ରଥମ ମଠାଧୀଶ କରୁଣାକର ଦେବ ଗୋସ୍ୱାମୀ ପ୍ରଭୁ ଶ୍ରୀ ଶ୍ୟାମାନନ୍ଦଙ୍କଠାରୁ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ମଠ ପ୍ରତିଷ୍ଠା ହେବା ଦିନଠୁ ମଠାଧୀଶଙ୍କ ତାଲିକା

୧· ଶ୍ରୀ କରୁଣାକର ଦେବ ଗୋସ୍ୱାମୀ

୨· ଶ୍ରୀ ବୈଷ୍ଣବାନନ୍ଦ ଗୋସ୍ୱାମୀ

୩· ଗୋସ୍ୱାମିନୀ ଚନ୍ଦ୍ରମା ଦେବୀ

୪· ଶ୍ରୀରାମକୃଷ୍ଣ ଅଧିକାରୀ ଗୋସ୍ୱାମୀ

୫· ଶ୍ରୀ ଗୋପୀକିଶୋର ଅଧିକାରୀ ଗୋସ୍ୱାମୀ

୬· ଶ୍ରୀକୃଷ୍ଣବଲ୍ଲଭ ଅଧିକାରୀ ଗୋସ୍ୱାମୀ

୭· ଶ୍ରୀ ବ୍ରଜମୋହନ ଅଧିକାରୀ ଗୋସ୍ୱାମୀ





ଦଶରଥପୁରର ଶ୍ୟାମସୁନ୍ଦରଜିଉ ମଠ

୮· ଶ୍ରୀ ସାଧୁ ଚରଣ ଅଧିକାରୀ ଗୋସ୍ୱାମୀ

୯· ଶ୍ରୀ ଗୋକୁଳାନନ୍ଦ ଅଧିକାରୀ ଗୋସ୍ୱାମୀ

୧୦· ଶ୍ରୀ ଜନାର୍ଦ୍ଦନ ଅଧିକାରୀ ଗୋସ୍ୱାମୀ

୧୧· ଶ୍ରୀ ଅଚ୍ୟୁତାନନ୍ଦ ଅଧିକାରୀ ଗୋସ୍ୱାମୀ

ଏହି ମଠରେ ବାରମାସରେ ତେର ପର୍ବ ପାଳନ କରାଯାଇଥାଏ । ପ୍ରଥମ ମଠାଧୀଶ ଶ୍ରୀ କରୁଣାକର ଦେବ ଗୋସ୍ୱାମୀଙ୍କ ଶ୍ରାଦ୍ଧୋତ୍ସବକୁ 'ଭୀଷ୍ମାଷ୍ଟମୀ' ଭାବେ ପ୍ରତିବର୍ଷ ପାଳନ କରାଯାଇଥାଏ । ଗହ୍ମାପର୍ବ ପାଳନ ଅବସରରେ ମଠରେ ପ୍ରତିବର୍ଷ ଝୁଲଣ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଦୋଳ ପର୍ବ ମଧ୍ୟ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ ।

**(ତଥ୍ୟ ସହାୟତା: କ୍ଷେତ୍ରମୋହନ ମହାନ୍ତି, ପ୍ରୀତିପୁର, ଯାଜପୁର)**

## କୟାଁଗୋଲା ଘାଟ: ପଙ୍କି ଓ ବୈତରଣୀ ପୁନର୍ମିଳନ

*(Kaynagola : confluence of Baitarani and Panki)*

କୟାଁଗୋଲା ଘାଟଟି ବୈତରଣୀ ନଦୀ ଅବବାହିକାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ଅଧିକାଂଶ ଯାଜପୁରିଆ (ଯାଜପୁର ଟାଉନ୍ ବାସିନ୍ଦା) ଭାବନ୍ତି କୟାଁଗୋଲା ନିକଟରେ ହିଁ ବୈତରଣୀ ଶେଷ ହୋଇଛି । ଆଗକୁ ସମୁଦ୍ର । ଏହା କିଛି ମାତ୍ରାରେ ସତ୍ୟ ଓ କିଛି ମାତ୍ରାରେ ଅସତ୍ୟ । କୟାଁଗୋଲା ଆଗକୁ ଭଦ୍ରକର ଆରଡ଼ି ଆଖଣ୍ଡଳମଣି ପୀଠ । ଆଉ ପାଞ୍ଚ କିଲୋମିଟର ଆଗକୁ ବୈତରଣୀ ପ୍ରବାହିତ ହୋଇ ଚାନ୍ଦବାଲିରେ ପ୍ରବେଶ କରିଛି । ଏହା ପରେ ହିଁ ବୈତରଣୀ ସମୁଦ୍ରରେ ମିଶିଛି ।

କୟାଁଗୋଲା ନିକଟରେ ବୈତରଣୀ ସହ ଏହାର ଶାଖା ନଦୀ 'ପଙ୍କି' ମିଶିଛି । କୟାଁଗୋଲାର



କୟାଁଗୋଲା ନିକଟରେ ବୈତରଣୀ ନଦୀର ଏକ ଗଳିଆରେ ବିଶ୍ରାମ ନେଉଥିବା ମାଲବୋହି ଡଙ୍ଗା

କିଛିବାଟ ପୂର୍ବରୁ ବୈତରଣୀରୁ ଏକ ଶାଖା ନଦୀ ପଙ୍କି ସୃଷ୍ଟି ହୋଇ କିଛି ପଥ ପ୍ରବାହିତ ହେଲାପରେ କୟାଁଗୋଲା ନିକଟରେ ଉଭୟ ପୁନର୍ବାର ମିଳିତ ହୋଇଛନ୍ତି । କୟାଁଗୋଲା ନିକଟରେ ବୈତରଣୀ ଓ ପଙ୍କି ନଦୀର ମିଳନ ସ୍ଥଳରେ ଏକ ଦ୍ୱୀପାଞ୍ଚଳ ସୃଷ୍ଟି ହୋଇଛି ।

କୟାଁଗୋଲାର ଆରପଟ ଚାନ୍ଦବାଲି ବ୍ଲକ୍‌ର ଆରଡ଼ି ଆଖଣ୍ଡଳମଣି ପୀଠ । କୟାଁଗୋଲାଠାରୁ ବୈତରଣୀ ଯାଜପୁର ଜିଲ୍ଲା ଅତିକ୍ରମ କରି କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାର ସୀମାରେ ପ୍ରବେଶ କରିଛି ।





କୟାଁଗୋଲା : ପଙ୍କି ଓ ବୈତରଣୀର ପୁନର୍ମିଳନ



**ଜୟାଁଗୋଲାରେ ବୈତରଣୀ ନଦୀ କୂଳରେ ଏକ ଶୀତୁଆ ଅପରାହ୍ନରେ ଲେଖକ**

ପଙ୍କି ନଈଟି ଯାଜପୁରବାସୀଙ୍କ ପାଇଁ ଏକ ଚର୍ଚ୍ଚିତ ଓ ସର୍ବାଧିକ ଆଲୋଚିତ ନଈ ଭାବେ ପରିଚିତ । ଏହି ନଈଟି ଖୁବ୍ ଅଣଓସାରିଆ ଏବଂ ପଙ୍କୁଆ । ପ୍ରବଳ ପଙ୍କ କାଦୁଅ ଥିବାରୁ ଏହି ନଈର ନାଁ ବୋଧହୁଏ ପଙ୍କି ହୋଇଛି । ପଙ୍କି ନଈର ମାଛ ନିକଟସ୍ଥ ମଙ୍ଗଳପୁର ବଜାରରେ ଏକ ନିଆରା ଭାଉ ଦାବି କରେ । ପଙ୍କି ନଈକୁ ନେଇ ସ୍ଥାନୀୟ ଅଞ୍ଚଳରେ ଏକ ପ୍ରଥା ପ୍ରଚଳିତ ଅଛି । ଯେଉଁ ଗାଁରେ ଚୋରି, ଡକାୟତ ହୋଇଥାଏ, ଚୋରମାନଙ୍କୁ ଧରିବା ପାଇଁ ପଙ୍କି ନଈ ହିଁ ସାହାଯ୍ୟ କରିଥାଏ । ଗ୍ରାମବାସୀ ସନ୍ଦେହ କରୁଥିବା ଯୁବକ, ଯୁବତୀଙ୍କୁ ପଙ୍କି ନଈରେ ଡଙ୍ଗାରେ ପାର ହେବାକୁ ପଡ଼ିଥାଏ । ଯଦି କେହି ପ୍ରକୃତ ଚୋର ଡଙ୍ଗାରେ ପାର ହେଉଥିବେ, ତେବେ ଡଙ୍ଗାଟି ବୁଡିଯିବ ବୋଲି ଲୋକମାନଙ୍କର ବିଶ୍ୱାସ ରହିଛି । ଏଣୁ ପଙ୍କି ନଈରେ ବୁଡ଼ିଯିବା ଭୟରେ ଚୋରି କରିଥିବା କେହି ଯୁବକ, ଯୁବତୀ ପଙ୍କି ନଈରେ ଡଙ୍ଗା ପାର ହେବା ପୂର୍ବରୁ ଚୋରି କରିଥିବା ସ୍ୱୀକାର କରି ଯାଆନ୍ତି । ନଚେତ୍ ସେମାନଙ୍କୁ ପଙ୍କି ନଈ ପାର ହେବାକୁ ପଡ଼ିଥାଏ । ଏଭଳି ଘଟଣାରେ ଅତୀତରେ ବହୁ ଡ଼ଙ୍ଗା ବୁଡିଥିବାର ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ ।

ଜୟାଁଗୋଲାଠାରେ ପଙ୍କି ଓ ବୈତରଣୀର ପୁନର୍ମିଳନ ହେବାପରେ ବୈତରଣୀ ଆଗକୁ ଆରଡ଼ି ଅଭିମୁଖେ ଯାତ୍ରା କରିଛି । ଅତୀତରେ ଜୟାଁଗୋଲା ଏକ ନୌବାଣିଜ୍ୟିକ ପେଣ୍ଠସ୍ଥଳୀ ଥିଲା ।



**କୟାଁଗୋଲାରେ ବୈତରଣୀର ଶାନ୍ତଶୀତଳ ରୂପ**

ଏଠାରୁ ନୌକା ଯୋଗେ ଜିନିଷପତ୍ର ବୋଝେଇ ହୋଇ ଚାନ୍ଦବାଲିରେ ପହଞ୍ଚୁଥିଲା ଏବଂ ପରେ ବଡ଼ବଡ଼ ବୋଇତ ମାଧ୍ୟମରେ ଧାମରା ଦେଇ ଦରିଆପାରି ଦେଶମାନଙ୍କୁ ମାଲ୍ ପରିବହନ କରାଯାଉଥିଲା । ଏବେ ବି କୟାଁଗୋଲା ବୈତରଣୀ ନଦୀ କୂଳରେ ବହୁ ସଂଖ୍ୟାରେ ମାଲ୍‌ବାହୀ ଡଙ୍ଗା, ଲଞ୍ଚ୍ ଦେଖିବାକୁ ମିଳେ । କୟାଁଗୋଲା ନଦୀଘାଟଟି ବୈତରଣୀ ମାଧ୍ୟମରେ ଚାଲିଥିବା ଅତୀତର ନୌବାଣିଜ୍ୟ ଇତିହାସର ଅନେକ ସ୍ମୃତି ବହନ କରିଥାଏ ।

କୟାଁଗୋଲାରୁ ମାଛ, ଲୁଣ, ଧାନ, ଚାଉ, ଲଙ୍କା, ବିରି, ମୁଗ, ଚିନାବାଦାମ୍ ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଚାନ୍ଦବାଲି ଅଭିମୁଖେ ପରିବହନ ହୋଇଥାଏ । ଚାନ୍ଦବାଲିରୁ ଧାମରା ଦେଇ ବିଦେଶକୁ ଜାହାଜ ମାଧ୍ୟମରେ ରପ୍ତାନୀ ହୋଇଥାଏ । ଅତୀତରେ ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ମଧ୍ୟରେ ଯୋଗାଯୋଗ କ୍ଷେତ୍ରରେ କୟାଁଗୋଲାଘାଟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଉଥିଲା । ଏବେ କୟାଁଗୋଲାରେ ବୈତରଣୀ ନଦୀ ଉପରେ ଏକ ବିଶାଳ ପୋଲ ନିର୍ମାଣ ହେବାରୁ ଯାଜପୁର ଜିଲ୍ଲା ସହ ଭଦ୍ରକ ଜିଲ୍ଲା ଓ ଆରଡ଼ି ଆଖଣ୍ଡଳମଣିଙ୍କ ପୀଠ ସହିତ ଯୋଗାଯୋଗ ସୁବିଧା ହୋଇଯାଇଛି । ଅପରପକ୍ଷେ, ଆଖଣ୍ଡଳମଣିଙ୍କ ନିକଟରେ ଥିବା ତିନିତର ଘାଟରେ ଯଦି ଆଉ ଏକ ପୋଲ ନିର୍ମାଣ ହୋଇଯାଏ, ତେବେ ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲା ସହିତ ଚାନ୍ଦବାଲିକୁ ଯୋଗାଯୋଗ ଅତ୍ୟନ୍ତ

ସୁଗମ ହୋଇଯିବ ।

**(ତଥ୍ୟ ସହାୟତା: କ୍ଷେତ୍ରମୋହନ ମହାନ୍ତି, ପ୍ରୀତିପୁର, ଯାଜପୁର)**

## ମଙ୍ଗଳପୁର ମାଛ ବଜାର

*(Mangalpur; the fishing hub)*

ପ୍ରତି ସକାଳୁ ମଙ୍ଗଳପୁର ମାଛ ବଜାରଟିରେ ଲୋକଙ୍କ ଗହଳି ଜମିଯାଏ । ଯାଜପୁର ସହର ସମେତ ଆଖପାଖ ଅଞ୍ଚଳକୁ ମାଛର ଚାହିଦା ମେଣ୍ଟାଇବାରେ ଦଶରଥପୁର ବ୍ଲକ୍ ଅନ୍ତର୍ଗତ ମଙ୍ଗଳପୁର ମାଛବଜାର ବେଶ୍ ସହାୟକ ହୋଇଥାଏ । ଏଠାରେ ଉଭୟ ନଦୀ ଓ ସମୁଦ୍ର ମାଛର ଏକ ବିଶାଳ ବଜାର ଅଛି । ଉଭୟ ବୈତରଣୀ, ପଙ୍କି ଓ ଶାଳନ୍ଦୀ ନଦୀରୁ ଧରାଯାଉଥିବା ଭଳିକି ଭଳି ନଦୀ ମାଛ ଓ ଚାନ୍ଦବାଲି, ଧାମରାରୁ ଆସୁଥିବା ସମୁଦ୍ର ମାଛ ଏଠାରେ ମିଳିଥାଏ । ନାନା ପ୍ରକାର ଚିଙ୍ଗୁଡିଠାରୁ ଆରଂଭ କରି ବାଲିଆ, ଚିତ୍ତଳ, ଭେକ୍‌ଟି, ରୋହି, ଭାକୁର, ଖଏଙ୍ଗା, ଇଲିସି ଓ ଅନ୍ୟାନ୍ୟ ସାମୁଦ୍ରିକ ମାଛ ଏହି ବଜାରରେ ଉପଲବ୍‌ଧ ହୋଇଥାଏ ।

## ବୈତରଣୀ କୂଳରେ ଅବସ୍ଥିତ କୟାଁଗୋଲାର ମା' ଜୟଚଣ୍ଡୀଙ୍କ ସିଦ୍ଧ ପୀଠ

*(Jaya Chandi temple in the bank of river Baitaranee)*

ଯାଜପୁର ଜିଲ୍ଲାର କୟାଁ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ କୟାଁ ଗ୍ରାମରେ ବୈତରଣୀ ନଦୀ କୂଳରେ ଏହି ପ୍ରସିଦ୍ଧ ଦେବୀ ପୀଠ ଅବସ୍ଥିତ । ଏହା ଯାଜପୁର ଜିଲ୍ଲାର ଅନ୍ୟ ଏକ ପୁରାତନ ଶକ୍ତି କ୍ଷେତ୍ର ଭାବେ ଜଣାଶୁଣା । ପ୍ରତିବର୍ଷ ଶାରଦୀୟ ଦୁର୍ଗାପୂଜା ଏହି ପୀଠରେ ମହାସମାରୋହରେ ପାଳିତ ହୋଇଥାଏ । ମା' ଜୟଚଣ୍ଡୀ ତ୍ରିମୁଖୀ ଓ ଷଡଭୂଜାବିଶିଷ୍ଟ । ଏହି ପୀଠର ପୂର୍ବ ଭାଗରେ କେନ୍ଦ୍ରାପଡା ଜିଲ୍ଲା ଓ ଉତ୍ତରକୁ ଭଦ୍ରକ ଜିଲ୍ଲା ଅବସ୍ଥିତ । ଏଣୁ ପ୍ରତିବର୍ଷ ବୈତରଣୀ ନଦୀ ପାର ହୋଇ ଏହି ପୀଠକୁ କେନ୍ଦ୍ରାପଡା ଓ ଭଦ୍ରକ ଜିଲ୍ଲାରୁ ଶତାଧିକ ଭକ୍ତ ଆସିଥା'ନ୍ତି ।

ବର୍ତ୍ତମାନ କୟାଁଗୋଲାଠାରେ ବୈତରଣୀ ନଦୀ ଉପରେ ପୋଲ ନିର୍ମାଣ ହୋଇଯାଇଥିବାରୁ ଯାତାୟତରେ କୌଣସି ସମସ୍ୟା ଦେଖାଯାଉନାହିଁ । କେବଳ କେନ୍ଦ୍ରାପଡା ଜିଲ୍ଲାର ଲୋକେ ନଦୀ ପାର ହୋଇ ଏଠାକୁ ଆସିଥାନ୍ତି । ଏହି ପୀଠକୁ ନେଇ ଅନେକ ଐତିହାସିକ କିମ୍ବଦନ୍ତୀ ରହିଛି । ଏଠାକାର ଅଧିଷ୍ଠାତ୍ରୀ ଦେବୀ ମା' ଜୟଚଣ୍ଡୀ ବହୁ ପୂର୍ବରୁ ଖୋର୍ଦ୍ଧାଗଡ଼ ଅନ୍ତର୍ଗତ ରଥିପୁରଗଡ଼ର ଗଡ଼ ଦେବୀ ଭାବେ ପୂଜା ପାଇ ଆସୁଥିଲେ । ଏହି ରଥିପୁରଗଡ଼ର ପ୍ରଶାସକ ଥିଲେ ଚୌଧୁରୀ ଝାଂପିଲା ସିଂହମହାପାତ୍ର । ତତ୍କାଳୀନ ଖୋର୍ଦ୍ଧା ରାଜାଙ୍କ ନିର୍ଦ୍ଦେଶକ୍ରମେ ଝାଂପିଲା ସିଂହ ଯାଜପୁରର ଏହି ବୈତରଣୀ କୂଳରେ ନିଜ ରାଜ୍ୟର ଶାସନ ସୀମା ବୃଦ୍ଧି କରିବା ଉଦ୍ଦେଶ୍ୟରେ ଏଠାକୁ ସଦଳବଳେ


ଜୟାଁଗୋଲାରେ ବୈତରଣୀର ଶାନ୍ତ ଶୀତଳ ରୂପ

ଆସିଥିଲେ । ଝାଂପିଲା ସିଂହ ଯେତେବେଳେ ଖୋର୍ଦ୍ଧାଗଡ଼ର ରଥିପୁରରୁ ଏଠାକୁ ଆସିଥିଲେ, ସେତେବେଳେ ତାଙ୍କର ଅଧିଷ୍ଠାତ୍ରୀ ଦେବୀ ମା' ଜୟଚଣ୍ଡୀଙ୍କୁ ମଧ୍ୟ ଏଠାକୁ ନେଇ ଆସିଥିଲେ ।

ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍‌ର ବୈତରଣୀ ନଦୀ କୂଳରେ ଏହି କୟାଁ ଗ୍ରାମପଞ୍ଚାୟତଟି ସଂପୂର୍ଣ୍ଣ ଜଙ୍ଗଲପୂର୍ଣ୍ଣ ଓ ଜନଶୂନ୍ୟ ଅଞ୍ଚଳ ଥିଲା । ଝାଂପିଲା ସିଂହ ଏଠାରେ ମା'ଙ୍କୁ ପ୍ରତିଷ୍ଠା କରିଥିଲେ । ସେ ଏଠାରେ ବୈତରଣୀ ନଦୀ କୂଳରେ ମା'ଙ୍କୁ ପ୍ରତିଷ୍ଠା କରିବା ସହ ଏକ ବସତି ସ୍ଥାପନ କଲେ । କ୍ରମେ ଏହି ବସତି ମଲ୍ଲୀପୁର ଗ୍ରାମ ନାମରେ ପରିଚିତ ହେଲା । ଏହାର କିଛି ଦୂରରେ ଝାଂପିଲା ସିଂହ ଏକ ରାଜ ଉଆସ ସ୍ଥାପନ କଲେ । ଏହା ଦୁବକଣ ନାମରେ ଜଣାଶୁଣା ହେଲା । ବୈତରଣୀ ନଦୀ ଅବବାହିକାର ଏହି ଅଞ୍ଚଳଟି କନିକା ରାଜାଙ୍କ ରାଜସ୍ୱ ଅଞ୍ଚଳ ଅନ୍ତର୍ଭୁକ୍ତ ଥିଲା । ଏହା ଫଳରେ କନିକା ରାଜା ଓ ଝାଂପିଲା ସିଂହଙ୍କ ମଧ୍ୟରେ ଯୁଦ୍ଧ ଘଟିଥିଲା । ଝାଂପିଲା ସିଂହଙ୍କ ତୀବ୍ର ଆକ୍ରମଣ ଫଳରେ କନିକା ରାଜା ପରାଜୟବରଣ କରିବା ସହିତ ଏକ ସନ୍ଧି ସ୍ଥାପନ କରିଥିଲେ । ଯୁଦ୍ଧ ଶେଷ ହେବା ପରେ ଉଭୟ ପକ୍ଷଙ୍କ ଉପସ୍ଥିତିରେ ସୀମା ନିର୍ଦ୍ଧାରଣ କରାଯାଇ ଚାନ୍ଦବାଲି ଉପକଣ୍ଠରେ ପଥର ଗଡ଼ା ହୋଇଥିଲା । ଆଜି ବି ଚାନ୍ଦବାଲି ନିକଟରେ 'ପଥରଗଡ଼ା' ଗାଁଟି ଝାଂପିଲା ସିଂହଙ୍କର ବିଜୟ କୀର୍ତ୍ତିର ଗୁଣଗାନ କରିଥାଏ । ମା'ଙ୍କ ଆଶିର୍ବାଦରେ ଝାଂପିଲା ସିଂହ ଏହି ଯୁଦ୍ଧରେ ଜୟଲାଭ କରିଥିବାରୁ ମା'ଙ୍କର ନାମ ଜୟଚଣ୍ଡୀ ହୋଇଥିଲା ଏବଂ ମା'ଙ୍କ ନାମ ଅନୁସାରେ ଏହି ସ୍ଥାନର ନାମ ମଧ୍ୟ ଜୟଚଣ୍ଡୀ ହୋଇଥିଲା ବୋଲି ଲୋକମୁଖରୁ ଶୁଣିବାକୁ ମିଳେ ।

**(ତଥ୍ୟ ସହାୟତା: ଜୟପ୍ରକାଶ ନାୟକ, କୟାଁଗୋଲା, ଯାଜପୁର)**

□

## ପଞ୍ଚମ ପରିଚ୍ଛେଦ

# ଭଦ୍ରକ ଜିଲ୍ଲାରେ ବୈତରଣୀର ପଦଚିହ୍ନ

## ଭଦ୍ରକ ଜିଲ୍ଲାରେ ବୈତରଣୀର ଗୌରବମୟ ଯାତ୍ରା

*(The journey of Baitaranee ends at Bhadrak)*

ଇଂରେଜ ଶାସନ କାଳରେ ବୈତରଣୀ ନଦୀଟି ଅବିଭକ୍ତ କଟକ ଓ ବାଲେଶ୍ୱର ଜିଲ୍ଲାର ସମୀ ନିର୍ଦ୍ଧାରକ ଭାବେ କାର୍ଯ୍ୟ କରୁଥିଲା । ଜିଲ୍ଲା ବିଭାଜନ ପରେ ଏହା ଯାଜପୁର-ଭଦ୍ରକ, କେନ୍ଦ୍ରାପଡ଼ା-ଭଦ୍ରକ ଓ ଯାଜପୁର-କେନ୍ଦ୍ରାପଡ଼ା ଜିଲ୍ଲାର ସୀମାରେଖା ଭାବେ ଚିହ୍ନିତ ହୋଇଛି । ବୈତରଣୀ ନଦୀଟି କେନ୍ଦୁଝର ଜିଲ୍ଲାର ହାଟଡ଼ିହି ବ୍ଲକ୍‌ର ପ୍ରସିଦ୍ଧ ହାବଳେଶ୍ୱର ଘାଟ ଛାଡ଼ିଲାପରେ ଏହା ଭଦ୍ରକ ଜିଲ୍ଲାକୁ ପ୍ରବେଶ କରିଛି । ଏହାପରଠାରୁ ବୈତରଣୀ ଭଦ୍ରକ ଓ ଯାଜପୁର ଜିଲ୍ଲାର ସୀମା ଦେଇ ଅତିକ୍ରମ କରିଛି । ବୈତରଣୀ ଆରଡ଼ିର ଆଖଣ୍ଡଳମଣୀ ଘାଟରେ ପ୍ରବେଶ କଲାବେଳକୁ ଏହା ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ସୀମା ଦେଇ ପ୍ରବାହିତ ହୋଇଛି । ଏଠାରୁ ବୈତରଣୀ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା, ରାଜନଗର ବ୍ଲକ୍ ସୀମା ଦେଇ ଅତିକ୍ରମ କରିବା ପରେ ବଙ୍ଗୋପସାଗରରେ ପଡ଼ିଛି । ଏହା ପୂର୍ବରୁ କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆଠାରେ ବୈତରଣୀ ଓ ବ୍ରାହ୍ମଣୀ ମିଳିତ ହୋଇଛନ୍ତି । ଏ ଦୁଇ ନଦୀର ମିଳନ ପରେ ବ୍ରାହ୍ମଣୀ ନିଜର ସତ୍ତା ହରାଇ ବସିଛି । ନଳିତାପାଟିଆଠାରୁ ସମୁଦ୍ରରେ ପଡ଼ିବା ପର୍ଯ୍ୟନ୍ତ ଏହି ବିଶାଳ ନଦୀଟି ସ୍ଥାନୀୟ ଅଞ୍ଚଳରେ ବୈତରଣୀ ନଦୀ ନାମରେ ପରିଚିତ ହୋଇଛି ।

କେନ୍ଦୁଝର ଜିଲ୍ଲାର ହାଟଡ଼ିହି ବ୍ଲକ୍‌ର ହାବଳେଶ୍ୱର ଘାଟରୁ ଛାଡ଼ିବା ପରେ ବୈତରଣୀ ଆଖୁଆପଦାଠାରେ ଭଦ୍ରକ ଓ ଯାଜପୁର ଜିଲ୍ଲାର ସୀମା ଦେଇ ପ୍ରବାହିତ ହୋଇଛି । ଏହା ପରଠାରୁ ବୈତରଣୀ ଭଦ୍ରକ ଜିଲ୍ଲାର ଭଣ୍ଡାରିପୋଖରୀ, ଧାମନଗର ଓ ଚାନ୍ଦବାଲି ବ୍ଲକ୍ ଏବଂ ଯାଜପୁର ଜିଲ୍ଲାର କୋରେଇ, ଯାଜପୁର, ଦଶରଥପୁର ବ୍ଲକ୍ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ରାଜନଗର ବ୍ଲକ୍‌ର ସୀମା ଦେଇ ପ୍ରବାହିତ ହୋଇ ଶେଷରେ ବଙ୍ଗୋପସାଗରରେ ମିଳିତ ହୋଇଛି ।

## ଆଖୁଆପଦା ଆନିକଟ୍: ବନ୍ୟା ବିଭୀଷିକାର ମୂକସାକ୍ଷୀ

*(Akhuapada Anicut Project)*

ବୈତରଣୀ ନଦୀ କେନ୍ଦୁଝର ଜିଲ୍ଲାର ହାଟଡ଼ିହି ବ୍ଲକ୍ ଛାଡି ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ବ୍ଲକ୍

ଛୁଇଁଛି । ଭଣ୍ଡାରୀପୋଖରୀ ବ୍ଲକ୍‌ର ଆଖୁଆପଦାଠାରେ ବୈତରଣୀ ନଦୀ ଉପରେ ଏକ ଆନିକଟ୍ ନିର୍ମାଣ କରାଯାଇ ପ୍ରତିବର୍ଷ ବୈତରଣୀ ନଦୀରେ ଆସୁଥିବା ପ୍ରଳୟଙ୍କରୀ ବନ୍ୟାକୁ ନିୟନ୍ତ୍ରଣ କରାଯାଇପାରୁଛି । ଏହି ବନ୍ୟାଜଳକୁ ଅଟକାଇ କେନାଲ୍ ମାଧ୍ୟମରେ ଭଦ୍ରକ ଜିଲ୍ଲାର ଚାଷଜମିକୁ ଜଳସେଚନ କରାଯାଇପାରୁଛି । ଏହି ଆନିକଟ୍‌କୁ ନେଇ ଆଖୁଆପଦାରେ ଏକ ଛୋଟ ସହରାଞ୍ଚଳ ଗଢିଉଠିଛି । ଏଠାରେ ଏକ ଛୋଟ ମଧୁରଜଳ ମାଛର ବଜାର ସୃଷ୍ଟି ହୋଇଛି । ଆନିକଟ ନିକଟରେ ଏକ ଶିବ ମନ୍ଦିର ରହିଛି । ଆଖୁଆପଦା ନିକଟରେ ବୈତରଣୀର ଗୋଟିଏ ଶାଖା ନଦୀ ସୃଷ୍ଟି ହୋଇ ଯାଜପୁର ଜିଲ୍ଲା ମଧ୍ୟକୁ ପ୍ରବେଶ କରି କୁଆଖିଆ ନିକଟରେ ବ୍ରାହ୍ମଣୀର ଶାଖା ନଦୀ ଖରସ୍ରୋତ ସହିତ ମିଳିତ ହୋଇଛି । ଏହି ଶାଖା ନଦୀଟିର ନାମ ବୁଢାନଦୀ । ଆଖୁଆପଦା ନିକଟରେ ବୁଢା ନଦୀ ଉପରେ ଥିବା ପୋଲଟି (ଗୁଢିଆ ପୋଲ) ଗତ ୨୦୧୧ ପ୍ରଳୟଙ୍କରୀ ବନ୍ୟାରେ ଭୁଷୁଡ଼ି ପଡିବାରୁ








ଆଖୁଆପଦା ଆନିକଟ୍‌ରେ ଲେଖକ

ଯାଜପୁର ସହରକୁ କିଛି ବର୍ଷ ପାଇଁ ଯୋଗାଯୋଗ ବିଛିନ୍ନ ହୋଇଯାଇଥିଲା । ବୁଢା ନଈ ଯାଜପୁର ଜିଲ୍ଲାକୁ ପ୍ରବେଶ କରିଥିବାବେଳେ ମୂଳ ବୈତରଣୀ ଭଦ୍ରକ ଓ ଯାଜପୁର ଜିଲ୍ଲାର ସୀମାଦେଇ ଯାଜପୁର ସହର ଅଭିମୁଖେ ଯାତ୍ରା କରିଛି । ବୈତରଣୀ ଓ ବୁଢା ନଈ ମଧ୍ୟରେ ଏକ ଦ୍ୱୀପାଞ୍ଚଳ ସୃଷ୍ଟି ହୋଇଛି । ଏହି ଦ୍ୱୀପାଞ୍ଚଳ ଗ୍ରାମର ନାଁ ମାଳଆନନ୍ଦପୁର । ଏଠାକାର ଚାଷ ଜମି ଖୁବ୍ ଉର୍ବର । ଏଠାରେ ପ୍ରଚୁର ମାତ୍ରାରେ ଧାନ, ପନିପରିବା, ଡାଲି ଓ ତୈଳବୀଜ ଚାଷ ହୋଇଥାଏ ।

## ବୈତରଣୀ ନଦୀ ଉପତ୍ୟକାର ପ୍ରାଚୀନ ବୌଦ୍ଧପୀଠ; ଷୋଳମପୁର ଓ ଏହାର ଐତିହାସିକ ଗୁରୁତ୍ୱ

*(The Buddhist place Solampur and its historical value)*

ଭଦ୍ରକ ଜିଲ୍ଲାର ଭଣ୍ଡାରିପୋଖରୀ ବ୍ଲକ୍‌ରେ ପୁଣ୍ୟତୋୟା **ବୈତରଣୀ** ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ଐତିହାସିକ ଓ ପ୍ରାଚୀନ ବୌଦ୍ଧକ୍ଷେତ୍ର, ଷୋଳମପୁର । ଯାଜପୁର ସହରର ଦଶାଶ୍ୱମଧ



ଷୋଳମପୁର ସଚ୍ଛେଶ୍ୱରୀ ମନ୍ଦିର ସାମ୍ନାରେ ଲେଖକ



**ଷୋଳମପୁର ରଘୁନାଥ ମନ୍ଦିର କାଛରେ ଶୋଭା ପାଉଥିବା ବୌଦ୍ଧମୂର୍ତ୍ତି**

ଘାଟର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲାରେ ଏହି ପ୍ରସିଦ୍ଧ ପୀଠଟି ଅବସ୍ଥିତ । ତତ୍କାଳୀନ ବିରଜାମଣ୍ଡଳ ଅଧୀନରେ ଷୋଳମପୁର ଏକ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧବିହାର ଭାବେ ମୁଣ୍ଡ ଟେକିଥିଲା । ଯାଜପୁର ଜିଲ୍ଲାର ବିଶ୍ୱପ୍ରସିଦ୍ଧ ରତ୍ନଗିରି, ଉଦୟଗିରି ଓ ଲଳିତଗିରି (କଟକ ଜିଲ୍ଲା) ହୀରକ ତ୍ରିଭୁଜ ସହିତ ଷୋଳମପୁର ବୌଦ୍ଧ କ୍ଷେତ୍ରର ଏକ ନିବିଡ଼ ସଂପର୍କ ରହିଛି । ଏହି ସମସ୍ତ ବୌଦ୍ଧକ୍ଷେତ୍ର ବୈତରଣୀ ନଦୀ ଅବବାହିକା ଓ ଏହାର ଆଖପାଖ ଅଞ୍ଚଳରେ ଅବସ୍ଥିତ ।

ଭୌମକରବଂଶୀ ରାଜା ପ୍ରଥମ ଶୁଭକର ଦେବ (ଖ୍ରୀ·ଅ·୭୯୦-ଖ୍ରୀ·ଅ·୮୦୦)ଙ୍କ ନେଉଳପୁର





**ଷୋଳମପୁରରୁ ଉଦ୍ଧାର କରାଯାଇଥିବା ବୌଦ୍ଧମୂର୍ତ୍ତି**




ସଛେଶ୍ୱରୀ ମନ୍ଦିରରେ ଥିବା ବୁଦ୍ଧମୂର୍ତ୍ତି

(ବର୍ତ୍ତମାନ ଯାଜପୁର ଜିଲ୍ଲାର ଧର୍ମଶାଳା ବ୍ଲକ୍ ଅନ୍ତର୍ଗତ) ତାମ୍ରଶାସନରେ ଷୋଳମପୁର ବୌଦ୍ଧକ୍ଷେତ୍ର ସଂପର୍କରେ ଉଲ୍ଲେଖ ରହିଛି । ପ୍ରଥମ ଶୁଭକର ଦେବ ଜଣେ ବୌଦ୍ଧ ଉପାସକ ଥିଲେ । ସେହିଭଳି ସୋମବଂଶର ଶେଷ ରାଜା କର୍ଣ୍ଣଦେବ (ଖ୍ରୀ.ଅ.୧୧୦୦-ଖ୍ରୀ.ଅ.୧୧୧୦)ଙ୍କ ରତ୍ନଗିରି ତାମ୍ରଶାସନରେ ଷୋଳମପୁର ମହାବିହାର (ବୌଦ୍ଧବିହାର) ସଂପର୍କରେ ମଧ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉଲ୍ଲେଖ ରହିଛି । କର୍ଣ୍ଣଦେବ ଏଠାରେ ରାଣୀହଂସପୁର ପ୍ରତିଷ୍ଠା କରିଥିଲେ ଏବଂ ଏହାର ଷୋହଳଟି ମୁଖ ରହିଥିଲା । ଏହି ଅନୁସାରେ ଏହାର ନାମ ଷୋଳମପୁର ହୋଇଛି ବୋଲି କୁହାଯାଏ । ଆହୁରି ମଧ୍ୟ ସୋମବଂଶୀ ସମ୍ରାଟ ପ୍ରଥମ ଯଯାତି କେଶରୀ (ଖ୍ରୀ.ଅ.୯୨୨-ଖ୍ରୀ.ଅ.୯୫୫)ଙ୍କ ଏହା ୧୬ତମ ଗଡ଼ ଥିବାରୁ ଏହାର ନାମ ଷୋଳମପୁର ହୋଇଛି ବୋଲି କିଛି ଗବେଷକ ଦାବି କରନ୍ତି ।





ସଛେଶ୍ୱରୀ ମନ୍ଦିରରେ ଥିବା ବୁଦ୍ଧମୂର୍ତ୍ତି



**ଷୋଳମପୁର ରଘୁନାଥ ମନ୍ଦିର କାଛରେ ଶୋଭା ପାଉଥିବା ବୌଦ୍ଧମୂର୍ତ୍ତି**

ଷୋଳମପୁରରୁ ବହୁ ସଂଖ୍ୟା ବୌଦ୍ଧମୂର୍ତ୍ତି ଉଦ୍ଧାର କରାଯାଇଛି । ଏହିସବୁ ବୁଦ୍ଧ ମୂର୍ତ୍ତି ମହାଯାନ ଓ ତନ୍ତ୍ରଯାନ ସଂପ୍ରଦାୟର ଏବଂ ଅଷ୍ଟମ ଶତାବ୍ଦୀର ବୋଲି ବିଚାର କରାଯାଉଛି । ଷୋଳମପୁର ଗ୍ରାମରୁ ଭୌମକର ଯୁଗୀୟ ବୌଦ୍ଧ ବିହାର ଏବଂ ବହୁ ସଂଖ୍ୟାରେ ବୌଦ୍ଧ ମୂର୍ତ୍ତି, ତାରା, ଜାମ୍ଭଳ, ଜାଙ୍ଗୁଳା, ମଞ୍ଜୁଶ୍ରୀ ଆଦି ମୂର୍ତ୍ତିମାନ ଉଦ୍ଧାର କରାଯାଇଛି । ବୌଦ୍ଧ ଧର୍ମ ପ୍ରଭାବଶୂନ୍ୟ ହୋଇଯିବାରୁ ଅନେକ ବୌଦ୍ଧ ଦେବଦେବୀ ହିନ୍ଦୁମାନଙ୍କ ଦ୍ୱାରା ପୂଜା ପାଇଆସୁଛନ୍ତି । ସଂଭବତଃ, ବୌଦ୍ଧ ଦେବୀ ଜାଙ୍ଗୁଳା ପରବର୍ତ୍ତୀ ସମୟରେ ହିନ୍ଦୁମାନଙ୍କ ଦ୍ୱାରା 'ଜାଗୁଳେଇ' ଠାକୁରାଣୀ ଭାବେ ପୂଜା ପାଇ ଆସୁଛନ୍ତି ।

ଷୋଳମପୁରରେ ପ୍ରଥମ ଶୁଭକର ଦେବ (ଖ୍ରୀ·ଅ·୭୯୦–ଖ୍ରୀ·ଅ·୮୦୦) ଏକ ବୌଦ୍ଧ ବିହାର ନିର୍ମାଣ କରି ତହିଁରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ଏହି ମୂର୍ତ୍ତିରେ ଭୌମକର ଶାସନ ସଂପର୍କରେ ଶିଳାଲେଖ ମଧ୍ୟ ରହିଛି । ଅବଲୋକିତେଶ୍ୱର ମୂର୍ତ୍ତିଟି ବର୍ତ୍ତମାନ ଷୋଳମପୁର ରଘୁନାଥ ମନ୍ଦିରରେ ସ୍ଥାପିତ ହୋଇଥିବାର ଦେଖାଯାଏ । ଏହି ଦୃଷ୍ଟିରୁ ଷୋଳମପୁର ଦିନେ ଭୌମକରମାନଙ୍କର ପ୍ରାଚୀନ ରାଜଧାନୀ ଥିଲା ବୋଲି ବିଚାର କରାଯାଏ । ଏଠାରେ ଭୌମବଂଶୀଙ୍କର ରାଜପ୍ରାସାଦର ଧ୍ୱଂସାବଶେଷ ମଧ୍ୟ ଦେଖିବାକୁ ମିଳିଥାଏ । ଉପଯୁକ୍ତ ସଂରକ୍ଷଣ ଅଭାବରୁ ଏଠାରେ ଥିବା ଅଧିକାଂଶ ବୁଦ୍ଧମୂର୍ତ୍ତି ଧ୍ୱଂସ ପାଇଗଲାଣି । ଭୌମକରମାନଙ୍କ ରାଜତ୍ୱ କାଳରେ ବିରଜା ମଣ୍ଡଳରେ ବୌଦ୍ଧ ଧର୍ମର ପ୍ରସାର ଘଟିଥିଲା । ତତ୍କାଳୀନ ବିରଜା ମଣ୍ଡଳ ଅନ୍ତର୍ଗତ ରତ୍ନଗିରି, ଲଳିତଗିରି, ଉଦୟଗିରି, ଲାଙ୍ଗୁଡ଼ି, ରାଧାନଗର, ଏରଡ଼ା, ଖଡ଼ିପଦା, ଷୋଳମପୁର, ତରାଙ୍ଗ, ଶ୍ରୀରାମପୁର, ଶୀତଳେଶ୍ୱର, ପଞ୍ଚମାଧବ ଓ ନପଙ୍ଗ ଆଦି ସ୍ଥାନରେ ବୌଦ୍ଧ ଧର୍ମର ଅଂଶବିଶେଷ ଦେଖିବାକୁ

ମିଳିଥାଏ । ବର୍ତ୍ତମାନ ରତ୍ନଗିରି, ଉଦୟଗିରି, ଲାଙ୍ଗୁଡ଼ି, ରାଧାନଗର, ଏରଡ଼ା, ତରାଙ୍ଗ, ଶ୍ରୀରାମପୁର, ଶୀତଳେଶ୍ୱର, ସନ୍ଥମାଧବ ଆଦି ସ୍ଥାନ ଯାଜପୁର ଜିଲ୍ଲାରେ ଥିବାବେଳେ ଖଡ଼ିପଦା, ନପଙ୍ଗ, ଷୋଳମପୁର ଭଦ୍ରକ ଜିଲ୍ଲା ଏବଂ ଲଳିତଗିରି କଟକ ଜିଲ୍ଲାରେ ରହିଛି ।

ଷୋଳମପୁରରୁ ଉଦ୍ଧାର କରାଯାଇଥିବା କ୍ଲୋରାଇଟ୍ ପଥରରେ ନିର୍ମିତ 'ବଜ୍ରସତ୍ତ୍ୱ'ଙ୍କ ମୂର୍ତ୍ତି ବର୍ତ୍ତମାନ କଲିକତା ସଂଗ୍ରହାଳୟରେ ରହିଛି । ଏହି ମୂର୍ତ୍ତିଟି ରତ୍ନଗିରି ବୁଦ୍ଧମୂର୍ତ୍ତି ଶୈଳୀର ଏବଂ ଏହା ଏକାଦଶ ଶତାବ୍ଦୀର ବୋଲି କୁହାଯାଉଛି ।

ଷୋଳମପୁରରୁ ଇଟା ନିର୍ମିତ ଏକ ଭଗ୍ନ ଦୁର୍ଗ ଉଦ୍ଧାର କରାଯାଇଛି ବୋଲି କୁହାଯାଉଛି । ମାତ୍ର ଏହା ଦୃଶ୍ୟମାନ ହୁଏନି । ଏହି ଗାଁରେ ଏଭଳି କୌଣସି ଇଟା ନିର୍ମିତ ଭଗ୍ନ ଦୁର୍ଗର ସ୍ଥିତି ନଥିବା ଜଣାଯାଏ, ମାତ୍ର ଏହାର ପ୍ରତ୍ନତାତ୍ତ୍ୱିକ ଖନନ କରାଯାଇପାରିଲେ ଅନେକ ତଥ୍ୟ ଉନ୍ମୋଚିତ ହୋଇପାରିବ । ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ (ଖ୍ରୀ.ଅ.୧୪୩୫-ଖ୍ରୀ.ଅ.୧୪୬୭)ଙ୍କ ଦ୍ୱାରା ଏହି ଦୁର୍ଗ ନିର୍ମାଣ କରାଯାଇଥିଲା ବୋଲି ଐତିହାସିକମାନେ ଦାବି କରନ୍ତି । ଦୁର୍ଗ ମଧ୍ୟରେ ରାଜାଙ୍କର ଏକ ସମାଧି ରହିଛି ଏବଂ ଏଠାରେ ଏକ ଭଗ୍ନ ମନ୍ଦିର ମଧ୍ୟ ଦେଖାଯାଏ । ମୋଗଲ ଶାସନ ସମୟରେ ବାହ୍ୟ ଆକ୍ରମଣକାରୀଙ୍କ ଦ୍ୱାରା ଏହି ଦୁର୍ଗ ଓ ମନ୍ଦିର ଧ୍ୱଂସ ପାଇଯାଇଥିବା ଅନୁମାନ କରାଯାଏ ।

**ରଘୁନାଥଜିଉ ମନ୍ଦିର :** ଷୋଳମପୁରର ରଘୁନାଥଜିଉ ମନ୍ଦିର ଓଡ଼ିଶାର ଏକ ପ୍ରାଚୀନ ବିଷ୍ଣୁ କ୍ଷେତ୍ର ଭାବେ ଜଣାଶୁଣା । ଏଠାରେ ମୁଖ୍ୟ ଦେବତା ଭାବେ ପ୍ରଭୁ ରାମଚନ୍ଦ୍ର ପୂଜା ପାଉଥିଲେ ମଧ୍ୟ ମନ୍ଦିର ପାଖରେ ଅନେକ ବୁଦ୍ଧ ମୂର୍ତ୍ତି ଦେଖିବାକୁ ମିଳିଥାଏ । ସେମାନଙ୍କ ମଧ୍ୟରୁ ଭୂମିସ୍ପର୍ଶ ମୁଦ୍ରାରେ ନିର୍ମିତ ଗୌତମ ବୁଦ୍ଧଙ୍କର ଏକ ବିଶାଳ ମୂର୍ତ୍ତିର ନିର୍ମାଣ ଶୈଳୀ ଖୁବ୍ ନିଆରା । ଗୌତମଙ୍କ ମାତା ମାୟାଦେବୀ ବୁଦ୍ଧଙ୍କୁ ଜନ୍ମ ଦେଉଥିବାର ଅନ୍ୟ ଏକ ପ୍ରାଚୀନ ମୂର୍ତ୍ତି ମଧ୍ୟ ତତ୍କାଳୀନ ଓଡ଼ିଶାର ମୂର୍ତ୍ତି ଗଠନ କଳା ସଂପର୍କରେ ସୂଚନା ଦେଇଥାଏ । ଏହାର ଉପରକୁ ବୁଦ୍ଧଙ୍କର ଧର୍ମଚକ୍ର ପ୍ରବର୍ତ୍ତନ ମୁଦ୍ରା ରହିଛି । ଏହି ମନ୍ଦିର


ରଘୁନାଥଜିଉ ମନ୍ଦିର

କାଛରେ ବୁଦ୍ଧଙ୍କର ମହାପରିନିର୍ବାଣ ମୁଦ୍ରାର ଏକ ଆକର୍ଷଣୀୟ ମୂର୍ତ୍ତି ଦେଖିବାକୁ ମିଳେ । ବୁଦ୍ଧଙ୍କର ଭୂମିସ୍ପର୍ଶ ମୁଦ୍ରା ମୂର୍ତ୍ତିର ତଳକୁ ବୁଦ୍ଧଙ୍କର ଷଡ଼ ମାନସୀ ମୂର୍ତ୍ତି ରହିଛି । ରଘୁନାଥଜିଉ ମନ୍ଦିର କାଛରେ ଥିବା ବୌଦ୍ଧ ଦେବୀ ତାରା ମୂର୍ତ୍ତି (ତ୍ରିଭଙ୍ଗ ମୁଦ୍ରା)ର ଉପରକୁ ଦୁଇ ଧାଡ଼ିର ଏକ ଶିଳାଲେଖ ରହିଛି । ପ୍ରଥମ ଶୁଭକର ଦେବ (ଖ୍ରୀ·ଅ·୭୯୦-ଖ୍ରୀ·ଅ·୮୦୦)ଙ୍କ ଶାସନ କାଳରେ ଗୁରୁ ରାହୁଦତ୍ତଙ୍କ ଇଛାନୁସାରେ ଏହି ମୂର୍ତ୍ତିଟି ନିର୍ମାଣ ହୋଇଥିଲା ବୋଲି ଏହି ଶିଳାଲେଖରେ ଉଲ୍ଲେଖ ରହିଛି ।

ଏହିସବୁ ମୂର୍ତ୍ତିର ଗଠନ ଶୈଳୀକୁ ଅନୁଧ୍ୟାନ କରାଯାଇ ଏହା ଗୁପ୍ତ ଯୁଗର କିମ୍ବା ତାହାର ପରବର୍ତ୍ତୀ ସମୟର ବୋଲି ନିରୂପଣ କରାଯାଇଛି । ଗୁପ୍ତ ଯୁଗୀୟ ମୂର୍ତ୍ତି ଭାରତର ବିଭିନ୍ନ ସ୍ଥାନରୁ ମିଳିଥିଲେ ମଧ୍ୟ, ଷୋଳମପୁରର ଏହି ପ୍ରାଚୀନ ବୁଦ୍ଧ ମୂର୍ତ୍ତି ଗଠନ ଦୃଷ୍ଟିରୁ ଭିନ୍ନ ଓ ଆକର୍ଷଣୀୟ । ଷୋଳମପୁରର ରଘୁନାଥ ମନ୍ଦିରରେ ବୁଦ୍ଧଙ୍କର ଏକ ବିଶାଳ ଅବଲୋକିତେଶ୍ୱର ମୂର୍ତ୍ତି ରହିଛି । ଯାଜପୁର ଜିଲ୍ଲାର ରତ୍ନଗିରି ଓ ଉଦୟଗିରିରେ ଥିବା ଅବଲୋକିତେଶ୍ୱର ମୂର୍ତ୍ତି ସହ ଏହି ମୂର୍ତ୍ତିର ଖୁବ୍ ସୁକ୍ଷ୍ମ ସାମଞ୍ଜସ୍ୟ ରହିଛି । ରତ୍ନଗିରିରେ ଥିବା ବୁଦ୍ଧ ଦେବୀ ତାରାଙ୍କର 'ତ୍ରିଭଙ୍ଗ ମୂର୍ତ୍ତି' ଭଳି ଏଠାରେ ତାରାଙ୍କର ଏକ ଆକର୍ଷଣୀୟ ତ୍ରିଭଙ୍ଗ ମୂର୍ତ୍ତି ରହିଛି । ଏହି ମନ୍ଦିର କାଛରେ ଦଣ୍ଡାୟମାନ ଅବସ୍ଥାରେ ଅବଲୋକିତେଶ୍ୱର ବୁଦ୍ଧଙ୍କର ଏକ ବିଶାଳ ମୂର୍ତ୍ତି ଦେଖିବାକୁ ମିଳେ । ଏହି ଅବଲୋକିତେଶ୍ୱର ମୂର୍ତ୍ତିର ଉଭୟ ପାର୍ଶ୍ୱରେ ତାରାଙ୍କର ଦୁଇଟି କ୍ଷୁଦ୍ର ମୂର୍ତ୍ତି ରହିଛି ।

ରଘୁନାଥଜିଉ ମନ୍ଦିର ସମ୍ମୁଖରେ ଏକ ଚଉପାଢି ରହିଛି । ଏହାର ପ୍ରସ୍ତର ସ୍ତମ୍ଭ ବେଶ୍ ପ୍ରାଚୀନ । ଗ୍ରାମରେ ରହିଛି ଦୁଇଗୋଟି ଅତି ପ୍ରାଚୀନ ପୁଷ୍କରିଣୀ । ଗୋଟିଏ ହେଉଛି ପ୍ରାଚୀନ କାଳର 'ଦଶାଙ୍କ ପୁଷ୍କରିଣୀ' ଓ ଅନ୍ୟଟି 'ଅମୁହାଁ କୁଣ୍ଡ ବା ରାଣୀ ପଦ୍ମ ପୋଖରୀ' । ଏହାବ୍ୟତୀତ ଗ୍ରାମ ମଧ୍ୟରେ ଏକ ବହୁ ପୁରାତନ ବରଗଛ ରହିଛି । ଏହା ଦୁଇଶହ ବର୍ଷ ପୁରୁଣା ବୋଲି ଗ୍ରାମବାସୀ କହନ୍ତି । ଷୋଳମପୁର ଗ୍ରାମକୁ ଲାଗି ବୈତରଣୀ ନଦୀ କୂଳରେ ଯାଜପୁର ଜିଲ୍ଲାର ପ୍ରସିଦ୍ଧ ବରାହନାଥ ମନ୍ଦିର ରହିଛି । ବରାହନାଥ ମନ୍ଦିର ଓ ବାରୁଣୀ ପଡ଼ିଆ ଯାଜପୁର ଜିଲ୍ଲା ଅନ୍ତର୍ଭୁକ୍ତ ହୋଇଥିଲେ ହେଁ ଏହା ଭଦ୍ରକ ଜିଲ୍ଲାର ଷୋଳମପୁର ଗ୍ରାମକୁ ଲାଗିକରି ରହିଛି ।

**ଷୋଳମପୁର ମହାବିହାର:** ଷୋଳମପୁରର ଉତ୍ତର ଦିଗରେ ଇଟା ନିର୍ମିତ ଏକ ବୌଦ୍ଧ ମହାବିହାର ରହିଛି । ଏହି ବୌଦ୍ଧ ମହାବିହାରଟି ଭୌମକରବଂଶୀ ଶାସନ କାଳରେ ନିର୍ମିତ ହୋଇଥିବାର ଐତିହାସିକମାନେ ବିଚାର କରନ୍ତି । ଏହି ଦିନେ ଏକ ପ୍ରାଚୀନ ବୌଦ୍ଧିକ ଓ ଶିକ୍ଷା କେନ୍ଦ୍ର ଥିଲାବୋଲି ବିଶ୍ୱାସ କରାଯାଏ । ରତ୍ନଗିରି ବୌଦ୍ଧବିହାର ଶୈଳୀରେ ଏହି ମହାବିହାର ନିର୍ମିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏହା ସହିତ ଏଠାରୁ ଅନେକ ବୁଦ୍ଧମୂର୍ତ୍ତି, ଭଗ୍ନ ଟେରାକୋଟା ଉପକରଣ ମଧ୍ୟ ମିଳିଛି । ଏଠାରେ ଅଧିକ ପ୍ରତ୍ନତାତ୍ତ୍ୱିକ ଖନନ କରାଯାଇପାରିଲେ ଷୋଳମପୁର ବୌଦ୍ଧ ମହାବିହାର ସଂପର୍କରେ ଅନେକ ତଥ୍ୟ ଉନ୍ମୋଚିତ ହୋଇପାରନ୍ତା । ବୈତରଣୀ ନଦୀ

କୂଳରେ ଗଢ଼ି ଉଠିଥିବା ବୌଦ୍ଧ ମହାବିହାର ଏବଂ ରତ୍ନଗିରି ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି ।

**ସନ୍ଥେଶ୍ୱରୀ :** ଖୋଳମପୁର ବୌଦ୍ଧ ମହାବିହାରର ପୂର୍ବ ଦିଗରେ ଏକ କ୍ଷୁଦ୍ର ମନ୍ଦିର ରହିଛି । ଏହି ମନ୍ଦିରରେ ବହୁ ସଂଖ୍ୟାରେ ବୁଦ୍ଧ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏଠାରେ ବୋଧିସତ୍ତ୍ୱ, ବୁଦ୍ଧ, ଜାଙ୍ଗୁଳା, ତାରା, ଲୋକେଶ୍ୱର, ଅନେକ କ୍ଷୁଦ୍ର ସ୍ତୁପ ରହିଛି । ଏହିସବୁ ମୂର୍ତ୍ତି ଗୁପ୍ତ ଯୁଗ କିମ୍ବା ପରବର୍ତ୍ତୀ ସମୟର ବୋଲି ଅନୁମାନ କରାଯାଏ । ଏଠାରେ ଥିବା ବୁଦ୍ଧଙ୍କର ଅବଲୋକିତେଶ୍ୱର ଏବଂ ଜାଙ୍ଗୁଳା ମୂର୍ତ୍ତି ନବମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ମୂଳତଃ ସନ୍ଥେଶ୍ୱରୀ ବୌଦ୍ଧ ଦେବୀ ଥିବାବେଳେ ପରବର୍ତ୍ତୀ ସମୟରେ ଏହା ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ଦେବୀ ହେଉଛନ୍ତି ଏକପାଦୀ ଭୈରବୀ ଓ ତାଙ୍କୁ ବିରଜାଙ୍କ ଭଉଣୀ ବୋଲି ବିବେଚନା କରାଯାଇଥାଏ ।



ସନ୍ଥେଶ୍ୱରୀ ମନ୍ଦିର

ସନ୍ଥେଶ୍ୱରୀ (ଶାନ୍ତେଶ୍ୱରୀ)ଙ୍କୁ ନେଇ ସ୍ଥାନୀୟ ଅଞ୍ଚଳରେ ବହୁ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ । ଶାନ୍ତା ନାମରେ ଜଣେ ରାଜ୍ୟକନ୍ୟା ଜନ୍ମଗ୍ରହଣ କରି ଅସୁରମାନଙ୍କ କବଳରୁ ସନ୍ଥମାନଙ୍କୁ ଉଦ୍ଧାର କରିଥିଲେ । ରାଜକନ୍ୟା ଶାନ୍ତା ପରବର୍ତ୍ତୀ କାଳରେ ଶାନ୍ତେଶ୍ୱରୀ ବା ସନ୍ଥେଶ୍ୱରୀ ନାମରେ ପୂଜିତ ହେଲେ ବୋଲି କିମ୍ବଦନ୍ତୀ ରହିଛି । ମାତ୍ର ଏହାର ଐତିହାସିକ ସତ୍ୟତା କେତେ ତାହା ବିତର୍କସାପେକ୍ଷ ।

ଖୋଳମପୁର ଗ୍ରାମରେ ଏହିସବୁ ବିଶେଷତ୍ୱ ରହିଛି । ସେଗୁଡ଼ିକ ହେଲା-

୧. ରଘୁନାଥଜିଉ ମନ୍ଦିର
୨. ପ୍ରାଚୀନ ବୌଦ୍ଧ ମୂର୍ତ୍ତି
୩. ସନ୍ଥେଶ୍ୱରୀ (ଶାନ୍ତେଶ୍ୱରୀ) ମନ୍ଦିର
୪. ଦଶାଙ୍କ ପୁଷ୍କରିଣୀ
୫. ଅମୁହାଁ କୁଣ୍ଡ (ରାଣୀ ପଦ୍ମ ପୋଖରୀ)
୬. ପ୍ରାଚୀନ ଦୁର୍ଗ (ଏବେ ଦୃଶ୍ୟମାନ ହୁଏନି)
୭. ବୁଢ଼ି ମଙ୍ଗଳା ଠାକୁରାଣୀ ପୀଠ
୮. ହିଙ୍ଗୁଳାଇ ପୀଠ



**ଷୋଳମପୁରର ଚଉପାଢି (ମଣ୍ଡପ)**

୯· ବାରୁଣୀ ପଡ଼ିଆ

୧୦· ବରାହ ମନ୍ଦିର (ବର୍ତ୍ତମାନ ଯାଜପୁର ଜିଲ୍ଲାରେ)

୧୧· ଚଉପାଢୀ (ମଣ୍ଡପ)

୧୨· ଶତାୟୁ କଣ୍ଟ ବଟ ବୃକ୍ଷ

୧୩· ହିମସାରମନା ସାହିତ୍ୟ ପରିଷଦ

ଏହି ଗ୍ରାମରେ 'ହିମସାରମନା ସାହିତ୍ୟ ପରିଷଦ' ନାମରେ ଏକ ସାହିତ୍ୟ ଓ ସଂସ୍କୃତି ଭିତ୍ତିକ ଅନୁଷ୍ଠାନ ଗଠନ କରାଯାଇ ଏ ଅଞ୍ଚଳର ପାଲା ସଂସ୍କୃତି, ସାହିତ୍ୟ ଓ ଷୋଳମପୁରର ଇତିହାସ ସଂପର୍କରେ କାର୍ଯ୍ୟ କରିଆସୁଛି ।

**ନପଙ୍ଗର ତାରା ଓ ବୁଦ୍ଧ ମୂର୍ତ୍ତି :** ଷୋଳମପୁର ନିକଟସ୍ଥ ନପଙ୍ଗ ଗ୍ରାମରେ ଥିବା ତାରା ଓ ବୁଦ୍ଧ ମୂର୍ତ୍ତି ଦୁଇଟି ଏବେ ସ୍ଥାନୀୟ ଲୋକଙ୍କ ଦ୍ୱାରା ଯୋଗୀ ଓ ଯୋଗିଆଣୀ ଭାବେ ପୂଜା ପାଉଛନ୍ତି । ଏହି ଦୁଇଟି ବୌଦ୍ଧ ମୂର୍ତ୍ତି ଉପଯୁକ୍ତ ସଂରକ୍ଷଣ ଅଭାବରୁ ଗ୍ରାମର ଶେଷମୁଣ୍ଡରେ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଛନ୍ତି ।

**ଷୋଳମପୁରର ପୌରାଣିକ ଗୁରୁତ୍ୱ :** ଆଦିକବି ଶାରଳା ଦାସଙ୍କ ବିରଚିତ ଓଡ଼ିଆ ମହାଭାରତରେ ମଧ୍ୟ ଷୋଳମପୁର ସଂପର୍କରେ ଉଲ୍ଲେଖ ରହିଛି । ମହାଭାରତର ବନପର୍ବରେ ଏ ସଂପର୍କରେ ସମ୍ୟକ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ପାଣ୍ଡବମାନେ ବୈତରଣୀ ନଦୀର ଦଶାଶ୍ୱମେଧ ଘାଟରେ ସ୍ନାନ କରୁଥିବାବେଳେ ଅପରପାର୍ଶ୍ୱରୁ ମନ୍ତ୍ର ଧ୍ୱନି ଉଚ୍ଚାରଣ ଶୁଣିବାକୁ ପାଇଥିଲେ । ଏହି ବେଦ ମନ୍ତ୍ର ଧ୍ୱନି କେଉଁଠୁ ଆସୁଛି ବୋଲି ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ଜାଣିବାକୁ ଇଚ୍ଛା କରି ଲୋମଶ ମୁନିଙ୍କୁ ପଚାରିଥିଲେ । ଉତ୍ତରରେ ଲୋମଶ ମୁନି ଷୋଳମପୁର ବ୍ରାହ୍ମଣ ଶାସନ ସଂପର୍କରେ ପାଣ୍ଡବମାନଙ୍କୁ ବୁଝାଇଥିଲେ । ସୂଚନାଯୋଗ୍ୟ, ତତ୍କାଳୀନ ବିରଜା ମଣ୍ଡଳ ଅନ୍ତର୍ଗତ ଏହି ଷୋଳମପୁର ବ୍ରାହ୍ମଣ ଶାସନ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଉଥିଲା ବୋଲି ଐତିହାସିକ ନଜିର ମଧ୍ୟ ରହିଛି । ଷୋଳମପୁର ନିକଟସ୍ଥ ଭାରଦା କଟକ ଓ ଖଡ଼ିପଦାର ମଧ୍ୟ ପୌରାଣିକ ଗୁରୁତ୍ୱ ଅନୁଭବ କରିହୁଏ ।

[ତଥ୍ୟ ସହାୟତା

ଉମାକାନ୍ତ ଜେନା, ପୂଜକ, ରଘୁନାଥଜିଉ ମନ୍ଦିର, ସୁବାସିନୀ ନାୟକ, ନଳିନୀକାନ୍ତ ଜେନା, ପ୍ରଶାନ୍ତ ନାୟକ, ଦାମୋଦର ନାୟକ, ଗ୍ରାମ: ଷୋଳମପୁର, ବ୍ଲକ୍: ଭଣ୍ଡାରିପୋଖରୀ, ଭଦ୍ରକ ଏବଂ ନାରାୟଣ ଚନ୍ଦ୍ର ସାମଲ, ଗ୍ରାମ: ମାଳଦା, ଭଣ୍ଡାରୀପୋଖରୀ, ଭଦ୍ରକ

*-Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication,Orissa, Cuttack (1992), p-789, 790.*]

## ସାରଳା ମହାଭାରତର ଭାରଦା ଉପାଖ୍ୟାନ: ଭାରଦା କଟକ ଓ ଖଡ଼ିପଦା ବୌଦ୍ଧ ପୀଠ

*(The Buddhist place Varada Katak and Khadipada)*

ଷୋଳମପୁରକୁ ବାଦ୍ ଦେଲେ ଭଦ୍ରକ ଜିଲ୍ଲାରେ ବୈତରଣୀ ନଦୀ ନିମ୍ନ ଅବବାହିକାର ଆଉ ଏକ ପ୍ରାଚୀନ ଐତିହାସିକ ଏବଂ ପ୍ରସିଦ୍ଧ ବୌଦ୍ଧ ତନ୍ତ୍ରପୀଠ ହେଉଛି **ଭାରଦା କଟକ** । ସାରଳା ମହାଭାରତର 'ଭାରଦା ଉପାଖ୍ୟାନ'ଟି ମଧ୍ୟ ଏହି କ୍ଷେତ୍ର ସହିତ ଜଡ଼ିତ । ଭାରଦା କଟକକୁ ଲାଗି ରହିଛି ଅନ୍ୟ ଏକ ପୁରାତନ କ୍ଷେତ୍ର, ଖଡ଼ିପଦା ବୌଦ୍ଧ ପୀଠ ।

ଭଦ୍ରକ ଜିଲ୍ଲାର ଧାମନଗର (ଧମ୍ମନଗର) ବ୍ଲକ୍ ଅନ୍ତର୍ଗତ କରଦା ଗ୍ରାମପଞ୍ଚାୟତର ମୁହାଁଣପଡ଼ା ଗ୍ରାମରେ ବୈତରଣୀର ଶାଖା ଗେଙ୍ଗୁଟି ନଦୀ କୂଳରେ ପ୍ରସିଦ୍ଧ ଭାରଦା କଟକ ଐତିହାସିକସ୍ଥଳୀ ଅବସ୍ଥିତ । ଧାମନଗରର ଦକ୍ଷିଣ-ପଶ୍ଚିମକୁ ପ୍ରାୟ ପାଞ୍ଚ କିଲୋମିଟର ଏବଂ ଯାଜପୁର ସହରର ଉତ୍ତର-ପୂର୍ବକୁ ପ୍ରାୟ ବାର କିଲୋମିଟର ଦୂରତାରେ ଭାରଦା କଟକ ରହିଛି । ଏହାର ଦକ୍ଷିଣରେ



**ରାଜ୍ୟ ସଂଗ୍ରହାଳୟରେ ଅବସ୍ଥାପିତ ଖଡ଼ିପଦା (ଭାରଦାକଟକ)ର ବିଶାଳ ବୌଦ୍ଧମୂର୍ତ୍ତି**

ମୁହାଁଣପଡ଼ା, ଉତ୍ତରରେ ଦୋବଲ, ପଶ୍ଚିମରେ ଖଡ଼ିପଦା ଓ ପୂର୍ବରେ ଖରାଖାଇ ଗ୍ରାମ । ପୂର୍ବେ ଏହା ଖଡ଼ିପଦା ଅନ୍ତର୍ଗତ ନନ୍ଦବଂଶର ଜମିଦାରୀ ଅନ୍ତର୍ଭୁକ୍ତ ଥିବାରୁ ସମସ୍ତ ଐତିହାସିକ ଦଲିଲରେ ଏହାର ନାମ ଭାରଦା କଟକ ପରିବର୍ତ୍ତେ ଖଡ଼ିପଦା ବୋଲି ଉଲ୍ଲେଖ କରାଯାଉଛି ।

ଭାରଦା କଟକଟିର ଅନେକ ଐତିହାସିକ ଗୁରୁତ୍ୱ ରହିଛି । ଏଠାରେ ବର୍ତ୍ତମାନ ମା' ବରୁଣେଇ ଓ କନକ ଦୁର୍ଗା ଠାକୁରାଣୀ ପୂଜା ପାଉଛନ୍ତି । ଏଠାରେ ପ୍ରାଚୀନ ଭୌମକର ଶାସନ ସମୟର ଅନେକ ବୌଦ୍ଧ ମୂର୍ତ୍ତି ଭଗ୍ନ ଅବସ୍ଥାରେ ଦେଖିବାକୁ ମିଳେ । ଭାରଦା କଟକରୁ ଉଦ୍ଧାର କରାଯାଇଥିବା ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧଙ୍କ ଏକ ବୃହତ୍ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ଅବସ୍ଥାପିତ ଅଛି । ତେବେ ଏହାକୁ ଖଡ଼ିପଦାରୁ ଉଦ୍ଧାର କରାଯାଇଥିବା କଥା ସଂଗ୍ରହାଳୟ ପକ୍ଷରୁ ଦର୍ଶାଯାଇଛି ।




**ଖଡ଼ିପଦା ଗ୍ରାମରେ ପୂଜା ପାଉଥିବା ବୌଦ୍ଧମୂର୍ତ୍ତି**

ପଞ୍ଚମ-ଷଷ୍ଠ ଶତାବ୍ଦୀ ଅର୍ଥାତ୍ ଗୁପ୍ତୋତ୍ତର କାଳରେ ଉଡ୍ର ବା ଆଧୁନିକ ଓଡ଼ିଶାରେ ଉତ୍ତର-ପୂର୍ବାଞ୍ଚଳରେ ବହୁ ସଂଖ୍ୟକ ବୌଦ୍ଧବିହାର ଗଢି ଉଠିଥିବାର ପ୍ରମାଣ ବୌଦ୍ଧଶାସ୍ତ୍ରମାନଙ୍କରୁ ମିଳିଥାଏ । ଏହି ସମୟରେ ଆଚାର୍ଯ୍ୟ ଦିଙ୍ନାଗଙ୍କର ଶିଷ୍ୟ ଭଦ୍ରପାଳିତ ଅନେକ ବୌଦ୍ଧ ବିହାର ଓ ମଠ ନିର୍ମାଣ କରିଥିଲେ । ତାଙ୍କରି ନାମାନୁସାରେ ଏହି ସ୍ଥାନର ନାମ ଭଦ୍ର କଟକ ବା ଭାରଦା କଟକ ହୋଇଥିବା ଅନୁମାନ କରାଯାଏ । ପରବର୍ତ୍ତୀ କାଳରେ ଭାରଦା କଟକ ସ୍ୱନାମରେ ପ୍ରସିଦ୍ଧିଲାଭ କରିବା ପରିବର୍ତ୍ତେ ଐତିହାସିକମାନଙ୍କ ନିକଟରେ ଖଡ଼ିପଦା ନାମରେ ପରିଚିତ ହୋଇଛି । କିନ୍ତୁ ଧମ୍ନନଗର (ଧାମ୍‌ନଗର) ଓ ଯାଜପୁର ଅଞ୍ଚଳରେ ଏହି ସ୍ଥାନ ଏବେ ବି ଭାରଦା କଟକ ନାମରେ ପ୍ରସିଦ୍ଧ । ଏହା ଏକ ବୌଦ୍ଧପୀଠ ପରିବର୍ତ୍ତେ ସାରଳା ମହାଭାରତର ଭବିଷ୍ୟତବକ୍ତା ଭାରଦା ଓ ତା'ର ପତ୍ନୀ ଭାରଦୀର ବାସସ୍ଥାନ ରୂପେ ବେଶି ଜଣାଶୁଣା । କେହିକେହି ଏହି ସ୍ଥାନକୁ ଭାରଦା-ଭାରଦୀ ମଧ୍ୟ କହନ୍ତି । ଏଠାରୁ ରାଜ୍ୟ ସଂଗ୍ରହାଳୟକୁ ସ୍ଥାନାନ୍ତରିତ ୫ଗୋଟି ବୌଦ୍ଧ ମୂର୍ତ୍ତି ମଧ୍ୟରୁ ୨ଟିକୁ ଭାରଦା ଓ ଭାରଦୀ ବୋଲି ଚିହ୍ନିତ କରାଯାଇଛି । ବାସ୍ତବରେ ସେ ଦୁଇଟି ମୂର୍ତ୍ତି ବୁଦ୍ଧ ମୂର୍ତ୍ତି ବୋଲି ଗବେଷକମାନେ ଦାବି କରନ୍ତି ।

ସାରଳା ମହାଭାରତର ଉଦ୍‌ଯୋଗ ପର୍ବରେ 'ଭାରଦା ଉପାଖ୍ୟାନ' ନାମରେ ଦୁଇଟି ଅଧ୍ୟାୟ ରହିଛି । ଭାରଦା ଜଣେ ଥିଲେ ଭବିଷ୍ୟଦ୍ରଷ୍ଟା । ମହାଭାରତ ଯୁଦ୍ଧର ପରିଣତି ଜାଣିବା ପାଇଁ




ଖଡ଼ିପଦା ଗ୍ରାମରେ ପୂଜା ପାଉଥିବା ବୌଦ୍ଧମୂର୍ତ୍ତି

ସହଦେବଙ୍କ ପରାମର୍ଶରେ ଯାଜପୁରର ପଶ୍ଚିମ ଦିଗରେ ଅବସ୍ଥିତ ଧବଳି ପର୍ବତ କୋଳରେ ବାସ କରୁଥିବା ଭାରଦାଙ୍କୁ ଆଣିବା ପାଇଁ ସମ୍ରାଟ ଯୁଧିଷ୍ଠିର ଭୀମଙ୍କୁ ପଠାଇଥିଲେ । ମାତ୍ର ଭୀମ ସେଠାକୁ ଆସିବା ପରେ ଭାରଦା କରିଥିବା କିଛି ଗୁରୁତର ଅପରାଧ ତାଙ୍କ ନଜରକୁ ଆସିଲା । ଏହି




ଖଡ଼ିପଦା ଗ୍ରାମରେ ପୂଜା ପାଉଥିବା ବୌଦ୍ଧମୂର୍ତ୍ତି



ଅପରାଧ ପାଇଁ ଭୀମ ଭାରଦାଙ୍କୁ ବନ୍ଦୀ କରିଥିଲେ ।

ଭାରଦାର ଅପରାଧ ଥିଲା, ସେ ଜଣେ ପୁରୁଷ ହୋଇ ମଧ୍ୟ ନିଜ ସ୍ତ୍ରୀର ଦାସ ଭଳି ଖଟୁଥିଲା ଏବଂ ପତ୍ନୀକୁ ବେଶ୍ୟାବୃତ୍ତି କାର୍ଯ୍ୟରେ ନିୟୋଜିତ ହେବାରେ ସହାୟକ ହେଉଥିଲା । ଭାରଦା ନିଜ ପତ୍ନୀକୁ ସ୍ନାନ ଓ ବେଶ କରାଇଦେବା, ଆସନ ଓ ଭୋଜନ ଆଦି ଦେବା, ଶୟନ ସୁଖ ଲାଗି ଶଯ୍ୟା କରିବା, ପତ୍ନୀର ପାଦସେବା ଆଦି କାର୍ଯ୍ୟ କରୁଥିଲେ, ଯାହା କି ଜଣେ ସ୍ୱାମୀ ତା' ସ୍ତ୍ରୀ ପ୍ରତି ଏଭଳି କରିବା ଉଚିତ୍ ନୁହେଁ ବୋଲି ତତ୍କାଳୀନ ସମାଜରେ ବିଚାର କରାଯାଉଥିଲା । ଅଧିକନ୍ତୁ ଭାରଦା ତା'ର ସ୍ତ୍ରୀକୁ ପର ପୁରୁଷର ଭୋଗ୍ୟ ହେବା ପାଇଁ ଘର ଭିତରେ ଛାଡ଼ି ନିଜେ ଦ୍ୱାର ମୁହଁରେ ଜଗି ବସୁଥିଲା । ଏଭଳି ବିପରୀତ ଓ ଜଘନ୍ୟ କାର୍ଯ୍ୟ ଜଣେ ପୁରୁଷ ପକ୍ଷେ ନିନ୍ଦାଜନକ ହେବା କାରଣରୁ ପାଣ୍ଡବମାନେ ତାଙ୍କୁ ମୃତ୍ୟୁ ଦଣ୍ଡ ଦେଇଥିଲେ । ଏଭଳି ଏକ ଉଦ୍ଭଟ ପ୍ରସଙ୍ଗ ଓ ଫାର୍ସ ସାରଳା ଦାସଙ୍କ ଓଡ଼ିଆ ମହାଭାରତରେ ଦେଖିବାକୁ ମିଳିଥାଏ । ଭାରଦା ଉପାଖ୍ୟାନଟି ମୂଳ ସଂସ୍କୃତ ମହା ଭାରତରେ ନଥିଲାବେଳେ ସାରଳା ଦାସ ଏହାକୁ ଯୋଡ଼ିଛନ୍ତି ।ତତ୍କାଳୀନ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବରୁ ସାରଳା ଦାସ ମୁକ୍ତ ନଥିବାରୁ ସେ ଅନେକ ସ୍ଥାନରେ ବୌଦ୍ଧ କାହାଣୀକୁ ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି । ଅପରପକ୍ଷେ, ଭାରଦା ଜଣେ ସହଜଯାନୀ ତନ୍ତ୍ରସାଧକ ଓ ତାର ସ୍ତ୍ରୀ ଜଣେ ଯୋଗିନୀ ବା ସହଜ ସୁନ୍ଦରୀ ଥିବାର ଯୁକ୍ତି ଉପସ୍ଥାପନ କରାଯାଇଥାଏ । ଏହା ଅଯୌକ୍ତିକ ମନେହୁଏ ନାହିଁ ମଧ୍ୟ ।

ଭାରଦାକଟକର ବରୁଣେଇ ମନ୍ଦିର ସଂଲଗ୍ନ ପଡ଼ିଆରେ ଏବେ ବି ବହୁ ସଂଖ୍ୟାରେ ବିଶାଳ ଆକାରର ପଥର ଖଣ୍ଡ ଏବଂ ବହୁ ପ୍ରାଚୀନ କାରୁକାର୍ଯ୍ୟ ଏଣେତେଣେ ପଡ଼ିରହିଥିବାର ଦେଖିବାକୁ ମିଳିଥାଏ । ଆହୁରିମଧ୍ୟ, ଭାରଦାକଟକରେ ଏକ ପ୍ରାଚୀନ ବୁଦ୍ଧସ୍ତୁପର କଙ୍କାଳ ଆବିଷ୍କୃତ ହୋଇଛି ।

ଭାରଦାକଟକ ଦିନେ ଏକ ବୌଦ୍ଧବିହାର ଥିଲା ବୋଲି ଦାବି କରାଯାଉଛି । ଭାରଦାକଟକର ବରୁଣେଇ ମନ୍ଦିରଟି ଏକ ଭଗ୍ନ ବୌଦ୍ଧସ୍ତୂପର କଙ୍କାଳ ଉପରେ ନିର୍ମିତ ହୋଇଛି । ଏଠାରେ ଅନେକ ବୌଦ୍ଧ ମୂର୍ତ୍ତି ଓ କୀର୍ତ୍ତିରାଜି ଏଣେତେଣେ ବିଛାଡ଼ି ହୋଇ ପଡିରହିଛି । ଭାରଦା କଟକରୁ ଉଦ୍ଧୃତ ବହୁ ବୌଦ୍ଧ ଦେବଦେବୀ ମୂର୍ତ୍ତି ଓ ବୌଦ୍ଧବିହାରର ମୁଖ୍ୟ ଦ୍ୱାରବନ୍ଧ ଆଦି ଭାରତ ଓ ଭାରତ ବାହାରେ ଥିବା ବିଭିନ୍ନ ସଂଗ୍ରହାଳୟରେ ରହିଛି ।

ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍‌ରେ ବୈତରଣୀ ନଦୀ କୂଳରେ ଐତିହାସିକ ଭାରଦା କଟକକୁ ଲାଗି ଏହି ଖଡ଼ିପଦା ବୌଦ୍ଧ କ୍ଷେତ୍ରଟି ଅବସ୍ଥିତ । ବୌଦ୍ଧ ଧର୍ମର ମହାଯାନ ସଂପ୍ରଦାୟର ଏହି କ୍ଷେତ୍ରଟି ଅତି ପ୍ରାଚୀନ ବୌଦ୍ଧ ପୀଠ ଭାବେ ଜଣାଶୁଣା ।

ଖଡ଼ିପଦା ଗ୍ରାମର ଗ୍ରାମଦେବୀ ଭାବେ ମା' ସୁବର୍ଣ୍ଣମୁଖୀ (ସୁନା ମୁହିଁ) ପୂଜା ପାଇ ଆସୁଛନ୍ତି । ଏଠାରେ ସୁବର୍ଣ୍ଣମୁଖୀଙ୍କର ଏକ କ୍ଷୁଦ୍ର ମନ୍ଦିର ରହିଛି । ଦେବୀ ସୁବର୍ଣ୍ଣମୁଖୀଙ୍କ ମୂର୍ତ୍ତିଟିର ଗଠନ ବେଶ୍ ନିଆରା । ମୂର୍ତ୍ତିଟିର ଉପରେ ସାତଗୋଟି ସର୍ପ ଫଣା ଟେକି ରହିଥିବାରୁ ଏହାକୁ ମନସା ଦେବୀଙ୍କ ମୂର୍ତ୍ତି ବୋଲି ପରିକଳ୍ପନା କରାଯାଇଥାଏ । ମୂର୍ତ୍ତିଟିର ହାତରେ ସର୍ପ ରହିଥିବାବେଳେ ଦେବୀ ସର୍ପ ଉପରେ ମଧ୍ୟ ଉପବିଷ୍ଟ କରିଛନ୍ତି । ଏହା ସହିତ ସୁବର୍ଣ୍ଣମୁଖୀ ମନ୍ଦିର ପରିସରରେ ଅବଲୋକିତେଶ୍ୱର ବୁଦ୍ଧଙ୍କର ଏକ କମନୀୟ ମୂର୍ତ୍ତି ସମେତ ଅନେକ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ରହିଛି । ଏହି ଅବଲୋକିତେଶ୍ୱର ବୁଦ୍ଧ ପଦ୍ମାସନରେ ବସିଥିବାବେଳେ ଗଳାରେ ରୁଦ୍ରାକ୍ଷ ଏବଂ ଏହାଙ୍କର ଚାରିଗୋଟି ହାତ ରହିଛି । ସୁବର୍ଣ୍ଣମୁଖୀ ଠାକୁରାଣୀଙ୍କ ମୂର୍ତ୍ତିର ପାର୍ଶ୍ୱରେ ବିରଜାଙ୍କ ଏକ ମହିଷାମର୍ଦ୍ଦିନି ମୂର୍ତ୍ତି ସମେତ ବହୁ ସଂଖ୍ୟାରେ ଭଗ୍ନ ବୌଦ୍ଧ ମୂର୍ତ୍ତି ଦେଖିବାକୁ ମିଳିଥାଏ ।

ଖଡ଼ିପଦା ଓ ଭାରଦାକଟକ ବୌଦ୍ଧପୀଠଟି ପ୍ରସିଦ୍ଧ ଷୋଳମପୁରର ଖୁବ୍ ନିକଟରେ ଅବସ୍ଥିତ । ଭାରଦାକଟକ ବୌଦ୍ଧ ପୀଠଟି ଷୋଳମପୁର ବୌଦ୍ଧ ମହାବିହାରରୁ ମାତ୍ର ୧୦ କିଲୋମିଟର ଦୂରରେ ଅବସ୍ଥିତ । ଏହାବ୍ୟତୀତ ଏହି ବୌଦ୍ଧକ୍ଷେତ୍ରଦ୍ୱୟ ପ୍ରସିଦ୍ଧ ରତ୍ନଗିରି ଓ ଉଦୟଗରି ବୌଦ୍ଧ ମହାବିହାରର ଖୁବ୍ ନିକଟତର । ଏଣୁ ଖ୍ରୀଷ୍ଟିୟ ଅଷ୍ଟମ-ନବମ ଶତାବ୍ଦୀ ବେଳକୁ ଭୌମକରମାନଙ୍କ ଶାସନ କାଳରେ ଏ ଅଞ୍ଚଳ ବୌଦ୍ଧ ଧର୍ମ ପ୍ରଚାର ଓ ପ୍ରସାରର ଏକ ପ୍ରମୁଖ ପେଣ୍ଠସ୍ଥଳ ଥିଲା ବୋଲି କୁହାଯାଉଛି ।

ଭାରଦାକଟକ (ଖଡ଼ିପଦା)ରୁ ଉଦ୍ଧୃତ ହୋଇ ରାଜ୍ୟ ସଂଗ୍ରହାଳୟରେ ଥିବା ବୁଦ୍ଧଙ୍କର ଭୂମିସ୍ପର୍ଶ ମୁଦ୍ରାର ବୃହତ୍ ମୂର୍ତ୍ତିଟି ଖୁବ୍ ନମନୀୟ । ପତଳା ଅଣ୍ଟା ଓ ଚଉଡ଼ା ଛାତିବିଶିଷ୍ଟ ଏହି ମୂର୍ତ୍ତି ଗଠନ ଶୈଳୀ ଦୃଷ୍ଟିରୁ ଖୁବ୍ ସ୍ୱତନ୍ତ୍ର । ମୂର୍ତ୍ତିଟିର ଉଚ୍ଚତା ୧.୮୨ ମିଟର (୬ ଫୁଟ) । ଏଠାରୁ ଉଦ୍ଧାର କରାଯାଇ ରାଜ୍ୟ ସଂଗ୍ରହାଳୟରେ ଥିବା ପଦ୍ମପାଣି ଅବଲୋକିତେଶ୍ୱରଙ୍କ ମୂର୍ତ୍ତିଟି ମଧ୍ୟ ଖୁବ୍ ଆକର୍ଷଣୀୟ ଶୈଳୀରେ ନିର୍ମିତ ହୋଇଛି । ପଦ୍ମପାଣି ଅବଲୋକିତେଶ୍ୱରଙ୍କର ଏହି ମୂର୍ତ୍ତିଟିରେ ଏକ ଶିଳାଲେଖ

ମଧ୍ୟ ଉଲ୍ଲେଖ ରହିଛି । ଭୌମକରବଂଶୀ ରାଜା ପ୍ରଥମ ଶୁଭକର ଦେବ (ଖ୍ରୀ·ଅ·୭୯୦-ଖ୍ରୀ·ଅ·୮୦୦)ଙ୍କ ଶାସନ କାଳରେ ଏହି ଶିଳାଲେଖ ଖୋଦିତ ହୋଇଛି ବୋଲି କୁହାଯାଉଛି । ଏଥିରେ ଭୌମକର ବଂଶ ଶାସନର କିଛି ତଥ୍ୟ ଉଲ୍ଲେଖ କରାଯାଇଛି । ଏହି ବିଶାଳ ମୂର୍ତ୍ତିଟିର ଡାହାଣ ହାତଟି ଭାଙ୍ଗି ଯାଇଥିବାବେଳେ ବାମ ହାତଟିରେ ଏକ ପଦ୍ମ ଫୁଲ ରହିଛି । ମୂର୍ତ୍ତିଟିର ମୁହଁର କିଛି ଅଂଶ ଓ ଡାହାଣ ହାତଟି ଭାଙ୍ଗି ନଷ୍ଟ ହୋଇଯାଇଛି ।

ଅପରପକ୍ଷେ, ବହୁ ପ୍ରସିଦ୍ଧ ଗୋହିରା-ଟିକିରି ମଧ୍ୟ ଏହି ଖଡ଼ିପଦା ବୌଦ୍ଧ ପୀଠର ଖୁବ୍ ନିକଟରେ ଅବସ୍ଥିତ । ଗୋହିରା-ଟିକିରିକୁ କିଛି ଗବେଷକ ଭୌମକର ବଂଶୀଙ୍କ ପ୍ରାଚୀନ ରାଜଧାନୀ ଥିଲା ବୋଲି ଦାବି କରନ୍ତି ।

[ତଥ୍ୟ ସହାୟତା

-ଅରୂପ ନନ୍ଦ, ଦେବେନ୍ଦ୍ର ମହାନ୍ତି, ଗ୍ରାମ ଖଡ଼ିପଦା, ବ୍ଲକ୍: ଧାମନଗର, ଚିତ୍ତରଂଜନ ଦାସ, ବରୁଣେଶ୍ୱର ମନ୍ଦିର ପୂଜକ, ଭାରଦାକଟକ, ଗ୍ରାମ: ମୁହାଁଣପଡ଼ା ଏବଂ ନାରାୟଣ ପତି, ପୂଜକ, ଦିହୁଡ଼ି ଆନନ୍ଦପୁର, ବ୍ଲକ୍: ଧାମନଗର, ଜିଲ୍ଲା: ଭଦ୍ରକ ।

*-Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication,Orissa, Cuttack (1992), p-778, 779.*

-ଡ. ଏକାଦଶୀ ପାଢୀ, ଯୁଗେ ଯୁଗେ ଯାଜପୁର, ପ୍ରକାଶକ: ଚିତ୍ରୋତ୍ପଳା ପବ୍ଲିକେଶନ୍ସ, ବଟେଶ୍ୱର, ସାଲେପୁର, ୨୦୦୨, ପୃଷ୍ଠା: ୨୦୫, ୨୦୬, ୨୦୭]

## ଖିଲାଟେଶ୍ୱର ପୀଠ

*(The Khilateswar temple)*

ପୁଣ୍ୟତୋୟା ବୈତରଣୀର ଶାଖାନଦୀ 'କାଳନ୍ଦୀ' କୂଳରେ ପ୍ରାଚୀନ ଖିଲାଟେଶ୍ୱର ପୀଠଟି ଅବସ୍ଥିତ । ଏଠାରେ ମହାଦେବ ଖିଲାଟେଶ୍ୱର ପୂଜା ପାଉଛନ୍ତି । ଧାମନଗର ବ୍ଲକ୍ ଅନ୍ତର୍ଗତ କରଦା ଗ୍ରାମପଞ୍ଚାୟତର ଅଲ୍ଲୀନଗର (ଖଙ୍ଗରା) ଗ୍ରାମରେ ଏହି ପୀଠଟି ଅବସ୍ଥିତ ।

ଯାଜପୁର ଜିଲ୍ଲାର ପ୍ରାଚୀନ ବେଲେଶ୍ୱର, ବରୁଣେଶ୍ୱର ଶୈବକ୍ଷେତ୍ର ଓ ଭଦ୍ରକ ଜିଲ୍ଲାର ଖିଲାଟେଶ୍ୱର ଶୈବପୀଠ ଏକ ସମକୋଣୀ ତ୍ରିଭୁଜର ତିନୋଟି କୋଣରେ ଅବସ୍ଥିତ ଥିବାରୁ ଏହାକୁ ସ୍ୱର୍ଣ୍ଣ ତ୍ରିଭୁଜ ବୋଲି କୁହାଯାଇଥାଏ । ଏହି ତ୍ରିଭୁଜର କେନ୍ଦ୍ର ସ୍ଥଳରେ ବୈତରଣୀ ନଦୀ କୂଳରେ ମା' ବିରଜାଙ୍କ ପୀଠ ଅବସ୍ଥିତ । ଏଣୁ ଏହି କ୍ଷେତ୍ରର ସର୍ବାଧିକ ଗୁରୁତ୍ୱ ରହିଛି ।




ଖିଲାଟେଶ୍ୱର ମନ୍ଦିରରେ ଶୋଭା ପାଉଥିବା ପ୍ରାଚୀନ କୀର୍ତ୍ତିରାଜି ଓ ମୂର୍ତ୍ତି

ଖିଲାଟେଶ୍ୱର ମନ୍ଦିରର ସବୁଠୁ ମୁଖ୍ୟ ବିଶେଷତ୍ୱ ହେଉଛି ଏହି ମନ୍ଦିରରେ ଥିବା ଆକର୍ଷଣୀୟ ଆକର୍ଷଣୀୟ ଓ ନମନୀୟ ହର-ପାର୍ବତୀଙ୍କ ଯୁଗଳ ମୂର୍ତ୍ତି । ମହାଦେବ ଶିବ ସଂପୂର୍ଣ୍ଣ ଉଲଗ୍ନ ଅବସ୍ଥାରେ ଦେବୀ ପାର୍ବତୀଙ୍କୁ କୋଳରେ ଧରିଛନ୍ତି । ଦେବୀ ପାର୍ବତୀ ମଧ୍ୟ ଉଲଗ୍ନ ଅବସ୍ଥାରେ ମହାଦେବଙ୍କ ଲିଙ୍ଗ ଉପରେ ଉପବିଷ୍ଟନ କରିଛନ୍ତି । ପାର୍ବତୀଙ୍କ ଉନ୍ମୁକ୍ତ ଆକର୍ଷଣୀୟ ସ୍ତନଯୁଗଳକୁ ଚାହିଁ ରହିଛନ୍ତି ମହାଦେବ ଶିବ । ପାର୍ବତୀ ମହାଦେବଙ୍କ ମୁଖକୁ ଏକଲୟରେ ଚାହିଁଛନ୍ତି । କଳାମୁଗୁନି ପଥରରେ ନିର୍ମିତ ଅତୀବ ରମଣୀୟ ଶିବ-ପାର୍ବତୀଙ୍କ ଏହି ଯୁଗଳ ମୂର୍ତ୍ତିଟି ସମଗ୍ର ଭାରତର ଏକ ବିରଳ ମୂର୍ତ୍ତି ଭାବେ ପରିଚିତ । ଏହି ମୂର୍ତ୍ତିଟିକୁ ଦେଖିବା ପାଇଁ ଏବଂ ଏହା ଉପରେ ଗବେଷଣା କରିବାକୁ ଭାରତର ବିଭିନ୍ନ କୋଣଅନୁକୋଣ ସମେତ ବିଦେଶରୁ ବହୁ ସଂଖ୍ୟାରେ ଭକ୍ତ ଓ ଗବେଷକ ଆସିଥା'ନ୍ତି ।





ଖିଲାଟେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



**ଖିଲାଟେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି**

ହର-ପାର୍ବତୀଙ୍କ ଏହି ଯୁଗଳ ମୂର୍ତ୍ତି ସମେତ ମନ୍ଦିରରେ ଅନ୍ୟାନ୍ୟ ମୂର୍ତ୍ତି ରହିଛି । ମନ୍ଦିର ଚତୁପାର୍ଶ୍ୱରେ ଲକ୍ଷ୍ମୀ-ନାରାୟଣ, ସାବିତ୍ରୀ-ସତ୍ୟବାନ, ପାତାଳ ନୃସିଂହ, ସିଂହବାହିନୀ ଦୁର୍ଗା, ବଗଳାମୁଖୀ ଦୁର୍ଗା, ଅଷ୍ଟଦଳ ପଦ୍ମ ମୂର୍ତ୍ତି ରହିଛି । ଏହା ସହିତ ମନ୍ଦିର ଫାଟକର ଉଭୟ ପାର୍ଶ୍ୱରେ ଶିବଙ୍କ ଦ୍ୱାରପାଳ ଭାବେ ବିଷ୍ଣୁଙ୍କର ଦୁଇଟି ଦଣ୍ଡାୟମାନ ମୂର୍ତ୍ତି ରହିଛି । ଏହି ଦୁଇ ବିଷ୍ଣୁ ମୂର୍ତ୍ତି ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଛନ୍ତି ।

ଖିଲାଟେଶ୍ୱର ପୀଠଟି ଏକ ପ୍ରାଚୀନ ବୌଦ୍ଧ କ୍ଷେତ୍ର ଥିଲା ବୋଲି ଦାବି କରାଯାଏ । ଏହାର ଖୁବ୍ ନିକଟରେ ଖଡ଼ିପଦା, ଭାରଦାକଟକ, ଷୋଳମପୁର ଏବଂ ରତ୍ନଗିରି-ଲଳିତଗିରି-ଉଦୟଗିରି ବୌଦ୍ଧ ହୀରକ ତ୍ରିଭୁଜ ଅବସ୍ଥିତ ଥିବାରୁ ଏ ଧାରଣା ମଧ୍ୟ ଦୃଢ଼ ହୋଇଥାଏ । ଏଠାରେ ଅଷ୍ଟମ ଶତାବ୍ଦୀର ବୌଦ୍ଧ ତାନ୍ତ୍ରିକ ମୂର୍ତ୍ତି (ଆସ୍ତିକ ଜରତ୍କାରୁ, ଭୈରବ, ମିଥୁନ ଆଦି) ଦେଖିବାକୁ ମିଳିଥାଏ । ଏଠାରେ ଦଶମ ଓ ଏକାଦଶ ଶତାବ୍ଦୀର ବିଷ୍ଣୁ ମୂର୍ତ୍ତି, ଉମା ମହେଶ୍ୱର ମୂର୍ତ୍ତି, ତଥା ସୂର୍ଯ୍ୟ ମୂର୍ତ୍ତି ଆଦି ରହିଛି । କୁହାଯାଏ, ରାଜା ପ୍ରଥମ ଯଯାତି କେଶରୀ ଏଠାକାର ବୌଦ୍ଧକ୍ଷେତ୍ରକୁ ଧ୍ୱଂସ କରି ଶୈବ କ୍ଷେତ୍ର ପ୍ରତିଷ୍ଠା କରିଥିଲେ ।

**(ତଥ୍ୟ ସହାୟତା: ମୁକୁନ୍ଦ ଚନ୍ଦ୍ର ପଣ୍ଡା, ଖିଲାଟେଶ୍ୱର ମନ୍ଦିର ପୂଜକ ଏବଂ ଅରୂପ ନନ୍ଦ, ଦେବେନ୍ଦ୍ର ମହାନ୍ତି, ଗ୍ରାମ ଖଡ଼ିପଦା, ବ୍ଲକ୍: ଧାମନଗର)**

# ଐତିହାସିକ କାଉପୁର ଓ ଏଠାରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି

ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଅବସ୍ଥିତ କାଉପୁରଟି ଐତିହାସିକ ଓ ପ୍ରାଚୀନ ଭାସ୍କର୍ଯ୍ୟ କଳା ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ପ୍ରାଚୀନ କାଉପୁର ଗ୍ରାମଟି ଭଦ୍ରକ ସଦର ବ୍ଲକ୍ ଦେଇ ବହିଯାଇଥିବା ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ନଦୀ କୂଳରେ ଅବସ୍ଥିତ । ସପ୍ତମ-ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ମନ୍ଦିର ଓ ଅନେକ ପ୍ରସ୍ତର ମୂର୍ତ୍ତି, ଶିଳାଲେଖ କାଉପୁରରେ ଦେଖିବାକୁ ମିଳେ ।

ଶାଳନ୍ଦୀ ନଦୀ କୂଳରେ ଅବସ୍ଥିତ କାଉପୁର ଗ୍ରାମର ଇଟା ନିର୍ମିତ ଏକ ପ୍ରାଚୀନ ଗୃହର କାନ୍ଥରେ ବହୁ ପ୍ରାଚୀନ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏହି ଗୃହର କାନ୍ଥରେ ଥିବା ମୋଟ ୭ଟି ପ୍ରାଚୀନ ମୂର୍ତ୍ତିମାନଙ୍କ ମଧ୍ୟରୁ ୩ଟି ଉମା-ମହେଶ୍ୱରଙ୍କ ମୂର୍ତ୍ତି, ୨ଟି ସୂର୍ଯ୍ୟ, ଗୋଟିଏ ଗଣେଶ ଏବଂ ଗୋଟିଏ ଗରୁଡ଼ଙ୍କ ମୂର୍ତ୍ତି ପ୍ରାଚୀନ ଭାସ୍କର୍ଯ୍ୟ କଳାର ପରିଚୟ ବହନ କରିଥାଏ । ଏଠାରେ ଥିବା ସୂର୍ଯ୍ୟଙ୍କ ପଥର ମୂର୍ତ୍ତିଦ୍ୱୟ ଗଠନ ଦୃଷ୍ଟିରୁ ସମାନ ପ୍ରକାରର । ସୂର୍ଯ୍ୟଙ୍କ ମୂର୍ତ୍ତି ସାମ୍ନାରେ ଗରୁଡ଼ଙ୍କର ଏକ ଆକର୍ଷଣୀୟ ମୂର୍ତ୍ତି ରହିଛି ।  ଏହି ଗରୁଡ଼ ମୂର୍ତ୍ତିଟିର ବିଶେଷତ୍ୱ ହେଉଛି, ମୂର୍ତ୍ତିଟି ଏକ ପଦ୍ମ ଫୁଲ ଉପରେ ଯୋଗସ୍ନାନ ମୁଦ୍ରାରେ ବସିଛନ୍ତି । ଓଡ଼ିଶା ଭାସ୍କର୍ଯ୍ୟ କଳାରେ ଏହି ଗରୁଡ଼ଙ୍କ ମୂର୍ତ୍ତି ଏକ ସ୍ୱତନ୍ତ୍ର ଶୈଳୀ ଦାବି କରିଥାଏ । ଓଡ଼ିଶାରେ ଦେଖାଯାଉଥିବା ପ୍ରାଚୀନ ଗରୁଡ଼ ମୂର୍ତ୍ତିଗୁଡ଼ିକର ଗଠନ ଶୈଳୀକୁ ଲକ୍ଷ୍ୟ କଲେ ଦେଖାଯାଏ, ସେମାନେ ଡାହାଣ ଆଣ୍ଠୁକୁ ଭୂମିରେ ମାଡି ଦୁଇ ହାତକୁ ପ୍ରଣାମ ମୁଦ୍ରାରେ ବସିଥା'ନ୍ତି । ସେମାନଙ୍କ ନାକ ବକ୍ର ଏବଂ ପଛ ପଟେ ଥିବା ଡେଣା ଦୁଇଟି ବିସ୍ତାରିତ ଅବସ୍ଥାରେ ରହିଥାଏ । ମାତ୍ର କାଉପୁରର ଗରୁଡ଼ ମୂର୍ତ୍ତିର ଗଠନ ଶୈଳୀ ଭିନ୍ନ । ଏହି ଗରୁଡ଼ ମୂର୍ତ୍ତିଟି ପଦ୍ମଫୁଲ ଉପରେ ଯୋଗାସନ ମୁଦ୍ରାରେ ବସିଛନ୍ତି ।

ସେହିଭଳି ଏଠାରେ ଥିବା ୩ଟି ଉମା-ମହେଶ୍ୱରଙ୍କ ମୂର୍ତ୍ତି ମଧ୍ୟରୁ ୨ଟିର ଅବସ୍ଥା ଭଲ ଥିବାବେଳେ ଗୋଟିଏ ମୂର୍ତ୍ତି ନଷ୍ଟ ହୋଇଯାଇଛି । ଏଥିରୁ ଗୋଟିଏ ଉମା-ମହେଶ୍ୱରଙ୍କ ମୂର୍ତ୍ତି ଲଳିତାସନ ମୁଦ୍ରାରେ ସାମ୍ନା ପଟକୁ ମୁଖ କରି ସ୍ଥାପିତ ହୋଇଛନ୍ତି ।

କାଉପୁର ଗ୍ରାମର ଏକ ପାର୍ଶ୍ୱରେ ଗୋଟିଏ ବିଶାଳ ଗଛମୂଳେ ଦୁଇଟି ପ୍ରାଚୀନ ମୂର୍ତ୍ତି ଦେଖିବାକୁ ମିଳିଥାଏ । ସେମାନଙ୍କ ମଧ୍ୟରୁ ଗୋଟିଏ ମୂର୍ତ୍ତି ହେଉଛି ବିଷ୍ଣୁଙ୍କର ନରସିଂହ ଅବତାରର ମୂର୍ତ୍ତି । ଏହି ନରସିଂହ ମୂର୍ତ୍ତିର ଗଠନ ଶୈଳୀ ବେଶ୍ ଚିତାକର୍ଷକ ଏବଂ ମୂର୍ତ୍ତିଟି ଦେଖିବାକୁ ସେମିତି ଭୟଙ୍କର ମନେ ହୋଇଥାଏ । ଏହା ସହିତ ଗ୍ରାମରେ ଆହୁରି ଅନେକ ହିନ୍ଦୁ ଦେବଦେବୀଙ୍କର ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳିଥାଏ ।

କାଉପୁର ଗ୍ରାମର ଅନ୍ୟ ଏକ ପାର୍ଶ୍ୱରେ ଏକ ଗଛମୂଳେ ଜଣେ ବୌଦ୍ଧ ଦେବୀଙ୍କର ମୂର୍ତ୍ତି ପୂଜା

ପାଉଛନ୍ତି । ତାହା ହେଉଛି ବୌଦ୍ଧ ଦେବୀ ତାରାଙ୍କର ମୂର୍ତ୍ତି । ମୂର୍ତ୍ତିଟି ପଦ୍ମ ଫୁଲ ଉପରେ ଦଣ୍ଡାୟମାନ ଅବସ୍ଥାରେ ରହିଛି । ତାରାଙ୍କ ମୂର୍ତ୍ତି ବ୍ୟତୀତ ଏଠାରେ ଆଉ ୫ଟି ଧ୍ୟାନୀ ବୁଦ୍ଧଙ୍କ ମୂର୍ତ୍ତି ସମେତ ଅନ୍ୟାନ୍ୟ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ଦେଖିବାକୁ ମିଳିଥାଏ ।

କାଉପୁର ଗ୍ରାମ ଉପକଣ୍ଠସ୍ଥ ଶାଳନ୍ଦୀ ନଦୀ ଶଯ୍ୟାରେ ଏକ ପବିତ୍ର କୁଣ୍ଡ ରହିଛି । ଏହାର ନାମ ଦେବରକୁଣ୍ଡ । ଶାଳନ୍ଦୀ ନଦୀ କୂଳରେ 'ଭୀମଗଡ଼' ନାମରେ ଏକ ପ୍ରାଚୀନ ଗଡ଼ ରହିଛି । ଏହାବ୍ୟତୀତ କାଉପୁର ଗ୍ରାମକୁ ନେଇ ଅନେକ ଲୋକକଥା ଓ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ । ଏ ଦୃଷ୍ଟିରୁ ଶାଳନ୍ଦୀ ନଦୀ କୂଳରେ ଥିବା ଏହି କାଉପୁର ଗ୍ରାମଟି ଭଦ୍ରକ ଜିଲ୍ଲାର ଏକ ପ୍ରାଚୀନ ଐତିହାସିକ କ୍ଷେତ୍ର ଭାବେ ଜଣାଶୁଣା ।

*Source : Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication,Orissa, Cuttack (1992), p-777, 778.*

## ଗୋହିରାଟିକିରି; ଯେଉଁଠି ଯୁଦ୍ଧ କରି ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦ ଦେବ ପ୍ରାଣ ତ୍ୟାଗ କରିଥିଲେ

*(Gohira Tikiri, the battlefield of last Hindu king Mukunda Dev of Odisha)*



ପ୍ରାଚୀନ ଓଡ଼ିଶାର ରାଜଧାନୀ ଯାଜପୁରରୁ ଭଦ୍ରକ ଯିବା ବାଟରେ ପଡ଼େ ବୌଦ୍ଧକୀର୍ତ୍ତି ବିମଣ୍ଡିତ **'ଧର୍ମ ନଗ୍ର' (ଧମ୍ମନଗର) ବା 'ଧାମନଗର'** । ମଝିରେ ବହିଯାଇଛି ବୈତରଣୀ । ବୈତରଣୀର ଶାଖା ନଦୀ ଗେଙ୍ଗୁଟି । ଆଉ ଏହି ଗେଙ୍ଗୁଟି କୂଳରେ ଅବସ୍ଥିତ ଇତିହାସ ପ୍ରସିଦ୍ଧ ଗୋହିରାଟିକିରି । କବିବର ରାଧାନାଥଙ୍କ ଭାଷାରେ-

**"ବୈତରଣୀ ଅଙ୍କୁ ବହିଣ**
**ଗେଙ୍ଗୁଟି ପ୍ରସନ୍ନ ନୀରା**
**ଧୋଉ ଅଛି ଯହିଁ**
**ମରିଚିକାମୟୀ କ୍ଷେତ୍ର ଗୋହିରା ।"**

ମରହଟ୍ଟା ରାଜତ୍ୱ କାଳରେ ଧାମନଗରଠାରେ ସେନାପତି ଜଗୁ ପଣ୍ଡିତ 'ଜଗୁ ସାଗର' ନାମରେ ଏକ ପ୍ରକାଣ୍ଡ ପୁଷ୍କରିଣୀ ଖନନ କରିଥିଲେ । ଏହି ଜଗୁସାଗର କୂଳରେ ଅବସ୍ଥିତ ଗୋହିରାଟିକିର ଆଜି ଇତିହାସର ମୂକସାକ୍ଷୀ ।

ଏକଦା ଗୋହିରାଟିକିରି ଭୌମକର ବଂଶୀଙ୍କ ପ୍ରାଚୀନ ରାଜଧାନୀ ଥିଲା । ଭୌମକରମାନେ (ଖ୍ରୀ·ଅ·୭୩୬-ଖ୍ରୀ·ଅ·୯୨୩) ଓଡ଼ିଶାରେ ପ୍ରାୟ ଦୁଇ ଶହ ବର୍ଷ ଧରି ଶାସନ କରିଥିଲେ । ଯଦିଓ ଗୁହଦେବପାଟକ (ଆଧୁନିକ ଯାଜପୁର) ଭୌମକରମାନଙ୍କ ରାଜଧାନୀ ଥିଲା ତେବେ କୌଣସି ନା କୌଣସି ସମୟରେ ଗୋହିରାଟିକିରି ମଧ୍ୟ ଭୌମମାନଙ୍କର ଅନ୍ୟତମ ପ୍ରମୁଖ ଶାସନକେନ୍ଦ୍ର ଥିଲା ବୋଲି କୁହାଯାଉଛି । ଭୌମକରମାନଙ୍କ ପ୍ରାଚୀନ ରାଜଧାନୀ ଯାଜପୁର ସହରଟି ବୈତରଣୀ



ଗୋହିରାଟିକିରିରେ ନିର୍ମିତ ମୁକୁନ୍ଦ ଦେବଙ୍କ ପ୍ରତିମୂର୍ତ୍ତି






ନଦୀର ଏକ ପାର୍ଶ୍ୱରେ ଥିଲାବେଳେ ଠିକ୍ ଅପରପାର୍ଶ୍ୱରେ ଗୋହିରାଟିକିରି ଅବସ୍ଥିତ ।

ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍‌ରେ ବୈତରଣୀର ପ୍ରମୁଖ ଶାଖା ନଦୀ ଗେଙ୍ଗୁଟି କୂଳରେ ଏହି ଇତିହାସ ପ୍ରସିଦ୍ଧ ଗ୍ରାମ ଗୋହିରାଟିକିରି ଅବସ୍ଥିତ । ଗୋହିରାଟିକିରିର ଖୁବ୍ ନିକଟରେ ଐତିହାସିକ ସ୍ଥଳୀ ଭାରଦା କଟକ, ଷୋଳମପୁର ଓ ଖଡ଼ିପଦା ଅବସ୍ଥିତ ।

ଗୋହିରାଟିକିରିକୁ ନେଇ ଏକ ଐତିହାସିକ ଓ ରୋମାଞ୍ଚଭରା ଯୁଦ୍ଧ କାହାଣୀ ଆଜି ବି ଗ୍ରାମବାସୀଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ । ଗୋହିରାଟିକିରି ଗ୍ରାମର ଶେଷ ମୁଣ୍ଡରେ ଥିବା ଏକ ବିଶାଳ ଖୋଲା ପଡ଼ିଆ ଏବେ ବି ପ୍ରାଚୀନ ଉତ୍କଳୀୟ ରାଜାଙ୍କ ବୀରତ୍ୱର ଗାଥା ସ୍ମରଣ କରାଇଥାଏ । ଗୋହିରାଟିକିରିଠାରେ ଓଡ଼ିଶାର ଶେଷ ହିନ୍ଦୁ ରାଜା ଭୋଇ ବଂଶର ଶାସକ ମୁକୁନ୍ଦ ଦେବ (ଖ୍ରୀ·ଅ·୧୫୬୦-ଖ୍ରୀ·ଅ·୧୫୬୮) ବଙ୍ଗର ନବାବ ସୁଲେମାନ୍ କର୍‌ରାନୀଙ୍କ ସହ ଯୁଦ୍ଧ କରି ୧୫୬୮ ଖ୍ରୀଷ୍ଟାବ୍ଦରେ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ କରିଥିଲେ । ବଙ୍ଗର ନବାବ ସୁଲେମାନଙ୍କ ହାତରେ ମୁକୁନ୍ଦଦେବଙ୍କ ପ୍ରାଣ ଗଲାପରେ ଓଡ଼ିଶା ମୁସଲମାନଙ୍କ ଦଖଲକୁ ଚାଲିଯାଇଥିଲା ।

୧୫୩୮ ମସିହାରେ ସୂର୍ଯ୍ୟବଂଶୀ ରାଜା ପ୍ରତାପରୁଦ୍ର ଦେବଙ୍କ ମୃତ୍ୟୁପରେ ଓଡ଼ିଶାରେ ରାଜନୈତିକ ଅସ୍ଥିରତା ଦେଖା ଦେଇଥିଲା । ପ୍ରତାପରୁଦ୍ର ଦେବଙ୍କ ଉତ୍ତରାଧିକାରୀମାନେ ଦୁର୍ବଳ ଥିବାରୁ ତାଙ୍କ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ପ୍ରତାପରୁଦ୍ର ଦେବଙ୍କ ଦୁଇ ପୁତ୍ରଙ୍କୁ ହତ୍ୟା କରି ୧୫୪୦ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରି ଭୋଇ ବଂଶ ପ୍ରତିଷ୍ଠା କରିଥିଲେ । ଏହି ଭୋଇ ବଂଶର ଶେଷ ରାଜା ମୁକୁନ୍ଦ ଦେବ ଯାଜପୁର ନିକଟସ୍ଥ ବୈତରଣୀ ନଦୀର ଅପରପାର୍ଶ୍ୱରେ ଥିବା ଗୋହିରାଟିକିରିଠାରେ ଯୁଦ୍ଧ କରୁଥିବାବେଳେ ବଙ୍ଗର ନବାବ ସୁଲେମାନଙ୍କ ପ୍ରଧାନ ସେନାପତି କଳାପାହାଡ଼ର ହାତରେ ପ୍ରାଣତ୍ୟାଗ କରିଥିଲେ ।

ଆଜି ବି ଗୋହିରାଟିକିରି ଓଡ଼ିଆ ରାଜା ମୁକୁନ୍ଦଦେବଙ୍କର ବୀରତ୍ୱପୂର୍ଣ୍ଣ ଯୁଦ୍ଧଗାଥାକୁ ସ୍ମରଣ କରିଥାଏ । ମୁକୁନ୍ଦଦେବ ଦୁର୍ବଳ ରାଜା ନଥିଲେ । ମାତ୍ର ତାଙ୍କର ଦୁଇ ସେନାନାୟକ ଶିଖି ଓ ମନାଇଙ୍କ ଷଡ଼ଯନ୍ତ୍ର ଯୋଗୁଁ ତାଙ୍କର ପରାଜୟ ଘଟିଥିଲା । ଏହି ଦୁଇ ସେନାନାୟକ ବଙ୍ଗର ନବାବ ସୁଲେମାନଙ୍କ ପ୍ରଧାନ ସେନାପତି କଳାପାହାଡ଼ ସହିତ ହାତ ମିଳାଇ ମୁକୁନ୍ଦଦେବଙ୍କ ସହ ବିଶ୍ୱାସଘାତକତା କରିଥିଲେ । ଏହାର ପରିଣାମରେ ଗୋହିରାଟିକିରିଠାରେ ଭୀଷଣ ଯୁଦ୍ଧ ଚାଲିଥିବାବେଳେ ମୁକୁନ୍ଦଦେବଙ୍କର ଯୁଦ୍ଧ ସ୍ଥଳରେ ମୃତ୍ୟୁ ହୋଇଥିଲା । ଫଳରେ ଓଡ଼ିଶାର ଶାସନଭାର ମୁସଲମାନଙ୍କ ହାତକୁ ଚାଲିଯାଇଥିଲା ।

ଗଜପତି ମୁକୁନ୍ଦ ଦେବ ବଙ୍ଗ ବିଜୟ କରି ଗଙ୍ଗା ନଦୀ କୂଳରେ ତ୍ରିବେଣୀ ଘାଟ ବା ମୁକୁନ୍ଦ ଘାଟ ପ୍ରତିଷ୍ଠା କରିପାରିଥିଲେ । ମୁକୁନ୍ଦଦେବ ଗଙ୍ଗାନଦୀ କୂଳରେ ଅବସ୍ଥାନ କରୁଥିବାବେଳେ ଦେଶଦ୍ରୋହୀମାନେ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । ସାରଙ୍ଗଗଡ଼ର ସାମନ୍ତ ରାଜା ରାମଚନ୍ଦ୍ର ଭଞ୍ଜ ମୁକୁନ୍ଦ ଦେବଙ୍କ ଅନୁପସ୍ଥିତିରେ ନିଜକୁ ଗଜପତି ବୋଲି ଘୋଷଣା କରିବା ଦ୍ୱାରା ସେତେବେଳେ ଓଡ଼ିଶାର ରାଜନୈତିକ ସ୍ଥିତି ବେଶ ଅସ୍ଥିର ହୋଇପଡ଼ିଥିଲା । ଏତିକିବେଳେ ରାମଚନ୍ଦ୍ର ଭଞ୍ଜ ବଙ୍ଗର ନବାବ ସୁଲେମାନଙ୍କ ନିକଟକୁ ସେନାନାୟକ ଶିଖି ଓ ମନାଇଙ୍କୁ ପ୍ରେରଣ କରି ସୁଲେମାନଙ୍କ ସେନାପତି କଳାପାହାଡ଼ଙ୍କୁ ଓଡ଼ିଶାକୁ ନିମନ୍ତ୍ରଣ କରିଥିଲେ ।


ମୁକୁନ୍ଦ ଦେବଙ୍କ ପ୍ରତିମୂର୍ତ୍ତି ସହ ଲେଖକ

ଗୋହିରାଟିକିରିଠାରେ ମୁକୁନ୍ଦଦେବ ଓ ବଙ୍ଗର ସେନାପତି କଳାପାହାଡ଼ଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଏତିକିବେଳେ ବିଶ୍ୱାସଘାତକ ରାମଚନ୍ଦ୍ର ଦେବଙ୍କ ଛୁରୀକାଘାତରେ ମୁକୁନ୍ଦଦେବଙ୍କ ପ୍ରାଣ ଚାଲିଯାଇଥିଲା । ଡ. ହରେକୃଷ୍ଣ ମହତାବ୍‌ଙ୍କ 'ଓଡ଼ିଶା ଇତିହାସ'ର ତଥ୍ୟ ଅନୁସାରେ, ରାମଚନ୍ଦ୍ର ଭଞ୍ଜ ଓ ମୁକୁନ୍ଦ ହରିଚନ୍ଦନଙ୍କ ମଧ୍ୟରେ ଯୁଦ୍ଧ

ଆରଂଭ ହେଲା । ଏହି ଯୁଦ୍ଧରେ ମୁକୁନ୍ଦ ଦେବ ନିହତ ହୋଇଥିଲେ । ମୁକୁନ୍ଦ ଦେବଙ୍କ ସହିତ ରାମଚନ୍ଦ୍ର ଦେବ ମଧ୍ୟ ଏକା ଦିନରେ ଯୁଦ୍ଧକ୍ଷେତ୍ରରେ ନିହତ ହୋଇଥିଲେ ବୋଲି ଡ· ମହତାବ ଉଲ୍ଲେଖ କରିଛନ୍ତି । ପରିତାପର ବିଷୟ ଏହା ଯେ, ମୁକୁନ୍ଦ ଦେବ ବାହ୍ୟ ଶତ୍ରୁଙ୍କ ହାତରେ ନ ମରି ନିଜ ଘର ଶତ୍ରୁଙ୍କ ହାତରେ ପ୍ରାଣ ହରାଇଲେ । ଗୋହିରାଟିକିରି ଯୁଦ୍ଧରେ ଆଫଗାନ୍ ସୈନ୍ୟଙ୍କ ଦ୍ୱାରା ରାମଚନ୍ଦ୍ର ଭଞ୍ଜ ଓ ସୁଲେମାନ କରାନିଙ୍କ ଦ୍ୱାରା ରଘୁ ଭଞ୍ଜ ନିହତ ହୋଇଥିଲେ । ଅପରପକ୍ଷେ, 'ଆକବରନାମା'ର ଏକ ବର୍ଣ୍ଣନା ଅନୁଯାୟୀ, ମୁକୁନ୍ଦ ଦେବ ଓ ଦୁର୍ଗା ଭଞ୍ଜଙ୍କ ମଧ୍ୟରେ ଏକ ଯୁଦ୍ଧ ହୋଇଥିଲା । ଏଥିରେ ଦୁର୍ଗା ଭଞ୍ଜ ମୁକୁନ୍ଦ ଦେବଙ୍କୁ ହତ୍ୟା କରିଥିଲେ ।

ମୁକୁନ୍ଦ ଦେବଙ୍କ ପ୍ରଥମ ପାଞ୍ଜି ମତେ *"ଏ ଉତାରେ ଚାଲୁକି ବଂଶ ରାଜା ହେଲେ । ମୁକୁନ୍ଦ ହରିଚନ୍ଦନ ରାଜା ହୋଇଲେ । ଅ୧୦ଙ୍କେ ଗଙ୍ଗା କଟକାଇ କଲେ । ଡିଲି ପାତିସା ସଙ୍ଗେ ପୀରତି ହୋଇଲେ । ଗଉଡ଼ ପାତିସା ସଙ୍ଗେ ଅପ୍ରୀତି ହୋଇଲେ । ଗଙ୍ଗାରେ ନାବକେଳି କଲେ । ଏହା ଗୌଡ଼ ପାତିସା ବାରତା ପାଇଲେ । ବହୁତ ସୈନ୍ୟ ଘେନି ସେ ବାହି ଅଇଲେ । ତାହା ଜାଣି ରାଜା କୋଟସାମୀ ଗଡ଼ ଆବୋରି ରହିଲେ । ଅନେକ ଫୌଜ ଦୁଇଆଡ଼ୁ ମଲେ । କେହି କାହାକୁ ଘୁଞ୍ଚାଇ ନ ପାରିଲେ । ଏମନ୍ତେ କଳାପାହାଡ଼ ପଚ୍ଛିମ ଆଉ କାଂସାବାଂସା ଦେଇ କଟକ ଆସି ବେଢ଼ିଲେ । କଟକେ ଥିଲେ ଯେ କୋନି ସାଆନ୍ତସିଂହାର । ଏ ବହୁତ ଯୁଝ କଲେ । ସେ ଯୁଝରେ ପଡ଼ିଲେ । ଯେତେବେଳେ ଶ୍ରୀ ନବରେ ଜୁର କଲେ । ରାମଚନ୍ଦ୍ର ଭଞ୍ଜ ଯେ, ସାରଙ୍ଗଗଡ଼ ଧରିଥିଲେ ସେ ପୁଣି ଗୋଳରେ ରାଜା ହୋଇଲେ । କୋଟସାମୀ ଗଡ଼ରେ ରେ ଯେ ମୁକୁନ୍ଦ ଦେବ ଥିଲେ । ଶ୍ରୀ ନବର ଜୁର ଯିବାରେ ସେ ବାରତା ପାଇଲେ । ରାମଚନ୍ଦ୍ର ଭଞ୍ଜ ରାଜା ହୋଇବା ବାରତା ପାଇଲେ । ସେ ପାତିସାକୁ ପଇଠ ପଶିଲେ । ରାମଚନ୍ଦ୍ର ଦେବ ଯେ ସାରଙ୍ଗଗଡ଼ ଥିଲେ ମୁକୁନ୍ଦ ଦେବ ତହିଁ ଯୁଝ କଲେ । ତହୁଁ ସେ ଦୁଇ ରାଜା ଯୁଝ କଲେ । ମୁକୁନ୍ଦ ଦେବଙ୍କୁ ରାମଚନ୍ଦ୍ର ଦେବ ମାଇଲେ । ଏ ଦୁଇ ରାଜା ଏକାଦିନେ ମଲେ ।"*

ଖ୍ରୀ·ଅ·୭୩୬ରେ ଭୌମକରମାନଙ୍କ ରାଜଧାନୀ ଥିଲା ଗୁହଦେବପାଟକ ବା ଗୁହେଶ୍ୱରପାଟକ । ହରେକୃଷ୍ଣ ମହତାବ ଏବଂ ବିନାୟକ ମିଶ୍ର ପ୍ରମୁଖ ଭୌମକରମାନଙ୍କର ତାମ୍ରପଟାକୁ ବିଶ୍ଳେଷଣ କରି ଗୁହଦେବପାଟକକୁ ଯାଜପୁର ବୋଲି ଚିହ୍ନିତ କରିଛନ୍ତି । କିନ୍ତୁ ଡ· କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ଗୋହିରାଟିକିରି – 'ଗୁହିରା' ଏବଂ 'ଟିକର' ଶବ୍ଦର ସମଷ୍ଟି, ଯେମିତିକି ନୃସିଂହ-ଟିକିରି, ପଞ୍ଚ-ଟିକିରି, ବ୍ରହ୍ମ-ଟିକିରି । 'ଟିକିରା' ଶବ୍ଦକୁ ସ୍ତୁପ ଅର୍ଥରେ ଗ୍ରହଣ କରାଗଲେ ଅବଶିଷ୍ଟ ଶବ୍ଦ 'ଗୁହିରା' – ଗୁହେଶ୍ୱର ଶବ୍ଦର ଅପଭ୍ରଂଶ ବୋଲି ବିଚାର କରାଯାଏ । ବାସ୍ତବରେ ଗୋହିରାଟିକିରି ପଞ୍ଚକୋଶ ବିରଜା କ୍ଷେତ୍ର ଅନ୍ତର୍ଗତ ବୌଦ୍ଧପୀଠ ଖଡ଼ିପଦାର ନିକଟବର୍ତ୍ତୀ । ପଣ୍ଡିତ ନୀଳମଣି ମିଶ୍ରଙ୍କ ମତରେ

"ଖୁବ୍ ସଂଭବତଃ ଯାଜପୁର ଓ ତାର ଆଖପାଖ ଅଞ୍ଚଳ ଅର୍ଥାତ୍ ରତ୍ନଗିରିଠାରୁ ଆରଂଭ କରି ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ଧାମ୍‌ନଗର (ଧମ୍ମନଗର) ପର୍ଯ୍ୟନ୍ତ ଏକଦା ବୌଦ୍ଧ କ୍ଷେତ୍ର ଭାବେ ସୁପରିଚିତ ଥିଲା । ଖ୍ରୀ.ଅ. ତୃତୀୟ-ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଧର୍ମର ବିକାଶ ଏହି କ୍ଷେତ୍ରରେ ସଂଭବ ହୋଇଥିଲା ।"

ଖଡ଼ିପଦା ଗ୍ରାମର ପଦ୍ମପାଣି ବିଗ୍ରହ ରାଜ୍ୟ ସଂଗ୍ରହାଳୟରେ ସ୍ଥାନ ପାଇଛି । ଏହିସବୁ ପ୍ରତିମୂର୍ତ୍ତି ଷୋଳମପୁର ମହାବିହାର କୀର୍ତ୍ତିରାଜିର ଅଂଶବିଶେଷ ବୋଲି ଅନୁମାନ କରାଯାଏ । ଭୌମକର ବଂଶର ରାଜଧାନୀ ଗୁହଦେବପାଟକ ସହ ଗୋହିରାଟିକିରିର ସାମଞ୍ଜସ୍ୟ ରହିଛି ବୋଲି କୁହାଯାଉଛି । ଷୋଳମପୁରର ଇଟା ନିର୍ମିତ ଦୁର୍ଗ (ଯାହା ଦୃଶ୍ୟମାନ ହୁଏନି) କପିଳେନ୍ଦ୍ର ଦେବ (ଖ୍ରୀ.ଅ.୧୪୩୫-ଖ୍ରୀ.ଅ.୧୪୭୦)ଙ୍କ ଦ୍ୱାରା ନିର୍ମିତ ହୋଇଛି ବୋଲି କିଛି ଗବେଷକ କୁହନ୍ତି । ଏଣୁ ଗଜପତି ଶାସନ ସମୟର ଷୋଳମପୁର ଦୁର୍ଗକୁ ଗୋହିରାଟିକିରିର ଅଂଶବିଶେଷ ବୋଲି ଧରି ନିଆଯାଇପାରେ ।

ଧାମନଗରର ପୁରାତନ ନାମ ଧର୍ମନଗର (ଧମ୍ମନଗର) । କାରଣ ଜଗନ୍ନାଥ ସଡ଼କ ପାର୍ଶ୍ୱସ୍ଥ ଏହି ସ୍ଥାନରେ ଅତୀତରେ ଗୋଟିଏ ହିନ୍ଦୁ ମଠ ଥିଲା । ଏଠାରେ ତୀର୍ଥଯାତ୍ରୀମାନଙ୍କୁ ଛତ୍ରଦାନ କରାଯାଉଥିଲା । ସଂଭବତଃ ସେହି ଧାର୍ମିକ କେନ୍ଦ୍ରଟି ଗୋହିରାଟିକିରି ଦୁର୍ଗର ଅଂଶବିଶେଷ ।

ଗୋହିରା-ଟିକିରିର ପୌରାଣିକ ଗୁରୁତ୍ୱ ରହିଛି । ସତ୍ୟ ଯୁଗରେ ବ୍ରହ୍ମା ଏଠାରେ ଯଜ୍ଞ କରିଥିବାର ମାଳିକାରେ ବର୍ଣ୍ଣନା ରହିଛି । ଦ୍ୱାପର ଯୁଗରେ ପାଣ୍ଡବମାନେ ବନବାସ ସମୟରେ ଗୋହିରା-ଟିକିରିରେ ଅବସ୍ଥାନ କରିଥିଲେ ବୋଲି ପୌରାଣିକ ଉଲ୍ଲେଖ ରହିଛି ।

ଇତିହାସ ପ୍ରସିଦ୍ଧ ଗୋହିରା-ଟିକିରି ସ୍ଥାନଟି ବର୍ତ୍ତମାନ ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍ ଦୋବଲ ଗ୍ରାମ ପଞ୍ଚାୟତର ଏକ ରାଜସ୍ୱ ଗ୍ରାମ ଅଟେ । ଏହି ଗ୍ରାମର ଶେଷ ମୁଣ୍ଡରେ ଗେଙ୍ଗୁଟି ନଦୀ କୂଳରେ ଥିବା ବିସ୍ତୀର୍ଣ୍ଣ ଯୁଦ୍ଧ ପଡ଼ିଆଟି ଏବେ ମଧ୍ୟ ନିରବର ମୂକସାକ୍ଷୀ ଭାବେ ପଡ଼ି ରହିଛି । ଏହି ପଡ଼ିଆରେ ଏକ ବହୁ ପୁରୁଣା ଅର୍ଜୁନ ଗଛ ରହିଛି । ଏହି ଗଛ ମୂଳରେ ହନୁମାନଙ୍କର ଏକ ପ୍ରସ୍ତର ବିଗ୍ରହ ପୂଜା ପାଉଛନ୍ତି । ଏହାର ନିକଟରେ ରାଜା ମୁକୁନ୍ଦ ଦେବଙ୍କର କଳାମୁଗୁନି ପଥରରେ ନିର୍ମିତ ଏକ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରାଯାଇଛି ।

ଗ୍ରାମରେ ପ୍ରସିଦ୍ଧ ଗୋହିରା-ଟିକିରି ମଠ ରହିଛି । ଏଠାରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା ପୂଜା ପାଉଛନ୍ତି । ଏହି ମଠ ପରିସରରେ ସନ୍ତୋଷୀମାତା ଓ ତାରିଣୀଙ୍କର ଦୁଇଟି ମନ୍ଦିର ରହିଛି । ମଠର ପ୍ରତିଷ୍ଠାତା ବାବା ସୀତାରାମ ଦାସଙ୍କର ଏକ ବିଗ୍ରହ ମଠ ପରିସରରେ ରହିଛି । ସୂଚନାଯୋଗ୍ୟ, ଖ୍ରୀ.ଅ. ୧୭୧୦ ମସିହାରେ ବାବା ସୀତାରାମ ଦାସ ଏହି ମଠ ପ୍ରତିଷ୍ଠା କରିଥିଲେ । ଏହି ମଠରେ ପ୍ରତିବର୍ଷ ରଥଯାତ୍ରା, ମହାବିଷୁବ ସଂକ୍ରାନ୍ତି, ମକର ମେଳା, ମହାଶିବରାତ୍ରୀ, ହନୁମାନ

ଜୟନ୍ତୀ, ଅକ୍ଷୟ ତୃତୀୟା, ଚଣ୍ଡିମେଳା ଆଦି ପର୍ବପର୍ବାଣି ପାଳିତ ହୋଇଥାଏ ।

ଗୋହିରାଟିକିରି ଗ୍ରାମର ଶେଷ ମୁଣ୍ଡରେ ଥିବା ଆଲାମ୍ ଚାନ୍ଦ ପୁଷ୍କରିଣୀ ଓ ସେନାପତିଆ ପୁଷ୍କରିଣୀ ମୁକୁନ୍ଦ ଦେବ-ବଙ୍ଗର ନବାବ ସୁଲେମାନଙ୍କ ପ୍ରଧାନ ସେନାପତି କଳାପାହାଡ଼ ମଧ୍ୟରେ ହୋଇଥିବା ଭୀଷଣ ଯୁଦ୍ଧର ସ୍ମାରକୀ ବହନ କରିଥାଏ । ଏଠାରେ କଳାପାହାଡ଼ର ସହଯୋଗୀ ଆଲାମ୍ ଚାନ୍ଦଙ୍କ ନାମାନୁସାରେ ପୁଷ୍କରିଣୀ ଖନନ କରାଯାଇଥିଲା । ମୁସଲମାନ ସୈନିକମାନଙ୍କ ବ୍ୟବହାର ଉଦ୍ଦେଶ୍ୟରେ ଏହି ପୋଖରୀ ଖୋଳାଯାଇଥିଲା ବୋଲି କୁହାଯାଉଛି । ଏହାବ୍ୟତୀତ ଗୋହିରାଟିକିରରେ ସେଦିନର ପ୍ରାଚୀନ ରାଣୀ ପୋଖରୀ ଓ ସେନାପତିଆ ପୋଖରୀ ମଧ୍ୟ ଏବେ ଯୁଦ୍ଧର ସ୍ମୃତି ବହନ କରିଥାଏ ।

[ ତଥ୍ୟ ସହାୟତା

୧. ବୀରବର ଦାସ (ମଠର ମୁଖ୍ୟ ବାବା), ଶିଶୁ ମହନ୍ତ ସାଲବେଗ ଦାସ, ଗୌରାଙ୍ଗ ଚରଣ ବିଶ୍ୱାଳ, ଅନିରୁଦ୍ଧ ଦାସ, ମାତା କୌଶଲ୍ୟା ଦାସ, ମାତା ସରସ୍ୱତୀ ଦାସ, ଗୋହିରାଟିକିରି ମଠ

2. *Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication,Orissa, Cuttack (1992), p-774*

୩. ଓଡ଼ିଶା ଇତିହାସ, ସଂ: ପ୍ରୀତୀଶ ଆଚାର୍ଯ୍ୟ, ପ୍ରକାଶକ: ଆମ ଓଡ଼ିଶା, ଭୁବନେଶ୍ୱର, ୨୦୧୧, ପୃଷ୍ଠା : ୯୮,୯୯, ୧୦୦, ୧୦୧

୪. 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର, ଜୁଲାଇ-୨୦୧୪, ଶାନ୍ତନୁ କୁମାର ମହାନ୍ତି, ପୃଷ୍ଠା: ୨୯-୩୨ ]

## ଦପାନାୟିକା ଦେବୀ ପୀଠ

*(Dapanayika)*

ଭଦ୍ରକ ଜିଲ୍ଲାର ଧାମନଗର ଓ ତିହିଡ଼ି ବ୍ଲକ୍‌ର ସୀମାରେ ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ଓ ବୈତରଣୀର ଶାଖା ନଦୀ ଗେଙ୍ଗୁଟିର ସଂଗମ ସ୍ଥଳରେ ଏହି ପ୍ରସିଦ୍ଧ ଦେବୀ ପୀଠଟି ଅବସ୍ଥିତ । ଶାଳନ୍ଦୀ ଓ ଗେଙ୍ଗୁଟି ନଦୀର ମିଳନ ସ୍ଥଳରେ ଅବସ୍ଥିତ ଦପାନାୟକାଣୀ (ଦପାନାୟିକା) ପୀଠଟି ଭଦ୍ରକ ଜିଲ୍ଲା କାହିଁକି ରାଜ୍ୟର ଏକ ପ୍ରମୁଖ ଦେବୀପୀଠ ଭାବେ ଜଣାଶୁଣା । ଭଦ୍ରକ ଜିଲ୍ଲାର ପ୍ରସିଦ୍ଧ ଠାକୁରାଣୀ ତଥା ବୟାଙ୍ଗ (ଧୋୟା) ଅଞ୍ଚଳର ପ୍ରତ୍ୟକ୍ଷ ଦେବୀ ମା' ଦପାନାୟକାଣୀ ତିହିଡ଼ି ବ୍ଲକ୍‌ର

ଆରାଧ୍ୟ ଦେବୀ ଭାବେ ପରିଚିତ । ଏଠାରେ ବସବାସ କରୁଥିବା ମତ୍ସ୍ୟଜୀବି ସଂପ୍ରଦାୟର ଅରାଧ୍ୟ ଦେବୀ ଭାବେ ଏହି ନଦୀ ଠାକୁରାଣୀ ଦପାନାୟିକା ସ୍ଥାନୀୟ ଅଞ୍ଚଳରେ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ଖୋର୍ଦ୍ଧା ରାଜାଙ୍କ ଅଧୀନରେ ବୟାଙ୍ଗ ଅଞ୍ଚଳ ଥିବାବେଳେ ଦେବୀଙ୍କର ମନ୍ଦିର ନିର୍ମାଣ ହୋଇଥିଲା । ଏହି ପୀଠଟି ପୁଣ୍ୟତୋୟା ବୈତରଣୀ ନଦୀ ଅବବାହିକା ଅଞ୍ଚଳର ଜନଶୂନ୍ୟ ବିସ୍ତୀର୍ଣ୍ଣ ପାଟବିଲ ମଧ୍ୟରେ ଅବସ୍ଥିତ । ତିହିଡ଼ି ବଜାରଠାରୁ ଏହି ପୀଠର ଦୂରତା ୧୪ କିଲୋମିଟର । ଚାରିପାର୍ଶ୍ୱରେ ନଦୀ ଏବଂ ନଦୀପଠାରେ ଥିବା ଏକ କୁଦ ଉପରେ ମା' ଦପା ନାୟିକାଙ୍କ ପୀଠ କାହିଁ କେଉଁ କାଳରୁ ତିଷ୍ଠି ରହିଛି ।

ଏହି ପୀଠର ନିକଟବର୍ତୀ ଗାଁ ଇଶ୍ୱରପୁର ଦେଇ ବହିଯାଇଛି ବୈତରଣୀର ଶାଖା ନଦୀ ଗେଙ୍ଗୁଟି । କାଂପତାଠାରୁ ଶାଳନ୍ଦୀ ନଦୀର ଏକ ଶାଖା ହୀରାଘାଇ ନାମରେ ବହିଆସି ଠିକ୍ ମନ୍ଦିର ସନ୍ନିକଟରେ ଗେଙ୍ଗୁଟି ସହିତ ମିଳିତ ହୋଇଛି । ଲୋକେ ଗଭୀର ପାଟବିଲରେ ନୌକା ସାହାଯ୍ୟରେ ନଦୀପଥ ଦେଇ ଏହି ପୀଠକୁ ଆସିଥା'ନ୍ତି । କ୍ରମାଗତ ବନ୍ୟା ଫଳରେ ଏଠାରେ ଚାଷବାସ ସଂଭବପର ହୋଇ ନଥାଏ । ଏଣୁ ଆଖପାଖ ଅଞ୍ଚଳର ଅଧିକାଂଶ ଲୋକେ ମତ୍ସ୍ୟଜୀବି ଧୀବର ଶ୍ରେଣୀର । କେଉଁ କାଳରୁ ଏମାନେ ଆଜି ପର୍ଯ୍ୟନ୍ତ ନୌକା ସାହାଯ୍ୟରେ ଚାନ୍ଦବାଲି ଦେଇ ସମୁଦ୍ରରୁ ମାଛ ମାରି ଶୁଖୁଆ ବ୍ୟବସାୟ କରି ଜୀବିକା ନିର୍ବାହ କରିଆସୁଛନ୍ତି ।

ମା' ଦପାନାୟିକା ଏହି ମତ୍ସ୍ୟଜୀବି ସଂପ୍ରଦାୟଙ୍କ ପ୍ରତ୍ୟକ୍ଷ ଠାକୁରାଣୀ । ଏମାନଙ୍କ ନାନା ବିପଦଆପଦରେ ମା' ସହାୟକ ହୋଇଥା'ନ୍ତି ବୋଲି ବିଶ୍ୱାସ ରହିଛି । ଏଠାରେ ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ୩ ଦିନରୁ ସପ୍ତାହ ବ୍ୟାପୀ ମକର ମେଳା ଅନୁଷ୍ଠିତ ହୋଇଥାଏ । ପୂର୍ବକାଳରେ ଏକ କାଠ ନିର୍ମିତ ମନ୍ଦିର ଥିଲା । ମାତ୍ର, ସେହି କାଠ ମନ୍ଦିରଟି ଏବେ ନାହିଁ । ଏହି ଦେବୀପୀଠକୁ ନେଇ ସ୍ଥାନୀୟ ଲୋକଙ୍କ ମୁଖରେ ଏକ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ ।

୧୭୦୦ ଖ୍ରୀ·ଅ·ରେ ଖୋର୍ଦ୍ଧାଗଡ଼ର ଚୌଧୁରୀବଂଶୀ ଜମିଦାର ଏହି ଅଞ୍ଚଳକୁ ଆସିବା ସମୟରେ ନିଜର ନିଜର କୁଳଦେବୀ କନକ ଦୁର୍ଗାଙ୍କୁ ଆଣିଥିଲେ । ତେବେ ମା'ଙ୍କୁ ଆଣୁଥିବା ସମୟରେ ମା'ଙ୍କର ପାଦର ପାଉଁଜି ଶବ୍ଦ ନ ଶୁଭିବାରୁ ବାଟରେ ଚୌଧୁରୀ ମହାଶୟ ପଛକୁ ଫେରି ଚାହିଁ ଦେଇଥିଲେ । ଆଉ ଏହା ପରେ ଦେବୀ ସେଠାରେ ପାଷାଣୀ ପାଲଟି ଯାଇଥିଲେ । ଦେବୀ ପାଷାଣୀ ହୋଇଯିବା ସ୍ଥାନର ନାମ 'ଦପା' ହୋଇଥିବାରୁ ଦେବୀଙ୍କ ନାମ 'ଦପା ନାୟିକା' ରହିଥିଲା । ଏହି ମନ୍ଦିର ପରିସରରେ ପଞ୍ଚତୀର୍ଥ ଶୋଭା ପାଉଥିବାରୁ ଏହି ପୀଠର ଗୁରୁତ୍ୱ ରହିଛି । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ, ଶନି ଦେବ, ମହାଦେବ ଶିବ ଏବଂ ଦେବୀ ତାରିଣୀଙ୍କର ମନ୍ଦିର ରହିଛି ।

# ଆରଡ଼ିର ଆଖଣ୍ଡଳମଣି ମନ୍ଦିର

*(Baba Akhandalmani temple)*

ପୁଣ୍ୟତୋୟା ବୈତରଣୀର ଅନ୍ତିମ ଯାତ୍ରା ସ୍ଥଳରେ ଓଡ଼ିଶାର ପ୍ରସିଦ୍ଧ ଶୈବକ୍ଷେତ୍ର ଆରଡ଼ିର ଆଖଣ୍ଡଳମଣି ମନ୍ଦିର ଅବସ୍ଥିତ । ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଅନ୍ତର୍ଗତ ଆରଡ଼ି ଗ୍ରାମ ପଞ୍ଚାୟତ ସଦର ମହକୁମାଠାରେ ବୈତରଣୀ ନଦୀ କୂଳରେ ବାବା ଆଖଣ୍ଡଳମଣି ପୂଜା ପାଇଆସୁଛନ୍ତି ।

ଏଠାରେ ପୂର୍ବରୁ କାଠ ନିର୍ମିତ ଏକ ମନ୍ଦିର ଥିଲା । ବର୍ତ୍ତମାନର ମନ୍ଦିରଟି ୧୮୩୦-୧୮୪୦ ଖ୍ରୀ·ଅ· ମଧ୍ୟରେ ପୁନର୍ନିର୍ମାଣ ହୋଇଛି ବୋଲି ବିଶ୍ୱାସ କରାଯାଏ । କନିକା ରାଜା ହରିହର ଭଞ୍ଜ ଏବଂ ତାଙ୍କ ପାଟରାଣୀ ସତ୍ୟଭାମା ପାଟଦେଈଙ୍କ ଦ୍ୱାରା ଏହି ନୂତନ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ମନ୍ଦିରର ଉଚ୍ଚତା ୧୫୦ ଫୁଟ । ତତ୍କାଳୀନ କନିକା ରାଜା ଚଣ୍ଡିଖୋଲ ନିକଟସ୍ଥ ଲଳିତଗିରିରୁ ପଥର ଆଣି ଏହି ମନ୍ଦିର ପ୍ରତିଷ୍ଠା କରିଥିଲେ ବୋଲି ସ୍ଥାନୀୟ ଲୋକମୁଖରେ ଶୁଣିବାକୁ ମିଳେ । ଏହି ପଥରଗୁଡ଼ିକୁ ଲଳିତଗିରିରୁ ଆରଡ଼ିକୁ ସମ୍ଭବତଃ ଗେଙ୍ଗୁଟି, ବ୍ରାହ୍ମଣୀ ଏବଂ ବୈତରଣୀ ନଦୀପଥ ମାଧ୍ୟମରେ ପରିବହନ କରାଯାଉଥିବ ବୋଲି ଅନୁମାନ କରାଯାଇଥାଏ ।



ଆରଡ଼ିର ଆଖଣ୍ଡଳମଣି ମନ୍ଦିର




**ଆରଡ଼ି-ମାନପୁର ବୈତରଣୀ ଘାଟ**

ବାବା ଆଖଣ୍ଡଳମଣିଙ୍କୁ ନେଇ ଏକ କିମ୍ବଦନ୍ତୀ ରହିଛି । ତତ୍କାଳୀନ କନିକା ରାଜା ନୀଳାଦ୍ରି ଶର୍ମା ସିଂହ ମହାପାତ୍ରଙ୍କ ସମୟର କଥା । ରାଜା ତାଙ୍କର କିଛି ଚାଷୀଙ୍କୁ ବୈତରଣୀ କୂଳରେ ଥିବା ଚାଷଜମିକୁ ଚାଷ କରିବାକୁ ପଠାଇଥିଲେ । ହଳ କରୁଥିବା ସମୟରେ ଲଙ୍ଗଳ ଲୁହା ଏକ ପଥରରେ ବାଜି ଭାଙ୍ଗିଯାଇଥିଲା । ଏହା ପରେ ଚାଷୀଟି ସେଠାରୁ ରକ୍ତ ଜୁତୁବୁତୁ ଅବସ୍ଥାରେ ଏକ କଳାମୁଗୁନି ପଥର ନିର୍ମିତ ଶିବ ଲିଙ୍ଗ ପାଇଥିଲେ । ଏ ଖବର ରାଜାଙ୍କ କାନକୁ ଗଲା । ରାଜା ତତ୍କ୍ଷଣାତ ବିଲରେ ପହଞ୍ଚିଲେ । ମାତ୍ର ସେତେବେଳକୁ ଏହି ପଥର ନିକଟରେ ରକ୍ତ ବଦଳରେ ଖୀର ଜମି ଯାଇଥିଲା ଏବଂ ନିକଟରେ ଏକ ନାଗ ସାପ ଥିଲା । ସେହିଦିନ ରାତିରେ ରାଜାଙ୍କୁ ବାବା ଆଖଣ୍ଡଳମଣିଙ୍କ ସ୍ୱପ୍ନାଦେଶ ହେଲା । ଏହାପରେ ରାଜା ସେଠାରେ ସେହି ଗହଗା ପାଟରେ ଆଖଣ୍ଡଳମଣିଙ୍କୁ ପ୍ରତିଷ୍ଠା କରି ପୂଜାର୍ଚ୍ଚନା ଆରମ୍ଭ କଲେ । ରାଜା ପ୍ରାଥମିକ ଅବସ୍ଥାରେ କାଠରେ ଏକ ମନ୍ଦିର ନିର୍ମାଣ କରିଥିଲେ ।

ଆରଡ଼ି ଆଖଣ୍ଡଳମଣି ପୀଠଟି ଚାନ୍ଦବାଲି ବନ୍ଦର ସହିତ ସଂଯୁକ୍ତ । ଏଠାରୁ ବୈତରଣୀ ନଦୀ ଦେଇ ୫ କିଲୋମିଟର ଆଗକୁ ଗଲେ ଚାନ୍ଦବାଲି ପଡ଼ିଥାଏ । ଡଙ୍ଗା (ମୋଟର ଲଞ୍ଚ)ରେ ଦୁଇ

**ଘଇତାମାରି ଘାଟ**



ଘଣ୍ଟା ସମୟ ଲାଗିଥାଏ । ଏଠାରେ ଏକ ନଦୀ ଘାଟ ରହିଛି । ଏହାର ନାମ ଆଖଣ୍ଡଳମଣି ଘାଟ । ଏହି ଘାଟଟି ଆଖଣ୍ଡଳମଣି ପୀଠ ସହିତ କେନ୍ଦ୍ରାପଡ଼ା ଜିଲ୍ଲାକୁ ସଂଯୁକ୍ତ କରିଛି । ଏହାର ଅପରପାର୍ଶ୍ୱରେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍ ରହିଛି । ଅପରପାର୍ଶ୍ୱରେ ଥିବା ନଦୀ ଘାଟର ନାମ ମାନପୁର ଘାଟ । ଏହା ନିକଟରେ ରହିଛି ରାଜକନିକାର ଓଳାଭର ବଜାର । କେନ୍ଦ୍ରାପଡ଼ା ପଟୁ ଭକ୍ତମାନେ ରାଜକନିକାର ଓଳାଭର ବାଟେ ମାନପୁର ଘାଟରେ ପହଞ୍ଚି ସେଠୁ ଡଙ୍ଗାରେ ପାର ହୋଇ ଆରଡ଼ିରେ ପହଞ୍ଚିଥାନ୍ତି ।

ପ୍ରତିବର୍ଷ ଏଠାରେ ମକର ସଂକ୍ରାନ୍ତି, କାର୍ତ୍ତୀକ ପୂର୍ଣ୍ଣିମା ଓ ମହାଶିବରାତ୍ରୀ ବେଶ୍ ଧୁମଧାମରେ ପାଳିତ ହୋଇଥାଏ । ଶ୍ରାବଣ ମାସରେ ଲକ୍ଷାଧିକ ସଂଖ୍ୟାରେ ବୋଲ୍‌ବମ୍ ଭକ୍ତମାନେ ଏଠାରେ ଜଳାଭିଷେକ କରିଥାନ୍ତି ।

## ତିନି ତର ଘାଟ: ବୈତରଣୀ ଓ ଶାଳନ୍ଦୀର ମହା ମିଳନ

*(Tini Tara River Ghat : the confluence of the Baitaranee and the Salandee)*

'ତିନି ତର' ଘାଟର ସ୍ମୃତି ଜୀବନରେ ସବୁବେଳେ ସତେଜ ହୋଇରହିବ, ଯେତେଦିନ ଯାଏ ଏ ଜୀବନ ଥିବ । ଆମେ ଏକ ଶୀତୁଆ ସକାଳେ ତିନିତର ଘାଟରେ ପହଞ୍ଚିଲାବେଳକୁ ମୋଟର ଇଞ୍ଜିନ୍ ଲାଗିଥିବା ଏକ ଦେଶୀ ଡ଼ଙ୍ଗାରେ ପ୍ରାୟ ୫୦ରୁ ଊର୍ଦ୍ଧ୍ୱ ଯାତ୍ରୀ ଆରଡ଼ି ଘାଟରୁ ଚାନ୍ଦବାଲି ପଟକୁ ଯାଉଥିଲେ । ନଦୀ ମଝିରେ ଲୋକ ବୋଝେଇ ଡଙ୍ଗାର ଅସ୍ପଷ୍ଟ ଦୃଶ୍ୟ ବାସ୍ତବରେ ମନମୁଗ୍‌ଧକର ଥିଲା ।

ସେଦିନ ଥାଏ ଡିସେମ୍ବର ମାସର ଏକ କୁହୁଡ଼ିଘେରା ସକାଳ । ମୁଁ ସେତେବେଳେ କେନ୍ଦୁଝରରେ ଥାଏ । ସୂର୍ଯ୍ୟ ଉଇଁବା ପୂର୍ବରୁ ଆମେ ଯାଜପୁରରେ ପହଞ୍ଚି ସାରିଥିଲୁ । ମୋ' ସାଥୀରେ ଥାଆନ୍ତି ମୋର ଜଣେ ସାମ୍ବାଦିକ ବନ୍ଧୁ ପ୍ରଦୀପ ମହାନ୍ତି । ପ୍ରାୟ ସକାଳ ୮ଟା ବେଳକୁ ଯାଜପୁର ଟାଉନ୍ ପଟୁ କୟାଁଗୋଲା ପୋଲ ଦେଇ ଆଖଣ୍ଡଳମଣୀ ପୀଠରେ ପହଞ୍ଚି ଗଲୁ । ଆମର ଚାନ୍ଦବାଲି ଯିବାର ଥିଲା । ଆଖଣ୍ଡଳମଣୀ ମନ୍ଦିର ଦର୍ଶନ ସାରି ସେଠାରୁ ଏକ ପତଳା କଚା ରାସ୍ତା ଦେଇ ତିନିତର ଘାଟରେ ପହଞ୍ଚିଲୁ । ସେତେବେଳକୁ ଡଙ୍ଗାଟି ଆରଡି ପଟୁ ଛାଡି ଦେଇ ଚାନ୍ଦବାଲି ପଟକୁ ଯାଉଥିଲା । ଡଙ୍ଗାଟି ଚାନ୍ଦବାଲି ପଟରେ ଯାତ୍ରୀଙ୍କୁ ଛାଡି ଦେଇ କେନ୍ଦ୍ରାପଡ଼ା ପଟ ଗୋପାଳପୁର ଘାଟ (ଓଳାଭର) ଘାଟକୁ ଗଲା । ଏବଂ ସେଠାରୁ ପୁନର୍ବାର ଆରଡ଼ି ପଟକୁ ଫେରିଥିଲା । ଏହା ମଧ୍ୟରେ ପାଖାପାଖି ଦୁଇ ଘଣ୍ଟା ସମୟ ବିତିଯାଇଥିଲା । ଆମକୁ ଚାନ୍ଦବାଲି ଯିବାର ଥିଲା । ଡଙ୍ଗା ପାର ହୋଇ ଚାନ୍ଦବାଲିରେ ପହଞ୍ଚିଲାବେଳକୁ ପ୍ରାୟ ସନ୍ଧ୍ୟା ହୋଇଯାଇଥିଲା । ଚାନ୍ଦବାଲିରେ ଆମର ଯାହା କାମ ସାରି

କେନ୍ଦୁଝରକୁ ଫେରିଲାବେଳକୁ ରାତି ପ୍ରାୟ ଏଗାରଟା ବାଜି ସାରିଥିଲା ।

ଆଖଣ୍ଡଳମଣି ମନ୍ଦିରଠାରୁ ତିନିତର ଘାଟରେ ଡଙ୍ଗା ପାରହେଲେ ମାତ୍ର ୫ କିଲୋମିଟର ପରେ ପଡିଥାଏ ଚାନ୍ଦବାଲି ବ୍ଲକ୍ ସଦର ମହକୁମା । ପୋଲଟିଏ ନଥିବାରୁ ଯାଜପୁରର ଲୋକେ ଏବଂ ଆଖଣ୍ଡଳମଣିଙ୍କ ନିକଟକୁ ଆସୁଥିବା ଶହଶହ ଯାତ୍ରୀ ବହୁ ଅସୁବିଧାର ସମ୍ମୁଖୀନ ହୋଇଥା'ନ୍ତି । ଯଦି ତିନିତର ଘାଟରେ ପୋଲ ନିର୍ମାଣ ସଂଭବ ହୋଇଯାଏ ତେବେ ଯାଜପୁର-ଚାନ୍ଦବାଲି-ଭଦ୍ରକ-କେନ୍ଦ୍ରାପଡା ମଧ୍ୟରେ ଯୋଗାଯୋଗ ବେଶ୍ ସହଜ ହୋଇପାରନ୍ତା । ଏହା ସହିତ ଆଖଣ୍ଡଳମଣିଙ୍କ ପୀଠକୁ ଆସୁଥିବା ଯାତ୍ରୀଙ୍କ ସମସ୍ୟା ଦୂର ହୋଇ ଯାଆନ୍ତା । ଶୁଣାଯାଉଛି, ତିନିତର ଘାଟରେ ପୋଲ ନିର୍ମାଣ ନେଇ ସରକାରୀସ୍ତରରେ ତତ୍ପରତା ପ୍ରକାଶ ପାଇଛି ।

ତିନିତର ଘାଟଟି ଆରଡ଼ି ଆଖଣ୍ଡଳମଣିଙ୍କ ପୀଠ ନିକଟରେ ଅବସ୍ଥିତ । ଏଠାରେ ବୈତରଣୀ ନଦୀ ସହିତ ଶାଳନ୍ଦୀ ନଦୀର ମିଳନ ଘଟିଛି । ଶାଳନ୍ଦୀ ନଦୀ ମୟୂରଭଞ୍ଜର ଶିମିଳିପାଳ ଜଙ୍ଗଲରୁ ବାହାରି କେନ୍ଦୁଝର ଓ ମୟୂରଭଞ୍ଜ ଦେଇ ହାଟଡିହି ବ୍ଲକ୍‌ରୁ ଭଦ୍ରକ ଜିଲ୍ଲାରେ ପ୍ରବେଶ କରି ଏହି ତିନିତର ଘାଟ ନିକଟରେ ବୈତରଣୀ ନଦୀରେ ପଡିଛି । ଏଠାରୁ ବୈତରଣୀ ଶାଳନ୍ଦୀର ସମସ୍ତ ଜଳକୁ ସାଥୀରେ ଧରି ଚାନ୍ଦବାଲି ଅଭିମୁଖେ ଯାତ୍ରା କରିଛି । ବୈତରଣୀ-ଶାଳନ୍ଦୀ ନଦୀର ମିଳନ ସ୍ଥଳରେ



ତିନିତର ଘାଟ



**ତିନିତର ଘାଟ**

ଆରଡ଼ି (ଭଦ୍ରକ), ଚାନ୍ଦବାଲି (ଭଦ୍ରକ) ଓ ଗୋପାଳପୁର (କେନ୍ଦ୍ରାପଡା) ତିନି ପାର୍ଶ୍ୱରେ ତିନୋଟି ଘାଟ (ତର) ଥିବାରୁ ଏହାର ନାମ 'ତିନି ତର' ହୋଇଛି ବୋଲି ସ୍ଥାନୀୟ ଲୋକେ କହିଥିଲେ ।

କୟାଁଗୋଲାଠାରେ ବୈତରଣୀ-ପଙ୍କି ନଦୀ ଉପରେ ପୋଲ ନିର୍ମାଣ ହୋଇଯିବା ପରେ ଯାଜପୁର ଓ ଭଦ୍ରକ ମଧ୍ୟରେ ଯୋଗାଯୋଗ ସହଜ ହୋଇଯାଇଛି । ବିଶେଷକରି ଯାଜପୁର ଜିଲ୍ଲାର ଯାଜପୁର, କୋରେଇ, ଦଶରଥପୁର, ବିଞ୍ଝାରପୁର ବ୍ଲକ୍‌ର ଲୋକେ ଅତି ସୁବିଧାରେ ଆଖଣ୍ଡଳମଣିଙ୍କ ନିକଟକୁ ଆସି ପାରୁଛନ୍ତି । ଯାଜପୁରର ଲୋକେ କୟାଁଗୋଲା ନଦୀ ପୋଲ ପାର ହୋଇ ଆଖଣ୍ଡଳମଣିଙ୍କ ନିକଟରେ ପହଞ୍ଚିବା ପରେ ତିନିତର ଘାଟରେ ଡଙ୍ଗା ପାର ହୋଇ ଚାନ୍ଦବାଲିକୁ ଯିବାଆସିବା କରିଥା'ନ୍ତି । ଅପରପକ୍ଷେ, କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ଆଳି ବ୍ଲକ୍‌ର ଲୋକମାନଙ୍କୁ ଚାନ୍ଦବାଲିକୁ ଯିବା ଆସିବା ପାଇଁ ଏହି ତିନିତର ଘାଟ (ଗୋପାଳପୁର-ଚାନ୍ଦବାଲି-ଆରଡ଼ି) ପାର ହେବାକୁ ପଡିଥାଏ । ବର୍ତ୍ତମାନ ଆଳି ପତ୍ରପୁରଠାରେ ବ୍ରାହ୍ମଣୀ ପୋଲ, ଆଳି ଗଡ଼ଗଡ଼ିଆଘାଟ ନିକଟରେ ଖରସ୍ରୋତା ପୋଲ ଏବଂ ରାଜକନିକା ଓ ଚାନ୍ଦବାଲି ମଧ୍ୟରେ ବୈତରଣୀ ନଦୀ ଉପରେ ପୋଲ ନିର୍ମାଣ ହୋଇଯାଇ ଥିବାରୁ କଟକରୁ ଚାନ୍ଦବାଲିକୁ ସିଧା ରାସ୍ତା ଫିଟି ଯାଇଛି । କଟକ-ଚାନ୍ଦବାଲି ରାସ୍ତା ଏକ ରାଜ୍ୟ ରାଜପଥର ମାନ୍ୟତା ପାଇଛି । ତିନିତର ଘାଟରେ ଯଦି ଏକ ତ୍ରିଭୁଜାକାର ପୋଲ ନିର୍ମାଣ ସଂଭବ ହୋଇଯାଏ ତେବେ କଟକ, କେନ୍ଦ୍ରାପଡ଼ା, ଯାଜପୁର, ଭଦ୍ରକ, ଚାନ୍ଦବାଲି, ଧାମରାକୁ ଯୋଗାଯୋଗ ଅତି ସୁଗମ ହୋଇଯିବ ।

## ଆରଡ଼ି ଘାଟ

*(Aradi Ghat; connecting Kendrapada with Akhandalamani)*

ଆରଡ଼ିସ୍ଥିତ ଆଖଣ୍ଡଳମଣି ବୈତରଣୀ ଘାଟଟି ଯୋଗୁଁ କେନ୍ଦ୍ରାପଡାବାସୀ ନଈ ପାର ହୋଇ ଆଖଣ୍ଡଳମଣି ମହାଦେବ ଦର୍ଶନ କରିପାରନ୍ତି । ଚାନ୍ଦବାଲି ବ୍ଲକ୍ ଅନ୍ତର୍ଗତ ଆରଡ଼ି ଆଖଣ୍ଡଳମଣିଙ୍କ ନିକଟରେ

ଆଖଣ୍ଡଳମଣି ଘାଟ ରହିଥିବାବେଳେ ଅପରପାର୍ଶ୍ୱରେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍‌ର ମାନପୁରଠାରେ ଏକ ତଙ୍ଗାଘାଟ ରହିଛି । କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ, ଆଳି, ରାଜକନିକାର ଲୋକେ ଏହି ମାନପୁର ବୈତରଣୀ ଘାଟ ପାର ହୋଇ ଆଖଣ୍ଡଳମଣିଙ୍କୁ ଦର୍ଶନ କରିବାକୁ ଆସନ୍ତି । ଏହି ଘାଟର ନାଉରିଆ ପ୍ରଫୁଲ ମଲ୍ଲିକ ଓ ଅଭିମନ୍ୟୁ ମଲ୍ଲିକ କେନ୍ଦ୍ରାପଡାର ଭକ୍ତମାନଙ୍କୁ ନିୟମିତ ଘାଟ ପାର କରୁଥିବାରୁ ନିଜକୁ ଧନ୍ୟ ମନେକରିଥା'ନ୍ତି । ତେବେ ଏଠାରେ ଏକ ପୋଲ ହେବାର ଯୋଜନା ରହିଛି । ପୋଲ ହୋଇଗଲେ କେନ୍ଦ୍ରାପଡା ଓ ଆଖଣ୍ଡଳମଣି ଏବଂ ଯାଜପୁର ମଧ୍ୟରେ ଯୋଗାଯୋଗ ସହଜ ହୋଇଯିବ ।

## ଘଇତାମାରି ପାଟ: ଦୃଶ୍ୟପଟ୍ଟର ବାହାରକୁ ଲମ୍ବିଥିବା ଦୂରନ୍ତ ଦିଗ୍‌ବଳୟ

ଘଇତାମାରି ପାଟ ସଂପର୍କରେ ପ୍ରତ୍ୟେକ ଓଡ଼ିଆଙ୍କୁ ଊଣା ଅଧିକ କିଛି ଜଣାଥିବ । ଏହା ଭଦ୍ରକ ଜିଲ୍ଲାର ପ୍ରସିଦ୍ଧ ଶୈବପୀଠ ଆଖଣ୍ଡଳମଣିଙ୍କ ନିକଟରେ ବୈତରଣୀ ନଦୀ କୂଳରେ ଅବସ୍ଥିତ । ସଂଭବତଃ ଏହା ଓଡ଼ିଶାର ଏକ ବିଶାଳ ସନ୍ତସନ୍ତିଆ ଗଭୀର ପାଟ । କାହିଁ କେଉଁ ଦିଗନ୍ତ ବିସ୍ତାରି ଆଖି ପାଉ ନଥିବା ଯାଏ ଲମ୍ବିଛି ଏହି ପାଟଟି । ଏହି ପାଟରେ ହିଁ ପ୍ରଭୁ ଆଖଣ୍ଡଳମଣିଙ୍କୁ ତତ୍କାଳୀନ କନିକା ରାଜା ପ୍ରତିଷ୍ଠା କରିଥିଲେ । ଏହା ଏକ ବିଶାଳ ଚାଷ ଜମି । ଏଥିରୁ କିଛି ଜମି ଲୋକେ ଚାଷ କରୁଥିବାବେଳେ ଅଧିକାଂଶ ଜମି ଜଳମଗ୍ନ ହୋଇ ବର୍ଷତମାମ୍ ପଡ଼ିଆ ରହିଥାଏ । ଏଠାରେ ଜଙ୍ଗଲୀ ବେଣା ଘାସ ଭର୍ତ୍ତି ହୋଇ ସନ୍ତସନ୍ତିଆ ଭୂମି ସୃଷ୍ଟି କରିଥାଏ ।

ଘଇତାମାରି ପାଟ ସଂପର୍କରେ ଥିବା ଏହି କିମ୍ବଦନ୍ତୀଟି ଗାଁ ଗାଁରେ ପରିଚିତ । ଦିନେ ଜଣେ ଚାଷୀ ଏହି ପାଟକୁ ତରବରିଆ ଭାବେ ହଳ ନେଇ ଚାଲିଯାଇଥିଲା । ସେ ସକାଳ ଜଳଖିଆ କିମ୍ବା ପଖାଳ ନ ଖାଇ ଖାଲି ପେଟରେ ହଳ ସହ ବିଲରେ ପହଞ୍ଚି କାମ ଆରମ୍ଭ କରିଥିଲା । ମଧ୍ୟାହ୍ନ ସମୟରେ ତା' ସ୍ତ୍ରୀ ବିଲକୁ ପାଣି ଓ ଭାତ ନେଇଯିବାର କଥା ଥିଲା । ମାତ୍ର ଘରେ କୌଣସି କାରଣରୁ ବିଳମ୍ବ ହୋଇଯିବାରୁ ସ୍ତ୍ରୀ ପାଣି ଓ ଭାତ ନେବା କଥା ଭୁଲି ଯାଇଥିଲା । ତେବେ ମଧ୍ୟାହ୍ନ ସମୟ ଗଡ଼ିଯିବା ଜାଣିପାରି ସ୍ତ୍ରୀ ତରବର ହୋଇ ଭାତ, ପାଣି ନେଇ ବିଲକୁ ଧାଇଁଲା । ସେତେବେଳକୁ ଟାଇଁଟାଇଁ ଖରା ଓ ମଧ୍ୟାହ୍ନ ଧୂପ ସମୟ । ସ୍ୱାମୀ କେଉଁଠି ହଳ କରୁଛନ୍ତି ତାହା ସ୍ତ୍ରୀକୁ ଦୃଶ୍ୟ ହେଉ ନଥାଏ । ଧାଇଁ ଧାଇଁ ସ୍ତ୍ରୀ ସ୍ୱାମୀ ନିକଟରେ ପହଞ୍ଚିଲାବେଳକୁ ସ୍ୱାମୀ ହାତରେ ଧରିଥିବା ପାଞ୍ଚଣ (ବାଡ଼ି) ଧରି ଧାଇଁ ଆସିଲା ।

ସ୍ୱାମୀ ପାଞ୍ଚଣ ଧରି ଧାଇଁ ଆସିବାରୁ ପତ୍ନୀ ଡରିଯାଇ ଭାତ ଓ ପାଣିକୁ ସେଇଠି ଫିଙ୍ଗି ଦେଇ ଘରକୁ ଦୌଡି ପଳାଇଲା । ସ୍ୱାମୀ ଶୋଷ ବିକଳରେ ଦଉଡି ଦଉଡି ଆସି ସେଠାରେ ପହଞ୍ଚିଲା

ବେଳକୁ ସ୍ତ୍ରୀ ସେଠାରେ ନଥିଲା । ପାଣି ନ ପାଇ ପ୍ରବଳ ଶୋଷରେ ସେତେବେଳକୁ ସ୍ୱାମୀର ଜୀବନ ଚାଲି ଯାଇଥିଲା । ପତ୍ନୀର ସାମାନ୍ୟ ଭୁଲ୍ ଯୋଗୁଁ ନିଜ ସ୍ୱାମୀ (ଗାଉଁଲି ଭାଷାରେ 'ଘଇତା')ର ମୃତ୍ୟୁ ହେବାରୁ ଏହି ପାଟର ନାଁ 'ଘଇତାମାରି' ପାଟ ହୋଇଛି ବୋଲି ସ୍ଥାନୀୟ ଲୋକେ କହନ୍ତି ।

ବୈତରଣୀ ନଦୀ କୂଳେକୂଳେ ଦିଗନ୍ତ ବିସ୍ତାରି ଏହି ଘଇତାମାରି ପାଟଟି ଲମ୍ବିଯାଇଛି କାହିଁ କେଉଁ ଦୂରନ୍ତ ଦିଗ୍‌ବଳୟ ଆଡେ । ଆଜି ବି ଘଇତାମାରି ପାଟକୁ ନେଇ ରହିଥିବା ଏହି କିମ୍ବଦନ୍ତୀଟି ଓଡ଼ିଆମାନଙ୍କ ମନରେ ଉଜ୍ଜୀବିତ ହୋଇ ରହିଛି । ଏହି ଘଇତାମାରି ପାଟ ମଝିରେ ହିଁ ବାବା ଆଖଣ୍ଡଳମଣି ପୂଜିତ ହୋଇଆସୁଛନ୍ତି ।

## ଚାନ୍ଦବାଲି-କନିକା ବୈତରଣୀ ପୋଲ: ସହସ୍ରାବ୍ଦୀର ଉପଲବ୍‌ଧି

*(Chandabali-Kanika Baitarani bridge)*

ଗତ ହଜାରେ ବର୍ଷ ମଧ୍ୟରେ ଯଦି କିଛି ଆଖିଦୃଶିଆ କାମ ଓଡ଼ିଶାରେ ସଂଭବ ହୋଇଥାଏ, ସେଥିମଧ୍ୟରୁ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ଭଦ୍ରକ ଜିଲ୍ଲାର ଚାନ୍ଦବାଲିକୁ ସଂଯୋଗ କରୁଥିବା ବୈତରଣୀ ପୋଲଟି ଅନ୍ୟତମ । ଏହି ପୋଲଟି ଯଦି ଗତ ପାଞ୍ଚ ଶହ ବର୍ଷ ତଳୁ ନିର୍ମିତ ହୋଇପାରିଥା'ନ୍ତା ତେବେ ଆଜି ଓଡ଼ିଶାର ଭାଗ୍ୟରେ କେତେ କ'ଣ ପରିବର୍ତ୍ତନ ଦେଖାଯାଇଥା'ନ୍ତା ତାହା ଭାବିହୁଏନି । ଅତି କମ୍‌ରେ ଏହି ପୋଲଟି ଇଂରେଜ ଶାସନ କାଳରେ ନିର୍ମିତ ହୋଇଥିଲେ ଆଜି ଚାନ୍ଦବାଲି-କନିକା ସମେତ କେନ୍ଦ୍ରାପଡ଼ା ଓ ଭଦ୍ରକ ଅଞ୍ଚଳ ଅର୍ଥନୈତିକ ସ୍ତରରେ ଅନେକ ଆଗରେ ଥା'ନ୍ତା । ସୁଖର କଥା, ଏବେ କନିକା-ଚାନ୍ଦବାଲି ମଧ୍ୟରେ ବୈତରଣୀ ନଦୀ ପୋଲ ନିର୍ମାଣ ହୋଇଯିବା ପରେ କଟକରୁ ଚାନ୍ଦବାଲିକୁ ସିଧା ସଳଖ ଯୋଗାଯୋଗ ସଂଭବ ହୋଇପାରିଛି ।

କଟକରୁ ଚାନ୍ଦବାଲିକୁ ସଡ଼କ ପଥରେ ପରିବହନ କଥା ଭାବି ହୁଏନି । ଚାନ୍ଦବାଲିରୁ ବସ୍

ଚାନ୍ଦବାଲି-କନିକା ବୈତରଣୀ ପୋଲ





**ଚାନ୍ଦବାଲି-କନିକା ବୈତରଣୀ ପୋଲ** ଉପରେ ଲେଖକ

ଯୋଗେ କଟକ ଯିବା; ଏହା କ'ଣ ସଂଭବ? ଏବେ ବି କନିକା ଓ ଚାନ୍ଦବାଲିର ଲୋକେ ଏକଥା ବିଶ୍ୱାସ କରିପାରନ୍ତିନି । କାରଣ ପୃଥିବୀର ମଙ୍ଗଳ ଗ୍ରହ ଅଭିଯାନଠାରୁ କଟକ ଓ ଚାନ୍ଦବାଲି ମଧ୍ୟରେ ଯୋଗାଯୋଗ ବ୍ୟବସ୍ଥା ଆହୁରି ଜଟିଳ ଥିଲା । କଟକରୁ ଚାନ୍ଦବାଲିକୁ ଆସିବାକୁ ହେଲେ କେତେ ନଦୀ ପାର ହେବାକୁ ପଡ଼ିଥାଏ ତାହା କଳ୍ପନା କରିହୁଏନା । କଟକର ମହାନଦୀ, ବିରୂପା, ଗେଙ୍ଗୁଟି, କେନ୍ଦ୍ରାପଡ଼ା ସହର ଦେଇ ପ୍ରବାହିତ ଗୋବରୀ ନଦୀ ଅତିକ୍ରମ କରିବା ପରେ ପଟ୍ଟାମୁଣ୍ଡାଇ-ଆଳି ମଧ୍ୟରେ ପତ୍ରପୁର ନିକଟରେ ବ୍ରାହ୍ମଣୀ ନଦୀ, ଆଳି-କନିକା ମଧ୍ୟରେ ଖରସ୍ରୋତା ନଦୀ ଅତିକ୍ରମ କରିବା ପରେ ପୁଣି କନିକା ଓ ଚାନ୍ଦବାଲି ମଧ୍ୟରେ ବୈତରଣୀ କଥା ଭାବିବାକୁ ପଡ଼ିଥାଏ । ଯେତେବେଳେ ଏହିସବୁ ନଦୀରେ ପୋଲ ନିର୍ମାଣ ହୋଇ ନଥିଲା, ସେତେବେଳେ ଜଣେଲୋକ କଟକରୁ କନିକା କିମ୍ବା ଚାନ୍ଦବାଲିକୁ ଆସିବାକୁ ହେଲେ ତାକୁ କିଭଳି ନାକେଦମ୍ ହେବାକୁ ପଡୁ ନଥିବ? ଭାବିଲେ ଦେଖି । ଏହିସବୁ ପ୍ରଖର ସ୍ରୋତପୂର୍ଣ୍ଣ ନଦୀ ପାର ହେବାର ବିରଳ ଅନୁଭୂତି ଓ ରୋମାଞ୍ଚକର କାହାଣୀ ଆଜି ବି କନିକା, ଚାନ୍ଦବାଲି, ପଟ୍ଟାମୁଣ୍ଡାଇ ଅଞ୍ଚଳର ପୁରୁଣାକାଳିଆ ଲୋକମାନଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ ।

ଦିନେ କୁହାଯାଉଥିଲା, ପଟ୍ଟାମୁଣ୍ଡାଇର ପତ୍ରପୁରଠାରେ ପୃଥିବୀ ସରିଛି । ପ୍ରତିବର୍ଷ ବନ୍ୟା ସମୟରେ ଭୟଙ୍କର ଓ ଗଭୀର ସ୍ରୋତପୂର୍ଣ୍ଣ ବ୍ରାହ୍ମଣୀ ନଦୀ ପଟ୍ଟାମୁଣ୍ଡାଇ ଓ ଆଳିବାସୀଙ୍କ ପାଇଁ କିଭଳି ଦାଉ ସାଜିଥାଏ, ତାହା କାହାକୁ ଅଛପା ନଥିବ । ଯେତେବେଳେ ପତ୍ରପୁରଠାରେ ବ୍ରାହ୍ମଣୀ ଉପରେ, କନିକା ନିକଟରେ ଖରସ୍ରୋତା ଏବଂ ଚାନ୍ଦବାଲି ବୈତରଣୀ ପୋଲ ନିର୍ମାଣ ହୋଇ ନଥିଲା,

ସେତେବେଳେ ଅବିଭକ୍ତ କଟକ ଜିଲ୍ଲା ସହିତ ଆଳି, କନିକା, ଚାନ୍ଦବାଲି ଆଦି ଅଞ୍ଚଳ ସଂପୂର୍ଣ୍ଣ ବିଛିନ୍ନ ହୋଇରହିଥିଲା । ଯଦିଓ ଏବେ ସେ ଚିତ୍ର ଆଉ ନାହିଁ । ଏବେ ଏସବୁ ଚିରସ୍ରୋତା ନଦୀମାନଙ୍କରେ ପୋଲ ନିର୍ମାଣ ହୋଇଯିବା ପରେ କନିକା ଓ ଚାନ୍ଦବାଲି ଆଉ ଅପହଞ୍ଚ ହୋଇ ରହିନାହିଁ ।

ଅତୀତରେ ପତ୍ରପୁର ବ୍ରାହ୍ମଣୀ ତଙ୍ଗା ଘାଟରେ ଅନେକ ବାର ତଙ୍ଗାବୁଡି ବହୁ ଧନଜୀବନ କ୍ଷୟକ୍ଷତି ହେବା ଘଟଣା ସମଗ୍ର ପଟ୍ଟାମୁଣ୍ଡାଇ ଅଞ୍ଚଳରେ ପ୍ରମୁଖ ଖବର ପାଲଟୁଥିଲା । ସେହିଭଳି ଖରସ୍ରୋତା ଓ ବୈତରଣୀ ନଦୀର ତଙ୍ଗାଘାଟରେ ନଦୀ ପାରହେଉଥିବାର ଦୃଶ୍ୟ ଏବେ ଆଉ ନାହିଁ । ଏବେ ଏସବୁ ଘାଟମାନଙ୍କରେ ପୋଲ ହୋଇଯିବା ପରେ ଏ ଅଞ୍ଚଳର ଗମନାଗମନର ଚିତ୍ର ବଦଳି ଯାଇଛି । ବିଶେଷକରି କନିକା ଓ ଚାନ୍ଦବାଲି ମଧ୍ୟରେ ବୈତରଣୀ ପୋଲଟି ନିର୍ମାଣ ହୋଇଯିବା ପରେ କଟକରୁ ସିଧା ଧାମରା ବନ୍ଦର ପର୍ଯ୍ୟନ୍ତ ଯୋଗାଯୋଗ ସୁଗମ ହୋଇଯାଇଛି ।

ଅତୀତରେ କନିକା ଓ ଚାନ୍ଦବାଲି ମଧ୍ୟରେ ଲୋକମାନେ ତଙ୍ଗା ସାହାଯ୍ୟରେ ଯାତାୟତ କରୁଥିଲେ । ବୈତରଣୀ ନଦୀର କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ପାର୍ଶ୍ୱରେ ତରାସ ଗ୍ରାମ ପଞ୍ଚାୟତର ଗୁଆଳି ଗାଁରେ ଏକ ପ୍ରାଚୀନ ତଙ୍ଗାଘାଟ ଥିବାବେଳେ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ପାର୍ଶ୍ୱରେ ଏକ ତଙ୍ଗାଘାଟ ରହିଥିଲା । ଅତୀତରେ **ଗୁଆଳି ଘାଟ** ଓ **ଚାନ୍ଦବାଲି ଘାଟ**ର ବେଶ୍ ପ୍ରସିଦ୍ଧି ରହିଥିଲା । ତେବେ ବୈତରଣୀ ପୋଲ ହୋଇଯିବା ପରେ ଏହି ଦୁଇ ଘାଟ ସେମାନଙ୍କର ଗୁରୁତ୍ୱ ହରାଇଛନ୍ତି । ତଥାପି ଆଜିର ଦିନରେ ଏହି ଦୁଇ ଘାଟରେ ଗାଁଗହଳିର ଲୋକେ କାଁଭାଁ ନଦୀ ପାର ହୋଇଥା'ନ୍ତି ।

୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଇତିହାସର ପ୍ରାଚୀନ ଚାନ୍ଦବାଲି ବନ୍ଦରକୁ ପୁଣିଥରେ କାର୍ଯ୍ୟକ୍ଷମ କରିବାର ପରିକଳ୍ପନା କରାଯାଇଥିଲା । ସେତେବେଳେ ସ୍ଥଳପଥର ବିକାଶ ପ୍ରତି ସେତେଟା ଧ୍ୟାନ ଦିଆଯାଇ ନଥିବାରୁ ବିଭିନ୍ନ ନଦୀମାନଙ୍କରେ ପୋଲ କଥା ଚିନ୍ତା କରାଯାଇ ନଥିଲା । ଇଂରେଜ ଶାସନ କାଳରେ ଜଳପଥ ହିଁ ଯୋଗାଯୋଗର ମୁଖ୍ୟ ମାଧ୍ୟମ ଥିଲା । ଧାମରା ମୁହାଣ ଦେଇ ଜାହାଜରେ ମାଲ୍ ପରିବହନ କରାଯାଉଥିଲା ଏବଂ ଇଂରେଜମାନେ ଷ୍ଟିମର ଯୋଗେ ଧାମରାରୁ ବୈତରଣୀ ଦେଇ ଚାନ୍ଦବାଲିରେ ପହଞ୍ଚୁଥିଲେ । ଚାନ୍ଦବାଲିଠାରେ ଇଂରେଜ ସରକାରଙ୍କର ଏକ ବନ୍ଦର ଅଫିସ ରହିଥିଲା । ଏହି ଅଫିସର ନାମ ଥିଲା 'ପୋର୍ଟ ଆଣ୍ଡ ଇନ୍ ଲ୍ୟାଣ୍ଡ ୱାଟର ଟ୍ରାନ୍ସପୋର୍ଟ ଅଫିସ'*(Port and Inland Water Transport Office)*। ଆଜି ମଧ୍ୟ ଏଠାରେ ଏହି ଅଫିସ କାର୍ଯ୍ୟ କରୁଛି । ଏଠାରେ ଜଣେ ସହକାରୀ ଯନ୍ତ୍ରୀଙ୍କ ସମେତ ଆଉ ପାଞ୍ଚ ଜଣ କର୍ମଚାରୀ ଅବସ୍ଥାପିତ ଅଛନ୍ତି । ଏଠାରୁ ପାଖାପାଖି ଚାରିପାଞ୍ଚଟି ଲଞ୍ଚ ବିଭିନ୍ନ ସ୍ଥାନକୁ ଚଳାଚଳ କରୁଛି । ପ୍ରତିଦିନ ଚାନ୍ଦବାଲିର ଏହି ଅଫିସ ନିକଟସ୍ଥ ସରକାରୀ ମୋଟର ଲଞ୍ଚ ଜେଟିରୁ ଧାମରା, ଚନ୍ଦନିପାଳ ଏବଂ ଆରଡ଼ି ଆଖଣ୍ଡଳମଣି ପୀଠକୁ ସରକାରୀ ମୋଟର ଲଞ୍ଚ ଚଳାଚଳ କରିଥାଏ ।

# ନରେନ୍ଦ୍ରପୁର : ପ୍ରାଚୀନ ଉତ୍କଳର ଐତିହାସିକ ନୌବାଣିଜ୍ୟ କେନ୍ଦ୍ର

*(Narendrapur; Ancient navigational commercial hub)*

ଏକଦା ନରେନ୍ଦ୍ରପୁର ପ୍ରାଚୀନ ଉତ୍କଳର ଏକ ପ୍ରମୁଖ ନୌବାଣିଜ୍ୟ କେନ୍ଦ୍ର ଭାବେ ବେଶ୍ ସୁଖ୍ୟାତ ହୋଇପାରିଥିଲା । କନିକା ରାଜ୍ୟ ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ନରେନ୍ଦ୍ରପୁର ଏକ ବାଣିଜ୍ୟିକ କେନ୍ଦ୍ର ଭାବେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲା । ବୈତରଣୀ ନଦୀ ଅବବାହିକାରେ ଅବସ୍ଥିତ ଏହି ଅଞ୍ଚଳରେ ପ୍ରାଚୀନ ଉତ୍କଳର ସାଧବମାନେ ବସବାସ କରିବା ସହିତ ଜାଭା, ବୋର୍ଣ୍ଣିଓ, ବାଲି, ସିଂହଳ, ସୁମାତ୍ରା ଭଳି ବିଦେଶମାନଙ୍କ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ ।

ନରେନ୍ଦ୍ର ସୌଦାଗର ନାମରେ ଜଣେ ବଣିକ (ସୌଦାଗର) ଏଠାରେ ଏକ ବସତି (ପାଟଣା) ପ୍ରତିଷ୍ଠା କରିଥିଲେ । ତାଙ୍କ ନାମାନୁସାରେ ଏହି ସ୍ଥାନ (ପାଟଣା)ର ନାମ 'ନରେନ୍ଦ୍ରପୁର' ହୋଇଛି ବୋଲି ଇତିହାସରେ ଉଲ୍ଲେଖ ରହିଛି । ନରେନ୍ଦ୍ର ସୌଦାଗର ଏଠାରେ ତାଙ୍କର ଇଷ୍ଟଦେବୀ ମା' ପାଟଣା ମଙ୍ଗଳାଙ୍କର ଏକ ଭବ୍ୟ ମନ୍ଦିର ନିର୍ମାଣ କରି ନିଜର ବାଣିଜ୍ୟ କାରବାରକୁ ବୃଦ୍ଧି କରିପାରିଥିଲେ । ଦିନେ ଏହି ନରେନ୍ଦ୍ରପୁର ଛତ୍ରପଦା ନାମରେ ଖ୍ୟାତ ଥିଲା । ଅତୀତରେ ଏହି ଛତ୍ରପଦାଟି ଓଡ଼ିଶାର ସାଧବମାନଙ୍କର ବୋଇତ ଲାଗିବାର ପ୍ରମୁଖ କେନ୍ଦ୍ର (ବନ୍ଦର) ଥିଲା ।

ଧନେଶ୍ୱର ସୌଦାଗର ନାମରେ ଜଣେ ସୌଦାଗର ମା' ପାଟଣା ମଙ୍ଗଳାଙ୍କୁ ସିଂହଳ ଦ୍ୱୀପ (ଶ୍ରୀଲଙ୍କା)ରୁ ଆଣି ଛତ୍ରପଦାଠାରେ ସ୍ଥାପନ କରିଥିଲେ । ପରେ ତାଙ୍କ ପୁତ୍ର ନରେନ୍ଦ୍ର ସୌଦାଗର ମା'ଙ୍କର ଏକ ଭବ୍ୟ ମନ୍ଦିର ପ୍ରତିଷ୍ଠା କରାଇଥିଲେ । ନରେନ୍ଦ୍ର ସୌଦାଗରଙ୍କ ନାମାନୁସାରେ ଛତ୍ରପଦା ପାଟଣାଟି ପରବର୍ତ୍ତୀ କାଳରେ ନରେନ୍ଦ୍ରପୁର ନାମରେ ଖ୍ୟାତ ହେଲା । ନରେନ୍ଦ୍ର ସୌଦାଗରଙ୍କ ଅନ୍ତେ ତାଙ୍କର ପାଳିତା କନ୍ୟା 'କନିକା' (କୁଜଙ୍ଗ ରାଜକନ୍ୟା)ଙ୍କ ନାମାନୁସାରେ ବୈତରଣୀ ନଦୀ ଅବବାହିକାର ତ୍ରିକୋଣଭୂମି ଅଞ୍ଚଳରେ 'କନିକା ରାଜ୍ୟ' ଗଢ଼ି ଉଠିଥିଲା । ନରେନ୍ଦ୍ର ସୌଦାଗରଙ୍କ ପାଳିତା କନ୍ୟା 'କନିକା'ଙ୍କୁ ମୟୂରଭଞ୍ଜର ଭଞ୍ଜବଂଶୀ ରାଜା ଭୁଜବଳ ଭଞ୍ଜ ବିବାହ କରି ଏଠାରେ ଭଞ୍ଜ ରାଜବଂଶ ପ୍ରତିଷ୍ଠା କରିଥିଲେ ଏବଂ କନିକା ତ୍ରିକୋଣଭୂମି ଅଞ୍ଚଳଟି ଭଞ୍ଜ ରାଜ୍ୟ ଭାବେ ଗଢ଼ି ଉଠିଥିଲା । କ୍ରମେ ନରେନ୍ଦ୍ରପୁର ନିଜର ଗୁରୁତ୍ୱ ହରାଇବା ସହିତ କନିକା ରାଜ୍ୟର ଅଭ୍ୟୁଦୟ ଘଟିଥିଲା ।

ନରେନ୍ଦ୍ରପୁର ପାଟଣାର ମଙ୍ଗଳାଙ୍କୁ ଆରାଧନା କରି ସେତେବେଳେ ସାଧବମାନେ ଦୂରବିଦେଶକୁ ବାଣିଜ୍ୟ କରିବାକୁ ଯାଉଥିଲେ । ସମଗ୍ର ଓଡ଼ିଶାରେ ଏହି ନରେନ୍ଦ୍ରପୁରଟି ଏକ ନୌବାଣିଜ୍ୟର ପ୍ରମୁଖ କେନ୍ଦ୍ର ଭାବେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଥିଲା ।

କିମ୍ବଦନ୍ତୀ ଅନୁସାରେ, ମା' ମଙ୍ଗଳା ଦିନେ ସ୍ୱର୍ଣ୍ଣ ଲଙ୍କାପୁରୀରେ ଆରାଧ୍ୟା ଦେବୀ ଲଙ୍କେଶ୍ୱରୀ ନାମରେ ପୂଜା ପାଉଥିଲେ । ଛତ୍ରପଦା (ବୈତରଣୀ କୂଳ ଓ ଚାନ୍ଦବାଲି ନିକଟ)ର ବଣିକ ଧନେଶ୍ୱର ସୌଦାଗର ବାଣିଜ୍ୟ କରିବାକୁ ବୋଇତରେ ସମୁଦ୍ର ପଥରେ ସିଂହଳ (ଶ୍ରୀଲଙ୍କା) ଯାତ୍ରା କରିଥିଲେ । ମା' ମଙ୍ଗଳା ନିଜ ଇଛାରେ ବଣିକ ଧନେଶ୍ୱର ସୌଦାଗରଙ୍କ ସାଥୀରେ ଉତ୍କଳର ଏହି ଛତ୍ରପଦା ନରେନ୍ଦ୍ରପୁର ଗ୍ରାମକୁ ଚାଲି ଆସିଥିଲେ ବୋଲି କୁହାଯାଏ ।

ନରେନ୍ଦ୍ରପୁର ଗ୍ରାମଟି ବର୍ତ୍ତମାନ ଭଦ୍ରକ ଜିଲ୍ଲାର ତିହିଡ଼ି ବ୍ଲକ୍‌ରେ ଅବସ୍ଥିତ । ମାତ୍ର ଏହା ତତ୍କାଳୀନ କନିକା ରାଜ୍ୟର ଏକ ପ୍ରମୁଖ ବାଣିଜ୍ୟିକ କେନ୍ଦ୍ର ଥିଲା । ନରେନ୍ଦ୍ରପୁରରେ ମା' ବରାହୀଙ୍କର ଏକ ବିଶାଳ ପ୍ରସ୍ତର ମୂର୍ତ୍ତି ରହିଛି । ଏହି ମୂର୍ତ୍ତିଟି ବର୍ତ୍ତମାନ ଯାଜପୁର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ପରିସରରେ ସଂରକ୍ଷିତ ହୋଇ ରହିଛି ।

ନରେନ୍ଦ୍ରପୁର ପ୍ରାଚୀନ ଉତ୍କଳର ଏକ ପ୍ରଧାନ ନୌବାଣିଜ୍ୟ କେନ୍ଦ୍ର ଥିବାରୁ ବୈତରଣୀର ଧାମରା ବନ୍ଦର ଦେଇ ଦୂର ବିଦେଶକୁ ବହୁ ପ୍ରସ୍ତର ମୂର୍ତ୍ତି ଚାଲାଣ ହେଉଥିଲା । ସେତେବେଳେ ବିଦେଶରେ ଓଡ଼ିଶାର ପ୍ରସ୍ତର ମୂର୍ତ୍ତିର ବେଶ୍ ଖ୍ୟାତି ରହିଥିଲା । ସେହିଭଳି ଓଡ଼ିଆ ସାଧବମାନେ ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରି ସଂପୃକ୍ତ ଦେଶମାନଙ୍କରୁ ଅନେକ ମୂର୍ତ୍ତି ନିଜ ଦେଶକୁ ଆଣିଥିଲେ । ଏଣୁ ନରେନ୍ଦ୍ରପୁର ସେତେବେଳେ ପ୍ରସ୍ତରମୂର୍ତ୍ତି କାରବାରର ଏକ ପ୍ରମୁଖ ପେଣ୍ଠସ୍ଥଳ ଥିଲା ବୋଲି ଅନୁମାନ କରାଯାଏ । ଆଜି ବି ଏ ଅଞ୍ଚଳରେ ବହୁ ପ୍ରସ୍ତର ମୂର୍ତ୍ତି ଦେଖିବାକୁ ମିଳିଥାଏ । ନରେନ୍ଦ୍ରପୁରର ପାଟଣା ମଙ୍ଗଳା, ଧାମରାର ଧାମରାଈଙ୍କ ମୂର୍ତ୍ତି, ବରାହୀ ମୂର୍ତ୍ତି, ସାତଭାୟାର ପଞ୍ଚୁ ବରାହୀ ମୂର୍ତ୍ତିମାନଙ୍କୁ ବହୁତ ପ୍ରାଚୀନ ମୂର୍ତ୍ତି ଭାବେ ବିଚାର କରାଯାଏ । ନରେନ୍ଦ୍ରପୁର ଗ୍ରାମକୁ ୧୦୦୦ (ସହସ୍ର) ଶିବଲିଙ୍ଗର ଗ୍ରାମ ବୋଲି କୁହାଯାଏ । ଏହି ଗାଁରେ ହଜାରେରୁ ଊର୍ଦ୍ଧ୍ୱ ଶିବଲିଙ୍ଗ ରହିଛି । ଏହିସବୁ ଶିବଲିଙ୍ଗ ବିଦେଶକୁ ଚାଲାଣ ହେବା ପାଇଁ ବୋଧହୁଏ ନରେନ୍ଦ୍ରପୁରରେ ଗଚ୍ଛିତ ହୋଇଥାଇପାରେ ବୋଲି ବିଶ୍ୱାସ କରାଯାଏ ।

ଧାମରାଈଙ୍କ ମୂର୍ତ୍ତି ବୈତରଣୀ ନଦୀ ଗର୍ଭରୁ ଉଦ୍ଧାର କରାଯାଇ ଧାମରାଠାରେ ପ୍ରତିଷ୍ଠା କରାଯାଇଛି । ମା' ଧାମରାଈଙ୍କ ମୂର୍ତ୍ତି ସ୍ଥାପନାକୁ ନେଇ ସ୍ଥାନୀୟ ଅଞ୍ଚଳରେ ଅନେକ କିମ୍ବଦନ୍ତୀ ରହିଛି । ମାତ୍ର, ଏହାର ଐତିହାସିକ ଦିଗ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାକୁ ସୂଚିତ କରିଥାଏ । ହୁଏତ ଏମିତି ହୋଇପାରେ, ସାଧବମାନେ ଏହି ମୂର୍ତ୍ତିକୁ ନୌକା ଯୋଗେ ଦୂର ଦେଶକୁ ରପ୍ତାନୀ କରିବାକୁ ନେଉଥିବାବେଳେ କିମ୍ବା ବିଦେଶରୁ ମୂର୍ତ୍ତିଟିକୁ ନିଜ ରାଜ୍ୟକୁ ଆଣୁଥିବାବେଳେ ନୌକାଟି ଧାମରା ମୁହାଁଣ ନିକଟରେ ବୁଡ଼ିଯାଇଥିବ ଏବଂ ବୈତରଣୀ ଗର୍ଭରେ ଲୀନ ହୋଇଯାଇଥିବ । ପରବର୍ତ୍ତୀ ସମୟରେ ଏହି ମୂର୍ତ୍ତିଟିକୁ ବୈତୀରଣୀ ନଦୀ ଗର୍ଭରୁ ଉଦ୍ଧାର କରାଯାଇ ଏଠାରେ ପ୍ରତିଷ୍ଠା କରାଯାଇଥିବ । ତେବେ ସେ ଯାହା ହେଉନା କାହିଁକି ନରେନ୍ଦ୍ରପୁର ଅତୀତରେ ପ୍ରାଚୀନ ଉତ୍କଳର

ଏକ ପ୍ରମୁଖ ନଦୀ ବନ୍ଦର ଭାବେ ପ୍ରତିଷ୍ଠା ଲାଭ କରିଥିଲା ବୋଲି ପ୍ରମାଣର ଅପେକ୍ଷା ରଖେନାହିଁ ।

କଳାମୁଗୁନି ପଥରରେ ନିର୍ମିତ ମା' ମଙ୍ଗଳାଙ୍କର ଏହି ମୂର୍ତ୍ତିଟିକୁ ପ୍ରାଚୀନ ଉତ୍କଳୀୟ ସାଧବମାନେ ସିଂହଳରୁ ଆଣିଥାଇ ପାରନ୍ତି ବୋଲି ବିଶ୍ୱାସ କରାଯାଏ । ଅନୁରୂପ ଭାବେ ଅବିଭକ୍ତ ପୁରୀ ଜିଲ୍ଲାର ପ୍ରାଚୀ ନଦୀ କୂଳରେ ଅବସ୍ଥିତ କାକଟପୁରର ମା' ମଙ୍ଗଳାଙ୍କ ମୂର୍ତ୍ତିକୁ ସିଂହଳର ବୋଲି କୁହାଯାଉଛି । ପ୍ରାଚୀନ ଉତ୍କଳୀୟ ସାଧବମାନେ ସିଂହଳରୁ ମା' ମଙ୍ଗଳାଙ୍କ ମୂର୍ତ୍ତିକୁ ଆଣି ପ୍ରାଚୀ ନଦୀ କୂଳରେ ଅବସ୍ଥିତ କାକଟପୁରଠାରେ ପ୍ରତିଷ୍ଠା କରିଛନ୍ତି ବୋଲି ଐତିହାସିକ ପ୍ରମାଣ ରହିଛି । ଏହିସବୁ ଘଟଣା ତତ୍କାଳୀନ ଉତ୍କଳ ଓ ସିଂହଳ ମଧ୍ୟରେ ଥିବା ନୌବାଣିଜ୍ୟ ସଂପର୍କ ଓ ମଙ୍ଗଳା ମୂର୍ତ୍ତି ଉପାସନା ନେଇ ଅନେକ ତଥ୍ୟ ପ୍ରଦାନ କରିଥାଏ ।

[***Source***

*1. Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication,Orissa, Cuttack (1992), p-782*

୨. 'କନିକା' -ଲେଖକ: ଶୁଭ୍ରାଂଶୁ ଭୂଷଣ ସୂତାର, ପ୍ରକାଶକ: ମଲ୍ଲୀଘର, ରାଜକନିକା, କେନ୍ଦ୍ରାପଡ଼ା (୨୦୦୦), ପୃଷ୍ଠା: ୧୦, ୧୧, ୧୨, ୧୩, ୪୬, ୪୭

୩. ଭଦ୍ରକର ଦେବଦେବୀ ପୀଠ : ସଂପାଦନା: ରୁଦ୍ରମାଧବ ବାରିକ୍, ପ୍ରକାଶକ: ସଂପର୍କ ମ୍ୟୁଜିକ୍, ଅପର୍ତ୍ତିବିନ୍ଧା ନିୟୁ କଲୋନୀ, ଭଦ୍ରକ (୨୦୧୩), ପୃଷ୍ଠା: ୫୮-୬୨]

## ଚାନ୍ଦବାଲି ବନ୍ଦର: ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାର ମୂକ ସାକ୍ଷୀ

*(Chandabali; the natural river port of ancient Odisha)*




ପ୍ରାଚୀନ ନୌବାଣିଜ୍ୟ ପରଂପରା ଓ ଉତ୍କଳୀୟ ସାଧବମାନଙ୍କ କଥା ଉଠିଲେ ବୈତରଣୀର ଚାନ୍ଦବାଲି ବନ୍ଦରର ଚିତ୍ର ମନରେ ଉଦ୍ଭାବିତ ହୁଏ । ଏକଦା ଚାନ୍ଦବାଲି ପ୍ରାଚୀନ ଉତ୍କଳର ଏକ ପ୍ରାକୃତିକ ନଦୀ ବନ୍ଦର *(natural river port)* ଭାବେ ବେଶ୍ ସୁଖ୍ୟାତି

**ଚାନ୍ଦବାଲି ଫେରିଘାଟରେ ଲେଖକ**



ଅର୍ଜନ କରିପାରିଥିଲା । ପ୍ରାଚୀନ କାଳରୁ କଳିଙ୍ଗ (ଓଡ଼ିଆ)ର ସାଧବମାନେ ଏହି ବନ୍ଦର ଦେଇ ଜାଭା (ଯବଦ୍ୱୀପ), ସୁମାତ୍ରା (ସ୍ୱର୍ଣ୍ଣଦ୍ୱୀପ), ବୋର୍ଣ୍ଣିଓ (ବରୁଣ ଦ୍ୱୀପ), ବାଲି (ବଳୀ ଦ୍ୱୀପ) ପ୍ରମୁଖ ଇଣ୍ଡୋନେସିଆର ଦ୍ୱୀପପୁଞ୍ଜସମୂହ ଏବଂ ଥାଇଲ୍ୟାଣ୍ଡ (ଶ୍ୟାମ ଦେଶ), ମାଳୟ, ଭିଏତ୍‌ନାମ୍ (ଚଂପା), ଶ୍ରୀଲଙ୍କା (ସିଂହଳ), ମାଲୟେସିଆ, କାମ୍ବୋଡ଼ିଆ (କମ୍ବୋଜ), ସୁମେର (ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀ ଉପତ୍ୟକା ଅଞ୍ଚଳ ସମୂହ), ବର୍ମା (ମିଆଁମାର୍), ଆନାଟୋଲିଆ (ଏସିଆ ମାଇନର), ଗ୍ରୀସ୍, ରୋମ୍, ମିଶର (ଆଫ୍ରିକା ମହାଦେଶର ନୀଳନଦୀ ଅବବାହିକା ଅଞ୍ଚଳ), ଚୀନ୍, ଜାପାନ୍, କୋରିଆ, ଆଫ୍ରିକା, ସାଉଦିଆରବ, ଇରାକ୍, ଇରାନ୍ (ପାରସ୍ୟ), ହଲାଣ୍ଡ (ଡଚ୍-ଓଲନ୍ଦାଜ), ଡେନ୍‌ମାର୍କ (ଦିନାମାର୍) ଆଦି ଅଞ୍ଚଳକୁ ବାଣିଜ୍ୟ କରିବାକୁ ଯାଉଥିଲେ । ଏହାବ୍ୟତୀତ କଳିଙ୍ଗର ବଣିକମାନେ ଆମ ଦେଶ ଭାରତର ବିଭିନ୍ନ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । ପ୍ରାଚୀନ ଓଡ଼ିଆ ସାଧବପୁଅମାନେ ଭାରତର କରୋମଣ୍ଡଳ (ଆନ୍ଧ୍ର ଓ ତାମିଲ୍‌ନାଡୁ ଉପକୂଳ), ମାଲାବାର (କେରଳ), ଡେକାନ୍, (ଭାରତର ଦକ୍ଷିଣ-ପୂର୍ବ ଉପକୂଳ), ଗୁଜୁରାଟ, ବଙ୍ଗଦେଶ, ବମ୍ବେ ଦ୍ୱୀପ ସହ ବାଣିଜ୍ୟ କାରବାର କରୁଥିଲେ । ମାତ୍ର, ଆଜିର ଦିନରେ ଏହି ପ୍ରାଚୀନ 'ଚାନ୍ଦବାଲି ନଦୀ ବନ୍ଦର'ଟି ନିଜର ପ୍ରାସଙ୍ଗିକତା ହରାଇବସିଛି । ଆମ ପ୍ରାଚୀନ ନୌବାଣିଜ୍ୟ ପରଂପରାର ମୂକ ସାକ୍ଷୀ ଭାବେ ନିରବରେ ଠିଆ ହୋଇଛି ।




ଅତୀତରେ ଚାନ୍ଦବାଲି ବନ୍ଦରଟି ବେଶ୍ ପ୍ରସିଦ୍ଧି ଅର୍ଜନ କରିସାରିଥିଲେ ମଧ୍ୟ ଅଷ୍ଟାଦଶ-ଉନ୍ନବିଂଶ ଶତାବ୍ଦୀ ବେଳକୁ ଏହି ବନ୍ଦର ଏକପ୍ରକାର ପରିତ୍ୟକ୍ତ ହୋଇପଡ଼ିଥିଲା । ଇଂରେଜମାନଙ୍କ ଶାସନ କାଳରେ ଏହି ବନ୍ଦରର ପୁନରୁଦ୍ଧାର କରାଯାଇ ଏହାକୁ ପୁନର୍ବାର କାର୍ଯ୍ୟକ୍ଷମ କରାଯାଇପାରିଥିଲା । କ୍ୟାପ୍ଟେନ୍ ମ୍ୟାକ୍ ନିଲ୍ *(Captain Mc Neill)* ତତ୍କାଳୀନ ଓଡ଼ିଶାର କମିଶନର ରେଭେନ୍ଶା' ସାହେବ *(T.E. Ravenshaw)*ଙ୍କୁ ବୈତରଣୀ ନଦୀର ଚାନ୍ଦବାଲି ଦେଇ କଲିକତାକୁ ନିଜ ଜାହାଜରେ ନ ନିଅନ୍ତି ନା ଚାନ୍ଦବାଲି ବନ୍ଦରର ପୁନରୁଦ୍ଧାର କାମ ନ ହୁଏ । କୁଆ ରାବିବାକୁ, ତାଳ ପଡ଼ିବାକୁ ନ୍ୟାୟରେ ୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଓଡ଼ିଶାରେ ଏକ ଅନୁକୂଳ ସାମୁଦ୍ରିକ ବନ୍ଦର ଖୋଜାପଡ଼ିଲା । ଏହାପରେ ଚାନ୍ଦବାଲି ବନ୍ଦରକୁ କାର୍ଯ୍ୟକ୍ଷମ କରିବାରେ ରେଭେନ୍ଶା' ସାହେବ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ । କ୍ୟାପ୍ଟେନ୍ ମ୍ୟାକ୍ ନିଲ୍ ଶେଷରେ


ବୈତରଣୀରେ ପରିବହନ

ଏହି ଅଞ୍ଚଳର ମୋଟ ୧୭୯ ଏକର ଜମିକୁ ଲିଜ୍ ସୂତ୍ରରେ ନେଇ ଏଠାରେ ଚାନ୍ଦବାଲି ବନ୍ଦର କାମ ଆରମ୍ଭ କରିଥିଲେ । ୧୮୭୭ ମସିହାରେ ଚାନ୍ଦବାଲି ବନ୍ଦର *India General System Navigation Company and Messrs* ହାତକୁ ଚାଲିଯାଇଥିଲା । ଏହାପରେ ଚାନ୍ଦବାଲିକୁ ଓଡ଼ିଶାର ଏକ ପ୍ରମୁଖ ବନ୍ଦର ଭାବେ ଗଢାଯାଇଥିଲା ।

ଭଦ୍ରକ ଜିଲ୍ଲା ସଦର ମହକୁମାଠାରୁ ୫୦ କିଲୋମିଟର ଦୂରରେ ଚାନ୍ଦବାଲି ଅବସ୍ଥିତ ହୋଇଥିଲେ ହେଁ ଏହା କେନ୍ଦ୍ରାପଡ଼ା ଜିଲ୍ଲା (ପ୍ରାଚୀନ କନିକା ରାଜ୍ୟ) ସହିତ ଓତପ୍ରୋତ ଭାବେ ଜଡ଼ିତ । କେନ୍ଦ୍ରାପଡା ଜିଲ୍ଲାର ରାଜକନିକା ବ୍ଲକ୍ ସଦର ମହକୁମାଠାରୁ ଚାନ୍ଦବାଲିର ଦୂରତା ମାତ୍ର ୫ କିଲୋମିଟର । ବୈତରଣୀ ନଦୀ ହିଁ କନିକା ଓ ଚାନ୍ଦବାଲିକୁ ପୃଥକ


ଚାନ୍ଦବାଲି ବନ୍ଦରର ମୂକସାକ୍ଷୀ : କନିକା ରାଜାଙ୍କ ଜମାଣ ଓ ତୋପ


ଚାନ୍ଦବାଲି ବନ୍ଦରର ମୂକସାକ୍ଷୀ : ବ୍ରିଟିଶ ଅମଳର ଲଙ୍ଗର


ଚାନ୍ଦବାଲି-କନିକା ବୈତରଣୀ ପୋଲ ତଳେ ଲେଖକ



**ଚାନ୍ଦବାଲି ବନ୍ଦର କାର୍ଯ୍ୟାଳୟ ସନ୍ନିକଟ ଲଞ୍ଚ ଘାଟରେ ଲେଖକ**

କରିପାରିଛି । ଏବେ ଚାନ୍ଦବାଲିଠାରେ ବୈତରଣୀ ନଦୀ ଉପରେ ପୋଲ ନିର୍ମାଣ ହୋଇଯିବା ଫଳରେ ରାଜକନିକା ଓ ଚାନ୍ଦବାଲି ମଧ୍ୟରେ ଯୋଗାଯୋଗ ସହଜ ହୋଇପାରିଛି । ଏମିତିକି ଏହି ପୋଲଟି ନିର୍ମାଣ ହୋଇଯିବା ପରେ କଟକ-ଚାନ୍ଦବାଲି ଜାତୀୟ ରାଜପଥଟି ଓଡ଼ିଶାର ଏକ ପ୍ରମୁଖ ସ୍ଥଳପଥର ମାନ୍ୟତା ଅର୍ଜନ କରିପାରିଛି ।

ଅତୀତରେ କଟକ ଓ ବାଲେଶ୍ୱର ମଧ୍ୟରେ ଯୋଗାଯୋଗ କରିବା ପାଇଁ ଚାନ୍ଦବାଲିଠାରେ ଏକ ନଦୀଘାଟ ଥିଲା । ଚାନ୍ଦବାଲି ଘାଟଟି ସେତେବେଳେ କନିକା ରାଜ୍ୟର ଏକ ବହୁ ପରିଚିତ ଘାଟ ଭାବେ ବେଶ୍ ସୁଖ୍ୟାତି ଅର୍ଜନ କରିପାରିଥିଲା । ଭଦ୍ରକ ଜିଲ୍ଲାର ଚାନ୍ଦବାଲିଠାରେ ନଦୀଘାଟ ଥିବାବେଳେ ବୈତରଣୀ ନଦୀର ଅପରପାର୍ଶ୍ୱ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍‌ର ଗୁଆଳି ଗାଁରେ ଗୁଆଳି ଘାଟ ଥିଲା । ଏହି ଦୁଇ ନଦୀ ଘାଟ ମାଧ୍ୟମରେ ଭଦ୍ରକ (ଅବିଭକ୍ତ ବାଲେଶ୍ୱର) ଓ କେନ୍ଦ୍ରାପଡ଼ା (ଅବିଭକ୍ତ କଟକ)ର ଲୋକେ ଯାତାୟତ କରିପାରୁଥିଲେ । ମାତ୍ର ଚାନ୍ଦବାଲି ବୈତରଣୀ ପୋଲ ହୋଇଯିବା ପରେ ଆଉ ଜଳପଥର ପ୍ରାସଙ୍ଗିକତା ନାହିଁ ।

ଅତୀତରେ ଚାନ୍ଦବାଲି କନିକା ରାଜାଙ୍କର ରାଜସ୍ୱ ଅଞ୍ଚଳ ଅନ୍ତର୍ଭୁକ୍ତ ଥିଲା । ହୁକିଟୋଲା, ପାରାଦ୍ୱୀପ, ଗୋପାଳପୁର ଭଳି ଚାନ୍ଦବାଲି ଏକ ପ୍ରାକୃତିକ ବନ୍ଦର ଭାବେ ନିଜର ପରିଚୟ ସୃଷ୍ଟି

କରିପାରିଥିଲା । ମାତ୍ର ଧୁକିଟୋଲା ଭଳି ଆଜି ଚାନ୍ଦବାଲି ବନ୍ଦରଟି ମୃତପ୍ରାୟ । କନିକା ରାଜାଙ୍କ ଉଦ୍ୟମରେ ଚାନ୍ଦବାଲି ବନ୍ଦରର ଦ୍ରୁତ ବିକାଶ ଘଟିଥିଲା ।

ନୌବାଣିଜ୍ୟ କାରବାର, ମାଛଧରା ବନ୍ଦର ଓ ମାଛ ବ୍ୟବସାୟକୁ ବାଦ୍ ଦେଲେ ଚାନ୍ଦବାଲିର ଆଉ ଏକ ପରିଚୟ ରହିଛି । ଚାନ୍ଦବାଲି ହେଉଛି ବିଶ୍ୱପ୍ରସିଦ୍ଧ ଭିତରକନିକା ପ୍ରାଣୀ ଉଦ୍ୟାନ *(Bhitarkanika Wild Life Sanctuary)*କୁ ଯିବାର ପ୍ରବେଶ ପଥ (ଜଳପଥରେ) । ଚାନ୍ଦବାଲିରୁ ବୈତରଣୀ ନଦୀ ଦେଇ ଲଞ୍ଚ କିମ୍ବା ଷ୍ଟିମର ଯୋଗେ ଭିତରକନିକା ବନ୍ୟପ୍ରାଣୀ ଉଦ୍ୟାନକୁ ଯିବାକୁ ପଡ଼ିଥାଏ । ଯଦିଓ ଭିତରକନିକା ପ୍ରାଣୀ ଉଦ୍ୟାନକୁ କେନ୍ଦ୍ରାପଡ଼ା, ରାଜନଗର ଦେଇ ଯାତାୟତର ସୁବିଧା ରହିଛି, ତଥାପି ଅଧିକାଂଶ ପର୍ଯ୍ୟଟକ ଚାନ୍ଦବାଲିରୁ ଭୁଟୁଭୁଟି କିମ୍ବା ଲଞ୍ଚ ଯୋଗେ ବୈତରଣୀ ନଦୀ ପଥ ଅତିକ୍ରମ କରି ଭିତରକନିକାରେ ପହଞ୍ଚିଥା'ନ୍ତି । ଭିତରକନିକା ହେଉଛି ବୈତରଣୀ, ବ୍ରାହ୍ମଣୀ ଓ ଧାମରା ନଦୀ ମୁହାଁଣରେ ଅବସ୍ଥିତ ଏକ ତ୍ରିକୋଣଭୂମି ଅଞ୍ଚଳ *(delta)* । ଏହି ନଦୀମୁହାଁଣ ତ୍ରିକୋଣଭୂମି ଅଞ୍ଚଳରେ ବ୍ୟାପକ ହେନ୍ତାଳ ବଣ ହିଁ ଭିତରକନିକାର ପରିଚୟ । ଏହି ହେନ୍ତାଳ ଜାତୀୟ ଉଦ୍ଭିଦ *(mangrove)* ସମଗ୍ର ବିଶ୍ୱରେ ଏକ ବିରଳ ପ୍ରଜାତିର ଉଦ୍ଭିଦ ଏବଂ ଆଜିର ଦିନରେ ଏହାର ସୁରକ୍ଷା ଜରୁରୀ ହୋଇପଡିଛି । ଭିତରକନିକା ଜାତୀୟ ପ୍ରାଣୀ ଉଦ୍ୟାନରେ କୁଂଭୀର ପ୍ରଜନନ ବ୍ୟବସ୍ଥା ରହିଛି ।

ବ୍ରିଟିଶ୍ ଶାସନ ପୂର୍ବରୁ ଚାନ୍ଦବାଲି ବୈତରଣୀ ନଦୀ କୂଳରେ ଅବସ୍ଥିତ ମତ୍ସ୍ୟଜୀବିମାନେ ବସବାସ କରୁଥିବା ଏକ ଗ୍ରାମ ଭାବେ ପରିଚିତ ଥିଲା । ମତ୍ସ୍ୟଜୀବି ଓ ଏଠାକାର ସ୍ଥାନୀୟ ବ୍ୟବସାୟୀମାନେ ଦେଶୀ ଡଙ୍ଗା ମାଧ୍ୟମରେ ଚାନ୍ଦବାଲିରୁ ବୈତରଣୀ ନଦୀ ଦେଇ ଛୋଟମୋଟ ବାଣିଜ୍ୟ ଓ ପରିବହନ କାର୍ଯ୍ୟ ତୁଲାଉଥିଲେ । ୧୮୬୬ ମସିହାରେ ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଓଡ଼ିଶାକୁ ପଶ୍ଚିମବଙ୍ଗ, କଲିକତା ଓ ଅନ୍ୟାନ୍ୟ ସ୍ଥାନ ସହିତ ସଂଯୋଗ କରିବା ଅପରିହାର୍ଯ୍ୟ ହୋଇପଡ଼ିଥିଲା । ସେତେବେଳେ ସ୍ଥଳ ପଥ ଓ ଆକାଶ ପଥର ବିକାଶ ହୋଇ ନଥିଲା । ଏଣୁ ଇଂରେଜ ସରକାର ଜଳପଥ ମାଧ୍ୟମରେ ଓଡ଼ିଶାକୁ ବିଭିନ୍ନ ସ୍ଥାନ ସହିତ ସଂଯୁକ୍ତ କରିବାକୁ ଉଦ୍ୟମ କରିଥିଲେ । ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଓଡ଼ିଶାରେ ଚାଉଳ ଓ ଅନ୍ୟାନ୍ୟ ସାମଗ୍ରୀର ଭୟଙ୍କର ଅଭାବ ପରିଲକ୍ଷିତ ହୋଇଥିଲା । ଏଣୁ ସରକାର ବଙ୍ଗ ଓ ଅନ୍ୟାନ୍ୟ ଅଞ୍ଚଳରୁ ଦୁର୍ଭିକ୍ଷ ପୀଡ଼ିତ ଓଡ଼ିଶାକୁ ଚାଉଳ ଆଣିବା ଉଦ୍ଦେଶ୍ୟରେ ଚାନ୍ଦବାଲିକୁ ଏକ ନଦୀ ବନ୍ଦର ଭାବେ ବ୍ୟବହାର କରିବାକୁ ଆରଂଭ କରିଥିଲେ । ବ୍ରିଟିଶ୍ ଶାସନ କାଳରେ ବିଶେଷକରି ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପରେପରେ ବୈତରଣୀ ନଦୀକୁ ନୌବାଣିଜ୍ୟ ଓ ପରିବହନ କ୍ଷେତ୍ରରେ ବ୍ୟବହାର କରାଯିବା ସହିତ ଚାନ୍ଦବାଲି ଓଡ଼ିଶାର ଏକ ଅଗ୍ରଣୀ ବନ୍ଦର ଭାବେ ଗଢିଉଠିଲା ।

୧୮୮୧ ମସିହା ମାର୍ଚ୍ଚ ୨୮ ତାରିଖରେ ବ୍ରିଟିଶ ସରକାର ଚାନ୍ଦବାଲିକୁ ବିଧିବଦ୍ଧ ଭାବେ ଏକ ସରକାରୀ ବନ୍ଦର ଭାବେ ଘୋଷଣା କରିଥିଲେ । ଆଉ ଏହା ପରଠାରୁ ପାଖାପାଖି ଶହେ ବର୍ଷ ଧରି ଚାନ୍ଦବାଲି ଓଡ଼ିଶାର ଏକ ପ୍ରମୁଖ ବନ୍ଦର ଭାବେ ଓଡ଼ିଶାର ଜନମାନସରେ ପରିଚିତ ହୋଇ ରହିଥିଲା । ଏହି ଶହେ ବର୍ଷ ମଧ୍ୟରେ ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ପ୍ରମୁଖ ବାଣିଜ୍ୟ କେନ୍ଦ୍ର ଭାବେ ପ୍ରତିଷ୍ଠାଲାଭ କରିପାରିଥିଲା । ଚାନ୍ଦବାଲି ବନ୍ଦର ଦେଇ ମାଛ, ଶୁଖୁଆ, କୃଷି ଉତ୍ପାଦ ଯଥା- ଧାନ, ଚାଉଳ, ଲୁଣ, ମାଣ୍ଡିଆ, ସିଲ୍କ, କପା ବସ୍ତ୍ର ଆଦି ପରିବହନ ସଂଭବପର ହୋଇଥିଲା ।

ଆଜି ଧାମରା ବନ୍ଦରଟି ଦ୍ରୁତ ଗତିରେ ବିକାଶଲାଭ କରିବାରୁ ଚାନ୍ଦବାଲି ବନ୍ଦର ତା'ର ଗୁରୁତ୍ୱ ହରାଇଛି । ତଥାପି ଆଜି ବି ବ୍ରିଟିଶ୍ ଅମଳର ଜେଟି, ପୋତାଶ୍ରୟ ସ୍ଥଳ, ଲଙ୍ଗର ଚାନ୍ଦବାଲି ବନ୍ଦରର ଏକ ସମୃଦ୍ଧ ଇତିହାସକୁ ସ୍ମରଣ କରାଇଦେଇଥାଏ । ଚାନ୍ଦବାଲି ବ୍ଲକ୍ ସଦର ମହକୁମାର ନେହେରୁ ଶିଶୁ ଉଦ୍ୟାନରେ ଥିବା ପ୍ରାଚୀନ କାଳର କମାଣ, ଲଙ୍ଗର ଓ ଅନ୍ୟାନ୍ୟ ବାଣିଜ୍ୟିକ ବସ୍ତୁ ତତ୍କାଳୀନ ନୌବାଣିଜ୍ୟ ପରଂପରାକୁ ମନେ ପକେଇଥାଏ ।

ଅତୀତରେ ଇଂରେଜ ଶାସନ କାଳରେ ଚାନ୍ଦବାଲିରେ ଏକ ବନ୍ଦର କାର୍ଯ୍ୟାଳୟ ଚାଲିଥିଲା । ଆଜି ବି ଏଠାରେ ବୈତରଣୀ ନଦୀ କୂଳରେ ରହିଛି 'ପି ଆଣ୍ଡ ଆଇଡବ୍ଲ୍ୟୁଟି' ଅଫିସ୍ *(Port and Inland Water Transport Office)* । ଆଜିର ଦିନରେ ଜଳପଥର ଗୁରୁତ୍ୱ ହ୍ରାସ ପାଇଥିବା ସତ୍ତ୍ୱେ ଏହି କାର୍ଯ୍ୟାଳୟର ତଦାରଖରେ ସରକାରୀ ମୋଟର ଲଞ୍ଚ ଚଳାଚଳ କରୁଛି । ଏଠାରୁ ଅନେକ ମୋଟର ଲଞ୍ଚ ନିକଟସ୍ଥ ପ୍ରସିଦ୍ଧ ଶୈବପୀଠ ଆରଡିର ଆଖଣ୍ଡଳମଣି, ଧାମରା, ନଳିତାପାଟିଆ, ଚନ୍ଦନୀପାଳ, ରଙ୍ଗଣି-ତାଳଚୁଆକୁ ଚଳାଚଳ କରୁଛି ।

[*Source*

*1.Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication, Orissa, Cuttack (1992), p-768, 769.*

୨. ତଥ୍ୟ ସହାୟତା: ନରେନ୍ଦ୍ର ବିଶ୍ୱାଳ, ଗଜେନ୍ଦ୍ର ମାଝୀ, ବୋଟ୍‌ସମ୍ୟାନ୍, 'ପୋର୍ଟ ଆଣ୍ଡ ଇନ୍ ଲ୍ୟାଣ୍ଡ ଓ୍ୱାଟର ଟ୍ରାନ୍‌ସପୋର୍ଟ ଅଫିସ, ଚାନ୍ଦବାଲି ଏବଂ ସବ୍ୟସାଚୀ ମହାନ୍ତି, ଚାନ୍ଦବାଲି ]

## ଚାନ୍ଦବାଲି ନାବିକ ପ୍ରଶିକ୍ଷଣ କେନ୍ଦ୍ର

*(Crew Training Institute of Chandabali)*

ବୈତରଣୀ ନଦୀ ତ୍ରିକୋଣଭୂମି ଅଞ୍ଚଳରେ ଅବସ୍ଥିତ ଚାନ୍ଦବାଲି ଦିନେ ଓଡ଼ିଶାର ବହୁ ପରିଚିତ ପ୍ରାଚୀନ ନଦୀ ବନ୍ଦର ଭାବେ ଖ୍ୟାତିଲାଭ କରିପାରିଥିଲା । ଚାନ୍ଦବାଲିର ବଣିକମାନେ ସାତ ଦରିଆ

ପାର ହୋଇ ଦୂର ଦେଶମାନଙ୍କ ସହ ବାଣିଜ୍ୟ ସଂପର୍କ ରକ୍ଷା କରିଥିଲେ । ଏହି ବଣିକମାନଙ୍କୁ ସମୁଦ୍ର ପାର ହେବା କୌଶଳ ବେଶ୍ ଭଲ ଭାବେ ଜଣାଥିଲା । ଚାନ୍ଦବାଲିର ପ୍ରାଚୀନ ନୌବାଣିଜ୍ୟ ପରଂପରାର ସ୍ମୃତି ରକ୍ଷା କରିବା ଉଦ୍ଦେଶ୍ୟରେ ୧୯୭୯ ମସିହାରେ ଏଠାରେ ଏକ ନାବିକ ପ୍ରଶିକ୍ଷଣ କେନ୍ଦ୍ର ସ୍ଥାପନ କରାଯାଇଥିଲା । ସ୍ଥାନୀୟ ଅଞ୍ଚଳ ସମେତ ଓଡ଼ିଶାର ଶିକ୍ଷିତ ଯୁବକମାନଙ୍କୁ ନଦୀ, ସମୁଦ୍ରରେ ଜାହାଜ ଓ ନୌକା ଚାଳନା କରିବା ଉଦ୍ଦେଶ୍ୟରେ ପ୍ରଶିକ୍ଷଣ ପ୍ରଦାନ କରିବା ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା ।  ରାଜ୍ୟରେ ଏକମାତ୍ର ଏହି ନାବିକ ପ୍ରଶିକ୍ଷଣ ଅନୁଷ୍ଠାନଟି ସରକାରୀ ପ୍ରୋତ୍ସାହନ ଅଭାବରୁ ରୁଗ୍ଣ ହୋଇଯାଇଛି । ପ୍ରାଚୀନ କଳିଙ୍ଗର ସାଧବ ପୁଅମାନେ ବୈତରଣୀ ନଦୀର ଏହି ଚାନ୍ଦବାଲି ଏବଂ ଧାମରା ବନ୍ଦର ଦେଇ ଦେଇ ଦରିଆପାରି ବାଣିଜ୍ୟ କରୁଥିଲେ । ପ୍ରାଚୀନ କଳିଙ୍ଗବାସୀଙ୍କର ଏହି ସମୃଦ୍ଧ ନୌବାଣିଜ୍ୟ ପରଂପରାକୁ ଉଜ୍ଜୀବିତ କରିବା ଉଦ୍ଦେଶ୍ୟରେ ଚାନ୍ଦବାଲିଠାରେ ଏହି ପ୍ରଶିକ୍ଷଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା ।

## ଷୋଳମପୁରର ବଲ୍ଲଭି ଘାଟ (କାଠଗୋଲା ଘାଟ)

ଆଜି ଷୋଳମପୁର ନିକଟସ୍ଥ ବଲ୍ଲଭି ଘାଟ (କାଠଗୋଲା ଘାଟ) ନାହିଁ ସତ, ମାତ୍ର ଏହାକୁ ନେଇ ଅନେକ ଇତିହାସ ଓ କିମ୍ବଦନ୍ତୀ ଆଜି ବି ଲୋକମୁଖରେ ଶୁଣିବାକୁ ମିଳିଥାଏ । ଅତୀତରେ ଏହି କାଠଗୋଲା ଘାଟ (ବଲ୍ଲଭି ଘାଟ)ଟି ଭଦ୍ରକ ଜିଲ୍ଲାର ଷୋଳମପୁର ଓ ଯାଜପୁର ସହର ମଧ୍ୟରେ ଯୋଗାଯୋଗ କରି ଆସୁଥିଲା । ଯାଜପୁର ସହର ମଧ୍ୟରେ ଥିବା ଦଶାଶ୍ୱମେଧ ଘାଟର ଅଳ୍ପ ଦୂରରେ ଏହି ବଲ୍ଲଭି ଘାଟ ଅବସ୍ଥିତ । ମାତ୍ର ପୋଲ ନିର୍ମାଣ ହୋଇଯିବା ପରେ ଏହି ନଦୀଘାଟଟିର ଗୁରୁତ୍ୱ ହ୍ରାସ ପାଇଯାଇଛି । ଗତ ୨୦୦୨ ମସିହା ଅଗଷ୍ଟ ୩୧ ତାରିଖର ହୃଦୟ ବିଦାରକ ଘଟଣା ଆଜି ବି ଷୋଳମପୁରବାସୀଙ୍କ ମନରେ ଉଜ୍ଜୀବିତ ରହିଛି । ଏହି ଦିନ ବୈତରଣୀ ନଦୀରେ ବନ୍ୟା ସମୟରେ ବଲ୍ଲଭି ଘାଟରେ ଡଙ୍ଗା ପାର ହେଉଥିବା ସମୟରେ ଡଙ୍ଗାଟି ବୁଡ଼ି ଯାଇଥିଲା । ଏଥିରେ ଥିବା ୨୬ ଜଣ ଯାତ୍ରୀଙ୍କର ପ୍ରାଣ ଚାଲିଯାଇଥିଲା । ତେବେ ଏହି ଘାଟଟିରେ ପୋଲ ନିର୍ମାଣ ହୋଇଯିବା ପରେ ଯାଜପୁର ଓ ଭଦ୍ରକ ଜିଲ୍ଲା ମଧ୍ୟରେ ଯୋଗାଯୋଗ ଅତି ସହଜ ହୋଇଯାଇଛି । ବଲ୍ଲଭିଘାଟରେ ପୋଲ ହେବା ଫଳରେ ଯାଜପୁର ଜିଲ୍ଲାର ଯାଜପୁର ସଦର, ଦଶରଥପୁର ଏବଂ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର ବ୍ଲକ୍ ମଧ୍ୟରେ ଯୋଗାଯୋଗ ଖୁବ୍ ସ୍ୱାଭାବିକ ହୋଇଛି ।

## ଚାନ୍ଦବାଲିର ଡାକେଶ୍ୱରୀ ଦେବୀ ପୀଠ

ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍‌ର ବୈତରଣୀ ନଦୀ କୂଳରେ ମା' ଡାକେଶ୍ୱରୀଙ୍କ ପୀଠ ରହିଛି । ପ୍ରାୟତ ନାବିକ, ଧୀବର (ସୌଦାଗର) ସଂପ୍ରଦାୟର ଲୋକମାନେ ମା' ଡାକେଶ୍ୱରୀଙ୍କୁ ପୂଜା

କରିଥା'ନ୍ତି । ସାଧବମାନେ ଦୂର ବିଦେଶକୁ ବାଣିଜ୍ୟ କରିବାକୁ ଯିବା ପୂର୍ବରୁ ମା'ଙ୍କ ଆଶୀର୍ବାଦ ଭିକ୍ଷା କରିଥା'ନ୍ତି । ବାଂଲାଦେଶରେ ମଧ୍ୟ ଡାକେଶ୍ବରୀଙ୍କର ଏକ ପ୍ରାଚୀନ ପୀଠ ରହିଛି । ବାଂଲାଦେଶର ରାଜଧାନୀ ଢାକାରେ ରହିଛି ପ୍ରସିଦ୍ଧ ଡାକେଶ୍ବରୀଙ୍କ ମନ୍ଦିର । ବାଂଲାଦେଶ ଓ ଚାନ୍ଦବାଲିର ଡାକେଶ୍ବରୀଙ୍କ ପୀଠ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳିଥାଏ । ଏହି ଦୁଇ ପୀଠର ପ୍ରତିଷ୍ଠାତା କୌଣସି ଏକ ନିର୍ଦ୍ଦିଷ୍ଟ ନାବିକ ଗୋଷ୍ଠୀ ବୋଲି ବିଶ୍ବାସ କରାଯାଉଛି । ହୁଏତ ପ୍ରାଚୀନ ଉତ୍କଳର ସାଧବମାନେ ବାଂଲାଦେଶକୁ ବାଣିଜ୍ୟ କରିବାକୁ ଯାଇ ସେଠାରେ ମା' ଡାକେଶ୍ବରୀଙ୍କୁ ସ୍ଥାପନା କରିଥିବେ କିମ୍ବା ବାଂଲାଦେଶରୁ ମା' ଡାକେଶ୍ବରୀଙ୍କ ମୂର୍ତ୍ତି ଆଣି ଚାନ୍ଦବାଲିରେ ପ୍ରତିଷ୍ଠା କରି ପୂଜା ଆରାଧନା କରିଥିବେ । 'ଡାକେଶ୍ବରୀ' ବଙ୍ଗଳାଦେଶର ରାଜଧାନୀ 'ଢାକା' ଶବ୍ଦରୁ ସୃଷ୍ଟି ହୋଇଥିବେ କିମ୍ବା ଢାକା ଶବ୍ଦରୁ ଡାକେଶ୍ବରୀ; ଏହା ଗବେଷଣାସାପେକ୍ଷ ।

## ମନ୍ତେଇ ନଦୀର ଚୌଧୁରୀ ଘାଟ ଓ ବାଁଶଡା ଘାଟ

*(The Mantei river and river ghats)*

ମନ୍ତେଇ ନଦୀଟି ବୈତରଣୀର ଅନ୍ୟତମ ପ୍ରମୁଖ ଉପନଦୀ । ଏହି ନଦୀଟି ମୟୁରଭଞ୍ଜ ଜିଲ୍ଲାରୁ ବାହାରି ବାଲେଶ୍ବର ଓ ଭଦ୍ରକ ଜିଲ୍ଲାର ବାସୁଦେବପୁର, ତିହିଡ଼ି, ଚାନ୍ଦବାଲି ବ୍ଲକ୍ ଦେଇ ପ୍ରବାହିତ ହେଲାପରେ ଧାମରା ମୁହାଁଣର କିଛି ବାଟ ପୂର୍ବରୁ ବୈତରଣୀ ନଦୀ ସହିତ ମିଳିତ ହୋଇଛି ।

ମନ୍ତେଇ ନଈର ଚୌଧୁରୀ ଘାଟ



ବୈତରଣୀ ନଦୀର ଉପନଦୀ ମନ୍ତେଇ ଉପରେ ମତୋଠାରେ ଥିବା 'ଚୌଧୁରୀ ଘାଟ'ଟି ବିଭିନ୍ନ କାରଣ ପାଇଁ ସର୍ବଦା ଚର୍ଚ୍ଚାରେ ରହିଥାଏ । ଭଦ୍ରକ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରୁ ଧାମରାକୁ ଯିବାକୁ ହେଲେ ମନ୍ତେଇ ନଈ ଉପରେ ଥିବା ଏହି ଚୌଧୁରୀଘାଟ ପାର ହୋଇ ଯିବାକୁ ପଡ଼ିଥାଏ । ଚୌଧୁରୀଘାଟର ଗୋଟିଏ ପାର୍ଶ୍ୱରେ ଚାନ୍ଦବାଲି ବ୍ଲକ୍ ସଦର ମହକୁମା ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ ଧାମରା ରହିଛି । ଏହି ନଦୀଘାଟଟି ଚାନ୍ଦବାଲି ବ୍ଲକ୍‌ର ଚରଦିଆ ଗ୍ରାମ ପଞ୍ଚାୟତ ଓ ଚାନ୍ଦବାଲି ବ୍ଲକ୍‌ର ଧାମରା ଗ୍ରାମ ପଞ୍ଚାୟତ ମଧ୍ୟରେ ସଂଯୋଗ ସ୍ଥାପନ କରିଥାଏ । ଚୌଧୁରୀଘାଟରେ ସରକାର ପୋଲ ନିର୍ମାଣ ପାଇଁ ଯୋଜନା କରୁଛନ୍ତି, ମାତ୍ର ଏ ଯାଏ ସଂଭବ ହୋଇପାରିନାହିଁ । ଏଠାରେ ଏକ ପୋଲ ନିର୍ମାଣ ହୋଇଗଲେ ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ସହିତ ଧାମରା ବନ୍ଦର ମଧ୍ୟରେ ସଂଯୋଗ ସ୍ଥାପନ ହୋଇଯିବ । ଅପରପକ୍ଷେ, ତିନିତର (ଆରଡ଼ି) ଘାଟରେ ପୋଲ ନିର୍ମାଣ ହୋଇଗଲେ ଭଦ୍ରକ ଜିଲ୍ଲା ସହିତ ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାକୁ ଗମନାଗମନ ସହଜ ହୋଇଯିବ । ତିନିତର ଘାଟ ସମେତ ଚୌଧୁରୀ ଘାଟରେ ପୋଲ ନିର୍ମାଣ ହୋଇଗଲେ ଯାଜପୁର, କେନ୍ଦ୍ରାପଡ଼ା, କଟକ ଜିଲ୍ଲା ସହ ସିଧାସଳଖ ଧାମରାକୁ ଯୋଗାଯୋଗ ସୁଗମ ହୋଇଯିବ । ସୂଚନାଯୋଗ୍ୟ, ବୈତରଣୀ ଉପରେ କୟାଁଗୋଲାଠାରେ ପୋଲ ନିର୍ମାଣ ଶେଷ ହୋଇଯାଇଥିବାରୁ ଯାଜପୁର ଓ ଆରଡ଼ି ଆଖଣ୍ଡଳମଣିଙ୍କ ସହ ଯୋଗାଯୋଗ ସୁବିଧା ହୋଇପାରିଛି । କେବଳ ତିନିତର ଘାଟରେ ପୋଲ ନିର୍ମାଣ ହୋଇଗଲେ ଯାଜପୁର ଓ ଚାନ୍ଦବାଲି ମଧ୍ୟରେ ଯୋଗାଯୋଗ ସୁବିଧା ହୋଇଯିବ ।

ଚାନ୍ଦବାଲି ବ୍ଲକ୍‌ର ଧାମରା, ବାଁଶଡ଼ା, ଜାଗୁଳା, କଇଥକୋଲା, କରଞ୍ଜମାଳ, କରଣପଲୀ, ପଞ୍ଚୁଟିକିରି, ଦୋସିଙ୍ଗା ଆଦି ଅନେକ ପଞ୍ଚାୟତକୁ ମନ୍ତେଇ ନଦୀ ଭଦ୍ରକ ଜିଲ୍ଲା ସଦର ମହକୁମା ଓ ଚାନ୍ଦବାଲି ବ୍ଲକ୍ ସଦର ମହକୁମାଠାରୁ ବିଚ୍ଛିନ୍ନ କରିଛି । ଏସବୁ ପଞ୍ଚାୟତକୁ ଯିବାକୁ ହେଲେ ମନ୍ତେଇ ନଈର ବିଭିନ୍ନ ଡ଼ଙ୍ଗାଘାଟ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଅପରପକ୍ଷେ, ବିପଦସଂକୁଳ ଜୁଆରିଆ ଓ କୁଂଭୀରପୂର୍ଣ୍ଣ ମନ୍ତେଇ ନଈର ନୌକାଯାତ୍ରା ସବୁଦୃଷ୍ଟିରୁ ଦୁଃସାହସିକ ମନେହୋଇଥାଏ । ଏହି ନଈର ବାଁଶଡ଼ା, ଚୌଧୁରୀଘାଟ, ବାଲିଆପାଳ ଘାଟ, ପଞ୍ଚୁଟିକିରି ଘାଟରେ ନୌକା ପାରହେବା ସମୟରେ ଛାତିର ସ୍ପନ୍ଦନ ବଢିଯାଇଥାଏ । ମନରେ ଏକ ନିଆରା ଶିହରଣ ସୃଷ୍ଟି ହୋଇଥାଏ । ବାଁଶଡ଼ା ଘାଟରେ ପୋଲଟିଏ ନିର୍ମାଣ ହୋଇ ନପାରିବାରୁ ଏଠାକାର ଲୋକଙ୍କୁ ଭଦ୍ରକରୁ ଧାମରା ଯିବାକୁ ହେଲେ ମାତ୍ର ୮୫ କିଲୋମିଟର ରାସ୍ତା ପାଇଁ ୧୫୦ କିଲୋମିଟର ବାଟ ବୁଲିବାକୁ ପଡ଼ିଥାଏ । ଭଦ୍ରକ-ଚାନ୍ଦବାଲି ରାସ୍ତାର ଦିଗୋଛିଆ ବଜାରରୁ ୧୨ କିଲୋମିଟର ପରେ ପଡ଼ିଥାଏ ମନ୍ତେଇ ନଈର ଏହି ବାଁଶଡ଼ା ଘାଟ । ଅପରପଟରୁ ଭଦ୍ରକ-ଚାନ୍ଦବାଲି ରାସ୍ତାର ଗଦିଠାରୁ ଭାୟା ଖଦାଳପୋଖରୀ ଏବଂ ଜନ୍ତୁଆଳି, ନୂଆଗାଁ ଦେଇ ଗଲେ ମଧ୍ୟ ବାଁଶଡ଼ା ଘାଟ ପଡ଼ିଥାଏ ।

# ଧାମରାଈ ମନ୍ଦିର

*(Dhamarai temple on the river bank of Baitaranee)*

ଭଦ୍ରକ ଜିଲ୍ଲା ସଦର ମହକୁମାଠାରୁ ୮୫ କିଲୋମିଟର ଦୂରରେ ଚାନ୍ଦବାଲି ବ୍ଲକ୍‌ରେ ଧାମରାଈ ମନ୍ଦିର ଅବସ୍ଥିତ । ଏଠାରେ ବୈତରଣୀ ଓ ବ୍ରାହ୍ମଣୀ ନଦୀର ମିଳିତ ସ୍ରୋତ ପ୍ରବାହିତ ହୋଇ କ୍ରମଶଃ ବଙ୍ଗୋପସାଗରରେ ମିଶିଛି । ଏହାକୁ ସ୍ଥାନୀୟ ଅଞ୍ଚଳବାସୀ ବୈତରଣୀ ନଦୀ ଭାବେ ପୂଜା କରିଥା'ନ୍ତି ।

ପୁଣ୍ୟତୋୟା ବୈତରଣୀ ନଦୀର ଧାମରା ମୁହାଣରେ ମା' ଧାମରାଈ ପୂଜା ପାଇଥାନ୍ତି । ବୈତରଣୀ ନଦୀର କୂଳକୁ ଲାଗି ମା' ଧାମରାଈଙ୍କର ଏକ ସୁବିଶାଳ ମନ୍ଦିର ରହିଛି । ଏଠାକାର ଧୀବର ସଂପ୍ରଦାୟଙ୍କ ଦ୍ୱାରା ମା' ପୂଜା ପାଇଥାନ୍ତି । ବିଶେଷକରି ଏଠାକାର ବିଧବା ଧୀବରୁଣୀମାନଙ୍କ ଦ୍ୱାରା ମା'ଙ୍କର ପୂଜାର୍ଚ୍ଚନା କରାଯାଇଥାଏ । ଓଡ଼ିଶାରେ ଚିଲିକା ମୁହାଁଣରେ ପୂଜା ପାଉଥିବା ବାଲି ହରଚଣ୍ଡୀ, କୁଶଭଦ୍ରା ମୁହାଁଣରେ ରାମଚଣ୍ଡୀ, ବରୁଣେଇ ମୁହାଁଣରେ ମାଁ ବରୁଣେଇଙ୍କ ଭଳି ବୈତରଣୀ-ବ୍ରାହ୍ମଣୀ ମୁହାଁଣରେ ଧାମରାଠାରେ ମା' ଧାମରାଈ କାହିଁ କେଉଁ କାଳରୁ ପୂଜା ପାଇଆସୁଛନ୍ତି । ଧାମରାଈ ମା'ଙ୍କୁ ସାଗର ଦୁଲଣି ମା' ଲକ୍ଷ୍ମୀଙ୍କ ଭଗିନୀ ଭାବେ ସ୍ଥାନୀୟ ଧୀବର ସଂପ୍ରଦାୟର ଭକ୍ତମାନେ ବିଶ୍ୱାସ କରିଥା'ନ୍ତି । ପ୍ରତ୍ୟେକ ଧୀବରର ନୌକାର ମଙ୍ଗରେ ବିଜେ



ଧାମରାଈ ମନ୍ଦିର ଓ ମା' ଧାମରାଈ



କରି ମା' ନାବିକମାନଙ୍କୁ ସୁରକ୍ଷା ପ୍ରଦାନ କରିଥା'ନ୍ତି । ଅତଳ ସମୁଦ୍ରକୁ ମାଛ ମାରିବାକୁ ଯାଉଥିବା ଧୀବରମାନେ ପ୍ରଥମେ ମା' ଧାମରାଈଙ୍କ ନାଁ ସ୍ମରଣ କରି ଯାତ୍ରା ଆରଂଭ କରିଥାନ୍ତି । ମା' ଧାମରାଈ ଏହି ଧୀବରମାନଙ୍କୁ ସମସ୍ତ ପ୍ରକାର ବିପଦଆପଦରେ ସାହା ହୋଇଥା'ନ୍ତି । ମା' ଧାମରାଈଙ୍କ ଉଦ୍ଦେଶ୍ୟରେ ଏ ଅଞ୍ଚଳରେ ଏକ ପ୍ରସିଦ୍ଧ ଭଜନ ଶୁଣିବାକୁ ମିଳିଥାଏ-

"ଧାମରାଈ ମା' ଧାମରାଈ
ବସିଅଛୁ ବୈତରଣୀ କୂଳରେ ବାନା ଉଡାଇ
ମା' ବାନା ଉଡାଇ
ମୋ' ବିପଦେ ଆପଦେ ସାହା ହବୁଲୋ ତୁଇ
ମା' ହବୁଲୋ ତୁଇ
ତୋତେ ସୁମରଣା କରି ଡଙ୍ଗା ନେଇଯାଏ ବାହି
ମଝି ଦରିଆ ଭିତରେ ଝଡ଼ ବତାସରେ
ଛାଇପରି ଥିବୁ ରହି ମା' ଧାମରାଈ"

ମା' ଧାମରାଈଙ୍କ ପୀଠରେ ବାରମାସରେ ତେରପର୍ବ ପାଳନ ହୋଇଥାଏ । ଏଠାରେ ମା' ଧାମରାଈଙ୍କ ସମେତ ମା' ବୈତରଣୀଙ୍କୁ ଧୀବର ସଂପ୍ରଦାୟ ପୂଜା ଆରାଧନା କରିଥା'ନ୍ତି । କେନ୍ଦୁଝର


ବୈତରଣୀ ନଦୀ ଗର୍ଭରୁ ମା' ଧାମରାଈ ମନ୍ଦିରର ଦୃଶ୍ୟ

ଜିଲ୍ଲାର ଗୋନାସିକାରୁ ବାହାରିଥିବା ଏହି ବୈତରଣୀ ନଦୀ ଯେଉଁ ଅଞ୍ଚଳ ଦେଇ ପ୍ରବାହିତ ହୋଇଛନ୍ତି, ସବୁଠି ତାଙ୍କୁ ପୂଜା କରାଯାଇଥାଏ । ଅନୁରୂପ ଧାମରାଠାରେ ମଧ୍ୟ ଧୀବରମାନଙ୍କ ଦ୍ୱାରା ମା' ବୈତରଣୀ ପୂଜା ପାଇଥା'ନ୍ତି ।

କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆଠାରେ ମା' ବୈତରଣୀ ନଦୀ ସହିତ ବ୍ରାହ୍ମଣୀ ମିଳିତ ହୋଇ ଏକ ଗଭୀର ଗଣ୍ଡଟିଏ ସୃଷ୍ଟି ହୋଇଛି । ଏହାର ନାମ **'ସୁନା ଦରିଆ'** । ଧାମରାର ଦକ୍ଷିଣରେ କାଳିଭଞ୍ଜଡିଆ ଜଙ୍ଗଲ (କେନ୍ଦ୍ରାପଡ଼ା) ନିକଟସ୍ଥ ନଳିତାପାଟିଆଠାରେ ବୈତରଣୀ ଓ ବ୍ରାହ୍ମଣୀ ନଦୀଦ୍ୱୟ ମିଳିତ ହେବାପରେ ଏହା ଧାମରାଇ ନଦୀ ନାମରେ ପରିଚିତ ହୋଇଛନ୍ତି । ସ୍ଥାନୀୟ ଲୋକେ ଏହାକୁ ଧାମରାଇ ନଦୀ ବା ବୈତରଣୀ ନଦୀ ନାମରେ ସମ୍ବୋଧନ କରିଥାନ୍ତି । ଏଠାରେ ବ୍ରାହ୍ମଣୀ ନଦୀର ପରିଚୟ ବିଲୀନ ହୋଇଯାଇଛି । ଏ ଅଞ୍ଚଳର କୌଣସି ଜଣେ ବି ଧୀବର ବ୍ରାହ୍ମଣୀ ନଦୀର ନାମ ଉଚ୍ଚାରଣ କରି ନଥା'ନ୍ତି । ଯଦିଓ ଏଠାରେ ବୈତରଣୀ ଓ ବ୍ରାହ୍ମଣୀ ମିଳିତ ହୋଇଛନ୍ତି, ମାତ୍ର ଏହାକୁ ସମସ୍ତେ ବୈତରଣୀ ନଦୀ ଭାବେ ଜାଣିଥା'ନ୍ତି ।

ନଳିତାପାଟିଆଠାରେ ବୈତରଣୀ ଓ ବ୍ରାହ୍ମଣୀ ମିଳିତ ହୋଇ ୨୦ କିଲୋମିଟର ପ୍ରବାହିତ ହେବାପରେ ସମୁଦ୍ରରେ ମିଶିଛନ୍ତି । ଧାମରା ମୁହାଁଣସ୍ଥିତ ନଦୀ ସଂଗମର ଦୃଶ୍ୟ, ଏଠାକାର ସୂର୍ଯ୍ୟାସ୍ତ ଏବଂ କାଳିଭଞ୍ଜଡ଼ିଆ ଜଙ୍ଗଲ, ନଳିତାପାଟିଆର ବୈତରଣୀ-ବ୍ରାହ୍ମଣୀର ମିଳନର ଦୃଶ୍ୟ ବାସ୍ତବରେ ଖୁବ୍ ରୋମାଞ୍ଚକର । ଏହିସବୁ ସ୍ଥାନମାନଙ୍କରେ ଆମେ ଏମିତି ଅନେକ ସଂଜ କଟେଇଛୁ । ନଳିତାପାଟିଆ ବୈତରଣୀ-ବ୍ରାହ୍ମଣୀ ସଂଗମସ୍ଥଳ ଓ ଧାମରା ମୁହାଁଣ ଏବଂ କାଳିଭଞ୍ଜଡ଼ିଆ ଜଙ୍ଗଲରେ ସଞ୍ଜ ବିତେଇଲାବେଳର ଅନୁଭୂତି ବାସ୍ତବରେ ଅଭୁଲା ହୋଇରହିବ ।

ବଙ୍ଗର ନବାବ ଗିୟାସୁଦ୍ଦିନ୍ ଖିଲିଜ୍‌ଙ୍କ ବିରୋଧରେ ଯୁଦ୍ଧ କରିବାକୁ ଓଡ଼ିଶାର ଗଜପତି ତୃତୀୟ ଅନଙ୍ଗଭୀମଦେବ (ତ୍ରୟୋଦଶ ଶତାବ୍ଦୀ) ନିଜର ସୈନ୍ୟଗଣଙ୍କୁ ନେଇ ଜଳପଥ ବାଟେ ଧାମରାଇଙ୍କ ପୀଠରେ ପହଞ୍ଚିଥିଲେ । ଏଠାରେ ମା'ଙ୍କ ଆଶିର୍ବାଦ ଭିକ୍ଷା କରି ଗଜପତି ନିଜର ସୈନ୍ୟସାମନ୍ତଙ୍କୁ ଧରି ଜଳପଥରେ ଜଳେଶ୍ୱର ଗସ୍ତ କରିଥିଲେ । ଏଠାରେ ଗଜପତି ଅବତରଣ କରିଥିବା ନଦୀଘାଟଟି ଏବେ ବି ପୁରୀଘାଟ ନାମରେ ଜଣାଶୁଣା । ମା' ଧାମରାଇଙ୍କ କରୁଣାରୁ ଗଜପତି ତୃତୀୟ ଅନଙ୍ଗଭୀମଦେବ ବଙ୍ଗର ନବାବଙ୍କଠାରୁ ଯୁଦ୍ଧରେ ବିଜୟୀ ହୋଇଥିଲେ ବୋଲି କୁହାଯାଏ । ମା' ଧାମରାଈ ତତ୍କାଳୀନ କନିକା ରାଜ୍ୟର ରାଜାଙ୍କ ଦ୍ୱାରା ପୂଜା ପାଇଆସୁଛନ୍ତି ।ଏଠାରେ କନିକା ରାଜାଙ୍କ ଦ୍ୱାରା ଏହି ଧାମରାଈ ମନ୍ଦିର ପ୍ରତିଷ୍ଠାଲାଭ କରିଥିଲା । ପୁରାତନ କନିକାର ୬୦୮ ଦେବଦେବୀଙ୍କ ମଧ୍ୟରୁ ମା' ଧାମରାଇ ଅନ୍ୟତମ ।

ମା' ଧାମରାଈଙ୍କୁ ନେଇ ଏକ କିମ୍ବଦନ୍ତୀ ରହିଛି । ଅତୀତରେ ପ୍ରାଚୀନ କଳିଙ୍ଗର ସାଧବମାନେ ସିଂହଳ ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଉଥିଲେ । ପ୍ରାଚୀନ କଳିଙ୍ଗ ଓ ସିଂହଳ ମଧ୍ୟରେ ଏକ ଉତ୍ତମ

ବାଣିଜ୍ୟିକ ସଂପର୍କ ରହିଥିଲା । ଯେତେବେଳେ କିଛି ଓଡ଼ିଆ ବଣିକମାନଙ୍କ ଦ୍ୱାରା ମା' ଧାମରାଈ ସିଂହଳ ଦ୍ୱୀପରୁ ଚାଲି ଆସିଛନ୍ତି ବୋଲି ବିଶ୍ୱାସ କରାଯାଏ । ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ, ବଙ୍ଗୋପସାଗର କୂଳରେ ଥିବା ସାତଭାୟା ଗ୍ରାମ (କେନ୍ଦ୍ରାପଡ଼ା)ରେ ସପ୍ତମାତୃକା ଦେବୀ ସାତଭଉଣୀ ରୂପେ ପୂଜା ପାଉଥିଲେ । ଏମାନେ **'ସପ୍ତ ବରାହୀ'** ନାମରେ ଖ୍ୟାତ ଥିଲେ । ଏହି ସାତ ଭଉଣୀଙ୍କ ମଧ୍ୟରେ ଅଧିକାଂଶ ସମୟରେ କଳହ ଲାଗିରହୁଥିଲା । ଏମାନଙ୍କ ମଧ୍ୟରୁ ପାଞ୍ଚ ଭଉଣୀ ଆମିଷାସୀ ଥିବାବେଳେ ମା' ଧାମରାଈ ଓ ମା' ମଙ୍ଗଳା ନିରାମିଷାସୀ ଥିଲେ । ପ୍ରତିଦିନ ସନ୍ଧ୍ୟାରେ ଏହି ସାତ ଭଉଣୀ ସାତଭାୟାର ସମୁଦ୍ର କୂଳ ଭ୍ରମଣରେ ବୁଲି ବାହାରନ୍ତି । ଏମିତି ଦିନେ ଏହି ସାତଭଉଣୀ ସମୁଦ୍ର କୂଳରେ ବୁଲୁଥିବାବେଳେ ସେମାନଙ୍କ ମଧ୍ୟରେ ଝଗଡ଼ା ଲାଗିଲା । ଆମିଷ ଭକ୍ଷଣ କରୁଥିବା ପାଞ୍ଚ ଭଉଣୀ ନିରାମିଷ ଭକ୍ଷଣ କରୁଥିବା ଦୁଇ ଭଉଣୀ (ଧାମରାଈ ଓ ମଙ୍ଗଳା)ଙ୍କୁ ସମୁଦ୍ର ମଧ୍ୟକୁ ଠେଲି ଦେଇଥିଲେ । ଫଳରେ ସାତଭଉଣୀଙ୍କ ମଧ୍ୟରୁ ଦୁଇ ଭଉଣୀ ସମୁଦ୍ରରେ ଭାସିଯାଇ ଧାମରା ନିକଟରେ ଲାଗିଥିଲେ । ସେହି ଦିନଠାରୁ ଏହି ଦୁଇ ଭଉଣୀ ମା' ଧାମରାଈ ଓ ମା' ମଙ୍ଗଳା ଭାବେ ଧାମରାରେ ପୂଜିତ ହୋଇ ଆସୁଛନ୍ତି ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ସାତଭାୟାରେ ରହିଯାଇଥିବା ବାକି ପାଞ୍ଚ ଭଉଣୀ **'ପଞ୍ଚୁବରାହୀ'** ନାମରେ ପୂଜା ପାଇଆସୁଛନ୍ତି । ଆଜି ବି ସାତଭାୟା ଗ୍ରାମର ପଞ୍ଚୁବରାହୀ ମନ୍ଦିରରେ ଥିବା ସାତଟି ଆସନ ମଧ୍ୟରୁ ପାଞ୍ଚୋଟି ଆସନରେ ପଞ୍ଚୁବରାହୀ ପୂଜା ପାଇଆସୁଥିବାବେଳେ ଅନ୍ୟ ଦୁଇଟି ଆସନ ଖାଲି ପଡ଼ିଛି ।

ସାତଭାୟାରୁ ଭାସି ଆସିଥିବା ଦୁଇ ଭଉଣୀ ମା' ଧାମରାଈ ଓ ମା' ମଙ୍ଗଳା ଧାମରାର ବୈତରଣୀ ନଦୀ ଗର୍ଭରେ ଲୀନ ହୋଇଥିଲେ । ଧାମରା ଅଞ୍ଚଳର ନିଧି ଦଳେଇ, ଚୈତନ୍ୟ ମାଝୀ, କୁଶେଇ ମାଝୀଙ୍କ ସମେତ କିଛି ଧୀବର ମିଶି ବୈତରଣୀ ନଦୀ ସଂଲଗ୍ନ କାଳିଭଞ୍ଜଡ଼ିଆ ଜଙ୍ଗଲର ଶେଷ ଭାଗକୁ ଦକ୍ଷିଣପଟେ ତାଳଚୁଆ ଏବଂ ଉତ୍ତରପଟରେ ଥିବା ଚନ୍ଦନିପାଳ ମଧ୍ୟ ଭାଗରେ ଜାଲ ବସାଇଥିଲେ । ଏହି ଧୀବରମାନେ ବସାଇଥିବା ଜାଲରେ ମା' ଧାମରାଈ ଓ ମା' ମଙ୍ଗଳା ପଡ଼ିଯାଇଥିଲେ । ଯେତେବେଳେ ଏହି ଧୀବରମାନେ ଜାଲକୁ ଉଠାଇବାକୁ ଚେଷ୍ଟା କରିଥିଲେ ସେତେବେଳେ ଜାଲ ଆଉ ପାଣିରୁ ଉଠି ନଥିଲା । ଜାଲ ଏତେ ଭାରୀ ହେବାର କାରଣ କ'ଣ ହୋଇପାରେ ବୋଲି ଧୀବରମାନେ ଚିନ୍ତାରେ ପଡ଼ିଯାଇଥିଲେ । ସେମାନଙ୍କ ମନରେ ଭୟ ସଞ୍ଚାର ହେଲା । ଶେଷରେ ଧୀବରମାନେ ବାଧ୍ୟ ହୋଇ ଚନ୍ଦନିପାଳ ନିକଟସ୍ଥ ଏକ ଜୋରରେ ନୌକା ରଖି ରାତ୍ରୀଯାପନ କରିଥିଲେ । ଆଜି ବି ଚନ୍ଦନୀପାଳରେ ଥିବା ଏହି ଜୋରଟି **'ଧାମରାଈ ଜୋର'** ନାମରେ ଖ୍ୟାତ । ମା' ଧାମରାଈ ଜାଲରେ ଲାଗିଥିବା କଥା ସେଇ ରାତିରେ ଦୁଇ ଧୀବରଙ୍କୁ ସ୍ୱପ୍ନାଦେଶ ହେଲା । ସ୍ୱପ୍ନାଦେଶ ଅନୁଯାୟୀ, ଦୁଇ ଧୀବର ସତକୁ ସତ ମା'ଙ୍କୁ ଜାଲରୁ ଉଦ୍ଧାର କରିଥିଲେ । ମାତ୍ର, କେବଳ ବିଧବା ଧୀବରୁଣୀମାନେ ତାଙ୍କର ପୂଜା କରିବେ ବୋଲି ମା'ଙ୍କର

ସ୍ୱପ୍ନାଦେଶ ଥିଲା । ଏହି ଅନୁସାରେ, ଆଜିଯାଏ ମା' ଧାମରାଈ ଏଠାକାର ବିଧବା ଧୀବରୁଣୀଙ୍କ ଦ୍ୱାରା ପୂଜା ପାଇ ଆସୁଛନ୍ତି । 'ସଖୀ' ଓ 'ମଖୀ' ନାମକ ଦୁଇ ବିଧବା ଧୀବରୁଣି ପ୍ରଥମେ ମା' ଧାମରାଈଙ୍କର ପୂଜାର୍ଚ୍ଚନା କରିଥିଲେ ବୋଲି ସ୍ଥାନୀୟ ଅଞ୍ଚଳରେ ଶୁଣିବାକୁ ମିଳେ ।

ଧାମରାଈଙ୍କ କୃପାରୁ ଏଠାରେ ଦୈବୀ ଦୁର୍ବିପାକର ପ୍ରଭାବ ଏତେମାତ୍ରାରେ ଅନୁଭୂତ ହୋଇ ନଥାଏ । ଅତୀତରେ ଅନେକବାର ସମୁଦ୍ର ଅଶାନ୍ତ ହୋଇଥିଲେ ମଧ୍ୟ ମା' ଧାମରାଈଙ୍କ ମନ୍ଦିରର କିଛି କ୍ଷତି ଘଟିନାହିଁ । ୧୯୯୯ ମହାବାତ୍ୟାରେ ବଙ୍ଗୋପସାଗର କୂଳରେ ଥିବା ପାରାଦୀପ, କେନ୍ଦ୍ରାପଡ଼ା, ସାତଭାୟା ଆଦି ବିପର୍ଯ୍ୟସ୍ତ ହୋଇପଡ଼ିଥିବାବେଳେ ସମୁଦ୍ର କୂଳରେ ଥିବା ମା' ଧାମରାଈଙ୍କ ମନ୍ଦିରର କିଛି ବି କ୍ଷତି ଘଟି ନଥିଲା ଏବଂ ଧାମରା ଅଞ୍ଚଳ ସାମାନ୍ୟତମ ପ୍ରଭାବିତ ହୋଇ ନଥିଲା ।

ମା'ଙ୍କ କୃପାରୁ ସେଦିନର ବୈତରଣୀ ନଦୀ କୂଳରେ ଅବସ୍ଥିତ ଏକ ନିପଟ ଗାଁଟି ଆଜି ଏକ ମହାନଗରୀରେ ପରିଣତ ହୋଇଛି । ସାଗର ରାଜାଙ୍କ କନ୍ୟା ଲକ୍ଷ୍ମୀଙ୍କ ଭଗିନୀ ମା' ଧାମରାଈଙ୍କ ଆଶିର୍ବାଦରୁ ଆଜି ଏଠାକାର ଦରିଦ୍ର ଧୀବରମାନେ ଅଚଳାଚଳ ସଂପତ୍ତିର ଅଧିକାରୀ ହୋଇପାରିଛନ୍ତି । ଆଉ ଏହି ପ୍ରାଚୀନ ଧାମରା ମାଛଧରା ବନ୍ଦରଟିର ଶ୍ରୀ ବୃଦ୍ଧି ପାଇ ଏହା ଦେଶର ଏକ ପ୍ରମୁଖ ବନ୍ଦରର ମାନ୍ୟତା ଲାଭ କରିପାରିଛି ।

ଏ ଅଞ୍ଚଳରେ ମା' ଧାମରାଈ ହିଁ ପ୍ରତ୍ୟକ୍ଷ ଠାକୁରାଣୀ । ପ୍ରତ୍ୟେକ ଅଧିବାସୀ ସେମାନଙ୍କର ପ୍ରଥମ କୃଷିଜାତ ଦ୍ରବ୍ୟକୁ ମା' ଧାମରାଈଙ୍କୁ ଅର୍ପଣ କରିଥା'ନ୍ତି । କନିକା ରାଜା ରବୀନ୍ଦ୍ର ନାରାୟଣ ଭଞ୍ଜ ଦେଓଙ୍କ ଉଦ୍ୟମରେ ୧୯୮୫ ମସିହାରେ ଏଠାରେ ଏହି ମନ୍ଦିରର ନିର୍ମାଣ କାମ ଆରଂଭ ହୋଇ ୧୯୯୬ ମସିହାରେ ଶେଷ ହୋଇଥିଲା । ୧୯୯୮ ମସିହାରେ ମା' ଧାମରାଈ ନିଜର କୁଟୀର ପରିତ୍ୟାଗ କରି ଏହି ଭବ୍ୟ ମନ୍ଦିରକୁ ଆଗମନ କରିଥିଲେ । କନିକା ରାଜା ରବୀନ୍ଦ୍ର ନାରାୟଣ ଭଞ୍ଜ ଦେଓଙ୍କ ପୌରୋହିତ୍ୟରେ ଏହି ରତ୍ନବେଦୀ ପ୍ରତିଷ୍ଠା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ଏଠାକାର ବିଧବା ଧୀବର ମହିଳା ପୂଜକ ଲକ୍ଷ୍ମୀ ବେହେରା, କମଳୀ ବେହେରା ଓ ବିମଳୀ ବେହେରା ପ୍ରମୁଖ ଏବେ ମା'ଙ୍କର ପୂଜାର୍ଚ୍ଚନା କରିଆସୁଛନ୍ତି ।

ପ୍ରତିବର୍ଷ ଧାମରାଈ ପୀଠରେ ମକର ମେଳା ଓ ଗଙ୍ଗାମାତା ପୂଜା ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ମକର ସଂକ୍ରାନ୍ତି ଅବସରରେ ଧାମରା ଅଞ୍ଚଳର ଆରାଧ୍ୟ ଦେବୀ ଧାମରାଈଙ୍କ ପୀଠରେ ମକର ମେଳା ପାଳିତ ହୋଇଥାଏ । ଧାମରାଈଙ୍କ ମନ୍ଦିରରେ ପାରଂପରିକ ପୂଜାର୍ଚ୍ଚନା ସହିତ ମକର ଚାଉଳ ଓ ପୋଡ଼ପିଠା ଭୋଗ ଲାଗି କରାଯାଇଥାଏ । ମନ୍ଦିର ସମ୍ମୁଖସ୍ଥ ପଡ଼ିଆରେ ଏକ ବିରାଟ ଧରଣର ନଦୀମେଳା *(river festival)* ଅନୁଷ୍ଠିତ ହୋଇଥାଏ । ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ଘଟିଥାଏ । ଏହି ଅବସରରେ ମଞ୍ଚ, ଅପେରା, ମୀନାବଜାର, ପାଲା, ଘୋଡ଼ାନାଚ ଆଦି ନାନା ପ୍ରକାରର ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବା ସାଙ୍ଗକୁ ହଜାର ହଜାର ସଂଖ୍ୟାରେ

ଦୋକାନ (ଷ୍ଟଲ୍)ମାନ ଖୋଲିଥାଏ । କଟକର ବାଲିଯାତ୍ରା ଭଳି ଏହି ମେଳାରେ ଛୁଞ୍ଚିଠାରୁ ମୁକ୍ତା ପର୍ଯ୍ୟନ୍ତ ସବୁ ମିଳିଥାଏ ।

ଧାମରା ମେଳା ଦେଖିବାକୁ ଭଦ୍ରକ ଜିଲ୍ଲା ସମେତ ପଡୋଶୀ କେନ୍ଦ୍ରାପଡ଼ା, ବାଲେଶ୍ୱର ଓ ଯାଜପୁର ଜିଲ୍ଲାରୁ ଲକ୍ଷାଧିକ ଭକ୍ତ ଉଭୟ ଜଳ ଓ ସ୍ଥଳପଥ ଦେଇ ଧାମରାକୁ ଆସିଥା'ନ୍ତି । କେନ୍ଦ୍ରାପଡ଼ା ଜିଲ୍ଲା ରାଜନଗରର ବ୍ରାହ୍ମଣୀନଦୀର ଗୁପ୍ତି ଘାଟ, ଜୟନଗର ଘାଟ, ବୈତରଣୀ ନଦୀର ନଳିତାପାଟିଆ ଘାଟ, ଆଳି-ରାଜକନିକାର ଖରସ୍ରୋତା ଘାଟ, ଭଦ୍ରକର ବୈତରଣୀ ନଦୀର ଚାନ୍ଦବାଲି ଘାଟ, ଆରଡ଼ି ଆଖଣ୍ଡଳମଣିର ବୈତରଣୀ ନଦୀ ଘାଟ ଓ ବୈତରଣୀ-ସାଳନ୍ଦୀ ନଦୀର ତିନିତର ଘାଟ, ମନ୍ତେଇ ନଦୀର ବାଂଶଡ଼ା, ଚୌଧୁରୀଘାଟ, ହବାଳିଘାଟ, ଧାମରା ଘାଟ ଦେଇ ଲକ୍ଷାଧିକ ଭକ୍ତ ନୌକା, ମୋଟର ଲଞ୍ଚ ଯୋଗେ ଧାମରାକୁ ଆସିଥା'ନ୍ତି । ଏହି ଅବସରରେ ଧାମରାସ୍ଥିତ 'ମା' ଧାମରାଇ ମତ୍ସ୍ୟଜୀବି ସଂଘ' ପକ୍ଷରୁ ପ୍ରତିବର୍ଷ ଧାମରା ମତ୍ସ୍ୟପୋତାଶ୍ରୟ ପଡ଼ିଆରେ ମା' ଗଙ୍ଗାମାତାଙ୍କ ପୂଜାର୍ଚ୍ଚନା କରାଯାଇଥାଏ । ନିରାପଦ ଜଳଯାତ୍ରା ପାଇଁ ମତ୍ସ୍ୟଜୀବି, ବୋଟ୍ ମାଲିକ ଓ ଲଞ୍ଚ କର୍ମଚାରୀମାନେ ଉପବାସ ରହି ଗଙ୍ଗାମାତାଙ୍କୁ ପୂଜାର୍ଚ୍ଚନା କରିଥା'ନ୍ତି । ଏହି ଅବସରରେ ପ୍ରତ୍ୟେକ ବୋଟ୍ କର୍ମଚାରୀ ଓ ଟ୍ରଲର୍ କର୍ମଚାରୀ ନିଜନିଜର ଟ୍ରଲର କିମ୍ବା ବୋଟ୍‌କୁ ପୂଜାର୍ଚ୍ଚନା କରିଥା'ନ୍ତି । ଏହା ମକର ସଂକ୍ରାନ୍ତି ଦିନ ଅନୁଷ୍ଠିତ ହୋଇଥାଏ । ଏହି ଦିନ କୌଣସି ଟ୍ରଲର କିମ୍ବା ମୋଟର ବୋଟ୍ ସମୁଦ୍ରକୁ ମାଛ ମାରିବାକୁ ଯାଇ ନଥାଏ । ପ୍ରତିବର୍ଷ ଧାମରା ପୀଠରେ ପବିତ୍ର ମକର ମେଳା ଅବସରରେ 'ମା ଧାମରାଇ ମନ୍ଦିର ପରିଚାଳନା କମିଟି' ପକ୍ଷରୁ ଏହାର ମୁଖପତ୍ର 'ଧାମରାଶ୍ରୀ' ଲୋକାର୍ପିତ ହୋଇଥାଏ ।

[ତଥ୍ୟ ସଂଗ୍ରହ ବିବରଣୀ

ତାରିଖ: ୧୪ ଓ ୧୫, ଜାନୁୟାରୀ ୨୦୧୪, ସ୍ଥାନ: ଧାମରା ମତ୍ସ୍ୟପୋତାଶ୍ରୟ

ତଥ୍ୟ ପ୍ରଦାନକାରୀ

-ପ୍ରଫୁଲ ଜେନା, ସଂପାଦକ, ଧାମରାଶ୍ରୀ, ସୁରେଶ କୁମାର ମାହନ୍ତ, ସଭାପତି, ଧାମରାଇ ମନ୍ଦିର ପରିଚାଳନା କମଟି, ପ୍ରିୟରଂଜନ ଜେନା, ସଂପାଦକ, ଧାମରାଇ ମନ୍ଦିର ପରିଚାଳନା କମିଟି, ନିତ୍ୟାନନ୍ଦ ବେହେରା, ନିତ୍ୟାନନ୍ଦ ମାଝୀ, ନରହରି ମଲିକ, ପରମାନନ୍ଦ ମାଝୀ

-ଭଦ୍ରକର ଦେବଦେବୀ ପୀଠ : ସଂପାଦନା: ରୁଦ୍ରମାଧବ ବାରିକ୍, ପ୍ରକାଶକ: ସଂପର୍କ ମ୍ୟୁଜିକ୍, ଅପର୍ଣ୍ଣବିନ୍ଧା ନିୟୁ କଲୋନୀ, ଭଦ୍ରକ (୨୦୧୩), ପୃଷ୍ଠା: ୪୬-୫୬ ]

## ଧାମରା ମତ୍ସ୍ୟ ପୋତାଶ୍ରୟ 'ସୋନାଦରିଆ'ର ମାଛଧରା କାହାଣୀ

*(Dhamara fishing harbour)*

ଚାନ୍ଦବାଲି ଘାଟରୁ ମୋଟର ଲଞ୍ଚ ଯୋଗେ ଧୀରେ ଧୀରେ ଆମେ ସମୁଦ୍ର ଅଭିମୁଖେ ଯାତ୍ରା କରୁଥିଲୁ ।




ବୈତରଣୀର ଛାତି ଚିରି ମୋଟର ଲଞ୍ଚଟି ଆଗକୁ ମାଡ଼ି ଚାଲିଥିଲା । ଚାନ୍ଦବାଲିଠାରୁ କିଛି ବାଟ ଜଳପଥରେ ଯିବାପରେ ଆମେ ପହଞ୍ଚି ଯାଇଥିଲୁ ପ୍ରସିଦ୍ଧ ନଳିତାପାଟିଆଠାରେ, ଯେଉଁଠି ବୈତରଣୀ ନଦୀ ସହିତ ବ୍ରାହ୍ମଣୀ ମିଳିତ ହୋଇଛି । ଏପଟେ ଚାନ୍ଦବାଲି ପଟୁ ବୈତରଣୀ ବହିଯାଉଛି ଏବଂ ସେପଟୁ କେନ୍ଦ୍ରାପଡ଼ାର ପଟ୍ଟାମୁଣ୍ଡାଇ, ରାଜନଗର ଦେଇ ବ୍ରାହ୍ମଣୀ ବହି ଆସି ଏହି ନଳିତାପାଟିଆଠାରେ ଉଭୟ ମିଳିତ ହୋଇଛନ୍ତି । ଦୁଇଟି ନଦୀର ମହାମିଳନ । ଦୁଇଟି ଆତ୍ମାର ମହାମିଳନ । ନଳିତାପାଟିଆଠାରୁ ବୈତରଣୀ ଓ ବ୍ରାହ୍ମଣୀର ମିଳିତ ସ୍ରୋତ ଧାମରା ଅଭିମୁଖେ ଯାତ୍ରା କରି ଶେଷରେ ବଙ୍ଗୋପସାଗର (କଳିଙ୍ଗସାଗର)ରେ ମିଳିତ ହୋଇଛି ।

ନଳିତାପାଟିଆର ଆଗକୁ ଧାମରା ମୁହାଁଣର କିଛି ବାଟ ପୂର୍ବରୁ ମନ୍ତେଇ ନଈ ବୈତରଣୀରେ ମିଳିତ ହୋଇଛି । ବୈତରଣୀ ଓ ମନ୍ତେଇ ନଈର ସଂଗମ ସ୍ଥଳ ବେଶ୍ ମନୋରମ । ଆଉ ଟିକେ ଆଗକୁ ଗଲାପରେ ବୈତରଣୀ ଓ ବ୍ରାହ୍ମଣୀର ମିଳିତ ସ୍ରୋତ ପୁନର୍ବାର ଦୁଇ ଭାଗରେ ବିଭକ୍ତ ହୋଇ



**ଧାମରା ମତ୍ସ୍ୟ ପୋତାଶ୍ରୟରେ ଲାଗିଥିବା ସହସ୍ରାଧିକ ଟ୍ରଲର**

ଗୋଟିଏ ସ୍ରୋତ ଧାମରା (ଭଦ୍ରକ ଜିଲ୍ଲା) ଆଡ଼କୁ ଯାଇଛି ଏବଂ ଅନ୍ୟ ଏକ ସ୍ରୋତ ତାଳଚୁଆ (କେନ୍ଦ୍ରାପଡ଼ା ଜିଲ୍ଲା) ଅଭିମୁଖେ ଯାତ୍ରା କରିଛି । ମଝିରେ କନିକା ପ୍ରସିଦ୍ଧ **'କାଳିଭଞ୍ଜଡ଼ିଆ ଦ୍ୱୀପ'** ରହିଛି ।

ଆମେ ମୋଟର ଲଞ୍ଚରେ ଆଗକୁ ଆଗକୁ ଯାଉଥାଉ । ଧାମରା ମତ୍ସ୍ୟପୋତାଶ୍ରୟରେ ପହଞ୍ଚିଗଲାବେଳକୁ ଦେହରେ ଅପୂର୍ବ ପୁଲକ ଭରିଯାଇଥିଲା । ଲାଗୁଥିଲା ଏଇଠି ହିଁ ପୃଥିବୀ ଶେଷ ହୋଇଛି । ଚାରିଆଡେ ପାଣିର ମହୋତ୍ସବ ।

ଧାମରା ମତ୍ସ୍ୟ ପୋତାଶ୍ରୟଟି ଏ ଅଞ୍ଚଳର ମତ୍ସ୍ୟଜୀବିଙ୍କ ପାଇଁ ଆଶିର୍ବାଦ ଭଳି । ସବୁଦ୍ରରୁ ମାଛ ମାରି ଏ ଅଞ୍ଚଳର ଧୀବର ସଂପ୍ରଦାୟର ଲୋକେ ପ୍ରଚୁର ଅର୍ଥ ରୋଜଗାର କରିଥା'ନ୍ତି । ଏଠାରୁ ପ୍ରତିଦିନ ଲକ୍ଷଲକ୍ଷ ଟନ୍ ମାଛ ଓ ଶୁଖୁଆ ଦେଶବିଦେଶକୁ ପଠାଯାଇଥାଏ । ବିଶେଷକରି କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ଅଞ୍ଚଳରେ ରହୁଥିବା ବଙ୍ଗଳାଦେଶୀ ମତ୍ସ୍ୟଜୀବିମାନେ ଧାମରା ମୁହାଁଣରୁ ପ୍ରଚୁର ପରିମାଣରେ ମାଛ ଧରିଥା'ନ୍ତି । ଓଡ଼ିଶାର ପାରଂପରିକ ମତ୍ସ୍ୟଜୀବିମାନେ ମଧ୍ୟ ଧାମରାକୁ ନିଜର ଜୀବନଜୀବିକା ଭାବେ ଆଦରି ନେଇଛନ୍ତି । ଧାମରା ମତ୍ସ୍ୟପୋତାଶ୍ରୟକୁ ସ୍ଥାନୀୟ ମତ୍ସ୍ୟଜୀବିମାନେ ଶ୍ରଦ୍ଧାରେ **'ସୋନାଦରିଆ'** ବୋଲି କହିଥା'ନ୍ତି ।

ଏବେ ବିଦେଶୀ ମାଛଧରା ଟ୍ରଲରଗୁଡ଼ିକୁ ଅନୁମତି ମିଳୁଥିବାରୁ ଦେଶୀୟ ମତ୍ସ୍ୟଜୀବିଙ୍କ ଜୀବନଜୀବିକା ବିପନ୍ନ ହୋଇପଡ଼ିଛି ବୋଲି ବାରମ୍ବାର ଅଭିଯୋଗ ଉଠୁଛି । ପାରଂପରିକ ପ୍ରଣାଳୀରେ ମାଛ ଧରୁଥିବା ଦେଶୀ ମତ୍ସ୍ୟଜୀବିମାନେ ବିଦେଶୀ ଟ୍ରଲରଗୁଡ଼ିକ ସହ ପ୍ରତିଦ୍ୱନ୍ଦ୍ୱିତା କରିପାରୁନାହାନ୍ତି । ୨୦୦୯ ମସିହାରେ କେନ୍ଦ୍ର ସରକାର ପ୍ରଥମକରି ଭାରତୀୟ ଜଳ ସୀମାରେ ମାଛ ମାରିବାକୁ ୫୪୦ ବିଦେଶୀ ଟ୍ରଲରଙ୍କୁ ଅନୁମତି ଦେବା ପରଠାରୁ ଦେଶୀୟ ମତ୍ସ୍ୟଜୀବିଙ୍କ ମଧ୍ୟରେ ଅସନ୍ତୋଷ କୁହୁଳିଛି । ଏହା ଫଳରେ ବିଦେଶୀ ମତ୍ସ୍ୟଜୀବି ଲାଭବାନ୍ ହେଉଥିବାବେଳେ ଦେଶୀୟ ମତ୍ସ୍ୟଜୀବି ପଛରେ ପଡ଼ିଯାଉଛନ୍ତି ।

୨୦୧୪ ମସିହା ସୁଦ୍ଧା ପାଖାପାଖି ତିନି ହଜାରରୁ ଊର୍ଦ୍ଧ୍ୱ ଟ୍ରଲର, ଗିଲେଟିନ୍, ଭୁଟଭୁଟି, ମୋଟର ଲଞ୍ଚ ଏବଂ ଦେଶୀ ଡଙ୍ଗା ଧାମରା ପୋତାଶ୍ରୟରେ ପଞ୍ଜୀକୃତ ହୋଇଥିଲା । ଏମାନେ ସମସ୍ତେ ଦେଶୀୟ ମତ୍ସ୍ୟଜୀବି । ଏହି ମତ୍ସ୍ୟଜୀବିମାନଙ୍କୁ ନେଇ 'ମା' ଧାମରାଇ ମତ୍ସ୍ୟଜୀବି ସଂଘ' ଗଠିତ ହୋଇଛି । ଏହି ସଂଘ ମତ୍ସ୍ୟଜୀବିଙ୍କ ଉନ୍ନୟନ ଓ ଧାମରା ମତ୍ସ୍ୟ ପୋତାଶ୍ରୟର ବିକାଶ ପାଇଁ କାର୍ଯ୍ୟ କରିଆସୁଛି । ଅପରପକ୍ଷେ, ବିଦେଶୀ ଟ୍ରଲରଗୁଡ଼ିକ ଗଭୀର ସମୁଦ୍ରର ସିଂହଭାଗ ମାଛ ସଂଗ୍ରହ କରି ନେଉଥିବାବେଳେ ଦେଶୀୟ ଟ୍ରଲରଗୁଡ଼ିକ ଅନୁରୂପ ମାଛ ମାରିପାରୁନାହାନ୍ତି । ଏହି କାରଣରୁ ଗତ କିଛି ବର୍ଷ ହେବ, ଧାମରା ଇଲିସି ଉତ୍ପାଦନ ହ୍ରାସ ପାଇଛି । ଧାମରା ମୁହାଁଣ ଓ



ନଦୀ ମଧ୍ୟରୁ ଧାମରା ମତ୍ସ୍ୟ ପୋତାଶ୍ରୟ ଓ ପୋତାଶ୍ରୟ କାର୍ଯ୍ୟାଳୟର ଦୃଶ୍ୟ



**ଧାମରା ମତ୍ସ୍ୟ ପୋତାଶ୍ରୟରେ ଲେଖକ**

ଗଭୀର ସମୁଦ୍ରରୁ ମିଳୁଥିବା ବିରଳ ଇଲିସି, ଫିରିକା, ବାହାର ଏବଂ ପାଂପ୍‌ଲେଟ୍ ମାଛକୁ ବିଦେଶୀ ମତ୍ସ୍ୟଜୀବିମାନେ କବ୍‌ଜା କରି ନେଇଯାଉଛନ୍ତି ବୋଲି ସ୍ଥାନୀୟ ମତ୍ସ୍ୟଜୀବିମାନେ ବହୁବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ବିଦେଶୀ ମତ୍ସ୍ୟଜୀବିଙ୍କ ଯୋଗୁଁ ଉପକୂଳ ଓଡ଼ିଶାର ବଜାରରେ ଧାମରା ଇଲିସି ଆଉ ଉପଲବ୍‌ଧ ହୋଇପାରୁନାହିଁ ।

ଧାମରା ବନ୍ଦର କାର୍ଯ୍ୟକ୍ଷମ ହେବାପରେ ବଡ଼ବଡ଼ ଜାହାଜ ଚଳାଚଳ ସାମୁଦ୍ରିକ ମାଛଧରାକୁ ବେଶ୍ ପ୍ରଭାବିତ କରିଛି । ଧାମରା ଜେଟି ମତ୍ସ୍ୟ ଅଧିକାରୀଙ୍କ କାର୍ଯ୍ୟାଳୟର ତଥ୍ୟ ଅନୁସାରେ, ଗତ ୨୦୦୧ରୁ ୨୦୧୦ ମସିହା ଦଶବର୍ଷ ମଧ୍ୟରେ ବାର୍ଷିକ ହାରାହାରି ୧୦ ହଜାର ମେଟ୍ରିକ୍ ଟନ୍ ମାଛ ଧରାଯାଇଛି । ତେବେ ବିଦେଶୀ ଟ୍ରଲରଗୁଡିକର ଆବିର୍ଭାବ ମାଛ ଧରା କାର୍ଯ୍ୟକୁ ପ୍ରଭାବିତ କରିଛି ବୋଲି ସ୍ଥାନୀୟ ମତ୍ସ୍ୟଜୀବି ସଂଘ ସୂତ୍ରରୁ ଜଣାପଡିଛି । ପୂର୍ବେ ସମୁଦ୍ରକୁ ମାଛ ମାରିବାକୁ ଯାଉଥିବା ଟ୍ରଲରଟିଏ ଥରକେ ଅନ୍ୟୁନ ୧୦ ଲକ୍ଷ ଟଙ୍କାର ମାଛ ବ୍ୟବସାୟ କରୁଥିବାବେଳେ ବର୍ତ୍ତମାନ ୨ ଲକ୍ଷ ଟଙ୍କାର ବ୍ୟବସାୟ ହେବା କଷ୍ଟକର ହୋଇପଡୁଛି ବୋଲି 'ଧାମରା ମତ୍ସ୍ୟଜୀବି ସଂଘ'ର ଉପସଭାପତି ଅଭିମନ୍ୟୁ ରାଉତ ଓ ନିତ୍ୟାନନ୍ଦ ବେହେରା ସୂଚନା ଦେଇଥିଲେ । ବିଦେଶୀ ଟ୍ରଲରଗୁଡିକୁ ଅନୁମତି ମିଳିଯିବା ପରେ ଦେଶୀୟ ମତ୍ସ୍ୟଜୀବିମାନେ ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି ବୋଲି 'ଧାମରା ମତ୍ସ୍ୟଜୀବି ସଂଘ' ଅଭିଯୋଗ କରିଥିଲା ।

[ ତଥ୍ୟ ସଂଗ୍ରହ ବିବରଣୀ

ତାରିଖ: ୧୪ ଓ ୧୫, ଜାନୁୟାରୀ ୨୦୧୪, **ସ୍ଥାନ**: ଧାମରା ମତ୍ସ୍ୟପୋତାଶ୍ରୟ, ତଥ୍ୟ ପ୍ରଦାନକାରୀ: ଅଭିମନ୍ୟୁ ରାଉତ, ନିତ୍ୟାନନ୍ଦ ବେହେରା, ଉପ ସଭାପତି 'ଧାମରା ମତ୍ସ୍ୟଜୀବି ସଂଘ', ବୁଣାଧର ଜାନା (ଟ୍ରଲର ଡ୍ରାଇଭର), ବାପି କୁଣ୍ଡୁ (ଟ୍ରଲର ଡ୍ରାଇଭର) ]

## ପ୍ରାଚୀନ କନିକା ବନ୍ଦରରୁ ଆଧୁନିକ ଧାମରା ବନ୍ଦର ଯାଏଁ...

*(From ancient Kanika Port to modern Dhamara Port Company Limited)*

ପ୍ରାଚୀନ ଉତ୍କଳର ପୁରାତନ ଧାମରା ବନ୍ଦର **'କନିକା ବନ୍ଦର'** *(Kanika Port)* ଭାବେ ପ୍ରସିଦ୍ଧିଲାଭ କରିପାରିଥିଲା । ଯେହେତୁ ଏହି ବନ୍ଦରଟି ତତ୍କାଳୀନ କନିକା ରାଜ୍ୟର ଏକ ପ୍ରମୁଖ ବନ୍ଦର ଥିଲା, ସେହି କାରଣରୁ ଏହା କନିକା ବନ୍ଦର ଭାବେ ପ୍ରସିଦ୍ଧିଲାଭ କରିପାରିଥିଲା । ସେହି ଆଧାରରେ ଧାମରା ବନ୍ଦର ସନ୍ନିକଟ ବଙ୍ଗୋପସାଗର ମଧ୍ୟରେ ଥିବା ବାଲି ଟାପୁକୁ **'କନିକା ବାଲି'** କୁହାଯାଇଆସୁଛି ।

(ତଥ୍ୟ ସହାୟତା: ଦୈନିକ 'ଧରିତ୍ରୀ', ତା: ୧୨.୦୫.୨୦୦୬, ଭୁବନେଶ୍ୱର ଏବଂ ଦୈନିକ 'ସମାଜ', ତା: ୦୪.୧୧.୨୦୦୫, କଟକ)





**ଧାମରା ମତ୍ସ୍ୟ ପୋତାଶ୍ରୟ ମଧ୍ୟରେ ଥିବା ଜାହାଜ ମରାମତି କାରଖାନା**

ଅତୀତରେ ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ପ୍ରାକୃତିକ ନଦୀ ବନ୍ଦର ଭାବେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲା । ପଞ୍ଚଦଶ ଶତାବ୍ଦୀଠାରୁ ବୈତରଣୀ ନଦୀର ଚାନ୍ଦବାଲି ସମେତ ବଙ୍ଗୋପସାଗର-ବୈତରଣୀ ମୁହାଁଣସ୍ଥ ଧାମରା ବନ୍ଦର ଦେଇ ଓଡ଼ିଶାର ବାଣିଜ୍ୟ କାରବାର କରାଯାଉଥିଲା । ଧାମରାଠାରେ ବହୁ ଆଗରୁ ଏକ ମତ୍ସ୍ୟ ପୋତାଶ୍ରୟ ମଧ୍ୟ ଗଢି ଉଠିଥିଲା । ସ୍ଥାନୀୟ ମତ୍ସ୍ୟଜୀବିମାନେ ଏଠାରୁ ମାଛ ମାରି ଧାମରା ବନ୍ଦର ମାଧ୍ୟମରେ ବିଦେଶକୁ ରପ୍ତାନୀ କରିପାରୁଥିଲେ । ଏମିତିକି ଇଂରେଜ ଶାସନ କାଳରେ ଚାନ୍ଦବାଲି ଓ ଧାମରା ବନ୍ଦର ଦେଇ ଦେଶବିଦେଶ ସହିତ ବାଣିଜ୍ୟିକ କାରବାର ଜାରି ରହିଥିଲା । ମାତ୍ର, ଦେଶ ସ୍ୱାଧୀନ ହେବା ପରଠାରୁ ଧାମରା ବନ୍ଦରଟିର କାରବାର ଆଶାତୀତ ହ୍ରାସ ପାଇଥିଲା ।

ଧାମରା ବନ୍ଦରକୁ ପୁର୍ନକ୍ଷମ କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ୧୯୯୭ ମସିହାରେ ପ୍ରୟାସ ଆରଂଭ କରିଥିଲେ । ଏହାର ଫଳସ୍ୱରୂପ ୧୯୯୮ ମସିହାରେ ପୁରୁଣା ବନ୍ଦରଟିର ୭ କିଲୋମିଟର ଆଗକୁ ଭଦ୍ରକ ଜିଲ୍ଲାର **ଚନ୍ଦନିପାଳ** ନିକଟସ୍ଥ ସମୁଦ୍ର ମୁହାଁଣରେ ଏକ ନୂତନ ଆଧୁନିକ ବନ୍ଦରର ପରିକଳ୍ପନା ଆରଂଭ ହୋଇଥିଲା ।

ପ୍ରାଚୀନ ଧାମରା ବନ୍ଦର (କନିକା ବନ୍ଦର)ର ୭ କିଲୋମିଟର ଦୂରରେ ଚନ୍ଦନିପାଳଠାରେ ଏବେ ନୂତନ ଆଧୁନିକ ଧାମରା ବନ୍ଦରଟି ଗଢିଉଠିଛି । ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍‌ରେ ବୈତରଣୀ-ବ୍ରାହ୍ମଣୀ ନଦୀ ମୁହାଁଣରେ ଏହି ନବନିର୍ମିତ ଆଧୁନିକ ଧାମରା ବନ୍ଦର ଅବସ୍ଥିତ । ସର୍ବପ୍ରଥମେ ୧୯୯୭ ମସିହାରେ ଓଡ଼ିଶା ସରକାର ଆଇ.ଏସ୍‌ପିଏଲ୍ *(International Seaports Private Limited)* ନାମକ ଏକ ଘରୋଇ ସଂସ୍ଥାକୁ ଧାମରାଠାରେ ଥିବା ପ୍ରାଚୀନ କ୍ଷୁଦ୍ର ବନ୍ଦରଟିର କଳେବର ବୃଦ୍ଧି କରିବା ସାଙ୍ଗକୁ ଦେଶର ଏକ ବୃହତ୍ ବନ୍ଦର ପ୍ରତିଷ୍ଠା ନିମନ୍ତେ ଏହାର ସର୍ଭେ କାମ କରିବାକୁ ନିମନ୍ତ୍ରଣ ଜଣାଇଥିଲେ । *ISPL* ଏବଂ ଓଡ଼ିଶା ସରକାରଙ୍କ ମଧ୍ୟରେ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଥିଲା । *ISPL* ଏବଂ ଆଇଆଇଟି ଚେନ୍ନାଇର ମିଳିତ ଉଦ୍ୟମରେ ବନ୍ଦରର ସର୍ଭେ କାମ ଆରଂଭ ହୋଇଥିଲା । ରାଜ୍ୟ ସରକାରଙ୍କ ଉଦ୍ୟମରେ ୧୯୯୮ ମସିହାରେ 'ଧାମରା ପୋର୍ଟ କଂପାନୀ ଲିଃ' *(Dhamara Port Company Limited)* ଗଠନ କରାଯାଇ ଦ୍ରୁତ ଗତିରେ ବନ୍ଦର ନିର୍ମାଣ କାମ ଆଗେଇ ଚାଲିଲା । ତେବେ କୌଣସି କାରଣରୁ *ISPL* ରାଜ୍ୟ ସରକାରଙ୍କ ସହିତ କରିଥିବା ବୁଝାବଣାରୁ ଓହରି ଯାଇଥିଲା । ଏହାପରେ ଏହି ବନ୍ଦର ନିର୍ମାଣ କାମ ଏକପ୍ରକାର ଅନ୍ଧାର ମଧ୍ୟକୁ ଠେଲି ହୋଇଯାଇଥିଲା ।



ଧାମରା ବନ୍ଦରର ଏକ ସାନ୍ଧ୍ୟକାଳୀନ ଦୃଶ୍ୟ




**ଧାମରା ମତ୍ସ୍ୟ ପୋତାଶ୍ରୟରେ ବିଶ୍ରାମ ନେଉଥିବା ଦୁଇଟି ବିଶାଳ ଟ୍ରଲର**

୨୦୦୫ ମସିହା ବେଳକୁ ଏଲ୍ ଆଣ୍ଡ ଟି *(Larsen and Toubro)* ଏବଂ ଟାଟା ଷ୍ଟୀଲ୍ *(Tata Steel)* ମିଳିତ ଭାବେ ଏହି ବନ୍ଦର ନିର୍ମାଣ ଓ ପରିଚାଳନା ଦାୟିତ୍ୱ ନିଜ ହାତକୁ ନେଇଥିଲେ ।

ପଶ୍ଚିମବଙ୍ଗର ହଳଦିଆ ଏବଂ ଓଡ଼ିଶାର ପାରାଦ୍ୱୀପ ବନ୍ଦରର ମଝିରେ ଧାମରା ବନ୍ଦର ଅବସ୍ଥିତ । ବଙ୍ଗୋପସାଗରରେ ଥିବା 'କନିକା ବାଲି ଦ୍ୱୀପ' ଏବଂ 'ହ୍ୱିଲର ଦ୍ୱୀପ' ଏହି ବନ୍ଦରକୁ ଲାଗିଛି । ବନ୍ଦରଟିର ନିର୍ମାଣ କାର୍ଯ୍ୟ ୧୯୯୮ ମସିହାରୁ ଆରଂଭ ହୋଇ ଅଦ୍ୟାବଧି କାର୍ଯ୍ୟ ସଂପୂର୍ଣ୍ଣ ହୋଇନାହିଁ । ତେବେ ୨୦୧୧ ମସିହା ମେ ମାସ ୬ ତାରିଖରୁ ବନ୍ଦରଟି ଆଂଶିକ ଭାବେ କାର୍ଯ୍ୟକ୍ଷମ ହୋଇପାରିଛି । ଏହା ପୂର୍ବରୁ ୨୦୧୦ ମସିହା ସେପ୍‌ଟେମ୍ବର ମାସରେ ପ୍ରଥମ ଥର ପାଇଁ ଏକ ବିଦେଶୀ ଜାହାଜ *(cargo vessel)* ଏହି ବନ୍ଦରରେ ଲାଗିଥିଲା । ଏହି ଜାହାଜଟି ଅଷ୍ଟ୍ରେଲିଆରୁ ୪୫,୦୦୦ ଟନ୍ କୋଇଲା ଧରି ଏଠାରେ ପହଞ୍ଚିଥିଲା । ଏହି କୋଇଲା ଟାଟା ଷ୍ଟୀଲ୍‌ର ଜାମ୍‌ସେଦ୍‌ପୁର ପ୍ଲାଣ୍ଟକୁ ଯାଇଥିଲା । ସେହିଭଳି ୨୦୧୪ ମସିହାରେ ଦକ୍ଷିଣ ଆଫ୍ରିକାରୁ ଆସିଥିବା ଏକ ସର୍ବବୃହତ୍ତ ଜାହାଜ *(biggest cargo vessel)* ଧାମରା ବନ୍ଦରରେ ଲାଗିଥିଲା । ଏହି ବୃହତ୍ ଜାହାଜରେ ୧,୯୪,୦୭୩ ଟନ୍ କୋଇଲା ବୋଝେଇ ହୋଇ ଆସିଥିଲା ।

ଧାମରା ବନ୍ଦରର ବାର୍ଷିକ ୮୦ ନିୟୁତ ଟନ୍ ପଣ୍ୟ କାରବାର କ୍ଷମତା ରହିଛି । ଡିପିସିଏଲ୍ *(Dhamara Port Company Limited)* ଏଠାରେ ୩୫୦ ମିଟର ଦୀର୍ଘବିଶିଷ୍ଟ ଦୁଇଟି ବିଶାଳ ପୋତାଶ୍ରୟ *(berth)* ନିର୍ମାଣ କାର୍ଯ୍ୟ ଶେଷ କରିଥିବାବେଳେ ଆଉ ୧୫ଟି ପୋତାଶ୍ରୟ ନିର୍ମାଣ କରିବାର ଲକ୍ଷ୍ୟ ରଖିଛି । ଭଦ୍ରକଠାରୁ ୬୨ କିଲୋମିଟର ବିଶିଷ୍ଟ ଏକ ରେଳପଥ ଧାମରା ବନ୍ଦର ନିକଟକୁ ସଂଯୋଗ କରାଯାଇଛି । ଏହି ରେଳପ୍ରକଳ୍ପ ବର୍ତ୍ତମାନ ନିର୍ମାଣାଧୀନ ଅବସ୍ଥାରେ ରହିଛି । ବର୍ତ୍ତମାନ ଧାମରା ବନ୍ଦରଟି ସମଗ୍ର ଏସିଆ ମହାଦେଶର ଏକ ଅଗ୍ରଣୀ ବନ୍ଦର ଭାବେ ନିଜର ଏକ ପରିଚୟ ସୃଷ୍ଟି କରିପାରିଛି ।

ଆଧୁନିକ ଧାମରା ବନ୍ଦର ଇତିହାସର ପୃଷ୍ଠାରେ ୨୦୧୪ ମସିହା ମେ ମାସ ୧୬ ତାରିଖରେ ପୁଣି ଏକ ଧାଡ଼ି ଯୋଡ଼ିହେଲା । ଏହି ଦିନ ଧାମରା ବନ୍ଦରକୁ 'ଆଦାନି ପୋର୍ଟ୍ସ ଆଣ୍ଡ ସ୍ପେଶିଆଲ୍ ଇକନମିକ୍ ଜୋନ୍' *(Adani Ports and Special Economic Zone )* ନାମକ ସଂସ୍ଥା ୫,୫୦୦ କୋଟି ଟଙ୍କାରେ ଏଲ୍ ଆଣ୍ଡ ଟି *(Larsen and Toubro)* ଏବଂ ଟାଟା ଷ୍ଟୀଲ୍ *(Tata Steel)* ନିକଟରୁ କିଣି ନେଇଥିଲା । ସୂଚନାଯୋଗ୍ୟ, ଏହାପୂର୍ବରୁ ଏହି ଦୁଇ କଂପାନୀ ୫୦:୫୦ ପ୍ରତିଶତ ଭାଗିଦାରୀରେ ବନ୍ଦରର ପରିଚାଳନା ଦାୟିତ୍ୱ ନିର୍ବାହ କରୁଥିଲେ । ଧାମରା




ଧାମରା ମତ୍ସ୍ୟ ପୋତାଶ୍ରୟରେ ଲେଖକ



**ଧାମରା ମୁହାଁଣରେ ଲେଖକ**

ବନ୍ଦରକୁ ଆଦାନି କଂପାନୀ କିଣିନେବା ପରେ ଏଠାରେ ଏକ ବିଶାଳ କଣ୍ଟେନର ଟର୍ମିନାଲ୍ ନିର୍ମାଣ କାମ ଆରମ୍ଭ ହେଲା ଏବଂ ଏହାର ପଣ୍ୟ ପରିବହନ କ୍ଷମତା ବୃଦ୍ଧି କରାଗଲା । କଂପାନୀ ୨୦୧୬ ମସିହା ସୁଦ୍ଧା ଏହି ବିଶାଳ କଣ୍ଟେନର ଟର୍ମିନାଲ୍ ନିର୍ମାଣ କାମ ସାରିବାକୁ ଲକ୍ଷ୍ୟ ରଖିଛି । ଏଠାରେ ଅଧିକ ସଂଖ୍ୟାରେ ବର୍ଥ ନିର୍ମାଣ କରି ଆଗାମୀ ୨୦୨୦ ମସିହା ସୁଦ୍ଧା ପଣ୍ୟ ପରିବହନ କ୍ଷମତା ୨୦୦ ନିୟୁତ ଟନ୍‌କୁ ବୃଦ୍ଧି କରିବା ପାଇଁ କଂପାନୀର ଯୋଜନା ରହିଛି ।

ସମଗ୍ର ଦେଶରେ ଧାମରା ବନ୍ଦର ଏକ ଦ୍ରୁତତମ ଏବଂ ଅଗ୍ରଣୀ ପ୍ରକଳ୍ପ ଭାବେ ଖୁବ୍ ବେଗରେ ଆଗେଇ ଚାଲିଛି । ପ୍ରକଳ୍ପଟି ଏବେ ବିକାଶର ଦ୍ରୁତତମ ସୋପାନରେ ପହଞ୍ଚିଛି । ଧାମରାଠାରେ କାର୍ଯ୍ୟକ୍ଷମ ମାଛଧରା ବନ୍ଦରଟିକୁ ଏକ ଆନ୍ତର୍ଜାତୀୟ ମାଛଧରା ବନ୍ଦର ନେଇ ପ୍ରୟାସ ଜାରି ରହିଛି । ଏଥିପାଇଁ ୨୦ କୋଟି ଟଙ୍କା ଖର୍ଚ୍ଚ କରାଯାଇଛି । ଭାରତର ଦୁଇଟି ବନ୍ଦରକୁ ବିଶ୍ୱସ୍ତରୀୟ ମାଛଧରା ବନ୍ଦର କରାଯିବାକୁ ଚିନ୍ତା କରାଯାଇଛି । ଆରବ ସାଗର ଉପକୂଳରେ ଥିବା ଗୁଜୁରାଟର ମାଙ୍ଗ୍ରୋଲ୍ ବନ୍ଦର ଏବଂ କଳିଙ୍ଗ ସାଗର (ବଙ୍ଗୋପସାଗର) କୂଳରେ ଥିବା ଧାମରା ବନ୍ଦରକୁ ବିଶ୍ୱସ୍ତରୀୟ କରାଯିବା ସମଗ୍ର ଦେଶ ପାଇଁ ଏକ ଖୁସିର ଖବର । ଇଟାଲିର ରୋମ୍‌ଠାରେ ଥିବା ଜାତିସଂଘର 'ଖାଦ୍ୟ ଓ କୃଷି ସଂସ୍ଥାନ କେନ୍ଦ୍ର' ଏବଂ ରାଜ୍ୟ ସରକାରଙ୍କ ମିଳିତ ସହଯୋଗରେ

ଏହାର ନିର୍ମାଣ କରାଯିବା ସହ ଏହାକୁ ଏକ ଆନ୍ତର୍ଜାତୀୟ ମାନର ବନ୍ଦର କରିବାରେ ସମସ୍ତ ପ୍ରକାର କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏଥିସକାଶେ ଚେନ୍ନାଇସ୍ଥିତ 'ଭାରତୀୟ ବୈଷୟିକ ଶିକ୍ଷାକେନ୍ଦ୍ର'ର ମହାସାଗର ବିଭାଗର ମୁଖ୍ୟ ପ୍ରଫେସର ଡ· ଆର୍· ସୁନ୍ଦରାଭାଡିଭେଲୁ ଧାମରା ଗସ୍ତରେ ଆସି କ୍ଷେତ୍ର ପରିଦର୍ଶନ ସହ ସର୍ବେକ୍ଷଣ କରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ୨୦୦୭ ମସିହା ୩୦ ତାରିଖରେ ଏକ ରିପୋର୍ଟ ପ୍ରଦାନ କରିଥିଲେ । ଏହାର ଚୂଡ଼ାନ୍ତ ରିପୋର୍ଟ କେନ୍ଦ୍ର ସରକାରଙ୍କୁ ମଧ୍ୟ ପ୍ରଦାନ କରାଯାଇଥିଲା । ପ୍ରଫେସର ଡ· ଆର୍· ସୁନ୍ଦରାଭାଡିଭେଲୁଙ୍କ ସୂଚନା ଅନୁଯାୟୀ, ଦେଶର ଦୁଇଟି ମାଛଧରା ବନ୍ଦରକୁ ଆନ୍ତର୍ଜାତୀୟ ବନ୍ଦରର ମାନ୍ୟତା ମିଳିବ ବୋଲି ଜଣାପଡିଛି । ଆରବସାଗର ଉପକୂଳର ଗୁଜୁରାଟର ମାଙ୍ଗ୍ରୋଲ୍ ବନ୍ଦର ପରେ ଧାମରା ଭାରତର ଦ୍ୱିତୀୟ ତଥା ରାଜ୍ୟର ପ୍ରଥମ ଆନ୍ତର୍ଜାତୀୟ ମାଛଧରା ବନ୍ଦରର ମାନ୍ୟତା ପାଇବାକୁ ଯାଉଛି ବୋଲି ୨୦୦୭ ମସିହା ଅକ୍ଟୋବର ୨୮ ତାରିଖରେ ପ୍ରଫେସର ଡ· ଆର୍· ସୁନ୍ଦରାଭାଡିଭେଲୁ ଭଦ୍ରକସ୍ଥିତ ଶାଳନ୍ଦୀ ଜଳସେଚନ ଡାକବଙ୍ଗଳାଠାରେ ସ୍ଥାନୀୟ ଗଣମାଧ୍ୟମ ପ୍ରତିନିଧିଙ୍କୁ ସୂଚନା ଦେଇଥିଲେ ।

ଧାମରାର ଉତ୍ତମ ପାରିପାର୍ଶ୍ୱିକ ପରିବେଶ, ବ୍ୟାବସାୟିକ ସୁପରିଚାଳନା ଏଥିପାଇଁ ବେଶ୍ ଅନୁକୂଳ ବୋଲି ପ୍ରଫେସର ଡ· ଆର୍· ଭେଲୁ ପ୍ରକାଶ କରିଥିଲେ । ଧାମରାଠାରେ ଥିବା ବର୍ତ୍ତମାନର ନୂଆ ଓ



ଧାମରା ମତ୍ସ୍ୟ ପୋତାଶ୍ରୟ

ପୁରୁଣା ମାଛଧରା ଜେଟିକୁ ମିଶାଇ ଏକ ଅତ୍ୟାଧୁନିକ ମାଛଧରା ବନ୍ଦର ନିର୍ମାଣ କରାଯାଇପାରିଲେ ଉଭୟ ରାଜ୍ୟ ଓ ଦେଶ ଖୁବ୍ ଲାଭବାନ ହୋଇପାରିବ । ଏହାର ନିର୍ମାଣ କାର୍ଯ୍ୟ କେନ୍ଦ୍ର, ରାଜ୍ୟ ସରକାର ଏବଂ ରୋମ୍‌ସ୍ଥିତ 'ଖାଦ୍ୟ ଓ କୃଷି ସଂସ୍ଥାନ କେନ୍ଦ୍ର' ମିଳିତ ଭାବେ ନିର୍ମାଣ କରିବେ ବୋଲି ଡ· ଭେଲୁ ସୂଚନା ଦେଇଥିଲେ । ଏହି ପ୍ରକଳ୍ପର ନିର୍ମାଣ ଅବସରରେ ଉନ୍ନତ ମାନର ମାଛ ନିଲାମ କେନ୍ଦ୍ର, ପରିତ୍ୟକ୍ତ ଦୂଷିତ ଜଳକୁ ଶୁଦ୍ଧ କରାଯାଇ ପୁନଃ ବ୍ୟବହାର ପାଇଁ ସ୍ୱେରେଜ୍ ପ୍ଲାଣ୍ଟ୍, ମାଛ ଧରିବା ପରେ ଏହାକୁ ସ୍ୱାସ୍ଥ୍ୟକର ପରିବେଶରେ ସଂରକ୍ଷିତ ରଖିବା ନେଇ ସମସ୍ତ ପ୍ରକାର ବ୍ୟବସ୍ଥା କରାଯିବ ।

ଧାମରା ବନ୍ଦରଟିର ଖୁବ୍ ନିକଟରେ ପୃଥିବୀ ପ୍ରସିଦ୍ଧ ଭିତରକନିକା ଜାତୀୟ ପ୍ରାଣୀ ଉଦ୍ୟାନ ଏବଂ ଗହୀରମଥା ଅଲିଭ୍ ରିଡ୍‌ଲେ କଇଁଛଙ୍କ ପ୍ରାକୃତିକ ଆଶ୍ରୟସ୍ଥଳ (ଯେଉଁଠାରେ ପ୍ରତିବର୍ଷ ୫.୦୦.୦୦୦ରୁ ୧୦.୦୦.୦୦୦ ପର୍ଯ୍ୟନ୍ତ ମାଈ ଅଲିଭ୍ ରିଡ୍‌ଲେ ଅଣ୍ଡା ଦେଇଥା'ନ୍ତି) ରହିଥିବାରୁ 'ଗ୍ରୀନ୍‌ପିସ୍' ନାମକ ଏକ ଅର୍ନ୍ତଜାତୀୟ ସଂସ୍ଥା ଏହାର ନିର୍ମାଣକୁ ବିରୋଧ କରିଆସୁଛି । ଏସବୁ ବିରୋଧ ସତ୍ତ୍ୱେ ଧାମରା ବନ୍ଦରଟି ଦ୍ରୁତ ଗତିରେ ଆଗେଇ ଚାଲିଛି ଏବଂ ବୈତରଣୀ ନଦୀ ମାଧ୍ୟମ ଚାଲିଥିବା ଉତ୍କଳର ଅତୀତ ନୌ-ବାଣିଜ୍ୟ ପରଂପରାକୁ ଆଗେଇ ନେବାର ପ୍ରୟାସ ଜାରି ରହିଛି ।

**(ତଥ୍ୟ ସହାୟତା: ଦୈନିକ 'ସମାଜ', ବାଲେଶ୍ୱର ସଂସ୍କରଣ, ୨୯ ଅକ୍ଟୋବର ୨୦୦୭)**

## ଚନ୍ଦନିପାଳ ବିଶାଳ ଶୁଖୁଆ ଖଳା

*(Chandanipal dry marine fish ground)*





**ଚନ୍ଦନିପାଳ ଶୁଖୁଆ ଖଳାରେ ଲେଖକ**

ବଜାରରେ ଧାମରା ଶୁଖୁଆ ବିଶେଷକରି ଧାମରା ଇଲିସି ଶୁଖୁଆର ଗୋଟିଏ ନିଆରା ଭାଉ ରହିଛି । ଏଠାରୁ ପ୍ରତିଦିନ ଟନ୍‌ଟନ୍ ଶୁଖୁଆ ବିଦେଶକୁ ରପ୍ତାନୀ ହୋଇଥାଏ । ଏଥିପାଇଁ ଚନ୍ଦନିପାଳ ସମୁଦ୍ର ମୁହାଁଣ ଆଖପାଖ ଇଲାକାରେ ଏକ ବିଶାଳ ଶୁଖୁଆଖଳା ଏବଂ ଶୁଖୁଆ ବଜାର ଗଢିଉଠିଛି ।

ଧାମରା ମତ୍ସ୍ୟ ପୋତାଶ୍ରୟ ଅତିକ୍ରମ କରି ଆହୁରି ୯ କିଲୋମିଟର ବଙ୍ଗୋପସାଗର ଆଡ଼କୁ ଗଲେ ପଡ଼ିବ ଚନ୍ଦନିପାଳ । ଏଠାରେ ନୂତନ ଧାମରା ବନ୍ଦର ପ୍ରତିଷ୍ଠା କରାଯାଇଛି । ଏଠାରେ ମଧ୍ୟ ଭାରତ ସରକାରଙ୍କ ପ୍ରତିରକ୍ଷା ବିଭାଗର ଏକ ଡିଫେନ୍‌ସ ବେସ୍ କ୍ୟାଂପ୍ ରହିଛି । ଆଉ ଏଠାରେ ରହିଛି ଚନ୍ଦନିପାଳର ପ୍ରସିଦ୍ଧ ଶୁଖୁଆ ଖଳା । ନୂତନ ଧାମରା ବନ୍ଦରର କିଛି ବାଟ ଆଗକୁ ବୈତରଣୀ ନଦୀ ଓ ସମୁଦ୍ର ମୁହାଁଣରେ ରହିଛି ଚନ୍ଦନିପାଳର ବିସ୍ତୀର୍ଣ୍ଣ ସମୁଦ୍ର ବେଳାଭୂମି । ଏହାକୁ ସ୍ଥାନୀୟ ଅଞ୍ଚଳବାସୀ '**ବୈତରଣୀ ଚଡ଼ା**' କହନ୍ତି । ଏଠାରେ ବହୁ ସଂଖ୍ୟାରେ ମତ୍ସ୍ୟଜୀବି ଓ ବ୍ୟବସାୟୀ ବସବାସ କରିବା ସହିତ ସେମାନେ ଶୁଖୁଆ ବ୍ୟବସାୟ କରି ଜୀବିକା ନିର୍ବାହ କରିଥା'ନ୍ତି ।

ଆମେ ଫେବୃଆରୀ ମାସର ଏକ ଶୀତୁଆ ଅପରାହ୍ଣରେ ଧାମରା ମତ୍ସ୍ୟ ପୋତାଶ୍ରୟ ପାର ହୋଇ ଚନ୍ଦନୀପାଳ ଶୁଖୁଆ ଖଳା (ବୈତରଣୀ ଚଡ଼ା)ରେ ପହଞ୍ଚିଲୁ । ସେଠାରେ ଜଣେ ଶୁଖୁଆ ବ୍ୟବସାୟୀଙ୍କ ସହ ଆମର ଦେଖାହେଲା । ତାଙ୍କ ନାମ ବଳରାମ ମାଝୀ । ତାଙ୍କ ଘର ଚନ୍ଦନିପାଳରେ । ତାଙ୍କର ଶୁଖୁଆ ଫାର୍ମର ନାଁ 'ଶିବମୁନି ଡ୍ରାଏ୍ ଫିସ୍ ଫାର୍ମ' *(Shiva Muni Dry Fish Farm)*। ତାଙ୍କ ଫାର୍ମରେ ମୋଟ ୩୦ ଜଣ ଶ୍ରମିକ କାମ କରୁଥିଲେ । ସେମାନେ ଦୈନିକ



ମଜୁରୀ ଭିତ୍ତିରେ ଉକ୍ତ ଶୁଖୁଆ ଫାର୍ମରେ କାର୍ଯ୍ୟ କରନ୍ତି । ଦିନକୁ ୨୦୦ରୁ ୨୫୦ ଟଙ୍କା ନେଇ ଶୁଖୁଆ ଶ୍ରମିକମାନେ ଟ୍ରଲରରୁ ମାଛ ସଂଗ୍ରହ କରିବାଠାରୁ ବାଲିରେ ଶୁଖେଇବା, ବାଛିବା, ଅଲଗା କରିବା, ପ୍ୟାକିଂ କରିବା ପର୍ଯ୍ୟନ୍ତ ଯାବତୀୟ କାମ କରିଥା'ନ୍ତି । ସେହିଭଳି ଚନ୍ଦନିପାଳର ଆଉ ଜଣେ ଶୁଖୁଆ ବ୍ୟବସାୟୀ ହେଉଛନ୍ତି ସୁରେନ୍ଦ୍ର ମାଝୀ । ତାଙ୍କର ବି ଏକ ବିଶାଳ ଶୁଖୁଆ ଫାର୍ମ ରହିଛି । ଆମେ ତାଙ୍କ ଫାର୍ମ ଆଡ଼େ ମଧ୍ୟ ବୁଲିଯାଇଥିଲୁ । ତାଙ୍କ ଫାର୍ମରେ ପାଖାପାଖି ୫୦ ଜଣ ଶ୍ରମିକ କାମ କରିଥା'ନ୍ତି । ଆମେ ଏହି ଦୁଇ ଜଣ ଶୁଖୁଆ ବ୍ୟବସାୟୀଙ୍କଠାରୁ କିଛି ସାମୁଦ୍ରିକ ଶୁଖୁଆର ନାଁ ସଂଗ୍ରହ କଲୁ । ସେହିସବୁ ଶୁଖୁଆଗୁଡ଼ିକ ହେଲା-

୧· ଟଙ୍କାରି

୨· ଚାଋି

୩· ନେଉଳି

୪· ଚାଉଳି (ଦାମି ଶୁଖୁଆ, ୩୦୦ ଟଙ୍କା କିଲୋପ୍ରତି)

୫· ରୁଟି (୨୫୦-୩୦୦ ଟଙ୍କା କିଲୋପ୍ରତି)

୬· ଚିରା ଏଣ୍ଡୁଳା

୭· ଗୋଟା ଏଣ୍ଡୁଳା

୮· ରୂପା ପାତିଆ
୯· ଲାଞ୍ଜି (ଫାଳି)
୧୦· ଚିରା ଲାଞ୍ଜି
୧୧· ତେଲ ପାଂପତି
୧୨· ଫାସି
୧୩· ନାଲି ଚିଙ୍ଗୁଡି/ପ୍ରିମ୍ ଚିଙ୍ଗୁଡି
୧୪· ଧଳା ଚିଙ୍ଗୁଡି/ଟାଇଗର୍ ଚିଙ୍ଗୁଡି
୧୫· ଗୋଗୁଆ
୧୬· ଖଇରି
୧୭· ଚାହାଁରା
୧୮· ବୁକ୍‌ଫୁଲି
୧୯· ପତରା
୨୦· ପତା
୨୧· ଛେଆ
୨୨· ଓଳେଇ
୨୩· ଶିଳା
୨୪· ଠିକିରି
୨୫· ବୋରେଇ
୨୬· ମୋତି
୨୭· ଚକ୍‌ଲେଟ୍
୨୮· ନହରା
୨୯· ଗଡ଼ମତି
୩୦· ଚୁନା
୩୧· ସାପୁଆ
୩୨· ବାମ୍
୩୩· ତୋଡି
୩୪· କାଳିଆ

୩୫· ଡଟ୍

୩୬· ସିଲ୍ଭର କାଣ୍ଟି

୩୭· ଚାଇନିଜ୍ ପାଂପ୍ଲେଟ୍

୩୮· କଣ୍ଟିଆ

୩୯· ବାସୁଲା

୪୦· ଇଲିସି (ସବୁଠୁ ଦାମି ଶୁଖୁଆ)

୪୧· ପାଟିଆ

୪୨· ପାଣିଆଖିଆ

୪୩· ଖଇରା

୪୪· ନାଓ୍ୱା

୪୫· ଡାଂପତି

୪୬· ଓଢ଼ିଆରି

୪୭· ଶଙ୍କର

୪୮· ମୁଷୁରା

୪୯· ଶାଳ

୫୦· ଆଟମ୍

୫୧· ଖଏଙ୍ଗା

୫୨· କନି

୫୩· ଚଂପା

୫୪· ଖଣ୍ଡା

[ ତଥ୍ୟ ସହାୟତା

୧. ବଳରାମ ମାଝୀ, 'ଶିବମୁନି ଡ୍ରାଏ୍ ଫିସ୍ ଫାର୍ମ', ଚନ୍ଦନିପାଳ

୨. ସୁରେନ୍ଦ୍ର ମାଝୀ, 'ସୁରେନ୍ଦ୍ର ଡ୍ରାଏଫିସ୍ ଫାର୍ମ', ଚନ୍ଦନିପାଳ ]










୨୫ ଟ୍ରଲର ଭିତରର ଦୃଶ୍ୟ




ଚାନ୍ଦବାଲି-ଧାମରାର ଗୁଗୁଲ୍ ମାନଚିତ୍ର




ଧାମରା ଓ କନିକା ବାଲିର ଅବସ୍ଥିତି




ଧାମରା ଓ କନିକା ବାଲିର ଅବସ୍ଥିତି

## ଷଷ୍ଠ ପରିଚ୍ଛେଦ

# ବୈତରଣୀ ଓ କେନ୍ଦ୍ରାପଡ଼ା

## କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀର ଅନ୍ତିମ ଯାତ୍ରା; ଅନେକ ଅକୁହା ଇତିହାସ ଓ ଐତିହ୍ୟର ଉନ୍ମୋଚନ

*(Baitaranee flows in Kendrapada; many untold stories)*




କେନ୍ଦ୍ରାପଡ଼ା ଜିଲ୍ଲାକୁ ଭଗବାନ ଆଉକିଛି ଦେଇ ଥା'ନ୍ତୁ କି ନଥା'ନ୍ତୁ ନଦୀ, ନାଳ, ସମୁଦ୍ର, ସମୁଦ୍ର ବେଳାଭୂମି, ବହୁମୂଲ୍ୟ ହେନ୍ତାଳବଣ ଭଳି ପ୍ରାକୃତିକ ସଂପଦ ପ୍ରଦାନ କରି ଯେଉଁ ଉପକାର କରିଛନ୍ତି ତାହା ଜିଲ୍ଲାବାସୀ ଭୁଲି ପାରିବେ ନାହିଁ । ଜିଲ୍ଲାର ଚର୍ତୁଦିଗ, ଯେଉଁଠି ଚାହିଁବ ନଦୀ, ସମୁଦ୍ର, ନଳା, ଗଳିଆ, ଢୋର, ଉପନଦୀ ଓ ପାଣି ଆଉ ପାଣି । ଚାରିଆଡ଼େ ଜାଲ ପରି ବିଛେଇ ହୋଇଥିବା ନଦୀମାନେ ହେଉଛନ୍ତି କେନ୍ଦ୍ରାପଡ଼ା ଜିଲ୍ଲାର ପରିଚୟ ଓ ସମ୍ବଳ । ରାଜ୍ୟର ସର୍ବାଧିକ ସମୁଦ୍ର ବେଳାଭୂମି *(cost line)* ହିଁ କେନ୍ଦ୍ରାପଡ଼ା ଜିଲ୍ଲାରେ ରହିଛି ।

କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ବୈତରଣୀ ନଦୀ ପ୍ରବାହିତ ହୋଇଛି ବୋଲି ଖୁବ୍ କମ୍ ଲୋକଙ୍କର ଧାରଣା ଥାଏ । ସମସ୍ତେ ଭାବନ୍ତି ବୈତରଣୀ ଚାନ୍ଦବାଲିଠାରେ ସବୁଦ୍ରରେ ମିଶିଛି । ମାତ୍ର ଏହି ଧାରଣା ଭୁଲ । କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆଠାରେ ବୈତରଣୀ ଓ ବ୍ରାହ୍ମଣୀ ମିଳିତ

ହୋଇଛନ୍ତି ଏବଂ ଆଗକୁ ପ୍ରବାହିତ ହୋଇଛନ୍ତି । ବୈତରଣୀ, ବ୍ରାହ୍ମଣୀକୁ ଛାଡ଼ିଦେଲେ କେନ୍ଦ୍ରାପଡା ଜିଲ୍ଲାରେ ମଧ୍ୟ ମହାନଦୀ, ଚିତ୍ରୋତ୍ପଳା, ପାଇକା, କରାଣ୍ଡିଆ, ଲୁଣା, ବଡ଼ନଈ, ଗୋବରୀ, ସାନବ୍ରାହ୍ମଣୀ, ଖରସ୍ରୋତା, କାଣି, ହଂସୁଆ, ପାଟଶାଳା, ହଂସିଣା, ବକୁଳ ଭଳି ଅନେକ ନଦୀ ଏବଂ ବାଉଁଶଗଦା ନଳା, ଗହୀରମଥା ନଳା, ଚିତ୍ରୋତ୍ପଳା ନଳା, ସରୁନଈ, ହନୁମନ୍ତ ନଳା, ପାପୁଲି ନଳା, ଭିତରକନିକା ନଳା, ଶଙ୍ଖୁଆମୁହାଁ ନଳା, ଖୋଳା, ବୁଧିଆ ନଳା, ଛେଦାକାଣୀ ନଳା, କାଣି ନଳା, ସିଂହନଳା, ଖରିନାସୀ ନଳା, କେନ୍ଦରାପାଟିଆ ନଳା, ଜଗର ଜୋର, ମଣ୍ଡା ଜୋର, ବଡିଘର ଗଳିଆ, ରାମଚଣ୍ଡୀ ଗଳିଆ, ବାବର ଗଳିଆ ଭଳି ଅନେକ ଉପନଦୀ (ଜୋର/ଗଳିଆ) ପ୍ରବାହିତ ହୋଇ ଜିଲ୍ଲାବାସୀଙ୍କୁ ବର୍ଷତମାମ୍ ଜଳ ପରଷିଥା'ନ୍ତି ।

ବ୍ରାହ୍ମଣୀ ନଦୀ ରାଉରକେଲା, ଅନୁଗୁଳ, ଢେଙ୍କାନାଳ, ଯାଜପୁର ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଇନ୍ଦୁପୁରଠାରେ କେନ୍ଦ୍ରାପଡ଼ା ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ଏଠାରୁ ବ୍ରାହ୍ମଣୀ ପୂର୍ବ ଦିଗକୁ ଗତିକରି ରାଜନଗର ତହସିଲର ନୂଆଗାଁଠାରେ ଦୁଇଟି ଶାଖାରେ ବିଭକ୍ତ ହୋଇ ଗୋଟିଏ ସ୍ରୋତ ମାୟାପୁରା ମୁହାଁଣରେ ବଙ୍ଗୋପସାଗରରେ ମିଳିତ ହୋଇଛି । ବ୍ରାହ୍ମଣୀର ଅନ୍ୟ ସ୍ରୋତଟି ବୈତରଣୀ ନଦୀ ସହିତ ନଳିତାପାଟିଆଠାରେ ମିଳିତ ହୋଇ ଧାମରା ମୁହାଁଣରେ ବଙ୍ଗୋପ ସାଗରରେ ମିଳିତ ହୋଇଛନ୍ତି । ମାୟାପୁରା ମୁହାଁଣରେ ବାଲିଚଡ଼ା ସୃଷ୍ଟି ହେବା କାରଣରୁ ଏହି ମୁହାଁଣଟି ଦେଇ ନୌ ଚଳାଚଳ ସଂଭବ ହୋଇ ନଥାଏ । ମାତ୍ର ଧାମରା ମୁହାଁଣଟି ଗଭୀର ହୋଇଥିବାରୁ ଏହା ରାଜ୍ୟ କାହିଁକି ସମଗ୍ର ଦେଶର ଏକ ଶ୍ରେଷ୍ଠ ନୌବାଣିଜ୍ୟ କେନ୍ଦ୍ରର ମାନ୍ୟତା ଅର୍ଜନ କରିପାରିଛି ।

ସେହିଭଳି ବୈତରଣୀ ନଦୀ କେନ୍ଦୁଝର ଜିଲ୍ଲାର ଗୋନାସିକା ପର୍ବତରୁ ବାହାରି କେନ୍ଦୁଝର, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଜିଲ୍ଲା ଦେଇ ପ୍ରବାହିତ ହୋଇ କେନ୍ଦ୍ରାପଡ଼ା ଜିଲ୍ଲାରେ ପ୍ରବେଶ କରିଛି । ବୈତରଣୀ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ରାଜନଗର ବ୍ଲକ୍ ଦେଇ ପ୍ରବାହିତ ହୋଇଛି ।

ବୈତରଣୀ ଓ ବ୍ରାହ୍ମଣୀ ନଳିତାପାଟିଆଠାରେ ମିଶିଯିବା ପରେ ଏକ ବିଶାଳ ନଦୀରେ ପରିଣତ ହୋଇଛନ୍ତି । ଆଉ ଏହି ନଦୀ କିଛିବାଟ ଆଗକୁ ପ୍ରବାହିତ ହେବାପରେ କାଳିଭଞ୍ଜଡ଼ିଆ ଦ୍ୱୀପ ଏମାନଙ୍କୁ ପୁଣି ଦୁଇ ଭାଗରେ ବିଭକ୍ତ କରିଛି । ଗୋଟିଏ ଭାଗ ଧାମରା ଦେଇ ପ୍ରବାହିତ ହୋଇଥିବାବେଳେ ଅନ୍ୟ ସ୍ରୋତଟି ତାଳଚୁଆ ଦେଇ ପ୍ରବାହିତ ହୋଇ ପୁନର୍ବାର ମିଳିତ ହୋଇ ବଙ୍ଗୋପସାଗରରେ ପଡିଛନ୍ତି ।

କେନ୍ଦ୍ରାପଡ଼ା ଜିଲ୍ଲା ସମୁଦ୍ର ତଟବର୍ତ୍ତୀ ସଂପୂର୍ଣ୍ଣ ସମତଳ ଭୂମି ହୋଇଥିବାରୁ ଉପରମୁଣ୍ଡରୁ କ୍ଷୀଣ ଧାରରେ ବହି ଆସୁଥିବା ନଦୀଗୁଡିକ ଏଠାରେ ଅଧିକ ଗଭୀର, ଖରସ୍ରୋତା, ଜୁଆରିଆ ଏବଂ ବିଶାଳ ରୂପ ଧାରଣ କରି ଅନେକ ଶାଖାପ୍ରଶାଖା ମେଲି ଜିଲ୍ଲାର ଗୋଟିଏ ଅଞ୍ଚଳକୁ ଅନ୍ୟ ଅଞ୍ଚଳ

ସହ ଯୋଗାଯୋଗ ବିଛିନ୍ନ କରିଦେଇଥାଏ । ଏହାବ୍ୟତୀତ ଏଠାରେ ଅନେକ ବିରାଟ ବିରାଟ ପାଟଜମି ରହିଛି । ଅତୀତରେ ଏହି ପାଟଜମିଗୁଡିକ ଏତେ ଗଭୀର ଥିଲା ଯେ, ସେଥିରେ ସ୍ୱଛନ୍ଦରେ ବୋଇତ ଯାତାୟତ କରିପାରୁଥିଲା । ପଟ୍ଟାମୁଣ୍ଡେଇ (ପାଟ ମୁଣ୍ଡ) ସେମିତି ଏକ ପ୍ରାଚୀନ ବନ୍ଦର ଥିଲା ବୋଲି କୁହାଯାଏ । ଅତୀତରେ ପଟ୍ଟାମୁଣ୍ଡେଇ ଏଗ ଗଭୀର ପାଟ ଥିଲା । "ଧାମରା ପରେ କଟକ ଜିଲ୍ଲା ମଧ୍ୟରେ ଚାନ୍ଦବାଲି, ହଂସୁଆ ଓ ପଟ୍ଟାମୁଣ୍ଡେଇ ସ୍ଥାନମାନ ପ୍ରଧାନ ବନ୍ଦର ଥିଲା ।"

**(ତଥ୍ୟ ସହାୟତା : ପ୍ରାଚୀନ ଉତ୍କଳ, ଦ୍ୱିତୀୟ ଭାଗ, ଲେଖକ: ଜଗବନ୍ଧୁ ସିଂହ, ପ୍ରକାଶକ: ଓଡ଼ିଶା ସାହିତ୍ୟ ଏକାଡ଼େମୀ, (୨୦୧୩), ଚତୁର୍ଥ ସଂସ୍କରଣ, ପୃଷ୍ଠା:୧୪୭)**

କେନ୍ଦ୍ରାପଡ଼ା ଅଞ୍ଚଳରେ ଜାଲ ପରି ବିଛେଇ ହୋଇଥିବା ନଦୀ, ଜୋର ଓ ପାଟକୁ ଅତିକ୍ରମ କରିବା ପାଇଁ ଅନ୍ୟ କୌଣସି ବ୍ୟବସ୍ଥା ନଥିବାରୁ ଲୋକେ ଡଙ୍ଗା (ନୌକା) ଦ୍ୱାରା ଗମନାଗମନ କରୁଥିଲେ । ଇଂରେଜ ସରକାର ଅମଳରେ କଟକ-ଚାନ୍ଦବାଲି ମଧ୍ୟରେ କେନ୍ଦ୍ରାପଡ଼ା-ଗୋବରୀ ଓ ଗୋବରୀ ସଂପ୍ରସାରଣ କେନାଲ ଦେଇ ଯାତ୍ରୀବାହୀ ଷ୍ଟିମର ଯା'ଆସ କରୁଥିଲା ଏବଂ ଏହା ବୈତରଣୀରେ ପ୍ରବେଶ କରି ସମୁଦ୍ର ପଥରେ ଧାମରା ମୁହାଣରୁ ହୁଗୁଳି ଓ କଲିକତା ବନ୍ଦର ସହିତ ଯୋଗାଯୋଗ କରୁଥିଲା । ଇଂରେଜ ସରକାର ସମୟରେ କେନ୍ଦ୍ରାପଡ଼ା ସବ୍ ଡିଭିଜନରେ (ଓଡ଼ିଶାର ପ୍ରଥମ ସବ୍‌ଡିଭିଜନ) ୧୯୦୯-୧୯୨୯ ମସିହା ବେଳକୁ ୩୨ଟି ପାୱାର ବୋଟ୍ ବିଭିନ୍ନ ନଦୀ, ନାଳମାନଙ୍କରେ ଚାଲୁଥିଲା । ଆଳି ଓ କନିକା ରାଜପରିବାରର ସଦସ୍ୟମାନେ ନିଜନିଜର ସୌଖୀନ ମୋଟର ଲଞ୍ଚ ଯୋଗେ ଚାନ୍ଦବାଲିରୁ ବୈତରଣୀ, ଶାଳନ୍ଦୀ ଓ ବ୍ରାହ୍ମଣୀ, ଖରସ୍ରୋତା ନଦୀ ଦେଇ କଟକ, କଲିକତା ଯାତ୍ରା କରୁଥିଲେ ।

୧୯୨୦ ମସିହା ବେଳକୁ ବୈତରଣୀ ନଦୀର ଚାନ୍ଦବାଲି ବନ୍ଦରରୁ କଟକ କେନାଲ୍ ମାଧ୍ୟମରେ କଟକରୁ ଚାନ୍ଦବାଲି ମଧ୍ୟରେ ଯାତ୍ରୀ ଓ ମାଲ୍ ପରିବହନ କରାଯାଉଥିଲା । କନିକା, ଆଳି, ପଟ୍ଟାମୁଣ୍ଡାଇ ଅଞ୍ଚଳର ଲୋକେ ବୈତରଣୀ ନଦୀର ଚାନ୍ଦବାଲି ବନ୍ଦରରୁ ଧାମରା ମୁହାଁଣ ଦେଇ କଲିକତାକୁ ଜାହାଜ ଯୋଗେ ଯିବାଆସିବା କରୁଥିଲେ । ଏହି ଜାହାଜ ଧାମରା ମୁହାଁଣରୁ ବାହାରି ବଙ୍ଗୋପସାଗରରେ ପ୍ରବେଶ କରୁଥିଲା ଏବଂ ଏହା ପରେ କଲିକତାର ଗଙ୍ଗା ମୁହାଁଣର ବାବୁଘାଟରେ ଲାଗୁଥିଲା । ସପ୍ତାହକୁ ଥରେ ହିସାବରେ ଚାନ୍ଦବାଲି ବନ୍ଦରରୁ କଲିକତା ଅଭିମୁଖେ ଗୋଟିଏ ଜାହାଜ ଛାଡୁଥିଲା ବୋଲି ପଟ୍ଟାମୁଣ୍ଡାଇ ଅଞ୍ଚଳର ପୁରୁଣାକାଳିଆ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ । ଖ୍ରୀ·ଅ· ୧୮୮୦ରୁ ଖ୍ରୀ·ଅ· ୧୯୩୦ ମସିହା ମଧ୍ୟରେ ଓଡ଼ିଶାରୁ ବିଶେଷକରି ଆଳି, କନିକା, ପଟ୍ଟାମୁଣ୍ଡାଇ ଅଞ୍ଚଳରୁ ଶତାଧିକ ଯାତ୍ରୀ ଚାନ୍ଦବାଲିରୁ କଲିକତା ଯାତ୍ରା କରୁଥିଲେ । ଏମାନେ କଲିକତାକୁ ପାଣିପାଇପ୍, ମଇଦାମିଲ୍, ଚଟକଳରେ କାମ କରିବାକୁ ଯାଉଥିଲେ । କ୍ରମେ ବିଭିନ୍ନ ନଦୀମାନଙ୍କରେ ପୋଲ ନିର୍ମାଣ ହେବା ସାଙ୍ଗକୁ ସଡ଼କ ପଥର ବିକାଶ ହେବାପରେ ଜଳପଥରେ ଯାତାୟତ ହ୍ରାସ ପାଇଲା ।

କଟକ-ଚାନ୍ଦବାଲି ରାଜ୍ୟ ରାଜପଥର ବିକାଶ ଘଟିଲା । ଏହି ରାଜପଥ ମଧ୍ୟରେ ଥିବା ଅନେକ ନଦୀରେ ପୋଲ ନିର୍ମାଣ ହେଲା ।

ପତ୍ରପୁର ବ୍ରାହ୍ମଣୀ ପୋଲ ଆଳି, ପଟ୍ଟାମୁଣ୍ଡାଇ ଓ କନିକାବାସୀଙ୍କ ପାଇଁ ଏକ ଆଶୀର୍ବାଦ ଭଳିମନେହେଲା । କଟକ-ଚାନ୍ଦବାଲି ରାଜରାସ୍ତାର ପତ୍ରପୁରଠାରେ ବ୍ରାହ୍ମଣୀ ନଦୀ ଉପରେ ବହୁ ପ୍ରତୀକ୍ଷିତ ପୋଲ ନିର୍ମାଣ (ଭିତ୍ତିପ୍ରସ୍ତର-୧୯୭୨, ଉଦ୍‌ଘାଟନ-୧୯୮୫) ହେଲା । ଏହାପରେ ହଂସୁଆ ନଦୀ ଉପରେ ଗୋପାଳପୁରଠାରେ ହଂସୁଆ ସେତୁ (ଭିତ୍ତିପ୍ରସ୍ତର-୧୯୮୪, ଉଦ୍‌ଘାଟନ-୧୯୯୩) ହେଲା । ଗୋବରୀ ନଦୀ ଉପରେ ଗଣ୍ଡାକିଆଠାରେ ଗୋବରୀ ସେତୁ (ଶୁଭାରଂଭ-୧୯୯୬, ଉଦ୍‌ଘାଟନ-୧୯୯୮) ନିର୍ମାଣ ହେଲା । ସେହିଭଳି ଚାନ୍ଦବାଲି-କନିକା ମଧ୍ୟରେ ବୈତରଣୀ ସେତୁ ନିର୍ମାଣ (ଉଦ୍‌ଘାଟନ-୨୦୦୮) ହେଲା । ଆଳି-କନିକା ମଧ୍ୟରେ ଖରସ୍ରୋତା ସେତୁ ନିର୍ମାଣ ହେଲା । ଏସବୁ ପୋଲ ନିର୍ମାଣ ହୋଇଯିବା ପରେ ଚାନ୍ଦବାଲିରୁ ଭାୟା କନିକା ଦେଇ ସିଧାସଳଖ କଟକକୁ ବାଟ ଫିଟିଗଲା ।

**[ତଥ୍ୟ ସହାୟତା : ପ୍ରତାପ କୁମାର ରାୟ, କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ, ପ୍ରଥମ ଭାଗ, ଅରତପଲ୍ଲୀ, କେନ୍ଦ୍ରାପଡ଼ା, (୨୦୦୯)]**

## ବୈତରଣୀ ତ୍ରିକୋଣଭୂମିରେ ଗଢି ଉଠିଥିବା ପୁରାତନ କନିକା ରାଜ୍ୟ: ଅନ୍ୟ ଏକ ପ୍ରାଚୀନ ନଗର ସଭ୍ୟତାର କାହାଣୀ

*(The ancient Kanika kingdom in the delta of river Baitaranee)*

ବୈତରଣୀ ନଦୀ ଉପତ୍ୟକା ଅଞ୍ଚଳରେ ଅନେକ ରାଜ୍ୟ, ରାଜଧାନୀ ଓ ରାଜଦୁର୍ଗ ଗଢି ଉଠିଥିବା ନେଇ ପୂର୍ବରୁ ଉଲ୍ଲେଖ କରାଯାଇଛି । କେନ୍ଦୁଝର ଏବଂ ମୟୂରଭଞ୍ଜର ଭଞ୍ଜ ରାଜବଂଶଠାରୁ ଆରଂଭ କରି ଯାଜପୁରର ଭୌମକର ଏବଂ ସୋମବଂଶୀୟମାନେ ବୈତରଣୀ ନଦୀ ଉପତ୍ୟକାକୁ ହିଁ ସେମାନଙ୍କର ରାଜ୍ୟର ରାଜଧାନୀ ଭାବେ ବାଛିଥିଲେ । ବହୁ ପ୍ରାଚୀନ କାଳରୁ ଆଧୁନିକ ମୟୂରଭଞ୍ଜର ଖିଚିଂ (ତତ୍‌କାଳୀନ ଖିଜିଂ କୋଟ୍ଟ), କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ଜ୍ୟୋତିପୁରଗଡ଼ ଏବଂ ମୟୂରଭଞ୍ଜ ରାଜ୍ୟର ପ୍ରଥମ ରାଜଧାନୀ ଆଦିପୁରଗଡ଼ ବୈତରଣୀ କୂଳରେ ଗଢି ଉଠିଥିଲା । କେବଳ ଏତିକି ନୁହେଁ ଭଞ୍ଜ ରାଜାଙ୍କ ଦ୍ୱାରା ବୈତରଣୀ କୂଳରେ ଉଦୟପୁର ଗଡ଼, ବଞ୍ଚୋ ଗଡ଼, ନୟାଗଡ଼, ଚମକପୁରଗଡ଼, ଆନନ୍ଦପୁରଗଡ଼ ଭଳି ଅନେକ ରାଜପ୍ରସାଦ ନିର୍ମାଣ କରାଯାଇଥିଲା ।

ବୈତରଣୀ ନଦୀ କୂଳରେ ଗଢି ଉଠିଥିବା ତତ୍‌କାଳୀନ ଓଡ଼ିଶାର ଅନ୍ୟ ଏକ ଗାରିମାମୟ ରାଜ୍ୟ ହେଉଛି 'କନିକା' । କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍ ଅନ୍ତର୍ଗତ ବୈତରଣୀ ନଦୀ

କୂଳରେ ଥିବା ଲଣ୍ଡନର ବକିଂହାମ୍ ପ୍ୟାଲେସ୍ ଶୈଳୀରେ ନିର୍ମିତ ବିଶାଳ କନିକା ରାଜବାଟୀ ହିଁ ତାର ମୁକ ସାକ୍ଷୀ ।

ବଙ୍ଗୋପସାଗର ତଟବର୍ତ୍ତୀ ବୈତରଣୀ (ଧାମରା, ତାଳଚୁଆ) ନଦୀର ଉଭୟ ପାର୍ଶ୍ୱ ଉତ୍ତରକୁ ଭଦ୍ରକ ଜିଲ୍ଲାର ୧୭୫ ବର୍ଗମାଇଲ୍ ଏବଂ ଦକ୍ଷିଣକୁ କେନ୍ଦ୍ରାପଡ଼ା ଜିଲ୍ଲାର ୨୬୫ ବର୍ଗ ମାଇଲ୍ ସର୍ବମୋଟ ୪୪୦ ବର୍ଗ ମାଇଲ୍ ପରିମିତ ଅଞ୍ଚଳ-କନିକା କିଲ୍ଲା ନାମରେ ପରିଚିତ ଥିଲା ।

*(Source : LSS O' malley, ICS -Bihar and Orissa Dist Gazetteers, Cuttack, 2nd Edition, 1933, p-240)*

ତତ୍କାଳୀନ କନିକା କିଲ୍ଲାଟି ଚାରିଗୋଟି ପ୍ରମୁଖ ଭାଗ ବା ଅଞ୍ଚଳରେ ବିଭକ୍ତ ହୋଇଥିଲା, ଯାହାକୁ ସ୍ଥାନୀୟ ଭାଷାରେ **'ମୁଠା'** (ଇଲାକା) କୁହାଯାଉଥିଲା । କନିକା ରାଜା 'ମୁଠା' ସମେତ ବିଭିନ୍ନ ସ୍ଥାନରେ ଗଡ଼ (ନଅଟି ଗଡ଼) ସ୍ଥାପନ କରିଥିଲେ । କନିକା ରାଜ୍ୟର ପାଞ୍ଚମୁଠା ଇଲାକା (ଚାନ୍ଦବାଲି) ଏବେ ଭଦ୍ରକ ଜିଲ୍ଲାର ଅନ୍ତର୍ଭୁକ୍ତ । ତତ୍କାଳୀନ କନିକା କିଲ୍ଲାର ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣ-ପୂର୍ବ ଦିଗରେ କୁଜଙ୍ଗ କିଲ୍ଲା, ଦକ୍ଷିଣରେ ଉତ୍ତିକଣ ପ୍ରଗଣା (ପଟ୍ଟାମୁଣ୍ଡାଇ), ଦକ୍ଷିଣ-ପଶ୍ଚିମରେ ଆଳି କିଲ୍ଲା, ପଶ୍ଚିମରେ କାଇମା କିଲ୍ଲା, ଉତ୍ତର-ପୂର୍ବରେ ଆଙ୍କୁଡ଼ା ପ୍ରଗଣା ଅବସ୍ଥିତ ।

**(ତଥ୍ୟ : ସରସ୍ୱତୀ ଦାମୋଦର ମିଶ୍ର, ଭଞ୍ଜ କନିକା, କାଶୀନାଥ ପ୍ରେସ୍, କଟକ, ୧୯୫୨, ପୃଷ୍ଠା-୩)**

କନିକାର ସୀମାରେ ବୈତରଣୀ ନଦୀ ବ୍ୟତୀତ ବ୍ରାହ୍ମଣୀ, ଖରସ୍ରୋତା, ହଂସୁଆ ଭଳି ବଡ଼ବଡ଼ ଜୁଆରିଆ ନଦୀ ଏବଂ ସେମାନଙ୍କର ବହୁ ଶାଖା, ଉପଶାଖା ନଦୀ (ଶାଗୁଣାଚେର ଯୋର, ଅଖୁଡିଆ ଯୋର, ଧାଣ୍ଡୁଆ ଯୋର ଆଦି) ଅବସ୍ଥିତ ।

ଭଞ୍ଜ ବଂଶୀ ରାଜା ଜଗଦୀଶ୍ୱର ଭଞ୍ଜ ବା ଭୁଜବଳ ଭଞ୍ଜ ହେଉଛନ୍ତି କନିକାର ପ୍ରଥମ ରାଜା । ଭଞ୍ଜ ରାଜବଂଶୀଙ୍କ ଶାସନ ପୂର୍ବରୁ ବୈତରଣୀ ଓ ବ୍ରାହ୍ମଣୀ ନଦୀ ଉପତ୍ୟକାର ଧାମରା ମୁହାଁଣରେ ଅବସ୍ଥିତ ତ୍ରିକୋଣଭୂମି ଅଞ୍ଚଳଟି (ପରବର୍ତ୍ତୀ କାଳରେ କନିକା ରାଜ୍ୟ ନାମରେ ଖ୍ୟାତ) ତତ୍କାଳୀନ ଜଣେ ବଣିକ ମୁଖିଆ ନରେନ୍ଦ୍ର ସୌଦାଗରଙ୍କ ଅଧୀନସ୍ଥ ଥିଲା । ଏଠାରେ ବହୁ ସଂଖ୍ୟାରେ ସୌଦାଗର (ସାଧବ)ମାନେ ବସବାସ କରିବା ସହିତ ଧାମରା ମୁହାଁଣ ଦେଇ ଇଣ୍ଡୋନେସିଆର ଜାଭା, ବାଲି, ସୁମାତ୍ରା, ସିଂହଳ (ଶ୍ରୀଲଙ୍କା), ଥାଇଲାଣ୍ଡ (ଶ୍ୟାମ ଦେଶ), ବୋର୍ଣ୍ଣିଓ, ରେଙ୍ଗୁନ୍ ଏବଂ ଭାରତୀୟ ଉପକୂଳବର୍ତ୍ତୀ ଅଞ୍ଚଳ ସହିତ ବାଣିଜ୍ୟ କାରବାର କରିଆସୁଥିଲେ । ଏ ଅଞ୍ଚଳରେ ଅନେକ ପୋତାଶ୍ରୟ ଥିଲା ।

**(ତଥ୍ୟ : ସରସ୍ୱତୀ ଦାମୋଦର ମିଶ୍ର, ଭଞ୍ଜ କନିକା, କାଶୀନାଥ ପ୍ରେସ୍, କଟକ, ୧୯୫୨, ପୃଷ୍ଠା-୧୩)**

ନରେନ୍ଦ୍ର ସୌଦାଗରଙ୍କର କୌଣସି ସନ୍ତାନ ନଥିଲେ । କୁଜଙ୍ଗ ରାଜାଙ୍କ ପ୍ରଥମ ରାଣୀଙ୍କ କନ୍ୟା 'କନିକା' ନରେନ୍ଦ୍ର ସୌଦାଗରଙ୍କ ପାଳିତା କନ୍ୟା ଥିଲେ । (କୁଜଙ୍ଗ ରାଜାଙ୍କ କନ୍ୟା 'କନିକା' କିଭଳି ନରେନ୍ଦ୍ର ସୌଦାଗରଙ୍କ କନ୍ୟା ପାଲଟିଲେ ଏହାକୁ ନେଇ ଏବେ ବି କନିକା ଅଞ୍ଚଳରେ ଅନେକ ରୋମାଞ୍ଚକର କାହାଣୀ ଓ କିମ୍ବଦନ୍ତୀମାନ ପ୍ରଚଳିତ ଅଛି, ତାହାର ବର୍ଣ୍ଣନା ଏଠାରେ ନିଷ୍ପ୍ରୟୋଜନ) ।

କୁଜଙ୍ଗ ରାଜପରିବାରର ଭୀଷଣ ଗୃହ ବିବାଦ ଓ ପାରିବାରିକ ଷଡ଼ଯନ୍ତ୍ର କାରଣରୁ ଶିଶୁ କନ୍ୟା 'କନିକା'ର ଜୀବନ ପ୍ରତି ବିପଦ ଥିବା ଜାଣିପାରି ରାଜପରିବାରର ଜନୈକ ଧାଈ (ବୃଦ୍ଧା ମହିଳା) ଶିଶୁ କନ୍ୟାକୁ ଧରି ବୈତରଣୀ ଉପତ୍ୟକା ତଥା ଧାମରା ମୁହାଁଣର ତ୍ରିକୋଣଭୂମି ଅଞ୍ଚଳରେ ବାସ କରୁଥିବା ଏହି ନରେନ୍ଦ୍ର ସୌଦାଗରଙ୍କ ନିକଟକୁ ଚାଲି ଆସିଥିଲେ ଏବଂ କନ୍ୟାକୁ ନରେନ୍ଦ୍ର ସୌଦାଗରଙ୍କୁ ଅର୍ପଣ କରି ସେ ଫେରି ଯାଇଥିଲେ । ଆଉ ଏହା ପରଠାରୁ କୁଜଙ୍ଗ ରାଜନନ୍ଦିନୀ କନିକା ପାଲଟି ଯାଇଥିଲା ନରେନ୍ଦ୍ର ସୌଦାଗରଙ୍କ ପାଳିତା କନ୍ୟା ଏବଂ ପରବର୍ତ୍ତୀ ସମୟରେ ତାଙ୍କ ନାମାନୁସରେ କନିକା ରାଜ୍ୟର ଅଭ୍ୟୁଦୟ ଘଟିଲା ।

ସଂଯୋଗବଶତଃ, ମୟୂରଭଞ୍ଜର ଭଞ୍ଜ ରାଜବଂଶର କନିଷ୍ଠ ରାଜକୁମାର ଭୁଜବଳ ଭଞ୍ଜ (ଜଗଦୀଶ୍ୱର ଭଞ୍ଜ) ମୟୂରଭଞ୍ଜ ରାଜ୍ୟରୁ ଚାଲିଆସି ନରେନ୍ଦ୍ର ସୌଦାଗରଙ୍କ ପାଖରେ ଅବସ୍ଥାନ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲେ । ରାଜକୁମାର ଭୁଜବଳ ଭଞ୍ଜ ଏବଂ କୁଜଙ୍ଗ ରାଜନନ୍ଦିନୀ ତଥା ନରେନ୍ଦ୍ର ସୌଦାଗରଙ୍କ ପାଳିତା କନ୍ୟା 'କନିକା'ଙ୍କ ମଧ୍ୟରେ ବିବାହ ଅନୁଷ୍ଠିତ ହେଲା । ଏହାପରେ ଭୁଜବଳ ଭଞ୍ଜ ନିଜକୁ କନିକା ରାଜ୍ୟର ପ୍ରଥମ ରାଜା ଭାବେ ଘୋଷଣା କରିଥିଲେ ଏବଂ କନିକାକୁ ପ୍ରଥମେ ଅକ୍ତିଆର କରିବା ପରେ ଏହା ସଂଲଗ୍ନ ଅନ୍ୟାନ୍ୟ ଅଞ୍ଚଳକୁ ନିଜ କବ୍‌ଜାକୁ ଆଣିଥିଲେ । ରାଜା ଭୁଜବଳ ପ୍ରଥମେ ଧାମରା ନିକଟସ୍ଥ ନରେନ୍ଦ୍ରପୁରରେ ନିଜର ଉଆସ ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ଭିତରକନିକାରେ ଉଆସ ନିର୍ମାଣ କରିଥିଲେ । ଏହାପରେ ରିଘାଗଡ଼ର କୁଂଭାର ରାଜାଙ୍କୁ ପରାସ୍ତ କରି ରିଘାଗଡ଼କୁ କନିକାର ନୂତନ ରାଜଧାନୀରେ ପରିଣତ କଲେ । ସୂଚନାଯୋଗ୍ୟ, କନିକା ରାଜ୍ୟର ଏହି ରିଘାଗଡ଼ ହିଁ ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ ଖୁଦୁରୁକୁଣୀ ଓଷାର ନାୟିକା 'ତଅପୋଇ' ଏବଂ ଏହା ସନ୍ନିକଟ ବଙ୍ଗୋପସାଗର କୂଳରେ ଅବସ୍ଥିତ ସାତଭାୟା ହିଁ ସାତ ସାଧବଙ୍କ ଗାଁ ବୋଲି ଇତିହାସରେ ଉଲ୍ଲେଖ ରହିଛି । ପୁଣି ମଧ୍ୟ ରାଜା ଭୁଜବଳ କେରଡ଼ାଗଡ଼, ଭିତରଗଡ଼, ବାହାରଗଡ଼ ଆଦି ୯ଟି ଗଡ଼ ଦଖଲ କରି କନିକା ରାଜ୍ୟର କଳେବର ବୃଦ୍ଧି କରିପାରିଥିଲେ ।

କନିକା ଇତିହାସ ଅନୁଯାୟୀ, କୁଜଙ୍ଗ ରାଜାଙ୍କ ପ୍ରଥମ ରାଣୀଙ୍କର କୌଣସି ସନ୍ତାନସନ୍ତତି ନଥିଲେ । ରାଣୀ ସ୍ୱପ୍ନରେ ମହାଦେବଙ୍କ ଅନ୍ନ କଣିକା ସେବନ କରି ଯେଉଁ କନ୍ୟାଟିକୁ ଜନ୍ମ ଦେଇଥିଲେ

ତାଙ୍କର ନାମ ଥିଲା 'କନିକା' ('କଣିକା'ର ଅପଭ୍ରଂଶ) । ମୟୂରଭଞ୍ଜର କନିଷ୍ଠ ରାଜପୁତ୍ର ଜଗଦୀଶ୍ୱର ଭଞ୍ଜ (ଭୁଜବଳ ଭଞ୍ଜ) କୁଜଙ୍ଗର ରାଜକନ୍ୟା କନିକାଙ୍କୁ ବିବାହ କରି ନିଜ ରାଜ୍ୟର ନାମ ଦେଲେ 'କନିକା' । ରାଣୀ କନିକା ପୁରୀ ଶ୍ରୀମନ୍ଦିରରେ ଯେଉଁ ଖେଚେଡ଼ି ଅନ୍ନ ଭୋଗ ଖଞ୍ଜି ଦେଇଥିଲେ, ରାଣୀଙ୍କ ନାମାନୁସାରେ ଏହାର ନାମ 'କାନିକା' ହୋଇଛି ବୋଲି କୁହାଯାଏ ।

**(ତଥ୍ୟ : ପ୍ରତାପ ରାୟ, କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ, ପ୍ରଥମ ଭାଗ, ପୃଷ୍ଠା-୫)**

କନିକା ରାଜ୍ୟ (କିଲ୍ଲା)ଟି ବଙ୍ଗୋପସାଗର କୂଳର ଧାମରା ଉପତ୍ୟକାରେ ମୋଟ ୭୦୮ ବର୍ଗକିଲୋମିଟର ବ୍ୟାପୀ ବିସ୍ତୃତ ଥିଲା ଏବଂ ଏହା ତତ୍‌କାଳୀନ କଟକ ଜିଲ୍ଲାର ସର୍ବବୃହତ୍ ରାଜସ୍ୱ ଇଷ୍ଟେଟ୍ ଥିଲା ।

*(Source : LSS O' malley, ICS -Bihar and Orissa Dist Gazetteers, Cuttack, 2nd Edition, 1933, p-246)*

କନିକାର ପ୍ରାଚୀନ ନୌବାଣିଜ୍ୟ ପରଂପରା ପ୍ରାଚୀନ ଓଡ଼ିଶାର ଏକ ଗୌରବମୟ ଇତିହାସ ବହନ କରିପାରିଛି । ଦିନେ କନିକା ରାଜ୍ୟ ଉତ୍କଳୀୟ ନୌବାଣିଜ୍ୟ ପରଂପରାର ଏକ ପ୍ରମୁଖ ପେଣ୍ଠସ୍ଥଳ ଥିଲା ଏବଂ ବୈତରଣୀ ନଦୀର ଚାନ୍ଦବାଲି ଓ ଧାମରା ମୁହାଁଣ ଦେଇ କନିକାର ସାଧବମାନେ ଦରିଆପାରି ବାଣିଜ୍ୟ କାରବାରରେ ଲିପ୍ତ ଥିଲେ ।

ଏକଦା କନିକା ରାଜ୍ୟର ସୀମା ବଙ୍ଗୋପସାଗର କୂଳେକୂଳେ ତତ୍କାଳୀନ ବାଲେଶ୍ୱରର ତାମ୍ରଲିପ୍ତ (ଆଧୁନିକ ତମଲୁକ୍, ଅଧୁନା ପଶ୍ଚିମବଙ୍ଗରେ ଅବସ୍ଥିତ) ବନ୍ଦରଠାରୁ ଆରଂଭ କରି ଜମ୍ବୁଦ୍ୱୀପ (ବର୍ତ୍ତମାନ କେନ୍ଦ୍ରାପଡ଼ା ଜିଲ୍ଲା ମହାକାଳପଡ଼ା ବ୍ଲକର 'ଫଲ୍‌ସ ପଏଣ୍ଟ' ବନ୍ଦର) ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା ଏବଂ ବୈତରଣୀର ଧାମରା ମୁହାଁଣ ଅନ୍ତର୍ଗତ ତ୍ରିକୋଣ ଭୂମି ଅଞ୍ଚଳ ହିଁ କନିକା ରାଜ୍ୟ ଶାସନର କେନ୍ଦ୍ରସ୍ଥଳ ଥିଲା । ନବମ ଶତାବ୍ଦୀରୁ ଆରଂଭ ହୋଇ ଉନ୍ନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଧାମରା ମୁହାଁଣଟି କନିକା ରାଜ୍ୟର ସାଧବ (ବଣିକ)ମାନଙ୍କର ନୌବାଣିଜ୍ୟ ପରଂପରାର ପେଣ୍ଠସ୍ଥଳ ଥିଲା । ଦ୍ୱାଦଶ ଶତାବ୍ଦୀରେ ଭଞ୍ଜରାଜା ଭୁଜବଳ ଭଞ୍ଜ କନିକାର ରାଜା ହେବା ପୂର୍ବରୁ ଏ ଅଞ୍ଚଳରେ ମୁଖ୍ୟତଃ ବଣିକ (ସାଧବ/ସୌଦାଗର) ସଂପ୍ରଦାୟର ଲୋକମାନେ ବସବାସ କରୁଥିଲେ ଏବଂ ଏହା ଏକ ବାଣିଜ୍ୟିକ କେନ୍ଦ୍ର ଭାବେ ପ୍ରତିଷ୍ଠାଲାଭ କରିଥିଲା ।

ଦ୍ୱାଦଶ ଶତାବ୍ଦୀରେ କନିକାର ପ୍ରଥମ ରାଜା ଭୁଜବଳ ଭଞ୍ଜ କନିକା ରାଜ୍ୟ ସୀମାନ୍ତ ୬ଟି ମୁକା ବା ଛ'ମୁକା (ବଜ୍ରଗଡ଼, ଅନନ୍ତପୁର, ଜୟନଗର, ତ୍ରୈଲୋକ୍ୟପୁର, ବାଦରଜା, ବର୍ତ୍ତନୀ) ଦଖଲ କରି ନିଜ ରାଜ୍ୟରେ ମିଶାଇ ଦେଲେ । ଏହାପରେ ରାଜା ଭୁଜବଳ କନିକାର ସୀମାନ୍ତ ୯ଟି ଗଡ଼ ଯଥା- ୧.କେରଡ଼ାଗଡ଼, ୨.ବାହାରଗଡ଼, ୩.ଭିତରଗଡ଼, ୪.ନରଣଗଡ଼, ୫.ଧୋବେଇଗଡ଼, ୬.ଚଂପାଗଡ଼, ୭.ନ'ଗଡ଼, ୮.ରାଜଗଡ଼, ୯.ରିଘାଗଡ଼ ଆଦିକୁ ମିଶ୍ରଣ କରି ଏକ ବିଶାଳ କନିକା ରାଜ୍ୟ ପ୍ରତିଷ୍ଠା

କରିବାରେ ସଫଳ ହୋଇଥିଲେ । ଇତିହାସକୁ ପର୍ଯ୍ୟବେକ୍ଷଣ କଲେ କନିକା ରାଜା ତ୍ରିବିକ୍ରମ ଭଞ୍ଜଙ୍କ ସହିତ ତତ୍କାଳୀନ ମୋଗଲ ସମ୍ରାଟ ଆକବରଙ୍କ ବନ୍ଧୁତା ଥିଲା ନିବିଡ଼ । ସେହିଭଳି କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ଏବଂ ଇଂରେଜମାନଙ୍କ ମଧ୍ୟରେ ଥିବା ଉତ୍ତମ ସଂପର୍କ କିଏ ନ ଜାଣେ? କନିକା ରାଜାଙ୍କର ମୋଗଲ ଏବଂ ଇଂରେଜମାନଙ୍କ ଭଳି ବିଦେଶୀ ଜାତି ସହିତ ଥିବା ଉତ୍ତମ ସଂପର୍କ ପରୋକ୍ଷରେ କନିକାର ବିକାଶ ପାଇଁ ସହାୟକ ହୋଇପାରିଥିଲା ।

**(ତଥ୍ୟ : 'କନିକା', ଶୁଭ୍ରାଂଶୁ ଭୂଷଣ ସୂତାର, ମଲ୍ଲୀଘର, ରାଜକନିକା, ୨୦୦୦, ପୃଷ୍ଠା-୨୨, ୨୮ ଓ ୩୬)**

ଅତୀତରେ କନିକା ରାଜ୍ୟର ସାଧବମାନେ ବୈତରଣୀ ନଦୀର ଧାମରା ମୁହାଁଣ ଦେଇ ବୋଇତ ମାଧ୍ୟମରେ ଦୂର ବିଦେଶକୁ ଯାଇ ବାଣିଜ୍ୟ ବ୍ୟବସାୟ କରି ନିଜ ରାଜ୍ୟର ରାଜକୋଷକୁ ଅଧିକ ସମୃଦ୍ଧ କରିପାରିଥିଲା । କନିକା ରାଜ୍ୟର ଏହି ନୌବାଣିଜ୍ୟ ପରଂପରା କନିକା ରାଜ୍ୟ ଗଠନର ବହୁ ପୂର୍ବରୁ ସମୃଦ୍ଧ ଥିଲା । କନିକାରେ ଭଞ୍ଜ ରାଜବଂଶୀମାନେ ଶାସନ କରିବା ପୂର୍ବରୁ ଏଠାରେ ବିତ୍ତଶାଳି ବଣିକ ଜାତି (ସୌଦାଗର)ମାନେ ଦେଶବିଦେଶ ସହିତ ବାଣିଜ୍ୟ କାରବାର କରି ବହୁ ଧନ ସଂପଦର ଅଧିକାରୀ ପାଲଟିଥିଲେ । ଅଷ୍ଟମ-ନବମ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କନିକା ଅଞ୍ଚଳରେ ବୋଇତ ବା ପାଲଟଣା ଜାହାଜ ଦ୍ୱାରା ବାଣିଜ୍ୟ କାରବାର ସହିତ ଜଳପଥରେ ଯାତ୍ରୀ ପରିବହନ ହେଉଥିଲା । ବୈତରଣୀ ନଦୀର ଚାନ୍ଦବାଲି ଓ ଧାମରା ବନ୍ଦର ତତ୍କାଳୀନ କନିକା କାହିଁକି ସମଗ୍ର ଉପକୂଳ ଓଡ଼ିଶାବାସୀଙ୍କ ପ୍ରଧାନ ଯାତାୟତ ପଥ ଥିଲା । ଏମିତିକି ୧୮୧୩ ମସିହା ବେଳକୁ ମଧ୍ୟ କନିକାର ସାଧବ (ବଣିକ)ମାନେ ବୋଇତ ମାଧ୍ୟମରେ ବିଦେଶକୁ ଯଥେଷ୍ଟ ପରିମାଣରେ ଚାଉଳ ରପ୍ତାନୀ କରୁଥିଲେ ।

ଅତୀତରେ ଓଡ୍ର ବଣିକମାନେ ଜଳଯାତ୍ରାରେ ପ୍ରବୀଣ ଥିଲେ । ଏମାନେ ବିଦେଶୀମାନଙ୍କୁ ରୋକିବା ନିମନ୍ତେ ସମୁଦ୍ର ପଥକୁ ଅବରୋଧ କରି ରଖୁଥିଲେ । ଓଡ୍ରମାନେ ଓଡ଼ିଶାର ସମୁଦ୍ର ଉପକୂଳରୁ ଗୋଲାର, ମରିଚପୁର, ହରିଶପୁର, ବିଶୁନ୍‌ପୁର, କୁଜଙ୍ଗ, ପାରାଦେଇପୁର(ପାରାଦ୍ୱୀପ), କନିକା (ଧାମରା ମୁହାଁଣ), ଆଦି ପ୍ରମୁଖ ୮ଟି ରାଜ୍ୟରେ ଥିବା ସମୁଦ୍ର ମୁହାଁଣରେ ବିଦେଶୀମାନଙ୍କୁ ଦେଶ ମଧ୍ୟକୁ ପ୍ରବେଶ କରାଇ ଦେଉନଥିଲେ । କନିକା ରାଜାଙ୍କ ଦ୍ୱାରା ଧାମରା ମୁହାଁଣରେ ସଶସ୍ତ୍ର ଜଳଦସ୍ୟୁ ଓ ନୌ-ସୈନ୍ୟବାହିନୀ ନିୟୋଜିତ କରାଯାଇଥିଲା ।

**(ତଥ୍ୟ : ରାଧାଚରଣ ପଣ୍ଡା, ଉତ୍କଳ ସାହିତ୍ୟ, ପୃଷ୍ଠା-୩୪୯)**

ପୂର୍ବେ ବୈତରଣୀ ନଦୀର ଚାନ୍ଦବାଲି ଏବଂ ଧାମରା ମୁହାଁଣ ଦେଇ କନିକାବାସୀ ବାହାର ଦେଶକୁ ଜଳପଥରେ ଯାତ୍ରା କରୁଥିଲେ । ଏମିତିକି ଇଂରେଜ ଶାସନ କାଳରେ ଚାନ୍ଦବାଲି ବନ୍ଦର ଓ ଧାମରା ମୁହାଁଣ ଦେଇ କନିକା ଅଞ୍ଚଳର ବ୍ୟବସାୟୀ ଓ ସାଧାରଣ ଯାତ୍ରୀମାନେ ପାଲଟଣା ଜାହାଜରେ

କଲିକତା ଓ ସିଂହଳ ଆଦି ଦେଶକୁ ଯାଉଥିଲେ ।

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶାର ଖୋର୍ଦ୍ଧାଗଡ଼ ଅକ୍ତିଆର କଲେ । ମାତ୍ର, କନିକା ଓ କୁଜଙ୍ଗ ରାଜ୍ୟ ଇଂରେଜମାନଙ୍କ ପ୍ରଭୁତ୍ୱ ସ୍ୱୀକାର କରି ନଥିଲେ । ଏହା ଫଳରେ ଇଂରେଜମାନେ କନିକା ଉପରେ ଆକ୍ରମଣ କରିଥିଲେ । ଇଂରେଜ ସୈନ୍ୟମାନେ ପ୍ରଥମେ ଧାମରା ମୁହାଁଣ ଦେଇ କନିକା ରାଜ୍ୟକୁ ପଶିଥିଲେ । ୧୮୦୫ ମସିହାରେ ଇଂରେଜ ଶାସକ କର୍ଣ୍ଣେଲ୍ ହାର୍କୋଟ୍ କନିକା-କୁଜଙ୍ଗ ବିଦ୍ରୋହକୁ ଦମନ କରିବା ପାଇଁ ଧାମରା ବନ୍ଦରରୁ ଏକ ସୈନ୍ୟ ଦଳ ସହ ବୈତରଣୀ ନଦୀ ଦେଇ ପ୍ରଥମେ କନିକାରେ ଏବଂ ଧାମରାରୁ ବ୍ରାହ୍ମଣୀ ନଦୀ ଦେଇ ପଟ୍ଟାମୁଣ୍ଡାଇ ଆସିବା ପରେ ସେଠାରୁ ସାନବ୍ରାହ୍ମଣୀ ନଦୀ ପଥରେ କୁଜଙ୍ଗ ଯାଇଥିଲେ ।

*(Source : O' malley ICS LSS -Bihar and Orissa Dist Gazetteers, Cuttack, 2nd Edition, 1933, p-38)*

ଇଂରେଜମାନଙ୍କଠାରୁ ତତ୍କାଳୀନ କନିକା ରାଜା ବଳଭଦ୍ର ଭଞ୍ଜ ପରାସ୍ତ ହେବା ପରେ ଉଭୟ କନିକା ଓ ଇଂରେଜମାନଙ୍କ ମଧ୍ୟରେ ସନ୍ଧି ସ୍ୱାକ୍ଷର ହୋଇଥିଲା ।

ଭଞ୍ଜ ରାଜବଂଶର ପ୍ରଥମ ରାଜା ୧· ଭୁଜବଳ ଭଞ୍ଜଙ୍କଠାରୁ ଆରଂଭ କରି

୨· ବିଶ୍ୱନାଥ ଭଞ୍ଜ
୩· ତ୍ରିଲୋଚନ ଭଞ୍ଜ
୪· ଗୋପୀନାଥ ଭଞ୍ଜ
୫· ପରମାନନ୍ଦ ଭଞ୍ଜ
୬· ଦିବ୍ୟସିଂ ଭଞ୍ଜ
୭· ନରସିଂହ ଭଞ୍ଜ
୮· ତ୍ରିବିକ୍ରମ ଭଞ୍ଜ
୯· ଗଙ୍ଗାଧର ଭଞ୍ଜ
୧୦· ଗୋପାଳ ଭଞ୍ଜ
୧୧· ବାସୁଦେବ ଭଞ୍ଜ
୧୨· ରଘୁନାଥ ଭଞ୍ଜ
୧୩· ଲକ୍ଷ୍ମଣ ଭଞ୍ଜ
୧୪· ବୈରାଗୀ ଭଞ୍ଜ
୧୫· ତ୍ରିଲୋଚନ ଭଞ୍ଜ
୧୬· ଗୋପୀନାଥ ଭଞ୍ଜ

୧୭· ପରମାନନ୍ଦ ଭଞ୍ଜ
୧୮· ସବିସିଂ ଭଞ୍ଜ
୧୯· ବାସୁଦେବ ଭଞ୍ଜ
୨୦· ଦିବ୍ୟସିଂ ଭଞ୍ଜ
୨୧· ନରସିଂହ ଭଞ୍ଜ
୨୨· ତ୍ରିବିକ୍ରମ ଭଞ୍ଜ
୨୩· ଗଦାଧର ଭଞ୍ଜ
୨୪· ଗୋପୀନାଥ ଭଞ୍ଜ
୨୫· ଦାଶରଥୀ ଭଞ୍ଜ
୨୬· ଗୋପାଳ ଭଞ୍ଜ
୨୭· ବୈରାଗୀ ଭଞ୍ଜ
୨୮ ବଳଭଦ୍ର ଭଞ୍ଜ
୨୯· ଜଗନ୍ନାଥ ଭଞ୍ଜ
୩୦· ହରିହର ଭଞ୍ଜ
୩୧· ବିନାୟକ ଭଞ୍ଜ
୩୨· ତ୍ରିବିକ୍ରମ ଭଞ୍ଜ
୩୩· ପଦ୍ମନାଭ ଭଞ୍ଜ
**୩୪. ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ**
**୩୫. ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ**

**୩୬. ରବୀନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ** ପର୍ଯ୍ୟନ୍ତ ଦୀର୍ଘ ଆଠ ଶହ ବର୍ଷର ଏକ ଲମ୍ବା ଶାସନ କାଳ ମଧ୍ୟରେ କନିକା ରାଜ୍ୟ ପ୍ରତି ବହୁ ବାଧାବିଘ୍ନ ଆସିଛି । ତେବେ କନିକାର ଭଞ୍ଜବଂଶୀ ରାଜାମାନେ ଏହାକୁ ଭ୍ରୂକ୍ଷେପ ନ କରି ନିଜ ରାଜ୍ୟକୁ ଓଡ଼ିଶାରେ ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ଗଢି ତୋଳିପାରିଛନ୍ତି । ଏହି ଭଞ୍ଜ ବଂଶୀ ରାଜାମାନଙ୍କର ୩୩ତମ ପୁରୁଷ ପର୍ଯ୍ୟନ୍ତ ଠିକଠାକ୍ ଚାଲିଥିଲା । ସୌଭାଗ୍ୟକ୍ରମେ ଏହି ୩୩ ଜଣ ରାଜାଙ୍କର ଏକମାତ୍ର ଜ୍ୟେଷ୍ଠ ପୁତ୍ର ଜନ୍ମ ଲାଭ କରିଥିବାରୁ ରାଜଶାସନରେ କୌଣସି ବିଭ୍ରାଟ ଉପୁଜି ନଥିଲା । ତେବେ ୩୩ତମ ରାଜା ଅପୁତ୍ରିକ ପଦ୍ମନାଭ ଭଞ୍ଜ ରିଘାଗଡ଼ରେ ଅବସ୍ଥାନ କରୁଥିବା ସମୟରେ ତାଙ୍କର ପରଲୋକ ହୋଇଯିବା ପରେ ତାଙ୍କର ବିଧବା ପତ୍ନୀ କୃଷ୍ଣପ୍ରିୟା ପାଟମହାଦେଈ ପୋଷ୍ୟ ସନ୍ତାନ ଗ୍ରହଣ କରିଥିଲେ ।

କୃଷ୍ଣପ୍ରିୟା ପାଟମହାଦେଈ ଆଳି ରାଜା ଯଦୁନାଥ ଦେବଙ୍କ ଭଉଣୀ ଥିବାରୁ ତାଙ୍କ ଭାଇ (ଆଳି ରାଜା)ଙ୍କର ମଧ୍ୟମ ପୁତ୍ର ବଂଶୀଧର ଦେବଙ୍କୁ ନିଜର ପୁତ୍ର ରୂପେ ଗ୍ରହଣ କରିଥିଲେ । ତେବେ ଆଳି ରାଜା ପୁରୀ ରାଜାଙ୍କ ଅଂଶ ହୋଇଥିବାରୁ ସେ ଥିଲେ ଦେବଅଂଶୀ । ଏଣୁ ଆଳି ରାଜାଙ୍କର ପରିଚୟ ଅକ୍ଷୁର୍ଣ୍ଣ ରଖିବା ଉଦ୍ଦେଶ୍ୟରେ ବଂଶୀଧରଙ୍କ ନାମ ପରିବର୍ତ୍ତନ କରାଯାଇ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ (କନିକା ରାଜାଙ୍କ ଭଞ୍ଜ ସାଙ୍ଗିଆ ଏବଂ ଆଳି ରାଜାଙ୍କ ଦେଓ ସାଙ୍ଗିଆ) ରଖାଗଲା । ଆଉ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଶାସନ କାଳ (ଖ୍ରୀ.ଅ ୧୯୦୯-ଖ୍ରୀ.ଅ. ୧୯୪୮) ହିଁ କନିକା ଇତିହାସର ସ୍ୱର୍ଣ୍ଣଯୁଗ ବୋଲି ଧରାଯାଇଥାଏ ।

ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ କନିକା ରାଜ୍ୟରେ ଗମନାଗମନ (ଜଳପଥ)ର ବିକାଶ କରିବା ସହିତ ଭିତରକନିକା ଅଭୟାରଣ୍ୟର ବିକାଶ ଓ କନିକାର ଚତୁର୍ପାର୍ଶ୍ୱରେ ଲୁଣାଘେରି ନିର୍ମାଣ କରିଥିଲେ । ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କର ଉଚ୍ଚ ଶିକ୍ଷା ବିଲାତରେ ହୋଇଥିଲା । ସେ ଥିଲେ ଓଡ଼ିଶାର ପ୍ରଥମ ବାରିଷ୍ଟର । ବିଲାତରେ ପାଠ ପଢୁଥିବା ବେଳେ ସେ ବିଲାତର 'ବକିଂହାମ୍ ପ୍ୟାଲେସ' ଦ୍ୱାରା ପ୍ରଭାବିତ ହୋଇ ସେହି ନକ୍ସାରେ କନିକାରେ ଏକ ରାଜପ୍ରାସାଦ ନିର୍ମାଣ କରିଥିଲେ । କନିକାର ଇତିହାସକୁ ଅଧ୍ୟୟନ କଲେ, ଜଣାଯାଏ ମଧୁସୂଦନ ଦାସଙ୍କର କନିକା ରାଜ ପରିବାର ସହିତ ଏକ ମଧୁର ସଂପର୍କ ଥିଲା । ଆଉ ମଧୁସୂଦନ ଦାସ ପ୍ରଥମ ଓଡ଼ିଆ ଭାବେ ଲଣ୍ଡନ ଯାତ୍ରା କରିଥିଲେ । ତାଙ୍କ ସହଯୋଗରେ ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ବିଲାତ ଯାତ୍ରା କରିଥିଲେ ।

ମଧୁସୂଦନ ଦାସ କନିକା ରାଜ୍ୟସ୍ଥିତ ଚାନ୍ଦବାଲି ବନ୍ଦରରୁ ଷ୍ଟିମର ଯୋଗେ ବିଲାତକୁ ଯାତ୍ରା କରୁଥିଲେ । ଯାତ୍ରାକାଳରେ ଅଧିକାଂଶ ସମୟରେ ମଧୁସୂଦନ କନିକା ରାଜ ଅତିଥି ପାଲଟୁଥିଲେ । ଚାନ୍ଦବାଲି ଓ ଧାମରା ବନ୍ଦର ସେତେବେଳେ ଓଡ଼ିଶାର 'ପ୍ରବେଶ ଦ୍ୱାର' *(Gate Way of Odisha)* ଭାବେ ପରିଚିତ ଥିଲା । ଇଂରେଜମାନେ ଧାମରା ଦେଇ ଓଡ଼ିଶାକୁ ପ୍ରବେଶ କରୁଥିଲେ ଏବଂ ଧାମରା ଦେଇ ବିଲାତ ଯାତ୍ରା କରୁଥିଲେ ।

ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ୧୯୦୯ ମସିହାରେ ସିଂହାସନ ଆରୋହଣ କରିଥିଲେ । ୧୯୦୯ ମସିହାଠାରୁ ବ୍ରିଟିଶ୍ ଶାସନର ବାହୁଛାୟା ତଳେ ରହି କନିକା ଏକ ଶ୍ରେଷ୍ଠ ଜମିଦାରୀ ଭାବେ ପ୍ରତିଷ୍ଠା ଲାଭ କରିପାରିଥିଲା । ଅଷ୍ଟିନ୍ ହାବାକ୍ ଭାରତର ବଡ଼ଲାଟ୍ ହେବା ସମୟରେ ବ୍ରିଟିଶ୍ ସରକାରଙ୍କ ସହିତ କନିକା ରାଜାଙ୍କର ନିବିଡ଼ ସଂପର୍କ ସୃଷ୍ଟି ହୋଇଥିଲା । ସେତେବେଳେ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ପି.ଭି. କାଉନସିଲ୍‌ର ଜଣେ ଗୁରୁତ୍ୱପୂର୍ଣ୍ଣ ସଦସ୍ୟ ହେବାର ଗୌରବ ଅର୍ଜନ କରିପାରିଥିଲେ । ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ସମୟରେ ବ୍ରିଟିଶ୍ ସରକାରଙ୍କ ସହିତ କନିକା ରାଜ୍ୟର ସଂପର୍କ ଏତେ ନିବିଡ଼ ଥିଲା, ଏହାର ଫଳସ୍ୱରୂପ ନିଜେ ବଡ଼ଲାଟ୍ କନିକାକୁ ଦୁଇ ଦୁଇଥର ବୁଲି ଆସିଥିଲେ ।

ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ପରେ ତାଙ୍କ ପୁତ୍ର ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ (ଖ୍ରୀ·ଅ· ୧୯୪୮-ଖ୍ରୀ·ଅ· ୧୯୮୨) ସ୍ୱାଧୀନ ଭାରତର ପ୍ରଥମ ରାଜା ଭାବେ କନିକା ରାଜ ସିଂହାସନ ଆରୋହଣ କରିଥିଲେ । ସେ ମଧ୍ୟ ପିତା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଭଳି ବିଚକ୍ଷଣ ରାଜା ଥିଲେ । ୧୯୪୮ ମସିହାରେ ଜମିଦାରୀ ଉଚ୍ଛେଦ ହୋଇଯିବା ପରେ ରାଜାଙ୍କର ପ୍ରାସଙ୍ଗିକତା ହ୍ରାସ ପାଇଗଲା । ସ୍ୱାଧୀନତାର ପରବର୍ତ୍ତୀ କାଳରେ ଶୈଳେନ୍ଦ୍ର ନାରାୟଣ ଭଞ୍ଜ ଦେଓ ଆଳି ବିଧାନସଭା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାକୁ ଯାଇଥିଲେ । ୧୯୫୭ ମସିହାରେ ସେ କଂଗ୍ରେସରେ ଯୋଗଦେଇ ପୂର୍ତ୍ତ ବିଭାଗ ମନ୍ତ୍ରୀ ପଦ ପାଇଥିଲେ । ସେ ମନ୍ତ୍ରୀ ଥିବା ସମୟରେ ଓଡ଼ିଶାର ବନ୍ୟା ନିୟନ୍ତ୍ରଣ, ନଦୀବନ୍ଧ ନିର୍ମାଣ ଆଦି ସୁଦୂରପ୍ରସାରୀ କାର୍ଯ୍ୟକ୍ରମ ହାତକୁ ନେଇ ଓଡ଼ିଶାର ଚରମ ବିକାଶରେ ସହାୟକ ହୋଇପାରିଥିଲେ । ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ପରେ ତାଙ୍କ ପୁତ୍ର ରବୀନ୍ଦ୍ର ନାରାୟଣ ଭଞ୍ଜ ଦେଓ (୧୯୮୨-ଆଜି ଯାଏ) ବର୍ତ୍ତମାନ କନିକାର ରାଜା ଅଛନ୍ତି ।

## ବୈତରଣୀ କୂଳର 'ବକିଂହାମ୍ ପ୍ୟାଲେସ୍'

*(Buckingham Palace of Odisha)*





**କନିକା ରାଜପ୍ରାସାଦ ମଧ୍ୟରେ ଥିବା ସଂଗ୍ରହାଳୟ: ଏଠାରେ ରହିଛି ବିଂଶଶତାବ୍ଦୀର ପ୍ରଥମ ଅର୍ଦ୍ଧରେ କନିକା ରାଜାଙ୍କ ଦ୍ୱାରା ଧରାଯାଇଥିବା ବିଶ୍ୱର ସର୍ବବୃହତ୍ କୁଂଭୀରର ଖପୁରୀ**

କନିକାର ଶାସକମାନେ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଗଡ଼ ବା ନଅର ପ୍ରତିଷ୍ଠା କରିଥିଲେ । କନିକା ରାଜବଂଶର ପ୍ରତିଷ୍ଠାତା ରାଜା ଭୁଜବଳ ଭଞ୍ଜ (ଜଗଦୀଶ୍ୱର ଭଞ୍ଜ) ତାଆଣିଆଅଣ୍ଡା ବା ବିଜୟନଗର ଠାରେ, ରାଜା ବିଶ୍ୱନାଥ ଭଞ୍ଜ ଭିତରକନିକାରେ ଏବଂ ରାଜା ପଦ୍ମନାଭ ଭଞ୍ଜ ଘିଘାଗଡ଼ରେ ନିଜ ନଅର ପ୍ରତିଷ୍ଠା କରିଥିଲେ । ମାତ୍ର କନିକାର ୩୪ତମ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ବିଲାତରେ ବାରିଷ୍ଟର ପଢିବା ଏବଂ ବିଲାତ ଯାତ୍ରା କରିବା ଦ୍ୱାରା ବିଲାତର ବକିଂହାମ୍ ରାଜପ୍ରାସାଦ ଶୈଳୀରେ କନିକାଠାରେ ନିର୍ମାଣ କରିଥିଲେ ଓଡ଼ିଶାର ସବୁଠୁ ଆକର୍ଷଣୀୟ ରାଜପ୍ରାସାଦ । ବ୍ରିଟିଶ୍ ରାଜପ୍ରାସାଦର ନିର୍ମାଣ ଶୈଳୀ ଦ୍ୱାରା ପ୍ରଭାବିତ ହୋଇ ତାହାର ନକ୍ସାରେ ନିଜ ରାଜ୍ୟର ବୈତରଣୀ ନଦୀ ଉପତ୍ୟକାର ବାଲୁକା ଶଯ୍ୟା ଉପରେ କନିକାର ରାଜଧାନୀ ରାଜକନିକାଠାରେ ୧୯୦୯ ମସିହାରେ ଏକ ମନୋରରମ ରାଜପ୍ରାସାଦ ନିର୍ମାଣ କରିଥିଲେ । ଭାରତର ଅଳ୍ପ କେତୋଟି ଆକର୍ଷଣୀୟ ରାଜପ୍ରାସାଦ ମଧ୍ୟରେ କନିକା ରାଜପ୍ରାସାଦକୁ ଗଣାଯାଇଥାଏ ।

ତତ୍କାଳୀନ ଉତ୍କଳ ସାହିତ୍ୟ ସମାଜର ସଂପାଦକ ତଥା କବିବର ରାଧାନାଥ ରାୟଙ୍କ ପୁତ୍ର ଶଶୀଭୂଷଣ ରାୟ ୧୯୧୨ ମସିହା ସେପ୍‌ଟେମ୍ବର ୧୫ ତାରିଖରୁ କିଛି ଦିନ କନିକା ରାଜପ୍ରାସାଦରେ ଅବସ୍ଥାନ କରିଥିଲେ ଏବଂ କନିକା ପରିଭ୍ରମଣ କରିବା ପରେ 'କନିକା ଦର୍ଶନ' ନାମରେ ଏକ ପୁସ୍ତକ

ରଚନା କରିଥିଲେ । 'କନିକା ଦର୍ଶନ'ରେ ସେ ନିଜର ଯେଉଁ ଅନୁଭୂତି ବର୍ଣ୍ଣନା କରିଛନ୍ତି ତାହା ଏହିପରି- "ଏହି ନବ ନିର୍ମିତ ନବରର କାର୍ଯ୍ୟ ସଂପୂର୍ଣ୍ଣ ହୋଇନାହିଁ । ମାତ୍ର ଆଜି ପର୍ଯ୍ୟନ୍ତ ଯାହା ହୋଇଅଛି, ଦେଖିଲେ ଏହାକୁ ଉତ୍କଳର ଶ୍ରେଷ୍ଠତମ ସୌଧ ଆଖ୍ୟା ପ୍ରଦତ୍ତ ହୋଇପାରେ । ରାଜା ମହୋଦୟ ତିନିଥର ବିଲାତ ଯାଇ ସମସ୍ତ ୟୁରୋପ ପରିଭ୍ରମଣ କରି ନିଜର ବହୁଦର୍ଶିତାର ଏହି ପ୍ରକାଣ୍ଡ ପ୍ରାସାଦ ନିର୍ମାଣ କରୁଅଛନ୍ତି । ସୁତରାଂ ରୁଚି, ଗଠନ ପ୍ରଣାଳୀ ଓ ସଜ୍ଜାରେ ଏହା ଯେ ସର୍ବୋତ୍କୃଷ୍ଟ ହେବ ଏଥିରେ ସନ୍ଦେହ କ'ଣ?

ପ୍ରାସାଦଟି ତ୍ରିତଳ, ପ୍ରତ୍ୟେକ ତଳ ହିଁ ଖୁବ୍ ଉଚ୍ଚ, ହର୍ମ୍ୟତଳଗୁଡିକ ମର୍ମର ପ୍ରସ୍ତରରେ ଆଚ୍ଛାଦିତ । ଦ୍ୱାରର କବାଟଗୁଡ଼ିକ ବିଚିତ୍ର ଭୂଷଣ କାଚରେ ଆଚ୍ଛାଦିତ । ପ୍ରତ୍ୟେକ ଗୃହର ସଜ୍ଜା ବିଭିନ୍ନ ପ୍ରଣାଳୀର ଏବଂ ଆଧୁନିକ ରୁଚିର ପରାକାଷ୍ଠା ଘୋଷଣା କରୁଅଛି । ସୌଧଚୂଡ଼ା *(tower)* ବର୍ତ୍ତମାନ ୬୩ ଫୁଟ ଉଚ୍ଚ ହୋଇଅଛି । କିନ୍ତୁ ଏହା ୯୦ ଫୁଟ ଉଚ୍ଚ ପର୍ଯ୍ୟନ୍ତ ଉଠିବ । ଉପରର କାର୍ଯ୍ୟ ଶେଷ ହୋଇନାହିଁ । ଶେଷ ହେବାକୁ ଆହୁରି ଏକବର୍ଷ ଲାଗିବ ।

ଏଠାରେ ଖଣ୍ଡେ ପଥର ନାହିଁ । ସୁତରାଂ ସମସ୍ତ ପଥର ଏଠାରୁ ଶତ ମାଇଲ୍ ଦୂରବର୍ତ୍ତୀ ନରାଜଠାରୁ ଆସି ଏହି ପ୍ରକାଣ୍ଡ ସୌଧ ନିର୍ମିତ ହୋଇଅଛି । ସୁତରାଂ ପରିଶ୍ରମ ଏବଂ ଅର୍ଥବ୍ୟୟ ଅତିରିକ୍ତ ମାତ୍ରାରେ ଆବଶ୍ୟକ ହୋଇଅଛି ।

ସୌଧ ଚୂଡ଼ା ଉପରୁ ବିଶାଳ ଦୃଶ୍ୟ ଦେଖିଲେ ହୃଦୟ ପୁଲକିତ ହୁଏ ଏବଂ ପ୍ରକୃତିର ବିଚିତ୍ର ସୌନ୍ଦର୍ଯ୍ୟ ନିଚୟ ଆସ୍ୱାଦନର ପୂର୍ଣ୍ଣ ସୁଯୋଗ ମିଳେ । ଏହା ଉପରୁ ନୀଳଗିରିର ସ୍ୱର୍ଣ୍ଣଚୂଡ଼ା, ମହିପାଳ, ଦନ୍ତୁର ପର୍ବତସମୂହ, ମୟୂରଭଞ୍ଜର ମେଘାସନ, ଶିମିଳିପାଳ ଗିରିଶ୍ରେଣୀ, କପ୍ତିପଦାର ଶାରୀଶୁଆ, କେନ୍ଦୁଝରର ଅପ୍ରସିଦ୍ଧ ପର୍ବତମାଳା, ସୁକିନ୍ଦାର ଟମ୍କା ପର୍ବତ, ଦର୍ପଣୀର ମହାବିନାୟକ ଏବଂ ଚନ୍ଦନମଞ୍ଜୁଳ ଅଳତିଗିରି ସ୍ପଷ୍ଟ ଦେଖାଯାଏ ।

ନଅରର ଚତୁର୍ଦ୍ଦିଗବେଷ୍ଟିତ ପ୍ରାକାର ବଡ଼ କମ୍ ନୁହେଁ । ସମସ୍ତ ପ୍ରାଚୀରଟି ଦୀର୍ଘରେ ଏକ ମାଇଲ୍ରୁ ବେଶୀ ହେବ । ନଅରକୁ ଘେରି ରହିଥିବା ପ୍ରାଚୀରର ମୁଖ୍ୟ ଫାଟକର କାରୁକାର୍ଯ୍ୟ ଅତି ରମଣୀୟ । ଏହା ମଧ୍ୟରେ ବିସ୍ତୀର୍ଣ୍ଣ ଉଦ୍ୟାନ ଏବଂ ଚାରୋଟି ପୁଷ୍କରିଣୀ । ଗୋଟିଏ ଉଦ୍ୟାନ ମଧ୍ୟରେ ୩୦/୪୦ ଗୋଟି ହରିଣ ଓ ସମ୍ବର ଅକୁତୋଭୟରେ ବିଚରଣ କରୁଥିବାର ଦେଖିଲି । ନଅରର ପ୍ରବେଶ ଦ୍ୱାର ସମ୍ମୁଖରେ ଗୋଟିଏ ପ୍ରକାଣ୍ଡ ପୁଷ୍କରିଣୀ, ପୁଷ୍କରିଣୀର ଚତୁର୍ପାର୍ଶ୍ୱରେ ଚାରୋଟି ପଥରର ଘାଟ । ରାଜ ନଅରକୁ ପରିବେଷ୍ଟିତ କରି ରହିଥିବା ଚାରିଗୋଟି ପୁଷ୍କରିଣୀମାନଙ୍କ ମଧ୍ୟରୁ ଚନ୍ଦନ ପୋଖରୀ ବୃହତ୍ତମ ।"

**(ତଥ୍ୟ : ଶଶି ଭୂଷଣ ରାୟ, କନିକା ଦର୍ଶନ-୧୯୧୩, ପୃଷ୍ଠା-୯,୧୦)**

"ଏହି ଚନ୍ଦନ ପୁଷ୍କରିଣୀରେ ଦୈନିକ ପ୍ରାୟ ୨ ହଜାର ମନୁଷ୍ୟ କାର୍ଯ୍ୟ କରୁ ଅଛନ୍ତି । ଉକ୍ତ

କାର୍ଯ୍ୟର ଅଧିକାଂଶ ତତ୍ତ୍ୱ ଶ୍ରୀଯୁକ୍ତ ବାବୁ ଜୟରାମ ଦାସ, ଆସିଷ୍ଟାଣ୍ଟ ମେନେଜର ନେଉ ଅଛନ୍ତି । କନିକାର ରାଜା ବାହାଦୂର ଆପଣାର ପ୍ରଜାମାନଙ୍କୁ ଟଙ୍କା କରଜ ଦେବାର ସ୍ଥିର କରିଥିବାରୁ ଅଧିକାଂଶ ପ୍ରଜା ବଳଦ କ୍ରୟ ନିମନ୍ତେ ଟଙ୍କା କରଜ ନେଉ ଅଛନ୍ତି ।"

**(ତଥ୍ୟ ସହାୟତା: ଉତ୍କଳ ଦୀପିକା, ତା:୧୦.୦୩.୧୯୦୬)** ।

ଖାଲି ଏତିକି ନୁହେଁ ତତ୍କାଳୀନ ଅନେକ ବିଶିଷ୍ଟ ବ୍ୟକ୍ତି କନିକା ରାଜପ୍ରାସାଦର ନିର୍ମାଣ ଶୈଳୀ ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନିଜନିଜର ମତ ଓ ମନ୍ତବ୍ୟ ରଖିଛନ୍ତି । ଆଜି ଓଡ଼ିଶାରେ କନିକା ରାଜବାଟୀ ସଦୃଶ ଏକ ସୁରମ୍ୟ ଉଚ୍ଚ ଅଟାଳିକା ଅନ୍ୟ କୌଣସି ରାଜବଂଶରେ ଦୃଶ୍ୟମାନ ହୁଏନାହିଁ । ବୈତରଣୀ ନଦୀ କୂଳରେ ଗଢ଼ି ଉଠିଥିବା ଓଡ଼ିଶାର ଏହି 'ବକିଂହାମ୍ ପ୍ୟାଲେସ୍' ଆଜି ବି ଭଂଜରାଜବଂଶୀଙ୍କ ସ୍ମାରକୀ ରୂପେ ଠିଆ ହୋଇ ରହିଛି । ଏବେ ଏହି ରାଜପ୍ରାସାଦକୁ ନେଇ ଅନେକ ପ୍ରାମାଣିକ ଚିତ୍ର, ବୃତ୍ତଚିତ୍ର, ଚଳଚ୍ଚିତ୍ର, ଟେଲି ଧାରାବାହିକ ନିର୍ମାଣ ହେଉଛି ।

## କନିକାର ଇତିହାସ, ନରେନ୍ଦ୍ରପୁରର ଧନେଶ୍ୱର ସୌଦାଗର ଓ ମଙ୍ଗଳା ଉପାସନା

*(History of Kanika and Narendrapur)*

କନିକା ରାଜ୍ୟ ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ଏଠାରେ ସୌଦାଗର ବା ସାଧବମାନେ ବସବାସ କରୁଥିଲେ । ଏମାନେ ଧାମରା ମୁହାଁଣବାଟେ କଳିଙ୍ଗ ଉପସାଗର (ବଙ୍ଗୋପସାଗର) ଦେଇ ଦରିଆପାରି ବାଣିଜ୍ୟ କାରବାର କରୁଥିଲେ । ବୈତରଣୀ କୂଳସ୍ଥ ଚାନ୍ଦବାଲି ସନ୍ନିକଟ ନରେନ୍ଦ୍ରପୁର ଗ୍ରାମରେ ବହୁ ପୂର୍ବରୁ ଧନେଶ୍ୱର ସୌଦାଗର ନାମରେ ଜଣେ ଧନୀ ବଣିକ ବାସ କରୁଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ନରେନ୍ଦ୍ର ସୌଦାଗର ଦରିଆପାରି ବାଣିଜ୍ୟ କାରବାରରେ ବହୁ ପ୍ରତିଷ୍ଠା ଅର୍ଜନ କରିବା ସହ ସେ ଅଞ୍ଚଳରେ ଜଣେ ବିତ୍ତଶାଳୀ ବଣିକ ଭାବେ ଲୋକପ୍ରିୟ ହୋଇପାରିଥିଲେ । ପରବର୍ତ୍ତୀ ସମୟରେ ଏହି ନରେନ୍ଦ୍ର ସୌଦାଗରଙ୍କ ନାମରେ ଏକ ଗ୍ରାମ ନରେନ୍ଦ୍ରପୁର ପ୍ରତିଷ୍ଠାଲାଭ କରିଥିଲା ।

ଏହି ନରେନ୍ଦ୍ରପୁରରେ ସାଧବମାନଙ୍କର ଆରାଧ୍ୟ ଦେବୀ ମା' ମଙ୍ଗଳାଙ୍କର ଏକ ମନ୍ଦିର ରହିଛି । ଏଠାରେ ଥିବା ମା' ମଙ୍ଗଳାଙ୍କ ମୂର୍ତ୍ତି ଖୁବ୍ ପ୍ରାଚୀନ ବୋଲି ଦାବି କରାଯାଏ । ଅତୀତରେ ଏହି ନରେନ୍ଦ୍ରପୁର ଛତ୍ରପଦା ନାମରେ ପରିଚିତ ଥିଲା । ଏହି ସ୍ଥାନଟି ଥିଲା ଓଡ଼ିଆ ସାଧବମାନଙ୍କର ବୋଇତ ଲାଗିବାର ମୂଳକେନ୍ଦ୍ର । ସେତେବେଳେ କିଛିକିଛି ସାଧବ ରହୁଥିବା ବସତିକୁ 'ପାଟଣା' କୁହାଯାଉଥିଲା । ସାଧବ ନରେନ୍ଦ୍ରଙ୍କ ନାମରେ ଏକ ପାଟଣା ଥିଲା । ଏହି ପାଟଣାରେ ପୂଜା

ପାଉଥିବା ଦେବୀଙ୍କୁ 'ପାଟଣା ମଙ୍ଗଳା' କୁହାଯାଉଥିଲା । ମଙ୍ଗଳା ଠାକୁରାଣୀ ହେଉଛନ୍ତି ଅତୀତର ସାଧବମାନଙ୍କର ଆରାଧ୍ୟ ଦେବୀ । ଆଜି ବି କନିକା ନିକଟସ୍ଥ ନରେନ୍ଦ୍ରପୁରରେ ପାଟଣା ମଙ୍ଗଳାଙ୍କୁ ପୂଜାର୍ଚ୍ଚନା କରାଯାଉଛି ।

ପାଟଣା ମଙ୍ଗଳା ତତ୍କାଳୀନ ସାଧବ ସଂପ୍ରଦାୟର ମୁଖ୍ୟ ଦେବୀ ଥିଲେ । ଅତୀତରେ ସାଧବମାନେ ସାତ ଦରିଆ ପାର ହୋଇ ବଣିଜ କରିବାକୁ ଯିବା ପୂର୍ବରୁ ମଙ୍ଗଳାଙ୍କ ଆଶୀର୍ବାଦ ଭିକ୍ଷା କରୁଥିଲେ । 'ତଅପୋଇ' ଓ 'ଖୁଲଣା ସୁନ୍ଦରୀ' ଉପାଖ୍ୟାନରେ ଦେବୀ ମଙ୍ଗଳାଙ୍କ ଉପାସନା ସଂପର୍କରେ ସ୍ପଷ୍ଟ ଚିତ୍ର ମିଳିଥାଏ ।

"ବଡ଼ ଦୁଃଖୀ ମୁହିଁ ଜଗତ ଭିତରେ ଆଳି ନଗ୍ରେ ମୋର ଅଟେ ଘର
ପଦ୍ମନାଭଦେବ ଏ ରାଜ୍ୟରେ ରାଜା ସୂର୍ଯ୍ୟବଂଶ କୁଳେ ଅବତାର ।"

ପୌରାଣିକ ଉପାଖ୍ୟାନ 'ଖୁଲଣା ସୁନ୍ଦରୀ'ର ଏହି ପଦ୍ୟାଂଶଟିରେ ତତ୍କାଳୀନ ଆଳି ରାଜା ପଦ୍ମନାଭଦେବଙ୍କ ସଂପର୍କରେ ସୂଚନା ଥିବାରୁ ଏହି ରଚନା କାଳ ତାଙ୍କ ସମୟର ବୋଲି ଅନୁମାନ କରାଯାଏ । ପଦ୍ମନାଭ ଦେବଙ୍କ ଶାସନକାଳ (ଖ୍ରୀ·ଅ·୧୭୮୯-ଖ୍ରୀ·ଅ·୧୮୦୦) ମଧ୍ୟରେ ରଚିତ ଖୁଲଣା ସୁନ୍ଦରୀ ପୌରାଣିକ ଉପାଖ୍ୟାନରେ ମା' ପାଟଣା ମଙ୍ଗଳାଙ୍କ ସଂପର୍କରେ ଉଲ୍ଲେଖ ରହିଛି ।

ସେହିପରି ଭଗବାନ ଦାସଙ୍କ ରଚିତ 'ତଅପୋଇ' କାବ୍ୟରେ ଉଲ୍ଲେଖ ଅଛି-

"ଏମନ୍ତ କହି ଭାଇ ସାତ,
ଜଳରେ ବାହିଲେ ବୋଇତ ।
ଏହିପରି କେତେ ଦିନ ଗଲା,
ବୋଇତ କୋଶଳେ ଲାଗିଲା ।
କୋଶଳ ଦ୍ୱୀପ ସେ ବୋଲାଇ,
ତହିଁ ରହିଲେ ସାତ ଭାଇ ।"

"ଭାଦ୍ରବ ମାସ ରବିବାର,
ଆଦ୍ୟ ଏ ଓଷା ଅଟେ ସାର ।
ସେଦିନ ଉପବାସ ରହି,
ମଙ୍ଗଳା ନାମ ହୃଦେ ଧ୍ୟାୟୀ ।
ମଙ୍ଗଳା ଦେବୀ ରୂପ ଲେଖି,
ସକଳେ ମାନ୍ୟ କଲେ ଦେଖି ।

'ତଅପୋଇ' ପୁରାଣରେ ମଧ୍ୟ ପାଟଣା ମଙ୍ଗଳା ଓ ନରେନ୍ଦ୍ରପୁର (କନିକା ଅଞ୍ଚଳ)ର ସାଧବମାନଙ୍କ ସଂପର୍କରେ ତତ୍କାଳୀନ ଉତ୍କଳର ନୌବାଣିଜ୍ୟ ପରଂପରା ସଂପର୍କରେ ଉଲ୍ଲେଖ ରହିଛି । ଅତଏବ 'ତଅପୋଇ' ଓ 'ଖୁଲଣା ସୁନ୍ଦରୀ' କାବ୍ୟରେ ଯେଉଁ ବର୍ଣ୍ଣନା କରାଯାଇଛି ତାହା ବର୍ତ୍ତମାନର ଭଦ୍ରକ ଜିଲ୍ଲାର ତିହିଡ଼ି ବ୍ଲକ୍ ଅନ୍ତର୍ଗତ ନରେନ୍ଦ୍ରପୁର ଗ୍ରାମ ଏବଂ ଏହି ଗ୍ରାମର ଆରାଧ୍ୟ ଦେବୀ ପାଟଣା ମଙ୍ଗଳାଙ୍କ ସହିତ ଅନେକ ସାମଞ୍ଜସ୍ୟ ରଖିଥାଏ ।

ସେହିଭଳି ସରସ୍ୱତୀ ଦାମୋଦର ମିଶ୍ରଙ୍କ 'ଭଞ୍ଜ କନିକା' ପୁସ୍ତକର ଏହି ପଦ୍ୟାଂଶଟିକୁ ଲକ୍ଷ୍ୟ କରାଯାଇପାରେ-

"ପୂର୍ବ କାଳେ ଧନେଶ୍ୱର ନାମା ସୌଦାଗର,
ପାଞ୍ଚମୁକା ଜନପଦେ ଥିଲେ ଧନେଶ୍ୱର ।"

"ସିଂହଳ ଦ୍ୱୀପରୁ ଚାରୁ ମଙ୍ଗଳା ମୂରତି,
ଅଣାଇ ନିଜ ନଗରେ ନରେନ୍ଦ୍ର ସୁମତି ।"

ପ୍ରାଚୀନ ଉତ୍କଳ ଓ ସିଂହଳ ଦ୍ୱୀପ ମଧ୍ୟରେ ଥିବା ବାଣିଜ୍ୟିକ ସଂପର୍କ ଏହି କାବ୍ୟରୁ ସ୍ପଷ୍ଟ ହୁଏ । ନରେନ୍ଦ୍ରପୁରର ଧନେଶ୍ୱର ସୌଦାଗର ସିଂହଳରୁ ମା' ମଙ୍ଗଳାଙ୍କ ମୂର୍ତ୍ତି ଆଣି ଏଠାରେ ସ୍ଥାପନ କରିଥିବାର ଏଠାରେ ଉଲ୍ଲେଖ କରାଯାଇଛି । ଏଣୁ କନିକା ପଞ୍ଚମୁକାର ନରେନ୍ଦ୍ରପୁର ସେତେବେଳେ ପ୍ରାଚୀନ ଉତ୍କଳର ଏକ ପ୍ରଧାନ ନୌ ବନ୍ଦର ଥିଲା ବୋଲି ଏହି ପୁରାଣମାନଙ୍କରୁ ଜଣାପଡ଼େ । କାଳକ୍ରମେ ନରେନ୍ଦ୍ରପୁର ବନ୍ଦର ନିଜର ଗୁରୁତ୍ୱ ହରାଇବା ପରେ ଚାନ୍ଦବାଲି ଓ ଧାମରା ବନ୍ଦର ବିକାଶଲାଭ କରିଥିଲା ।

ନୌବାଣିଜ୍ୟ ସହ ଦେବୀ ମଙ୍ଗଳା ଓତପ୍ରୋତ ଭାବେ ଜଡ଼ିତ । ପ୍ରାଚୀନ କାଳରେ ସାଧବମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ବିଦେଶକୁ ଜଳପଥ ମାଧ୍ୟମରେ ଯାତ୍ରା କରୁଥିଲେ । ବିନା ବାଧାବିଘ୍ନ ଓ ସଫଳ ଯାତ୍ରା ଉଦେଶ୍ୟରେ ସାଧବମାନେ ସେମାନଙ୍କର କୁଳ ଦେବୀ ମା' ମଙ୍ଗଳାଙ୍କୁ ଆରାଧନା କରୁଥିଲେ ।

ସାଧାରଣତଃ ମଙ୍ଗଳା ଓଷା ଭାଦ୍ରବ ମାସଠାରୁ କାର୍ତ୍ତୀକ ପୂର୍ଣ୍ଣିମା ପର୍ଯ୍ୟନ୍ତ ମାସେ କାଳ ଧରି ପାଳିତ ହୋଇଥାଏ । ଏହି ସମୟ ମଧ୍ୟରେ ପାଣିପାଗ ଅନୁକୂଳ ରହିବା ସହିତ ସମୁଦ୍ର ଶାନ୍ତ ଥାଏ । ଏହି ସମୟ ହିଁ ସାଧବମାନଙ୍କ ପାଇଁ ବିଦେଶକୁ ବୋଇତ ବାହିବାର ପ୍ରକୃଷ୍ଟ ସମୟ । ଏଣୁ ନିଜର ସ୍ୱାମୀ, ପିତା ଓ ଭାଇମାନଙ୍କ ନୌ ଯାତ୍ରାର ସଫଳତା କାମନା କରି ଉତ୍କଳର ଗାଁ ଗାଁରେ ପ୍ରତି ହିନ୍ଦୁ ନାରୀମାନେ ମା' ମଙ୍ଗଳା ବ୍ରତ କରିଥା'ନ୍ତି । ସେହିଭଳି ବୋଇତ ଲେଉଟାଣି ସମୟରେ

ସାଧବ ଲଳନାମାନେ କାର୍ତ୍ତୀକ ମାସ ବେଳକୁ ବୋଇତ ବନ୍ଦାଣ କରୁଥିଲେ । ଆଜି ବି ଓଡ଼ିଶାର ପୁରପଲ୍ଲୀରେ ପାଳନ କରାଯାଉଥିବା କାର୍ତ୍ତୀକ ପୂର୍ଣ୍ଣିମା ଦିନ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୋଇଥାଏ । ଏହା ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାର ସ୍ମୃତିକୁ ରୋମନ୍ଥନ କରିଥାଏ ।

ଅପରପକ୍ଷେ, 'କନିକା'ର ଜନ୍ମ ଓ ଉଦ୍ଭବ ଏହି ପାଟଣା ମଙ୍ଗଳା ପୀଠରୁ ହିଁ ସୃଷ୍ଟି ହୋଇଛି ବୋଲି ଐତିହାସିକ ଯୁକ୍ତି ରହିଛି । ମୟୂରଭଞ୍ଜର ଭଞ୍ଜ ରାଜକୁମାର ଭୁଜବଳ ଭଞ୍ଜ ଓ କୁଜଙ୍ଗ ରାଜକୁମାରୀ ତଥା ନରେନ୍ଦ୍ର ସୌଦାଗରଙ୍କ ପାଳିତ କନ୍ୟା 'କନିକା'ଙ୍କ ମଧ୍ୟରେ ଗଢି ଉଠିଥିବା ପ୍ରେମପ୍ରଣୟ ଏହି ପାଟଣା ମଙ୍ଗଳାଙ୍କ ପୀଠରୁ ଗଢି ଉଠିଥିଲା । ଏହାପରେ ନରେନ୍ଦ୍ର ସୌଦାଗରଙ୍କ ଅନ୍ତେ ତାଙ୍କ ଜାମାତା ତଥା ଭଞ୍ଜ ରାଜବଂଶୀ ଭୁଜବଳ ଭଞ୍ଜ ମା' ମଙ୍ଗଳାଙ୍କୁ ସାକ୍ଷୀ ରଖି ନିଜ ରାଣୀ 'କନିକା'ଙ୍କ ନାମରେ ରାଜ୍ୟର ନାମକରଣ କରିଥିଲେ । କ୍ରମେ ନରେନ୍ଦ୍ରପୁର ନିଜର ପ୍ରାସଙ୍ଗିକତା ହରାଇବା ସହ ରାଜା ବିଭିନ୍ନ ସ୍ଥାନରେ ନୂତନ ଗଡ଼ମାନ ପ୍ରତିଷ୍ଠା କରି ଶାସନ କାର୍ଯ୍ୟ ତୁଲାଇଲେ ।

[ତଥ୍ୟ ସହାୟତା:

୧· 'ଖୁଲଣା ସୁନ୍ଦରୀ', ବୀଣାପାଣି ପୁସ୍ତକ ଭଣ୍ଡାର, ଆଲିସାବଜାର, କଟକ-୨, ପୃଷ୍ଠା: ୧୫୩

୨· ବଂଶୀଧର ଭୋଇ, 'ବହିତ୍ର-୨୦୦୧', ଚାନ୍ଦବାଲି ପୂଜ୍ୟପୂଜା ସଂସଦର ସ୍ମରଣିକା, ସଂପାଦକ: ଶାନ୍ତନୁ କୁମାର ମହାନ୍ତି, ପୃଷ୍ଠା: ୨୨, ୨୩, ୨୪, ୨୫

୩· 'ତଅପୋଇ ବା ଖୁଦୁରୁକୁଣୀ ଓଷା', ଭଗବାନ ଦାସ, ହରଚଣ୍ଡୀ ପ୍ରେସ୍, ଷ୍ଟେସନ ବଜାର, ଯାଜପୁର ରୋଡ, ପୃଷ୍ଠା-୧୦, ୨୨, ୩୬

୪· 'ଭଞ୍ଜ କନିକା', ସରସ୍ୱତୀ ଦାମୋଦର ମିଶ୍ର, କାଶୀନାଥ ପ୍ରେସ୍, କଟକ, ୧୯୫୨, ପୃଷ୍ଠା: ୩୪, ୩୫]

## କନିକା ରାଜ୍ୟର ପ୍ରାଣ କେନ୍ଦ୍ର; ଚାନ୍ଦବାଲି ବନ୍ଦର ଓ ପ୍ରାଚୀନ କଳିଙ୍ଗର ପ୍ରବେଶ ଦ୍ୱାର

*(The gate way of Kalinga: ancient Kanika's Chandabali port)*

ଦିନେ ଚାନ୍ଦବାଲି ଓଡ଼ିଶାର ଏକ ପ୍ରସିଦ୍ଧ ନଦୀ ବନ୍ଦର ଭାବେ ସମଗ୍ର ଦେଶରେ ନିଜର ପରିଚୟ ସୃଷ୍ଟି କରିପାରିଥିଲା ଏବଂ ଏହା ପ୍ରାଚୀନ କଳିଙ୍ଗର 'ପ୍ରବେଶ ପଥ' *(the gate way of Kalinga)*ର ମାନ୍ୟତା ଲାଭ କରିପାରିଥିଲା । ବୈତରଣୀ ନଦୀ କୂଳରେ ତତ୍କାଳୀନ କନିକା ରାଜ୍ୟର ରାଜସ୍ୱ ଅଞ୍ଚଳ ଚାନ୍ଦବାଲିଠାରେ ଏହି ବନ୍ଦର ଗଢି ଉଠିଥିଲା । ଚାନ୍ଦବାଲି ଦେଶର ଏକ ପ୍ରମୁଖ ନୌବାଣିଜ୍ୟ କେନ୍ଦ୍ର ଥିଲା ।

ଏବେ ଚାନ୍ଦବାଲି ଓ ଧାମରା ବନ୍ଦର ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍‌ରେ ଅବସ୍ଥିତ । ମାତ୍ର ଏହା ଦିନେ ତତ୍କାଳୀନ କନିକା ରାଜ୍ୟର ଏକ ପ୍ରମୁଖ ରାଜସ୍ୱ ଅଞ୍ଚଳ ଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଭଞ୍ଜବଂଶୀମାନେ କନିକାର ଶାସନଭାର ଗ୍ରହଣ କରିବାର ବହୁ ପୂର୍ବରୁ ଏଠାରେ (ବୈତରଣୀ ନଦୀ ତ୍ରିକୋଣଭୂମି ଅଞ୍ଚଳ ଚାନ୍ଦବାଲି ଓ ଧାମରା ମୁହାଁଣ ଅଞ୍ଚଳ) ସାଧବ (ସୌଦାଗର) ସଂପ୍ରଦାୟର ବହୁ ପ୍ରତିଷ୍ଠିତ ଧନୀକ ବଣିକମାନେ ବସବାସ କରି ଓଡ଼ିଶାର ନୌବାଣିଜ୍ୟ କାରବାର ସଂଭାଳୁଥିଲେ ।

ଭଞ୍ଜ ବଂଶୀୟ ରାଜାମାନଙ୍କ ଅଧୀନସ୍ଥ ଏହି ଚାନ୍ଦବାଲି ଚିରସ୍ରୋତା ବୈତରଣୀ ନଦୀ କୂଳରେ ଅବସ୍ଥିତ । ବୈତରଣୀ ଓ ବ୍ରାହ୍ମଣୀ ନଦୀର ତ୍ରିକୋଣଭୂମି ଅଞ୍ଚଳରେ କନିକା ରାଜ୍ୟଟି ଗଢି ଉଠିଥିଲା । ଧାମରା ମୁହାଁଣ କନିକା ରାଜ୍ୟ ଓ ରାଜ୍ୟର ବୋଇତ ବଣିକ (ସାଧବ)ଙ୍କ ପାଇଁ ଆଶିର୍ବାଦ ଭଳି ଥିଲା । ଅତୀତରେ ଧାମରା ଓ ଚାନ୍ଦବାଲି ବନ୍ଦର ମାଧ୍ୟମରେ କନିକା ରାଜ୍ୟର ସାଧବମାନେ ଦରିଆପାରି ବ୍ୟବସାୟ ଚଳାଇ ଓଡିଶାକୁ ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ସମୃଦ୍ଧ କରାଇପାରିଥିଲେ । ତେବେ ଇଂରେଜ ସରକାର ଅମଳରେ ଏହି ଦୁଇଟି ବନ୍ଦର ବିଶେଷ ଭାବେ ବିକାଶ ଲାଭ କରିବାରୁ ସେହି ସମୟରେ ଚାନ୍ଦବାଲିକୁ ଓଡ଼ିଶାର ପ୍ରବେଶ ପଥ ବୋଲି କୁହାଯାଉଥିଲା ।

ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଇଂରେଜମାନେ ଚାନ୍ଦବାଲି ବନ୍ଦରର ବିକାଶ କଥା ଚିନ୍ତା କରିଥିଲେ । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ପରେ ଇଂରେଜମାନେ ଏହି ଜଳପଥର ବିକାଶ କରିଥିଲେ । ଇଂରେଜ ଶାସନ କାଳରେ ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ପ୍ରମୁଖ ବାଣିଜ୍ୟ କେନ୍ଦ୍ରର ମାନ୍ୟତା ପାଇଥିଲା । ବିଦେଶରୁ ବହୁ ଜାହାଜ ଚାନ୍ଦାଲି ବନ୍ଦରରେ ଲାଗୁଥିଲା । ଏହି ବନ୍ଦର ଦେଇ ଉଭୟ ଯାତ୍ରୀ ଓ ମାଲ୍ ପରିବହନ କରାଯାଉଥିଲା । ତତ୍‌କାଳୀନ ଓଡ଼ିଶାର ବିଶେଷକରି କନିକା ରାଜ୍ୟର ଚାନ୍ଦବାଲି, କନିକା, ପଟ୍ଟାମୁଣ୍ଡାଇ, ଆଳି ଅଞ୍ଚଳର ବହୁ ଯାତ୍ରୀ ଓ ଚାକିରିଆମାନେ କଲିକତାକୁ ଏହି ବନ୍ଦର ଦେଇ ଯାତାୟତ କରୁଥିଲେ । ସେତେବେଳେ ଧାମରା ମୁହାଁଣ ବେଶ୍ ଗଭୀର ଥିଲା ।

କଥାରେ ଅଛି **"ଏଇ କଥାକୁ ନାଆ ପେଲିଦେଲି କଲିକତାକୁ"** । ଅର୍ଥାତ୍ ସେତେବେଳେ କଲିକତା ଓ ଓଡ଼ିଶା ମଧ୍ୟରେ କେବଳ ଚାନ୍ଦବାଲି ବନ୍ଦର ଦେଇ ଯୋଗାଯୋଗ ସଂଭବ ହେଉଥିଲା । ଆଳି, ପଟ୍ଟାମୁଣ୍ଡାଇ, ଚାନ୍ଦବାଲି, କନିକା ଅଞ୍ଚଳରୁ ହଜାର ହଜାର ସଂଖ୍ୟାରେ ଯାତ୍ରୀ ଚାନ୍ଦବାଲି ବନ୍ଦର ଦେଇ କଲିକତା ଯାତ୍ରା କରୁଥିଲେ । ଇଂରେଜ ଶାସନ କାଳରେ ଉନ୍ନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ ପରଠାରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଚାନ୍ଦବାଲି ବନ୍ଦର ଦେଇ କଲିକତା ଏବଂ ଓଡ଼ିଶା ମଧ୍ୟରେ ପାଲଟଣା ଜାହାଜରେ ଯାତ୍ରୀମାନେ ଯାତାୟତ କରୁଥିଲେ ।

ଚାନ୍ଦବାଲି ସମୁଦ୍ର ମୁହାଁଣ (ଧାମରା)ଠାରୁ ପ୍ରାୟ ୪୦ କିଲୋମିଟର ଓଡ଼ିଶା ଭୂ-ଖଣ୍ଡର ଅଭ୍ୟନ୍ତରରେ ରହିଥିବାରୁ ଇଂରେଜମାନେ ଏହାକୁ ଏକ ଉତ୍ତମ ଜଳପଥ ଭାବେ ସ୍ଥିର କରି ଏହାର ବିକାଶ

କରିବାକୁ ଉଦ୍ୟମ କରିଥିଲେ । ଇଂରେଜମାନଙ୍କ ଆଗମନର ବହୁ ପୂର୍ବରୁ ମଧ୍ୟ ଚାନ୍ଦବାଲି ପ୍ରାଚୀନ ଓଡ଼ିଶାର ପ୍ରବେଶ ପଥ ଭାବେ ପରିଚିତ ଥିଲା ।

ଧାମରା ମୁହାଁଣ ଦେଇ ଇଂରେଜ ସୈନିକମାନେ ଚାନ୍ଦବାଲିରେ ପହଞ୍ଚି କନିକା ଉପରେ ଆକ୍ରମଣ କରିଥିଲେ ଏବଂ ଏହାପରେ କନିକାକୁ ଇଂରେଜମାନେ ଅଧିକାର କରିନେଇଥିଲେ । ପରେ ଇଂରେଜ ସରକାର ଓ କନିକା ରାଜ୍ୟ ମଧ୍ୟରେ ସନ୍ଧି ସ୍ୱାକ୍ଷରିତ ହୋଇ ଏମାନଙ୍କ ମଧ୍ୟରେ ଉତ୍ତମ ବନ୍ଧୁତ୍ୱ ସ୍ଥାପନ ହୋଇପାରିଥିଲା । ଏହାର ଫଳସ୍ୱରୂପ ତତ୍କାଳୀନ ଭାରତର ବଡଲାଟ୍ ଚାନ୍ଦବାଲିକୁ ଜଳପଥରେ ଦୁଇଦୁଇ ଥର ବୁଲି ଆସି କନିକା ରାଜାଙ୍କ ଆତିଥ୍ୟ ସ୍ୱୀକାର କରିଥିଲେ । ଏହା ସେତେବେଳେ ଦେଶର ଅନ୍ୟାନ୍ୟ ପ୍ରାନ୍ତୀୟ ରାଜ୍ୟ ପାଇଁ ଏକ ରୋଚକ ଖବର ପାଲଟିଥିଲା ।

ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ନିଜସ୍ୱ **ଧୂଆଁକଳ** (ବାଷ୍ପଚାଳିତ ବୋଟ୍) ସାହାଯ୍ୟରେ ଚାନ୍ଦବାଲି ବନ୍ଦରରୁ ଧାମରା ଦେଇ ବିଲାତ ଯାତ୍ରା କରିଥିଲେ ।

ତତ୍କାଳୀନ ଓଡ଼ିଶାର ରାଜଧାନୀ କଟକ କିମ୍ବା ଭୁବନେଶ୍ୱରକୁ ଯିବା ପାଇଁ ଭାରତ ଓ ଭାରତ ବାହାରୁ ଆସୁଥିବା ଇଂରେଜ ଉଚ୍ଚ ପଦାଧିକାରୀମାନେ ବଙ୍ଗୋପସାଗର ଦେଇ ଆସିବା ପରେ ପ୍ରଥମେ ଚାନ୍ଦବାଲି ବନ୍ଦରରେ ଅବତରଣ କରୁଥିଲେ । ଏହାପରେ ଚାନ୍ଦବାଲିରୁ ବ୍ରାହ୍ମଣୀ କିମ୍ବା ବୈତରଣୀ ନଦୀ ଦେଇ ଷ୍ଟିମର ଯୋଗେ ଓଡ଼ିଶାର ଆଭ୍ୟନ୍ତର ଅଞ୍ଚଳକୁ ଯାତାୟତ କରୁଥିଲେ । ଏହାପୂର୍ବରୁ ଓଡ଼ିଶାରେ ସ୍ଥଳପଥର ବିକାଶ ଘଟି ନଥିବାରୁ ଜଳପଥ ହିଁ ଗମନାଗମନର ମୁଖ୍ୟ ମାଧ୍ୟମ ଥିଲା । ଆଉ ଚାନ୍ଦବାଲି ହିଁ ଏହି ଜଳପଥ ଗମନାଗମନର ପ୍ରମୁଖ କେନ୍ଦ୍ର ପାଲଟିଥିଲା । ଏଠାରୁ ବୈତରଣୀ ଓ ବ୍ରାହ୍ମଣୀ ନଦୀ ଦେଇ ନୌକା ସାହାଯ୍ୟରେ ରାଜ୍ୟର ବିଭିନ୍ନ ସ୍ଥାନକୁ ଯିବାଆସିବା ହେଉଥିଲା ।

ଇଂରେଜ ଶାସନର ଅବସାନ ଘଟିବା ପରେ ସ୍ୱାଧୀନ ଭାରତରେ ଚାନ୍ଦବାଲି ବନ୍ଦରଟି ତାର ପ୍ରାସଙ୍ଗିକତା ହରାଇବସିଲା । ତଥାପି ଚାନ୍ଦବାଲି ଓଡ଼ିଶାର ଏକ ପ୍ରମୁଖ ବାଣିଜ୍ୟ କେନ୍ଦ୍ର ଥିଲା ବୋଲି ଆଜି ଚାନ୍ଦବାଲିଠାରେ ଥିବା ଇଂରେଜ ଶାସନ କାଳର ବନ୍ଦର କାର୍ଯ୍ୟାଳୟଟିକୁ ଦେଖିଲେ ସ୍ମରଣ ଆସିଯାଏ । ଆଜି ବି ଏଠାରେ ବୈତରଣୀ ନଦୀ କୂଳରେ 'ପି ଆଣ୍ଡ ଆଇଡବ୍ଲ୍ୟୁଟି' ଅଫିସ୍ *(Port and Inland Water Transport Office)* ଟି କାର୍ଯ୍ୟ କରୁଛି । ଚାନ୍ଦବାଲିରେ ଥିବା ଭଗ୍ନ ଜରାଜୀର୍ଣ୍ଣ କାବିଲ୍ ସାହେବ କୋଠା, ବିଶାଳକାୟ ଲଙ୍ଗର, କନିକା ରାଜା ବ୍ୟବହାର କରୁଥିବା ତୋପ, କମାଣ ଏବଂ ପୋର୍ଟ ଅଫିସକୁ ଦେଖିଲେ ଏହା ଆମର ଅତୀତର ଗୌରବମୟ ନୌବାଣିଜ୍ୟ ଇତିହାସ ଓ ଆମ ସାଧବ ପୁଅମାନଙ୍କ ଦରିଆପାର ସ୍ମୃତି ସତେଜ ହୋଇଥାଏ ।

## ସାତଭାୟା

## ତଅପୋଇ ଓ ଖୁଦୁରୁକୁଣୀ ଓଷାର ଐତିହାସିକ ପ୍ରାସଙ୍ଗିକତା

## ସାଧବ ସାତ ଭାଇଙ୍କ ଗାଁ

## ଏବଂ ପ୍ରାଚୀନ ନୌବାଣିଜ୍ୟ ପରଂପରାର ମୂକ ସାକ୍ଷୀ

*(Satabhaya: Seven brothers' village of Taapoi)*



ସାତଭାୟାର ପଞ୍ଚୁବରାହୀ ମନ୍ଦିର

ଓଡ଼ିଶାର ନୌବାଣିଜ୍ୟ ପରଂପରାର ଏକ ପ୍ରାଚୀନ ଇତିହାସ ରହିଛି । ଏହାକୁ ଅସ୍ୱୀକାର କରିହେବନି । ତେବେ ନୌବାଣିଜ୍ୟ ପରଂପରାରେ ବୈତରଣୀ ନଦୀ କେତେ ମାତ୍ରାରେ ନିଜର ଭୂମିକା ତୁଲେଇଥିଲା ତାହା ଆଲୋଚନାର ବିଷୟ ।

କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ-ବ୍ରାହ୍ମଣୀ ମିଳନସ୍ଥଳ ଧାମରା ମୁହାଁଣରେ ଅବସ୍ଥିତ ତତ୍କାଳୀନ କନିକା ରାଜ୍ୟ ଏବଂ ଏହି ରାଜ୍ୟ ଅନ୍ତର୍ଗତ ବିଭିନ୍ନ ଗଡ଼ (ନଅଟି ଗଡ଼)ରେ ବସବାସ କରୁଥିବା ସୌଦାଗର (ସାଧବ) ସଂପ୍ରଦାୟର ଲୋକେ, କନିକା ରାଜ୍ୟର ପ୍ରାଣକେନ୍ଦ୍ର କୁହାଯାଉଥିବା ଚାନ୍ଦବାଲି



**ପଞ୍ଚୁବରାହୀଙ୍କ ମୂର୍ତ୍ତି**

ଓ ଧାମରା ବନ୍ଦର, କଳିଙ୍ଗ ଉପସାଗର (ବଙ୍ଗୋପସାଗର)ର ସାତଭାୟା ଉପକୂଳ, ତଅପୋଇ ଓ ସାଧବ ସାତଭାଇ ପ୍ରସଙ୍ଗ, ଜମ୍ବୁ ଦ୍ୱୀପ (ମହାକାଳପଡ଼ା ବ୍ଲକ୍‌ର ଖରିନାସୀ ଉପକୂଳ, ହୁକିଟୋଲା ଫଲ୍‌ସ ପଏଣ୍ଟ ବନ୍ଦର)ର ଉପସ୍ଥିତି ତତ୍କାଳୀନ ଓଡ଼ିଆମାନଙ୍କ ନଦୀ, ସମୁଦ୍ର ବନ୍ଦରଭିତ୍ତିକ ଦରିଆପାରି ବାଣିଜ୍ୟ ବ୍ୟବସାୟ ପରଂପରାର ପ୍ରାଚୀନତା ସଂପର୍କରେ ଏକ ଦୃଢ଼ ପ୍ରମାଣ ବହନ କରିଥାଏ ।

ପ୍ରାଚୀନ ଓଡ଼ିଆମାନେ ଏକ ବଣିକ ଜାତି ଥିଲେ ଏବଂ ବିଦେଶରେ ନୌବାଣିଜ୍ୟ କରି ରାଜ୍ୟକୁ ଅର୍ଥନୈତିକ ସମୃଦ୍ଧ କରିପାରିଥିଲେ । କଳିଙ୍ଗର ଅଧିବାସୀ ବୋଇତ ନିର୍ମାଣ କଳାରେ ପାରଙ୍ଗମ ଥିଲେ ବୋଲି ପୂର୍ବରୁ ଅନେକବାର ଉଲ୍ଲେଖ କରାଯାଇଛି । ଏଥିନେଇ ଅନେକ ପଣ୍ଡିତ ଓ ଗବେଷକଙ୍କ ମତାମତ ମଧ୍ୟ ଉପସ୍ଥାପନ ମଧ୍ୟ କରାଯାଇଛି । କଳିଙ୍ଗରେ ନିର୍ମିତ ବୋଇତମାନଙ୍କର ଅଗ୍ରଭାଗ ବିଭିନ୍ନ ପଶୁପକ୍ଷୀଙ୍କ ମୁହଁ ଆକୃତିର ହେଉଥିବାର ଜଣାଯାଏ । ବୋଇତଗୁଡିକରେ ବିଭିନ୍ନ ଧାତୁର ପାତିଆ ଖଞ୍ଜାଯାଉଥିଲା । ପ୍ରାଚୀନ କଳିଙ୍ଗର ବଣିକମାନେ କିଭଳି ବୋଇତରେ ବସି ସାତ ସମୁଦ୍ର ତେର ନଈ ପାର ହୋଇ ବାଣିଜ୍ୟ କରୁଥିଲେ ତାହାର ଅନେକ ଐତିହାସିକ ପ୍ରମାଣ ମିଳିସାରିଛି ।

ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ପରଂପରା ଏବଂ ସାଧବମାନଙ୍କୁ ନେଇ ଆଜି ବି ଓଡ଼ିଶାର ପୁରପଲ୍ଲୀରେ ଅନେକ କାହାଣୀ, କିମ୍ବଦନ୍ତୀ ଓ ଲୋକକଥା ଶୁଣିବାକୁ ମିଳିଥାଏ । ଏହାର ଏକ



**ସାତଭାୟାର ସମୁଦ୍ର ଉପକୂଳ**

ଜ୍ୱଳନ୍ତ ଉଦାହରଣ ହେଉଛି, ଓଡ଼ିଶାର ପୁରପଲ୍ଲୀରେ ସର୍ବାଧିକ ପ୍ରଚଳିତ 'ତଅପୋଇ ଓଷା' ବା 'ଖୁଦରୁକୁଣି ଓଷାବ୍ରତ' ଉପାଖ୍ୟାନ ।

'ତଅପୋଇ ଓଷା' ବା 'ଖୁଦରୁକୁଣି ଓଷାବ୍ରତ' ଉପାଖ୍ୟାନ ଏକ କିମ୍ବଦନ୍ତୀ ମନେ ହେଉଥିଲେ ମଧ୍ୟ ଏହାର ଐତିହାସିକ ଓ ଭୌଗୋଳିକ ଯଥାର୍ଥତା ରହିଛି । 'ତଅପୋଇ' ଓ 'ସାଧବ ସାତଭାଇ' ପ୍ରସଙ୍ଗ ଓ 'ଖୁଦୁରୁକୁଣୀ ଓଷା' ପୌରାଣିକ ଉପାଖ୍ୟାନଟି ମୁଖ୍ୟତଃ ତତ୍କାଳୀନ କନିକା ଅଞ୍ଚଳରେ ବସବାସ କରୁଥିବା ସୌଦାଗର (ସାଧବ)ଙ୍କୁ କେନ୍ଦ୍ରକରି ସୃଷ୍ଟି ହୋଇଛି ବୋଲି ବିଶ୍ୱାସ କରାଯାଏ ।

'ତଅପୋଇ' ଉପାଖ୍ୟାନରେ ସାଧବ ସାତଭାଇ ବୋଇତରେ ବସି ସାତ ଦରିଆ ତେର ନଈ ପାର ହୋଇ ବାଣିଜ୍ୟ କରିବାକୁ ଯିବା ପ୍ରସଙ୍ଗ ଉଲ୍ଲେଖ କରାଯାଇଛି । ଏହା ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାର ଏକ ଚିତ୍ର ପ୍ରଦାନ କରିଥାଏ ।

କନିକା ରାଜ୍ୟର ରିଘାଗଡ଼କୁ ସାଧବ ସାତଭାଇ ଓ ତଅପୋଇର ଗାଁ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ଏହି ସାତଭାଇଙ୍କ ନାମରେ ସାତଖଣ୍ଡ ଗାଁ ରହିଥିଲା, ଯାହା କି ବର୍ତ୍ତମାନର କେନ୍ଦ୍ରାପଡ଼ା ଜିଲ୍ଲାର ବଙ୍ଗୋପସାଗର ଉପକୂଳରେ ଥିବା ସାତଖଣ୍ଡ ଗାଁ **'ସାତଭାୟା'** (ବି.ଦ୍ର. ଏହି ସାତଖଣ୍ଡ ଗାଁରୁ ଅଧିକାଂଶ ଗାଁ ଆଜି ସମୁଦ୍ର ଗର୍ଭରେ ଲୀନ ହୋଇଯାଇଥିଲେ ମଧ୍ୟ ଏସବୁ

ଗାଁର କଙ୍କାଳ ଓ ଇତିହାସ ଆଜି ବି ଜୀବନ୍ତ ଓ ତାଜା ହୋଇ ରହିଛି ।)କୁ ଚିହ୍ନଟ କରାଯାଇଛି । ରିଘାଗଡ଼ କନିକା ରାଜ୍ୟର ଏକ ଗଡ଼ ଏବଂ ଏଠାରେ ମୁଖ୍ୟତଃ ସୌଦାଗର (ସାଧବ) ଗୋଷ୍ଠୀର ଲୋକମାନେ ବସବାସ କରୁଥିଲେ । 'ସାତଭାୟା' ହେଉଛି ରିଘାଗଡ଼ଠାରୁ ଖୁବ୍ ଅଳ୍ପ ଦୂରରେ ବଙ୍ଗୋପସାଗର କୂଳରେ ଅବସ୍ଥିତ ସାତୋଟି ଗାଁ ।

ଓଡ଼ିଶାର ପୁରପଲ୍ଲୀରେ ଯେଉଁ 'ତଅପୋଇ', 'ସାଧବ ସାତ ଭାଇ' ଓ 'ଖୁଦୁରୁକୁଣି' ଓଷା ବେଶ୍ ଲୋକପ୍ରିୟ ହୋଇଛି ତାହାର ଇତିହାସ ହେଉଛି କନିକା ରାଜ୍ୟ । ତଅପୋଇ କନିକା ରାଜ୍ୟର ରିଘାଗଡ଼ ସୌଦାଗରଙ୍କ ଝିଅ ଥିଲା ବୋଲି ତଅପୋଇ ଉପାଖ୍ୟାନରୁ ଅନୁମାନ କରାଯାଏ । ଦୁର୍ଭାଗ୍ୟକ୍ରମେ, ଭିତର କନିକା ଜଙ୍ଗଲରେ ତଅପୋଇର ବଡ଼ ଭାଉଜଙ୍କ ପ୍ରିୟ ଛେଳି 'ଘରମଣି' ହଜିଯାଏ ଏବଂ ସେ ଏହି ହିଂସ୍ରଜନ୍ତୁ ପୂର୍ଣ୍ଣ ଜଙ୍ଗଲରେ ବର୍ଷାରାତି କଟାଏ ଏବଂ ତା' ଭାଇମାନେ ଶୀଘ୍ର ବିଦେଶରୁ ଫେରି ଆସିବାକୁ ସେ





ସାତଭାୟା ସମୁଦ୍ର ବେଳାଭୂମି ଓ ଏଠାରେ ଦୃଶ୍ୟମାନ ବିରଳ ନାଲି କଙ୍କଡ଼ା




ଏଠାରେ ଥିବା ମା' ମଙ୍ଗଳାଙ୍କୁ ପ୍ରାର୍ଥନା କରେ । ସାଧବ ସାତ ଭାଇ ଦୂର ବିଦେଶରୁ ବାଣିଜ୍ୟ ସାରି ନିଜ ଗଡ଼ (ରିଘାଗଡ଼)କୁ ଫେରିବା ବେଳେ ଏକ ପ୍ରାକୃତିକ ଝଡ଼କୁ ସାମ୍ନା କରି ନପାରି ଧାମରା ମୁହାଁଣକୁ ଫେରିବା ବଦଳରେ ଏକ ଅଜଣା ବାଲୁକାପୂର୍ଣ୍ଣ ବେଳାଭୂମିରେ ବୋଇତ ଲଗାନ୍ତି । ସମୁଦ୍ର କୂଳର ଏହି ବାଲୁକା ବେଳାଭୂମିରେ ବୋଇତ ଲାଗିବା ପରେ ସୌଭାଗ୍ୟକ୍ରମେ ସେମାନଙ୍କର ନିଜ ଭଉଣୀ 'ତଅପୋଇ' ସହିତ ଭେଟ୍ ହୋଇଯାଏ । ତଅପୋଇ ନିକଟସ୍ଥ ଭିତରକନିକା ଜଙ୍ଗଲରେ ପ୍ରବଳ ଝଡ଼ବର୍ଷାରେ ଭିଜି କରୁଣ କ୍ରନ୍ଦନ କରୁଥିବାବେଳେ ସାଧବମାନେ ତାହା ଶୁଣି ପାରନ୍ତି । ଏହାପରେ ସାଧବ ସାତ ଭାଇ ଓ ଭଉଣୀ ତଅପୋଇଙ୍କର ମିଳନ ଘଟେ । ପରେ ସେଠାରେ ମା' ମଙ୍ଗଳାଙ୍କୁ ପୂଜାର୍ଚ୍ଚନା କରି ସାଧବ ସାତ ଭାଇ ଆଉ ନିଜ ଗାଁ ରିଘାଗଡ଼କୁ ନ ଫେରି ସମୁଦ୍ର ଉପକୂଳର ଏହି ବାଲୁକା ବେଳାଭୂମିରେ ସାତଗୋଟି ଗ୍ରାମ ପ୍ରତିଷ୍ଠା କରନ୍ତି । ଏହି ସାତଗୋଟି ଗ୍ରାମ ହିଁ ପରବର୍ତ୍ତୀ ସମୟରେ **'ସାତଭାୟା'** ନାମରେ ପରିଚିତ ହୁଏ । ଏହାପରଠାରୁ 'ସାତଭାୟା' ତତ୍କାଳୀନ ଓଡ଼ିଶାର ଏକ ପ୍ରମୁଖ ସମୁଦ୍ର ବନ୍ଦର ଭାବେ ସୁନାମ ଅର୍ଜନ କରେ ।

ସାଧବମାନଙ୍କର ଆରାଧ୍ୟ ଦେବୀ ମା ମଙ୍ଗଳା ଓ ପଞ୍ଚୁବରାହୀ (ସମୁଦ୍ର ଦେବୀ) ଆଜି ବି ସାତଭାୟାରେ ପୂଜା ପାଉଛନ୍ତି । ମଙ୍ଗଳା ଠାକୁରାଣୀଙ୍କ ପୂଜା ହିଁ 'ଖୁଦୁରୁକୁଣୀ ଓଷା'ର ମୂଳ ଉଦ୍ଦେଶ୍ୟ ବୋଲି ଗବେଷକମାନେ ମତ ଦେଇଥା'ନ୍ତି । ସାଧବମାନେ ସାତସମୁଦ୍ର ତେର ନଈ ପାର

ହୋଇ ବାଣିଜ୍ୟ କରିବାକୁ ଯିବାବେଳେ ସେମାନଙ୍କ ପରିବାରର ସ୍ତ୍ରୀଲୋକମାନେ ମା' ମଙ୍ଗଳାକୁ ଆରାଧନା କରିଥା'ନ୍ତି ଏବଂ ସାଧବମାନେ କୁଶଳରେ ଫେରି ଆସିବା ପାଇଁ ମା' ମଙ୍ଗଳାଙ୍କୁ ଆରାଧନା କରାଯାଇଥାଏ ।

ଓଡ଼ିଶାର ପୁରପଲ୍ଲୀର କୁଆଁରୀ ଯୁବତୀମାନେ ପ୍ରତିବର୍ଷ ଭାଦ୍ରବ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ତିଥିର ଆଦ୍ୟ ରବିବାରଠାରୁ ଶେଷ ରବିବାର ପର୍ଯ୍ୟନ୍ତ ମୋଟ ପାଞ୍ଚଟି ରବିବାର ଖୁଦୁରୁକୁଣୀ ଓଷା କରିଥା'ନ୍ତି । ପ୍ରତ୍ୟେକ କୁଆଁରୀ ଝିଅର ସରଳ ପ୍ରାଣରେ ତାର ଏକ ସୁନେଲୀ ଭବିଷ୍ୟତର ସ୍ୱପ୍ନ ଥାଏ । ସେ ଏକ ଭଲ ବର ପ୍ରାପ୍ତ ହେବା ସହିତ ଭଲ ଘର, ଧନସଂପଦରେ ଭରପୂର ଶାଶୂଘର ପାଇବା ଉଦ୍ଦେଶ୍ୟରେ କୁଆଁରୀମାନେ ମା' ମଙ୍ଗଳାକୁ ପୂଜା କରିଥା'ନ୍ତି । ପାଞ୍ଚଟି ପାଳିରେ ଏହି ଓଷା ସଂପନ୍ନ ହୋଇ ଭାଦ୍ରବ ମାସର ଶେଷ ରବିବାର ଦିନ ଉଦ୍‌ଯାପିତ ହୋଇଥାଏ । ବିଶେଷକରି ଅବିଭକ୍ତ କଟକ, ଅବିଭକ୍ତ ବାଲେଶ୍ୱର ଓ କେନ୍ଦୁଝରର ଆନନ୍ଦପୁର ଅଞ୍ଚଳରେ ଏହି ଓଷା ବହୁଳ ଭାବେ ପାଳିତ ହୋଇଥାଏ ।

ଖୁଦୁରୁକୁଣି ଓଷାର ସାରାଂଶ ଏହିପରି । ଧାମରା ମୁହାଁଣକୁ ଲାଗି କନିକା ରାଜ୍ୟ ଓ ଜମ୍ବୁ ଦ୍ୱୀପରେ ଅନେକ ସାଧବମାନେ ବସବାସ କରୁଥିଲେ । ଏହି ଦ୍ୱୀପ ସମୁଦ୍ର କୂଳରେ ଥିବାରୁ ସେମାନେ ବୋଇତ ଯୋଗେ ଦେଶ ବିଦେଶରେ ବାଣିଜ୍ୟ କରି ବହୁ ଧନ ସଂପଦ ଉପାର୍ଜନ କରିଥିଲେ । ସେମାନଙ୍କ ମଧ୍ୟରେ କନିକା ରାଜ୍ୟର ରିଘାଗଡ଼ରେ ବସବାସ କରୁଥିବା ତନୟବନ୍ତ ନାମକ ଜଣେ ବିତ୍ତଶାଳୀ ସାଧବ ଥିଲେ । ତାଙ୍କ ପତ୍ନୀଙ୍କ ନାମ ଶକୁନ୍ତଳା । ତାଙ୍କର ସାତ ପୁଅରେ ଗୋଟିଏ ଝିଅ; ତଅପୋଇ । ସାତଭାଇଙ୍କ ନାମରେ ସାତଖଣ୍ଡ ଗାଁ ଓ ସାତଖଣ୍ଡ ବୋଇତ ଥିଲା । **(ବି.ଦ୍ର. କନିକା ରାଜ୍ୟର ୯ ଗଡ଼ ମଧ୍ୟରୁ ବିତ୍ତଶାଳି ରିଘାଗଡ଼ ଅନ୍ତର୍ଗତ ବଙ୍ଗୋପସାଗର କୂଳରେ ଥିବା ସାତଭାୟାର ସାତୋଟି ଗ୍ରାମକୁ ଏହି ସାଧବ ସାତ ଭାଇଙ୍କ ଗାଁ ବୋଲି ଐତିହାସିକ ମାନେ ଉପସ୍ଥାପନ କରନ୍ତି । ଏବଂ ରିଘାଗଡକୁ ବିତ୍ତଶାଳି ସାଧବ ତନୟବନ୍ତଙ୍କ ନିଜ ଗ୍ରାମ ବୋଲି କୁହାଯାଉଛି )** । ତନୟବନ୍ତ ସାତ ପୁଅଙ୍କୁ ବିଭା କରାଇ ସାତ ବୋହୂଙ୍କୁ ଘରକୁ ଆଣିଲେ । କିନ୍ତୁ ଏକମାତ୍ର ଅଲିଅଳି ଝିଅ ତଅପୋଇର ବିବାହ ପୂର୍ବରୁ ବାପା ତନୟବନ୍ତ ଓ ମା' ଶକୁନ୍ତଳାଙ୍କର ପରଲୋକ ଘଟିଥିଲା । ଏହାପରେ ସାତ ସାଧବ ଭାଇଙ୍କ ଉପରେ ପରିବାରର ଭବିଷ୍ୟତ ଓ ବାଣିଜ୍ୟ ଦାୟିତ୍ୱ ନ୍ୟସ୍ତ ହେଲା । ରିଘାଗଡ଼ର ଏହି ସାତ ସାଧବ ସାତଖଣ୍ଡ ବୋଇତରେ ମା' ମଙ୍ଗଳାକୁ ପୂଜା କରି ଧାମରା ମୁହାଁଣ (ବୈତରଣୀ ନଦୀ) ବାଟେ ବଙ୍ଗୋପସାଗରରେ ବୋଇତ ଭସେଇ ସୁଦୂର ଜାଭା, ସୁମାତ୍ରା, ବାଲି, ସିଂହଳ ଆଦି ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାତ୍ରା କରିଥିଲେ । ସମୁଦ୍ରରେ ବୋଇତର ସୁରକ୍ଷା ଓ ବାଣିଜ୍ୟିକ ଯାତ୍ରାର ସଫଳତା ଉଦ୍ଦେଶ୍ୟରେ ସାତ ଭାଇ ମା' ମଙ୍ଗଳାକୁ ଆରାଧନା କରି ନିଜର ଦରିଆପାରି ବ୍ୟବସାୟ ଅନୁକୂଳ କରିଥିଲେ ।

ତତ୍କାଳୀନ ଓଡ଼ିଶାରେ ସାଧବମାନେ ବୋଇତ ନେଇ ଦରିଆପାରି ଗଲାବେଳେ ସେମାନଙ୍କର ଆରାଧ୍ୟ ଦେବୀ ମା' ମଙ୍ଗଳାଙ୍କୁ ଆରାଧନା କରିଥା'ନ୍ତି । ମା' ମଙ୍ଗଳା ହିଁ ସାଧବମାନଙ୍କର ଆରାଧ୍ୟ ଦେବୀ ଥିଲେ । **(ବି.ଦ୍ର. ସେହି ପରଂପରାର ସ୍ମାରକୀ ରୂପେ ଆଜି ବି ତତ୍କାଳୀନ କନିକା ରାଜ୍ୟର ପ୍ରତିଷ୍ଠାତା ତଥା କୁଜଙ୍ଗ ରାଜନନ୍ଦିନୀ 'କନିକା'ଙ୍କ ପୋଷ୍ୟ ପିତା ନରେନ୍ଦ୍ର ସୌଦାଗରଙ୍କ ନାମାନୁସାରେ ପ୍ରତିଷ୍ଠାଲାଭ କରିଥିବା ନରେନ୍ଦ୍ରପୁରର ଅଧିଷ୍ଠାତ୍ରୀ ଦେବୀ ପାଟଣା ମଙ୍ଗଳା, ଧାମରାର ମା' ଧାମରାଇ ଓ ସାତଭାୟାର ମାଟିଆ ମଙ୍ଗଳା ଏ ଅଞ୍ଚଳର ବଣିକଜାତି ଓ ମତ୍ସ୍ୟଜୀବିମାନଙ୍କର ଆରାଧ୍ୟ ଦେବୀ ଭାବେ ପୂଜା ପାଇ ଆସୁଛନ୍ତି ।)**

ହଁ, ପୁଣି ତଅପୋଇ ପ୍ରସଙ୍ଗକୁ ଆସିବା । ସାତ ଭାଇ ବୋଇତ ମେଲାଇ ବିଦେଶକୁ ଚାଲିଯିବା ପରେ ଜନୈକା କଳିହୁଡି ବିଧବା ବ୍ରାହ୍ମଣୀର ପ୍ରରୋଚନାରେ ସାନ ଭାଉଜ ବ୍ୟତୀତ ଅନ୍ୟ ଛଅ ଭାଉଜ ନିଜର ଅତି ଅଲିଅଳି ନଣନ୍ଦ ତଅପୋଇକୁ ନାନା ପ୍ରକାର ନିର୍ଯାତନା ଦେଇଥିଲେ । ଏମିତିକି ତଅପୋଇକୁ ଭାଉଜମାନେ ଜଙ୍ଗଲକୁ ଛେଳି ଚରାଇବାକୁ ପଠାଇଥିଲେ । ସାତ ଭାଇ କୁଶଳରେ ବିଦେଶରୁ ଫେରିବା ବେଳକୁ ପ୍ରବଳ ବର୍ଷା ରାତିରେ ତଅପୋଇକୁ ଜଙ୍ଗଲରୁ ଉଦ୍ଧାର କରିଥିଲେ । ଏହାପରେ ତଅପୋଇଠାରୁ ସବୁକଥା ଶୁଣି ଭାଇମାନେ ନିଜନିଜ ପତ୍ନୀଙ୍କୁ ତଅପୋଇ ମାଧ୍ୟମରେ ଦଣ୍ଡସ୍ୱରୂପ ସେମାନଙ୍କର ନାକ କାଟି ଦେଇଥିଲେ ।

ଅତୀତରେ ଯେଉଁମାନେ ବାଣିଜ୍ୟ କରିବାକୁ ସାତ ଦରିଆ ତେର ନଈ ପାର ହୋଇ ବିଦେଶ ଯାଉଥିଲେ ସେମାନଙ୍କୁ 'ସାଧବ' କୁହାଯାଉଥିଲା । ପ୍ରାଚୀନ ଓଡ଼ିଶା ଉପକୂଳର ଧାମରାଠାରୁ ଆରଂଭ କରି ତାମ୍ରଲିପ୍ତ (ବର୍ତ୍ତମାନ ଏହା ପଶ୍ଚିମବଙ୍ଗରେ ଅବସ୍ଥିତ) ବନ୍ଦର ପର୍ଯ୍ୟନ୍ତ ଅଞ୍ଚଳରେ ନୌକା ବା ବୋଇତ ଉପରେ ନିର୍ଭର କରି ଜୀବିକା ଅର୍ଜନ କରୁଥିବା ଅଧିବାସୀମାନଙ୍କର ମା' ମଙ୍ଗଳା ହିଁ ଏକମାତ୍ର ଦେବୀ ଥିଲେ । ରଜ ସଂକ୍ରାନ୍ତି ପରେପରେ ବୋଇତ ଫେରିଆସିବାରେ ବିଳମ୍ବ ଘଟିଲେ ସାଧବ ପରିବାରର ମହିଳାମାନେ ଭାଦ୍ରବ ମାସରେ ମା' ମଙ୍ଗଳାଙ୍କୁ ଶୁଭ ମନାସି ପୂଜା କରିଥା'ନ୍ତି ।

ବଙ୍ଗୋପ ସାଗର କୂଳରେ ଥିବା କାହ୍ନୁପୁର, ବଳରାମପୁର, ହରିହରପୁର, ଲକ୍ଷ୍ମୀନାରାୟଣପୁର, ଗୋବିନ୍ଦପୁର, ଗୋପାଳପୁର ଓ ବନବିହାରୀପୁର ଭଳି ୭ ଖଣ୍ଡ ଗାଁକୁ ନେଇ ସାତଭାୟା ଗଠିତ । ସାଧବ ସାତ ଭାଇଙ୍କ ନାମ ଅନୁସାରେ ଏହି ସାତ ଖଣ୍ଡ ଗାଁର ନାମ ହୋଇଛି ବୋଲି କୁହାଯାଏ । ଏହି ୭ ଭାଇ ହେଉଛନ୍ତି 'ଖୁଦୁରୁକୁଣୀ ପୁରାଣ'ର ଚରିତ୍ର ତଅପୋଇର ସାତ ଭାଇ । ବିଶ୍ୱାସ କରାଯାଏ, ଭାଉଜଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ନିଜର ସାତ ଭାଇଙ୍କୁ ଫେରି ପାଇବାକୁ ତଅପୋଇ ସାତଭାୟାର ଅଧିଷ୍ଠାତ୍ରୀ ଦେବୀ **ପଞ୍ଚୁବରାହୀ** (ଜଞ୍ଜାଳି, କାମଳାଇ, ବିମଳାଇ, ପଞ୍ଚୁବରାହୀ ଏବଂ ଗୋଟିଏ ମୂର୍ତ୍ତି ସମୁଦ୍ରରେ ଭାସିଯାଇ ଧାମରାଠାରେ ମା' ଧାମରାଇ ଭାବେ ପୂଜା

ପାଉଛନ୍ତି ।) ଓ **ମାଟିଆ ମଙ୍ଗଳାଙ୍କୁ** ପୂଜା କରି ସାତ ଭାଇଙ୍କୁ ପ୍ରାପ୍ତ ହୋଇଥିଲା ।

କନିକା ଇତିହାସରୁ ପ୍ରମାଣ ମିଳେ, ମୟୂରଭଞ୍ଜର ଭଞ୍ଜ ରାଜା ଭୁଜବଳ ଭଞ୍ଜ କନିକା ଜୟ କରିବା ପୂର୍ବରୁ ଏ ଅଞ୍ଚଳରେ ବହୁ ସଂଖ୍ୟାରେ ସାଧବ (ବଣିକ ଜାତିର ଲୋକେ) ବସବାସ କରୁଥିଲେ । କନିକା ରାଜ୍ୟରେ ବହୁ ପରିମାରେ ଧାନ ଫସଲ ଉତ୍ପାଦନ ହେଉଥିଲା । ଏହାର କୂଳରେ ଅନେକ ପୋତାଶ୍ରୟ ଥିଲା । ଏଠାରେ ଅନେକ ସାଧବ ବସତି ଗଢି ଉଠିଥିଲା । ଏହାର କୂଳରେ ଅନେକ ବାଣିଜ୍ୟ କେନ୍ଦ୍ର ଗଢି ଉଠିଥିଲା, ଯାହା ପେଣ୍ଠ ନାମରେ ପରିଚିତ ଥିଲା ।

ପ୍ରାଚୀନ ଉତ୍କଳର ସମୃଦ୍ଧ ନୌବାଣିଜ୍ୟ ପରଂପରାର ସ୍ମାରକୀ ବହନ କରୁଥିବା ଏବଂ ଓଡ଼ିଶାର ପୁରପଲ୍ଲୀରେ ଅତି ଲୋକପ୍ରିୟ ହୋଇଥିବା ଏହି 'ତଅପୋଇ' ବା 'ଖୁଦୁରୁକୁଣୀ ବ୍ରତ କଥା' ପୁରାଣର ସ୍ରଷ୍ଟା ହେଉଛନ୍ତି କନିକା ରାଜ୍ୟର ଜଣେ ମୁସଲମାନ କବି, ଏହାକୁ କେହି ସହଜରେ ବିଶ୍ୱାସ କରିପାରିବେନି । କନିକା ରାଜ୍ୟର ଏହି ସଫଳ କବି ଉଜିର୍ ବେଗ୍ ଉନ୍ନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧ ଓଡ଼ିଆ କାବ୍ୟ ସାହିତ୍ୟର ଜଣେ ସଫଳ ସ୍ରଷ୍ଟା ଥିଲେ । ତାଙ୍କ ରଚିତ ଏହି 'ତଅପୋଇ' ବା 'ଖୁଦୁରୁକୁଣୀ ବ୍ରତ କଥା' ପୁରାଣକାବ୍ୟଟି ଓଡ଼ିଶାର ଘରେଘରେ ପରିଚିତ । ଏହା କେବଳ ପୁରାଣ ଭାବେ ଯେତିକି ପରିଚିତ ନୁହେଁ, ତାହାଠୁ ଅଧିକ ତତ୍କାଳୀନ ପ୍ରାଚୀନ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟ ପରଂପରାରର ଏକ ଦଲିଲ୍ ଭାବେ ବେଶି ଗ୍ରହଣୀୟ । ସାଲବେଗଙ୍କ ପରେପରେ କନିକାର ଯବନ କବି ଉଜିର୍ ବେଗ୍ ଓଡ଼ିଶାର ଅନ୍ୟତମ ଜଣେ ସଫଳ କୃଷ୍ଣସାହିତ୍ୟ ସ୍ରଷ୍ଟା ଓ ଭକ୍ତ କବି ଭାବେ ପରିଚିତ । 'ତଅପୋଇ' ବା 'ଖୁଦୁରୁକୁଣୀ ବ୍ରତ କଥା' ପୁରାଣକାବ୍ୟ ବ୍ୟତୀତ ଉଜିର୍ ବେଗ ବହୁ ପ୍ରସିଦ୍ଧ 'ନନ୍ଦ ଉତ୍ସବ' (ଏହି ପୁସ୍ତକ ରଚନା କାଳ ୧୯୨୬ ମସିହା ବୋଲି ଧରାଯାଏ ।) ପୁସ୍ତକ ରଚନା କରିଥିବାବେଳେ କନିକା ଅଞ୍ଚଳରେ ନନ୍ଦ ଉତ୍ସବର ଆୟୋଜନ କରି ଏକ ବିରଳ ପରଂପରା ସୃଷ୍ଟି କରିପାରିଛନ୍ତି । କନିକା ଅଞ୍ଚଳରେ ପାଳିତ ହେଉଥିବା ନନ୍ଦ ଉତ୍ସବ ଓଡ଼ିଶାର ଅନ୍ୟ ଏକ ପ୍ରାଚୀନ ପରଂପରା ଭାବେ ବେଶ୍ ପରିଚିତ । ଏହି ଯବନ କବି ଉଜିର୍ ବେଗ୍ ଯାଜପୁର ଜିଲ୍ଲାରେ ୧୮୬୯ ମସିହାରେ ଜନ୍ମ ଗ୍ରହଣ କରିବା ପରେ କନିକା ଅଞ୍ଚଳର ବଡ଼ତଇଳା ଗ୍ରାମକୁ ଚାଲିଯାଇ ସେଠାରେ ସ୍ଥାୟୀ ବାସିନ୍ଦା ପାଲଟିଯାଇଥିଲେ । ତାଙ୍କ ପିତା ଥିଲେ କନିକା ରାଜାଙ୍କର ବିଶେଷ ଦୂତ ଏବଂ ଦେହରକ୍ଷୀ ।

[ତଥ୍ୟ ସହାୟତା

୧. କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ପ୍ରଥମ ଭାଗ), ପ୍ରତାପ କୁମାର ରାୟ, ଅରଡ଼ପଲ୍ଲୀ, ଜରିଆ, କେନ୍ଦ୍ରାପଡ଼ା, ଦ୍ୱିତୀୟ ସଂସ୍କରଣ (୨୦୦୯), ପୃଷ୍ଠା : ୯୯, ୧୦୦, ୧୦୧

୨. 'କନିକା', ଶୁଭ୍ରାଂଶୁ ଭୂଷଣ ସୂତାର, ମଲ୍ଲୀଘର, ରାଜକନିକା, କେନ୍ଦ୍ରାପଡ଼ା, ୨୦୦୦, ପୃଷ୍ଠା: ୮୪-୮୯

୩· ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭାଗ-୨, ୧୯୬୩, ପୃଷ୍ଠା-୨୪୦

୪· ସରସ୍ୱତୀ ଦାମୋଦର ମିଶ୍ର, ଭଞ୍ଜ କନିକା, କାଶୀନାଥ ପ୍ରେସ୍, କଟକ, ୧୯୫୨, ପୃଷ୍ଠା-୧୩]

# 'ସାତଭାୟା'ରେ ଆଜିର ଜୀବନ: ସମୁଦ୍ର-ମଣିଷର ଏ ସଂଘର୍ଷ କେତେ ଦିନ?

*(Satabhaya: Sea-man war)*

ଯେଉଁଠି ପ୍ରକୃତି ଶାନ୍ତ, ଶୀତଳ, ନିରୀହ ଅଥଚ ଉଗ୍ର; ସେଭଳି ଏକ ଅଫୁରନ୍ତ ସୌନ୍ଦର୍ଯ୍ୟର ସମାହାର ହେଉଛି ସାତଭାୟା । ସାତଭାୟାର ସୁଦୀର୍ଘ ସମୁଦ୍ର ବେଳାଭୂମି, ବିରଳ ନାଲି କଙ୍କଡା, ନଡ଼ିଆ ଗଛମାନଙ୍କର ମେଳା, ରାଶିରାଶି ହେନ୍ତାଳ ବଣ, ପ୍ରଖର ସ୍ରୋତପୂର୍ଣ୍ଣ ବାଉଁଶଗଡ଼ ନଦୀ ଓ ଏଥିରେ ଥିବା ମାଳମାଳ କୁମ୍ଭୀର ଜଣେ ଲୋକଙ୍କୁ ବାନ୍ଧି ରଖିବାରେ ଯଥେଷ୍ଟ ହୋଇଥାଏ । ମାତ୍ର ଦୁଃଖର କଥା, ସାତଭାୟାରେ ସମୁଦ୍ର ଓ ମଣିଷ ମଧ୍ୟରେ ଅହରହ ଜାରି ରହିଛି ସଂଘର୍ଷ । ସମୁଦ୍ରର ଆଁ ଭିତରେ ଘର କରିଥିବା ସାତଭାୟାର ମଣିଷମାନଙ୍କୁ ସବୁବେଳେ ଏକ ସାମ୍ଭାବ୍ୟ ବିପଦକୁ ସାମ୍ନା କରିବାକୁ ପଡିଥାଏ । ସମୁଦ୍ରର ଘୋ ଘୋ ଗର୍ଜନ ଭିତରେ ଲିଭିଯାଇଛି ସାତଭାୟାର ମଣିଷମାନଙ୍କ ଆର୍ତ୍ତ ଚିତ୍କାର । କାହିଁ କେଉଁ ଅନାଦି କାଳରୁ ବଙ୍ଗୋପସାଗରର ଉପକୂଳରେ ଗଢି ଉଠିଛି ଏହି ସାତଭାୟା ଗ୍ରାମପୁଞ୍ଜ ।

କାଳର କରାଳ ଗର୍ଭରେ ଏହି ଗାଁଗୁଡିକ ମଧ୍ୟରୁ ଅନେକ ଗାଁ ସମୁଦ୍ରର ଗର୍ଭରେ ଲୀନ ହୋଇ ସାରିଥିଲେ ମଧ୍ୟ ଆଉ ଦୁଇଟି ଗାଁ ଏବେ ମଧ୍ୟ ସମୁଦ୍ର ସହ ଲଢେଇ କରି ବଞ୍ଚି ରହିଛି । ପ୍ରତିମୁହୂର୍ତ୍ତରେ ସମୁଦ୍ରର ଗର୍ଭ ମଧ୍ୟକୁ ଠେଲି ହୋଇଯିବାର ଭୟ ମଧ୍ୟରେ ବଞ୍ଚିବା ଶିଖିଛନ୍ତି ସାତଭାୟାର ନିରୀହ ମଣିଷମାନେ । ଏଠାକାର ପ୍ରତ୍ୟକ୍ଷ ଠାକୁରାଣୀ ପଞ୍ଚୁ ବରାହୀ ଏହି ଲୋକମାନଙ୍କୁ ସମୁଦ୍ରର ଆକ୍ରମଣରୁ ରକ୍ଷା କରି ଆସିଛନ୍ତି । ୧୯୭୧ ଓ ୧୯୯୯ ମସିହା ମହାବାତ୍ୟାବେଳେ ସମୁଦ୍ରର ଆକ୍ରମଣରୁ ବଞ୍ଚି ଯାଇଥିବା ଏଠାକାର ଲୋକେ ଏବେ ବି ଆତଙ୍କିତ ଅବସ୍ଥାରେ କାଳ କାଟୁଛନ୍ତି ।

କେଉଁ ମୁହୂର୍ତ୍ତରେ ସମୁଦ୍ର ଅଶାନ୍ତ ହୋଇଉଠେ, ତାହା ଅନୁମାନ ଲଗେଇବା ଏଠାକାର ଲୋକଙ୍କ ପାଇଁ କାଠିକର ପାଠ ହୋଇପଡେ । ପ୍ରତି ମୁହୂର୍ତ୍ତରେ ସମୁଦ୍ରର ଅଶାନ୍ତ ରୂପ, ବାଲୁକା କ୍ଷତ ଓ ସମୁଦ୍ର ମାଡ଼ି ଆସିବାର ଭୟ ଏଠାକାର ଲୋକଙ୍କୁ ଗ୍ରାସ କରିଥାଏ । ଏଠାକାର ଲୋକଙ୍କ କହିବା ଅନୁଯାୟୀ, ମାତ୍ର ଦଶ ବର୍ଷ ତଳେ ସାତଭାୟା ଗ୍ରାମଠାରୁ ସମୁଦ୍ର ପ୍ରାୟ ୧୦ କିଲୋମିଟର ଦୂରରେ ଥିଲା । ଗାଁଠାରୁ ଜଣେ ସମୁଦ୍ରକୁ ଦେଖିବାକୁ ଚେଷ୍ଟା କଲେ ସହଜରେ ସମୁଦ୍ର ଦେଖା ଯାଉ ନଥିଲା । ମାତ୍ର, ଆଜି ସମୁଦ୍ର ମାଡ଼ିଆସି ସାତଭାୟାର ପାଞ୍ଚୋଟି ଗ୍ରାମକୁ ନିଜ ଗର୍ଭରେ ଲୀନ କରି ଦେଇଛି ।

କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍‌ରେ ରହିଛି ଏହି ବିଶ୍ୱପ୍ରସିଦ୍ଧ ସାତଭାୟା ଗ୍ରାମପୁଞ୍ଜ । କେନ୍ଦ୍ରାପଡ଼ା ଜିଲ୍ଲା ସଦର ମହକୁମାଠାରୁ ଏହାର ଦୂରତ୍ୱ ୫୫ କିଲୋମିଟର । ଆହୁରି ମଧ୍ୟ ସାତଭାୟାରୁ ମାତ୍ର ୧୩ କିଲୋମିଟର ଦୂରତାରେ ରହିଛି ବିଶ୍ୱର ଅନ୍ୟତମ ପ୍ରସିଦ୍ଧ ସ୍ଥାନ ଅଲିଭ୍ ରିଡ୍‌ଲେ କଇଁଛଙ୍କ ସ୍ୱର୍ଗ କୁହାଯାଉଥିବା ଗହିରମଥା । ବିଶ୍ୱପ୍ରସିଦ୍ଧ ଭିତରକନିକା ବନ୍ୟ ପ୍ରାଣୀ ଅଭୟାରଣ୍ୟ ଓ ଡାଙ୍ଗମାଳ କୁମ୍ଭୀର ପ୍ରଜନନ କେନ୍ଦ୍ର ମଧ୍ୟ ସାତଭାୟାର ନିକଟରେ ଅବସ୍ଥିତ ।

**ସମୁଦ୍ର ମଧ୍ୟରେ ପ୍ରସିଦ୍ଧ ପଞ୍ଚୁବରାହୀ ଠାକୁରାଣୀ ପୀଠ**

ସାତଭାୟା ଗାଁକୁ ନେଇ ବହୁ କିମ୍ବଦନ୍ତୀ ଓ ଇତିହାସ ରହିଛି । ଏଠାରେ ମା' ବନଦୁର୍ଗା 'ପଞ୍ଚୁବରାହୀ' ନାମରେ ପୂଜା ପାଉଛନ୍ତି । ସମୁଦ୍ର କୂଳରେ କୌଣସି ଗାଁ, ବସ୍ତି ନଥିବା ସତ୍ତ୍ୱେ ହେନ୍ତାଳ ବଣ ମଧ୍ୟରେ ଏହି ମୂର୍ତ୍ତିର ଆବିର୍ଭାବ ନେଇ ବହୁ ରହସ୍ୟ ଲୁଚି ରହିଛି । ଏଠାରେ ନାରୀ ଅବୟବ ଓ ବରାହ ମୁଖ ଆକୃତିର କଳାମୁଗୁନି ପଥରର ୫ଟି ମୂର୍ତ୍ତି ରହିଛି । ଏହି ୫ଟି ମୂର୍ତ୍ତି ହେଉଛନ୍ତି ପାଞ୍ଚ ଭଉଣୀ । ଓଡ଼ିଶାର ବିରଜା, ହିଙ୍ଗୁଳା, ତାରିଣୀ, ସମଲେଶ୍ୱରୀଙ୍କ ଭଳି ସାତଭାୟାର ପଞ୍ଚୁ ବରାହୀ ମଧ୍ୟ ଏକ ପ୍ରସିଦ୍ଧ ଦେବୀ ପୀଠ । ଏହା ଏକ ତନ୍ତ୍ରସାଧାନାସ୍ଥଳ । ଏଠାରେ ପ୍ରତିବର୍ଷ ଦଶହରା ଓ ଚୈତ୍ର ମାସରେ ଦେବୀଙ୍କ ନିକଟରେ ମଇଁଷି, ଛେଳି, ମେଣ୍ଢା ବଳି ଦିଆଯାଇଥାଏ । ମଇଁଷି ବଳି ପାଇଁ ପଞ୍ଚୁବରାହୀ ପୀଠ ସମଗ୍ର ଓଡ଼ିଶାରେ ଚର୍ଚ୍ଚିତ ।

ସାତଭାୟା ଗ୍ରାମପୁଞ୍ଜ ତତ୍କାଳୀନ କନିକା ରାଜ୍ୟ ଅନ୍ତର୍ଗତ ରିଘାଗଡ଼ରେ ବସବାସ କରୁଥିବା ସାଧବ ସାତଭାଇ (ତଅପୋଇର ସାତ ଭାଇ)ଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହି ସାତୋଟି ଗ୍ରାମ ସାତଭାୟା ନାମରେ ପରିଚିତ ହେଲା । କନିକା ରାଜା ସ୍ୱପ୍ନାଦେଶ ପାଇବା ପରେ ଏଠାରେ ବନଦୁର୍ଗାଙ୍କ ସନ୍ଧାନ କରିଥିଲେ । ଏଠାରେ ଥିବା ପାଞ୍ଚ ଠାକୁରାଣୀଙ୍କ ନାମ ହେଉଛି ବିମଳି, କମଳି, ପଞ୍ଚୁବରାହୀ, ଜଞ୍ଜାଳି ଏବଂ ବାଟ କୁଆଁରୀ । ଯାଜପୁରର ବିରଜା ମଧ୍ୟ ହେଉଛନ୍ତି ଏହି ପାଞ୍ଚ ଭଉଣୀଙ୍କର ଅନ୍ୟ ଜଣେ ଭଉଣୀ । ସେହିଭଳି ଧାମରାର ମା' ଧାମରାଇ ମଧ୍ୟ ଏହି ପଞ୍ଚୁ ବରାହୀଙ୍କର ଅନ୍ୟ ଜଣେ ଭଗିନୀ ।

**ଉତ୍ତରବଗପାଟିଆ ପ୍ରକଳ୍ପ ଡେରି କାହିଁକି?**

ବଙ୍ଗୋପସାଗର ଉପକୂଳରେ ଛୋଟବଡ଼ ୭ଟି ଗାଁକୁ ନେଇ ସାତଭାୟା ଗ୍ରାମପୁଞ୍ଜ କାହିଁ କେଉଁ ଅନାଦି କାଳରୁ ଗଢି ଉଠିଛି । ଗୁପ୍ତିରୁ ହେନ୍ତାଳ ଜଙ୍ଗଲ ପଥ ଦେଇ ପାଞ୍ଚ କିଲୋମିଟର ବାଟ ଗଲାପରେ ଦୂରରୁ ଶୁଭେ ବଂଗୋପସାଗରର ଘୋ ଘୋ ଗର୍ଜନ । ଆଖିରେ ପଡେ କିଛି ନଡ଼ିଆ ଗଛ, ବାଲିକୁଦ ଏବଂ ଝାଉଁ ବଣକୁ ନେଇ ଛୋଟଛୋଟ ମଣିଷ ବସ୍ତି । ନୁଆଁଣିଆ ଚାଳ ଛପର ଘରଗୁଡିକ ସମୁଦ୍ରର ଗର୍ଜନକୁ ବେଖାତିର କରି ତଥାପି ଦମ୍ଭର ସହିତ ସାମ୍ନା କରୁଥାନ୍ତି । ସାତଭାୟା ଗ୍ରାମପୁଞ୍ଜଟି ମୋଟ ୭ଟି ଗ୍ରାମକୁ ନେଇ ସୃଷ୍ଟି ହୋଇଛି । ସାତଭାୟା, କାହ୍ନୁପୁର, ଗୋବିନ୍ଦପୁର,

ମହନିପୁର, କୁଆଳି, ଖରିକୁଲା, ଗହୀରମଥା ଆଦି ୭ଟି ଗାଁକୁ ନେଇ ସାତଭାୟା ସୃଷ୍ଟି ହୋଇଥିଲା । ମାତ୍ର ବର୍ତ୍ତମାନ ଏସବୁ ଗାଁରୁ ଅଧିକାଂଶ ଗାଁର ସ୍ଥିତି ନାହିଁ କହିଲେ ଚଳେ । ଅଧିକାଂଶ ଗ୍ରାମ ସମୁଦ୍ର ଗର୍ଭରେ ଲୀନ ହୋଇ ସାରିଲାଣି । ବର୍ତ୍ତମାନ ସାତଭାୟା ଗ୍ରାମ ପଞ୍ଚାୟତଟି ଦୁଇଟି ମୁଖ୍ୟ ଗ୍ରାମ କାହ୍ନୁପୁର ଓ ସାତଭାୟା ସମେତ ୪ଟି ପତା ଗାଁ ରବୀନ୍ଦ୍ରପଲ୍ଲୀ, ମଗରକନ୍ଦା, ବରାହୀପୁର ଓ ସାନଗହୀରମଥାକୁ ନେଇ ସୃଷ୍ଟି ହୋଇଛି । ସାତଭାୟା ପଞ୍ଚାୟତର ମୋଟ ଜନସଂଖ୍ୟା ୨୫୦୦ । ସାତଭାୟା ପଞ୍ଚାୟତରେ ସରକାରୀ ନଥିରେ ୬୪୫ ପରିବାର ଥିବାବେଳେ ପ୍ରକୃତରେ ୭୧୧ ପରିବାର ରହିଛି । ଏହି ୭୧୧ ପରିବାରର ମୁଖ୍ୟ ସମସ୍ୟା ହେଉଛି ବିସ୍ଥାପନ ଓ ଉପଯୁକ୍ତ ଥଇଥାନ । ସାତଭାୟାର ଅଧିକାଂଶ ଗାଁ ସମୁଦ୍ର ଗର୍ଭରେ ଲୀନ ହୋଇଯିବା ପରେ ଏମାନଙ୍କୁ ଥଇଥାନ କରାଯିବା ନେଇ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କଠାରୁ ନବୀନ ପଟ୍ଟନାୟକ ପର୍ଯ୍ୟନ୍ତ, ସବୁ ମୁଖ୍ୟମନ୍ତ୍ରୀ ପ୍ରତିଶ୍ରୁତି ଦେଇ ଆସିଛନ୍ତି । ମାତ୍ର, ଏମାନଙ୍କ ସମସ୍ୟା ଦୂର ହୋଇପାରିନାହିଁ । ଦେଶ ସ୍ୱାଧୀନ ହେବାଠାରୁ ଏମାନଙ୍କୁ ଉପଯୁକ୍ତ ସ୍ଥାନରେ ଥଇଥାନ କରାଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଆସୁଛି, ମାତ୍ର ସାତଭାୟାର ଏହି ନିରୀହ ମଣିଷମାନେ ସମୁଦ୍ର ସହ ଲଢେଇ କରି ଜୀବନକୁ ପାଣି ଛଡେଇ ବଞ୍ଚି ଆସୁଛନ୍ତି ।

**ସାତଭାୟାର ବିରଳ ନାଲି କଙ୍କଡ଼ା ଓ ହେନ୍ତାଳ ଜଙ୍ଗଲ**

ସାତଭାୟାର ଶାନ୍ତ ବେଳାଭୂମିରେ ରାଶିରାଶି ନାଲି କଙ୍କଡ଼ାକୁ ଦେଖିଲେ ଘଡ଼ିଏ ଅଟକି ଯିବାକୁ ଇଚ୍ଛା ହୁଏ । ସାତଭାୟା ଅଞ୍ଚଳଟି ସଂପୂର୍ଣ୍ଣ ବାଲୁକାରାଶିରେ ପରିପୂର୍ଣ୍ଣ ହୋଇଥିବାବେଳେ ଏଠାରେ କିଛି ନଡ଼ିଆ ଗଛ ଦେଖିବାକୁ ମିଳିଥାଏ । ବାଲି ମଧ୍ୟରେ ନଡ଼ିଆ ଗଛ ଦେଖିଲେ ପ୍ରକୃତିର ବଚିତ୍ର ସୃଷ୍ଟି କଥା ମନକୁ ଆସେ । ସମୁଦ୍ର ବେଳାଭୂମିର ବାଲି କୁଦ ଉପରେ ଏବେ ବି ସାତଭାୟା ଗ୍ରାମଟି ସମୁଦ୍ର ସହ ସଂଘର୍ଷ କରି ବଞ୍ଚି ରହିଛି । ଏହି ଗାଁରେ ଥିବା କିଛି ନଡ଼ିଆ ଗଛ ହିଁ ସାତଭାୟାକୁ ଜଣେ ଦୂର ପଥିକକୁ ଚିହ୍ନେଇ ଦେବାରେ ସହାୟକ ହୋଇଥାଏ । ଦୂରରୁ ଏହି ନଡ଼ିଆ ଗଛଗୁଡିକୁ ଦେଖିଲେ ମନ ମଧ୍ୟରେ ଶିହରଣ ଖେଳିଯାଏ । ଘୋ ଘୋ ସମୁଦ୍ରର ଗର୍ଜନ ଭିତରେ ନଡ଼ିଆ ବାହୁଙ୍ଗାର ଚିର୍ ଚର୍ ଶବ୍ଦ ସାତଭାୟାକୁ ଆନମନା କରିଦିଏ । ଏଭଳି ଏକ ଶାନ୍ତଶୀତଳ ଅଥଚ ଅଶାନ୍ତ ପରିବେଶ ମଧ୍ୟରେ କିଛି ସମୟ କଟାଇବାକୁ କାହାର ବା ଇଚ୍ଛା ନ ହେବ?

ଆମାଜନ୍ ନଦୀ ଅବବାହିକାର ହେନ୍ତାଳ ଜଙ୍ଗଲକୁ ଛାଡିଦେଲେ ଭିତରକନିକା ବନ୍ୟପ୍ରାଣୀ ଅଭୟାରଣ୍ୟ ଅନ୍ତର୍ଗତ ସାତଭାୟାର ହେନ୍ତାଳ ଜଙ୍ଗଲ ହେଉଛି ବିଶ୍ୱର ଦ୍ୱିତୀୟ ବୃହତ୍ତମ ହେନ୍ତାଳ ଜଙ୍ଗଲ । ମାତ୍ର ଦୁର୍ଭାଗ୍ୟ, ଏହି ବିରଳ ପ୍ରଜାତିର ହେନ୍ତାଳ ଜଙ୍ଗଲ ଏବେ ଧ୍ୱଂସମୁଖୀ । ଏହାର ସୁରକ୍ଷା ଏବେ ଜରୁରୀ ହୋଇପଡିଛି । ସାତଭାୟାର ହେନ୍ତାଳ ଜଙ୍ଗଲ ଆମାଜନ ନଦୀ ଅବବାହିକାର ହେନ୍ତାଳ ଜଙ୍ଗଲ ସହ ସମାନ । ଏହି ଜଙ୍ଗଲର ଲୁଣି ପାଣିରେ ଓରୁଅ, କେରୁଅ, କେଉଡ଼ା, କେଉଳା,

ସୁନାରି, ହେନ୍ତାଳ, ବନୀ, ବଣିଆ, ସୁନ୍ଦରୀ, ରୁଅ, ଗରାଣ୍ଡି, ଅସନ, ପିତାମାରି, ଜନ୍ଦାଖାଇ ଆଦି ହେନ୍ତାଳ ଜାତୀୟ ବୃକ୍ଷ ହରକଚ ଗୁଳ୍ମ ଓ ନାଳିଆ ଲଟା ସମେତ ୭୨ ପ୍ରକାରର ଗଛ ଏବଂ ୬୪ ପ୍ରକାରର ଔଷଧୀୟ ବୃକ୍ଷ ରହିଥିବା ରାଜନଗର ବନ୍ୟପ୍ରାଣୀ ବିଭାଗ ସୂତ୍ରରୁ ଜଣାପଡିଛି । ଏଠାରେ ମଧ୍ୟ ବହୁ ସଂଖ୍ୟାରେ ଇଠା ଫଳ ଗଛ ଦେଖିବାକୁ ମିଳିଥାଏ । ଏହା ବ୍ୟତୀତ ଏଠାରେ ବହୁ ବିରଳ ପଶୁ ମଧ୍ୟ ଦେଖାଯାଆନ୍ତି । ଚିତାବାଘ, ଜଙ୍ଗଲୀ ବାରହା, କଟାସ, ବିଲେଇ, ସମ୍ବର, କୃଷ୍ଣସାର ମୃଗ, ଝିଙ୍କ, ଚିତ୍ରା ହରିଣ, କୁମ୍ଭୀର, ଅଜଗର ଓ ଅନ୍ୟାନ୍ୟ ଜଙ୍ଗଲୀ ତଥା ସାମୁଦ୍ରିକ ବିଷଧର ସାପ ମଧ୍ୟ ଏହି ହେନ୍ତାଳ ଜଙ୍ଗଲରେ ଦେଖିବାକୁ ମିଳନ୍ତି । ସାତଭାୟାର ହେନ୍ତାଳ ବଣରେ ମଧ୍ୟ ମାଛରଙ୍କା, ହଂସରାଳି, ବଗ, ପେଲିକାନ୍, ବ୍ରାହ୍ମଣୀ ବତକ, ଚା' ଚଢେଇ, ପାଣିକୋଇଲି ଭଳି ବହୁ ବିରଳ ପ୍ରଜାତିର ପକ୍ଷୀ ମଧ୍ୟ ଦେଖିବାକୁ ମିଳନ୍ତି । ମାତ୍ର, ଏବେ ଏହି ବିରଳ ହେନ୍ତାଳ ଜଙ୍ଗଲ ପ୍ରତି ଚାରି ଆଡୁ ବିପଦ ମାଡି ଆସିଛି । ଲୋକମାନେ ନିୟମିତ ଜଙ୍ଗଲ କାଟି ଏହି ହେନ୍ତାଳ ବଣକୁ ଧ୍ୱଂସ କରି ଚାଲିଛନ୍ତି । ତେବେ ଏହାକୁ ସଂରକ୍ଷିତ ଜଙ୍ଗଲର ମାନ୍ୟତା ପ୍ରଦାନ କରି ଅବଶ୍ୟ ସରକାର ତାରବାଡ ଘେରାଇଛନ୍ତି, ମାତ୍ର ମଣିଷର ଅତ୍ୟାଚାରରେ ଅସହ୍ୟ ହୋଇ ଉଠିଛି ଏହି ମନୋରମ ହେନ୍ତାଳ ଜଙ୍ଗଲ ।

## ମାନପୁର ବୈତରଣୀ ଘାଟ

*(Manpur River Ghat)*

ମାନପୁର ବୈତରଣୀ ଘାଟ କେନ୍ଦ୍ରାପଡ଼ା ଜିଲ୍ଲାର ଏକ ପ୍ରାଚୀନ ନଦୀଘାଟ ଭାବେ ଜଣାଶୁଣା । ଏହି ଘାଟଟି ରାଜକନିକା ବ୍ଲକ୍‌ରେ ଅବସ୍ଥିତ । ଏହାର ଅପରପାର୍ଶ୍ୱରେ ଭଦ୍ରକ ଜିଲ୍ଲା ଚାନ୍ଦବାଲି ବ୍ଲକ୍‌ର ଆରଡ଼ି ଆଖଣ୍ଡଳମଣି ଘାଟ ରହିଛି । କେନ୍ଦ୍ରାପଡ଼ା ଜିଲ୍ଲାର ଭକ୍ତମାନେ ଆଖଣ୍ଡଳମଣିଙ୍କ ନିକଟକୁ ଆସିବାକୁ ହେଲେ ସେମାନଙ୍କୁ ଏହି ମାନପୁର ବୈତରଣୀ ଘାଟ ପାର ହେବାକୁ ପଡ଼ିଥାଏ । ଆଳି, ପଟ୍ଟାମୁଣ୍ଡାଇ, ରାଜକନିକା ବ୍ଲକ୍‌ର ଲୋକେ ମାନପୁର ଘାଟ ପାରିହୋଇ ଆଖଣ୍ଡଳମଣିଙ୍କ ନିକଟରେ ପହଞ୍ଚି ଯାଆନ୍ତି । ଏହି ଘାଟ ନିକଟରେ ରାଜକନିକାର ଓଳାଭର ବଜାର ରହିଛି ।

## ଗୁଆଳି-ଚାନ୍ଦବାଲି ନଦୀ ଘାଟ

*(Guali-Chandabali river Ghat)*

ଦିନ ଥିଲା ଗୁଆଳି-ଚାନ୍ଦବାଲି ନଦୀ ଘାଟର ଏକ ନିଆରା ଭାଉ ରହିଥିଲା । ଅତୀତରେ ଏହି ନଦୀ ଘାଟଟି ତତ୍କାଳୀନ ଅବିଭକ୍ତ କଟକ ଓ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ମଧ୍ୟରେ ଏକ ପ୍ରମୁଖ ଯୋଗସୂତ୍ର ରକ୍ଷା କରୁଥିଲା । ଏହି ନଦୀ ଘାଟ ମାଧ୍ୟମରେ ଅବିଭକ୍ତ ବାଲେଶ୍ୱର ଓ ଅବିଭକ୍ତ କଟକ ଜିଲ୍ଲାର ଲୋକେ ଯାତାୟତ କରୁଥିଲେ । ବୈତରଣୀ ନଦୀରେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ପାର୍ଶ୍ୱରେ

ତରାସ ଗ୍ରାମ ପଞ୍ଚାୟତ ଗୁଆଳି ଗାଁରେ ଏକ ପ୍ରାଚୀନ ତଙ୍ଗାଘାଟ ଥିବାବେଳେ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ପାର୍ଶ୍ୱରେ ଏକ ତଙ୍ଗାଘାଟ ରହିଥିଲା । ଅତୀତରେ **ଗୁଆଳି ଘାଟ ଓ ଚାନ୍ଦବାଲି ଘାଟର** ବେଶ୍ ପ୍ରସିଦ୍ଧି ରହିଥିଲା । ତେବେ ବୈତରଣୀ ପୋଲ ହୋଇଯିବା ପରେ ଏହି ଦୁଇ ଘାଟ ସେମାନଙ୍କର ଗୁରୁତ୍ୱ ହରାଇଛନ୍ତି । ତଥାପି ଆଜିର ଦିନରେ ଏହି ଦୁଇ ଘାଟରେ ଗାଁଗହଳିର ଲୋକେ କାଁଭାଁ ନଦୀ ପାର ହୋଇଥା'ନ୍ତି ।

## ନଳିତାପାଟିଆ: ବୈତରଣୀ ଓ ବ୍ରାହ୍ମଣୀର ମହାମିଳନ

*(Nalitapatia; the confluence of the holy Baitaranee and Brahmanee)*

କେନ୍ଦ୍ରାପଡ଼ା ଜିଲ୍ଲାର ତାଙ୍କମାଳ ପଞ୍ଚାୟତ ଅନ୍ତର୍ଗତ 'ନଳିତାପାଟିଆ' ଗାଁଟିର ଏକ ନିଆରା ପରିଚୟ ରହିଛି । ଏହି ସ୍ଥାନରେ ବୈତରଣୀ ନଦୀ ସହିତ ବ୍ରାହ୍ମଣୀ ମିଳିତ ହୋଇ ଏକ ବିଶାଳ ଗଣ୍ଡ ସୃଷ୍ଟି ହୋଇଛି । ଇତିହାସରେ ନଳିତାପାଟିଆ ଏକ ପ୍ରାଚୀନ ନଦୀ ବନ୍ଦର ଭାବେ ପରିଚିତ ଥିଲା ଏବଂ ଏଠାରେ ଏକ ବାଣିଜ୍ୟିକ ଜେଠି ରହିଛି ।

ସେତେବେଳକୁ ସୂର୍ଯ୍ୟ ମୁଣ୍ଡ ଉପରେ । ନଳିତାପାଟିଆ ଜେଟିରେ ଗୋଟିଏ ମାଲ୍‌ବୋଝେଇ ଲଞ୍ଚ୍ ସଜସଜ ଲାଗିଥାଏ । ଖଲାସିମାନେ ଲଞ୍ଚରୁ ମାଲ୍ ଅନ୍‌ଲୋଡ୍ କରୁଥାନ୍ତି । ନଳିତପାଟିଆ ଗଣ୍ଡରେ



**ପ୍ରାଚୀନ ନଦୀ ବନ୍ଦର ନଳିତାପାଟିଆ: ଏଠାରେ ଆଜିର ଦିନରେ ବି ଚାଲିଛି ନଦୀ ମାଧ୍ୟମରେ ମାଲ୍ ପରିବହନ**



**ନଳିତାପାଟିଆ ଜେଟିରେ ଲେଖକ**

ନେଳି ରଙ୍ଗର ପାଣି ଭଉଁରୀ ଖେଳୁଥାଏ । ଆଜିର ଦିନରେ ବି ଜଳପଥରେ ବେପାର, ବଣିଜ ଚାଲିଛି ଏବଂ ନଦୀ ମାଧ୍ୟମରେ ଟନ୍ ଟନ୍ ପଣ୍ୟଦ୍ରବ୍ୟ ପରିବହନ ହୋଇପାରୁଛି ଦେଖି ଖୁସିରେ ଆତ୍ମହରା ହୋଇଉଠିଲୁ ! ଆମର ଅତୀତ ନୌବାଣିଜ୍ୟ ସ୍ମୃତି ଖୁବ୍ ସତେଜ ହୋଇଉଠିଲା ।

ଗୋଟିଏ ଡିସେମ୍ବର ମାସର ଶୀତୁଆ ଓ କୁହୁଡ଼ିଘେରା ସକାଳୁ ଆମେ କେନ୍ଦ୍ରାପଡ଼ାରୁ ବାହାରିଲୁ । କେନ୍ଦ୍ରାପଡ଼ାରୁ ପଟ୍ଟାମୁଣ୍ଡାଇ, ରାଜନଗର ଦେଇ ତାଙ୍ଗମାଳର ନଳିତାପାଟିଆ ଜେଟି ନିକଟରେ ପହଞ୍ଚିଲାବେଳକୁ କୁହୁଡ଼ି ଆକାଶରୁ ହଟି ଯାଇଥିଲା ।

କେନ୍ଦ୍ରାପଡ଼ା ଜିଲ୍ଲା ରାଜନଗର ବ୍ଲକ୍‌ର ଏକ ବହୁ ପ୍ରସିଦ୍ଧ ଏବଂ ବହୁ ପ୍ରାଚୀନ ଗାଁ ଭାବେ ନଳିତାପାଟିଆର ପ୍ରସିଦ୍ଧି ରହିଛି । ନଳିତାପାଟିଆଟି ଅତୀତରେ ଏକ ନଦୀ ବନ୍ଦର ଭାବେ ଖୁବ୍ ପରିଚିତ ଥିଲା । ଏହି ସ୍ଥାନରେ ରାଜନଗର ଆଡୁ ବହି ଆସିଥିବା ବ୍ରାହ୍ମଣୀ ଏବଂ ଚାନ୍ଦବାଲି ଆଡୁ ଆସିଥିବା ବୈତରଣୀ ମିଳିତ ହୋଇଛନ୍ତି । ଉଭୟ ନଦୀର ରାଶିରାଶି ପାଣିରେ ଏଠାରେ ଏକ ବିସ୍ତୀର୍ଣ୍ଣ ଓ ଗଭୀର ଗଣ୍ଡ ସୃଷ୍ଟି ହୋଇଛି ।

ଅତୀତରେ ନଳିତାପାଟିଆ ଜେଟି/ନଳିତାପାଟିଆ ପଣ୍ୟ ପରିବହନ ଘାଟଟି ଉଭୟ ଅବିଭକ୍ତ କଟକ ଓ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ମଧ୍ୟରେ ଏକ ଉତ୍ତମ ଯୋଗାଯୋଗର ମାଧ୍ୟମ ପାଲଟିଥିଲା । ନଳିତାପାଟିଆ ବନ୍ଦର ଦେଇ ତତ୍କାଳୀନ କନିକା ରାଜ୍ୟର ନୌବାଣିଜ୍ୟ କାରବାର ଚାଲିଥିଲା । ଦ୍ୱାଦଶ ଶତାବ୍ଦୀରେ ଭଞ୍ଜ ରାଜବଂଶର ଉତ୍‌ଥାନ କାଳର ବହୁ ପୂର୍ବରୁ ଏବଂ ଏହାର ବହୁ ପରେ ମଧ୍ୟ ଏହା ଏକ ପ୍ରମୁଖ ନଦୀ ବନ୍ଦରର ମାନ୍ୟତା ବଜାୟ ରଖିପାରିଥିଲା । ଏଠାରୁ କନିକା ଅଞ୍ଚଳରୁ ଧାନ, ଲୁଣ, ମୁଗ, ବିରି ଆଦି ପଣ୍ୟଦ୍ରବ୍ୟ ଚାନ୍ଦବାଲି, ତାଳଚୁଆ ଓ ଧାମରା ବନ୍ଦରରେ ପହଞ୍ଚୁଥିଲା । ପରେ ଏଠାରୁ ଦେଶବିଦେଶକୁ ରପ୍ତାନୀ କରାଯାଉଥିଲା ।

ଆଜିର ଦିନରେ ସଡ଼କ ପରିବହନର ବ୍ୟାପକ ବିକାଶ ଘଟିଥିଲେ ମଧ୍ୟ ନଳିତାପାଟିଆ ବନ୍ଦରଟି ତାର ସ୍ୱାତନ୍ତ୍ର୍ୟ ହରାଇନାହିଁ । ଏଠାରେ ଥିବା ଜେଟି ଓ ଡଙ୍ଗାଘାଟ ଏହି ନଦୀବନ୍ଦରର ପ୍ରାଚୀନତାର ପ୍ରମାଣ ଦେଇଥାଏ । ରାଜନଗର ପଟୁ ବ୍ରାହ୍ମଣୀ, ଖରସ୍ରୋତା, ହଂସୁଆ, ହଂସିଣା ଆଦି ନଦୀ ବାଟେ ପର୍ଯ୍ୟଟକମାନେ ଆସି ନଳିତାପାଟିଆ ଘାଟରେ ଓହ୍ଲାଇ ମାତ୍ର ଏକ କିଲୋମିଟର ସ୍ଥଳପଥରେ ନଳିତାପାଟିଆ ଗାଁ ଦେଇ ଚାଲିଚାଲି ଗଲେ ଡାଙ୍ଗମାଳ ଓ ଭିତରକନିକା ଅଭୟାରଣ୍ୟରେ ପହଞ୍ଚିଥାନ୍ତି । ଅପରପକ୍ଷେ, ଚାନ୍ଦବାଲି ପଟୁ ମୋଟର ଲଞ୍ଚରେ ବୈତରଣୀ ନଦୀ ଦେଇ ଆସୁଥିବା ପର୍ଯ୍ୟଟକ ଓ ଯାତ୍ରୀମାନେ ନଳିତାପାଟିଆରେ ପହଞ୍ଚି ବ୍ରାହ୍ମଣୀ ନଦୀକୁ ପ୍ରବେଶ କରନ୍ତି ଏବଂ ପରେ ଖୋଲା ନଦୀ ଦେଇ ଭିତରକନିକା ଜାତୀୟ ଅଭୟାରଣ୍ୟରେ ପହଞ୍ଚିଥା'ନ୍ତି ।



ପ୍ରାଚୀନ ନଳିତାପାଟିଆ ନଦୀ ବନ୍ଦର

ନଳିତାପାଟିଆ ନିକଟବର୍ତ୍ତୀ ଗ୍ରାମଗୁଡିକ ମଧ୍ୟରେ ବାଘୁଆ, ବଣଘରିଆ, ବାଙ୍କୁଆଳ, ଡାଙ୍ଗମାଳ, ଦୁର୍ଗାପ୍ରସାଦଡିଆ, ଗୋବିନ୍ଦପୁର, କମଳପୁର, ଜନକନଗର, କଣ୍ଟି ଆଖୋଲ, ଖମାରସାହି, କୃଷ୍ଣନଗର, ପିଚ୍ଛପାଟିଆ, ବଡ଼ଡିଆ, ରାଧାମାଳିପୁର, ରଗଡ଼ାପାଟିଆ, ରାଜେନ୍ଦ୍ରନଗର, ରାଜେଶ୍ୱରୀନଗର, ଶୈଳେନ୍ଦ୍ରନଗର, ସାରଦାପ୍ରସାଦ, ସୁବର୍ଣ୍ଣପୁର, ତ୍ରିଲୋଚନପୁର, ଅର୍ଜ୍ଜୁନପୁର, ବଳରାମପୁର, ବରପାଳ, ବରୁଣ, ବାଉଁଶକଣି, ଭିତରଗଡ଼, ବିନିଶନଗର, ବିଷ୍ଣୁପଦା, ବ୍ରାହ୍ମଣୀଖୋଲ, ଖୁଣ୍ଟକଟା, ଲକ୍ଷ୍ମୀନାରାୟଣପୁର, ମଧୁପୁର, ନଳଜୋରି, ନେଥୁରିଆ, ଚାରିପୋଖରିଆ, ଦିବାକରପୁର, ଗୋପୀନାଥପୁର, ଗୋଠଖୋଲ, ହଁସୁଆ, ହଁସିଣା, ହଁସିଣାଡିଆ, ହାତିଆଗଡି, ହେଟାଖୋଲ,



ନଳିତାପାଟିଆରେ ଲେଖକ

ପଦ୍ମଲାଭପୁର, ଶଙ୍ଖମଠପେଟା, ଶିଳପୋଖରୀ, ଶ୍ରୀବନ୍ତପୁର, ଉଗଳସନ୍ଧା, ବନ୍ଧପଡା, ଚକିବାଙ୍କ, ଦକ୍ଷିଣଦାଣ୍ଡି, ଫିରିକିଦାଣ୍ଡି, ଗୋବିନ୍ଦପୁର, ଖଣ୍ଡେଇପଡା, ମଧ୍ୟପଡା, ସଛପଡା, ବଡ଼କୁଜି, ବଢ଼ି, ଭାଟସାହି, ବିକେଇକଣି, ଚିଞ୍ଚିରି, ଡେରା, ଧୋବେଇଗଡ଼, ଗୋଖଣି, ହାତିନା, କଇଁଥ, ଜଉଡିଆ, ଜୁନୁପଙ୍କା, ଖଣ୍ଡିଓରା, ଲୁଣିଆ, ମୁଗକଣି, ନୂଆଗାଁ, ନୂଆପୋଖରୀ, ସନ୍ଧାକଣି, ପାନକୁଜି, ତେଇଶିମୌଜା ଆଦି ଗ୍ରାମର ଲୋକେ ନଳିତାପାଟିଆ ବନ୍ଦର ଉପରେ ନିର୍ଭର କରି ବାଣିଜ୍ୟ କାରବାର କରିଆସୁଥିଲେ । ଏବେ ବି ଏହି ଗାଁର ଲୋକମାନଙ୍କ ମଧ୍ୟରେ ନଳିତାପାଟିଆ ନଦୀବନ୍ଦରକୁ ନେଇ ଅନେକ ସ୍ମରଣୀୟ

ଅନୁଭୂତି ଶୁଣିବାକୁ ମିଳିଥାଏ । ଏହିସବୁ ଗାଁମାନଙ୍କରୁ ସଂଗୃହୀତ ଧାନ, ଚାଉଳ, ମୁଗ, ବିରି ନଳିତାପାଟିଆ ଜେଟିରେ ପହଞ୍ଚିବାପରେ ଏସବୁକୁ ଧାମରାକୁ ନିଆଯାଏ । ପରେ ଦୂର ଦେଶବିଦେଶକୁ ରପ୍ତାନୀ କରାଯାଇଥାଏ । ଏସବୁ ଆଜି ଅତୀତ ହୋଇଥିଲେ ମଧ୍ୟ ନଳିତାପାଟିଆ ଜେଟି ଅତୀତର ଅନେକ ସ୍ମୃତି ବହନ କରି ନିରବରେ ଠିଆ ହୋଇଛି ।

[ତଥ୍ୟ ସହାୟତା :

ଗଣେଶ ଗୁଡ଼ିଆ, ସମିତିସଭ୍ୟ, ତାଳଚୁଆ ଓ ସନାତନ ପରିଡ଼ା, ତାଳଚୁଆ

ନରୋତ୍ତମ ବିଶ୍ୱାଳ, ଓ୍ୱାଚ୍‌ମ୍ୟାନ୍, ଡାଙ୍ଗମାଳ ଫରେଷ୍ଟ ରେଞ୍ଜ ଅଫିସ୍]

## ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ଅଞ୍ଚଳର ପ୍ରସିଦ୍ଧ ହେନ୍ତାଳ ଜଙ୍ଗଲ

*(Rare Mangrove Forest of Baitaranee-Brahmanee Delta Area)*

ଆମାଜନ୍ ଅବବାହିକା ଅଞ୍ଚଳ ଏବଂ ଗଙ୍ଗା ନଦୀ ତ୍ରିକୋଣଭୂମି ଅଞ୍ଚଳରେ ଥିବା ହେନ୍ତାଳ ଜଙ୍ଗଲ ଭଳି ଓଡ଼ିଶାର ବୈତରଣୀ-ବ୍ରାହ୍ମଣୀ ନଦୀ ମୁହାଣ ଅଞ୍ଚଳର ହେନ୍ତାଳ ଜଙ୍ଗଲ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଛି । ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ଅଞ୍ଚଳ କୁହାଯାଉଥିବା କେନ୍ଦ୍ରାପଡ଼ା ଜିଲ୍ଲାର

ବୈତରଣୀ ଅବବାହିକାର ବିଶ୍ୱପ୍ରସିଦ୍ଧ ହେନ୍ତାଳବଣ





ଭିତରକନିକାରେ ଲେଖକ

ଭିତରକନିକା, କାଳିଭଞ୍ଜଡ଼ିହା ହେନ୍ତାଳବଣ ଓ ଏଠାକାର ଜୈବ ବିବିଧତା ବିଶ୍ୱପ୍ରସିଦ୍ଧ । ଏହି ହେନ୍ତାଳ ଜଙ୍ଗଲରେ ଓରୁଅ, କେରୁଅ, କେଉଡ଼ା, ଜେଉଟ, ସୁନାରି, ହେନ୍ତାଳ, ବନୀ, ବଣିଆ, ସୁନ୍ଦରୀ, ରୁଅ, ଗରାଣ୍ଡି, ଅସନ, ଇଠା, ପିତାମାରି, ଜନ୍ଦାଖାଇ ଭଳି ୭୨ ପ୍ରକାର ଗଛ ଓ ୬୪ ପ୍ରକାର ଔଷଧୀୟ ବୃକ୍ଷ ଦେଖିବାକୁ ମିଳିଥାଏ ।

ଏହି ସନ୍ତସନ୍ତିଆ ଜଙ୍ଗଲ ମଧ୍ୟ ଦେଇ ପ୍ରବାହିତ ନଦୀମାନଙ୍କରେ ବଉଳା, ଧଳା ଶଙ୍ଖୁଆ କୁମ୍ଭୀର, ସାମୁଦ୍ରିକ ସାପ, ଡଲ୍‌ଫିନ୍, ନାନା ପ୍ରକାର ସାମୁଦ୍ରିକ ମାଛ, କଙ୍କଡା ଭଳି ୨୧୫ ପ୍ରଜାତିର ଜୀବଜନ୍ତୁ ଦେଖିବାକୁ ମିଳନ୍ତି । ଏହା ବ୍ୟତୀତ ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ହେନ୍ତାଳ ଜଙ୍ଗଲରେ ଚିତାବାଘ, ବାର୍ହା, କଟାସ, ବଣବିଲେଇ, ସମ୍ବର, କୃଷ୍ଣସାର ମୃଗ, ଚିତ୍ରା ହରିଣ, ଝିଙ୍କ, ବଣ ଓଧ, ଅଜଗର ଭଳି ନାନା ପ୍ରକାର ଜୀବଜନ୍ତୁ ଏବଂ ବଗ, ବ୍ରାହ୍ମଣୀ ବତକ, ହଂସରାଳି, ଚା' ଚଢ଼େଇ, ପାଣିକୋଇଲି, ପେଲିକାନ୍ ଭଳି ବହୁ ବିଦେଶାଗତ ପକ୍ଷୀ ଦେଖିବାକୁ ମିଳନ୍ତି ।




ପୃଥିବୀ ପ୍ରସିଦ୍ଧ ଭିତର କନିକା ଜାତୀୟ ଅଭୟାରଣ୍ୟ, କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳ ବୈତରଣୀ-ବ୍ରାହ୍ମଣୀ ନଦୀର ତ୍ରିକୋଣଭୂମି ଅଞ୍ଚଳରେ ଅବସ୍ଥିତ ।




୧୯୭୫ ମସିହାରେ 'ଭିତରକନିକା ବନ୍ୟଜନ୍ତୁ ଅଭୟାରଣ୍ୟ' *(wild life sanctuary)* ପ୍ରତିଷ୍ଠା କରାଯାଇଥିଲା ଏବଂ ୧୯୮୮ ମସିହାରେ ଏହାକୁ 'ଜାତୀୟ ଉଦ୍ୟାନ' *(National Park)* ଭାବେ ଘୋଷଣା କରାଯାଇଥିଲା । ଭିତରକନିକା ଅଭୟାରଣ୍ୟର ଏକ ଅଂଶବିଶେଷ ଭାବେ 'ଡାଙ୍ଗମାଳ' ଖ୍ୟାତ । ୧୯୭୫ ମସିହାରୁ ଏଠାରେ ଲୁଣିପାଣି ବଉଳା କୁଂଭୀର ଓ ସାମୁଦ୍ରିକ କଇଁଛ ଅଲିଭ୍ ରିଡ୍‌ଲେଙ୍କ ସଂରକ୍ଷଣ ପାଇଁ ଉଚ୍ଚତର ଗବେଷଣାର ବ୍ୟବସ୍ଥା କରାଯାଇଛି ।

ରାଜତନ୍ତ୍ର ତଥା ଜମିଦାରି ପ୍ରଥା ଉଚ୍ଛେଦ ପର୍ଯ୍ୟନ୍ତ 'ଭିତର କନିକା' ଜଙ୍ଗଲଟି କନିକା ରାଜାଙ୍କର ଏକ ପ୍ରମୋଦ ଉଦ୍ୟାନ ଥିଲା । ଏଠାରେ କନିକା ରାଜାଙ୍କର ଉଆସ ଓ ଶିକାରକୋଠି ନିର୍ମିତ ହୋଇଥିଲା । ଇଂରେଜ ଶାସନ କାଳରେ ଓଡ଼ିଶାକୁ ଆସୁଥିବା ତତ୍‌କାଳୀନ ବହୁ ୟୁରୋପୀୟ ଅଫିସର, ଭାରତୀୟ ଉଚ୍ଚ ସରକାରୀ କର୍ମଚାରୀ, ରାଜା, ମହାରାଜା କନିକା ରାଜାଙ୍କର ଆତିଥ୍ୟ ଗ୍ରହଣ କରି ଭିତରକନିକା ଅରଣ୍ୟରେ ପାରିଧି (ଶିକାର) କରିବା ଏକ ରାଜକୀୟ ପରଂପରାରେ ପରିଣତ ହୋଇଥିଲା । ଏହି ଶିକାରର ଫଳସ୍ୱରୂପ ଆଜି ବି କନିକା ରାଜବାଟିରେ ହାତୀର କଙ୍କାଳ, ଅନେକ ବାଘ ଛାଲ, କୁଂଭୀର କଙ୍କାଳ ଆଦି ଦେଖିବାକୁ ମିଳିଥାଏ । ଅପରପକ୍ଷେ, ବିଦ୍ରୋହୀ ପ୍ରଜା ଓ ପରାଜିତ ରାଜାଙ୍କୁ ସଜା (ଦଣ୍ଡ) ଦେବା ଉଦ୍ଦେଶ୍ୟରେ କନିକା ରାଜାଙ୍କ ପକ୍ଷରୁ ଭିତର କନିକାର ଏହି ଘଞ୍ଚ ଜଙ୍ଗଲରେ କାରାଗାର ମଧ୍ୟ ନିର୍ମାଣ କରାଯାଇଥିଲା ।

## ପ୍ରସିଦ୍ଧ କାଳିଭଞ୍ଜଡ଼ିହା ଜଙ୍ଗଲ

*(Kalibhanjadia Island)*

କାଳିଭଞ୍ଜଡ଼ିହା ଦ୍ୱୀପାଞ୍ଚଳ ସଂପର୍କରେ ମୁଁ ଏହି ବହିର ମୁଖବନ୍ଧରେ ସବିଶେଷ ଅନୁଭୂତି ବର୍ଣ୍ଣନା କରିସାରିଛି । ଏଠାରେ ପୁନର୍ଲିଖନର ଆଉ ଆବଶ୍ୟକତା ନାହିଁ ।

କେନ୍ଦ୍ରାପଡ଼ା ଜିଲ୍ଲାର ଭିତରକନିକା ଜାତୀୟ ଉଦ୍ୟାନ ଓ ତାଳଚୁଆ-ଧାମରା ସନ୍ନିକଟ ବୈତରଣୀ ନଦୀର ମଧ୍ୟ ଭାଗରେ ଥିବା ଏକ ବିଶାଳ ହେନ୍ତାଳ ଜଙ୍ଗଲପୂର୍ଣ୍ଣ ସ୍ଥଳ ଭାଗ (ଦ୍ୱୀପ) କାଳିଭଞ୍ଜଡ଼ିଆ ଭାବେ ପରିଚିତ । କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳରେ ପୃଥିବୀର ଭୟଙ୍କର ବିଷଧର ସର୍ପମାନେ ବାସ




କରନ୍ତି । ଭାରତ ତଥା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସାପୁଆ କେଳାମାନେ ସାପ ଧରିବାକୁ ଏଠାକୁ ଆସିଥା'ନ୍ତି । ବିଶେଷକରି ଭୁବନେଶ୍ୱର ନିକଟସ୍ଥ ପଟିଆ-ପଦ୍ମକେଶରୀପୁର ଗ୍ରାମର ସାପୁଆ କେଳାମାନେ କାଳିଭଞ୍ଜଡ଼ିଆ ଜଙ୍ଗଲରୁ ବିଷଧର ସାପମାନ ଧରି ଓଡ଼ିଶାର ଗ୍ରାମାଞ୍ଚଳରେ ସାପ ଖେଳ ଦେଖାଇ ନିଜର ଜୀବିକା ନିର୍ବାହ କରିଥା'ନ୍ତି ।

ଚାନ୍ଦବାଲିରୁ ତାଳଚୁଆ ଓ ଧାମରା ଯିବା ପଥ (ଜଳପଥ)ରେ ବୈତରଣୀ ଓ ବ୍ରାହ୍ମଣୀ ନଦୀର ମିଳନ ସ୍ଥଳ ପ୍ରସିଦ୍ଧ ନଳିତାପାଟିଆରୁ କିଛି ବାଟ ଆଗକୁ ଗଲେ ଏହି ବୈତରଣୀ-ବ୍ରାହ୍ମଣୀ ନଦୀଦ୍ୱୟର



**କାଳିଭଞ୍ଜଡିହା ଦ୍ୱୀପରେ ଲେଖକ**

ମିଳିତ ସ୍ରୋତ ପୁନର୍ବାର ଏକ ସ୍ଥଳଭାଗ ଦ୍ୱାରା ବିଭାଜିତ ହୋଇଛି । ନଳିତାପାଟିଆର କିଛି ବାଟ ଆଗକୁ ବୈତରଣୀ-ବ୍ରାହ୍ମଣୀ ଗତି କରିବା ପରେ ଏମାନଙ୍କ ଗର୍ଭରେ ଏକ ଘଞ୍ଚ ଜଙ୍ଗଲପୂର୍ଣ୍ଣ ଦ୍ୱୀପାଞ୍ଚଳ ରହିଛି । ଏହା ହିଁ କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳ *(Kalibhanjadia Island)* । ନଳିତାପାଟିଆଠାରେ ବୈତରଣୀ-ବ୍ରାହ୍ମଣୀ ମିଳିତ ହୋଇଯିବା ପରେ ଏମାନଙ୍କର ମିଳିତ ସ୍ରୋତ କିଛିବାଟ ଆଗକୁ ପ୍ରବାହିତ ହୋଇ କାଳିଭଞ୍ଜଡିଆ ଦ୍ୱୀପାଞ୍ଚଳ ପୁନର୍ବାର ଏହି ନଦୀକୁ ଦୁଇଟି ସ୍ରୋତରେ ବିଭକ୍ତ କରିଛି । ନଳିତାପାଟିଆଠାରୁ ବ୍ରାହ୍ମଣ-ବୈତରଣୀର ମିଳିତ ସ୍ରୋତଟି ବୈତରଣୀ ନଦୀ ଭାବେ ପରିଚିତ ହୋଇଛି ।

କାଳିଭଞ୍ଜଡ଼ିଆର ଗୋଟିଏ ପାର୍ଶ୍ୱରେ ବୈତରଣୀର ଗୋଟିଏ ସ୍ରୋତ ପ୍ରବାହିତ ହୋଇ ଧାମରା ନଦୀ ନାମରେ ପରିଚିତ ହୋଇଥିବାବେଳେ ଅନ୍ୟ ପାର୍ଶ୍ୱରେ ଗୋଟିଏ ସ୍ରୋତ ତାଳଚୁଆ ନଦୀ ଭାବେ ପରିଚିତ ହୋଇଛି । ଯେଉଁଠି କାଳିଭଞ୍ଜଡ଼ିଆ ଦ୍ୱୀପାଞ୍ଚଳ ଶେଷ ହୋଇଛି ପୁନର୍ବାର ବୈତରଣୀର ଏହି ଦୁଇଟି ସ୍ରୋତ (ଧାମରା ଓ ତାଳଚୁଆ ସ୍ରୋତ) ମିଳିତ ହୋଇ ବଙ୍ଗୋପ ସାଗରରେ ପଡ଼ିଛନ୍ତି ।

କାଳିଭଞ୍ଜଡ଼ିଆ ଜଙ୍ଗଲକୁ ନେଇ କନିକା ଅଞ୍ଚଳରେ ଏକ ରୋମାଞ୍ଚଭରା ଐତିହାସିକ କାହାଣୀ ଶୁଣିବାକୁ ମିଳିଥାଏ । ଭଞ୍ଜ ବଂଶର ୨୧ତମ ରାଜା ନରସିଂହ ଭଞ୍ଜଙ୍କ ରାଣୀଙ୍କ ଗର୍ଭରୁ ଏକ

କୃଷ୍ଣକାୟ ପୁତ୍ର ଜାତ ହୋଇଥିଲେ । ରାଜବଂଶରେ ଏଭଳି ଜଣେ କଳାପୁତ୍ର ଜନ୍ମ ନେବାରୁ ଏହା ଭଞ୍ଜ ରାଜବଂଶ ପାଇଁ ଏକ କଳଙ୍କମୟ ଅଧ୍ୟାୟ ପାଲଟିବ ବୋଲି ମନେକରି ରାଜା ନରସିଂହ ରାଣୀଙ୍କ ଅଜ୍ଞାତସାରରେ କନିକା ସନ୍ନିକଟ ବୈତରଣୀ ନଦୀ ଗର୍ଭରେ ଥିବା ଏକ ବିଶାଳ ଜଙ୍ଗଲ (ନିର୍ଜନ ଦ୍ୱୀପ)କୁ ନେଇ ଘାତକଙ୍କ ଦ୍ୱାରା ଉକ୍ତ ଶିଶୁପୁତ୍ରଙ୍କୁ ହତ୍ୟା କରିଥିଲେ । ପୁତ୍ରକୁ ବାଘ ଖାଇଗଲା ବୋଲି ନିଜେ ରାଜା ପ୍ରଚାର କରିଥିଲେ । ମାତ୍ର ପରେ ଏକଥା ପ୍ରଘଟ ହୋଇଥିଲା ଏବଂ ସତ୍ୟ ଉନ୍ମୋଚିତ ହୋଇଥିଲା । ପୁତ୍ର ବିୟୋଗରେ ରାଣୀ ଗଭୀର ଭାବେ ଭାଙ୍ଗି ପଡ଼ିବା ସହିତ ନିଜ ପୁତ୍ରଙ୍କ ସ୍ମୃତିରେ ସେହି ନିର୍ଜନ ଦ୍ୱୀପରେ ଏକ ସମାଧି ସ୍ଥାପନ କରିଥିଲେ । ସେହିଦିନଠାରୁ ବୈତରଣୀ ନଦୀ ଗର୍ଭରେ ଥିବା ଏହି ଦ୍ୱୀପାଞ୍ଚଳଟି 'କାଳିଭଞ୍ଜଡ଼ିଆ' ନାମରେ ଖ୍ୟାତ ହେଲା ।

କାଳିଭଞ୍ଜଡ଼ିହାରେ ରାଜ୍ୟ ସରକାରଙ୍କ ପକ୍ଷରୁ ଏକ ଫରେଷ୍ଟ ବିଟ୍ ହାଉସ୍ ରହିଛି । ଏଠାରେ ଜଣେ ଫରେଷ୍ଟ ଓ୍ୱାଚ୍‌ମ୍ୟାନ୍ ଓ ଫରେଷ୍ଟ ଗାର୍ଡ ପଦବୀ ରହିଛି । କାଳିଭଞ୍ଜଡ଼ିହା



କାଳିଭଞ୍ଜଡିହା





କାଳିଭଞ୍ଜଡିହା ଦ୍ୱୀପରେ ଲେଖକ

ହେନ୍ତାଳ ବଣରେ ଅହିରାଜ, ଅଜଗର, ରଣା, ନାଗ, ଡଂପ, ଗୋଧି ଓ ବଡ଼ବଡ଼ ବଉଳା କୁମ୍ଭୀର ଦେଖିବାକୁ ମିଳିଥାଏ । ଏହା ବ୍ୟତୀତ କାଳିଭଞ୍ଜଡ଼ିଆ ଦ୍ୱୀପଟି ବଣ ଓଧ, ଠେକୁଆ, ବଣ ବିରାଡ଼ି, ଗଧିଆ, ଚିତାବାଘ, ଠେକୁଆ, ବାର୍ହା, ହରିଣ ଭଳି ଅନେକ ଜଙ୍ଗଲୀ ପଶୁଙ୍କ ଅଭୟାରଣ୍ୟ ଭାବେ ପରିଚିତ । ଏହି ହେନ୍ତାଳ ଜଙ୍ଗଲରେ ଓରୁଅ, କେରୁଅ, କେଉଡ଼ା, ଜେଉଟ, ସୁନାରି, ହେନ୍ତାଳ, ବନୀ, ବଣିଆ, ସୁନ୍ଦରୀ, ରୁଅ, ଗରାଣ୍ଡି, ଅସନ, ଇଠା, ପିତାମାରି, ଜନ୍ଦାଖାଇ ଭଳି ୭୨ ପ୍ରକାର ଜଙ୍ଗଲୀ ଗଛ ଓ ୬୪ ପ୍ରକାର ଔଷଧୀୟ ବୃକ୍ଷ ମଧ୍ୟ ଦେଖିବାକୁ ମିଳିଥାଏ । ଜଙ୍ଗଲ ବିଭାଗର ବିନା ଅନୁମତିରେ ଏହି ଜଙ୍ଗଲ ମଧ୍ୟକୁ ପ୍ରବେଶକୁ ନିଷେଧ କରାଯାଇଛି । ଏଠାକୁ ଆସିବାକୁ ହେଲେ ରାଜନଗର ଫରେଷ୍ଟ ଡିଭିଜନ କାର୍ଯ୍ୟାଳୟରୁ ଅନୁମତି ପ୍ରାପ୍ତ ହେବାକୁ ପଡ଼ିଥାଏ ।





**କାଳିଭଞ୍ଜଡିହା ଦ୍ୱୀପରେ ଲେଖକ**

[ତଥ୍ୟ ସହାୟତା

**ରମାକାନ୍ତ ବେହେରା, କାଳିଭଞ୍ଜଡ଼ିହା ଫରେଷ୍ଟ ଓ୍ୱାଚ୍‌ମ୍ୟାନ୍,**

**ଶ୍ରୀରାମ ମୁର୍ମୁ, କାଳିଭଞ୍ଜଡ଼ିହା ଫରେଷ୍ଟ ଗାର୍ଡ୍**

**ସନାତନ ପରିଡ଼ା, ତାଳଚୁଆ ଏବଂ ଜଗବନ୍ଧୁ ମାଝୀ, ମୋଟର ଲଞ୍ଚ୍ ଚାଳକ, ତାଳଚୁଆ]**

## ଭିତରକନିକା ଅଭୟାରଣ୍ୟ

*(Bhitarkanika Wild Life Sanctuary)*

ବୈତରଣୀ-ବ୍ରାହ୍ମଣୀ ନଦୀ ମୁହାଁଣର ତ୍ରିକୋଣଭୂମି *(delta)* ଅଞ୍ଚଳରେ ଅବସ୍ଥିତ ଭିତର କନିକା ଅଭୟାରଣ୍ୟ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ଭିତରକନିକାର ଲୁଣା ଜଙ୍ଗଲ (ହେନ୍ତାଳବଣ) ପୃଥିବୀର ଦ୍ୱିତୀୟ ବୃହତ୍ତମ ହେନ୍ତାଳ ଜଙ୍ଗଲ ଭାବେ ପରିଚିତ । ୬୭୨ ବର୍ଗ କିଲୋମିଟର ପରିମିତ




ହେନ୍ତାଳ ଜାତୀୟ ବୃକ୍ଷରେ ପରିପୂର୍ଣ୍ଣ ଏହି ଜଙ୍ଗଲଟି ଓଡ଼ିଶାର ପ୍ରଥମ ଅଭୟାରଣ୍ୟ ଏବଂ ପୃଥିବୀର ଦ୍ୱିତୀୟ ବୃହତ୍ତମ ଜାତୀୟ ଉଦ୍ୟାନ ଅଟେ ।

ଭିତରକନିକା ଜାତୀୟ ଉଦ୍ୟାନଟି ତତ୍କାଳୀନ କନିକା ରାଜ୍ୟର ଭିତର (ଆଭ୍ୟନ୍ତର) ଅଂଶରେ ଥିବାରୁ ଏହାର ନାମ ଭିତର କନିକା ହୋଇଛି । ୧୯୫୨ ମସିହା ପର୍ଯ୍ୟନ୍ତ ଏହା ତତ୍କାଳୀନ କନିକା ରାଜାଙ୍କର ମାଲିକାନାରେ ଥିଲା ଏବଂ ୧୯୫୨ ମସିହା ବେଳକୁ ଓଡ଼ିଶାରୁ ଜମିଦାରୀ ପ୍ରଥା ହଟିବା ପରେ ଏହା ରାଜ୍ୟ ସରକାରଙ୍କ ଜଙ୍ଗଲ ବିଭାଗ ଅଧୀନକୁ ଚାଲିଗଲା ।

ଭିତରକନିକାର ଏକ ପାର୍ଶ୍ୱରେ ବଙ୍ଗୋପ ସାଗର ରହିଥିବାବେଳେ ଅନ୍ୟ ତିନି ପାର୍ଶ୍ୱରେ ବୈତରଣୀ, ବ୍ରାହ୍ମଣୀ, ଖରସ୍ରୋତା ଓ ପାଟଶାଳା ଭଳି ଚିରସ୍ରୋତା ନଦୀ ରହିଛି । ଏହି ଅଭୟାରଣ୍ୟଟି ଚାନ୍ଦବାଲି ବନ୍ଦରର ଖୁବ୍ ନିକଟରେ ଅବସ୍ଥିତ । ଚାନ୍ଦବାଲି ଦେଇ ଭିତରକନିକା ପ୍ରାଣୀ ଉଦ୍ୟାନ *(Bhitarkanika Wild Life Sanctuary)* ପର୍ଯ୍ୟଟନସ୍ଥଳକୁ ଯାତାୟତ କରାଯାଇଥାଏ । ଚାନ୍ଦବାଲିରୁ ବୈତରଣୀ ନଦୀ ଦେଇ ଲଞ୍ଚ କିମ୍ବା ଷ୍ଟିମର ଯୋଗେ ଭିତରକନିକା ବନ୍ୟପ୍ରାଣୀ ଉଦ୍ୟାନକୁ ଯିବାକୁ ପଡିଥାଏ । ଯଦିଓ ଭିତରକନିକା ପ୍ରାଣୀ ଉଦ୍ୟାନକୁ କେନ୍ଦ୍ରାପଡ଼ା, ରାଜନଗର, ଗୁପ୍ତି ଦେଇ ଯାତାୟତର ସୁବିଧା ରହିଛି, ତଥାପି ଅଧିକାଂଶ ପର୍ଯ୍ୟଟକ ଚାନ୍ଦବାଲିରୁ ଭୁଟୁଭୁଟି କିମ୍ବା ମୋଟରଲଞ୍ଚ ଯୋଗେ ବୈତରଣୀ ନଦୀ ପଥ ଅତିକ୍ରମ କରି ଭିତରକନିକାରେ ପହଞ୍ଚିଥା'ନ୍ତି ।

ଭିତରକନିକା ହେଉଛି ବୈତରଣୀ, ବ୍ରାହ୍ମଣୀ ଓ ଧାମରା ନଦୀ ମୁହାଁଣରେ ଅବସ୍ଥିତ ଏକ ତ୍ରିକୋଣଭୂମି ଅଞ୍ଚଳ *(delta)* । ଏହି ନଦୀମୁହାଁଣ ତ୍ରିକୋଣଭୂମି ଅଞ୍ଚଳରେ ବ୍ୟାପକ ହେନ୍ତାଳ ବଣ ହିଁ ଭିତରକନିକାର ପରିଚୟ । ଏହି ହେନ୍ତାଳ ଜାତୀୟ ଉଦ୍ଭିଦ *(mangrove)* ସମଗ୍ର ବିଶ୍ୱରେ ଏକ ବିରଳ ପ୍ରଜାତିର ଉଦ୍ଭିଦ ଏବଂ ଆଜିର ଦିନରେ ଏହାର ସୁରକ୍ଷା ଜରୁରୀ ହୋଇପଡିଛି ।

ଭିତରକନିକା ଜାତୀୟ ପ୍ରାଣୀ ଉଦ୍ୟାନ ଲୁଣିପାଣି କୁଂଭୀର (ବଉଳା) ପାଇଁ ପ୍ରସିଦ୍ଧ । ଏଠାରେ କୁଂଭୀର ପ୍ରଜନନ ବ୍ୟବସ୍ଥା ରହିଛି । ଭିତରକନିକାର ଅସଂଖ୍ୟ ନଦୀନାଳରେ ଏହି ଜାତୀୟ କୁଂଭୀର ଦେଖାଯାଆନ୍ତି । ନଈର ମଧୁର ଜଳ ଏବଂ ସମୁଦ୍ରର ଲବଣାକ୍ତ ଜଳର ସଂଗମ ସ୍ଥଳ, ଭିତରକନିକା ମୁହାଁଣ ଅଞ୍ଚଳଟିକୁ ବଉଳା କୁଂଭୀରମାନଙ୍କ ସ୍ୱର୍ଗ ବୋଲି କୁହାଯାଏ । ସନ୍ତସନ୍ତିଆ, କାଦୁଆ ନଈପଠାରେ ରହିବା ପାଇଁ ଏହି କୁଂଭୀରମାନଙ୍କୁ ଉପଯୁକ୍ତ କ୍ଷେତ୍ର ମିଳିଥାଏ ।

ଭିତରକନିକାର ଡାଙ୍ଗମାଳ କୁଂଭୀର ପ୍ରଜନନ କେନ୍ଦ୍ରର ସବୁଠୁ ବଡ଼ ଆକର୍ଷଣ ବିରଳ ଧଳା କୁଂଭୀର 'ଗୋରୀ' ଆଜି ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଛି । ଭିତରକନିକା ଅଭୟାରଣ୍ୟ ଅଞ୍ଚଳରେ ପୃଥିବୀର ସର୍ବବୃହତ୍ ଲୁଣିପାଣି କୁଂଭୀର ଦେଖାଯାଆନ୍ତି । କନିକା ରାଜପ୍ରାସାଦରେ ସଂରକ୍ଷିତ ହୋଇ ରହିଥିବା ଏକ ମୃତ ବଉଳା କୁଂଭୀରର ଖପୁରୀର ମାପ ଅନୁଯାୟୀ, ଏହା ପୃଥିବୀର ସବୁଠୁ ବଡ଼ କୁଂଭୀର ବୋଲି ଆକଳନ କରାଯାଇଛି । ଏହାର ଦୈର୍ଘ୍ୟ ୨୩ ଫୁଟ୍ ବା ୭ ମିଟର ବୋଲି କୁହାଯାଉଛି । ଏହି ବିଶାଳ କୁଂଭୀରକୁ ତତ୍କାଳୀନ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ୧୯୨୬ ମସିହାରେ ଧାମରା ମୁହାଁଣରୁ ଶିକାର କରିଥିଲେ ଏବଂ ଏହାର ଖପୁରୀକୁ ନିଜ ରାଜପ୍ରାସାଦରେ ସଂରକ୍ଷିତ କରି ରଖିଥିଲେ ।

ଏକଦା ଭିତରକନିକା ଭଞ୍ଜବଂଶୀୟ ରାଜାମାନଙ୍କର ଏକ ଦୁର୍ଗମ ଦୁର୍ଗ ସଦୃଶ ନିରାପଦ ସ୍ଥାନ



ଭିତରକନିକାର ଖୋଳାନଦୀ

ଥିଲା । ଏହାର ଏକପାଖରେ ବଙ୍ଗୋପସାଗର ଧାମରା ମୁହାଁଣଠାରୁ ଆରଂଭ କରି ଗହୀରମଥା ସମୁଦ୍ର ବେଳାଭୂମି ଲମ୍ବିଯାଇଛି । ଏହି ଭିତରକନିକା ଜଙ୍ଗଲଟି ହେନ୍ତାଳବଣରେ ପରିପୂର୍ଣ୍ଣ ହୋଇଥିବାବେଳେ ନାନା ପ୍ରଜାତିର କୁଂଭୀର ଓ ଅନ୍ୟାନ୍ୟ ହିଂସ୍ରଜନ୍ତୁରେ ପରିପୂର୍ଣ୍ଣ ହୋଇଥିବାରୁ ସେତେବେଳେ କନିକା ରାଜାଙ୍କ ପାଇଁ ଏହା ଏକ ପ୍ରାକୃତିକ ପ୍ରାଚୀର ସଦୃଶ ଗଡ଼କୁ ରକ୍ଷା କରିବାରେ ସହାୟକ ହେଉଥିଲା । କନିକାଠାରେ ରାଜାଙ୍କର ବାହ୍ୟ ରାଜପ୍ରାସାଦ ଥିଲେ ମଧ୍ୟ ଏହି ଭିତରକନିକାକୁ ରାଜା ତାଙ୍କର ଗୁପ୍ତ ମନ୍ତ୍ରଣାସ୍ଥଳ ଭାବେ ଭିତର ରାଜ୍ୟର ମାନ୍ୟତା ଦେଇଥିଲେ । ଏଠାରେ ରାଜା ନିଜର ଦୁର୍ଗ ସ୍ଥାପନ କରି ବାହ୍ୟଶତ୍ରୁଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ । ଭିତରକନିକା ରାଜାଙ୍କର ଏକ ମନୋରମ







(ଉପରୁ) ଭିତରକନିକାର ପ୍ରସିଦ୍ଧ ଧଳା କୁମ୍ଭୀର 'ଗୋରୀ' ଓ ଅନ୍ୟ କୁଂଭୀର

ପାରିଧି (ଶିକାର ସ୍ଥଳ) ଥିଲା ।

ଦ୍ୱାଦଶ ଶତାବ୍ଦୀ ବେଳକୁ ଭିତର କନିକା ଭଞ୍ଜ ରାଜବଂଶର ରାଜଧାନୀ ଥିଲା । ଭିତର କନିକାରେ ପ୍ରଥମ ଭଂଜବଂଶୀ ରାଜା ଭୁଜବଳ ଭଞ୍ଜ ଯେଉଁ ସ୍ଥାନରେ ରାଜଉଆସ ନିର୍ମାଣ କରିଥିଲେ ତା' ନିକଟରେ ପୁଷ୍କରିଣୀ, ଫଳ ଓ ଫୁଲର ଉଦ୍ୟାନ ନିର୍ମାଣ କରିଥିଲେ । ସମୁଦ୍ରର ଲୁଣା ଜଳ ମାଟି ନ ଆସିବାକୁ ରାଜା ସୁନ୍ଦରୀ, ବନୀ, ପିଷ୍ଟା, ଗୁଆଁ, ହେନ୍ତାଳ ଆଦି ବନ୍ୟ ବୃକ୍ଷ ରୋପଣ କରିଥିଲେ । ଲୁଣା ଜଳରେ ଏହି ବୃକ୍ଷ ଭଲ ଭାବେ ବଢିବା ସହ ଘଞ୍ଚ ଜଙ୍ଗଲ ସୃଷ୍ଟି କରିଥିଲା ଏବଂ ଏହି ଅରଣ୍ୟ ରାଜ୍ୟକୁ ବାହ୍ୟ ଶତ୍ରୁ ଏବଂ ଲୁଣା ଢେଉରୁ ରକ୍ଷା କରୁଥିଲା ।

ଭିତରକନିକାରେ ଥିବା **ନାୟକବାବୁ ମନ୍ଦିର** ନିକଟରେ ରାଜାଙ୍କ ଶିକାର କରିବା ପାଇଁ ଏକ ବିହାର ନିର୍ମାଣ କରାଯାଇଥିଲା । ବ୍ରିଟିଶ୍ ସରକାର ଯେତେବେଳେ କନିକା ଉପରେ ଆକ୍ରମଣ କରିଥିଲା, ସେହି ସମୟରେ ବ୍ରିଟିଶ ସେନାର ମୁକାବିଲା କରି ନପାରି ନିଜର ଆତ୍ମରକ୍ଷା ପାଇଁ ରାଜା ବଳଭଦ୍ର ଭଞ୍ଜ ଏହି ଭିତରକନିକାର ଘଞ୍ଚ ଅରଣ୍ୟରେ ଥିବା ଗୁପ୍ତ ରାଜବାଟିରେ ଆତ୍ମଗୋପନ କରିଥିଲେ ବୋଲି ଇତିହାସ ରହିଛି । ଆହୁରି ମଧ୍ୟ ଭିତରକନିକାରେ ଏକ ବନ୍ଦୀଶାଳା ଥିଲା । ଏଠାରେ ଶତ୍ରୁପକ୍ଷ ଓ ରାଜଦ୍ରୋହୀମାନଙ୍କୁ ବନ୍ଦୀ କରାଯାଇ ରଖାଯାଉଥିଲା ।

୧୯୫୨ ମସିହାରେ କନିକା ଜମିଦାରୀ ଉଚ୍ଛେଦ ହେବା ପର୍ଯ୍ୟନ୍ତ ଏହା କନିକା ରାଜବଂଶର ପାରିଧି (ଶିକାର) ପାଇଁ ବ୍ୟବହାର ହେଉଥିଲା । ଶିକାର ପାଇଁ ଏଠାରେ ରାଜାଙ୍କର ଏକ ବିହାର ନିର୍ମିତ ହୋଇଥିଲା । ଆଜିର ଦିନରେ ବି ରାଜାଙ୍କ ଶିକାର କୋଠିର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଏହା ସତ୍ତ୍ୱେ ମଧ୍ୟ ଏ ଜଙ୍ଗଲର ସୁରକ୍ଷା ନିମନ୍ତେ ସେତେବେଳେ କନିକା ରାଜାଙ୍କର ଜଙ୍ଗଲ ଆଇନ୍ ପ୍ରଚଳନ ଥିଲା ।

ଭିତରକନିକାର ହେନ୍ତାଳ ଜଙ୍ଗଲର ସୁରକ୍ଷା ପାଇଁ ଉଭୟ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ପକ୍ଷରୁ ନାନା ପ୍ରକାର କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ମାତ୍ର ଏହା କାର୍ଯ୍ୟକାରୀ ହୋଇପାରୁ ନଥିବାରୁ ଏ ଜଙ୍ଗଲ ଏବେ ଅବକ୍ଷୟମୁଖୀ ହୋଇପଡିଛି । ୧୯୭୫ ମସିହାରେ ଭିତରକନିକା ଜଙ୍ଗଲକୁ ପ୍ରାଣୀ ଉଦ୍ୟାନ *(Bhitarkanika Wild Life Sanctuary)* ଭାବେ ଘୋଷଣା କରାଯାଇଥିଲା । ୧୯୯୮ ମସିହାରେ କେନ୍ଦ୍ର ସରକାର ଏହାକୁ ଜାତୀୟ ଅଭୟାରଣ୍ୟ *(Bhitarkanika National Park)* ରୂପେ ଘୋଷଣା କରିଥିଲେ । ସେହିବର୍ଷ ଭିତରକନିକା ଅଭୟାରଣ୍ୟସ୍ଥିତ ଡାଙ୍ଗମାଳଠାରେ ବିରଳ ଜାତୀୟ ବଉଳା କୁମ୍ଭୀର ଗବେଷଣା ଓ ସଂରକ୍ଷଣ ପ୍ରକଳ୍ପ ଆରମ୍ଭ ହେଲା ।

ଭିତରକନିକାର ହେନ୍ତାଳ ଜଙ୍ଗଲରେ ହେନ୍ତାଳ, ବରୁଆଁ, ଧଳାବନୀ, ପାଣିଆମ୍ବ, ସିଙ୍ଗଡ଼ା, ରାଇ,

ଓରୁଅ, କେରୁଆଁ, ଗୁଆଁ, ଚୁରଢା, ପିତାମାରି, ବନୀ, ଶିଶୁମାର ଓ ସୁନ୍ଦରୀ ଭଳି ଅନେକ ଜଙ୍ଗଲୀ ବୃକ୍ଷ ଦେଖାଯାଏ । ସେହିଭଳି ଭିତରକନିକା ଜଙ୍ଗଲରେ ନାନା ରଙ୍ଗବେରଙ୍ଗର ଦେଶୀ ଓ ବିଦେଶାଗତ ପକ୍ଷୀମାନେ ନିର୍ଭୟରେ ବାସ କରିଥା'ନ୍ତି । ପ୍ରତିବର୍ଷ ଲକ୍ଷାଧିକ ସଂଖ୍ୟାରେ ବିଦେଶୀ ପକ୍ଷୀମାନେ ଏଠାକୁ ଆସିଥା'ନ୍ତି । ଏହାକୁ ଲକ୍ଷ୍ୟ କରି ସରକାର ଭିତରକନିକା ଅଭୟାରଣ୍ୟକୁ **'ବିହଙ୍ଗ ବିହାର'** ରୂପେ ଘୋଷଣା କରିଛନ୍ତି । ଶୀତଦିଦେ ହଜାର ହଜାର କିଲୋମିଟର ପଥ ଅତିକ୍ରମ କରି ସୁଦୂର ସାଇବେରିଆର ତୁନ୍ଦ୍ରା, କାସ୍ପିଆନ୍ ସାଗର, ହଙ୍ଗେରୀ, କେନ୍ଦ୍ରୀୟ ଏସିୟ ଅଞ୍ଚଳରୁ ବିଭିନ୍ନ ପ୍ରକାର ସାଇବେରୀୟ ବତକ ଯଥା- ଲାଲ୍ ମୁଣ୍ଡିଆ ବତକ, ପାତିହଂସ, ଧଳା ଚୁଟୁଦରି, ପେଲିକାନ୍, ବ୍ରାହ୍ମଣୀ ବତକ, ପେଣ୍ଟ୍ସ, ପାରାଡାଇଜ୍, ଫ୍ଲାଇକେଚର, ବ୍ଲୁ ନେଭାତ୍, କଳାମୁଣ୍ଡିଆ, ନୀଳ ଫ୍ଲାଇଚର, ଟନର୍ସ, ଡଲ୍ଫିନ୍, ଫ୍ଲେମିଆ, ଟଲ୍ସ, କୋଟ୍ସ, ଯୋଳେଭାର ଉଇଗେନ୍, ହ୍ୱାଇଟ୍ ଇବ୍ସ, କିଙ୍ଗଫିସର, ଗ୍ରେ ପେଲିକାନ୍, ସମୁଦ୍ର ଇଗଲ୍ ଆଦି ପକ୍ଷୀମାନେ ଭିତର କନିକା ପକ୍ଷୀ ଅଭୟାରଣ୍ୟକୁ ଆସିଥା'ନ୍ତି । ଏହାବ୍ୟତୀତ ଏଠାରେ ହଂସ, ପାତିହଂସ, ବାଇଆ, ଚା' ଚଢେଇ, ସାରସ, ଗାଇଆ, ହଂସରାଳି, କେଶରପାଣ୍ଡିଆ, ହଳଦିବସନ୍ତ, ଗେଣ୍ଡାଳିଆ, ବଗ, କାଣ୍ଟିବଗ, ମାଛରଙ୍କା, ବଣି, ଘିଅକାଳିଆ, କୁଣ୍ଡାଫାପୁଲି, ପାଣିକୁଆ, କଜଳପାତି, କୁଂଭାଟୁଆ, ଟିଆ, ଶୁଆ, ଶାରୀ, ଛଞ୍ଚାଣ ପ୍ରମୁଖ ଦେଶୀୟ ପକ୍ଷୀମାନେ ଦେଖାଯାଆନ୍ତି । ଏଠାରେ ଆଠ ପ୍ରଜାତିର ମାଛରଙ୍କା ପକ୍ଷୀ ଦେଖାଯାଆନ୍ତି । ଭିତରକନିକା ଜାତୀୟ ଉଦ୍ୟାନ ମଧ୍ୟରେ ଥିବା ଜଳଉତ୍ସମାନଙ୍କରେ ପାଣି ଓଧ, ବିଭିନ୍ନ ପ୍ରଜାତିର ମାଛ, କଇଁଛ, କଙ୍କଡା, ଚିଙ୍ଗୁଡି, ଲାଲ୍ କଙ୍କଡା ସହିତ ଜଙ୍ଗଲ ମଧ୍ୟରେ ଚିତ୍ରା ହରିଣ, କୃଷ୍ଣସାର ହରିଣ, ସମ୍ବର, ବାର୍ହା, ଶାଳିଆପତନି, ଝିଙ୍କ, ନେଉଳ, ବିଲୁଆ, କୋକିଶିଆଳ, ହେଟାବାଘ, ଚିତାବାଘ, ଜଙ୍ଗଲୀ ବିଲେଇ, ବିଭିନ୍ନ ପ୍ରଜାତିର ମୂଷା, ସରୀସୃପ ଜଳଗୋଧି, ଅଜଗର, ଅହିରାଜ, ଜଙ୍ଗଲୀ ନେଉଳ, ଡଲ୍ଫିନ୍ ଆଦି ବାସ କରନ୍ତି ।

[ତଥ୍ୟ ସହାୟତା

୧· କନିକା, ଶୁଭ୍ରାଂଶୁ ଭୂଷଣ ସୁତାର, ମଲ୍ଲୀଘର, ରାଜକନିକା, ୨୦୦୦, ପୃଷ୍ଠା-୭୮, ୭୯

୨· ଅନ୍ୟତମ ନାୟକ: ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ପ୍ରତାପ କୁମାର ରାୟ, ପଶ୍ଚିମା ପବ୍ଲିକେଶନ୍ସ, ୨୦୦୮, ପୃଷ୍ଠା-୧୮୦ ]

## ଭିତରକନିକାର ନାୟକବାବୁ ମନ୍ଦିର

*(Nayak Babu Temple of Bhitara Kanika)*

ଭିତରକନିକା ଏକଦା ଭଞ୍ଜବଂଶୀ ରାଜାଙ୍କର ସୁରକ୍ଷା କବଚ ଥିଲା । ଏହା ଏକ ପ୍ରାକୃତିକ ଦୁର୍ଗ ଭଳି କାର୍ଯ୍ୟ କରୁଥିଲା । ବହିଃଶତ୍ରୁଙ୍କ କବଳରୁ ରକ୍ଷା ପାଇବା ପାଇଁ ଭିତରକନିକାର ଘଞ୍ଚ ହେନ୍ତାଳବଣ

ଏବଂ ଏଠାକାର ହିଂସ୍ର ସରୀସୃପ ଓ ଜୀବଜନ୍ତୁ ସୈନ୍ୟବାହିନୀରେ ସୁସଜ୍ଜିତ କୌଣସି ଦୁର୍ଗଠାରୁ କମ୍ ନଥିଲା । ଭିତରକନିକା ଦ୍ୱୀପଟି କନିକା ରାଜାଙ୍କର ଗୁପ୍ତ ମନ୍ତ୍ରଣା କେନ୍ଦ୍ର ଭାବେ କାର୍ଯ୍ୟ କରିବା ସହ ଏକ ନିରାପଦ ଗଡ଼ ଥିଲା ।

ଆଜି ଯେଉଁ ଭିତରକନିକାକୁ ଜାତୀୟ ଉଦ୍ୟାନ ଭାବେ ଘୋଷଣା କରାଯାଇଛି, ତାହା ଦିନେ କନିକା ରାଜାଙ୍କର ବନବିହାର ଓ ମୃଗୟା ନିମନ୍ତେ ଏକ ମନୋରଞ୍ଜନ କେନ୍ଦ୍ର ଥିଲା । ଏଠାରେ କନିକା ରାଜାଙ୍କର ଏକ ଉଆସ ମଧ୍ୟ ଥିଲା । ଏହି ଉଆସକୁ ଲାଗି ରାଜାଙ୍କର ଏକ ଗୁପ୍ତ ମନ୍ତ୍ରଣାଳୟ ଏବଂ ବିଦ୍ରୋହୀ ପ୍ରଜାମାନଙ୍କ ସଜା ପାଇଁ ବନ୍ଦୀ ଗୃହ ମଧ୍ୟ ଥିଲା ।

ରାଜା ବଳଭଦ୍ର ଭଞ୍ଜ ଓ ଇଂରେଜମାନଙ୍କ ମଧ୍ୟରେ ପ୍ରବଳ ସଂଘର୍ଷ ଚାଲିଥାଏ । ଇଂରେଜମାନେ ଖୋର୍ଦ୍ଧା, ବାଲେଶ୍ୱର ଆଦି ଦଖଲ କରିବା ପରେ କନିକା ଉପରେ ନଜର ପକାଇଥା'ନ୍ତି । ଏତିକିବେଳେ କନିକା ରାଜ୍ୟର ବେବର୍ତ୍ତା ଭାବେ ଚୈତନ୍ୟ ପଟ୍ଟନାୟକ ନିଯୁକ୍ତି ପାଇଥା'ନ୍ତି । ଇଂରେଜମାନଙ୍କ ବିରୋଧରେ ଲଢେଇ ନ କରି ସେମାନଙ୍କ ସହ ସନ୍ଧି କରିବାକୁ ବେବର୍ତ୍ତା ଚୈତନ୍ୟ ପଟ୍ଟନାୟକ ରାଜାଙ୍କୁ ଏକ ପ୍ରସ୍ତାବ ଦେଲେ । ବେବର୍ତ୍ତାଙ୍କ ଏଭଳି ପରାମର୍ଶକୁ ରାଜା ଭୁଲ୍ ବୁଝି ତାଙ୍କୁ ଇଂରେଜଙ୍କ ପରାମର୍ଶଦାତା ମନେକରି ତୁରନ୍ତ ବନ୍ଦୀ କରିଥିଲେ । ବେବର୍ତ୍ତାଙ୍କୁ ଭିତରକନିକାରେ ଏକ ଅମୁହାଁ ଘର ଭିତରେ ବନ୍ଦୀ କରି ଦୀର୍ଘଦିନ ରଖାଗଲା । ପରବର୍ତ୍ତୀ ସମୟରେ ବେବର୍ତ୍ତାଙ୍କ ଉପସ୍ଥିତ ବୁଦ୍ଧି ଯୋଗୁଁ କନିକା ରାଜା ଇଂରେଜମାନଙ୍କ କବଳରୁ ଏକ ଗୁରୁତର ସଂକଟରୁ ରକ୍ଷା ପାଇପାରିଥିଲେ । ରାଜା ନିଜର ଭୁଲ୍ ବୁଝିପାରି ବେବର୍ତ୍ତା ଚୈତନ୍ୟ ପଟ୍ଟନାୟକଙ୍କୁ ବନ୍ଦୀଶାଳାରୁ ମୁକ୍ତ କରିବା ସହିତ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଥିଲେ । ବେବର୍ତ୍ତାଙ୍କ ମୃତ୍ୟୁ ପରେ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ କନିକା ରାଜା ଭିତରକନିକାରେ ଏକ ଅମୁହାଁ ଦେଉଳ ନିର୍ମାଣ କରିଥିଲେ । ଏହି ମନ୍ଦିରରେ କୌଣସି ଠାକୁର ପୂଜା ପାଉ ନଥିଲେ ମଧ୍ୟ ବେବର୍ତ୍ତାଙ୍କ ଆତ୍ମାକୁ ସ୍ଥାପନ କରାଯାଇଥିଲା । ପରବର୍ତ୍ତୀ କାଳରେ ଏହା ନାୟକବାବୁ ମନ୍ଦିର ଭାବେ ଖ୍ୟାତ ହୋଇଥିଲା ।

ଖ୍ରୀ.ଅ. ଦଶମରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ବିଶ୍ୱପ୍ରସିଦ୍ଧ ଭୁବନେଶ୍ୱରର ମୁକ୍ତେଶ୍ୱର, ବୈତାଳ ମନ୍ଦିର, ଲିଙ୍ଗରାଜ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, କୋଣାର୍କ ସୂର୍ଯ୍ୟ ମନ୍ଦିର, ପୁରୀ ଶ୍ରୀମନ୍ଦିର ଶୈଳୀରେ ଭୁବନେଶ୍ୱରଠାରୁ ଦୁଇ ଶହ କିଲୋମିଟର ଦୂର ବଙ୍ଗୋପସାଗର କୂଳରେ ଭିତରକନିକାଠାରେ ନିର୍ମିତ ଏହି ନାୟକବାବୁ ମନ୍ଦିରଟି ଓଡ଼ିଶାର ଅନ୍ୟ ଏକ ପ୍ରମୁଖ ପ୍ରାଚୀନ ମନ୍ଦିର ଭାବେ ଜଣାଶୁଣା । ରାଜନଗର ତହସିଲ ଅନ୍ତର୍ଗତ ଭିତରକନିକାଠାରେ ଦଶମ-ଏକାଦଶ ଶତାବ୍ଦୀରେ ନିର୍ମିତ କାରୁକାର୍ଯ୍ୟ ବିମଣ୍ଡିତ ଖାଖରା ଶୈଳୀର ଏହି ନାୟକବାବୁ ମନ୍ଦିର ସମେତ ମାଟି ଦୁର୍ଗ ଓ ଅନ୍ୟାନ୍ୟ ରାଜକୀୟ ଅଂଶବିଶେଷ ମିଳିଥାଏ । ନାୟକବାବୁ ମନ୍ଦିର ନିକଟରେ ଗୋଟିଏ ଛୋଟ ଓ କୁଣ୍ଡାପଥରରେ ନିର୍ମିତ ମନ୍ଦିର ଦେଖିବାକୁ ମିଳିଥାଏ ।

[ତଥ୍ୟ ସହାୟତା

୧. ଜନିକା, ଶୁଭ୍ରାଂଶୁ ଭୂଷଣ ସୂତାର, ମଲ୍ଲୀଘର, ରାଜକନିକା, ୨୦୦୦, ପୃଷ୍ଠା- ୫୮, ୫୯

2. *Orissa District Gazetteers, Cuttack by Shree Nrusinha Charan Behuria, I.A.S. Retd, Director, Printing Stationary and Publication, Orissa, Cuttack (1992), p-1040*]

## ଗହୀରମଥା ସାମୁଦ୍ରିକ କଇଁଛ ଅଭୟାରଣ୍ୟ

*(Gahirmatha Sea Turtle Sanctuary)*

ଗହୀରମଥା ସମୁଦ୍ର ବେଳାଭୂମିଟି ଭିତରକନିକା ଜାତୀୟ ଅଭୟାରଣ୍ୟର ଅଂଶବିଶେଷ ଏବଂ ଏହା ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ଅଞ୍ଚଳ ଧାମରା ମୁହାଁଣ ନିକଟରେ ଅବସ୍ଥିତ । ଏହା କେନ୍ଦ୍ରାପଡ଼ା



ଜିଲ୍ଲାର ରାଜସ୍ୱ ଅଞ୍ଚଳ ପରିସରଭୁକ୍ତ । ଗହୀରମଥା ଅଭୟାରଣ୍ୟଟି ପୃଥିବୀର ବିରଳ ଅଲିଭ୍ ରିଡ୍‌ଲେ ସାମୁଦ୍ରିକ କଇଁଛଙ୍କ ଆଶ୍ରୟସ୍ଥଳୀ ଭାବେ ପ୍ରସିଦ୍ଧିଲାଭ କରିପାରିଛି । ଏହା ସମଗ୍ର ପୃଥିବୀର ସର୍ବବୃହତ୍ କଇଁଛ ଆଶ୍ରୟସ୍ଥଳୀ ଜଣାଶୁଣା ।

ପ୍ରତିବର୍ଷ ଜାନୁୟାରୀରୁ ଏପ୍ରିଲ୍ ମାସ ମଧ୍ୟରେ ସୁଦୂର ପ୍ରଶାନ୍ତ ମହାସାଗର ଓ ଆଟ୍‌ଲାଣ୍ଟିକ୍ ମହାସାଗରରୁ ଲକ୍ଷାଧିକ ସଂଖ୍ୟାରେ କଇଁଛ ଆସି ଗହୀରମଥା ସମୁଦ୍ର ବେଳାଭୂମିର ବାଲିରେ ଅଣ୍ଡା ଦେଇ ପୁନର୍ବାର ନିଜ ସ୍ଥାନକୁ ଫେରି ଯାଆନ୍ତି । ଭିତରକନିକାର ପ୍ରାକୃତିକ ସୌନ୍ଦର୍ଯ୍ୟ, ହେନ୍ତାଳ ଜଙ୍ଗଲ, ଜୀବଜନ୍ତୁ, ସ୍ଥାୟୀ ଓ ବିଦେଶାଗତ ପକ୍ଷୀଙ୍କ ସମାବେଶ, ପୃଥିବୀର ବିରଳ କଇଁଛଙ୍କ



ଅଣ୍ଡାଦେବା ସ୍ଥଳୀ ଏବଂ ପୃଥିବୀର ବିରଳ ବଉଳା କୁଂଭୀରଙ୍କ ବାସସ୍ଥଳୀକୁ ଅଧିକ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ଓଡ଼ିଶା ସରକାର ୧୯୭୫ ମସିହାରେ ଭିତରକନିକାକୁ ବନ୍ୟଜନ୍ତୁ ଅଭୟାରଣ୍ୟ ରୂପେ ଘୋଷଣା କରିଥିଲେ । ଭାରତ ସରକାର ୧୯୮୮ ମସିହାରେ ଏହାକୁ ଜାତୀୟ ଉଦ୍ୟାନ ରୂପେ ଘୋଷଣା କରିଥିଲେ ।

ପର୍ଯ୍ୟଟକମାନେ ଡଙ୍ଗା ବା ମୋଟର ଲଞ୍ଚ ଦ୍ୱାରା ଚାନ୍ଦବାଲିରୁ ବୈତରଣୀ ନଦୀ ଦେଇ କିମ୍ବା ରାଜନଗରରୁ ବ୍ରାହ୍ମଣୀ ନଦୀ ଦେଇ ଗହୀରମଥାରେ ପହଞ୍ଚିଥା'ନ୍ତି । ଗହୀର ମଥାଠାରୁ ମାତ୍ର ୧୪ କିଲୋମିଟର ଦୂରରେ ହ୍ୱିଲର ଦ୍ୱୀପପୁଞ୍ଜ ଅବସ୍ଥିତ । ପ୍ରତିରକ୍ଷା ବିଭାଗ ପକ୍ଷରୁ ହ୍ୱିଲର ଦ୍ୱୀପପୁଞ୍ଜରେ କୋଠାବାଡି ଓ ବତୀଘର ନିର୍ମାଣ ହେବା ଫଳରେ ଗହୀରମଥାର ଅଲିଭ୍ ରିଡ୍‌ଲେ କଇଁଛଙ୍କ ଅଣ୍ଡାଦାନ ପ୍ରକ୍ରିୟା ଉପରେ ପ୍ରତିକୂଳ ପ୍ରଭାବ ପକାଇଛି । ଅପରପକ୍ଷେ, ପ୍ରତିବର୍ଷ ଜାନୁୟାରୀରୁ ମାର୍ଚ୍ଚ ମାସ ମଧ୍ୟରେ ଯେଉଁ ସମୟରେ ଅଲିଭ୍ ରିଡ୍‌ଲେ କଇଁଛମାନେ ଗହୀରମଥାକୁ ଅଣ୍ଡାଦେବାକୁ ଆସିଥାନ୍ତି, ସେହି ସମୟରେ ହ୍ୱିଲର ଦ୍ୱୀପପୁଞ୍ଜରେ କୌଣସି ମିଜାଇଲ୍ (କ୍ଷେପଣାସ୍ତ୍ର) ପରୀକ୍ଷଣ ହେବ ନାହିଁ ଏବଂ ଏଠାରୁ କୌଣସି ଉଜ୍ଜ୍ୱଳ ଆଲୋକକୁ ଗହୀରମଥାର ସମୁଦ୍ର ଜଳରାଶି କିମ୍ବା ଭିତରକନିକା ଅଭୟାରଣ୍ୟ ମଧ୍ୟକୁ ନିକ୍ଷେପ କରାଯିବ ନାହିଁ ବୋଲି ପ୍ରତିରକ୍ଷା ବିଭାଗ ଓ ଭାରତ ସରକାରଙ୍କ ମଧ୍ୟରେ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ମାତ୍ର ପ୍ରତିରକ୍ଷା ବିଭାଗ ଏସବୁ ସର୍ତ୍ତକୁ ଉଲ୍ଲଂଘନ

କରୁଥିବା ବାରମ୍ବାର ଅଭିଯୋଗ ହୋଇ ଆସୁଛି । ସୂଚନାଯୋଗ୍ୟ, ହ୍ୱିଲର ଦ୍ୱୀପପୁଞ୍ଜରୁ ଅଗ୍ନି, ପୃଥ୍ୱୀ ଭଳି ବିଧ୍ୱଂସକାରୀ କ୍ଷେପଣାସ୍ତ୍ର ବର୍ଷର ବିଭିନ୍ନ ସମୟରେ ପରୀକ୍ଷା କରାଯାଉଛି ।

ହ୍ୱିଲର ଦ୍ୱୀପପୁଞ୍ଜ ଓ ଭିତରକନିକା ଅଭୟାରଣ୍ୟ ମଧ୍ୟରେ ଦୂରତା ମାତ୍ର ୧୦ କିଲୋମିଟର । ଏଣୁ ଏଠାରେ ପ୍ରତିରକ୍ଷା ସଂକ୍ରାନ୍ତ ଯେକୌଣସି ପରୀକ୍ଷଣ ହେଲେ ଏହା ଭିତରକନିକା ବନ୍ୟଜନ୍ତୁ ଓ ଗହୀରମଥାର ଅଲିଭ୍ ରିଡ୍‌ଲେଙ୍କ ଉପରେ ପ୍ରତିକୂଳ ପ୍ରଭାବ ପକାଇଥାଏ । ହ୍ୱିଲର ଦ୍ୱୀପପୁଞ୍ଜରୁ ପ୍ରତିରକ୍ଷା ବିଭାଗର ଉଜ୍ଜ୍ୱଳ ଆଲୋକ ବିଛୁରିତ ହେଲେ ଏହି ଆଲୋକ ଭିତରକନିକା ଅଭୟାରଣ୍ୟର ହରିଣ ସମେତ ଅନ୍ୟାନ୍ୟ ବନ୍ୟଜନ୍ତୁଙ୍କୁ ବିଚଳିତ କରିପକାଇଥାଏ । ଏହି ଉଜ୍ଜ୍ୱଳ ଆଲୋକ ଭିତରକନିକାର ବନ୍ୟଜନ୍ତୁଙ୍କ ପାଇଁ ପ୍ରଧାନ ଶତ୍ରୁ ପାଲଟିଛି ।









ଗହୀରମଥାର ବେଳାଭୂମି ବାଲିରେ ପ୍ରାୟ ୪୫ରୁ ୫୦ ସେଣ୍ଟିମିଟରର ଗୋଲେଇ ଗାତ ଖୋଳି ରାତି ସମୟରେ କଇଁଛମାନେ ଅଣ୍ଡା ଦେଇଥା'ନ୍ତି । ଗୋଟିଏ ମାଈ ଅଲିଭ୍ ରିଡ୍‌ଲେ୍ ଏକାଥରକେ ପ୍ରାୟ ୧୦୦ରୁ ୧୮୦ଟି ଅଣ୍ଡା ଦେଇଥାଏ । ଅଣ୍ଡାଗୁଡିକ ଗୋଲାକାର ହୋଇଥାଏ । ମଧୁର ଜଳରେ ରହୁଥିବା କଇଁଛଙ୍କ ଅଣ୍ଡାଠାରୁ ଏମାନଙ୍କ ଅଣ୍ଡାର ଖୋଳପା ଅପେକ୍ଷାକୃତ ନରମ । ସଂପୂର୍ଣ୍ଣ ଅଣ୍ଡାଦେବା ପରେ ମା' କଇଁଛ ଗାତକୁ ବାଲିରେ ପୂରଣ କରିଦେଇଥାଏ । କଇଁଛମାନେ ଅଣ୍ଡାକୁ ବାଲିରେ ପୋତିଦେବା ସହ ବାଲିକୁ ଏଭଳି ସମତୁଲ କରିଦିଅନ୍ତି, ଯେମିତି କୌଣସି ବହିରାଗତ ଏ ସଂପର୍କରେ କିଛି ଜାଣିପାରିବେ ନାହିଁ । ଏହାପରେ କଇଁଛମାନେ ସମୁଦ୍ରକୁ ଚାଲି ଯାଆନ୍ତି । ଅଣ୍ଡା ଦେବାର ପ୍ରାୟ ଦେଢ ମାସରୁ ଅଢେଇ ମାସ ମଧ୍ୟରେ ଅଣ୍ଡାଗୁଡିକରୁ ରାତି ସମୟରେ ଛୁଆ ବାହାରି ସମୁଦ୍ର ଭିତରକୁ ଚାଲି ଯାଆନ୍ତି । ମାତ୍ର ଅଧିକାଂଶ କଇଁଛ ଶତ୍ରୁ (ବଡ଼ବଡ଼ ସାମୁଦ୍ରିକ ମାଛ, ମଣିଷ, ଅନ୍ୟାନ୍ୟ ପଶୁ, ପକ୍ଷୀ) କବଳରେ ପଡ଼ି ମୃତାହତ ହୋଇଥାନ୍ତି ।ଦେଖାଯାଇଛି ପ୍ରାୟ ହଜାରେ କଇଁଛ ଛୁଆଙ୍କ ମଧ୍ୟରୁ କେବଳ ଗୋଟିଏ କଇଁଛ ବଢି ପ୍ରାପ୍ତ ବୟସରେ ପହଞ୍ଚିପାରିଥାଏ ।

ଧାମରା ମୁହାଁଣଠାରୁ ଦକ୍ଷିଣରେ ମହାନଦୀ ମୁହାଣ ପର୍ଯ୍ୟନ୍ତ କେନ୍ଦ୍ରାପଡା ଜିଲ୍ଲା ବେଳାଭୂମି ଅଞ୍ଚଳର ବିଭିନ୍ନ ସ୍ଥାନରେ ଅଲିଭ୍ ରିଡ୍‌ଲେ କଇଁଛ ଅଣ୍ଡା ଦେଉଥିବାରୁ ଏହି ଅଞ୍ଚଳକୁ ଓଡ଼ିଶା ସରକାର ୧୯୯୭ ମସିହାରେ ଏକ ସାମୁଦ୍ରିକ ଅଭୟାରଣ୍ୟ ଘୋଷଣା କରିଥିଲେ । ଅପରପକ୍ଷେ, ପ୍ରତିବର୍ଷ ଅକ୍ଟୋବର ମାସରୁ ମେ ମାସ ପର୍ଯ୍ୟନ୍ତ ବନ୍ୟପ୍ରାଣୀ ବିଭାଗ ପକ୍ଷରୁ ଏଠାରେ କଇଁଛ

ଗଣନା କରାଯାଇଥାଏ । ଗହୀରମଥା ସାମୁଦ୍ରିକ ଅଭୟାରଣ୍ୟଟିର ମୋଟ କ୍ଷେତ୍ରଫଳ ୧୪୩୫ ବର୍ଗକିଲୋମିଟର ହୋଇଥିଲାବେଳେ ଏଥିରୁ ୧୪୦୮ ବର୍ଗକିଲୋମିଟର ଅଞ୍ଚଳ ଜଳରାଶି ଏବଂ ୨୭ ବର୍ଗକିଲୋମିଟର ବାଲୁକା-କର୍ଦମାକ୍ତ ଲୁଣା ହେନ୍ତାଳ ଜଙ୍ଗଲ ।

[ ତଥ୍ୟ ସହାୟତା

୧· ଦୈନିକ ଖବରକାଗଜ 'ଧରିତ୍ରୀ', ଭୁବନେଶ୍ୱର, ତାରିଖ: ୦୯/୦୨/୧୯୮୯

୨· ଗହୀରମଥା ସଂପର୍କିତ ୱେବ୍‌ସାଇଟ୍ ]

## ତାଳଚୁଆ ବନ୍ଦର ଓ ମାଛଧରା କେନ୍ଦ୍ର

*(Talchua port and fishing harbour)*

ରଙ୍ଗଣି ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଗିରିଆପାହି ଗାଁର ଟ୍ରଲର ଡ୍ରାଇଭର ଭବ ଶଙ୍କର ଦାସ ଯେଉଁ ଟ୍ରଲରଟି ଚଳାଉଥିଲେ ତାହାର ନାଁ ଥିଲା 'ମଞ୍ଜୁ' । ସେହିଭଳି ତାଳଚୁଆ ପଞ୍ଚାୟତର ବାଘମାରି ଗାଁର କାର୍ତ୍ତୀକ ଜେନା ଚଳାଉଥିବା ଟ୍ରଲର 'ଅଚିନ୍ତା ସାଗର' ଏବଂ ତାଙ୍କମାଳ ପଞ୍ଚାୟତର ପିଠ୍ଠାପାଟିଆ



**ତାଳଚୁଆ ବନ୍ଦର ଓ ମାଛଧରା କେନ୍ଦ୍ର**

ଗାଁର ତପନ ପରିଡ଼ାଙ୍କ ଟ୍ରଲର 'ମଞ୍ଜୁମୟୀ' । ଏହି ତିନୋଟି ଟ୍ରଲର ଏକ ସଙ୍ଗରେ ଆସି ତାଳଚୁଆଠାରେ ଅବତରଣ କଲାବେଳକୁ ସନ୍ଧ୍ୟା ହୋଇ ସାରିଥିଲା । ଅତି ଦ୍ରୁତଗତିରେ ଏହି ତିନୋଟି ଯାନ୍ତ୍ରିକ ଦାନବ ଝପଟିଆସି ତାଳଚୁଆ ଜେଟିରେ ଲାଗିଲେ । ଆମେ ଧାମରା, ନଳିତାପାଟିଆ, କାଳିଭଞ୍ଜଡ଼ିହାରୁ

ବୁଲାବୁଲି କରି ସେତିକିବେଳକୁ ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ପହଞ୍ଚୁଥାଉ । ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ଟ୍ରଲରଗୁଡ଼ିକ ପଛକୁ ପଛ ଆସି ଘାଟକୂଳରେ ସ୍ଥିର ହୋଇଗଲେ । ଆମ ମୋଟର ଲଞ୍ଚଟି ମଧ୍ୟ ତାଳଚୁଆ ଜେଟିରେ ଲାଗିଲା । ମୁଁ ଆମ ଲଞ୍ଚରୁ ଓହ୍ଲାଇ 'ମଞ୍ଜୁ'ର କ୍ୟାବିନ୍ ଭିତରକୁ ପଶିଗଲି । ଗଭୀର ସମୁଦ୍ରରେ କିଭଳି ମାଛ ଧରାଯାଏ, କେତେଦିନ ସେମାନେ ସମୁଦ୍ର ଭିତରେ କଟାନ୍ତି, ସେଠାରେ କ'ଣ ଖାଆନ୍ତି, କିଭଳି ସ୍ନାନଶୌଚ କରନ୍ତି, କିଭଳି ଏହି ସାମୁଦ୍ରିକ ମାଛକୁ ଟ୍ରଲର ମଧ୍ୟରେ ସଂରକ୍ଷିତ କରି ରଖନ୍ତି, କିଭଳି ଏହି ମାଛସବୁ ବିଦେଶକୁ ରପ୍ତାନୀ ହୋଇଥାଏ ଏବଂ ସର୍ବୋପରି ସେମାନଙ୍କର ଦୁଃସାହସିକ ସାମୁଦ୍ରିକ ଯାତ୍ରା ସଂପର୍କରେ ବୁଝିବା





ତାଳଚୁଆ ମତ୍ସ୍ୟ ପୋତାଶ୍ରୟ




ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ଲେଖକ

ପାଇଁ ମୁଁ 'ମଞ୍ଜୁ'ର ଡ୍ରାଇଭର ଭବ ଶଙ୍କରଙ୍କୁ ପଚାରି ବୁଝିଲି । ସମୁଦ୍ର ଫେରନ୍ତି ଭବ ଶଙ୍କର ମଧ୍ୟ ଖୁବ୍ ଖୁସି ଜଣାପଡୁଥିଲେ । ଏହାର କାରଣ ତାଙ୍କର ସେହି ସମୁଦ୍ର ଯାତ୍ରାଟି ଖୁବ୍ ସଫଳ ହୋଇଥିଲା । ସେମାନେ ଭଲ ମାଛ ଧରି ଫେରିଥିଲେ ।

ପ୍ରକୃତରେ ବେଶ୍ ରୋମାଞ୍ଚକର ଓ ଦୁଃସାହସିକ ଅନୁଭୂତିସବୁ ସେମାନଙ୍କର ଥିଲା । ସେମାନେ ଟ୍ରଲର ନେଇ ଥରେ ସମୁଦ୍ର ମଧ୍ୟକୁ ପ୍ରବେଶ କଲେ ନିଜ ଗାଁକୁ ଫେରିବାକୁ ୧୫ରୁ ୨୦ ଦିନ ଲାଗିଯାଏ । ଦୀର୍ଘଦିନ କାଳ ସମୁଦ୍ର ଭିତରେ ରହି ମାଛ ଧରିବା ସାଙ୍ଗକୁ ଅବସର ସମୟରେ ତାସ ଖେଳନ୍ତି । ମାଛ ଧରନ୍ତି, ତାକୁ ଟ୍ରଲରର ଛାତ ଉପରେ ଶୁଖାନ୍ତି । ସେମାନେ ସାଥୀରେ








ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ଲେଖକ



**ତାଳଚୁଆ ମତ୍ସ୍ୟ ପୋତାଶ୍ରୟରେ ଏକ ଅଭୁଲା ସାନ୍ଧ୍ୟକାଳୀନ ଦୃଶ୍ୟ**

ନେଇଥିବା ସଂରକ୍ଷିତ ପାନୀୟ ଜଳକୁ ପିଅନ୍ତି । ଟ୍ରଲର ମଧ୍ୟରେ ଗାଧୁଆ ଘର ଓ ରୋଷେଇ ଘର ଥାଏ । ଏମିତି ଯାବତୀୟ ଅନୁଭୂତି ଶୁଣିବା ପରେ ଶରୀର ରୋମାଞ୍ଚିତ ହୋଇଉଠୁଥିଲା ।

ତାଳଚୁଆଠାରେ ପାଖାପାଖି ପାଞ୍ଚଶହରୁ ଉର୍ଦ୍ଧ୍ୱ ମତ୍ସ୍ୟଜୀବିଙ୍କୁ ନେଇ ଏକ ମତ୍ସ୍ୟ ବ୍ୟବସାୟୀ ସଂଘ ଗଠନ କରାଯାଇଛି । ଏହି ସଂଘ ମତ୍ସ୍ୟଜୀବିମାନଙ୍କର ବିକାଶ ନେଇ କାର୍ଯ୍ୟ କରୁଛି । କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆଠାରେ ବୈତରଣୀ ଓ ବ୍ରାହ୍ମଣୀ ମିଳିତ ହୋଇ ଆଗକୁ କିଛିବାଟ ପ୍ରବାହିତ ହେଲାପରେ କାଳିଭଞ୍ଜଡ଼ିଆ ଜଙ୍ଗଲ ନିକଟରେ ପୁନର୍ବାର ଦୁଇଟି ସ୍ରୋତରେ ବିଭାଜିତ ହୋଇଛନ୍ତି । ଏଠାରୁ ବୈତରଣୀ-ବ୍ରାହ୍ମଣୀର ଗୋଟିଏ ସ୍ରୋତ ଧାମରା ଦେଇ ଏବଂ ଅନ୍ୟ ଗୋଟିଏ ସ୍ରୋତ ତାଳଚୁଆ ଦେଇ କାଳିଭଞ୍ଜଡିଆ ଦ୍ୱୀପର ଉଭୟ ପାର୍ଶ୍ୱରେ ପ୍ରବାହିତ ହେଲାପରେ ପୁନର୍ବାର ମିଳିତ ହୋଇ ଚନ୍ଦନିପାଳ ଆଡ଼କୁ ଗତି କରି ବଙ୍ଗୋପସାଗରରେ ମିଳିତ ହୋଇଛନ୍ତି । ତାଳଚୁଆ ନିକଟରେ ଏହି ନଦୀଟି ପ୍ରକୃତରେ ବୈତରଣୀ-ବ୍ରାହ୍ମଣୀର ମିଳିତ ସ୍ରୋତ ହୋଇଥିଲେ ମଧ୍ୟ ଏହାକୁ ସ୍ଥାନୀୟ ଅଞ୍ଚଳବାସୀ 'ବୈତରଣୀ' ନଦୀ ବୋଲି କହିଥା'ନ୍ତି । କିଛି ଲୋକ ଏହାକୁ 'ତାଳଚୁଆ' ନଦୀ ବୋଲି ସମ୍ବୋଧନ କରିଥାନ୍ତି ।

ଅତୀତରେ ଧାମରା ଭଳି ତାଳଚୁଆ ଗୋଟିଏ ପ୍ରାକୃତିକ ବନ୍ଦର ଓ ମାଛଧରା କେନ୍ଦ୍ର ଥିଲା । ଭଦ୍ରକ ଜିଲ୍ଲାରେ ଉଭୟ ରେଳପଥ ଓ ସଡ଼କ ପଥର ବିକାଶ ଫଳରେ ଧାମରା ବନ୍ଦରର ଦ୍ରୁତ ଗତିରେ ବିକାଶ ହୋଇପାରିଲା, ମାତ୍ର କେନ୍ଦ୍ରାପଡ଼ା ଜିଲ୍ଲା ପଟୁ ରେଳପଥ ଓ ସଡ଼କ ପଥର ବିକାଶ ନ ଘଟିବା ଫଳରେ ତାଳଚୁଆ ବନ୍ଦରଟିର ବିକାଶ ଘଟିପାରିନାହିଁ । ବର୍ତ୍ତମାନ କେନ୍ଦ୍ରାପଡ଼ାରୁ ସିଧା ତାଳଚୁଆ ପର୍ଯ୍ୟନ୍ତ ସଡ଼କ ପଥ ଦ୍ୱାରା ଯୋଗାଯୋଗ ସଂଭବ ହୋଇଗଲାଣି । କେନ୍ଦ୍ରାପଡ଼ାରୁ ତାଳଚୁଆ ମଧ୍ୟରେ (ହଂସୁଆ, ହଂସିଣା, ପାଟ୍ଟଶାଳା, ଖୋଲା, ବ୍ରାହ୍ମଣୀ) ଯେତେ ନଦୀ ରହିଛି ସବୁ ନଦୀରେ ପୋଲ ନିର୍ମାଣ ହୋଇଯିବା ଫଳରେ ସିଧା କଟକରୁ ତାଳଚୁଆକୁ ସଡ଼କ ପଥ ଯୋଗେ ଯାତାୟତ ସୁବିଧା ହୋଇଗଲାଣି । ମାତ୍ର ପୂର୍ବରୁ କଟକରୁ ତାଳଚୁଆ ସଡ଼କ ପଥରେ ଯିବା ଏକ ପ୍ରକାର ଅସଂଭବ କାମ ଥିଲା । ସଡ଼କ ପଥର ବିକାଶ ନ ହେବା କାରଣରୁ ତାଳଚୁଆ ବନ୍ଦର ଓ ମାଛଧରା କେନ୍ଦ୍ରର ଅନୁରୂପ ବିକାଶ ହୋଇପାରିନାହିଁ ।

ଅତୀତରେ ତାଳଚୁଆରୁ ଜଳପଥ ଯୋଗେ ଧାମରା ମୁହାଁଣ (ତାଳଚୁଆ ମୁହାଁଣ) ଦେଇ ଦରିଆପାରି ବାଣିଜ୍ୟ କାରବାର ସମୃଦ୍ଧ ଥିଲା । ତାଳଚୁଆରୁ ବୋଇତ ଯୋଗେ ସାଧବମାନେ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଭଳି ଦୂର ବିଦେଶ ସହ ବାଣିଜ୍ୟିକ ସଂପର୍କ ସ୍ଥାପନ କରିପାରିଥିଲେ । ପରବର୍ତ୍ତୀ ସମୟରେ ପାଲଟଣା ଜାହାଜ, ଷ୍ଟିମର, ମୋଟର ଲଞ୍ଚ୍ ଯୋଗେ ଜଳପଥରେ ତାଳଚୁଆ ବନ୍ଦରରୁ ଏ



ତାଳଚୁଆ ଫେରିଘାଟ

ଅଞ୍ଚଳର ବ୍ୟବସାୟୀ ଓ ସାଧାରଣ ଯାତ୍ରୀମାନେ ଅନ୍ୟ ଅଞ୍ଚଳକୁ ଯାତାୟତ କରୁଥିଲେ । କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ସ୍ଥାନରୁ ପଣ୍ୟଦ୍ରବ୍ୟ ନଦୀ ମାଧ୍ୟମରେ ବୋହିଆଣି ନଳିତାପାଟିଆ ଜେଟି (ଫେରିଘାଟ)ରେ ଏକତ୍ରିତ କରାଯାଉଥିଲା । ଏଠାରୁ ଧାମରା କିମ୍ବା ତାଳଚୁଆ ମୁହାଁଣକୁ ନିଆଯାଉଥିଲା ।

ଧାମରା ଭଳି ତାଳଚୁଆଠାରେ ମଧ୍ୟ ଏକ ବିଶାଳ ମତ୍ସ୍ୟ ପୋତାଶ୍ରୟ *(Talchua fishing harbour)* ରହିଛି । ଏଠାରେ ପ୍ରତିଦିନ ଶହଶହ ସଂଖ୍ୟାରେ ମାଛଧରା ଟ୍ରଲର ମାଧ୍ୟମରେ ସମୁଦ୍ରରୁ ମାଛ ଧରାଯାଇ ବିଦେଶକୁ ରପ୍ତାନୀ କରାଯାଇଥାଏ । ତାଳଚୁଆ ଏବଂ ଆଖପାଖ ଅଞ୍ଚଳର ହଜାର ହଜାର ସଂଖ୍ୟାରେ ମତ୍ସ୍ୟଜୀବି ନିଜନିଜର ଟ୍ରଲର ନେଇ ଗଭୀର ସମୁଦ୍ରକୁ ମାଛ ଧରିବାକୁ ଚାଲି ଯାଆନ୍ତି ଏବଂ ସପ୍ତାହେ କି ଦୁଇ ସପ୍ତାହ ଗଭୀର ସମୁଦ୍ରରେ ରହି ପ୍ରଚୁର ପରିମାଣରେ ମାଛ ସଂଗ୍ରହ କରି ପୁନର୍ବାର ତାଳଚୁଆ ମତ୍ସ୍ୟ ପୋତାଶ୍ରୟକୁ ଫେରନ୍ତି ।

ଆଜିର ଦିନରେ ତାଳଚୁଆଠାରେ ଏକ ଫେରିଘାଟ ରହିଛି । ଏହି ଫେରିଘାଟଟି ଅତୀତରେ ଏକ ପ୍ରାକୃତିକ ବନ୍ଦର ଭାବେ ବ୍ୟବହୃତ ହେଉଥିଲା । ଏଠାରୁ ଷ୍ଟିମର ଯୋଗେ ଯାତ୍ରୀ ଚାନ୍ଦବାଲି ଏବଂ କଟକ ପର୍ଯ୍ୟନ୍ତ ଯାତ୍ରା କରୁଥିଲେ । ସେହିଭଳି ଏହି ବନ୍ଦରରୁ ଏ ଅଞ୍ଚଳରୁ ଧାନ, ବିରି, ମୁଗ, ମାଣ୍ଡିଆ ଆଦି ଖାଦ୍ୟଶସ୍ୟ କଲିକତା ଓ ଅନ୍ୟାନ୍ୟ ଅଞ୍ଚଳକୁ ଯାଉଥିଲା ।

ଆଜିର ଦିନରେ ତାଳଚୁଆ ଡଙ୍ଗାଘାଟ ଦେଇ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ ଏବଂ ଚାନ୍ଦବାଲି ବ୍ଲକ୍ ମଧ୍ୟରେ ଯୋଗାଯୋଗ ଅବ୍ୟାହତ ରହିଛି । ତାଳଚୁଆ (କେନ୍ଦ୍ରାପଡ଼ା)ରୁ କାଳନାଳି (ଭଦ୍ରକ) ମଧ୍ୟରେ ଏକ ଦୀର୍ଘ ଡଙ୍ଗାଘାଟଟି ଏବେ ବି ଚଳଚଞ୍ଚଳ । ସଂଭବତଃ ଏହି ଡଙ୍ଗା ଘାଟଟି ଓଡ଼ିଶାର ସବୁଠୁ ଦୀର୍ଘତମ ଡଙ୍ଗାଘାଟ ବୋଲି ଅନୁମାନ କରାଯାଏ । ମୋଟର ଲଞ୍ଚ ତାଳଚୁଆ ଫେରିଘାଟରୁ ବାହାରି ତାଳଚୁଆ-ଧାମରା ସମୁଦ୍ର ମୁହାଁଣ ପଥ ଦେଇ କାଳିଭଞ୍ଜଡିହା ଦ୍ୱୀପ ପାର ହେବାପରେ ଧାମରା ପାର୍ଶ୍ୱସ୍ଥ କାଳନାଳି ଫେରିଘାଟରେ ପହଞ୍ଚିଥାଏ ।

ତାଳଚୁଆରୁ କାଳନାଳି ଫେରିଘାଟ ମଧ୍ୟରେ ଦୂରତା ପ୍ରାୟ ୧୦ କିଲୋମିଟର ହେବ ବୋଲି ଏହି ଡଙ୍ଗା ଘାଟିଆ ଅଭିଷେକ ଦେବନାଥ କହନ୍ତି । ଏହି ଘାଟରେ ପାର ହେଲେ ଯାତ୍ରୀ ପିଛା ୫୦ ଟଙ୍କା ଭଡ଼ା ଲାଗିଥାଏ ଏବଂ ମୋଟର ସାଇକେଲ୍ ପିଛା ୧୦୦ ଟଙ୍କା ପଡିଥାଏ । ତାଳଚୁଆରୁ ଯେଉଁମାନେ ଚାନ୍ଦବାଲି ବ୍ଲକ୍‌ର ଗ୍ରାମାଞ୍ଚଳ ଏବଂ ବାସୁଦେବପୁର ଅଞ୍ଚଳକୁ ଯିବାକୁ ଚାହାଁନ୍ତି ସେମାନେ ଏହି ଡଙ୍ଗା ଘାଟ ପାର ହୋଇଥାନ୍ତି ।

ତାଳଚୁଆ ବନ୍ଦରର ଖୁବ୍ ନିକଟରେ ଚାନ୍ଦବାଲି ଅବସ୍ଥିତ । ଏହା କନିକା ରାଜ୍ୟର ଏକ ପ୍ରାଚୀନ ବନ୍ଦର ଥିଲା । ଏହା ମଧ୍ୟ ଦେଇ କନିକା ଅଞ୍ଚଳର ବଣିକମାନେ ଜଳପଥରେ ବାଣିଜ୍ୟ କାରବାର

ଚଳାଇ ଆସୁଥିଲେ । ଅମରାବତୀ, ଭଞ୍ଜପ୍ରସାଦ, ବୀରଭଞ୍ଜପୁର, ଜ୍ୟୋତିପ୍ରସାଦ, କଣ୍ଟିଆଖୋଳା, ମଞ୍ଜୁଳାପଲ୍ଲୀ, ରାଧାମାଳିପୁର, ରାଜାପାଟଣା, ରାଜେନ୍ଦ୍ରନଗର, ରାଜେଶ୍ୱରୀନଗର, ଶୈଳେନ୍ଦ୍ରସରାଇ, ଶିକାରପାଇ, ସୁରଭି, ଟିକାୟତନଗର, ଉଦ୍ୟାନ, ବଡ଼କୁଳି, ବଢି, ଭାଟସାହି, ବିକେଇକଣି, ଚିଞ୍ଚିରି, ଡେରା, ଧୋବେଇଗଡ଼, ଗମ୍ଭାଶିଖର, ଗୋଖଣି, ହାତିନା, ଜଉଡିଆ, ଜୁନୁପଙ୍ଖା, କଇଁଥ, କାଠୁଆଗଣ୍ଡ, ଲୁଣିଆ, ମୁଗକଣି, ନୂଆଗାଁ, ନୂଆପୋଖରୀ, ସନ୍ଧାକଣି, ସଙ୍କୁଳି, ଅଜଗରପାଟିଆ, ବଳରାମପୁର, ବଳଭଦ୍ରପୁର, ଭିତରକନିକା, ଦିଘି, ଘଡ଼ିଆମାଳ, ଈଶ୍ୱରପୁର, ମଧୁପୁର, ନୂଆଖୁଣ୍ଟିଆ, ପଦ୍ମଲାଭପୁର, ପଞ୍ଚୁପଲ୍ଲୀ, ପରମାନନ୍ଦପୁର, ପିତଣ୍ଡା, ପୁରୁଷୋତ୍ତମପୁର, ରାଜାବିଜୟନଗର, ରାଜେନ୍ଦ୍ରନାରାୟଣପୁର, ରାମଚନ୍ଦ୍ରପୁର, ରିଘାଗଡ଼, ସାନଗୋଖଣି, ଶିଳାପୋଖରୀ ଆଦି ଗାଁର ଲୋକେ ତାଳଚୁଆ ବନ୍ଦର ଓ ମତ୍ସ୍ୟ ପୋତାଶ୍ରୟ ଉପରେ ପ୍ରତ୍ୟେକ୍ଷ ବା ପରୋକ୍ଷ ଭାବେ ନିର୍ଭର କରିଥା'ନ୍ତି । ଏହିସବୁ ଗାଁରୁ ଚାଉଳ, ବିରି, ମୁଗ, ଯଅ, ମାଣ୍ଡିଆ ଆଦି ସଂଗ୍ରହ କରାଯାଇ ବିଦେଶକୁ ରପ୍ତାନୀ କରାଯାଇଥାଏ ।

ତାଳଚୁଆଠାରେ ସାମୁଦ୍ରିକ ମାଛର ଏକ ବିରାଟ ବଜାର ରହିଛି । ଏଠାରେ ଜାତିଜାତିକା ସାମୁଦ୍ରିକ ମାଛ ବ୍ୟତୀତ ଚିଙ୍ଗୁଡ଼ି, କଙ୍କଡ଼ା, ଇଲିସି ଖୁବ୍ ସୁଲଭ ମୂଲ୍ୟରେ ମିଳିଥାଏ । ତାଳଚୁଆ ଇଲିସିର ଖୁବ୍ ଆଦର ରହିଛି ।

**[ ତଥ୍ୟ ଓ ଅନୁଭୂତି ସହାୟତା**

**-ଭବ ଶଙ୍କର ଦାସ, ଟ୍ରଲର ଡ୍ରାଇଭର, ଗ୍ରାମ: ଗିରିଆସାହି, ଗ୍ରାମ ପଞ୍ଚାୟତ: ରଙ୍ଗଣି**

**-କାର୍ତ୍ତୀକ ଜେନା, ଟ୍ରଲର ଡ୍ରାଇଭର, ଗ୍ରାମ: ବାଘମାରି, ଗ୍ରାମ ପଞ୍ଚାୟତ: ତାଳଚୁଆ**

**-ତପନ ପରିଡ଼ା, ଟ୍ରଲର ଡ୍ରାଇଭର, ଗ୍ରାମ: ପିଞ୍ଚାପାଟିଆ, ଗ୍ରାମ ପଞ୍ଚାୟତ: ଡାଙ୍ଗମାଳ**

**-ଗଣେଶ ଗୁଡ଼ିଆ, ସମିତି ସଭ୍ୟ, ତାଳଚୁଆ ପଞ୍ଚାୟତ**

**-ସନାତନ ପରିଡ଼ା, ସ୍ୱେଚ୍ଛାସେବୀ, ତାଳଚୁଆ**

**-ଜଗବନ୍ଧୁ ମାଝୀ, ମୋଟର ଲଞ୍ଚ୍ ଚାଳକ, ତାଳଚୁଆ,**

**-ଅଭିଶେକ ଦେବନାଥ ଓ ଦେବବ୍ରତ ଦେବନାଥ, ନିଲାମଧାରୀ, ତାଳଚୁଆ ଫେରିଘାଟ**

**-ଅଲେଖ କୁମାର ଜେନା, ପୂର୍ବତନ ବିଧାୟକ, ରାଜନଗର**

**-କାନ୍ତିଲତା ବେହେରା, ପୂର୍ବତନ ସରପଞ୍ଚ, ଡାଙ୍ଗମାଳ ]**

# 'କନିକା ବାଲି' ଓ କଲିକତା ବନ୍ଦର କର୍ତ୍ତୃପକ୍ଷଙ୍କ ପାଗଳାମି

*(Kanika Sands)*



**କନିକା ବାଲି ଓ ଧାମରା ମୁହାଁଣର ଗୁଗୁଲ୍ ମ୍ୟାପ୍**

ଧାମରା ମୁହାଁଣରେ ବଙ୍ଗୋପସାଗର ମଧ୍ୟରେ ତତ୍କାଳୀନ କନିକା ରାଜ୍ୟର ସୀମାରେ ଏକ ବାଲୁକା ଦ୍ୱୀପ ରହିଛି । ଏହାର ନାମ **'କନିକା ବାଲି'** *(Kanika Sands)*। ସେହିଭଳି 'କନିକା ବାଲି' ନିକଟରେ ଅନ୍ୟ ଏକ ଟାପୁ ବା ସ୍ଥଳଭାଗ ରହିଛି । ଏହାର ନାମ **'ବୁଢିଆବାଲି'** । ସମୁଦ୍ର ମଧ୍ୟରେ ଥିବା ଏହି ଦୁଇଟି ପ୍ରାକୃତିକ ସ୍ଥଳଭାଗ ଉପରେ କନିକା ରାଜ୍ୟର ଅଧିକାର ରହିଛି । ତେବେ ନିକଟରେ କଲିକତା ବନ୍ଦର କର୍ତ୍ତୃପକ୍ଷ ଏହି ଦୁଇଟି ଦ୍ୱୀପକୁ ନିଜ ଅକ୍ତିଆରକୁ ନେଇଯିବାକୁ ଉଦ୍ୟମ କରିଥିଲେ । ଏହାକୁ ନେଇ ଉଭୟ ଓଡ଼ିଶା ଓ ପଶ୍ଚିମବଙ୍ଗ ସରକାରଙ୍କ ମଧ୍ୟରେ ମୁହାଁମୁହିଁ ପରିସ୍ଥିତି ସୃଷ୍ଟି ହୋଇଛି । କଲିକତା ବନ୍ଦର କର୍ତ୍ତୃପକ୍ଷଙ୍କ ଏଭଳି ପାଗଳାମିକୁ ବିରୋଧରେ ଓଡ଼ିଶାବାସୀଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଛି ।

କଲିକତା ବନ୍ଦର କର୍ତ୍ତୃପକ୍ଷ ନିଜ ବନ୍ଦରର ସଂପ୍ରସାରଣ କାର୍ଯ୍ୟସ୍ୱରୂପ ଧାମରା ମୁହାଁଣରେ ଥିବା 'କନିକା ବାଲି' ଓ 'ବୁଢିଆ ବାଲି' ଦୁଇ ଦ୍ୱୀପକୁ ନିଜ ବ୍ୟବହାରରେ ଲଗାଇବାକୁ ଉଦ୍ୟମ କରୁଛି । କଲିକତା ବନ୍ଦର କର୍ତ୍ତୃପକ୍ଷ ନିଜର ଜାହାଜଗୁଡ଼ିକର ବୋଝେଇ ଓ ଖଲାସ କାର୍ଯ୍ୟ କରିବା ପାଇଁ ଏହି ଦୁଇଟି ଦ୍ୱୀପକୁ ଅଧିଗ୍ରହଣ ସକାଶେ ଗତ ୨୦୦୫ ମସିହାରେ ବିଜ୍ଞପ୍ତି ଜାରି କରିଥିଲେ । ମାତ୍ର ଏହି ଦୁଇଟି ଦ୍ୱୀପ ଓଡ଼ିଶାର ଜଳସୀମାରେ ବିଶେଷକରି ତତ୍କାଳୀନ କନିକା ରାଜ୍ୟର ଅଂଶବିଶେଷ ହୋଇଥିବାରୁ ଏହା ଉପରେ ଓଡ଼ିଶାର ଅଧିକାର ସ୍ପଷ୍ଟ ଏବଂ ପଶ୍ଚିମବଙ୍ଗ ଅଯଥାରେ କଳହ ସୃଷ୍ଟି କରିବାକୁ ଉଦ୍ୟମ କରୁଛି ବୋଲି ଓଡ଼ିଶା ସରକାରଙ୍କ ପକ୍ଷରୁ କୁହାଯାଇଛି । କଲିକତା ବନ୍ଦରର ଏଭଳି କାର୍ଯ୍ୟକଳାପରେ ଓଡ଼ିଶା ସରକାର ଖପ୍ପା ହୋଇଥିଲା । ଏଭଳି ହୀନ ଉଦ୍ୟମରୁ ବିରତ ରହିବାକୁ ଓଡ଼ିଶା ପଶ୍ଚିମବଙ୍ଗ ସରକାର ଉପରେ ଚାପ ପ୍ରୟୋଗ କରିଥିଲା ।

କଲିକତା ବନ୍ଦରର ଏଭଳି ମନ୍ଦ ପ୍ରୟାସ ବିରୋଧରେ ଓଡ଼ିଶାର ଧାମରା ବନ୍ଦର କର୍ତ୍ତୃପକ୍ଷ ଓଡ଼ିଶା ହାଇକୋର୍ଟରେ ଏକ ସତ୍ୟପାଠ ଦାଖଲ କରିଥିଲେ । କଲିକତା ବନ୍ଦର କର୍ତ୍ତୃପକ୍ଷ **'କନିକା ବାଲି ଦ୍ୱୀପ'**ର ନାମକୁ ବଦଳାଇ **'ୱେଷ୍ଟର୍ନ ସ୍ୟାଣ୍ଡ ହେଡ୍‌ସ'** ନାମ ଦେଇ ଏହାକୁ ନିଜର କରିବାକୁ ଉଦ୍ୟମ କରୁଛି ବୋଲି ଏହି ସତ୍ୟପାଠରେ ଉଲ୍ଲେଖ ରହିଥିଲା । ଅପରପକ୍ଷେ, ପ୍ରାଚୀନ ସାମୁଦ୍ରିକ ମାନଚିତ୍ରରେ 'ୱେଷ୍ଟର୍ନ ସ୍ୟାଣ୍ଡ୍ ହେଡ୍‌ସ' ନାମରେ କୌଣସି ସ୍ଥାନ ନାହିଁ ବୋଲି ଧାମରା ବନ୍ଦର କର୍ତ୍ତୃପକ୍ଷ ଏହି ସତ୍ୟପାଠରେ ଦର୍ଶାଇଥିଲେ । କେବଳ ଏତିକି ନୁହେଁ, କଲିକତା ବନ୍ଦର କର୍ତ୍ତୃପକ୍ଷ ଏହି 'କନିକା ବାଲି'ରେ ମାଲ୍ ପରିବହନ କାମ କରିବା ଉଦ୍ଦେଶ୍ୟରେ ୫ଟି କଂପାନୀଙ୍କଠାରୁ ଟେଣ୍ଡର ମଧ୍ୟ ଗ୍ରହଣ କରିସାରିଥିଲେ । କଲିକତା ବନ୍ଦରଠାରୁ ୧୦୦ କିଲୋମିଟର ଦୂରରେ ଏବଂ ବର୍ତ୍ତମାନର ଧାମରା ବନ୍ଦର ସୀମାରେ ଅବସ୍ଥିତ ଥିବା ଏହି 'କନିକା ବାଲି'ର ନାମ ବଦଳାଇ ନିଜ ନିୟନ୍ତ୍ରଣକୁ ନେବା ଉଦ୍ୟମକୁ ଓଡ଼ିଶା ସରକାର ତୀବ୍ର ବିରୋଧ କରିଥିଲା ।

କଲିକତା ବନ୍ଦରର ଏଭଳି କାର୍ଯ୍ୟକଳାପ ବିରୋଧରେ ଓଡ଼ିଶା ସରକାରଙ୍କ ହସ୍ତକ୍ଷେପ ଯୋଗୁଁ କଲିକତା ବନ୍ଦର କର୍ତ୍ତୃପକ୍ଷ ଜାରି କରିଥିବା ବିଜ୍ଞପ୍ତିକୁ ପ୍ରତ୍ୟାହାର କରିନେଇଥିଲା ।

'କନିକା ବାଲି'ର ମାଲିକାନାକୁ ନେଇ ଓଡ଼ିଶା ଏବଂ ପଶ୍ଚିମବଙ୍ଗ ମଧ୍ୟରେ ଥିବା ବିବାଦ କୋର୍ଟରେ ବିଚାରାଧୀନ ରହିଛି । କନିକା ବାଲି ଦ୍ୱୀପ ଉପରେ କାହାର ମାଲିକାନା ରହିବ ଏ ଦିଗରେ ଆପୋଷ ବୁଝାମଣା ଭିତ୍ତିରେ ସମାଧାନ କରିବାକୁ ସୁପ୍ରିମ୍ କୋର୍ଟ ଉଭୟ ଓଡ଼ିଶା ଏବଂ ପଶ୍ଚିମବଙ୍ଗ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିବାବେଳେ ଅନ୍ୟ ବାଲି ଦ୍ୱୀପ କାହାର ସେଥିନେଇ ବିବାଦୀୟ ପରିସ୍ଥିତି ଜାରି ରହିଛି । ଓଡ଼ିଶା ସୀମା ମଧ୍ୟରେ କନିକା ବାଲି ଦ୍ୱୀପ ରହିଛି । 'କନିକା ବାଲି' ଓଡ଼ିଶା ସୀମା ମଧ୍ୟରେ ଥିଲେ ମଧ୍ୟ ଓଡ଼ିଶା ସରକାରଙ୍କ ପକ୍ଷରୁ କରାଯାଇଥିବା ସର୍ଭେ ପରିସରଭୁକ୍ତ



**ଧାମରା, କନିକାବାଲି ଓ ହ୍ୱିଲର ଆଇଲାଣ୍ଡର ଗୁଗୁଲ୍ ମ୍ୟାପ୍**

ହୋଇପାରିନାହିଁ । ଏହି ବାଲିଦ୍ୱୀପଗୁଡ଼ିକ ପ୍ରାକୃତିକ ସଂପଦରେ ଭରପୂର ଥିବାରୁ ଏଗୁଡ଼ିକ ପ୍ରତି ପଡ଼ୋଶୀ ପଶ୍ଚିମବଙ୍ଗ ପାଟିରୁ ଲାଳ ଗଡ଼ାଉଛି ।

ଅପରପକ୍ଷେ, ଧାମରା ମୁହାଁଣରେ ବଙ୍ଗୋପସାଗର କୂଳରେ ଅବସ୍ଥିତ କନିକା ବାଲି ଦ୍ୱୀପ ଅଞ୍ଚଳଟି ଓଡ଼ିଶା ସୀମାରେ ଥିଲେ ମଧ୍ୟ ଦୁର୍ଭାଗ୍ୟବଶତଃ ଏହା ସରକାରଙ୍କ ଖାତା (ପ୍ଲଟ୍) ପରିସରଭୁକ୍ତ ହୋଇପାରିନାହିଁ । ଏହାର ଫଳ ସ୍ୱରୂପ, ୨୦୦୬-୦୭ ବର୍ଷରେ ପଶ୍ଚିମବଙ୍ଗ ସରକାର ଏହି କନିକା ବାଲି ଦ୍ୱୀପକୁ ନିଜ ରାଜ୍ୟର ସୀମା ବୋଲି କହି ଜବରଦଖଲ କରିବାକୁ ପ୍ରୟାସ କରିଥିଲା । ଖାଲି ସେତିକି ନୁହେଁ, ଏହି ବାଲି ଦ୍ୱୀପରେ ଏକ ସାମୁଦ୍ରିକ ବନ୍ଦର ପ୍ରତିଷ୍ଠା କରିବା ପାଇଁ ପଶ୍ଚିମବଙ୍ଗ ସରକାର ମଧ୍ୟ ଟେଣ୍ଡର ଘୋଷଣା କରିଥିଲେ । ଏହାକୁ ନେଇ ଓଡ଼ିଶାର ଗଣମାଧ୍ୟମରେ ଚର୍ଚ୍ଚା ଓ ତୁମ୍ବିତୋଫାନ୍ ହେବାପରେ ଓଡ଼ିଶା ସରକାରଙ୍କ ନିଦ ଭାଙ୍ଗିଥିଲା । ଶେଷରେ ବହୁ ବିଳମ୍ବରେ କନିକା ବାଲି ଦ୍ୱୀପ ଓଡ଼ିଶାର ବୋଲି ଓଡ଼ିଶା ସରକାରଙ୍କ ବାଣିଜ୍ୟ ସଚିବ ଘୋଷଣା କରିଥିଲେ ।

ବ୍ରିଟିଶ୍ ଅମଳର ଆଡ୍‌ମିରାଲ୍ ମ୍ୟାପ୍ ଅନୁଯାୟୀ 'କନିକା ବାଲି' ଓଡ଼ିଶା ମାନଚିତ୍ରରେ ରହିଆସିଛି ବୋଲି ଓଡ଼ିଶା ସରକାରଙ୍କ ପକ୍ଷରୁ କେନ୍ଦ୍ର ସରକାରଙ୍କ ଜାହାଜ ମନ୍ତ୍ରଣାଳୟ ନିକଟରେ ପ୍ରତିବାଦ କରାଯାଇଥିଲା । ଐତିହାସିକ ତଥ୍ୟ ଅନୁଯାୟୀ, ବ୍ରିଟିଶ୍ ସରକାରଙ୍କ ଅମଳର କନିକା ବାଲି ଦ୍ୱୀପ ଅଞ୍ଚଳରେ ଏକ ପ୍ରାକୃତିକ ବନ୍ଦର ଥିଲା । ପରବର୍ତ୍ତୀ ସମୟରେ ବ୍ରିଟିଶ୍ ଅମଳର ପୁରାତନ ଚାନ୍ଦବାଲି ବନ୍ଦର ସ୍ଥାପନ ହେବା ପରେ 'କନିକା ବାଲଦ୍ୱୀପ' ବନ୍ଦର ନିଜର ଗୁରୁତ୍ୱ ହରାଇଥିଲା ।

ବର୍ତ୍ତମାନ ଏହି କନିକା ବାଲିଦ୍ୱୀପ ଅଞ୍ଚଳଟି ଓଡ଼ିଶା ସରକାରଙ୍କ ଦ୍ୱାରା ସର୍ଭେ ହୋଇ ନପାରି ପଡ଼ିରହିଛି । ଏହାର ଅବସ୍ଥିତି ସଂପର୍କରେ କୌଣସି ସରକାରୀ ରେକର୍ଡ ମଧ୍ୟ ନାହିଁ । ଏପରିକି ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗର ୧୯୮୨ ମସିହାର ସେଟଲ୍‌ମେଣ୍ଟରେ ମଧ୍ୟ କନିକା ବାଲିଦ୍ୱୀପର ରେକର୍ଡ଼ ନାହିଁ ।

ଧାମରା ନିକଟବର୍ତ୍ତୀ **ହ୍ୱିଲର ଦ୍ୱୀ**ପରେ ଯେତେବେଳେ କେନ୍ଦ୍ର ସରକାରଙ୍କ ପ୍ରତିରକ୍ଷା ବିଭାଗ ପକ୍ଷରୁ କ୍ଷେପଣାସ୍ତ୍ର ଘାଟି ସ୍ଥାପନ ପାଇଁ ଯୋଜନା ପ୍ରସ୍ତୁତ କରାଗଲା, ସେତେବେଳେ ଓଡ଼ିଶା ସୀମା ମଧ୍ୟରେ ଥିବା କେତେକ ବାଲିଦ୍ୱୀପ ଏବଂ ହ୍ୱିଲର ଦ୍ୱୀପରେ **ବାଂଲାଦେଶୀ ମତ୍ସ୍ୟଜୀବିମାନେ** ରହୁଥିବା ବିଭାଗର ନଜରକୁ ଆସିଥିଲା । ଏହି ତଥ୍ୟ ସେତେବେଳେ ପ୍ରକାଶ କରିଥିଲେ, ବରିଷ୍ଠ ବୈଜ୍ଞାନିକ ଏ.ପି.ଜେ. ଅବଦୁଲ୍ କାଲାମ୍ । କେନ୍ଦ୍ର ସରକାରଙ୍କ ପ୍ରତିରକ୍ଷା ବିଭାଗ ପକ୍ଷରୁ ହ୍ୱିଲର ଦ୍ୱୀପପୁଞ୍ଜରେ ବାଂଲାଦେଶୀଙ୍କ ଉପସ୍ଥିତି ନେଇ ରାଜ୍ୟ ସରକାରଙ୍କୁ ଅବଗତ କରାଯାଇଥିଲା । ଏହାପରେ ୧୯୮୭ ମସିହାରେ ହ୍ୱିଲର ଦ୍ୱୀପପୁଞ୍ଜରେ ଲ୍ୟାଣ୍ଡ ସର୍ଭେ କାମ ଆରଂଭ କରାଯାଇଥିଲା । ସର୍ଭେ କରାଯାଇ ତତ୍‌କ୍ଷଣାତ ସରକାରୀ ରେକର୍ଡ଼ଭୁକ୍ତ କରାଯାଇଥିଲା ।




ପ୍ରାଚୀନ କଳିଙ୍ଗ ସାଗରର ସାମୁଦ୍ରିକ ବାଣିଜ୍ୟ ମାନଚିତ୍ର

ଓଡ଼ିଶା ସରକାରଙ୍କ ପକ୍ଷରୁ ସର୍ଭେ କରାଯାଇ ହ୍ୱିଲର ଦ୍ୱୀପପୁଞ୍ଜସମୂହର **ଆଉଟ୍‌ର ହ୍ୱିଲର ଆଇଲ୍ୟାଣ୍ଡ** ବା **ତେନ୍ତୁଳିଆ ଚଡ଼ା** (୨୬୩ ଏକର), **ଲଙ୍ଗ୍ ହ୍ୱିଲର ଆଇଲ୍ୟାଣ୍ଡ** ବା **ବାବୁବାଲି ଚଡ଼ା** (୫୨ ଏକର), **ହ୍ୱିଲର ଆଇଲ୍ୟାଣ୍ଡ** ବା **ଚଡ଼ା ବାଲି** (୧୦·୬୩ ଏକର) ଏବଂ **ସର୍ଟ୍‌ସ ହ୍ୱିଲର ଆଇଲାଣ୍ଡ** ବା **ନଡ଼ିଆ ବାଲି** (୪୧ ଏକର) ଆଦି ଦ୍ୱୀପପୁଞ୍ଜଗୁଡ଼ିକୁ ରେକର୍ଡ଼ଭୁକ୍ତ କରାଯାଇଥିଲା । ଏହିସବୁ ହ୍ୱିଲର ଦ୍ୱୀପପୁଞ୍ଜସମୂହ ମଧ୍ୟରୁ କେବଳ ଆଉଟର ହ୍ୱିଲର ଆଇଲାଣ୍ଡକୁ ପ୍ରତିରକ୍ଷା ବିଭାଗକୁ ହସ୍ତାନ୍ତର କରାଯାଇଥିଲା, ଯେଉଁଥିରେ କ୍ଷେପଣାସ୍ତ୍ର ଘାଟି ସ୍ଥାପନ ହୋଇଛି ।

ଭାରତ ସରକାରଙ୍କ ପ୍ରତିରକ୍ଷା ବିଭାଗ ପକ୍ଷରୁ ଏକ ସ୍ୱତନ୍ତ୍ର ଅଭିଯାନ ମାଧ୍ୟମରେ ଏହି ଦ୍ୱୀପଗୁଡିକରେ ରହୁଥିବା ବାଂଲାଦେଶୀମାନଙ୍କୁ ହଟାଇ ଦିଆଯାଇଥିଲା । ତେବେ କନିକା ବାଲିଦ୍ୱୀପ ଅଞ୍ଚଳଟି ସେତେବେଳେ ସର୍ଭେ ପରିସରକୁ ଆସି ନଥିଲା । କନିକା ବାଲିଦ୍ୱୀପଟି କାହିଁକି ସେତେବେଳେ ସର୍ଭେ ପରିସରଭୁକ୍ତ ହୋଇ ନଥିଲା ସେ ସଂପର୍କରେ କୌଣସି ସୂଚନା ମିଳିନାହିଁ । ସଂଭବତଃ କନିକା ବାଲି ଦ୍ୱୀପ *(Kanika Sands)* ସମୂହ ସେତେବେଳେ ଜୁଆର ପାଣିରେ ବୁଡି ରହୁଥିବାରୁ ତାହା ସର୍ଭେ ପରିସରଭୁକ୍ତ ହୋଇ ପାରି ନଥାଇପାରେ ବୋଲି କୁହାଯାଉଛି ।

**କନିକା ବାଲି** ଦ୍ୱୀପଟି ଧାମରା ମୁହାଁଣ ଏବଂ ଆଉଟର୍ ହ୍ୱିଲର୍ ଦ୍ୱୀପର ମଧ୍ୟ ସ୍ଥଳରେ ଅବସ୍ଥିତ । ୧୯୩୧ ମସିହାରେ ବଙ୍ଗ-ବିହାର-ଓଡ଼ିଶା ରାଜସ୍ୱ ବିଭାଗ ପକ୍ଷରୁ ଯେଉଁ ବିଜ୍ଞପ୍ତି ପ୍ରକାଶ ପାଇଥିଲା ସେଥିରେ ପୁରାତନ ଚାନ୍ଦବାଲି ବନ୍ଦରର ସୀମା ସଂପର୍କରେ ଉଲ୍ଲେଖ ରହିଥିଲା ।

ଏହାପରେ ୧୯୮୯ ମସିହାରେ ଓଡ଼ିଶା ସରକାରଙ୍କ ବାଣିଜ୍ୟ ବିଭାଗ ପକ୍ଷରୁ ଉକ୍ତ ବିଜ୍ଞପ୍ତିକୁ ସଂଶୋଧନ କରାଯାଇ ପୁରାତନ ଚାନ୍ଦବାଲି ବନ୍ଦରର ସୀମା ନିର୍ଦ୍ଧାରଣ କରାଯାଇଥିଲା । ଦୁଇଟିଯାକ ବିଜ୍ଞପ୍ତିରେ ମଧ୍ୟ କନିକା ବାଲି ଦ୍ୱୀପଟି ଚାନ୍ଦବାଲି ବନ୍ଦରର ସୀମା ମଧ୍ୟରେ ଅବସ୍ଥିତ ଥିଲା ବୋଲି ସୂଚନା ଦିଆଯାଇଥିଲା । ମାତ୍ର ଏହି କନିକା ବାଲି ଦ୍ୱୀପଟି ସରକାରୀ ରେକର୍ଡଭୁକ୍ତ ହୋଇଛି କି ନାହିଁ ସେ ସଂପର୍କରେ ବେଶି କିଛି ତର୍ଜମା ହୋଇ ନଥିଲା ।

୧୯୮୯ ମସିହାରେ ଭିତରକନିକା ଅଭୟାରଣ୍ୟ ସୀମା ନିର୍ଦ୍ଧାରଣ ପାଇଁ ଯେତେବେଳେ ବିଜ୍ଞପ୍ତି ପ୍ରକାଶ ପାଇଲା ସେତେବେଳେ କନିକା ବାଲି ଦ୍ୱୀପଟି ଚିହ୍ନଟ ହୋଇଥିଲା । ବିଜ୍ଞପ୍ତି ପ୍ରକାଶନର ବହୁ ବର୍ଷପରେ (ସେତେବେଳକୁ ବାଲେଶ୍ୱର ଜିଲ୍ଲା ବିଭାଜିତ ହୋଇ ଭଦ୍ରକ ଏକ ନୂଆ ଜିଲ୍ଲାର ମାନ୍ୟତା ପାଇ ସାରିଥିଲା) ପ୍ରସ୍ତାବିତ ଭିତରକନିକା ଅଭୟାରଣ୍ୟ ସୀମାରୁ କେତେକ ଅଞ୍ଚଳକୁ ବାଦ୍ ଦେବା ପାଇଁ ଭଦ୍ରକ ଜିଲ୍ଲାପାଳଙ୍କ ଅଦାଲତରେ ଏକ ମିସ୍ କେଶ୍ ଦାଏର ହୋଇଥିଲା । ଏ ନେଇ କ୍ଷେତ୍ରୀୟ ଅନୁଧ୍ୟାନ କରି ରିପୋର୍ଟ ପ୍ରଦାନ କରିବାକୁ ଭଦ୍ରକ ଜିଲ୍ଲା ପ୍ରଶାସନ ଚାନ୍ଦବାଲି ତହସିଲଦାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଚାନ୍ଦବାଲି ତହସିଲଦାର ୧୯୯୮ ମସିହା ଜୁନ୍ ୨୦ ତାରିଖରେ ତାଙ୍କର ରିପୋର୍ଟରେ କନିକା ବାଲି ଦ୍ୱୀପ ସଂପର୍କରେ ଉଲ୍ଲେଖ କରିଥିଲେ । ବିଜ୍ଞାପିତ ଭିତରକନିକା ଅଭୟାରଣ୍ୟ ସୀମା ମଧ୍ୟରେ ନିର୍ମାଣାଧୀନ ଧାମରା ଓ ଚାନ୍ଦବାଲି ବନ୍ଦରର ସୀମା ରହୁଥିବାରୁ ତାହାକୁ ଅଭୟାରଣ୍ୟ ପରିସରରୁ ବାଦ୍ ଦେବାକୁ ତହସିଲଦାର ସୁପାରିଶ କରିଥିଲେ । ତହସିଲଦାରଙ୍କ ଏହି ସୁପାରିଶ ଅନୁସାରେ ଧାମରା ବନ୍ଦର ଅନ୍ତର୍ଗତ ଏହି କନିକା ବାଲି ଦ୍ୱୀପଟି ଭିତରକନିକା ଅଭୟାରଣ୍ୟ ପରିସରରୁ ବାଦ୍ ପଡ଼ିଗଲା । ମାତ୍ର ସେତେବେଳେ 'କନିକା ବାଲି ଦ୍ୱୀପ'ଟିକୁ ସର୍ଭେଭୁକ୍ତ କରାଗଲା ନାହିଁ କି ସରକାରୀ ରେକର୍ଡକୁ ଅଣାଗଲା ନାହିଁ । ଏହା ଦୁର୍ଭାଗ୍ୟଜନକ । ଧାମରା ବନ୍ଦର କର୍ତ୍ତୃପକ୍ଷ ମଧ୍ୟ ଏ ନେଇ କିଛି ବନ୍ଦୋବସ୍ତ ନ କରି ନାହିରେ ତେଲ ଦେଇ ଚୁପ୍ ଶୋଇଗଲେ ।

କନିକା ବାଲି ଦ୍ୱୀପରେ ବ୍ୟାପକ ଝାଉଁ ଜଙ୍ଗଲ ଦେଖିବାକୁ ମିଳେ । ବୃହତ୍ ଧାମରା ବନ୍ଦର ନିର୍ମାଣ ଦିଗରେ କନିକା ବାଲି ଦ୍ୱୀପର ଏକ ବିଶେଷ ଭୂମିକା ରହିଛି । ବନ୍ଦରକୁ ସାମୁଦ୍ରିକ ଜୁଆରରୁ ରକ୍ଷା କରିବା ପାଇଁ ଝାଉଁଗଛ ପରିପୂର୍ଣ୍ଣ ପ୍ରାୟ ୩୦୦ ଏକର ପରିମିତ ଏହି କନିକା ବାଲି ଦ୍ୱୀପଟି ଏକ ପ୍ରାକୃତିକ ରକ୍ଷା କବଚ ସାଜିଥିବାବେଳେ ଓଡ଼ିଶା ସରକାର ଏହି ଦ୍ୱୀପଟିର ଗୁରୁତ୍ୱ ବୁଝି ପାରି ନଥିଲେ । ଧାମରା ବନ୍ଦର ସ୍ଥାପନ ଲାଗି ବିଦେଶୀ କଂପାନୀଗୁଡ଼ିକର ଆଗ୍ରହ ପଛରେ ଏହି କନିକା ବାଲି ଦ୍ୱୀପ ମଧ୍ୟ ଏକ କାରଣ ଥିଲା ବୋଲି ଜଣାପଡ଼ିଛି । ଏହି ଦ୍ୱୀପର ଅବସ୍ଥିତି ଧାମରା ମାଛଧରା ଜେଟି (ମତ୍ସ୍ୟ ପୋତାଶ୍ରୟ)ଠାରୁ ମାତ୍ର ୧୨ କିଲୋମିଟର ଏବଂ ତାଳଚୁଆ ମତ୍ସ୍ୟ ପୋତାଶ୍ରୟ (କେନ୍ଦ୍ରାପଡ଼ା)ଠାରୁ ମାତ୍ର ୮ କିଲୋମିଟର ଦୂରରେ ଅବସ୍ଥିତ । ସେହିଭଳି ନୂତନ କରି ଚନ୍ଦନିପାଳଠାରେ

ନିର୍ମାଣାଧୀନ ଧାମରାବନ୍ଦରଠାରୁ ମାତ୍ର ୩ କିଲୋମିଟର ଦୂରରେ ଏହି 'କନିକା ବାଲି' ଦ୍ୱୀପଟି ଅବସ୍ଥିତ । ଅପରପକ୍ଷେ, ଧାମରା ବନ୍ଦର ନିର୍ମାଣ କଂପାନୀ ଏବେ ୧୮ କିଲୋମିଟର ଧରି ସମୁଦ୍ର ପଥ ଖୋଳାରେ ଯେଉଁ ବାଲି, ମାଟି, କାଦୁଅ ବାହାର କରୁଛି ତାହାକୁ ନେଇ ଏହି 'କନିକା ବାଲି' ଦ୍ୱୀପରେ ଗଦା କରୁଛି । ଧାମରା ବନ୍ଦରଠାରୁ ମାତ୍ର ୩ କିଲୋମିଟର ଦୂରରେ ଥିବା ଏହି କନିକା ବାଲି ଦ୍ୱୀପକୁ ପଶ୍ଚିମବଙ୍ଗ ସରକାର (କଲିକତା ବନ୍ଦର କର୍ତ୍ତୃପକ୍ଷ) କିଭଳି ନିଜ ଅଧିନକୁ ନେବାକୁ ଉଦ୍ୟମ କରୁଛନ୍ତି ତାହା ଭାବିଲେ ଓଡ଼ିଆମାନଙ୍କ ରକ୍ତ ଗରମ ହୋଇଯାଏ ।

କେବଳ କନିକା ବାଲି ଦ୍ୱୀପ ନୁହେଁ, ଧାମରା ବନ୍ଦର ଇଲାକା ମଧ୍ୟରେ ଏଭଳି ଅନେକ ଦ୍ୱୀପପୁଞ୍ଜ ରହିଛି, ଯାହାର ସର୍ଭେ କାମ ହୋଇପାରିନାହିଁ । 'ବୁଢିଆ ବାଲି ଦ୍ୱୀପ' ମଧ୍ୟ ରାଜ୍ୟ ସରକାରଙ୍କ ସର୍ଭେ ପରିସରଭୁକ୍ତ ହୋଇପାରିନାହିଁ । ନୂତନ ଧାମରା ବନ୍ଦର (ଚନ୍ଦନିପାଳ) ଇଲାକା ମଧ୍ୟରେ ବାଲିସାହି ନିକଟବର୍ତ୍ତୀ ନୀଳକଣ୍ଠନଗରରୁ ବିଜୟପାଟଣା ମଧ୍ୟରେ ପାଖାପାଖି ୪୦୦ ଏକର ଜମି ସର୍ଭେ ହୋଇ ନପାରି ପଡ଼ି ରହିଛି, ଯାହା କି ଆଜିଯାଏ ସରକାରୀ ଖାତାଭୁକ୍ତ ହୋଇପାରିନାହିଁ । ଓଡ଼ିଶା ସରକାର ଏ ଦିଗରେ କାହିଁକି ନିରବ ରହିଛନ୍ତି ସେଥିନେଇ ବିଭିନ୍ନ ମହଲରେ ଅସନ୍ତୋଷ ପ୍ରକାଶ ପାଇଛି । ସରକାର କେବଳ ଧାମରା ବନ୍ଦରର ନୁହେଁ ବରଂ ଉପକୂଳ ଓଡ଼ିଶାର ପୁନଃ ସର୍ଭେ କାର୍ଯ୍ୟ ଆରଂଭ କରି ରାଜ୍ୟର ସାମୁଦ୍ରିକ ସୀମା ଚିହ୍ନଟ କରିବା ଉଚିତ୍ । ନଚେତ ପଶ୍ଚିମବଙ୍ଗ ସରକାର ଭଳି ଭବିଷ୍ୟତରେ ବାଂଲାଦେଶ ସରକାର ଓଡ଼ିଶାର ସୀମାରେ ଥିବା ଜମି ଉପରେ ନିଜର ମାଲିକାନା ଜାହିର ନ କରିବ ତାହା କିଏ କହିପାରିବ?

[ ତଥ୍ୟ ସହାୟତା

୧. ଦୈନିକ ଖବରକାଗଜ 'ପ୍ରମେୟ', ବର୍ଷ-୪, ସଂଖ୍ୟା-୨୧, ତା: ୨୨.୦୫.୨୦୧୪, ଭୁବନେଶ୍ୱର ସଂସ୍କରଣ, ଡିହିଡ଼ି ଡେଟ୍ ଲାଇନ୍

*2. The Hindu, Business Line, the article was published on June 19, 2013 by Santanu Sanyal, Kolkata*

୩. ଦୈନିକ 'ସମ୍ବାଦ', କଟକ ସଂସ୍କରଣ, ୧୫, ସେପ୍‌ଟେମ୍ବର ୨୦୧୧ ]

## ମଇପୁରା ପଏଣ୍ଟ (ମାୟାପୁର ଅନ୍ତରୀପ)

*(Maipura Point)*

ଧାମରା ମୁହାଁଣଠାରୁ ଦକ୍ଷିଣରେ ମହାନଦୀ ମୁହାଁଣ ପର୍ଯ୍ୟନ୍ତ ୪୮ କିଲୋମିଟର କେନ୍ଦ୍ରାପଡ଼ା ଜିଲ୍ଲା ସୀମାରେ ବଙ୍ଗୋପସାଗର ଉପକୂଳରେ ଅନେକ ଛୋଟବଡ଼ ଦ୍ୱୀପ ରହିଛି ଯାହାକୁ ସ୍ଥାନୀୟ ଭାଷାରେ ଡିଆ, ଚଡ଼ା, ବାଲି, ନାସି ଆଦି କୁହାଯାଏ । ଯଥା-**ହ୍ୱିଲର୍ସ ଆଇଲାଣ୍ଡ**, ନଡ଼ିଆଚଡ଼ା,

**ବାବୁବାଲିଚଡ଼ା, ତେନ୍ତୁଳିଆ ବାଲି, ମୈପୁରା ଅନ୍ତରୀପ, ଉଡ଼ାବାଲି, ମହାକୁଡ଼ଚଡ଼ା, ପଲ୍ମାଇର୍ସ ପଏଣ୍ଟ, ରେଡ୍ଡି ପଏଣ୍ଟ, ଫଲ୍ସ ପଏଣ୍ଟ, ଧାନୀଚଡ଼ା, ବନୀ ଚଡ଼ା, ଚିଳିଚାଧାନି, ନୂଆଡ଼ିଆ, ସାପୁଆଡ଼ିଆ, ନୂଆଗାଁଚଡ଼ା, ଏକକୁଳାନାସି, ଖରିନାସି, ଠାକୁରାଣିଡ଼ିଆ, ଜମ୍ବୁଦ୍ୱୀପ, ଅଗରନାସି, କନିକାବାଲି, ହେଟାମୁଣ୍ଡିଆ, ହୁକିଟୋଲା (ଗୋବରୀଚଡ଼ା), ପ୍ଲୋଡେନ୍ ଆଇଲାଣ୍ଡ, ପ୍ଲଙ୍କ୍ ଆଇଲାଣ୍ଡ, ଡୌଡ଼େଶ୍ ୱେଲ୍ ଆଇଲାଣ୍ଡ** ଆଦି ଅନେକ ଉଚ୍ଚସ୍ଥାନ ସମୁଦ୍ର କିମ୍ବା ନଦୀ ମଧ୍ୟରେ ରହିଛି । ଏହିସବୁ ଛୋଟବଡ଼ ଦ୍ୱୀପପୁଞ୍ଜମାନଙ୍କ ମଧ୍ୟରୁ ଗୋଟିଏ ଦୁଇଟିକୁ ଛାଡ଼ିଦେଲେ ବାକି ସମସ୍ତ ସ୍ଥଳଭାଗ କେନ୍ଦ୍ରାପଡ଼ା ଜିଲ୍ଲାର ମାର୍ଶାଘାଇ ଓ ରାଜନଗର ତହସିଲ୍ ଅନ୍ତର୍ଭୁକ୍ତ ।

ବ୍ରାହ୍ମଣୀ ନଦୀ ଯାଜପୁର ଜିଲ୍ଲାରୁ ବହିଆସି ଇନ୍ଦୁପୁର ଗ୍ରାମ ନିକଟରେ କେନ୍ଦ୍ରାପଡ଼ା ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ସେଠାରୁ ପୂର୍ବ ଦିଗକୁ କିଛି ବାଟ ଗତିକରି ରାଜନଗର ତହସିଲର ନୂଆଗାଁଠାରେ ଦୁଇଟି ଶାଖାରେ ବିଭକ୍ତ ହୋଇ ଦକ୍ଷିଣ ଶାଖାଟି ମଇପୁରା ନଦୀ ନାମରେ ବଙ୍ଗୋପ ସାଗରରେ ପଡ଼ିଛି । ଏହାର ମୁହାଁଣରେ ଏକ ସୁକ୍ଷ୍ମ ଭୂ-ଭାଗ ବା ଦ୍ୱୀପ ସୃଷ୍ଟି ହୋଇଥିଲା । ଏହାକୁ '**ମଇପୁରା ପଏଣ୍ଟ**' ବା '**ମଇପୁରା ଖାଡ଼ି**' କୁହାଯାଏ । ଏହି ଦ୍ୱୀପରେ ଗୋଟିଏ ବତୀଘର ନିର୍ମାଣ କରାଯାଇଥିଲା । ହୁଗୁଳି ବନ୍ଦରକୁ ଯାଉଥିବା ପୋତର ନାବିକମାନେ ଏହି ବତୀଘରକୁ ଲକ୍ଷ୍ୟ କରି ଏଠାରେ ପହଞ୍ଚୁଥିଲେ । ମଇପୁରା ମୁହାଁଣ ନିକଟରୁ ୧୬୮୦ ମସିହା ଅକ୍ଟୋବର ପ୍ରଥମ ସପ୍ତାହରେ ଗୋଟିଏ ଏକ ମାସ୍ତୁଲ ବିଶିଷ୍ଟ ବ୍ରିଟିଶ୍ ପୋତକୁ ଲୁଣ୍ଠନ କରାଯାଇଥିଲା । ନୂତନ ଭାବେ ଗଠିତ ଏହି ଦ୍ୱୀପର ମାଲିକାନା (ଲିଜ୍) ପାଇଁ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ ୧୯୨୮ ମସିହାରେ ବୋର୍ଡ ଅଫ୍ ରେଭିନ୍ୟୁକୁ ଦରଖାସ୍ତ କରିଥିଲେ । ଏହି ଦ୍ୱୀପର ପୂର୍ବ ଭାଗରେ ଅବିଭକ୍ତ କଟକ ଜିଲ୍ଲାର (ବର୍ତ୍ତମାନର କେନ୍ଦ୍ରାପଡ଼ା) କନିକା ଅଂଶକୁ ଲାଗି ହ୍ୱିଲର ଦ୍ୱୀପପୁଞ୍ଜ ଗଠିତ ହୋଇଛି । ସମୟକ୍ରମେ ମଇପୁରା ଦ୍ୱୀପର ପରିଧି କ୍ଷୟ ହେଲା ଏବଂ ଏହାର ମୁହାଁଣ ବାଲିବନ୍ଧ ଦ୍ୱାରା ବଙ୍ଗୋପସାଗରରୁ ବିଛିନ୍ନ ହୋଇଗଲା ।

[ **ତଥ୍ୟ ସହାୟତା:**

**୧. କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ପ୍ରଥମ ଭାଗ), ପ୍ରତାପ କୁମାର ରାୟ, ଅରଡ଼ପଲ୍ଲୀ, ଜରିଆ, କେନ୍ଦ୍ରାପଡ଼ା, ଦ୍ୱିତୀୟ ସଂସ୍କରଣ (୨୦୦୯), ପୃଷ୍ଠା : ୫୫, ୫୬**

2. *Hunter W.W. -Orissa-Vol-II-1872-Appendix-IV, P-101*

**୩. କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ଦ୍ୱିତୀୟ ଭାଗ), ପ୍ରତାପ କୁମାର ରାୟ, ପ୍ରକାଶକ: ସ୍ୱସ୍ତିକ, ବାପୁଜୀନଗର, ଭୁବନେଶ୍ୱର (୨୦୧୦), ପୃଷ୍ଠା : ୧୮୮**

4. *Acc No. 3652/Pur, Orissa State Archives, Bhubaneswar* ]

# ହ୍ୱିଲର ଦ୍ୱୀପପୁଞ୍ଜ

*(Wheeler Island)*

ଓଡ଼ିଶା ଉପକୂଳର ବଙ୍ଗୋପସାଗରରେ (ତତ୍କାଳୀନ କନିକା ରାଜ୍ୟର ସୀମା, ଧାମରା ମୁହାଁଣରେ) ଅବସ୍ଥିତ ଛୋଟଛୋଟ ପାଞ୍ଚଗୋଟି ଦ୍ୱୀପର ସମାହାରକୁ ହ୍ୱିଲର ଦ୍ୱୀପପୁଞ୍ଜ କୁହାଯାଉଥିଲେ ମଧ୍ୟ ମଇପୁରା ମୁହାଁଣର ଅନତିଦୂର ପୂର୍ବ ଦିଗରେ ଅବସ୍ଥିତ ତିନୋଟି ଦ୍ୱୀପ ମୁଖ୍ୟତଃ ହ୍ୱିଲର ଦ୍ୱୀପ ଭାବେ ପରିଚିତ । ପୂର୍ବ ବନ୍ଦୋବସ୍ତରେ ରାଜ୍ୟ ସରକାରଙ୍କ ଦ୍ୱାରା ଏହି ଦ୍ୱୀପର ସର୍ବେକ୍ଷଣ କରାଯାଇଥିଲା । ସେ ସମୟରେ ଏହାର ଆୟତନ ୨୭୭·୬୦ ଏକର ଥିଲା । ପରବର୍ତ୍ତୀ ସମୟରେ ଏହାର ଆକାର ବୃଦ୍ଧି ପାଇ ୪୬୫·୦୧ ଏକର ହେଲା । ଗଭୀର ସମୁଦ୍ରକୁ ମାଛ ମାରିବାକୁ ଯାଉଥିବା କନିକା ଅଞ୍ଚଳର ମତ୍ସ୍ୟଜୀବିମାନେ ଏଠାରେ ଆଶ୍ରୟ ନେଇଥା'ନ୍ତି । ଦ୍ୱୀପଗୁଡ଼ିକର ସୀମା ନିର୍ଦ୍ଧାରଣ ପାଇଁ ବଡ଼ବଡ଼ ଖମ୍ବ ତିଆରି କରାଯାଇଛି । ଏହି ଦ୍ୱୀପପୁଞ୍ଜସମୂହ ଭାରତର ବୋଲି ଏହି ଖମ୍ବଗୁଡିକରେ ଅଙ୍କିତ ଥିବା ଅଶୋକ ଚକ୍ରର ନକ୍ସାରୁ ସ୍ପଷ୍ଟ ହୋଇଛି ।

ବିହାର-ଓଡ଼ିଶା ପ୍ରଦେଶ ଗଭର୍ନର ସାର୍‌· ହେନେରି ହ୍ୱିଲର୍‌ଙ୍କ ନାମରେ ଏହି ଦ୍ୱୀପପୁଞ୍ଜର ନାମକରଣ ହୋଇଛି । "ସଂଯୋଗବଶତଃ ସେହି ସମୟରେ ସମୁଦ୍ର ଭିତରେ ଖଣ୍ଡେ ଚଡ଼ା (ଦ୍ୱୀପ) ପାଇଁ ଆଳି ଓ କନିକା ରାଜାଙ୍କ ମଧ୍ୟରେ ବିବାଦ ଉପୁଜିଲା । ବିଷୟଟି ହେଉଛି ଏହି ଯେ, ସେ ଚଡ଼ା ପ୍ରକୃତରେ ସରକାରଙ୍କର । ମାତ୍ର କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ବିହାର-ଓଡ଼ିଶା ପ୍ରଦେଶର ତତ୍କାଳୀନ ଲାଟ୍‌ ସାର୍‌· ହେନେରି ହ୍ୱିଲର୍‌ଙ୍କ ନାମରେ ସେ ଚଡ଼ାକୁ ହ୍ୱିଲର ଆଇଲାଣ୍ଡ ନାମ ଦେଇ ନିଜେ ଦଖଲ କରିଯାଇଥିଲେ । ଜୋନ୍‌ଷ୍ଟନ୍‌ ବାଲେଶ୍ୱର କଲେକ୍ଟର ହିସାବରେ ଏହା ଧରିଲେ ଓ ସେ ଚଡ଼ାକୁ ସରକାରଙ୍କର ବୋଲି ଘୋଷଣା କରି ଦଖଲ ପାଇଁ ଆଳି ରାଜାଙ୍କୁ ପଟ୍ଟା କରିଦେଲେ । ଆଳି ଓ କନିକାର ଚିର ବିବାଦ । ଏଥିରେ ଜଣେ କଲେକ୍ଟର ଅଂଶ ନେବା ସମୀଚିନ ହେଲା ନାହିଁ ।"

ଭୁବନେଶ୍ୱରସ୍ଥିତ *Orissa State Archives (Acc No. 3649/Pur)*ରେ ହ୍ୱିଲର ଦ୍ୱୀପପୁଞ୍ଜକୁ ନେଇ ଆଳି-କନିକା ବିବାଦ ସଂପର୍କିତ କିଛି ତଥ୍ୟ ନିମ୍ନରେ ଉପସ୍ଥାପନ କରାଗଲା-

୧· "ଯେତେବେଳେ ପ୍ରାୟ ୧୯୨୦ ମସିହା ବେଳକୁ ବଙ୍ଗୋପସାଗରରେ ପ୍ରାକୃତିକ ଉପାୟରେ ଏହି ଦ୍ୱୀପପୁଞ୍ଜ ଗଠିତ ହେଲା, କନିକା ରାଜା (ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ) ଏହାକୁ ଦଖଲ କଲେ, ଯେହେତୁ ଦ୍ୱୀପପୁଞ୍ଜ କନିକା ଇଷ୍ଟେଟର ସମ୍ମୁଖବର୍ତ୍ତୀ ସମୁଦ୍ରରେ ପ୍ରାୟ ୪ ମାଇଲ୍‌ ଦୂରତାରେ ଥିଲା, କନିକାର ପ୍ରଜାମାନେ ସମୁଦ୍ରରୁ ମାଛ ଧରି ତାହା ଉପରେ ଶୁଖାଉଥିଲେ । ଏଥିପାଇଁ କନିକାର ପ୍ରଜାମାନେ କନିକା ରାଜାଙ୍କୁ ନିର୍ଦ୍ଦିଷ୍ଟ ପରିମାଣର ପାଉଣା ଦେଉଥିଲେ ।

୨· ଏହି ଦ୍ୱୀପପୁଞ୍ଜର ସର୍ଭେ ଓ ଖେଓ୍ୱାଟ ସମୟରେ ତାହାର ମାଲିକ ରୂପେ ଲିପିବଦ୍ଧ କରିବାକୁ କନିକା ରାଜା ଦାବି କଲେ ।

୩· ବାଲେଶ୍ୱର କଲେକ୍ଟର ବର୍ତ୍ତମାନ ଏହି ଦ୍ୱୀପ ପୁଞ୍ଜକୁ କଟକର ଜଣେ ଓକିଲ ତଥା ଆଳି ରାଜାଙ୍କର ଜଣେ ପୂର୍ବତନ ମେନେଜର ବେନାମୀଦାର ଶଶୀଭୂଷଣ ରାୟଙ୍କ ନାମରେ ପଟ୍ଟା (ଲିଜ୍) ଦେବାକୁ ମସୁଧା କରୁଛନ୍ତି । ଏହି ଲିଜ୍‌ରେ ସର୍ତ୍ତ ଅଛି ଯେ, ପଟ୍ଟାଦାର ଏହି ଲିଜ୍‌କୁ କଲେକ୍ଟରଙ୍କ ବିନାନୁମତିରେ ଆଳି ରାଜାଙ୍କୁ ହସ୍ତାନ୍ତର କରିବାର ଅଧିକାର ଅଛି । ଏହା ପରିଷ୍କାର ଭାବେ ଜଣାଯାଏ ଯେ ଏହି ଲିଜ୍ ଆଳି ରାଜାଙ୍କ ପାଇଁ କଳ୍ପିତ । ଆଳି ଇଷ୍ଟେଟର ସମୁଦ୍ରର ଜଳଭାଗ ନାହିଁ ଏବଂ ଏହା ଗୋଟିଏ ସ୍ଥଳଭାଗ ଇଷ୍ଟେଟ୍ ଏଭଳି ଲିଜ୍ ଦେବା ଅର୍ଥ କନିକା ରାଜାଙ୍କୁ ଅସୁବିଧାରେ ପକାଇବ ଯେଉଁଥିରେ ଅତୀତରେ କନିକା ଓ ଆଳି ରାଜାଙ୍କ ମଧ୍ୟରେ ମାଲି ମୋକଦ୍ଦମା ହୋଇଥିଲା ।

୪· ଏହି ସ୍ଥଳଭାଗ କେବଳ ବାଲିପୂର୍ଣ୍ଣ ଏବଂ ଏଥିରେ କେବଳ ମାଛ ଶୁଖାଇ ହେବ । ଆଳିର କୌଣସି ପ୍ରଜା ୪୦ ମାଇଲ୍ ଆସି ଏହି ଦ୍ୱୀପ ନିକଟରୁ ମାଛ ଧରିବା ପାଇଁ ଚିନ୍ତା କରି ନଥିବେ । ଏହା କେବଳ କନିକା ପ୍ରଜା ଯେଉଁମାନେ କି ଏଠାରେ ମାଛ ଧରିବେ ବୋଲି ଆଶା କରାଯାଏ ।

୫· ଆଳି ଇଷ୍ଟେଟ୍‌କୁ ଏହି ଦ୍ୱୀପପୁଞ୍ଜ ଲିଜ୍ ଦେବା ଘଟଣାରୁ ଉତ୍ପନ୍ନ ସଂକଟକୁ ରୋକିବା ନିମନ୍ତେ କନିକା ରାଜା ଏହି ଦ୍ୱୀପ ଉପରେ ଥିବା ମାଲିକାନା ସମ୍ବନ୍ଧୀୟ ଅଧିକାର ଦାବିକୁ ତ୍ୟାଗ କଲେ ଏବଂ ବାଲେଶ୍ୱର କଲେକ୍ଟର, ଓଡ଼ିଶା ଡିଭିଜନ କମିଶନର ଏବଂ ବୋର୍ଡ ଅଫ୍ ରେଭିନ୍ୟୁକୁ ଏହି ଦ୍ୱୀପ ବିଷୟରେ ନିଷ୍ପତ୍ତି ନେବାକୁ ନିବେଦନ କଲେ ।

୬· ଏହି ଦ୍ୱୀପପୁଞ୍ଜ କନିକା ରାଜ୍ୟ ଉପକୂଳର ଠିକ୍ ବାହାରେ ଅଛି ଏବଂ ସରକାର କନିକା ରାଜାଙ୍କ ମାଧ୍ୟମରେ ନିଜର ମାଲିକାନା ଜାହିର କରୁଥିଲେ, ଯେ କି ସରକାରଙ୍କର ଜଣେ ବିଶ୍ୱସ୍ତ ପ୍ରଜା ଥିଲେ । ବସ୍ତୁତଃ, କନିକା ରାଜାଙ୍କ ପ୍ରସ୍ତାବମତେ ସରକାର ଏହି ଦ୍ୱୀପପୁଞ୍ଜର ନାମକରଣ କଲେ ।

୭· ଆଳି ରାଜାଙ୍କ ନାମରେ ଏହି ଦ୍ୱୀପପୁଞ୍ଜ ଲିଜ୍ ଦେବା ବିରୋଧରେ କନିକା ରାଜା ବୋର୍ଡ ଅଫ୍ ରେଭେନ୍ୟୁକୁ ଦରଖାସ୍ତ କଲେ ଏବଂ ବୋର୍ଡ ଅଫ୍ ରେଭେନ୍ୟୁ ଦୟାପରବଶ ହୋଇ ତା୨୧/୦୮/୧୯୨୬ ତାରିଖରେ ଆଦେଶ ଦେଲେ ଯେ, ଏହି ଦ୍ୱୀପପୁଞ୍ଜକୁ କୌଣସି ବ୍ୟକ୍ତିଙ୍କ ନାମରେ ନ କରିବାକୁ । ଏହା ଦୁଇବର୍ଷ ପାଇଁ ସରକାରଙ୍କ ଅଧୀନରେ ରହିବ ବୋଲି ଅର୍ଡର କଲେ । ଏହି ଅର୍ଡର ବାଲେଶ୍ୱର କଲେକ୍ଟରଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ଆଳି ରାଜାଙ୍କୁ ଏହାକୁ ଦେବା ନିମନ୍ତେ ତାଙ୍କର ପ୍ରସ୍ତାବ ଉପରେ ବୋର୍ଡ ଅଫ୍ ରେଭେନ୍ୟୁ ଅର୍ଡରକୁ ଅପେକ୍ଷା ନ କରି, ଆଳି ଲୋକମାନଙ୍କୁ ତା ୨୯/୦୮/୧୯୨୬ ରିଖରେ କାଗଜପତ୍ରରେ ଦଖଲ ଦେଲେ । ଆଳି ପ୍ରଜାମାନଙ୍କୁ ଦଖଲ ଦେବା ପାଇଁ ଆଳି ରାଜାଙ୍କର ଯେଉଁ କାନୁନ୍‌ଗୋ ଯାଇଥିଲେ, ସମୁଦ୍ର ଅଶାନ୍ତ ଥିବାରୁ ସେ ଏହି ଦ୍ୱୀପପୁଞ୍ଜରେ

ପହଞ୍ଚି ନ ପାରି କନିକାର ବାଲେଶ୍ୱର (ଭଦ୍ରକ) ଅଂଶ *(Sea Board)* ଉପକୂଳରେ ଠିଆ ହେଲେ ଏବଂ କୁହାଗଲାକି ଆଳିର ପ୍ରଜାମାନଙ୍କୁ ଦଖଲ ଦିଆଗଲା । କିନ୍ତୁ ଏହି ସ୍ଥାନରୁ ଦ୍ୱୀପପୁଞ୍ଜର ଦୂରତା ସମୁଦ୍ର ମଧ୍ୟରେ ୮ ମାଇଲ୍ ଥିଲା ଏବଂ କନିକାର ଯେଉଁ ଜମି ଉପରେ ଆଳି କାକୁନ୍‌ଗୋ ଠିଆ ହୋଇଥିଲେ ସେଠାରୁ ଏହି ଦ୍ୱୀପପୁଞ୍ଜ ପ୍ରାୟ ଦେଖାଯାଏ ନାହିଁ । ତେଣୁ ଆଳି ପ୍ରଜାମାନଙ୍କୁ ସଠିକ ଦଖଲ ଦିଆଯାଇପାରିଲା ନାହିଁ ।

୮· ଏହି ଦ୍ୱୀପପୁଞ୍ଜ କଟକ କିମ୍ବା ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ କରିବାକୁ ସରକାର ଏ ପର୍ଯ୍ୟନ୍ତ ନିଷ୍ପତ୍ତି ନେଇ ନାହାନ୍ତି । ଏଗୁଡ଼ିକ କଟକ ଜିଲ୍ଲା (ବର୍ତ୍ତମାନ କେନ୍ଦ୍ରାପଡ଼ା) କନିକା ଅଂଶ ଜଳଭାଗ ସମ୍ମୁଖରେ ଅବସ୍ଥିତ ଏବଂ ଏହା ବାଲେଶ୍ୱର ଉପକୂଳ ଅପେକ୍ଷା କଟକ ଜିଲ୍ଲା ନିକଟତର ଅଟେ । ଏ ଦ୍ୱୀପକୁ ଶାସନ କରିବାକୁ ସରକାର ବାଲେଶ୍ୱର କଲେକ୍ଟରଙ୍କୁ ହସ୍ତାନ୍ତର କରି ନାହାନ୍ତି । ତେଣୁ ବାଲେଶ୍ୱର କଲେକ୍ଟରଙ୍କ ଏହି ଦ୍ୱୀପପୁଞ୍ଜ ଉପରେ ଆଇନ୍‌ସଂଗତ କର୍ତ୍ତୃତ୍ୱ ପ୍ରୟୋଗର ଅଧିକାର ନାହିଁ । ଆଇନ୍ ଅନୁଯାୟୀ, ନୌ-ଚଳାଚଳ କରୁଥିବା ନଦୀରେ ଗଢି ଉଠୁଥିବା ଦ୍ୱୀପ ଉପରେ କଲେକ୍ଟର ନିଜ ଇଚ୍ଛାରେ କାରବାର କରି ପାରିବେ; ଯାହାର ଶଯ୍ୟା ଉପରେ ବ୍ୟକ୍ତିଗତ ମାଲିକାନା ନଥିବ । ରାଜ୍ୟ ସୀମା ବାହାର ଜଳ ଭାଗରେ ଥିବା ଦ୍ୱୀପ ଉପରେ କଲେକ୍ଟରଙ୍କର ଆଇନ୍‌ସଂଗତ କର୍ତ୍ତୃତ୍ୱ ପ୍ରୟୋଗ କରିବାର ଅଧିକାର ନାହିଁ ।

୯· ଏହି ଦ୍ୱୀପର ଖେଓ୍ୱଟ ପ୍ରସ୍ତୁତ କରିବା ସେଟଲ୍‌ମେଣ୍ଟ ଅଫିସରଙ୍କ କର୍ତ୍ତୃତ୍ୱର ବହିର୍ଭୁତ, ଯେହେତୁ ସ ବାଲେଶ୍ୱର କଲେକ୍ଟରଙ୍କଠାରୁ କ୍ଷମତାପ୍ରାପ୍ତ ହୋଇଛନ୍ତି, ଯାହାଙ୍କର ଏହି ଦ୍ୱୀପ ସହିତ କୌଣସି ସଂପର୍କ ନାହିଁ । ଓଡ଼ିଶା ପ୍ରଜାସତ୍ତ୍ୱ ଆଇନ୍ ଏହି ଦ୍ୱୀପପୁଞ୍ଜ ପ୍ରତି ପ୍ରଯୁଜ୍ୟ ନୁହେଁ ଯେହେତୁ ସେଗୁଡିକ ଚାଷଜମି କିମ୍ବା ବାସୋପଯୋଗୀ ଜମି ନୁହେଁ ।

୧୦· ସବୁ ଦୃଷ୍ଟିକୋଣରୁ ବିଚାର କଲେ, ସେହି ଦ୍ୱୀପପୁଞ୍ଜ ସମ୍ବନ୍ଧରେ ଅନୁସନ୍ଧାନ କରି କନିକା ରାଜାଙ୍କ ସପକ୍ଷରେ ଲିଜ୍ ଲିପିବଦ୍ଧ କରିବା ସହ ଆଳି ଇଷ୍ଟେଟ୍ ସପକ୍ଷରେ କରାଯାଇଥିବା ପଟ୍ଟା ରଦ୍ଦ କରାଯାଉ ।"

*(Acc No. 3649/Pur, Orissa State Archives, Bhubaneswar)*

ଭାରତୀୟ ପ୍ରତିରକ୍ଷା ଗବେଷଣା କ୍ଷେତ୍ରରେ କେନ୍ଦ୍ରାପଡ଼ା ଜିଲ୍ଲାର ଏହି ହ୍ୱିଲର ଦ୍ୱୀପପୁଞ୍ଜର ଯଥେଷ୍ଟ ଅବଦାନ ରହିଛି । ଭାରତର ପୂର୍ବତନ ରାଷ୍ଟ୍ରପତି ଏ·ପି·ଜେ ଅବଦୁଲ୍ କାଲାମ୍ ଏହି ଦ୍ୱୀପପୁଞ୍ଜକୁ ଅନେକବାର ଆସିଛନ୍ତି । ୧୯୮୯ ମସିହାରେ ବାଲେଶ୍ୱରର ଚାନ୍ଦିପୁରଠାରେ ପ୍ରତିରକ୍ଷା ବିଭାଗର ମଧ୍ୟବର୍ତ୍ତୀକାଳୀନ ପରୀକ୍ଷାଗାର ପ୍ରତିଷ୍ଠା କରାଯିବା ପରେ ୧୯୯୫ ମସିହାରେ ପ୍ରଥମଥର ପାଇଁ ତତ୍କାଳୀନ ଅଣୁ ବିଜ୍ଞାନୀ ଡ· ଅବଦୁଲ୍ କାଲାମ୍ ଏଠାକୁ ଆସିଥିଲେ । ଏହାପରେ ସେ ଅନେକବାର ହ୍ୱିଲର ଦ୍ୱୀପପୁଞ୍ଜକୁ ଆସିଛନ୍ତି । ଅବଦୁଲ୍ କାଲାମ୍ ମହୋଦୟ ଯେତେବେଳେ ଏହି ହ୍ୱିଲର ଦ୍ୱୀପପୁଞ୍ଜରେ

ପହଞ୍ଚିଲେ, ଏହାର ପୂର୍ବ ଭାଗରେ ଥିବା ଏକ ଗଛ ରେ ବଙ୍ଗଳା ଦେଶର ଜାତୀୟ ପତାକା ଉଡୁଥିବାର ଦେଖିବାକୁ ପାଇଥିଲେ । ସେଠାରେ ଅନେକ କୁଡ଼ିଆ ଘର ମଧ୍ୟ ରହିଥିଲା । ବଙ୍ଗଳାଦେଶର ମତ୍ସ୍ୟଜୀବିମାନେ ନିୟମିତ ଏଠାକୁ ଆସି ଏଠାରେ ଛୋଟଛୋଟ କୁଡ଼ିଆ ନିର୍ମାଣ କରିଥିଲେ ବୋଲି କାଲାମ୍ ଜାଣିବାକୁ ପାଇଲେ । ଏହାପରେ ସେ ଓଡ଼ିଶା ସରକାର ଓ ଭାରତୀୟ ପ୍ରତିରକ୍ଷା ବିଭାଗକୁ ଏହି ଖବର ପହଞ୍ଚାଇବା ପରେ ଏ ଦିଗରେ ପଦକ୍ଷେପ ଗ୍ରହଣ କରାଯାଇଥିଲା ।

କାଲାମ୍ ମହୋଦୟ ଏବଂ ତାଙ୍କର ବନ୍ଧୁମାନେ ହ୍ୱିଲର ଦ୍ୱୀପପୁଞ୍ଜରେ ଉଡୁଥିବା ବଙ୍ଗଳା ଦେଶର ସେହି ଜାତୀୟ ପତାକାକୁ ଉପାଡ଼ି ଫିଙ୍ଗି ଦେଇଥିଲେ । ଏହି ଖବର ଯେତେବେଳେ ବିଜୁଳି ବେଗରେ ପ୍ରଚାରିତ ହୋଇଥିଲା । ଅବଦୁଲ୍ କାଲାମ୍ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଭେଟି ଏ ସଂପର୍କର ଅବଗତ କରାଇଥିଲେ । ଏହାପରେ ବିଜୁ ପଟ୍ଟନାୟକ ଏହି ଦ୍ୱୀପପୁଞ୍ଜକୁ ବାଲେଶ୍ୱରସ୍ଥିତ ଡି·ଆର୍·ଡି·ଓ*(Defence Research and Development Organisation)*କୁ ହସ୍ତାନ୍ତର କରିବା ପାଇଁ ଦଲିଲ୍‌ରେ ସ୍ୱାକ୍ଷର କରିଥିଲେ । ପୂର୍ବରୁ ଏହି ଦ୍ୱୀପପୁଞ୍ଜଟି ମୂଳତଃ କନିକା ରାଜାଙ୍କର ଅଧୀନରେ ଓ ଦଖଲରେ ଥିଲା ।

[ତଥ୍ୟ ସହାୟତା

୧. କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ଦ୍ୱିତୀୟ ଭାଗ), ପ୍ରତାପ କୁମାର ରାୟ, ପ୍ରକାଶକ: ସ୍ୱସ୍ତିକ, ବାପୁଜୀନଗର, ଭୁବନେଶ୍ୱର (୨୦୧୦), ପୃଷ୍ଠା : ୧୮୯-୧୯୫

*2. Ignited minds: unleashing the Power within India, Author: A. P. J. Abdul Kalam, Penguin, UK-2003*

୩. ଦୈନିକ ଓଡ଼ିଆ 'ଧରିତ୍ରୀ', ଭୁବନେଶ୍ୱର, ୧୪.୦୭.୨୦୦୩

୪. ଡ. ହରେକୃଷ୍ଣ ମହତାବ, ସାଧନାର ପଥେ, ପୃଷ୍ଠା-୧୧୦

*5. Orissa District Gazetteers, Baleshwar by Shri Nrusinha Charan Behuria, I.A.S. Retd, Director, Printing Stationary and Publication, Orissa, Cuttack (1992), p-494*

*6. Acc No. 3649/Pur, Orissa State Archives, Bhubaneswar* ]

# ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାରେ କନିକା ରାଜବଂଶର ଭୂମିକା

*(Role of Kanika in Naval Trading of ancient Odisha)*

ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାରେ କନିକା ରାଜ୍ୟର ବଣିକ (ସାଧବ)ମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ କନିକା ରାଜ୍ୟ ପ୍ରତିଷ୍ଠା ହେବାର ବହୁ

ପୂର୍ବରୁ ନରେନ୍ଦ୍ରପୁର ତତ୍କାଳୀନ ଓଡ଼ିଶାର ଏକ ପ୍ରମୁଖ ନୌବାଣିଜ୍ୟ କେନ୍ଦ୍ର ଭାବେ ମୁଣ୍ଡ ଟେକିଥିଲା । ଏ ଅଞ୍ଚଳରେ ବିଶେଷକରି ସାଧବ (ବଣିକ) ସଂପ୍ରଦାୟର ବ୍ୟକ୍ତିମାନେ ବହୁ ସଂଖ୍ୟାରେ ବସବାସ କରୁଥିଲେ । ଦରିଆପାରି ନୌବାଣିଜ୍ୟକୁ କେନ୍ଦ୍ର କରି ଏ ଅଞ୍ଚଳରେ ଅନେକ ପ୍ରାକୃତିକ ନଦୀ ବନ୍ଦର ଗଢି ଉଠିଥିଲା । ବୈତରଣୀ ନଦୀ କୂଳରେ ଚାନ୍ଦବାଲି, କନିକା, ନଳିତାପାଟିଆ, ତାଳଚୁଆ, ଧାମରା ଭଳି ପ୍ରାକୃତିକ ବନ୍ଦରମାନ ଗଢିଉଠିଥିଲା ।

କନିକା ରାଜ ପରିବାରର ପ୍ରତ୍ୟକ୍ଷ ସହଯୋଗରେ ଓଡ଼ିଶାରେ ନୌବାଣିଜ୍ୟର ବିକାଶ ସାଧିତ ହୋଇପାରିଥିଲା । ନୌବାଣିଜ୍ୟର ବିକାଶ ନେଇ କନିକା ରାଜବଂଶୀଙ୍କ ଭଳି ଓଡ଼ିଶାର ଅନ୍ୟ ଅଞ୍ଚଳର କେଉଁ ରାଜା ବା ଜମିଦାରଙ୍କର ଉଲ୍ଲେଖନୀୟ ଭୂମିକା ଥିବା ଭଳି ମନେହୁଏ ନାହିଁ । ଇଷ୍ଟ ଇଣ୍ଡିଆ କଂପାନୀର ରେକର୍ଡ୍ ଅନୁସାରେ, ୧୬୮୧ ମସିହା ଅଗଷ୍ଟ ୨୯ ତାରିଖରେ କନିକା ରାଜାଙ୍କର ଏକ ଜାହାଜ ସିଂହଳରୁ ବାଲେଶ୍ୱର ବନ୍ଦରରେ ପହଞ୍ଚିଥିଲା । ପ୍ରାୟ ସେହି ସମୟ ବେଳକୁ ତାଙ୍କର ଆଉ ଏକ ଜାହାଜ ପଣ୍ୟଦ୍ରବ୍ୟ ବୋଝେଇ କରି ମାଳଦ୍ୱୀପ ଅଭିମୁଖେ ଯାଇଥିଲା ।

ଇଂରେଜ ଇଷ୍ଟ ଇଣ୍ଡିଆ କଂପାନୀ ରେକର୍ଡ଼ରେ କନିକା ରାଜାଙ୍କ ନୌବାଣିଜ୍ୟ କାରବାର ଅପେକ୍ଷା ସେମାନଙ୍କର ଲୁଣ୍ଠନ ଓ ନୌକାଚାଳନା ଦକ୍ଷତା ସଂପର୍କରେ ଅଧିକ ସୂଚନା ମିଳିଥାଏ । ୧୬୮୦ ମସିହାରେ ଇଷ୍ଟ ଇଣ୍ଡିଆ କଂପାନୀର ଗୋଟିଏ ବଡ଼ ନୌକାରେ ପ୍ରାୟ ୭୦୦ ବସ୍ତା ଲୁଣ ବୋଝେଇ ହୋଇ ବାଲେଶ୍ୱରରୁ ମାନ୍ଦ୍ରାଜ (ଚେନ୍ନାଇ) ଯାଉଥିବାବେଳେ ସାମୁଦ୍ରିକ ଝଡ଼ ହେବାରୁ ଧାମରା ମୁହାଁଣରେ ଡଙ୍ଗାକୁ ଲଙ୍ଗର ପକାଯାଇ ଅଟକ ରଖାଯାଇଥିଲା । ଏହି ସମୟରେ ସ୍ଥାନୀୟ ଅଧିବାସୀମାନେ ଏହି ଡଙ୍ଗାରୁ ଲୁଣତକ ଲୁଟି ନେଇଯାଇଥିଲେ । ଏହି ପଣ୍ୟଦ୍ରବ୍ୟକୁ ସେମାନଙ୍କୁ ଫେରାଇ ଦେବାକୁ କଂପାନୀ କର୍ତ୍ତୃପକ୍ଷ କନିକା ରାଜାଙ୍କୁ ଏକ ପତ୍ର ମାଧ୍ୟମରେ ଜଣାଇଥିଲେ । ମାତ୍ର କନିକା ରାଜା ଏ ଦିଗରେ ସନ୍ତୋଷଜନକ ପଦକ୍ଷେପ ଗ୍ରହଣ ନ କରିବାରୁ କଂପାନୀ ପକ୍ଷରୁ କନିକା ରାଜାଙ୍କ ବିରୋଧରେ ପ୍ରଥମେ ବାଲେଶ୍ୱର ନଗରପାଳ ଓ ପରେ କଟକର ନବାବଙ୍କ ଦରବାରରେ ଅଭିଯୋଗ କରାଯାଇଥିଲା । କିନ୍ତୁ ମୋଗଲ ଶାସକ କନିକା ରାଜାଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସମର୍ଥ ହୋଇପାରି ନଥିଲେ । ଏଣୁ ମୋଗଲ ଶାସକଙ୍କଠାରୁ ନ୍ୟାୟ ପାଇବାର କୌଣସି ଆଶା ନ ଦେଖି କଂପାନୀ ଆଇନକୁ ନିଜ ହାତକୁ ନେଇ ଏହି କ୍ଷତିପୂରଣ ଆଦାୟ କରିବାକୁ ଯୋଜନା କରିଥିଲା । ଠିକ୍ ପରବର୍ଷ ଅର୍ଥାତ୍ ୧୬୮୧ ମସିହାରେ ରାଜାଙ୍କର ଏକ ଜାହାଜ ବାଲେଶ୍ୱରରୁ ମସ୍‌ଲିପଟ୍ଟନମ୍ ଯିବାକୁ ପ୍ରସ୍ତୁତି ହେଉଥିବାବେଳେ କଂପାନୀ ବଳପୂର୍ବକ ଏହାକୁ କ୍ରୋକ୍ କରିବାକୁ ଯୋଜନା କରିଥିଲା । ଏଥିପାଇଁ ବଙ୍ଗଳା କାଉନ୍‌ସିଲ୍ ମାନ୍ଦ୍ରାଜ୍ କାଉନ୍‌ସିଲ୍‌ର ଅନୁମୋଦନ ଲୋଡ଼ିଥିଲା । କିନ୍ତୁ ମାନ୍ଦ୍ରାଜ କାଉନ୍‌ସିଲର ଅନୁମୋଦନ ବାଲେଶ୍ୱରରେ ହସ୍ତଗତ ହେବା ପୂର୍ବରୁ ନବାବ (ମୋଗଲ ଶାସକ) ସ୍ୱୟଂ ଏହାକୁ କ୍ରୋକ୍ କରିପକାଇଥିଲେ । କନିକା

ରାଜାଙ୍କ ଉପରେ ବହୁଦିନ ଧରି କେତେକ ଦେୟ ବାକି ଥିବାରୁ ନବାବଙ୍କ ପକ୍ଷରୁ ଏହି ପଦକ୍ଷେପ ନିଆଯାଇଥିଲା ।

କଂପାନୀର ଅନ୍ୟ ଏକ ଚିଠିରୁ ଜଣାଯାଏ, କନିକା ରାଜା ମୋଗଲ ସରକାରଙ୍କୁ ନିଜର ଦେୟ ମଧ୍ୟ ପୈଠ କରୁନଥିଲେ । ମୋଗଲ ଶାସକମାନଙ୍କର ମଧ୍ୟ କନିକା ରାଜାଙ୍କ ଉପରେ କୌଣସି ନିୟନ୍ତ୍ରଣ ନଥିଲା ।

ଅଷ୍ଟାଦଶ ଶତାବ୍ଦୀରେ କନିକାର ସଶକ୍ତ ନୌଶକ୍ତି ଆଗରେ କଟକର ମୋଗଲ ନବାବ୍ ମଧ୍ୟ ନିଜକୁ ଅସହାୟ ମନେ କରୁଥିଲେ । କନିକାର ରାଜାଙ୍କୁ ଜବତ କରିବା ଉଦ୍ଦେଶ୍ୟରେ କଟକର ନବାବ୍ ୧୭୪୦ ମସିହାରେ କଲିକତାର ଇଷ୍ଟ ଇଣ୍ଡିଆ କଂପାନୀ କାଉନ୍‌ସିଲକୁ ନୌସେନାର ସହାୟତା ମାଗିଥିଲେ । ମାତ୍ର କଟକ ନବାବଙ୍କୁ ସହାୟତା ଯୋଗେଇ ଦେବାକୁ କଂପାନୀ ମନା କରିଦେଇଥିଲା ।

୧୭୭୦ ମସିହାରେ କନିକା ରାଜାଙ୍କ ବିପକ୍ଷରେ ଆଉ ଏକ ଲୁଣ୍ଠନ ଅଭିଯୋଗ ଇଷ୍ଟ ଇଣ୍ଡିଆ କଂପାନୀ ରେକର୍ଡ଼ରେ ଦୃଷ୍ଟିଗୋଚର ହୋଇଥାଏ । ସେହିବର୍ଷ ମସ୍‌ଲିପଟ୍ଟନମ୍‌ରୁ ଏକ ଜାହାଜ ବାଲେଶ୍ୱର ଆସୁଥିଲା । ଉକ୍ତ ଜାହାଜ ବାଲେଶ୍ୱରରେ କାରବାର ଶେଷ କରି ଫେରୁଥିବା ସମୟରେ ଧାମରା ନିକଟରେ ହଠାତ୍ ଝଡ଼ ଆସିବାରୁ ଜାହାଜ ସେଠାରେ ଅଟକିବାକୁ ବାଧ୍ୟ ହୋଇଥିଲା । ସେହି ସମୟରେ ଜାହାଜଟିକୁ ସ୍ଥାନୀୟ ଅଧିବାସୀମାନେ ଘେରିଯାଇ ଲୁଣ୍ଠନ କରିଥିଲେ ଓ ଜାହାଜ କର୍ମଚାରୀଙ୍କ ପ୍ରତି ଅମାନୁଷିକ ବ୍ୟବହାର କରିଥିଲେ । ଏହି ଜାହାଜର ମାଲିକଙ୍କ ସହିତ ଇଷ୍ଟ ଇଣ୍ଡିଆ କଂପାନୀର କାରବାର ଥିଲା । ଏଣୁ କଂପାନୀ ଏହାକୁ ଅତ୍ୟନ୍ତ ଗୁରୁତର ସହିତ ବିଚାର କରି ତତ୍କାଳୀନ କଟକର ମରହଟ୍ଟା ସୁବେଦାରଙ୍କୁ ଏହାର ପ୍ରତିକାର କରିବାକୁ ଅନୁରୋଧ କରିଥିଲେ । କିନ୍ତୁ ସୁବେଦାର ଏଥିରେ ନିଜର ଅସାମର୍ଥ୍ୟ ପ୍ରକାଶ କରିବାରୁ କଂପାନୀ ନିଜେ ଏହାର ପ୍ରତିକାର କରିବାକୁ ସୁଯୋଗ ଅପେକ୍ଷାରେ ରହିଥିଲା । ଏ ଘଟଣାର କିଛି ଦିନ ପରେ କନିକା ରାଜାଙ୍କର ଏକ ଜାହାଜ କଲିକତାରେ ପହଞ୍ଚିବା ମାତ୍ରେ କଂପାନୀ ତାକୁ ଅଟକ ରଖି ରାଜାଙ୍କୁ ଚିଠି ଦ୍ୱାରା ଜଣାଇଲା ଯେ, ଲୁଣ୍ଠିତ ହୋଇଥିବା ଜାହାଜ ମାଲିକଙ୍କୁ କ୍ଷତିପୂରଣ ପ୍ରଦାନ କଲେ ଯାଇ ଜାହାଜ ମୁକୁଳିବ ।

କନିକା ରାଜ୍ୟର ନୌଶକ୍ତି ବିଷୟରେ ମରହଟ୍ଟା ଶାସକଙ୍କୁ ମଧ୍ୟ ଭଲଭାବେ ଜଣାଥିଲା । କନିକାର ୨୭ତମ ରାଜା ବୈରାଗୀ ଭଞ୍ଜଙ୍କର ପରାକ୍ରମ ଓ ନୌଶକ୍ତି ସଂପର୍କରେ ମରହଟ୍ଟାମାନେ କନିକା ରାଜ୍ୟ ସହ ଯୁଦ୍ଧ କରିବା ପରେ ଜାଣିପାରିଥିଲେ । ୧୭୬୫ ମସିହାରେ କନିକା ରାଜା ଓ ମରହଟ୍ଟା ସୈନିକମାନଙ୍କ ମଧ୍ୟରେ ଏକ ନୌଯୁଦ୍ଧ ହୋଇଥିଲା । କନିକାର ଶତଆହୁଲା ବିଶିଷ୍ଟ ଦ୍ରୁତଗାମୀ ରଣତରୀରେ ବସି ରାଜା ମରହଟ୍ଟା ରଣତରୀକୁ ଘେରିଯାଇ ତାହାକୁ ଜଳରେ ବୁଡ଼ାଇ ଦେଇଥିଲେ ।

୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ପରେପରେ ଓଡ଼ିଶାରେ ଚାଉଳ ଓ ଅନ୍ୟାନ୍ୟ ସାମଗ୍ରୀର

ଭୟଙ୍କର ଅଭାବ ପରିଲକ୍ଷିତ ହୋଇଥିଲା । ଏଣୁ ଇଂରେଜ ସରକାର ବଙ୍ଗ ଓ ଅନ୍ୟାନ୍ୟ ଅଞ୍ଚଳରୁ ଦୁର୍ଭିକ୍ଷ ପୀଡ଼ିତ ଓଡ଼ିଶାକୁ ଚାଉଳ ଆଣିବା ଉଦ୍ଦେଶ୍ୟରେ ଚାନ୍ଦବାଲିକୁ ଏକ ନଦୀ ବନ୍ଦର ଭାବେ ବ୍ୟବହାର କରିବାକୁ ଆରଂଭ କରିଥିଲେ ।

ବ୍ରିଟିଶ୍ ଶାସନ କାଳରେ ବିଶେଷକରି ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପରେପରେ ବୈତରଣୀ ନଦୀକୁ ନୌବାଣିଜ୍ୟ ଓ ପରିବହନ କ୍ଷେତ୍ରରେ ବ୍ୟବହାର କରାଯିବା ସହିତ ଚାନ୍ଦବାଲି ଓଡ଼ିଶାର ଏକ ଅଗ୍ରଣୀ ବନ୍ଦର ଭାବେ ଗଢିଉଠିଲା । ୧୮୮୧ ମସିହା ମାର୍ଚ୍ଚ ୨୮ ତାରିଖରେ ବ୍ରିଟିଶ ସରକାର ଚାନ୍ଦବାଲିକୁ ବିଧିବଦ୍ଧ ଭାବେ ଏକ ସରକାରୀ ବନ୍ଦର ଭାବେ ଘୋଷଣା କରିଥିଲେ । ଆଉ ଏହା ପରଠାରୁ ପାଖାପାଖି ଶହେ ବର୍ଷ ଧରି ଚାନ୍ଦବାଲି ଓଡ଼ିଶାର ଏକ ପ୍ରମୁଖ ନଦୀ ବନ୍ଦର ଭାବେ ନିଜର କାର୍ଯ୍ୟ ତୁଲାଇଆସିଥିଲା ।

ଇଂରେଜ ସରକାର ଚାନ୍ଦବାଲିଠାରେ ହିଁ ଓଡ଼ିଶା ରାଜ୍ୟ ବନ୍ଦର ମୁଖ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏହି ବନ୍ଦର ଦାୟିତ୍ୱରେ ଜଣେ କମିଶନର ନିୟୋଜିତ ଥିଲେ । ଚାନ୍ଦବାଲିରୁ ଚାଉଳ, ତୈଳବୀଜ, ଚମଡ଼ା, କପା ତୁଳା ଇତ୍ୟାଦି କଲିକତା, ବମ୍ବେ, ଆରାକାନ୍, ମାଳଦ୍ୱୀପ, ସିଂହଳ, ମରିସସ୍‌କୁ ଯାଉଥିଲା ଏବଂ ସେଠାରୁ ମସଲା, ଚିନି, କର୍ପାସବସ୍ତ୍ର, କିରାସିନି ଆଦି ଚାନ୍ଦବାଲି ବନ୍ଦରକୁ ଆସୁଥିଲା । ଏହିପରି ଭାବେ ଓଡ଼ିଶାର ରପ୍ତାନି ଓ ଆମଦାନି ପ୍ରକ୍ରିୟା ଚାନ୍ଦବାଲି ବନ୍ଦର ଦ୍ୱାରା ନିୟନ୍ତ୍ରିତ ହେଉଥିଲା ।

ଉନ୍ନବିଂଶ ଶତାବ୍ଦୀର ଶେଷ ଭାଗକୁ ଚାନ୍ଦବାଲି ଓଡ଼ିଶାର ଏକମାତ୍ର ବନ୍ଦର ଭାବେ ମୁଣ୍ଡ ଟେକିଲା । ସେତେବେଳେ ଚାନ୍ଦବାଲି ଓଡ଼ିଶାର ଏକମାତ୍ର ଯାତ୍ରୀବାହୀ ଏବଂ ମାଲ୍‌ବାହୀ ବନ୍ଦର ଥିଲା । ଏହା ତତ୍କାଳୀନ ଓଡ଼ିଶା ବାଣିଜ୍ୟ କାରବାରର ଶତକଡ଼ା ୬୦ ଭାଗ ଚାହିଦା ମେଣ୍ଟାଉଥିଲା । ୧୮୯୬ ମସିହାଠାରୁ କଲିକତା ଓ ଚାନ୍ଦବାଲି ମଧ୍ୟରେ ନିୟମିତ ଷ୍ଟିମର୍ ଚଳାଚଳ କଲା । ଇଣ୍ଡିଆନ୍ ଜେନେରାଲ୍ ଷ୍ଟିମ୍ ନାଭିଗେସନ୍ କଂପାନୀ ଏବଂ ଓଡ଼ିଶା ଷ୍ଟିମ୍ ନାଭିଗେସନ୍ କଂପାନୀ କଲିକତା ଓ ଚାନ୍ଦବାଲି ମଧ୍ୟରେ ପ୍ରତି ସପ୍ତାହରେ ଯାତ୍ରୀ ପରିବହନ ଓ ମାଲ୍ ପରିବହନର ବ୍ୟବସ୍ଥା ଆରମ୍ଭ କରିଥିଲେ ।

ଚାନ୍ଦବାଲି ବନ୍ଦରକୁ ଭାରତର ଏକ ପ୍ରମୁଖ ବନ୍ଦର ଭାବେ ଗଢି ତୋଳିବାରେ କନିକା ରାଜା ସାର୍ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଏବଂ ଉତ୍କଳ ଗୌରବ ମଧୁସୂଦନ ଦାସ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ୧୯୧୩ ମସିହାରେ ଚାନ୍ଦବାଲି ବନ୍ଦରର ସଂପ୍ରସାରଣ ପାଇଁ ମଧୁସୂଦନ ଦାସ ଇମ୍ପେରିଆଲ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ପ୍ରସ୍ତାବ ଆଗତ କରିଥିଲେ । ଏହାପରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ବିହାର-ଓଡ଼ିଶାର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର୍ ଥିଲାବେଳେ ଚାନ୍ଦବାଲି ବନ୍ଦରର ବିକାଶ ନେଇ ଅନେକ ପଦକ୍ଷେପ ନେଇଥିଲେ । ୧୯୨୪-୨୫ ମସିହାରେ ବ୍ରିଟିଶ୍ ସରକାରଙ୍କ ତରଫରୁ କ୍ୟାପ୍‌ଟେନ୍ ଏସ୍‌ଟନ୍ ଅନୁଧ୍ୟାନକାରୀ ଭାବେ ଆସି ଚାନ୍ଦବାଲି ବନ୍ଦର ସଂପର୍କରେ ଏକ ଅନୁକୂଳ ସାର୍ଟିଫିକେଟ୍ ପ୍ରଦାନ କରିଥିଲେ । ଏହା କେବଳ କନିକା ରାଜା ରାଜେନ୍ଦ୍ର

ନାରାୟଣ ଭଞ୍ଜଦେଓଙ୍କ ଇଂରେଜମାନଙ୍କ ଉପରେ ଥିବା ଅଖଣ୍ଡ ପ୍ରଭାବ କାରଣରୁ ସମ୍ଭବ ହୋଇଥିଲା ବୋଲି କୁହାଯାଏ ।

କ୍ୟାପ୍‌ଟେନ୍ ଏସ୍‌ଟନ ତାଙ୍କ ରିପୋର୍ଟରେ ଯାହା ଉଲ୍ଲେଖ କରିଥିଲେ ତାହା ଏହିପରି ଥିଲା- "ଏହିପରି ଚାନ୍ଦବାଲି ଯାହାକି ଗୋଟିଏ ପ୍ରାକୃତିକ ବନ୍ଦର ଅଟେ । ତାହା ନଦୀକୂଳରେ ଗଭୀର ଜଳ ପାଇଁ, ସୁନିର୍ମିତ ବନ୍ଧ ପାଇଁ, ପକ୍କା ଘର ପାଇଁ, ଯେଉଁଥିରୁ ଏକ ଶତାବ୍ଦୀ ବର୍ଷ ତଳର ଏହି ନଗରୀର ଗୁରୁତ୍ୱ ସଂପର୍କରେ ଅନେକ ପରିଚୟ ମିଳିଥାଏ । ସୁନ୍ଦର ରାସ୍ତା, ଉତ୍ତମ ଜଳବାୟୁ, ଉନ୍ନତି ଓ ପ୍ରଗତି ପାଇଁ ଯେଉଁସବୁ ଆବଶ୍ୟକ ବ୍ୟବସ୍ଥାମାନ ଦରକାର ସେ ସମସ୍ତ ପାଇଁ ସମଗ୍ର ଓଡ଼ିଶା ପ୍ରଦେଶ ମଧ୍ୟରେ ସାମୁଦ୍ରିକ ବାଣିଜ୍ୟର ଏକମାତ୍ର ପଥ ହୋଇ ସୁଦ୍ଧା ବର୍ତ୍ତମାନ ତାହା ମୃତପ୍ରାୟ ପଡ଼ି ରହିଛି ।"

ଧାମରା ମୁହାଁଣର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଚନ୍ଦନିପାଳରେ ପ୍ରସ୍ତାବିତ ନୂତନ ବତୀଘର ଏବଂ ବତୀଘର ଜଗୁଆଳୀର ରହିବା ଘର ନିର୍ମାଣ କରିବାକୁ ଚାନ୍ଦବାଲିସ୍ଥିତ ପୋର୍ଟ ଅଫିସର (ବ୍ରିଟିଶ ସରକାର) କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କୁ ୧୯୨୫ ମସିହାରେ ୧୦୦ ଗଜ ବ୍ୟାସାର୍ଦ୍ଧ ଜମି ଯୋଗାଇ ଦେବାକୁ ଅନୁମତି ଲୋଡ଼ିଥିଲେ । ଅପରପକ୍ଷେ, ପ୍ରସ୍ତାବିତ ବତୀଘର କାର୍ଯ୍ୟର ମାନଚିତ୍ର/ନକ୍ସା ପ୍ରଦାନ କଲେ ରାଜା ସେମାନଙ୍କୁ ଅନୁମତି ପ୍ରଦାନ କରିବା ସହିତ ଜମି ଯୋଗାଇ ଦେବେ ବୋଲି କନିକା ରାଜା ତାଙ୍କ ପ୍ରତି ଉତ୍ତରରେ ଉଲ୍ଲେଖ କରିଥିଲେ ।

କବିବର ରାଧାନାଥ ରାୟଙ୍କ ପୁତ୍ର ତଥା ଉତ୍କଳ ସାହିତ୍ୟ ସମାଜର ସଂପାଦକ ଶଶୀଭୂଷଣ ରାୟ ୧୯୧୩ ମସିହାରେ କନିକା ପରିଭ୍ରମଣ କରି ଯାହା ଲେଖିଥିଲେ "କଟକ ଯୋବ୍ରା ଘାଟଠାରେ କନିକା ରାଜାଙ୍କ ଷ୍ଟିମର 'ବଳରାମ'ରେ ଆରୋହଣ କଲି । ଚାନ୍ଦବାଲି ଘାଟରେ ଷ୍ଟିମର ଲାଗିଲା । ପ୍ରକାଣ୍ଡ ଜଳଦୈତ୍ୟ ସ୍ୱରୂପ ସମୁଦ୍ରଗାମୀ ଷ୍ଟିମର 'ଯାତ୍ରା' ଏଠାରେ ଲାଗିଥିବାର ଦେଖିଲୁ । ବ୍ୟବସାୟପ୍ରସୂତ କାର୍ଯ୍ୟବ୍ୟସ୍ତତା ଏଠାରେ ସର୍ବଦା ସଜୀବ ରହିଅଛି । କନିକା ଇଷ୍ଟେଟର ୭ ଖଣ୍ଡ ଯାନବତ୍ ବୋଟ ଏବଂ ଅନେକ ନୌକା ରହିଅଛି । ସ୍ଥୂଳତଃ ଗଞ୍ଜା ଘାଟରେ ଏଗୁଡିକର ଏକତ୍ର ସଂସ୍ଥିତ ଦେଖି ଏହାକୁ *(Kanika Fleet)* ଆଖ୍ୟା ଦେଇଥିଲି ।"

ତତ୍କାଳୀନ ଇଂରେଜ କମିଶନର ରେଭେନ୍‌ସାଙ୍କ ଯୋଗୁଁ ଭାରତର ପୂର୍ବ ଉପକୂଳରେ ଚାନ୍ଦବାଲି ଓ ଧାମରା ଭଳି ଦୁଇଟି ବନ୍ଦର ଅଧିକ ବିକଶିତ ହୋଇପାରିଥିଲା । ବୈତରଣୀ ନଦୀ ମୁହାଁଣରେ ଅବସ୍ଥିତ ଧାମରା ଓ ଅଳ୍ପ ଦୂରକୁ ଚାନ୍ଦବାଲି । ଧାମରା ପ୍ରବେଶ ପଥ ଏବଂ ଚାନ୍ଦବାଲି ପୋତାଶ୍ରୟ ଭଳି କାର୍ଯ୍ୟ କରୁଥିଲା । ଧାମରାଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ବୈତରଣୀ ନଦୀ ପଥ ସରକାରୀ କାଗଜପତ୍ରରେ ବନ୍ଦରସ୍ଥଳ ଭାବେ ଉଲ୍ଲେଖ ଥିଲା । ବ୍ରିଟିଶ୍ ସରକାରଙ୍କ ୧୮୫୮ ମସିହା ମେ' ମାସର ବିଜ୍ଞପ୍ତି ଅନୁଯାୟୀ, ଧାମରା ଏକ ବନ୍ଦର ଭାବେ ପରିଗଣିତ ହେଲା । ୧୮୭୨ ମସିହାରେ

ଚାନ୍ଦବାଲି ବନ୍ଦର କାର୍ଯ୍ୟକ୍ଷମ ହୋଇଥିଲା । ଚାନ୍ଦବାଲି ବନ୍ଦରର ପୁନଃ ପରିବର୍ତ୍ତନ ୧୯୩୧ ମସିହା ଜୁଲାଇ ୯ ତାରିଖ ବିଜ୍ଞପ୍ତି ନମ୍ବର ୧୬୫୨, ବାଣିଜ୍ୟ ଏବଂ ଭାରତୀୟ ବନ୍ଦର ଆଇନ୍ ୧୯୧୮ ଉପଧାରା (୧) ଏବଂ (୨) ବିଭାଗ ୫ ଅନୁଯାୟୀ କରାଯାଇଥିଲା । ଚାନ୍ଦବାଲି ବନ୍ଦରର ସୀମା ପୂର୍ବ-ପଶ୍ଚିମ ଧାମରା ମୁହାଁଣରୁ ଚାନ୍ଦବାଲି ଏବଂ ଉତ୍ତର-ଦକ୍ଷିଣ ଘଣ୍ଟେଶ୍ୱର-ବାଲିଆପାଳରୁ ପଞ୍ଚାମୁଣ୍ଡାଇ-ଅଳଭା ଲକ୍ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

[ ତଥ୍ୟ ସହାୟତା

୧. ଶାନ୍ତନୁ କୁମାର ମହାନ୍ତି, 'ବହିତ୍ର'-୩୦, ନଭେମ୍ବର, ୨୦୦୧ ସଂଖ୍ୟା, 'ଚାନ୍ଦବାଲି ପୂଜ୍ୟପୂଜା ସଂସଦ'ର ସ୍ମରଣିକା, ପୃଷ୍ଠା-୪୨, ୪୩, ୪୪

୨. ଡ. ଲଲାଟେନ୍ଦୁ ଦାସମହାପାତ୍ର, 'ବହିତ୍ର', ୩୦ ନଭେମ୍ବର ୨୦୦୧ ସଂଖ୍ୟା, ଚାନ୍ଦବାଲି ପୂଜ୍ୟପୂଜା ସଂସଦର ସ୍ମରଣିକା, ସଂପାଦକ: ଶାନ୍ତନୁ କୁମାର ମହାନ୍ତି, ପୃଷ୍ଠା: ୭୯, ୮୦

୩. ସରସ୍ୱତୀ ଦାମୋଦର ମିଶ୍ର, ଭଞ୍ଜ କନିକା, କାଶୀନାଥ ପ୍ରେସ୍, କଟକ, ୧୯୫୨, ପୃଷ୍ଠା-୬୭, ୬୮

୪. ଶଶୀଭୂଷଣ ରାୟ, କନିକା ଦର୍ଶନ-୧୯୧୩

*5. Acc No. H II-2/194, Orissa State Archives, Bhubaneswar*

*6. Acc No. 365/Pur, Orissa State Archives, Bhubaneswar*]



**ସପ୍ତମ ପରିଚ୍ଛେଦ**

# ବୈତରଣୀରେ ପରିବହନ **ବ୍ୟବସ୍ଥା**

## ଓଡ଼ିଶାର ନୌବାଣିଜ୍ୟ ଇତିହାସରେ ବୈତରଣୀର ସ୍ଥାନ

*(Naval Trading of ancient Odisha and role of river Baitaranee)*

"ଏଇ କଥାକୁ ନାଆ ପେଲିଦେଲୁ କଲିକତାକୁ"

ଏହି ପୁରାତନ ଓଡ଼ିଆ ଢଗରୁ ଆମର ପ୍ରାଚୀନ ନୌବାଣିଜ୍ୟ ସଂସ୍କୃତି ସଂପର୍କିତ ଆଲୋଚନା ଆରଂଭ ହେଉ । ଏହି ଢଗରୁ ଆମେ ସ୍ପଷ୍ଟ ହେଉ ଯେ, ଏକଦା ଓଡ଼ିଆମାନେ କଲିକତା ବନ୍ଦର ଦେଇ ବିଦେଶକୁ 'ନୌକା' ବା 'ନାଆ' ବା 'ବୋଇତ' ସାହାଯ୍ୟରେ ପରିବହନ କରୁଥିଲେ । ପୁଣି କଲିକତା ବନ୍ଦର ଦେଇ ଅନ୍ୟାନ୍ୟ ଦୂରଦେଶ ସହିତ ଓଡ଼ିଆମାନେ ବାଣିଜ୍ୟ କାରବାର କରୁଥିଲେ । ବୈତରଣୀ ମୁହାଁଣର ଧାମରା, ଚାନ୍ଦବାଲି ଓ ସୁବର୍ଣ୍ଣରେଖା ମୁହାଁଣର କୀର୍ତ୍ତନିଆ, ବାଲେଶ୍ୱରର ବଳରାମଗଡ଼ି ଆଦି ବନ୍ଦରଗୁଡ଼ିକ ସହ କଲିକତା ବନ୍ଦରର ଏକ ଉତ୍ତମ ବାଣିଜ୍ୟିକ ସଂପର୍କ ଥିଲା । ଏହିସବୁ ବନ୍ଦର କଲିକତାର ନିକଟତର ହୋଇଥିବାରୁ ଅବିଭକ୍ତ କଟକ ଓ ବାଲେଶ୍ୱର ଜିଲ୍ଲାବାସୀଙ୍କର କଲିକତା ସହିତ ଏକ ନିବିଡ଼ ସଂପର୍କ ଥିଲା । ଏଣୁ ନୌବାଣିଜ୍ୟ ସଂପର୍କିତ ଉପରୋକ୍ତ ଓଡ଼ିଆ ଢଗଟି ବିଶେଷକରି ବୈତରଣୀ, ବ୍ରାହ୍ମଣୀ ଓ ସୁବର୍ଣ୍ଣରେଖା ନଦୀ ଅବବାହିକା ଅଞ୍ଚଳର ଗ୍ରାମାଞ୍ଚଳରେ



ରାଜ୍ୟ ସଂଗ୍ରହାଳୟରେ ଥିବା ପଥର ନିର୍ମିତ ଏକ ନୌକାର ପ୍ରାଚୀନ ମୂର୍ତ୍ତି

ବିଶେଷ ଭାବେ ପ୍ରଚଳିତ ଥିଲା ।

ରାଜ୍ୟ ସଂଗ୍ରହାଳୟର ପ୍ରତ୍ନତତ୍ତ୍ୱ ଗ୍ୟାଲେରୀରେ ପଥର ନିର୍ମିତ ଏକ ଆକର୍ଷଣୀୟ ପ୍ରାଚୀନ ଚିତ୍ର ଦେଖି ଆଖି ଲାଖିଗଲା । ସେହି ଚିତ୍ରଟି ଏକ ବିଶାଳ ପୋତର ଥିଲା । ଏହି ପୋତଟିରେ ଆଠଦଶ ଜଣ ପୋତଚାଳକ, ବ୍ୟବସାୟୀ ଏବଂ ଏକ ବିଶାଳ ହାତୀର ଚିତ୍ର ଖୋଦିତ ହୋଇଥିଲା । ପୋତଚାଳକମାନେ ଆହୁଲା ଯୋଗେ ପୋତଟିକୁ ସମୁଦ୍ର ଗର୍ଭରେ ବାହି ନେଉଥିବାର ଦୃଶ୍ୟ ଏହି ପଥରଚିତ୍ରରେ ଖୋଦିତ ହୋଇଛି । ପ୍ରାଚୀନ କଳିଙ୍ଗର ସାଧବମାନେ ନୌକା ସହାୟତାରେ ବିଦେଶକୁ ହାତୀ ରପ୍ତାନୀ କରୁଥିଲେ ବୋଲି ଏହି ଚିତ୍ରରୁ ସୂଚନା ମିଳିଥାଏ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ବେଳକୁ ଅଶୋକଙ୍କ କଳିଙ୍ଗ ଯୁଦ୍ଧର ବହୁ ପୂର୍ବରୁ କଳିଙ୍ଗବାସୀ ଏକ ବଣିକ ଜାତି ଭାବେ ବେଶ୍ ପରିଚିତ ଥିଲେ । ସେତେବେଳେ ସମଗ୍ର ବିଶ୍ୱରେ କଳିଙ୍ଗର ହାତୀମାନଙ୍କର ବେଶ୍ ଚାହିଦା ଥିଲା । ସେହିଭଳି କୋଣାର୍କ ମନ୍ଦିର ଗାତ୍ରରେ ଏକ ଦୀର୍ଘ ଗ୍ରୀବାବିଶିଷ୍ଟ ଜିରାଫ୍‌ର ଚିତ୍ର ଦେଖିବାକୁ ମିଳେ । ଏହାର ଅର୍ଥ କଳିଙ୍ଗର ସାଧବମାନେ ଆଫ୍ରିକା ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । କଳିଙ୍ଗର ବଣିକମାନେ କଳିଙ୍ଗରୁ ହାତୀ ରପ୍ତାନୀ କରୁଥିବାବେଳେ ଆଫ୍ରିକାରୁ ଜିରାଫ୍ ଆମଦାନୀ କରୁଥିଲେ । କେବଳ ହାତୀ ଓ ଜିରାଫ୍ ନୁହେଁ, ଅତୀତରେ ଅନ୍ୟାନ୍ୟ ବହୁ ସାମଗ୍ରୀର ରପ୍ତାନୀ ଓ ଆମଦାନୀ ହେଉଥିଲା । ଏହି ପ୍ରାଚୀନ ପଥର ଚିତ୍ର ଦୁଇଟି ଆମ ଓଡ଼ିଆଙ୍କ ନୌବାଣିଜ୍ୟ ଇତିହାସର ଗୌରବ ଗାଥା ବହନ କରିଥାଏ ।

ପ୍ରାଚୀନ କାଳରୁ କଳିଙ୍ଗ (ଓଡ଼ିଆ)ର ସାଧବମାନେ ଜାଭା (ଯବଦ୍ୱୀପ), ସୁମାତ୍ରା (ସ୍ୱର୍ଣ୍ଣଦ୍ୱୀପ), ବୋର୍ଣ୍ଣିଓ (ବରୁଣ ଦ୍ୱୀପ), ବାଲି (ବଳୀ ଦ୍ୱୀପ) ପ୍ରମୁଖ ଇଣ୍ଡୋନେସିଆର ଦ୍ୱୀପପୁଞ୍ଜସମୂହ ଏବଂ ଥାଇଲ୍ୟାଣ୍ଡ (ଶ୍ୟାମ ଦେଶ), ମାଳୟ, ଭିଏତ୍‌ନାମ୍ (ଚଂପା), ଶ୍ରୀଲଙ୍କା (ସିଂହଳ), ମାଲୟେସିଆ, କାମ୍ବୋଡ଼ିଆ (କମ୍ବୋଜ), ସୁମେର (ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀ ଉପତ୍ୟକା ଅଞ୍ଚଳ ସମୂହ), ବର୍ମା (ମିଆଁମାର୍), ଆନାଟୋଲିଆ (ଏସିଆ ମାଇନର), ପାରସ୍ୟ, ଗ୍ରୀସ୍, ରୋମ୍, ମିଶର (ଆଫ୍ରିକା ମହାଦେଶର ନୀଳନଦୀ ଅବବାହିକା ଅଞ୍ଚଳ), ଚୀନ୍, ଜାପାନ୍, କୋରିଆ, ଆଫ୍ରିକା, ସାଉଦିଆରବ, ଇରାକ୍, ଇରାନ୍, ହଲାଣ୍ଡ (ଡଚ୍-ଓଲନ୍ଦାଜ), ଡେନ୍‌ମାର୍କ (ଦିନାମାର୍) ଆଦି ଅଞ୍ଚଳକୁ ବାଣିଜ୍ୟ କରିବାକୁ ଯାଉଥିଲେ । ଏହାବ୍ୟତୀତ କଳିଙ୍ଗର ବଣିକମାନେ ଆମ ଦେଶ ଭାରତର ବିଭିନ୍ନ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । ପ୍ରାଚୀନ ଓଡ଼ିଆ ସାଧବପୁଅମାନେ ଭାରତର କରୋମଣ୍ଡଳ (ଆନ୍ଧ୍ର ଓ ତାମିଲ୍‌ନାଡୁ ଉପକୂଳ), ମାଲାବାର (କେରଳ), ଡେକାନ୍, (ଭାରତର ଦକ୍ଷିଣ-ପୂର୍ବ ଉପକୂଳ), ଗୁଜୁରାଟ, ବଙ୍ଗଦେଶ, ବମ୍ବେ ଦ୍ୱୀପ ସହ ବାଣିଜ୍ୟ କାରବାର କରୁଥିଲେ ।

ଓଡ଼ିଆମାନେ ସାତ ସମୁଦ୍ର ତେର ନଈ ପାର ହୋଇ ବଣିଜ ବେପାର କରି ବିଦେଶରୁ ଧନଦୌଲତ ବୋହି ଆଣୁଥିଲେ । ଏହା ସାଙ୍ଗକୁ ପ୍ରାଚୀନ କଳିଙ୍ଗର ବଣିକମାନେ ବିଦେଶରେ ମଧ୍ୟ ନିଜନିଜର



**ଜାଳନାଳି (ଭଦ୍ରକ) ଫେରିଘାଟରେ ଲେଖକ**

ସାମ୍ରାଜ୍ୟ ବିସ୍ତାର କରିପାରିଥିଲେ । ଜାଭା ଓ ସୁମାତ୍ରା ଦ୍ୱୀପରେ ବର୍ତ୍ତମାନ ସୁଦ୍ଧା ଓଡ଼ିଆମାନେ ଉପନିବେଶ ସ୍ଥାପନ କରି ରହିଯାଇଛନ୍ତି । ସେମାନେ ସେଠାରେ **'କ୍ଲିଂ'** (ସଂଭବତଃ କଳିଙ୍ଗର ଅଧିବାସୀ) ଭାବେ ପରିଚିତ ହୋଇପାରିଛନ୍ତି । ଯେଉଁଥିପାଇଁ ଭାରତୀୟଙ୍କୁ ମାଳୟ ଦ୍ୱୀପପୁଞ୍ଜରେ କ୍ଲିଂ ବା କଳିଙ୍ଗ ନାମରେ ଚିହ୍ନୁ ଥିଲେ । ପ୍ରାଚୀନ ଉତ୍କଳର କଟକ ପ୍ରସିଦ୍ଧ ତାରକସୀ ଗହଣା ୟୁରୋପକୁ ରପ୍ତାନୀ ହେଉଥିଲା ।

କଳିଙ୍ଗର ବଣିକମାନେ ସିଂହଳ ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଇ ସେଠାରେ ମଧ୍ୟ ଉପନିବେଶ ସ୍ଥାପନ କରିଥିବାର ଜଣାଯାଏ । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀବେଳକୁ ଇଂରେଜ ଜାତି ଯାହା କରିଥିଲେ ତାହାର ହଜାର ବର୍ଷ ପୂର୍ବରୁ କଳିଙ୍ଗବାସୀ ସମଗ୍ର ପୃଥିବୀରେ ନିଜର ଉପନିବେଶ ସ୍ଥାପନ କରି ନିଜକୁ ଏକ ଚତୁର ଜାତିର ପରିଚୟ ଦେଇପାରିଥିଲେ ।

ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ପରଂପରା ବେଶ୍ ସମୃଦ୍ଧ ଥିଲା । ଏହାର ଅନେକ ଐତିହାସିକ ପ୍ରମାଣ ମିଳି ସାରିଛି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ କଳିଙ୍ଗର ନୌବାଣିଜ୍ୟ ଉତ୍କର୍ଷତାର ଚରମ ସୋପାନରେ ପହଞ୍ଚି ସାରିଥିଲା । ଏହି ଶତାବ୍ଦୀରେ ରଚିତ ବୌଦ୍ଧ ଗ୍ରନ୍ଥ **'ସିଉକି'**ରେ କଳିଙ୍ଗରେ ଅନେକ ବନ୍ଦର ଥିବାର ଉଲ୍ଲେଖ ରହିଛି । ଖ୍ରୀ·ଅ· ପ୍ରଥମ ଶତାବ୍ଦୀରେ ଗ୍ରୀକ୍ ପରିବ୍ରାଜକ ତଥା ଭୌଗୋଳିକ **ଟଲେମୀ** *(Ptolemy)*ଙ୍କ ଦ୍ୱାରା ରଚିତ ପୁସ୍ତକ **'ଭୂଚିତ୍ର'**ରେ ଦର୍ଶାଯାଇଛି.

ପୁରୀ, ବାଲେଶ୍ୱର (ସୁବର୍ଣ୍ଣରେଖା ଓ ଧାମରା ମୁହାଣ), କୋଣାର୍କ, ତାମ୍ରଲିପ୍ତ (ତମଲୁକ୍) ଓ କଳିଙ୍ଗନଗର, ଦନ୍ତପୁର ଆଦି ବନ୍ଦରଭିତ୍ତିକ ସହର ସମୁଦ୍ର କୂଳରେ ଅବସ୍ଥିତ ଥିଲା । ମାତ୍ର ଆଜିର ଦିନରେ ସେଇସବୁ ନଦୀ ମୁହାଁଣ ଓ ସାମୁଦ୍ରିକ ବନ୍ଦର ଇତିହାସ ପାଲଟିଛି । ଟଲେମି ଓଡ଼ିଶାର ଅନେକ ପ୍ରଧାନ ନଦୀ ଓ ବନ୍ଦରନଗରୀର ନାମ ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ହେଲା ପକୁରା *(Pakowra)*-ଗଞ୍ଜାମ ନିକଟସ୍ଥ ଏକ ବନ୍ଦରନଗରୀ, ନନିଗେନ୍ *(Nanigaina)* -ପୁରୀ, କଟିକର୍ଦ୍ଦମ *(Katikardam)*-କଟକ, କୋନ୍ନଗର *(Konagara)*-କୋଣାର୍କ, କୋସମ୍ବ *(Kosamba)*-ବାଲେଶ୍ୱର, ପଲୁରା *(Palowra)*-ନଳେଶ୍ୱର, ମନଦ *(Manada)*-ମହାନଦୀ, ତିନ୍ଦିସ୍ *(Tyndis)*-ବ୍ରାହ୍ମଣୀ, ଦୋସରମ୍ *(Dosaram)* -ବୈତରଣୀ, ଅଦମ୍ସ *(Adamas)*-ସୁବର୍ଣ୍ଣରେଖା । ଏମାନଙ୍କ ମଧ୍ୟରୁ ଦୋସରମ୍‌କୁ ବୈତରଣୀ ନଦୀ ଭାବେ ବର୍ଣ୍ଣନା କରାଯାଇଛି । ବୈତରଣୀର ଧାମରା ମୁହାଁଣ ଅତୀତରେ କଳିଙ୍ଗର ଏକ ଗୁରୁତ୍ୱପୂର୍ଣ୍ଣ ବନ୍ଦରର ମାନ୍ୟତା ଅର୍ଜନ କରିପାରିଥିଲା ।

କଳିଙ୍ଗର ଅଧିବାସୀମାନେ ବୋଇତ ବା ପୋତ ନିର୍ମାଣରେ ସିଦ୍ଧହସ୍ତ ଥିଲେ । ବୋଇତଗୁଡିକର ଅଗ୍ରଭାଗରେ ବିଭିନ୍ନ ପଶୁପକ୍ଷୀଙ୍କ ମୁହଁ ଆକୃତିରେ ଖୋଦେଇ କରାଯାଉଥିଲା । ସୁନା, ରୂପା ଆଦି ଧାତୁରେ ବୋଇତକୁ ସଜାଯାଉଥିଲା । ବିଭିନ୍ନ କାର୍ଯ୍ୟ ପାଇଁ ଭିନ୍ନଭିନ୍ନ ଧରଣର ବୋଇତ ନିର୍ମାଣ କରାଯାଉଥିଲା ଏବଂ ସେଥିରେ ଅଲଗା ଅଲଗା ରଙ୍ଗର ପ୍ରଲେପ ଦିଆଯାଉଥିଲା । ଖଣ୍ଡଗିରି ଶିଳାଲେଖରୁ ଜଣାଯାଏ, କଳିଙ୍ଗ ସାମ୍ରାଜ୍ୟ ସୁନ୍ଦର ମସ୍‌ଲିନ୍ ବସ୍ତ୍ର ଉତ୍ପାଦନ ପାଇଁ ପ୍ରସିଦ୍ଧିଲାଭ କରିପାରିଥିଲା । ଏହି ମସ୍‌ଲିନ୍ ବସ୍ତ୍ର ଏତେ ସୂକ୍ଷ୍ମ ଥିଲା, ଏହାକୁ ବାଉଁଶ ନଳୀ ମଧ୍ୟରେ ରଖି ତାମ୍ରଲିପ୍ତି ବନ୍ଦର ମାଧ୍ୟମରେ ବିଦେଶକୁ ରପ୍ତାନୀ ହେଉଥିଲା ବୋଲି ପ୍ରଥମ ଶତାବ୍ଦୀରେ ରଚିତ ଗ୍ରୀକ୍ ପରିବ୍ରାଜକ **ପେରିପ୍ଲସ୍‌ଙ୍କ** ପୁସ୍ତକରୁ ଜଣାଯାଏ । ବିଦେଶରେ କଳିଙ୍ଗ ପ୍ରସ୍ତୁତ ଏହି ମସଲିନ୍ ବସ୍ତ୍ରର ଅଧିକ ଚାହିଦା ଥିଲା । ତାମିଲ୍ ଭାଷାରେ ଲୁଗାକୁ 'କଲିଙ୍ଗ୍' କୁହାଯାଏ । ଏହି ଶବ୍ଦରୁ ସଂଭବତଃ କଳିଙ୍ଗର ଉତ୍ପତ୍ତି ହୋଇଥାଇପାରେ ବୋଲି ଗବେଷକ ମତବ୍ୟକ୍ତ କରନ୍ତି ।

ପ୍ରାଚୀନ ଭାରତୀୟ ସାହିତ୍ୟରେ ବଙ୍ଗୋପସାଗରକୁ କଳିଙ୍ଗ ଉପସାଗର ଏବଂ କଳିଙ୍ଗ ରାଜାଙ୍କୁ ମହୋଦଧିପତି କୁହାଯାଇଛି । ଓଡ଼ିଶାର ପୂର୍ବ ଉପକୂଳରେ ଥିବା ସମୁଦ୍ରର ନାମ କଳିଙ୍ଗ ଉପସାଗର ହେବାର ଅନେକ କାରଣ ରହିଛି । ଶତାବ୍ଦୀ ଶତାବ୍ଦୀ ଧରି କଳିଙ୍ଗର ପୂର୍ବ ଉପକୂଳର ସୀମା ଗଙ୍ଗାଠାରୁ ଗୋଦାବରୀ ଯାଏ ବ୍ୟାପ୍ତ ଥିଲା । ଏହାର ପ୍ରାଚୀନ ରାଜଧାନୀ, ଅନେକ ସହର, ବନ୍ଦର ସମୁଦ୍ର କୂଳରେ ଥିଲା । କଳିଙ୍ଗର ଅଧିବାସୀମାନେ ବିଭିନ୍ନ ପ୍ରକାର ପୋତ ନିର୍ମାଣ କରିବାରେ ପାରଦର୍ଶିତାଲାଭ କରିପାରିଥିଲେ । ଏମାନେ ଦେଶବିଦେଶରେ ବାଣିଜ୍ୟ କରିବା ସହ ଉପନିବେଶ ସ୍ଥାପନ କରିପାରିଥିଲେ । କଳିଙ୍ଗର ନାବିକ ପଡ଼ୋଶୀ ମଗଧ ରାଜ୍ୟର ନାବିକଙ୍କୁ କଳିଙ୍ଗ ଉପସାଗରରେ

ଯିବାକୁ ଅନୁମତି ଦେଉ ନଥିଲେ । ଏପରିକି ମଗଧ ସମ୍ରାଟ ଅଶୋକଙ୍କ ପାଇଁ ବିଦେଶରୁ ମୂଲ୍ୟବାନ୍ ରତ୍ନ ଆଣିଥିବା କେତେକ ପୋତକୁ କଳିଙ୍ଗର କିଛି ଦୁର୍ଦ୍ଧର୍ଷ ବୀର ଲୁଣ୍ଠନ କରିଥିଲେ । ସର୍ବୋପରି ସମୁଦ୍ରରେ ଆଧିପତ୍ୟ ବିସ୍ତାର କରିଥିବା ଓଡ଼ିଆମାନେ ବିଶ୍ୱର ସୁଦକ୍ଷ ନୌଚାଳକ ଜାତି ରୂପେ ଖ୍ୟାତି ଅର୍ଜନ କରିବା ସହିତ 'କଳିଙ୍ଗାଃ ସାହସିକାଃ'ର ଆଖ୍ୟା ଅର୍ଜନ କରିଥିଲେ ।

ଓଡ଼ିଶା ଉପକୂଳରେ ମୁଖ୍ୟତଃ ଦୁଇ ପ୍ରକାର ବନ୍ଦର ଥିଲା । ସମୁଦ୍ରରେ ପଡିଥିବା ବଡ଼ବଡ଼ ନଦୀ ମୁହାଁଣରେ ଥିବା ବନ୍ଦରକୁ ସାମୁଦ୍ରିକ ବନ୍ଦର **(ଉଦାହରଣ-ଧାମରା : ବୈତରଣୀ)** ଓ ସମୁଦ୍ରଠାରୁ କିଛି ଦୂର ସ୍ଥଳ ଭାଗର ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ପ୍ରଶସ୍ତ ତଥା ଗଭୀର ଶାଖା ନଦୀର ମୁହାଁଣର ବନ୍ଦରକୁ ନଦୀ ବନ୍ଦର **(ଉଦାହରଣ-ଚାନ୍ଦବାଲି : ବୈତରଣୀ)** କୁହାଯାଉଥିଲା । ଏଗୁଡ଼ିକ ଥିଲା ପ୍ରାକୃତିକ ବନ୍ଦର । ସଡ଼କ ପଥ ନଥିବାରୁ ଆଭ୍ୟନ୍ତରୀଣ ଅଞ୍ଚଳରୁ ନଦୀ ପଥରେ ରପ୍ତାନୀଯୋଗ୍ୟ ଜିନିଷ ସଂଗ୍ରହ କରାଯାଇ ନଦୀ ବନ୍ଦରକୁ ପଠାଯାଉଥିଲା ଏବଂ ସେଠାରୁ ଜାହାଜ ଦ୍ୱାରା ସାମୁଦ୍ରିକ ବନ୍ଦରକୁ ପହଞ୍ଚାଯାଉଥିଲା ।

କେନ୍ଦ୍ରାପଡ଼ା ଜିଲ୍ଲାର ପଟ୍ଟାମୁଣ୍ଡାଇ, ନଳିତାପାଟିଆ, ତାଳଚୁଆ କିମ୍ବା ତତ୍କାଳୀନ କନିକା ରାଜ୍ୟର ଏବଂ ଆଧୁନିକ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବନ୍ଦର ସେତେବେଳେ ଓଡ଼ିଶାର ପ୍ରମୁଖ ନଦୀ ବନ୍ଦରର ମାନ୍ୟତା ଅର୍ଜନ କରିଥିଲା । ସାନବ୍ରାହ୍ମଣୀର ଉତ୍ପତ୍ତି ସ୍ଥଳ ପଟ୍ଟାମୁଣ୍ଡାଇ (ପାଟମୁଣ୍ଡି) ଦିନେ କଟକ ଜିଲ୍ଲାର ଏକ ପ୍ରମୁଖ ନଦୀ ବନ୍ଦର ଥିଲା । ଧାମରା ବ୍ୟତୀତ କଟକ ଜିଲ୍ଲା ମଧ୍ୟରେ ଚାନ୍ଦବାଲି, ହଂସୁଆ ଏବଂ ପଟ୍ଟାମୁଣ୍ଡାଇ ଓଡ଼ିଶାର ପ୍ରାଚୀନ ବନ୍ଦର ଥିଲା । ସେହିଭଳି ପଟ୍ଟାମୁଣ୍ଡାଇ ବ୍ରାହ୍ମଣୀ ନଦୀର ପୁରାତନ ଶଯ୍ୟା ଉପରେ ନଦୀ ବନ୍ଦର ଥିଲା ବୋଲି ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ସୂଚନା ଦେଇଛନ୍ତି । **(ପ୍ରଭାତ ମୁଖାର୍ଜୀ, 'ପୌରୁଷ', ୧୯୭୭, ପୃଷ୍ଠା-୬୧)** । ପଟ୍ଟାମୁଣ୍ଡାଇ ଏକ ପ୍ରଧାନ ନଦୀ ବନ୍ଦରର ଗୌରବ ଅର୍ଜନ କରିବା ପଛରେ ଏହାର ଭୌଗୋଳିକ କାରଣ ବହୁ ପରିମାଣରେ ଦାୟୀ । ବୈତରଣୀ-ବ୍ରାହ୍ମଣୀ ମୁହାଁଣରେ ଧାମରା ସାମୁଦ୍ରିକ ବନ୍ଦର, ସାନବ୍ରାହ୍ମଣୀ-ଗୋବରୀ ମୁହାଁଣର ଅନତି ଦୂରରେ ଫଲ୍ସ ପଏଣ୍ଟ (ହୁକିଟୋଲା) ସାମୁଦ୍ରିକ ବନ୍ଦର ଅବସ୍ଥିତ ଥିବାରୁ ପଟ୍ଟାମୁଣ୍ଡାଇ ଓ ଚାନ୍ଦବାଲି ନଦୀ ବନ୍ଦରର ଗୁରୁତ୍ୱ ରହିଥିଲା । ପଟ୍ଟାମୁଣ୍ଡାଇ ଓ ଚାନ୍ଦବାଲି ନଦୀବନ୍ଦରଦ୍ୱୟ ଓଡ଼ିଶାର ପ୍ରାୟ ଅଧିକାଂଶ ନଦୀ ସହିତ ସଂଯୁକ୍ତ ଥିବାରୁ ସେତେବେଳେ ଏହି ଦୁଇ ବନ୍ଦର ଦେଇ ଆଭ୍ୟନ୍ତରୀଣ ଓଡ଼ିଶାରୁ ପଣ୍ୟଦ୍ରବ୍ୟ ପରିବହନ ସଂଭବ ହୋଇପାରୁଥିଲା ।

ବୈତରଣୀ, ବ୍ରାହ୍ମଣୀ ନଦୀ ଉପତ୍ୟକା ଅନ୍ତର୍ଗତ ତତ୍କାଳୀନ କଟକ ଜିଲ୍ଲାର କେନ୍ଦ୍ରାପଡ଼ା, ଯାଜପୁର ଓ ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ଭଦ୍ରକ, କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଅଞ୍ଚଳରେ ବ୍ୟାପକ ଧାନ, ବିରି, ମୁଗ, କୋଳଥ, ଝୋଟ, ଧୂଆଁପତ୍ର ଆଦି ଉତ୍ପନ୍ନ ହେଉଥିଲା । ଅପରପକ୍ଷେ, ଏସବୁ ଅଞ୍ଚଳରେ ଅଧିକ କୁମ୍ଭାର ଏବଂ ତନ୍ତୀ ସଂପ୍ରଦାୟର ଅଧିବାସୀ ରହୁଥିବାରୁ ବ୍ୟାପକ

ପରିମାଣରେ ମାଟିପାତ୍ର ନିର୍ମାଣ ସାଙ୍ଗକୁ ବସ୍ତ୍ର (କପଡ଼ା) ପ୍ରସ୍ତୁତ ହେଉଥିଲା । ଏହିସବୁ ପଣ୍ୟଦ୍ରବ୍ୟକୁ ବୈତରଣୀ, ବ୍ରାହ୍ମଣୀ ଦେଇ ପ୍ରଥମେ ଚାନ୍ଦବାଲି ଓ ପଞ୍ଚାମୁଣ୍ଡାଇ ନଦୀ ବନ୍ଦରରେ ପହଞ୍ଚାଯାଉଥିଲା ଏବଂ ଏହାପରେ ବଡ଼ବଡ଼ ପୋତ ସହାୟତାରେ ଧାମରା ଓ ଫଲ୍ସ ପଏଣ୍ଟକୁ ପରିବହନ କରାଯାଉଥିଲା । ପଞ୍ଚାମୁଣ୍ଡାଇ ଓ ଚାନ୍ଦବାଲି ବନ୍ଦର ଯେ, କେବଳ ପଣ୍ୟଦ୍ରବ୍ୟ ରପ୍ତାନୀ ଆମଦାନୀ ପାଇଁ ପ୍ରସିଦ୍ଧିଲାଭ କରିଥିଲା, ତାହା ନୁହେଁ ଏହା ମଧ୍ୟ ଯାତ୍ରୀ ପରିବହନ କ୍ଷେତ୍ରରେ ଦେଶ ବିଦେଶରେ ବେଶ୍ ନାଁ କରିଥିଲା । ୧୭ଶହ ଖ୍ରୀ.ଅ. ବେଳକୁ ଇଂରେଜମାନେ ଧାମରା ନଦୀ ମୁହାଁଣରୁ ବୈତରଣୀ-ବ୍ରାହ୍ମଣୀ ନଦୀ ମାଧ୍ୟମରେ ଜାହାଜରେ କଲିକତାରୁ ସରକାରୀ ସାମଗ୍ରୀ ଧରି ଚାନ୍ଦବାଲି ଓ ପଞ୍ଚାମୁଣ୍ଡାଇ ନଦୀ ବନ୍ଦର ଦେଇ କଟକରେ ପହଞ୍ଚୁଥିଲେ ।

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାର କିଛି ଅଂଶ ଦଖଲ କଲେ । କିନ୍ତୁ କୁଜଙ୍ଗ ଓ କନିକା ରାଜା ଇଂରେଜ ସରକାରଙ୍କୁ ଗ୍ରହଣ କରି ନପାରି ସେମାନଙ୍କ ବିରୋଧରେ ମେଳି କରିଥିଲେ । ଏଣୁ ୧୮୦୫ ମସିହାରେ ଇଂରେଜ ଶାସକ କର୍ଣ୍ଣେଲ୍ ହାର୍‌କୋଟ୍ କନିକା-କୁଜଙ୍ଗ ବିଦ୍ରୋହକୁ ଦମନ କରିବା ପାଇଁ ଧାମରା ବନ୍ଦରରୁ ଏକ ସୈନ୍ୟ ଦଳ ସହ ବୈତରଣୀ ନଦୀ ଦେଇ ପ୍ରଥମେ କନିକାରେ ଏବଂ ଧାମରାରୁ ବ୍ରାହ୍ମଣୀ ନଦୀ ଦେଇ ପଞ୍ଚାମୁଣ୍ଡାଇ ଆସିବା ପରେ ସେଠାରୁ ସାନବ୍ରାହ୍ମଣୀ ନଦୀ ପଥରେ କୁଜଙ୍ଗ ଯାଇଥିଲେ ।

୧୮୨୨ ମସିହାରେ ଇଂରେଜ ଉଚ୍ଚ ପଦାଧିକାରୀ ଜେମ୍ସ ପେଗ୍ ଓ ଉଇଲିୟମ୍ ବ୍ୟାଂପ୍‌ଟନ୍ ସପରିବାରେ ଧାମରା ବନ୍ଦରରୁ ବୈତରଣୀ-ବ୍ରାହ୍ମଣୀ ନଦୀ ଦେଇ ପଞ୍ଚାମୁଣ୍ଡାଇଠାରେ ଜାହାଜରେ ଅବତରଣ କରିଥିଲେ । ବ୍ୟାଂପ୍‌ଟନ ପଞ୍ଚାମୁଣ୍ଡାଇରେ ବର୍ଷେ ରହିବା ପରେ ପୁରୀ ଯାଇଥିଲେ । ଏ ଦୁଇ ଅଧିକାରୀ ୟୁରୋପୀୟ ଏବଂ ଆଙ୍ଗ୍ଲୋ-ଇଣ୍ଡିଆନ୍ ଛାତ୍ରଛାତ୍ରୀଙ୍କ ପାଇଁ ଓଡ଼ିଶାରେ ପ୍ରଥମ ଇଂରାଜୀ ସନ୍ ଡେ ସ୍କୁଲ୍ କଟକଠାରେ ପ୍ରତିଷ୍ଠା କରିଥିଲେ ।

[ତଥ୍ୟ ସହାୟତା

୧. ପ୍ରାଚୀନ ଉତ୍କଳ (ଦ୍ୱିତୀୟ ଭାଗ), ଜଗବନ୍ଧୁ ସିଂହ, ପ୍ରକାଶକ: ଓଡ଼ିଶା ସାହିତ୍ୟ ଏକାଡେ଼ମି, ଭୁବନେଶ୍ୱର, ଚତୁର୍ଥ ସଂସ୍କରଣ-୨୦୧୩, ପୃଷ୍ଠା: ୧୪୭

୨. ଜଗବନ୍ଧୁ ସିଂ, 'ପ୍ରାଚୀନ ଉତ୍କଳ', ଦ୍ୱିତୀୟ ସଂସ୍କରଣ-୧୯୬୪, ପୃଷ୍ଠା-୨୩, ୨୬, ୫୫୩, ୫୫୪, ୫୫୫

୩. ବିଜୟ ନାୟକ, 'ବହିତ୍ର', ୩୦ ନଭେମ୍ବର ୨୦୦୧ ସଂଖ୍ୟା, ଚାନ୍ଦବାଲି ପୂଜ୍ୟପୂଜା ସଂସଦର ସ୍ମରଣିକା, ସଂପାଦକ: ଶାନ୍ତନୁ କୁମାର ମହାନ୍ତି, ପୃଷ୍ଠା: ୧୨, ୧୩

*4. Orissa District Gazetteers, Cuttack by Shri Nrusinha Charan Behuria, I.A.S. Retd, Director, Printing Stationary and Publication,*

*Orissa, Cuttack -1992, p-765*

5. *O' malley ICS LSS -Bihar and Orissa Dist Gazetteers, Cuttack, 2nd Edition, 1933, p-21, 38, 151, 167*

୬· ଅନ୍ତର୍ଯାମୀ ମିଶ୍ର, ବୋଇତ ବନ୍ଦାଣ, ପ୍ରତିଭା, ୧୦ମ ବର୍ଷ, ତୃତୀୟ ସଂଖ୍ୟା, ଡିସେମ୍ବର ୧୯୯୭, ପୃଷ୍ଠା-୩୫

7. *M.N Das, Histroy of India, Ancient Period, 1986, p-73*

୮· ଗୋପାଳ ପ୍ରହରାଜ, ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ଲାର୍କ ବୁକ୍ସ, ଭୁବନେଶ୍ୱର-୨୦୦୮, ଚତୁର୍ଥଖଣ୍ଡ (ଦ-ପ), ପୃଷ୍ଠା-୪୫୨୩ ]

## ଓଡ଼ିଆ ପୁରାଣରେ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟର ଚିତ୍ର

*(Naval Trading of ancient Odisha in Odia Mythology)*

ପ୍ରାଚୀନ କଳିଙ୍ଗର ସାମୁଦ୍ରିକ ବାଣିଜ୍ୟ ସଂପର୍କରେ ଇତିହାସରୁ ଯେତିକି ଉପାଦାନ ସଂଗ୍ରହ ନ ହୋଇଛି ବରଂ ତା'ଠୁ ଅଧିକ ଉପାଦାନ ଆମର ଲୋକଗୀତ, ଲୋକକାହାଣୀ, ପୁରାଣ ଓ କିମ୍ବଦନ୍ତୀରୁ ମିଳିଥାଏ । ଓଡ଼ିଶାରେ ପ୍ରଚଳିତ ଅନେକ ପୁରାଣର କିଛି ପ୍ରସଙ୍ଗରୁ ଇତିହାସକୁ ଉଦ୍ଧାର କରାଯାଇ ପ୍ରାଚୀନ ନୌବାଣିଜ୍ୟ ସଂପର୍କରେ ବହୁ ତଥ୍ୟ ହସ୍ତଗତ ହୋଇଛି । **'ତଅପୋଇ' (ଖୁଦୁରୁକୁଣୀ ବ୍ରତ), ଖୁଲଣା ସୁନ୍ଦରୀ (ମଙ୍ଗଳା ଓଷା), କାର୍ତ୍ତିକ ମାହାତ୍ମ୍ୟ, ବୃନ୍ଦାବତୀ ଓ ଜଳନ୍ଧର ପ୍ରସଙ୍ଗ, 'କାର୍ତ୍ତି ଅଁଳା ପର୍ବ', ଦ୍ୟୁତିବାହନ ଓଷା** ଭଳି ପୌରାଣିକ ଆଧାରରୁ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସଂପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୌଗୋଳିକ ଉପାଦାନ ସଂଗ୍ରହ କରାଯାଇଛି । ସେହିଭଳି ଓଡ଼ିଶାର ଗ୍ରାମାଞ୍ଚଳରେ **'କୁହୁକ ମଣ୍ଡଳ ଚଢ଼େଇ'** ଓ **'ଚାରି ମହାଜନ ପୁଅ'** ଭଳି ବୋଇତ ଓ ସାମୁଦ୍ରିକ ବାଣିଜ୍ୟ ସଂକ୍ରାନ୍ତ ଲୋକକାହାଣୀ ଆମର ପ୍ରାଚୀନ ନୌବାଣିଜ୍ୟ ପରଂପରା ସଂପର୍କରେ ଅନେକ ତଥ୍ୟ ପ୍ରଦାନ କରିଥାଏ । ଏହାବ୍ୟତୀତ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରାକୁ ଉଜ୍ଜୀବିତ କରିବା ପାଇଁ ଆଜି ବି ଓଡ଼ିଶାର ପୁରପଲ୍ଲୀରେ ଅନେକ ଲୋକଗୀତ, ଢଗଢମାଳି, ପହଳି ପ୍ରଚଳିତ ଅଛି । ସେହିସବୁ ପୁରାଣ, ଓଷାବ୍ରତ, ଲୋକକାହାଣୀ, ଲୋକଗୀତ, ପ୍ରହେଳିକା, ଢଗଢମାଳି ସଂପର୍କରେ ନିମ୍ନରେ ଏକ ଆଲୋଚନା କରାଗଲା ।

**ଖୁଦୁରୁକୁଣୀ ଓଷା:** ଏହି ଓଷାର ବିଷୟବସ୍ତୁ ସଂପୂର୍ଣ୍ଣ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ସଂସ୍କୃତି ଉପରେ ଆଧାରିତ । ତଅପୋଇ ନାମ୍ନି ଝିଅଟି ସାଧବ ସାତ ଭାଇଙ୍କର ଏକମାତ୍ର ଅଲିଅଳି ଭଉଣୀ ଥିଲା । ଜଣେ ବିଧବା ବ୍ରାହ୍ମଣୀର ପ୍ରରୋଚନାରେ ସେ ଖେଳିବା ପାଇଁ ତା' ବାପା ଓ ଭାଇମାନଙ୍କୁ ଏକ ରୁପା ଜହ୍ନ ଓ ସୁନା କୁଲେଇ ମାଗିଥିଲା । ତଅପୋଇର ବାପା ଓ ଭାଇମାନେ

ସାଧବ ସଂପ୍ରଦାୟର ବଣିକ ଥିବାରୁ ସେମାନେ ସମୁଦ୍ରରେ ଦୂରଦେଶ ସହିତ ବାଣିଜ୍ୟ କାରବାର କରୁଥିଲେ । ଆର ଥରକୁ ବୋଇତ ନେଇ ବିଦେଶକୁ ଗଲାବେଳେ ତଅପୋଇର ମନପସନ୍ଦର ରୁପା ଜହ୍ନ ଓ ସୁନା କୁଲେଇ ବିଦେଶରୁ ଅଣାଯିବ ବୋଲି ବାପା ଓ ଭାଇମାନେ ସାଧବଲଳନା ତଅପୋଇକୁ ପ୍ରତିଶ୍ରୁତି ଦେଇଥିଲେ ।

ଏହା ଭିତରେ ତଅପୋଇର ବାପା ଓ ମା'ର ମୃତ୍ୟୁ ହୋଇଗଲା । ପରେ ଭାଇମାନେ ବିଦେଶ ଯାତ୍ରା କଲେ । ସାଧବ ଭାଇମାନେ ସମୁଦ୍ର ଯାତ୍ରା କରିବା ପରେ ଭାଉଜମାନେ ନଣନ୍ଦ ତଅପୋଇକୁ ହଇରାଣ କଲେ । ତଅପୋଇ ମା' ମଙ୍ଗଳାଙ୍କୁ ପ୍ରାର୍ଥନା କରିବାରୁ ଭାଇମାନେ କୁଶଳରେ ଫେରି ଆସିଲେ । ସେମାନଙ୍କ ବୋଇତ ଆସି ସମୁଦ୍ର କୂଳରେ ଲାଗିଲା । ମା' ମଙ୍ଗଳାଙ୍କୁ ଆରାଧନା କରି ସେମାନେ ନିଜ ଗୃହକୁ ଫେରିଲେ ଏବଂ ତଅପୋଇଙ୍କୁ ନିର୍ଯାତନା ଦେଇଥିବା ଭାଉଜମାନଙ୍କୁ ଦଣ୍ଡ ମିଳିଲା । ଏଭଳି ଏକ ସାଧବ ପରିବାର ଓ ବୋଇତ ଯୋଗେ ଦୂରବିଦେଶ ଯାତ୍ରାର କାହାଣୀକୁ ନେଇ ତଅପୋଇ ବା ଖୁଦୁରୁକୁଣୀ ଓଷାର ପରିକଳ୍ପନା ।

ମା' ମଙ୍ଗଳା ହେଉଛନ୍ତି ସାଧବ (ସୌଦାଗର)ମାନଙ୍କର ଅଧିଷ୍ଠାତ୍ରୀ ଦେବୀ । ଉପକୂଳବର୍ତ୍ତୀ ଓଡ଼ିଆ ଝିଅମାନେ ଭାଦ୍ରବ ମାସର ପାଞ୍ଚ ରବିବାର ଏହି ପୂଜା ପାଳନ କରିଥା'ନ୍ତି । ଏହା ଆମ ଅତୀତର ଦରିଆପାରି ନୌବାଣିଜ୍ୟ ପରଂପରାର ସ୍ମୃତିକୁ ତାଜା କରିଥାଏ ।

**ଖୁଲଣା ସୁନ୍ଦରୀ (ନିଶା ମଙ୍ଗଳବାର ଓଷା):** ଖୁଲଣା ସୁନ୍ଦରୀ ଉପାଖ୍ୟାନଟି ମଧ୍ୟ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପୃଷ୍ଠଭୂମି ଆଧାରରେ ରଚିତ ଏକ ପୌରାଣିକ ବିଷୟବସ୍ତୁ । ଏଥିରେ ଧନେଶ୍ୱର ସୌଦାଗର ନାମରେ ଜଣେ ଧନୀ ବଣିକ ବାଣିଜ୍ୟ କରିବାକୁ ଦୂର ବିଦେଶକୁ ସମୁଦ୍ର ଯାତ୍ରା କରିଥିବାର ଦର୍ଶାଯାଇଛି । ତାଙ୍କର ଦୁଇ ପତ୍ନୀ ନୟନା ସୁନ୍ଦରୀ (ଜ୍ୟେଷ୍ଠା) ଓ ଖୁଲଣା ସୁନ୍ଦରୀ (କନିଷ୍ଠା) ଅପୁତ୍ରିକ ଥିଲେ । ଖୁଲଣା ସୁନ୍ଦରୀ ମା' ମଙ୍ଗଳାଙ୍କୁ ପୂଜା କରିବା ଫଳରେ ଶ୍ରୀଧର ନାମରେ ତାଙ୍କର ଏକ ପୁତ୍ର ଜାତ ହୋଇଥିଲା । ଏହା ମଧ୍ୟରେ ଧନେଶ୍ୱର ସୌଦାଗରଙ୍କୁ ଦରିଆପାରିରେ (ସଂଭବତଃ ସିଂହଳ ବା ଶ୍ରୀଲଙ୍କାରେ) ବନ୍ଦୀ କରି ରଖାଯାଇଛି । ଖୁଲଣା ସୁନ୍ଦରୀ ପୁରାଣରେ ସମୁଦ୍ର ଯାତ୍ରାର ବର୍ଣ୍ଣନା ଏବଂ ମା' ମଙ୍ଗଳାଙ୍କ ବର୍ଣ୍ଣନାରୁ ଧନେଶ୍ୱର ସୌଦାଗର ବାଣିଜ୍ୟ କରିବାକୁ ଯାଇଥିବା ଦେଶଟି ସିଂହଳ ବା ଶ୍ରୀଲଙ୍କା ସହ ବହୁ ସାମଞ୍ଜସ୍ୟ ରଖେ । ମାତ୍ର ଖୁଲଣା ସୁନ୍ଦରୀ ପୁରାଣରେ ଏହି ବିଦେଶକୁ 'ବିରୂପା' ଦେଶ ଭାବେ ଉଲ୍ଲେଖ କରାଯାଇଛି । ସିଂହଳ ଓ ବିରୂପା ଦେଶ ଏକ କି ଭିନ୍ନ ତାହା ବିତର୍କସାପେକ୍ଷ ।

ଦୀର୍ଘଦିନ ଧରି ବନ୍ଦୀ ଜୀବନ ବିତାଇବା ପରେ ତାଙ୍କ ପୁତ୍ର ଶ୍ରୀଧର (ଖୁଲଣା ସୁନ୍ଦରୀଙ୍କ ଗର୍ଭରୁ ଜାତ) ବୋଇତରେ ସାତଦରିଆ ପାର ହୋଇ ନିଜ ପିତାକୁ ମୁକୁଳେଇ ନିଜ ରାଜ୍ୟକୁ ଫେରାଇ ଆଣିଛନ୍ତି । ଏସବୁ ମା' ମଙ୍ଗଳାଙ୍କ ଆଶୀର୍ବାଦ ଯୋଗୁଁ ସଂଭବ ହୋଇଛି ବୋଲି ପୁରାଣରେ ଉଲ୍ଲେଖ

ରହିଛି । ସୂଚନାଯୋଗ୍ୟ, ମା' ମଙ୍ଗଳା ହେଉଛନ୍ତି ସାଧବ (ବଣିକ)ମାନଙ୍କର କୁଳଦେବୀ । ଆଜି ମଧ୍ୟ ଉପକୂଳବର୍ତ୍ତୀ ଓଡ଼ିଶାର ଗ୍ରାମାଞ୍ଚଳର ମହିଳାମାନେ ଆଶ୍ୱିନ ମାସର ପ୍ରଥମ ମଙ୍ଗଳବାରରୁ ଶେଷ ମଙ୍ଗଳବାର ପର୍ଯ୍ୟନ୍ତ ମାସକ ଧରି ମା' ମଙ୍ଗଳାଙ୍କ ପୂଜା କରିଥା'ନ୍ତି ।

ଧନେଶ୍ୱର ସୌଦାଗର ଜଣେ ସାଧବ ଓ ସେ ବିଦେଶକୁ କେଉଁକେଉଁ ଦ୍ରବ୍ୟ ରପ୍ତାନୀ କରୁଥିଲେ ତାହା ମଧ୍ୟ 'ଖୁଲଣା ସୁନ୍ଦରୀ' ପୁରାଣରେ ଉଲ୍ଲେଖ କରାଯାଇଛି । ଏଥିରୁ ପ୍ରାଚୀନ ଉତ୍କଳୀୟଙ୍କର ନୌବାଣିଜ୍ୟ କାରବାର ସଂପର୍କରେ ଅନେକ ତଥ୍ୟ ମିଳିଥାଏ ।

"ମନୋ ହରି ବୋଲି ଏକ ବୋଇତ ।
ତକ୍ଷଣେ ସଜକଲା ନରନାଥ ॥
ଅନେକ ଦ୍ରବ୍ୟ ତା ଭିତରେ ଭରି ।
ଶୁଣ୍ଠି, ପିପ୍ପଳି ଯେ ପାନମହୁରୀ ॥
ଗଙ୍ଗାର କର୍ପୂର, କସ୍ତୁରୀ, ଝୁଣା ।
ଜାଇଫଳ, ବଡ଼ଜିରା, ଟାଙ୍ଗଣା ॥
ହେଙ୍ଗୁ, ସଉପ, ଲବଙ୍ଗ, ଯୁଆଣି ।
ଗୁଜୁରାତି, ଅଳାଇଚକୁ ଘେନି ॥
ନୀଳବଡ଼ି, ହରିତାଳ, ହିଙ୍ଗୁଳ ।
ମୁଦାର ଶଙ୍ଖ ପୁଣି ମନଃଶୀଳ ॥
ମେଥି, ରସୁଣ ଯେ ଜିରା, ମରିଚ ।
କଳାଲୁଣ, ଲୋଧ୍ର, ଭାଲିଆ, ବଚ ॥
ଖଇର, ଆପୁ, ମେଣ୍ଢାଶିଙ୍ଗ, ପାରା ।
ନାଗେଶ୍ୱର, ତେଜପତ୍ର, ମହୁରା ॥
ଅଷ୍ଟ ରତ୍ନ ଆଦି ଯେତେକ ଦ୍ରବ୍ୟ ।
ବୋଇତ ଭିତରେ ରଖିଲା ସର୍ବ ॥"

**[ତଥ୍ୟ: ଖୁଲଣା ସୁନ୍ଦରୀ ବା ନିଶା ମଙ୍ଗଳବାର ଓଷା (ନୂତନ ମୁଦ୍ରଣ), ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶାବଜାର, କଟକ-୨, ପୃଷ୍ଠା: ୧୧, ୧୨]**

"ଅଙ୍ଗ ବଙ୍ଗ ଆଦି କଳିଙ୍ଗ ଦେଶ ।
କାହିଁ ନ ରହିଣ ଚଳେ ନରେଶ ॥
ମଢ଼ିକା ବେଣୀ ଚିତ୍ରନଗ୍ରପୁର ।

ଯାଇ ମିଳିଲା ବିରୂପା ଦେଶର ॥

ଧନେଶ୍ୱର ସୌଦାଗର **ବିରୁପା ଦେଶକୁ** ବାଣିଜ୍ୟ କରିବାକୁ ଯାଇଛନ୍ତି ବୋଲି ପୁରାଣରେ ଉଲ୍ଲେଖ ରହିଛି । ଏଠାରେ ଏହି ପୌରାଣିକ ବିରୂପା ଦେଶକୁ ଆଧୁନିକ ସମୟର କେଉଁ ଦେଶ ସହିତ ତୁଳନା କରାଯାଇପାରେ ତାହା ଗବେଷଣାସାପେକ୍ଷ ।

"ଆଠ ଦଶ ଜଣ ସଙ୍ଗରେ ନେଇ ।

ବୋଇତ ଉପରେ ବସିଲା ଯାଇ ।।"

ସେତେବେଳେ ଗୋଟିଏ ବୋଇତରେ ବାଣିଜ୍ୟ ସାମଗ୍ରୀ ସମେତ ପାଖାପାଖି ୮ରୁ ୧୦ ଜଣ ବଣିକ ଯାତ୍ରା କରୁଥିଲେ ବୋଲି ଏହି ଉକ୍ତିରୁ ସ୍ପଷ୍ଟ ।

**[ତଥ୍ୟ: ଖୁଲଣା ସୁନ୍ଦରୀ ବା ନିଶା ମଙ୍ଗଳବାର ଓଷା (ନୂତନ ମୁଦ୍ରଣ), ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶାବଜାର, କଟକ-୨, ପୃଷ୍ଠା: ୧୨]**

"ପଚିଶ ଦିନ ସେଠାରେ ପଥ ବାହିଗଲେ ।

ବୋଇତ ଲାଗିଲା ଯାଇ ଯୋକର ହ୍ରଦରେ ॥

ଯୋକମାନଙ୍କ ପ୍ରତିଜ୍ଞା କି କହିବି ମୁହିଁ ।

ବିଶାଶତେ ଲମ୍ବ ଅଟେ ତାହାଙ୍କର ଦେହୀ ॥

ଉଚ୍ଚେ ଲେଖା କଲେ ସେ ତିରିଶି ହାତ ହେବ ।

ଏକ ଏକଗୋଟି ଯେ ବୋଇତ ଗିଳିଦେବ ।।

ବେଢିଲେ ସାତଶ' ଯୋକ ବୋଇତ ପାଶର ।

ତାହା ଦେଖି ଶ୍ରୀଧର ଯେ ହେଲା ଚମତ୍କାର ।।

ଏହି ଯୋକଙ୍କ ମୁଖରୁ କେମନ୍ତେ ବଞ୍ଚିବୁ ।

ମନେ ବିଚାରିଲା ଏଥି ନିଶ୍ଚେ ନାଶ ଯିବୁ ।।"

ଧନେଶ୍ୱର ସୌଦାଗର ବିରୂପା ଦେଶରେ ବନ୍ଦୀ ଅଛନ୍ତି । ତାଙ୍କୁ ଉଦ୍ଧାର କରି ଆଣିବାକୁ ତାଙ୍କ ସାଧବ ପୁତ୍ର କୁମାର ଶ୍ରୀଧର ଏକ ବୋଇତରେ ବିରୂପା ଦେଶ ଅଭିମୁଖେ ଯାତ୍ରା କରିଛନ୍ତି । ସମୁଦ୍ରରେ ଯାତ୍ରା କରିବା ଅବସରରେ ଅଶାନ୍ତ ସାମୁଦ୍ରିକ ଚିତ୍ର, ଝଡ଼ଝଞ୍ଜା ଓ ଭୟଙ୍କର ସାମୁଦ୍ରିକ ଜୀବଜନ୍ତୁଙ୍କ ସଂପର୍କରେ ଏହି ପୁରାଣରେ ବର୍ଣ୍ଣନା କରାଯାଇଛି । ସେତେବେଳେ ସାଧବମାନଙ୍କୁ ଗୋଟିଏ ଦ୍ୱୀପରୁ ଅନ୍ୟ ଗୋଟିଏ ଦ୍ୱୀପରେ ପହଞ୍ଚିବାକୁ ମାସମାସ ସମୟ ଲାଗୁଥିବା କଥା ମଧ୍ୟ ଏଥିରେ ଉଲ୍ଲେଖ କରାଯାଇଛି । ବୋଇତ ବାହି ଯାଉଥିବାବେଳେ ଧନେଶ୍ୱରଙ୍କ ପୁତ୍ର ଶ୍ରୀଧର ଏକ ହିଂସ୍ର ସାମୁଦ୍ରିକ ଜନ୍ତୁପୂର୍ଣ୍ଣ ହ୍ରଦରେ ପ୍ରବେଶ କରିଛନ୍ତି । ଏହି ହିଂସ୍ର ସାମୁଦ୍ରିକ ଜନ୍ତୁର ଲମ୍ବ ୩୦

ହାତରୁ ଅଧିକ ହେବ ବୋଲି ବର୍ଣ୍ଣନା କରାଯାଇଛି । ଏହା ସଂଭବତଃ ସାମୁଦ୍ରିକ ନୀଳତିମି କିମ୍ବା ସାର୍କ୍ ହୋଇଥାଇପାରେ । ତେବେ ପୁରାଣରେ ଏହି ଜୀବର ନାମ 'ଯୋକ' ବୋଲି ଉଲ୍ଲେଖ କରାଯାଇଛି ।

**[ତଥ୍ୟ: ଖୁଲଣା ସୁନ୍ଦରୀ ବା ନିଶା ମଙ୍ଗଳବାର ଓଷା (ନୂତନ ମୁଦ୍ରଣ), ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର୍, ଆଲିଶାବଜାର, କଟକ-୨, ପୃଷ୍ଠା: ୫୦]**

**କୁହୁକ ମଣ୍ଡଳ ଚଢ଼େଇ ଉପାଖ୍ୟାନ:** ଏହି ଲୋକକାହାଣୀଟିର କଥାବସ୍ତୁ ତିନିଜଣ ବଣିକ ଭାଇଙ୍କ ନୌଯାତ୍ରା ଉପରେ ପର୍ଯ୍ୟବସିତ । ଏକଦା ଦୁଇ ବଣିକ ଭାଇ ବିଦେଶ ଗଲାପରେ ସେମାନଙ୍କ ସ୍ତ୍ରୀମାନେ କଳାମେଘୀ ପାଟ ଓ ମେଘ ଡମ୍ବରୁ ଶାଢି ଆଣିବା ପାଇଁ କହିଥିଲେ । ବଣିଜ ସାରି ଦୁଇ ଭାଇ ଫେରିବା ବେଳେ ସେମାନଙ୍କ ସ୍ତ୍ରୀମାନେ ବୋଇତ ବନ୍ଦାଣ ପାଇଁ ସମୁଦ୍ର କୂଳକୁ ଆସିଥିଲେ । ମାତ୍ର ତୃତୀୟ ଭାଇ ବିଦେଶରେ ଜଣେ ବିଦେଶୀ କନ୍ୟାକୁ ବିବାହ କରି ସେଠାରେ ରହିଯାଇଥିଲେ । ଏଣୁ ସେ ଫେରି ନଥିଲେ । ତୃତୀୟ ଭାଇ ସେଠାରେ ରଜା ପାଲଟି ଯାଇଥିଲେ । ଏହା ଜାଣିପାରି ତାଙ୍କ ସ୍ତ୍ରୀ ସମୁଦ୍ର କୂଳରେ ବସି ରୋଦନ କରୁଥିଲେ । ଏକାକିନୀ ନିରାଶ୍ରା ମହିଳାଟିକୁ ସମୁଦ୍ର କୂଳରେ ବସି କାନ୍ଦୁଥିବାର ଦେଖି ଅନ୍ୟ ବଣିକମାନେ ତାଙ୍କୁ ବିଦେଶକୁ ନେଇ ଯାଇଥିଲେ ଏବଂ ସେଠାରେ ପତ୍ନୀ ଓ ପତିଙ୍କର ନାଟକୀୟ ଭାବେ ପୁନର୍ମିଳନ ଘଟିଛି ।

**ଚାରି ମହାଜନ ପୁଅ କାହାଣୀ:** ସେହିଭଳି 'ଚାରି ମହାଜନ ପୁଅ କାହାଣୀ'ରେ ମଧ୍ୟ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରଂପରା ସଂପର୍କରେ ଉଲ୍ଲେଖ ରହିଛି । ଏଥିରେ ହାତୀର ଓଜନ କିଭଳି ହୋଇଥାଏ ତାହା ଦର୍ଶାଯାଇଛି । ହାତୀକୁ ଓଜନ କରିବାକୁ ହେଲେ ତାକୁ ଗୋଟିଏ ଡଙ୍ଗାରେ ଚଢେଇ ଦିଆଯାଏ । ଡଙ୍ଗାଟି ଯେତେ ପର୍ଯ୍ୟନ୍ତ ପାଣିରେ ବୁଡ଼େ, ସେଠାରେ ଏକ ଚିହ୍ନ ଦିଆଯାଏ । ପରେ ସେହି ଚିହ୍ନ ଯାଏ ଡଙ୍ଗା ବୁଡ଼ିଲା ପର୍ଯ୍ୟନ୍ତ ସେଥିରେ ବାଲି ପୂରେଇ ଓଜନ କରାଯାଏ ।

ସେତେବେଳେ ଆଜି ଭଳି ଆଧୁନିକ ଜ୍ଞାନକୌଶଳ ଜଣା ନଥିଲେ ମଧ୍ୟ ପ୍ରାଚୀନ କଳିଙ୍ଗର ସାଧବମାନେ ସମୁଦ୍ର ପାର ହେବାପାଇଁ ଯେଉଁଭଳି ଜ୍ଞାନବିଜ୍ଞାନର ପ୍ରୟୋଗ କରୁଥିଲେ ତାହା ଜାଣିଲେ ଆଶ୍ଚର୍ଯ୍ୟର ସୀମା ରହେନାହିଁ । ସେମାନେ ବିଶେଷକରି ରାତିର ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ଧ୍ରୁବତାରା, ପାଣିପାଗ ଓ ବାୟୁର ପ୍ରବାହକୁ ଲକ୍ଷ୍ୟ କରି ନିଜର ବୋଇତ ଯାତ୍ରାର ଶୁଭାରଂଭ କରୁଥିଲେ ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ସାମୁଦ୍ରିକ ବାଣିଜ୍ୟ ପାଇଁ ଯେଉଁ ସମୟ ନିର୍ଘଣ୍ଟ କରାଯାଇଛି ତାହା ଆଷାଢ଼ ମାସ ଅମାବାସ୍ୟାର ସାତ ଦିନ ପୂର୍ବରୁ ଆରଂଭ ହୋଇ କାର୍ତ୍ତୀକ ମାସ ଅମାବାସ୍ୟାର ସାତ ଦିନ ପୂର୍ବରୁ ଶେଷ ହୁଏ । ଏହି ସମୟ ସାଧାରଣତଃ ବର୍ଷା ଋତୁ । ମାତ୍ର ପ୍ରାଚୀନ ଉତ୍କଳର ବଣିକମାନେ ଏଥିରେ ପରିବର୍ତ୍ତନ କରି କାର୍ତ୍ତୀକ ମାସର ପୂର୍ଣ୍ଣମୀରୁ ସାମୁଦ୍ରିକ ଯାତ୍ରା ଆରମ୍ଭ କରୁଥିଲେ ।

ଚୈତ୍ର ମାସ ପୂର୍ଣ୍ଣିମା ବେଳକୁ ବାଣିଜ୍ୟ ସାରି ନିଜ ରାଜ୍ୟକୁ ଫେରି ଆସୁଥିଲେ ।

**କାର୍ତ୍ତୀକ ପୂର୍ଣ୍ଣିମା ଓ ବୋଇତ ବନ୍ଦାଣ ଉତ୍ସବ:** ପ୍ରାଚୀନ ଓଡ଼ିଆ ସାଧବମାନଙ୍କ ବୋଇତ ଯାତ୍ରାର ସ୍ମୃତିକୁ ଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ଏବେ ବି ଓଡ଼ିଶାର ପୁରପଲ୍ଲୀରେ କାର୍ତ୍ତୀକ ମାସରେ କାର୍ତ୍ତୀକ ବ୍ରତ ପାଳନ କରାଯିବା ସହ ପୂର୍ଣ୍ଣିମାର ପୂର୍ବ ପାଞ୍ଚଦିନକୁ ପଞ୍ଚୁକ ବ୍ରତ ଭାବେ ପାଳନ କରାଯାଇଥାଏ । କାର୍ତ୍ତୀକ ପୂର୍ଣ୍ଣମୀ ଦିନ ଗାଁର ଝିଅ, ବୋହୂମାନେ ସୋଲ, କାଗଜ ଓ କାଠ ନିର୍ମିତ ଡଙ୍ଗା ନିକଟସ୍ଥ ନଦୀ, ପୋଖରୀରେ ଭସାଇଥା'ନ୍ତି । ଏହି ଦିନ 'ବୋଇତ ବନ୍ଦାଣ' ଉତ୍ସବ ପାଳନ କରାଯାଇଥାଏ । ଆଗକାଳରେ କଦଳୀ ବାହୁଙ୍ଗାରେ ସ୍ତ୍ରୀଲୋକମାନେ ଡଙ୍ଗା ତିଆରି କରି ସେଥିରେ ଦୀପ ଜାଳି ପାହାନ୍ତା ପହରରେ ପାଖରେ ଥିବା ନଈ, ପୋଖରୀରେ ଭସାଇ ଦେଉଥିଲେ । ଅଜିକାଲି କାଗଜ ଓ ସୋଲ ନିର୍ମିତ ଆକର୍ଷଣୀୟ ଡଙ୍ଗାମାନ ବଜାରରେ ମିଳୁଥିବାରୁ ଡଙ୍ଗା ତିଆରି କରିବାକୁ କଷ୍ଟ ହେଉନି । ଡଙ୍ଗା ଭସାଇଲା ବେଳେ ସ୍ତ୍ରୀଲୋକମାନେ କହନ୍ତି-

"ଆକା ମା ବୋଇ
ପାନ ଗୁଆ ଖାଇ
ପାନ ଗୁଆତକ ତୋର
ମାସକ ଧରମ ମୋର ।"

**ଆକାଶ ଦୀପ:** ଆଜି ବି ଉପକୂଳ ଓଡ଼ିଶାର ଗାଁଗହଳିରେ କାର୍ତ୍ତୀକ ମାସର ଆରଂଭରୁ କେତେକ ଘରେ ଗୋଟିଏ ବାଉଁଶ ପୋତି, ତା ଉପରେ ଛିଦ୍ର ଥିବା ଏକ ମାଟି ହାଣ୍ଡିରେ ଏକ ଅଖଣ୍ଡ ଦୀପ ସ୍ଥାପନ କରାଯାଇଥାଏ । ଏହାକୁ **'ଆକାଶ ଦୀପ'** କୁହାଯାଏ । ଛିଦ୍ରଯୁକ୍ତ ହାଣ୍ଡିଟିକୁ ପ୍ରତିଦିନ ଦଉଡ଼ିରେ ତଳକୁ ଖସାଇ ସନ୍ଧ୍ୟା ସମୟରେ ଦୀପରେ ତେଲ ଦେଇ ଅଗ୍ନି ସଂଯୋଗ କରି ପୁଣି ଉପରକୁ ଉଠାଇ ଦିଆଯାଏ । ଏହି ଦୀପ କେବଳ ରାତି ସମୟରେ ଜଳେ । ନଦୀରେ ରାତି ବେଳେ ଯାଉଥିବା ନାବିକ (ସାଧବ)ମାନଙ୍କୁ ଜନବସତିର ସନ୍ଧାନ ଦେବା ଉଦ୍ଦେଶ୍ୟରେ ଏହି 'ଆକାଶଦୀପ' ଜଳାଯାଇଥାଏ । ଓଡ଼ିଆମାନଙ୍କର ଏହି 'ଆକାଶଦୀପ' ପରିକଳ୍ପନା ହିଁ ପରବର୍ତ୍ତୀ ସମୟରେ ସମୁଦ୍ରରେ ଯାତ୍ରା କରୁଥିବା ନାବିକମାନଙ୍କ ପାଇଁ ସ୍ଥଳଭାଗର ଅନୁସନ୍ଧାନ ପାଇଁ **'ବତୀଘର'** *(light house)*କୁ ଜନ୍ମ ଦେଇଛି ।

କାର୍ତ୍ତୀକ ମାସରେ ଗାଁର କୁମାରୀମାନେ ବୃନ୍ଦାବତୀଙ୍କ ନିକଟରେ ମୁରୁଜ ପକାଇଥା'ନ୍ତି । କାର୍ତ୍ତୀକ ଅମାବାସ୍ୟା ରାତିରେ ଗାଁର କୁମାରୀମାନେ ମୁରୁଜରେ ଏକ ବୋଇତର ଚିତ୍ର ଅଙ୍କନ କରିଥା'ନ୍ତି । ପରଦିନ ସକାଳୁ ଏହାକୁ ଏହି ଚିତ୍ର ବୋଇତକୁ ବନ୍ଦାପନା କରାଯାଇଥାଏ । ଏପରି କରିବାର ଅର୍ଥ, ଅତୀତରେ ସାଧବମାନେ ନଦୀ ପଥରେ ଯାଇ ଦେଶର ବିଭିନ୍ନ ଅଞ୍ଚଳରୁ ବିଦେଶକୁ ନେବାଭଳି ଜିନିଷ ସଂଗ୍ରହ କରୁଥିଲେ ଏବଂ ଅମାବାସ୍ୟା ଦିନ ଫେରି ଆସୁଥିଲେ । ଗାଁ କୂଳରେ ବୋଇତ

ଲାଗିଲେ ସ୍ତ୍ରୀଲୋକମାନେ ଯାଇ ବନ୍ଦାପନା କରୁଥିଲେ ।

**କାଞ୍ଜି ଅଁଳା ଓଷା:** ପ୍ରାଚୀନ ଉତ୍କଳୀୟଙ୍କ ନୌବାଣିଜ୍ୟ ପରଂପରାକୁ ଉଜ୍ଜୀବିତ କରି ରଖିବା ପାଇଁ ଉତ୍କଳର ଗାଁମାନଙ୍କରେ ଆଜି ବି 'କାଞ୍ଜି ଅଁଳା' ନାମରେ ଏକ ପୂଜା ପାଳନ କରାଯାଇଥାଏ । ଏହି ପର୍ବରେ ଷଠୀ ଦେବୀ *(Goddess of Fertility)*ଙ୍କୁ ଆରାଧନା କରାଯାଇଥାଏ । ଏହି ପୂଜାର ବିଧି ହେଉଛି- ପ୍ରାୟ ତିନି ଫୁଟ ଲମ୍ବ ଓ ଓସାର ଥାଇ ଏକ ବର୍ଗାକାର ସ୍ଥାନର ଚାରିପଟେ ଛଅ ଇଞ୍ଚ ଓସାରର ଏକ ନାଳ ଖୋଳାଯାଇଥାଏ । ସେଥିରେ ପାଣି ଭର୍ତ୍ତି କରି ଏକ ଜୀବନ୍ତ ମାଛ ଛଡ଼ାଯାଏ । ଠିକ୍ ମଧ୍ୟ ଭାଗରେ ଗୋଟିଏ ପାଚିଥିବା ଧାନଗଛକୁ ଧାନ ଜମିରୁ ଉପାଡ଼ି ଆଣି ରଖାଯାଏ । ତା' ନିକଟରେ ଗୋଟିଏ କାଠ ପିଢାରେ ୫ଟି ପିତା ଶୁଖୁଆକୁ ଠିକ୍ ମଣିଷ ପରି ହଳଦିଆ କନା ପିନ୍ଧାଇ, ମୁଣ୍ଡରେ ସିନ୍ଦୁର ଲଗାଇ ସଜାଇ ରଖାଯାଏ । ନାନା ପ୍ରକାର ଫୁଲ ଓ ସବୁଜ ଗଛ ଡାଳରେ ସେହି ସ୍ଥାନକୁ ସଜାଇ ଦିଆଯାଏ । ଚାରିପାର୍ଶ୍ୱରେ ରଙ୍ଗୀନ ମୁରୁଜରେ ଗାର ଟଣା ଯାଇଥାଏ । ସବୁ କାମ ସନ୍ଧ୍ୟା ପୂର୍ବରୁ ହୋଇଥାଏ । ଏହି ପୂଜାରେ ବ୍ରାହ୍ମଣମାନଙ୍କର ଆବଶ୍ୟକ ପଡ଼ି ନଥାଏ । କୌଣସି ହିନ୍ଦୁ ଶାସ୍ତ୍ରରେ ମଲା ମାଛ ବା ଶୁଖୁଆର ପୂଜା ନାହିଁ । ତେଣୁ ଏ ପୂଜା ପରଂପରା ନିଶ୍ଚିତ ଭାବେ କୌଣସି ବାହାର ଅଞ୍ଚଳରୁ ଏଠାକୁ ଆସିଛି ।

'କାଞ୍ଜି ଅଁଳା' ପୂଜାବେଳେ ଯେଉଁ ବର୍ଗାକାର କ୍ଷେତ୍ରର ଚାରିପଟେ ନାଳ ଖୋଳି ପାଣି ଦେଇ ମାଛ ଛଡ଼ାଗଲା ତାହା ଏକ ଦ୍ୱୀପ *(Island)*ର ସୂଚନା ପ୍ରଦାନ କରେ । 'କାଞ୍ଜି ଅଁଳା' କଥାରୁ ମନେହୁଏ, ବୋଧହୁଏ ମୂଳ ଶବ୍ଦ ଦୁଇଟି ଦିନେ 'କାଲିଞ୍ଜି ଅମଳ' ଅର୍ଥାତ୍ 'କଳିଙ୍ଗ ଦ୍ୱୀପରେ ଧାନ ଅମଳ'କୁ ବୁଝାଉଛି । ଦିନେ କଳିଙ୍ଗ ଦେଶର ଲୋକ ଯାଇ ଉର୍ବର ଜାଭା ଦ୍ୱୀପରେ ବସତି ସ୍ଥାପନ କରି ତାହାର ନାମ 'କଳିଙ୍ଗ' ଦେଇଥିଲେ । ସେଠାରେ ସେମାନେ ଧାନ ଚାଷ କରିଥିଲେ । ଜାଭାର ମୂଳ ଅଧିବାସୀଙ୍କ ସହଯୋଗରେ ଧାନ ଅମଳ ଖୁବ୍ ଭଲ ହେଉଥିଲା । ଏହାଛଡ଼ା ବଂଶବୃଦ୍ଧି ପାଇଁ କଳିଙ୍ଗମାନେ ସେଠାକାର ମୂଳ ଅଧିବାସୀଙ୍କୁ ବିବାହ କରିଥିଲେ । ସେଠାକାର ଦଳପତିମାନେ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କୁ କନ୍ୟା ଦେବା ପାଇଁ ଆଗ୍ରହୀ ଥିଲେ । ଏଣୁ ହିନ୍ଦୁ ଓ ବୌଦ୍ଧ ଧର୍ମାବଲମ୍ବୀ କଳିଙ୍ଗବାସୀଙ୍କର ବଂଶ ବଢିବା ସହିତ ସେଠାରେ ଜନସଂଖ୍ୟା ମଧ୍ୟ ବଢିଥିଲା । ଧାନ ଅମଳ ଓ ସନ୍ତାନ ଉତ୍ପାଦନ ସେ କାଳର 'କଳିଙ୍ଗ ଦ୍ୱୀପ' (ଜାଭା)ର ଲୋକଙ୍କର ଲକ୍ଷ୍ୟ ହୋଇଥିବାରୁ ଏହି ପର୍ବକୁ ଷଠି ଦେବୀଙ୍କ ସହ ସଂପୃକ୍ତ କରାଯାଇଛି ।

ଓଡ଼ିଶାରେ ପ୍ରଚଳିତ ଅନେକ ଲୋକଗଳ୍ପରେ ସାଧବଙ୍କ ସହ ମତ୍ସ୍ୟ କନ୍ୟା *(Mermaid)*ର ପ୍ରେମ ଓ ବିବାହ କଥା ଉଲ୍ଲେଖ ରହିଛି । ତେଣୁ କଳିଙ୍ଗ ଦ୍ୱୀପ (ଜାଭା)ର ଏହି କନ୍ୟାମାନଙ୍କୁ ଆମ ଗାଁ ଗହଳିର ଲୋକେ ମତ୍ସ୍ୟକନ୍ୟା ମନେ କରି 'ପିତା ଶୁଖୁଆ'କୁ ହଳଦିଆ ଶାଢି ପିନ୍ଧାଇ ମୁଣ୍ଡରେ ସିନ୍ଦୁର ମାରି ବୋହୂ ବେଶରେ ସଜାନ୍ତି । ମାତ୍ର ଏହା ଯେ ପ୍ରାଚୀନ କଳିଙ୍ଗମାନଙ୍କର ଜାଭା ଦ୍ୱୀପର

ବାସିନ୍ଦାଙ୍କ ସହ ଥିବା ନୌବାଣିଜ୍ୟିକ ସଂପର୍କ ବୋଲି ଅନେକ ଜାଣି ନଥା'ନ୍ତି । ସପ୍ତମ ଶତାବ୍ଦୀରେ ଜାଭା ଦ୍ୱୀପରେ 'କଳିଙ୍ଗ ରାଜ୍ୟ' ସୃଷ୍ଟି ହୋଇଥିଲା । ଏକ ସମୟରେ ସମଗ୍ର ଜାଭା ଦ୍ୱୀପକୁ 'କଳିଙ୍ଗ' କୁହାଯାଇଥିବାର ପ୍ରମାଣ ରହିଛି ।

ଏହି 'କାଞ୍ଜି ଅଁଳା' ଓଷାଟି ସେତେବେଳର ଜାଭା ଦ୍ୱୀପରେ ସୃଷ୍ଟି ହୋଇଥିବା 'କଳିଙ୍ଗ ରାଜ୍ୟ'ରୁ ଆସିଥାଇପାରେ ବୋଲି ଅନୁମାନ କରାଯାଉଛି । ସେ ଯାହା ହେଉନା କାହିଁକି ଏହି ଓଷାଟି ଆମ ପ୍ରାଚୀନ ଓଡ଼ିଆମାନଙ୍କର ବୋଇତ ଯାତ୍ରା ଓ ନୌବାଣିଜ୍ୟ କାରବାର ସଂପର୍କରେ ସୂଚନା ପ୍ରଦାନ କରିଥାଏ ।

ଏହାବ୍ୟତୀତ ଅନେକ ଓଡ଼ିଆ ଲୋକକାହାଣୀରେ ପ୍ରାଚୀନ ଉତ୍କଳୀୟ ସାଧବ ଓ ସାଧବାଣୀମାନଙ୍କ ସଂପର୍କରେ ଉଲ୍ଲେଖ ରହିଛି । ଭାରତୀୟ ପୃଷ୍ଠଭୂମିରେ ଓଡ଼ିଆ ଲୋକକାହାଣୀଗୁଡ଼ିକରେ ଏହା ହିଁ ବିଶେଷତ୍ୱ । ଏଥିରୁ ମନେହୁଏ ସେତେବେଳେ ଦରିଆପାରି ବାଣିଜ୍ୟ କରୁଥିବା ସାଧବମାନଙ୍କୁ ସମାଜର ଏକ ଗୁରୁତ୍ୱପୂର୍ଣ୍ଣ ଗୋଷ୍ଠୀ ଭାବେ ବିଚାର କରାଯାଉଥିଲା ।

ବିଭିନ୍ନ ପୁରାଣରେ ଓଡ୍ର ଦେଶ, ଓଡ୍ର ରାଷ୍ଟ୍ର ବା ଓଡ଼ିଶାକୁ ଭାରତର ଏକ ପ୍ରଧାନ ପୁଣ୍ୟଭୂମି ରୂପେ ବର୍ଣ୍ଣନା କରାଯାଇଛି ।

"ତତ୍ରାସ୍ତେ ଭାରତେ ବର୍ଷେ ଦକ୍ଷିଣୋଦଧି ସଂସ୍ଥିତଃ
ଉଡ୍ର ଦେଶ ଇତି ଖ୍ୟାତଃ ସ୍ୱର୍ଗମୋକ୍ଷ ପ୍ରଦାୟକଃ
ସମୁଦ୍ରାଦୁତ୍ତରେ ତୀରେ ଯାବତ୍ ବିରଜା ମଣ୍ଡଳମ୍ । (ବ୍ରହ୍ମାଣ୍ଡ ପୁରାଣ)

ଅର୍ଥାତ୍ ସେହି ଭାରତବର୍ଷରେ ଉଡ୍ର ନାମକ ଏକ ପ୍ରସିଦ୍ଧ ଦେଶ ଅଛି ଯେଉଁ ଦେଶ ସ୍ୱର୍ଗ ଏବଂ ମୋକ୍ଷପ୍ରାପ୍ତ କରାଇଥାଏ । ଏହାର ସୀମା ସମୁଦ୍ରର ଉତ୍ତରକୂଳରୁ ବିରଜା ମଣ୍ଡଳ ବା ଯାଜପୁର ଯାଏ ବ୍ୟାପ୍ତ ଥିଲା ।

**[ତଥ୍ୟ : ୧. ବିଜୟ ନାୟକ, 'ବହିତ୍ର-୨୦୦୧', ଚାନ୍ଦବାଲି ପୂଜ୍ୟପୂଜା ସଂସଦର ସ୍ମରଣିକା, ପୃଷ୍ଠା: ୧୩, ୧୪)**

**୨. 'ଆକା ମା ବୋଇ', ଆଶୁତୋଷ ପ୍ରସାଦ ପଟ୍ଟନାୟକ, ଫ୍ରେଣ୍ଡ୍ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ(୨୦୧୦), ପୃଷ୍ଠା: ୧୦, ୧୧, ୧୩)]**

## ବୈତରଣୀ ନଦୀରେ ପରିବହନ ବ୍ୟବସ୍ଥା

*(Water transport through river Baitaranee)*

ବୈତରଣୀ ନଦୀର ଉପର ମୁଣ୍ଡ କେନ୍ଦୁଝର ଜିଲ୍ଲାର ବାଂଶପାଳ, ଯୋଡ଼ା, ଚଂପୁଆ, ସ୍ୱାମ୍ପାଟଣା ଆଦି ଅଞ୍ଚଳ ପାର୍ବତ୍ୟାଞ୍ଚଳ ହୋଇଥିବାରୁ ଏଥିରେ ନୌକା ମାଧ୍ୟମରେ ପରିବହନ ସଂଭବପର

ହୋଇ ନଥାଏ । ମାତ୍ର ବୈତରଣୀର ନିମ୍ନ ଅବବାହିକା ଆନନ୍ଦପୁର ଅଞ୍ଚଳଟି ସମତଳ ହୋଇଥିବାରୁ ଏଠାରେ ବୈତରଣୀରେ ନୌଚଳାଚଳ ନିମନ୍ତେ ଅନୁକୂଳ ଥିଲା । ବୈତରଣୀ ଉପକୂଳରେ ଅବସ୍ଥିତ ଆନନ୍ଦପୁର ଓ ଯାଜପୁର ଅଞ୍ଚଳ ପୁରାତନ ଯୁଗରୁ ଧର୍ମ, ଦର୍ଶନ ଓ ବାଣିଜ୍ୟ କାରବାରର ପେଣ୍ଠସ୍ଥଳୀ ଥିଲା । ପ୍ରାଚୀନ କାଳରେ ଉତ୍ତର ଓ ଦକ୍ଷିଣ ଭାରତ ସହିତ ପୂର୍ବ ଭାରତରେ ଅବସ୍ଥିତ ଆନନ୍ଦପୁର ଦେଇ ସ୍ଥଳ ପଥରେ ବାଣିଜ୍ୟ କାରବାର ହେଉଥିଲା । ଭଞ୍ଜ ଶାସିତ କେନ୍ଦୁଝରଗଡ଼ର ପଣ୍ୟଦ୍ରବ୍ୟଗୁଡିକ ଆନନ୍ଦପୁରଠାରୁ ନଦୀପଥ ଦେଇ ଧାମରା ମୁହାଣରେ ପହଞ୍ଚୁଥିଲା ଏବଂ ସେଠାରୁ ବିଦେଶକୁ ରପ୍ତାନୀ ହେଉଥିଲା । ଆନନ୍ଦପୁରଠାରୁ ଧାମରା ପର୍ଯ୍ୟନ୍ତ ବୈତରଣୀ ନଦୀଟି ସମତଳ ଭୂମି ଦେଇ ଗତି କରିଥିବାରୁ ନଦୀ ଶଯ୍ୟା ଅତି ପ୍ରଶସ୍ତ ଓ ଜଳପୂର୍ଣ୍ଣ ଥିଲା ।

ଆନନ୍ଦପୁର ତତ୍କାଳୀନ କେନ୍ଦୁଝରଗଡ଼ ରାଜ୍ୟର ବାଣିଜ୍ୟିକ ପେଣ୍ଠସ୍ଥଳୀ ପାଲଟିଥିଲା । ଏପରିକି ପ୍ରସ୍ତର ଓ ଧାତବ ଯୁଗରୁ ଶାଳନ୍ଦୀ, ବୈତରଣୀ ଅବବାହିକାରେ ଲୌହ, ତମ୍ବା, କ୍ରୋମାଇଟ୍ ପ୍ରଭୃତି ଧାତୁର ବ୍ୟବହାର ଏହି ଅଞ୍ଚଳରେ ହେଉଥିବାର ଜଣାପଡିଛି । ଆନନ୍ଦପୁରର ପୂର୍ବରେ ଶାଳନ୍ଦୀ ନଦୀ ଅବବାହିକାରେ ଅବସ୍ଥିତ ଭାରତର ଅନ୍ୟତମ ଜୈନ କ୍ଷେତ୍ର 'ଚକ୍ରତୀର୍ଥ' ଓ ପ୍ରସିଦ୍ଧ ଶିଳାଭିଲେଖ 'ବୈଦାଖ୍ୟା' (ବୌଦ୍ଧ ଆଖ୍ୟା) ଅବସ୍ଥିତ । ବର୍ତ୍ତମାନ ଏଠାରେ ଶାଳନ୍ଦୀ ନଦୀ ବନ୍ଧ ଯୋଜନା, ବିଦ୍ୟାଧରପୁର ଜଳଭଣ୍ଡାର ଓ ବଉଳା କ୍ରୋମାଇଟ୍ ଖଣି ଅବସ୍ଥିତ ।

ତେବେ ଯାଜପୁର ସହରଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ବୈତରଣୀ ସୁନାବ୍ୟା ଥିବାରୁ ଏ ଅଞ୍ଚଳରେ ନଦୀପଥ ମାଧ୍ୟମରେ ପରିବହନ ସଂଭବ ହେଉଥିଲା । ଯାଜପୁର ଜିଲ୍ଲାର ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟଦ୍ରବ୍ୟ ସଂଗ୍ରହ କରାଯାଇ କୟାଁଗୋଲା ଜେଟିରେ ଜମା କରାଯାଉଥିଲା । ସେଠାରୁ ଚାନ୍ଦବାଲିକୁ ନଦୀପଥ ଯୋଗେ ପରିବହନ କରାଯାଇ ଧାମରାରୁ ବିଦେଶକୁ ରପ୍ତାନୀ କରାଯାଉଥିଲା । ପ୍ରାଚୀନ ନୌବାଣିଜ୍ୟ ପରଂପରାରେ ଚାନ୍ଦବାଲି ବନ୍ଦରର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ମହାନଦୀ ଜଳପଥ ଦେଇ ବିଦେଶରୁ ଫେରୁଥିବା ସାଧବମାନେ ଯେମିତି କଟକ ବାଲିଯାତ୍ରା ପଡ଼ିଆରେ ଉତ୍ସବ ମନାଉଥିଲେ, ଅନୁରୂପ ଧାମରା, ଚାନ୍ଦବାଲି ବାଟେ ବିଦେଶରୁ ଫେରୁଥିବା ବଣିକମାନେ ଯାଜପୁରର ଦଶାଶ୍ୱମେଧ ଘାଟରେ **ବାଲୁଙ୍କାଯାତ୍ରା** ନାମରେ ଏକ ବାଣିଜ୍ୟ ମେଳାର ଆୟୋଜନ କରୁଥିଲେ । ବାଲିଦ୍ୱୀପ ସହ ସଂପର୍କ ଥିବାରୁ ଚାନ୍ଦବାଲି ନାମର ଉତ୍ପତ୍ତି ହୋଇଛି । ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ସର୍ବପୁରାତନ ନଦୀ ବନ୍ଦର । ଚାନ୍ଦବାଲି ଉଦ୍ଦେଶ୍ୟରେ କବି ଶେଖର ଚିନ୍ତାମଣି 'ମହୋଦଧି' କାବ୍ୟରେ ଉଲ୍ଲେଖ କରିଛନ୍ତି-

"ବହିତ୍ର ବଳିତ ରମ୍ୟ ଚାନ୍ଦବାଲି/ବାଣିଜ୍ୟ ଗୌରବ ରଖିଛି ସଂଭାଳି ।"

**(ତଥ୍ୟ : ଶାନ୍ତନୁ କୁମାର ମହାନ୍ତି, 'ବହିତ୍ର'-୩୦, ନଭେମ୍ବର, ୨୦୦୧ ସଂଖ୍ୟା, 'ଚାନ୍ଦବାଲି ପୂଜ୍ୟପୂଜା ସଂସଦ'ର ସ୍ମରଣିକା, ପୃଷ୍ଠା-୪୫)**

ଅତୀତରେ ବୈତରଣୀ ନଦୀର ଜଳପଥରେ ଧାମରାରୁ ଯାଜପୁର ପର୍ଯ୍ୟନ୍ତ ପରିବହନ ସଂଭବ ହୋଇପାରୁଥିଲା । ସେହିଭଳି ସାଳନ୍ଦୀ, ରେବ, କପାଳୀ ନଦୀପଥରେ ଧୁଷୁରୀ ବିଲଣା ପର୍ଯ୍ୟନ୍ତ, ମନ୍ତେଇ ନଦୀରେ ତିହିଡ଼ି ବ୍ଲକ୍‌ର ସୟା ଏବଂ ବ୍ରାହ୍ମଣୀ-ଖରସ୍ରୋତା ନଦୀପଥ ଦେଇ ପଟ୍ଟାମୁଣ୍ଡାଇ ପର୍ଯ୍ୟନ୍ତ ଗମନାଗମନର ଖୁବ୍ ସୁବିଧା ଥିଲା । ବୈତରଣୀ-ବ୍ରାହ୍ମଣୀ-ଖରସ୍ରୋତା-ସାଳନ୍ଦୀ-ମନ୍ତେଇ-ହଂସିଣା-ହଂସୁଆ-ଗୋବରୀ-ମହାନଦୀ ପରସ୍ପର ସହିତ ସଂଯୁକ୍ତ ଥିବାରୁ ସେତେବେଳେ ଜଳପଥରେ ପରିବହନ ଖୁବ୍ ଉତ୍ତମ ଭାବେ ସଂପନ୍ନ ହୋଇପାରୁଥିଲା ।

ଉନ୍ନବିଂଶ ଶତକର ଶେଷ ଓ ବିଂଶ ଶତକର ପ୍ରଥମ ଭାଗ ବେଳକୁ କଟକ-ଚାନ୍ଦବାଲି ମଧ୍ୟରେ କେନ୍ଦ୍ରାପଡ଼ା-ଗୋବରୀ ଓ ଗୋବରୀ ସଂପ୍ରସାରଣ ବୃହତ୍ କେନାଲ୍ ଦେଇ ସପ୍ତାହକୁ ତିନି ଥର ଯାତ୍ରୀବାହୀ ଷ୍ଟିମର୍ ଚଳାଚଳ କରୁଥିଲା । ଷ୍ଟିମର୍‌ଗୁଡ଼ିକ କଟକରୁ ଏହି ଦୁଇ କେନାଲ୍ ଦେଇ ପଟ୍ଟାମୁଣ୍ଡାଇ ବ୍ରାହ୍ମଣୀ ନଦୀରେ ପହଞ୍ଚିଲା ପରେ ନଳିତାପାଟିଆ ଫେରିଘାଟରେ ଅଟକୁଥିଲା ଏବଂ ଏହାପରେ ଚାନ୍ଦବାଲିରେ ପହଞ୍ଚୁଥିଲା । ସେହିଭଳି ଚାନ୍ଦବାଲିରୁ କଲିକତା ଓ ହୁଗୁଳି ବନ୍ଦର ମଧ୍ୟରେ ମଧ୍ୟ ଷ୍ଟିମର୍ ଚଳାଚଳ କରୁଥିଲା । ଇଂରେଜ ସରକାରଙ୍କ ଅମଳରେ କେନ୍ଦ୍ରାପଡ଼ା ସବ୍‌କଲେକ୍ଟରଙ୍କ ଅଧୀନରେ ସେତେବେଳେ ୩୨ଟି ପାଓ୍ୱାର ବୋଟ୍ ଥିଲା । ଏହିସବୁ ବୋଟ୍ ମାଧ୍ୟମରେ ରାଜ୍ୟ ଭିତରେ ବୈତରଣୀ ଓ ବ୍ରାହ୍ମଣୀ ଭଳି ନଦୀ ପଥରେ ପରିବହନ ହୋଇପାରୁଥିଲା । ତତ୍କାଳୀନ ୟୁରୋପୀୟ ଓ ଭାରତୀୟ ଉଚ୍ଚ ସରକାରୀ କର୍ମଚାରୀମାନେ ଆଳି, କନିକା, ରାଜନଗର, ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା, ଚାନ୍ଦବାଲି, ଧାମରା ଆଦି ସ୍ଥାନକୁ ଯିବା ପାଇଁ ଏହି ବୃହତ୍ କେନାଲ୍ ମାଧ୍ୟମରେ ଷ୍ଟିମର୍ ଯୋଗେ ଯାତାୟତ କରୁଥିଲେ ।

**(ତଥ୍ୟ : କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ପ୍ରଥମ ଭାଗ), ପ୍ରତାପ କୁମାର ରାୟ, ଅରଡ଼ପଲ୍ଲୀ, ଜରିଆ, କେନ୍ଦ୍ରାପଡ଼ା, ଦ୍ୱିତୀୟ ସଂସ୍କରଣ (୨୦୦୯), ପୃଷ୍ଠା : ୨୮, ୨୯)**

ବୈତରଣୀର ପ୍ରମୁଖ ତିନୋଟି ବନ୍ଦର **ଚାନ୍ଦବାଲି, ଧାମରା** ଓ **ତାଳଚୁଆ** ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଇତିହାସରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହି ବନ୍ଦରମାନଙ୍କରେ ପଣ୍ୟଦ୍ରବ୍ୟ ପହଞ୍ଚାଇବା ପାଇଁ ବୈତରଣୀ ନଦୀର ବିଭିନ୍ନ ସ୍ଥାନରେ ଆଭ୍ୟନ୍ତରୀଣ ବନ୍ଦରମାନ ଗଢି ଉଠିଥିଲା । ଅତୀତରେ ଗଢି ଉଠିଥିବା ବୈତରଣୀର ପ୍ରମୁଖ ଆଭ୍ୟନ୍ତରୀଣ ବନ୍ଦରମାନଙ୍କ ମଧ୍ୟରେ-

**୧. ଆନନ୍ଦପୁର**

**୨. ଯାଜପୁର (ଦଶାଶ୍ୱମେଧ ଘାଟ)**

**୩. ଜୟଁଗୋଲା**

**୪. ଚାନ୍ଦବାଲି**

**୫. ନଳିତାପାଟିଆ**

୬. **ପଏଣ୍ଟ ପାମେରା** (କନିକା ନିକଟ, ଏ ଅଞ୍ଚଳରେ ଅଧିକ ତାଳଗଛ (ପାମ୍) ଥିବାରୁ ଏହାର ଏଭଳି ନାମକରଣ ହୋଇଛି ) ପ୍ରମୁଖ ବନ୍ଦର ମାଧ୍ୟମରେ ଓଡ଼ିଶାର ଗ୍ରାମାଞ୍ଚଳରୁ ପଣ୍ୟ ସାମଗ୍ରୀ ସଂଗ୍ରହ କରାଯାଇ ଧାମରା ଏବଂ ତାଳଚୁଆ ସାମୁଦ୍ରିକ ବନ୍ଦରରେ ପହଞ୍ଚା ଯାଉଥିଲା । ସେଠାରୁ ଦୂର ବିଦେଶକୁ ପାଲଟଣା ଜାହାଜ ଯୋଗେ ରପ୍ତାନୀ ହେଉଥିଲା । ସେତେବେଳେ ବୈତରଣୀ ନଦୀବାଟେ ଓଡ଼ିଶାରୁ ଲୁଣ, ଚାଉଳ, ଲୁଗା, ଚିନି, ଅଫିମ, ପଥର ମୂର୍ତ୍ତି, ଝୁଣା, ଅଠା, ଶଙ୍ଖ, ସୌଖୀନ ସାମଗ୍ରୀ, ଆକର୍ଷଣୀୟ ପଥର ଆଦି ଓଡ଼ିଶାରୁ ବିଦେଶକୁ ରପ୍ତାନୀ ହେଉଥିଲା । ଦୀର୍ଘ ଚାରିଶହ ବର୍ଷ ଧରି ଯାଜପୁର ପ୍ରାଚୀନ ଓଡ଼ିଶାର ରାଜଧାନୀ ଥିଲା । ଯାଜପୁରର ବୈତରଣୀ ନଦୀ କୂଳସ୍ଥ ଦଶାଶ୍ୱମେଧ ଘାଟରେ ଭୌମକର ଓ ସୋମବଂଶୀମାନେ ରାଜଧାନୀ ପ୍ରତିଷ୍ଠା କରିବା ସହ ବୈତରଣୀ ନଦୀ ମାଧ୍ୟମରେ ନୌବାଣିଜ୍ୟ ଓ ନୌସେନା ଅଭ୍ୟାସ କରୁଥିଲେ । ସେତେବେଳେ ବୈତରଣୀ ନଦୀର ଯାଜପୁର ବନ୍ଦର (ଦଶାଶ୍ୱମେଧ ଘାଟ) ଏବଂ ଏହାର ଉପର ମୁଣ୍ଡରେ ଥିବା ଆନନ୍ଦପୁର ବନ୍ଦର ଓଡ଼ିଶାର ଦୁଇଟି ପ୍ରମୁଖ ଆଭ୍ୟନ୍ତରୀଣ ନଦୀ ବନ୍ଦର ଭାବେ ବେଶ୍ ପରିଚିତ ଥିଲା ।

**(ତଥ୍ୟ : କଳିଙ୍ଗ ଓ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟର ଇତିହାସ, କୃଷ୍ଣଚନ୍ଦ୍ର ବିଶ୍ୱାଳ, ପ୍ରକାଶକ: ଅନୀଲ କୁମାର ବିଶ୍ୱାଳ, ଭୁବନେଶ୍ୱର (୨୦୧୦), ପୃଷ୍ଠା : ୬୮, ୭୦)**

ଧାମରା ନଦୀ ମୁହାଁଣରୁ ଜୁଆରିଆ ପାଣି ବୈତରଣୀ ନଦୀ ମଧ୍ୟକୁ ପ୍ରବେଶ କରିବା ଦ୍ୱାରା ଯାଜପୁର ଓ ଆନନ୍ଦପୁର ପର୍ଯ୍ୟନ୍ତ ବୈତରଣୀର ଗର୍ଭ ଫୁଲି ଉଠିଥାଏ । ଫଳରେ ଯାଜପୁର ଓ ଆନନ୍ଦପୁରରୁ ନୌକାଯୋଗେ ପଣ୍ୟ ସାମଗ୍ରୀ ଧାମରା, ଚାନ୍ଦବାଲିରେ ପହଞ୍ଚି ପାରୁଥିଲା । ସେହିଭଳି ତାଳଚୁଆ ମୁହାଁଣରେ ଜଳସ୍ତର ବୃଦ୍ଧି ପାଇଲେ ବୈତରଣୀ ସମେତ ବ୍ରାହ୍ମଣୀ ଓ ଖରସ୍ରୋତା ନଦୀ ମଧ୍ୟ ଫୁଲି ଉଠେ । ଏହା ଫଳରେ **ପଟ୍ଟାମୁଣ୍ଡାଇ, ଅଳଭା, ପତ୍ରପୁର, ଗଡ଼ଗଡ଼ିଆଘାଟ, ରାଜନଗର, ଜୟନଗର, ନଳିତାପାଟିଆରୁ** ନୌକାଯୋଗେ ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟସାମଗ୍ରୀ ସଂଗ୍ରହ କରି ତାଳଚୁଆ ବନ୍ଦରରେ ପହଞ୍ଚାଯାଉଥିଲା । ଏଠାରୁ ମାଲ୍ ଦୂର ବିଦେଶକୁ ରପ୍ତାନୀ କରାଯାଉଥିଲା ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଚାନ୍ଦବାଲିରୁ ଭାୟା ପଟ୍ଟାମୁଣ୍ଡାଇ ଦେଇ କଟକ ପର୍ଯ୍ୟନ୍ତ ଜଳପଥରେ ପରିବହନ ସମ୍ଭବ ହୋଇପାରୁଥିଲା । ପଟ୍ଟାମୁଣ୍ଡାଇ (ପାଟମୁଣ୍ଡି) ବ୍ରାହ୍ମଣୀ ନଦୀ କୂଳରେ ଥିବା ଏକ ପ୍ରମୁଖ ଆଭ୍ୟନ୍ତରୀଣ ବନ୍ଦର ଥିଲା । ଉନ୍ନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ପ୍ରମୁଖ ବନ୍ଦର ଭାବେ ମୁଣ୍ଡ ଟେକି ସାରିଥିଲା । ଇଷ୍ଟ ଇଣ୍ଡିଆ କଂପାନୀର ପାଇଲଟ୍ ପୁସ୍ତିକାରୁ ଜଣାପଡ଼େ, ବଡ଼ବଡ଼ ଜାହାଜଗୁଡ଼ିକ ଧାମରା ବନ୍ଦର ମଧ୍ୟ ଦେଇ ପ୍ରବେଶ କରି ଚାନ୍ଦବାଲି ପର୍ଯ୍ୟନ୍ତ ଚଳାଚଳ କରୁଥିଲା । ଚାନ୍ଦବାଲି ଥିଲା ଜାହାଜମାନଙ୍କର ଆଶ୍ରୟ ସ୍ଥଳ । ବୈତରଣୀ

ନଦୀର ଜୁଆରିଆ ପାଣି ଆରଡ଼ି ଶୈବପୀଠ ପର୍ଯ୍ୟନ୍ତ ଭିଡ଼ି ରହୁଥିବାରୁ ଆରଡ଼ି ପର୍ଯ୍ୟନ୍ତ ଜାହାଜଗୁଡ଼ିକ ଚଳାଚଳ କରିଥାଏ । ଆରଡ଼ି ନିକଟରେ ବୈତରଣୀ ଓ ଶାଳନ୍ଦୀର ମିଳନ ଘଟିଥିବାରୁ ଏଠାରେ ଏକ ପ୍ରଶସ୍ତ ମୁହାଁଣ ସୃଷ୍ଟି ହୋଇଛି ।

ଜନ୍ ବୀମ୍ସଙ୍କ ମତରେ ବ୍ରିଟିଶ୍ ଓଡ଼ିଶା ଅଧିକାର କରିବା ବେଳକୁ ଚାନ୍ଦବାଲି ଏକ ଚାଉଳ ରପ୍ତାନୀ ବନ୍ଦର ଭାବେ ଜଣାଥିଲା ।ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ଗ୍ରାମାଞ୍ଚଳମାନଙ୍କରୁ ସଂଗୃହୀତ ହେଉଥିବା ଚାଉଳକୁ ବୈତରଣୀ ନଦୀ ପଥ ଦେଇ କଟକ ଜିଲ୍ଲାର ଆଭ୍ୟନ୍ତରୀଣ ଅଞ୍ଚଳମାନଙ୍କୁ ରପ୍ତାନୀ କରାଯାଉଥିଲା । ୧୮୭୦ ମସିହାରେ ହୋଇଥିବା ଏକ ସର୍ଭେରୁ ଧାମରା ବନ୍ଦରଟି ଭାରତର ଅନ୍ୟାନ୍ୟ ବନ୍ଦରଠାରୁ ବେଶ୍ ଗଭୀର ବୋଲି ଜଣାପଡ଼ିଥିଲା । ୧୮୭୧ ମସିହାରେ ଇଂରେଜ ସରକାର ଚାନ୍ଦବାଲିକୁ ବନ୍ଦର ଭାବେ ଘୋଷଣା କରିଥିଲେ । ତତ୍କାଳୀନ କମିଶନର ରେଭେନ୍ସା ସାହେବ ଚାନ୍ଦବାଲିକୁ ଓଡ଼ିଶାର ସର୍ବୋତ୍ତମ ଯାତ୍ରୀ ପରିବହନ ଓ ବାଣିଜ୍ୟଭିତ୍ତିକ ବନ୍ଦର ଭାବେ ବର୍ଣ୍ଣନା କରିଥିଲେ । ୧୮୭୩ ମସିହା ବେଳକୁ କଲିକତା-ବାଲେଶ୍ୱର ଏବଂ କଲିକତା-ଚାନ୍ଦବାଲି ମଧ୍ୟରେ ବାଷ୍ପଚାଳିତ ନୌକାଦ୍ୱାରା ନୌବାଣିଜ୍ୟ ଓ ଯାତ୍ରୀ ପରିବହନ ଆରମ୍ଭ ହୋଇଥିଲା । ଏହା **କେନ୍ଦ୍ରୀୟ ଷ୍ଟିମ୍ ନାଭିଗେସନ୍ କଂପାନୀ** ଦ୍ୱାରା ପରିଚାଳିତ ହେଉଥିଲା ।

ପ୍ରଥମେ ବାଲେଶ୍ୱରରୁ କଲିକତା ମଧ୍ୟରେ ଛୋଟଛୋଟ ବାଷ୍ପଚାଳିତ ନୌକାଗୁଡ଼ିକ ଚାଲିଥିଲା । **'ଯାତ୍ରା'** ଓ **'ବେସିନ୍'** ନାମରେ ଦୁଇଟି ବାଷ୍ପଚାଳିତ ଜାହାଜ ସେତେବେଳେ କଲିକତା ଓ ଚାନ୍ଦବାଲି ମଧ୍ୟରେ ଚଳାଚଳ କରୁଥିଲା । ଏହି ଦୁଇଟି ବାଷ୍ପଚାଳିତ ଜାହାଜ ଚାନ୍ଦବାଲିରୁ ଚାଉଳ, ଲୁଣ, କିରାସିନି ଧରି କଲିକତା ଯାଉଥିଲା । ଚାନ୍ଦବାଲି ବନ୍ଦର ଯୋଗୁଁ ସେତେବେଳେ ଇଂରେଜ ସରକାର ବେଶ୍ ଲାଭବାନ୍ ହେଉଥିଲେ । ଜାହାଜ 'ବେସିନ୍' ୧୮୮୯ ମସିହା ଡିସେମ୍ବର ମାସ ପର୍ଯ୍ୟନ୍ତ ଚାଲିଥିଲା । ତେବେ କଲିକତାରୁ କଟକକୁ ରେଳପଥର ବିକାଶ ଫଳରେ ଜଳପଥର ଗୁରୁତ୍ୱ ହ୍ରାସ ପାଇଲା ଏବଂ ଚାନ୍ଦବାଲି ଓ କଲିକତା ମଧ୍ୟରେ ଜାହାଜ ଚଳାଚଳ ବନ୍ଦ ହୋଇଗଲା ।

**(ତଥ୍ୟ : ପ୍ରାଚୀନ ଉତ୍କଳର ନୌବାଣିଜ୍ୟ, ରବୀନ୍ଦ୍ରନାଥ ସାମଲ, ସୁବର୍ଣ୍ଣଶ୍ରୀ ପ୍ରକାଶନୀ, ବାଲେଶ୍ୱର-୨୦୧୩, ପୃଷ୍ଠା : ୧୦୦, ୧୦୧)**

ଚାନ୍ଦବାଲିକୁ ଲାଗି **'ବାଲିଗାଁ'** ବୋଲି ଏକ ବଡ଼ ଗାଁ ରହିଛି । ଏଠାରେ ବାଲି ରାଜା ଶାସନ କରୁଥିଲେ ବୋଲି ସ୍ଥାନୀୟ ଅଞ୍ଚଳରେ କଥିତ ଅଛି । ତାଙ୍କ ରାଣୀଙ୍କ ନାମ ଚାନ୍ଦଦେବୀ । ସଂଭବତଃ, ବାଲି ରାଜା ଏବଂ ତାଙ୍କ ପତ୍ନୀ ଚାନ୍ଦଦେବୀଙ୍କ ନାମର ସମିଶ୍ରଣରେ 'ଚାନ୍ଦବାଲି' ନାମ ସୃଷ୍ଟି ହୋଇଥାଇପାରେ ବୋଲି କୁହାଯାଇଥାଏ । ବାଲିଗାଁ ନିକଟସ୍ଥ **ମହୁରୀଗାଁ**ରୁ ଏକ ଅତି ପୁରାତନ ବୋଇତର ଭଗ୍ନାବଶେଷ ଉଦ୍ଧାର କରାଯାଇଛି । ଅତୀତରେ ଏ ଅଞ୍ଚଳରେ ବୋଇତ ଯୋଗେ ବାଣିଜ୍ୟ କାରବାର ହେଉଥିଲା ବୋଲି ଏହା ଏକ ଛୋଟିଆ ପ୍ରମାଣ ରଖେ । ମହୁରୀଗାଁ ପ୍ରାଚୀନ

ଓଡ଼ିଶାର ଏକ ପୁରାତନ ବନ୍ଦର ଥିଲା । ଅପରପକ୍ଷେ, 'ତଅପୋଇ' ଏବଂ ତାଙ୍କ ସାଧବ ସାତଭାଇଙ୍କ ଆଧାରଭୂମି ପ୍ରାଚୀନ କନିକା ରାଜ୍ୟର ଗିଘାଗଡ଼ ଓ ସାତଭାୟା ହୋଇଥିବାରୁ ଚାନ୍ଦବାଲି ଓ ଧାମରା ବନ୍ଦରର ପ୍ରାଚୀନତା ସଂପର୍କରେ ଅନୁମାନ କରିହୁଏ ।

ଏ ଅଞ୍ଚଳର ସାଧବମାନେ ଜଳଯାତ୍ରା କରିବା ପୂର୍ବରୁ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍‌ରେ ବ୍ରାହ୍ମଣୀ ନଦୀ କୂଳରେ ଥିବା ମାଟିଆ ମଙ୍ଗଳା ଓ ବୈତରଣୀ କୂଳରେ ଥିବା ଧାମରାଈଙ୍କୁ ପୂଜାର୍ଚ୍ଚନା କରିଥା'ନ୍ତି । ଅତୀତରେ ଧାମରା ଓ ଚାନ୍ଦବାଲି ଓଡ଼ିଶାର ପ୍ରମୁଖ ବନ୍ଦର ଭାବେ କାର୍ଯ୍ୟ କରୁଥିଲେ ମଧ୍ୟ ଇଂରେଜ ଶାସନ କାଳରେ ଊନ୍‌ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଏହି ଦୁଇ ବନ୍ଦରର ଗୁରୁତ୍ୱ ସର୍ବାଧିକ ବୃଦ୍ଧି ପାଇଥିଲା । 'ସାର୍ ଜନ୍ ଲରେନ୍‌ସ' ନାମକ ଏକ ବୃହତ୍ ଯାତ୍ରୀବାହୀ ଜାହାଜ ୧୮୮୭ ମସିହା ମେ ମାସ ୨୫ ତାରିଖରେ କଲିକତାରୁ ଚାନ୍ଦବାଲିକୁ ପ୍ରାୟ ୧୪୦୦ ଯାତ୍ରୀ ଏବଂ ୮୦ ଟନ୍ ପଣ୍ୟଦ୍ରବ୍ୟ ନେଇ ଆସୁଥିବାବେଳେ ଧାମରା ଓ ଚାନ୍ଦବାଲି ନିକଟସ୍ଥ 'ଗିକ୍ ଲାଇଟ୍' ଏବଂ 'ପାମେରା ପଏଣ୍ଟ' *(Palmera point)* ମଧ୍ୟରେ ସାମୁଦ୍ରିକ ଝଡ଼ ଫଳରେ ବୁଡ଼ି ଯାଇଥିଲା । ଏଥିରେ ଆସୁଥିବା ଯାତ୍ରୀମାନେ ପୁରୀ ରଥଯାତ୍ରା ଦେଖିବାକୁ ଓଡ଼ିଶା ଆସୁଥିଲେ । ଏହି ଜାହାଜ ବୁଡ଼ିଯିବା ଫଳରେ ସମସ୍ତ ୧୪୦୦ ଯାତ୍ରୀଙ୍କ ସମେତ ଜାହାଜ କର୍ମଚାରୀମାନେ ବୁଡ଼ି ମରିଯାଇଥିଲେ । ଏହି ଦୁର୍ଘଟଣାକୁ ଆଧୁନିକ ଭାରତବର୍ଷର ସବୁଠୁ ବଡ଼ ଜାହାଜ ଦୁର୍ଘଟଣା ଭାବେ ବର୍ଣ୍ଣନା କରାଯାଇଥାଏ । ଏହି ଜାହାଜ ବୁଡ଼ି ଘଟଣା ପ୍ରମାଣିତ କରେ, ଧାମରା ଓ ଚାନ୍ଦବାଲି ବନ୍ଦର ଦେଇ ବୈତରଣୀ ନଦୀରେ କେତେ ବଡ଼ବଡ଼ ଜାହାଜମାନ ଚଳାଚଳ କରୁଥିଲା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାରେ ରେଳପଥର ବିକାଶ ଘଟିବା ଫଳରେ ଚାନ୍ଦବାଲି ଓ ଧାମରା ବନ୍ଦରର ଗୁରୁତ୍ୱ ହ୍ରାସ ପାଇଥିଲା । ୧୯୦୬ ମସିହା ବେଳକୁ ଧାମରା ବନ୍ଦର ବନ୍ଦ ହୋଇଯାଇଥିଲା । ଯଥାକଥା ଚାନ୍ଦବାଲି ବନ୍ଦରଟି କାର୍ଯ୍ୟକ୍ଷମ ଥିଲା । ୧୮୮୯ ମସିହାରୁ କିଛି ବର୍ଷ ପାଇଁ ଚାନ୍ଦବାଲି ବନ୍ଦର କାର୍ଯ୍ୟ ଅକ୍ଷମ ହୋଇଯାଇଥିଲା । ମାତ୍ର ପରବର୍ତ୍ତୀ ସମୟରେ ପୁନର୍ବାର କାର୍ଯ୍ୟକ୍ଷମ ହୋଇ ଏପରିକି ୧୯୬୨ ମସିହା ପର୍ଯ୍ୟନ୍ତ ଜାହାଜ ଚଳାଚଳ କରୁଥିଲା । ୧୯୬୧-୬୨ ମସିହାରେ ଚାନ୍ଦବାଲି ବନ୍ଦରକୁ **'ନୀଳାମ୍ବୁ', 'ସାବିତ୍ରୀ', 'ସଫିନ୍', 'କଲ୍ୟାଣୀ'** ନାମରେ କିଛି ଜାହାଜ ଆସିଥିଲା ବୋଲି ଚାନ୍ଦବାଲି ବନ୍ଦର କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ । ମାତ୍ର ଜାହାଜ ମାଲିକମାନେ ମାତ୍ରାଧିକ କ୍ଷତି ସହିବାରୁ ୧୯୬୨ ମସିହା ପରଠାରୁ ଚାନ୍ଦବାଲିକୁ ଜାହାଜ ଚଳାଚଳ ସଂପୂର୍ଣ୍ଣ ବନ୍ଦ ହୋଇଗଲା । ୧୯୯୭ ମସିହା ପରଠାରୁ ରାଜ୍ୟ ସରକାର ଧାମରା ବନ୍ଦରକୁ ପୁନର୍କ୍ଷମ କରିବାକୁ ଉଦ୍ୟମ କରିଛନ୍ତି । ପରାଦୀପ ପରେ ଏବେ ଧାମରା ବନ୍ଦର ରାଜ୍ୟର ଏକ ପ୍ରମୁଖ ଆଧୁନିକ ବୃହତ୍ ବନ୍ଦର ଭାବେ ମୁଣ୍ଡ ଟେକୁଛି ।

**(ତଥ୍ୟ : ଆଦିକନ୍ଦ ଦାଶ, 'ବହିତ୍ର'-୨୦୦୧, ଚାନ୍ଦବାଲି ପୂଜ୍ୟପୂଜା ସଂସଦର ସ୍ମରଣିକା, ପୃଷ୍ଠା: ୬୭, ୬୮, ୬୯)**

କେତେକ ଐତିହାସିକ ଯାଜପୁରକୁ ଏକ ପ୍ରାଚୀନ ବନ୍ଦର ଦର୍ଶାଇଛନ୍ତି । ଏଠାରେ ବୈତରଣୀ ନଦୀ ବନ୍ଦର ଦେଇ ବାଣିଜ୍ୟ କାରବାର ହେଉଥିଲା । ହୁଏନ୍‌ସାଂଙ୍କ ବର୍ଣ୍ଣନାରୁ ଜଣାଯାଏ, ଚେଳିତୋଳ ବନ୍ଦର ଯାଜପୁରର ଦକ୍ଷିଣ ପୂର୍ବରେ ଓ ପୁଷ୍ପଗିରିର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ଥିଲା । ଚେଳିତୋଳ ବନ୍ଦର ନିଶ୍ଚିତ ଭାବେ ବ୍ରାହ୍ମଣୀ ନଦୀ ମୁହାଣରେ ଅବସ୍ଥିତ ଥିଲା । ଏହି ବନ୍ଦରରୁ ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ଖରସ୍ରୋତା, ବିରୂପା, କେଲୁଅ ଓ ମହାନଦୀ ଦେଇ ଉପକୂଳବର୍ତ୍ତୀ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳ ତଥା ପଶ୍ଚିମ ଓଡ଼ିଶା ସହିତ ବାଣିଜ୍ୟିକ ଓ ସାଂସ୍କୃତିକ ସଂପର୍କ ରହିପାରୁଥିଲା । ସେହିଭଳି ଯାଜପୁରଠାରୁ ବୈତରଣୀ ନଦୀ ପଥରେ ଆନନ୍ଦପୁର ପର୍ଯ୍ୟନ୍ତ ଯାତାୟତ ଓ ଆଭ୍ୟନ୍ତରୀଣ ବାଣିଜ୍ୟ କାରବାର ସଂଭବ ହେଉଥିଲା ।

**(ତଥ୍ୟ: ଡ. ଏକାଦଶୀ ପାଢୀ, ଯୁଗେ ଯୁଗେ ଯାଜପୁର, ପ୍ରକାଶକ: ଚିତ୍ରୋତ୍ପଳା ପବ୍ଲିକେଶନ୍‌ସ, ବଟେଶ୍ୱର, ସାଲେପୁର, ୨୦୦୨, ପୃଷ୍ଠା: ୧୬୩, ୧୬୪)**

## ଅନ୍ଧ ବୋଟ୍

*(blind boat)*

ଅତୀତରେ କନିକା, ପଟ୍ଟାମୁଣ୍ଡାଇ ଓ ଚାନ୍ଦବାଲି ଅଞ୍ଚଳରୁ ବହୁ ସଂଖ୍ୟାରେ ଯାତ୍ରୀ ପାଲଟଣା ଜାହାଜରେ ଚାନ୍ଦବାଲି ବନ୍ଦରରୁ ବୈତରଣୀ ନଦୀ ଦେଇ କଲିକତା ଯାତାୟତ କରୁଥିଲେ । ପ୍ରଥମେ ଯାତ୍ରୀମାନେ ଚାନ୍ଦବାଲି ବନ୍ଦରରେ ଜାହାଜରେ ବସିବା ପରେ ଏହା ଧାମରା ବନ୍ଦରରେ ପହଞ୍ଚୁଥିଲା ଏବଂ ଏହାପରେ ଜାହାଜ ବଙ୍ଗୋପସାଗର ଦେଇ ଯାତ୍ରା କରି କଲିକତାର ବାବୁଘାଟ (ଗଙ୍ଗା)ରେ ଓହ୍ଲାଉଥିଲା । ସେତେବେଳେ ଏହି ଯାତ୍ରୀବାହୀ ବଡ଼ବଡ଼ ଜାହାଜମାନଙ୍କ ପଛପଟେ କେତେଗୁଡିଏ ମାଲ୍ ବୋଝେଇ ଡିଙ୍ଗି (ସାନ ଡ଼ଙ୍ଗା) ବନ୍ଧାଯାଉଥିଲା । ଜାହାଜ ପଛପଟେ ବନ୍ଧାଯାଇଥିବା ଏହସବୁ ମାଲ୍ ବୋଝେଇ ଡିଙ୍ଗି ଜାହାଜର ପଥ ଅନୁସରଣ କରି ଯାତ୍ରା କରୁଥିବାରୁ ଏଗୁଡିକୁ ଅନ୍ଧବୋଟ୍ କୁହାଯାଉଥିଲା । କନିକା, ଚାନ୍ଦବାଲି ଅଞ୍ଚଳରେ ଏଭଳି ଅନେକ ଅନ୍ଧବୋଟ୍ ଯୋଗେ ସେତେବେଳେ ମାଲ୍ ପରିବହନ କରାଯାଉଥିଲା ଏବଂ ବହୁ ପରିବାର ଏହା ଦ୍ୱାରା ଉପକୃତ ହୋଇପାରୁଥିଲେ । ବିଶେଷକରି ପଟ୍ଟାମୁଣ୍ଡାଇ ଅଞ୍ଚଳର ବହୁ ଶ୍ରମିକ ଶ୍ରେଣୀର ଲୋକେ ଏହି ଅନ୍ଧ ବୋଟ୍‌ରେ ଚାକିରି କରି ନିଜ ପରିବାର ପୋଷୁଥିଲେ । ସେହିଭଳି କଲିକତାରେ ଚାକିରି ବା ବାଣିଜ୍ୟ କାରବାର କରୁଥିବା କନିକା, ଚାନ୍ଦବାଲି, ପଟ୍ଟାମୁଣ୍ଡାଇ ଅଞ୍ଚଳର ଶହଶହ ବଣିକ କଲିକତାରୁ ବିଭିନ୍ନ ମୂଲ୍ୟବାନ ସାମଗ୍ରୀ ସଂଗ୍ରହ କରି କଲିକତାର ବାବୁଘାଟରୁ ପାଲଟଣା ଜାହାଜ ଯୋଗେ ବଙ୍ଗୋପସାଗର ଦେଇ ଧାମରା



ତିନିତର ଘାଟରେ ପରିବହନ ବ୍ୟବସ୍ଥା

ଓ ଚାନ୍ଦବାଲି ବନ୍ଦରରେ ପହଞ୍ଚୁଥିଲେ । ଚାନ୍ଦବାଲି ବନ୍ଦରରେ ଜାହାଜ ପହଞ୍ଚିଯିବା ପରେ ସେଠାରୁ ବ୍ୟବସାୟୀ କିମ୍ବା ଚାକିରିଆମାନେ ଅକ୍ଷବୋଟ୍ ଯୋଗେ ବିଭିନ୍ନ ଅଞ୍ଚଳକୁ ଯାଉଥିଲେ । କଲିକତାରୁ ସାଧାରଣତଃ ବିଲାତି ଆଳୁ, ଓଲି ପିଆଜ, ବଡ଼ଫାଳ ହରଡ଼ ଡାଲି, ଲଙ୍କା ଓ ଅନ୍ୟାନ୍ୟ ସାମଗ୍ରୀ କନିକା, ଚାନ୍ଦବାଲି ଓ ପଟ୍ଟାମୁଣ୍ଡାଇ ଅଞ୍ଚଳକୁ ଆସୁଥିଲା । ଏହି ବ୍ୟବସାୟକୁ 'ହୁଣ୍ଡି' ଏବଂ ବ୍ୟବସାୟୀଙ୍କୁ 'ହୁଣ୍ଡିଆ' କୁହାଯାଉଥିଲା । ଅତୀତରେ ବୈତରଣୀ ନଦୀର ଚାନ୍ଦବାଲି ବନ୍ଦର ଓଡ଼ିଶାର ଏକ ପ୍ରମୁଖ ନଦୀ ବନ୍ଦରର ମାନ୍ୟତା ଅର୍ଜନ କରିଥିଲା । ଏହି ବନ୍ଦର ଦେଇ କଲିକତା, ରେଙ୍ଗୁନ୍, ସିଂହଳ, ଜାଭା, ସୁମାତ୍ରା, ବାଲି, ଥାଇଲାଣ୍ଡ, କାମ୍ବୋଡିଆ ଆଦି ଦେଶ ସହିତ ଆଭ୍ୟନ୍ତରୀଣ ଓଡ଼ିଶାର ବାଣିଜ୍ୟ କାରବାର ଓ ଯାତ୍ରୀ ଯାତାୟତ ସଂଭବପର ହେଉଥିଲା ।

[ତଥ୍ୟ ସହାୟତା : କେନ୍ଦ୍ରାପଡ଼ା ଜିଲ୍ଲା ଇତିହାସ (ପ୍ରଥମ ଭାଗ), ପ୍ରତାପ କୁମାର ରାୟ, ଅରଡ଼ପଲ୍ଲୀ, ଉରିଆ, କେନ୍ଦ୍ରାପଡ଼ା, ଦ୍ୱିତୀୟ ସଂସ୍କରଣ (୨୦୦୯), ପୃଷ୍ଠା : ୬୪]

## ଦେଶୀ ଡଙ୍ଗା ଏବଂ ବୈତରଣୀ ନଦୀର ଫେରି ଘାଟ

*(Country boats and the river ghats of Baitaranee)*

ଅତୀତରେ ବୈତରଣୀ ନଦୀରେ ଥିବା ବିଭିନ୍ନ ଫେରିଘାଟ ମାଧ୍ୟମରେ ରାଜ୍ୟର ଆଭ୍ୟନ୍ତରୀଣ ଗମନାଗମନ ସଂଭବ ହେଉଥିଲା । ଆଜି ବି ବୈତରଣୀ ନଦୀରେ ଅନେକ ଫେରିଘାଟ ଉପରେ ଲୋକେ ନିର୍ଭରଶୀଳ । ଏହି ଘାଟମାନଙ୍କରେ ଚଳାଚଳ କରୁଥିବା ଦେଶୀ ଡଙ୍ଗା କିମ୍ବା ମୋଟର

ଲଞ୍ଚଗୁଡିକ ସ୍ଥାନୀୟ ଅଞ୍ଚଳର ଅଧିବାସୀଙ୍କୁ ଯାତାୟତରେ ସହାୟକ ହୋଇଥା'ନ୍ତି ।

କେନ୍ଦୁଝରର ଗୋନାସିକାଠାରୁ ଆରଂଭ କରି ଧାମରା ପର୍ଯ୍ୟନ୍ତ ବୈତରଣୀ ନଦୀରେ ଅନେକ ଛୋଟବଡ଼ ନଦୀ ଘାଟ ରହିଛି । ଅନେକ ଡଙ୍ଗାଘାଟରେ ଯାତ୍ରା ବିପଦପୂର୍ଣ୍ଣ ମନେ ହେଉଥିଲେ ମଧ୍ୟ ଲୋକେ ଏହା ଉପରେ ନିର୍ଭର କରିବାକୁ ବାଧ୍ୟ ହୋଇଥା'ନ୍ତି । ଆଭ୍ୟନ୍ତରୀଣ ଗମନାଗମନ ଏବଂ ନୌବାଣିଜ୍ୟ କ୍ଷେତ୍ରରେ ଏହି ଦେଶୀ ଡଙ୍ଗାଗୁଡିକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଅତୀତର ବୈତରଣୀ ନଦୀରେ ଥିବା କିଛି ଐତିହାସିକ ନଦୀଘାଟ ଯଥା- କେନ୍ଦୁଝର ଜିଲ୍ଲାର ଘସିପୁରା (ଆନନ୍ଦପୁର) ଫେରିଘାଟ, ଦୋ-ମୁହାଁଣୀ ଘାଟ, ସ୍ୱାମ୍ପାଟଣା ଘାଟ, ରାଜନଗର ଘାଟ, ଚଂପୁଆ ଫେରିଘାଟ, ଜ୍ୟୋତିପୁର ଘାଟ ଏବଂ ଯାଜପୁର ଜିଲ୍ଲାର ଦଶାଶ୍ୱମେଧ ଘାଟ, ସିଦ୍ଧେଶ୍ୱର ଘାଟ, ଦଶରଥପୁରର କଟିକଟା ଘାଟ, ଦନ୍ତପୁର ନଦୀଘାଟ, କୟାଁଗୋଲା ଘାଟ, ଭଦ୍ରକ ଜିଲ୍ଲା ଷୋଳମପୁରର ବଲ୍ଲବିଘାଟ, କ୍ଷେତ୍ରପୁର ଘାଟ, ଚାନ୍ଦବାଲି ଘାଟ, ତିନିତର ଘାଟ, ଆଖଣ୍ଡଳମଣି ଘାଟ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ମାନପୁର, ଗୁଆଳି, ନଳିତାପାଟିଆ ଘାଟ, ତାଳଚୁଆ ଫେରିଘାଟ ଭଳି ଅନେକ ନଦୀଘାଟ ତତ୍କାଳୀନ ନୌ-ବାଣିଜ୍ୟ ଏବଂ ଆଭ୍ୟନ୍ତରୀଣ ଗମନାଗମନ ବ୍ୟବସ୍ଥାକୁ ନିୟନ୍ତ୍ରଣ କରୁଥିଲା । ବୈତରଣୀ ନଦୀରେ ଥିବା ଏହିସବୁ ଫେରିଘାଟ ମାଧ୍ୟମରେ ଅଭ୍ୟନ୍ତରର ଲୋକମାନେ ରାଜ୍ୟର



**ତିନିତର ଘାଟର ଆରଡ଼ି ପଟୁ ଚାନ୍ଦବାଲି ପଟକୁ ଯାଉଥିବା ଏକ ନୌକା**



## ଚଂପୁଆ ଘାଟ

ବିଭିନ୍ନ ସ୍ଥାନକୁ ଯାତାୟତ କରିବା ସାଙ୍ଗକୁ ମାଲ୍ ପରିବହନ ମଧ୍ୟ ହେଉଥିଲା । ମାତ୍ର ଏବେ ଅନେକ ସ୍ଥାନରେ ପୋଲ ନିର୍ମାଣ ହୋଇଯିବା ଫଳରେ ଏସବୁ ଫେରିଘାଟ ନିଜନିଜର ଗୁରୁତ୍ୱ ହରାଇବସିଛନ୍ତି ।

ଗତ ୨୦୧୪ ମସିହାରେ ସମ୍ବଲପୁରର ହୀରାକୁଦ ଜଳଭଣ୍ଡାରରେ ନୌକା ବୁଡ଼ି ପଚାଶରୁ ଊର୍ଦ୍ଧ୍ୱ ଲୋକଙ୍କର ମୃତ୍ୟୁ ହୋଇଯିବା ଘଟଣା ପରେ ସମଗ୍ର ରାଜ୍ୟର ଅନ୍ୟାନ୍ୟ ନଦୀମାନଙ୍କରେ ଚଳାଚଳ କରୁଥିବା ଦେଶୀ ଡଙ୍ଗା ଓ ନୌଯାତ୍ରା ଉପରେ କଡ଼ା କଟକଣା ଜାରି କରାଯାଇଥିଲା । ଏହାର ବହୁ ପୂର୍ବରୁ ଗତ ୨୦୦୨ ମସିହା ଅଗଷ୍ଟ ୩୧ ତାରିଖରେ ବୈତରଣୀ ନଦୀର ବଲ୍ଲଭି ଘାଟରେ ଡଙ୍ଗା ବୁଡ଼ି ୨୬ ଜଣ ଯାତ୍ରୀଙ୍କର ପ୍ରାଣ ଚାଲିଯାଇଥିଲା । ତେବେ ଏହି ଘାଟଟିରେ ପୋଲ ନିର୍ମାଣ ହୋଇଯିବା ପରେ ଯାଜପୁର ଓ ଭଦ୍ରକ ଜିଲ୍ଲା ମଧ୍ୟରେ ଯୋଗାଯୋଗ ଅତି ସହଜ ହୋଇଯାଇଛି । ତଥାପି ଆଜିର ଦିନରେ ବୈତରଣୀ ନଦୀରେ ଅନେକ ଡଙ୍ଗା ଘାଟ ରହିଛି । ଏସବୁ ଘାଟରେ ମୁଖ୍ୟତଃ ଦେଶୀ ଡଙ୍ଗା ଚଳାଚଳ କରିଥାଏ । କିଛି ଦେଶୀ ଡଙ୍ଗାରେ ମେସିନ୍ ଲଗାଯାଇଥିବାବେଳେ କିଛି ଡଙ୍ଗାକୁ ମଣିଷମାନେ (ନାଉରିଆ) ବାହିଥା'ନ୍ତି ।

ଭଦ୍ରକ ଓ ଯାଜପୁର ଜିଲ୍ଲାରେ ବୈତରଣୀ ନଦୀରେ ସର୍ବାଧିକ ଡ଼ଙ୍ଗା ଘାଟ ରହିଛି । ଭଦ୍ରକ

ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର, ଚାନ୍ଦବାଲି, ବାସୁଦେବପୁର ଓ ତିହିଡ଼ି ବ୍ଲକ୍‌ରେ ଥିବା ଆରଡି ଘାଟ, ତିନିତର ଘାଟ (ବୈତରଣୀ-ଶାଳନ୍ଦୀ), ଚାରିବାଟିଆ (ମନ୍ତେଇ), ଚୌଧୁରୀ ଘାଟ (ମନ୍ତେଇ), ବାଁଶଡ଼ା (ମନ୍ତେଇ) ବାଲିଆପାଳ ଘାଟ (ମନ୍ତେଇ), ପଞ୍ଚୁଟିକିରି ଘାଟ (ମନ୍ତେଇ), ରେବ ଘାଟ, ଈଶ୍ୱରପୁର ଘାଟ (ଗେଙ୍ଗୁଟି), ଚନ୍ଦନିପାଳ-ତାଳଚୁଆ ଘାଟ (ବୈତରଣୀ)ରେ ଆଜିର ଦିନରେ ଦୈନିକ ହଜାର ହଜାର ସଂଖ୍ୟାରେ ଯାତ୍ରୀ ଓ ଯାନବାହନ ପରିବହନ ହୋଇଥାଏ ।

ସେହିଭଳି ଯାଜପୁର ଜିଲ୍ଲାର ବୈତରଣୀ ନଦୀରେ ଥିବା ଦଶରଥପୁରର କଟିକଟା ଘାଟ, ସିଦ୍ଧେଶ୍ୱରନାଥ ଘାଟ, ଦତ୍ତପୁର ଘାଟ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ନଳିତାପାଟିଆ, ମାନପୁର ଭଳି ଅନେକ ନଦୀ ଘାଟରେ ଆଜି ବି ଦେଶୀ ଡଙ୍ଗା ଚଳାଚଳ କରୁଛି । ଏସବୁ ନଦୀ ଘାଟରେ ବିଶେଷକରି ଦେଶୀ ଡଙ୍ଗା ଚଳାଚଳ କରିଥାଏ ।

ଏସବୁ ଘାଟମାନଙ୍କରେ ଦେଶୀ ଡଙ୍ଗାର କ୍ଷମତା ତୁଳନାରେ ବହୁ ସଂଖ୍ୟାରେ ଯାତ୍ରୀମାନଙ୍କୁ ପରିବହନ କରାଯାଇଥାଏ । ଏହା ଫଳରେ ଏଠାକାର ଲୋକେ ଓ ଯାତ୍ରୀ ଏକ ବିପଦପୂର୍ଣ୍ଣ ଯାତ୍ରା କରିବାକୁ ବାଧ୍ୟ ହୋଇଥାନ୍ତି । ଏଠାକାର ପ୍ରଶାସନ ଏସବୁ ଦେଶୀ ଡଙ୍ଗାଗୁଡ଼ିକର ସ୍ଥିତି ସଂପର୍କରେ ଅନୁଧ୍ୟାନ କରି ନଥା'ନ୍ତି । ଏହି ପୁରୁଣା ଏବଂ ବିପଦପୂର୍ଣ୍ଣ ଡଙ୍ଗାରେ ଶତାଧିକ ଯାତ୍ରୀ ଓ ଯାନବାହନ



**ଆନନ୍ଦପୁର-ଘସିପୁରା ବୈତରଣୀ ଘାଟ**



**ଆରଡ଼ି-ମାନପୁର ଘାଟ**

ପରିବହନ କରାଯାଇଥାଏ । ଅଧିକାଂଶ ଡଙ୍ଗାଘାଟମାନଙ୍କରେ ତହସିଲ ପ୍ରଶାସନ ବଦଳରେ ଗ୍ରାମ ପଞ୍ଚାୟତ କର୍ତ୍ତୃପକ୍ଷ ନିଲାମ୍ ଡାକୁଛନ୍ତି । ଡଙ୍ଗାଗୁଡ଼ିକର ସ୍ଥିତି ଅନୁଧ୍ୟାନ କରିବା ପାଇଁ ସେମାନଙ୍କର କୌଣସି ଯାନ୍ତ୍ରିକ କୌଶଳ ନଥିବାରୁ ସମସ୍ୟା ଉପୁଜିଥାଏ । ଯାତ୍ରୀଙ୍କଠାରୁ ଆଦାୟ କରାଯାଉଥିବା ଅର୍ଥରେ ଯାତ୍ରୀଙ୍କ ସୁରକ୍ଷା ଦିଗରେ କୌଣସି ପଦକ୍ଷେପ ଗ୍ରହଣ କରାଯାଇ ନଥାଏ । ନିଲାମଧାରୀମାନେ ଅଧିକ ଅର୍ଥ ଲାଳସାରେ ଡଙ୍ଗାର କ୍ଷମତା ତୁଳନାରେ ବହୁ ଅଧିକ ଯାତ୍ରୀ ଓ ଯାନବାହନ ଲଦିଥା'ନ୍ତି । ଏହା ଫଳରେ ଅଧିକ ସମୟରେ ଡଙ୍ଗା ଦୁର୍ଘଟଣାର ସମ୍ମୁଖୀନ ହୋଇଥାଏ । ଅପରପକ୍ଷେ, ଭିତରକନିକା ଅଭୟାରଣ୍ୟକୁ ଚାନ୍ଦବାଲିର ବୈତରଣୀ ନଦୀ କୂଳରୁ ଦୈନିକ ଶତାଧିକ ମୋଟର ଲଞ୍ଚ ଓ ସ୍ପିଡ୍ ବୋଟ୍ ଚଳାଚଳ କରିଥାଏ । ଚାନ୍ଦବାଲିସ୍ଥିତ 'ପୋର୍ଟ ଆଣ୍ଡ ଇନ୍ ଲ୍ୟାଣ୍ଡ ଓ୍ୱାଟର ଟ୍ରାନ୍ସପୋର୍ଟ ଅଫିସ' *(Port and Inland Water Transport Office)* ଏସବୁ ମୋଟର ଲଞ୍ଚମାନଙ୍କର ଯାଞ୍ଚ କରିବାର ବ୍ୟବସ୍ଥା ରହିଛି । ଧାମରା ମୁହାଁଣରେ ହଜାର ହଜାର ସଂଖ୍ୟାରେ ମାଛଧରା ଟ୍ରଲର, ଗିଲେଟ୍, ଦେଶୀଡଙ୍ଗା ସାହାଯ୍ୟରେ ମତ୍ସ୍ୟଜୀବିମାନେ ମାଛ ମାରିବାକୁ ସମୁଦ୍ର ମଧ୍ୟକୁ ଯାଇଥା'ନ୍ତି । ଧାମରାଠାରେ ପୋତାଶ୍ରୟ କାର୍ଯ୍ୟାଳୟରେ ଏହି ଡଙ୍ଗାଗୁଡିକ ପଞ୍ଜୀକୃତ କରାଯାଇଥାଏ । ଡଙ୍ଗାଚାଳକଙ୍କ ଜୀବନ ସୁରକ୍ଷା ପାଇଁ ଲାଇଫ୍ ଜ୍ୟାକେଟ୍ ବ୍ୟବହାର କରିବାକୁ ନିୟମ ରହିଥିବାବେଳେ ଅଧିକାଂଶ ସମୟରେ ଏହି ନିୟମର ଉଲ୍ଲଂଘନ ହୋଇଥାଏ । ଏହା ସାଙ୍ଗକୁ

ବୈତରଣୀ ନଦୀରେ ଚାନ୍ଦବାଲିଠାରୁ ଧାମରା ଓ କେନ୍ଦ୍ରାପଡ଼ାର ନଳିତାପାଟିଆ, ରଙ୍ଗଣି-ତାଳଚୁଆକୁ ପ୍ରତିଦିନ ମାଲ୍ ପରିବହନ ହୋଇଥାଏ । ଏସବୁ ଡଙ୍ଗାର ଲାଇସେନ୍ସ ଠିକ୍ ଅଛିକି ନାହିଁ ଏବଂ ଏସବୁର ଭାରବହନ କରିବାର କ୍ଷମତା ଅଛିକି ନାହିଁ ଏହାର ତଦାରଖ କରାଯାଉଛି କି ନାହିଁ ତାହା ସନ୍ଦେହ ସୃଷ୍ଟି କରିଥାଏ ।

## କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ଥିବା ଡଙ୍ଗାଘାଟ

କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ବୈତରଣୀ ନଦୀର ଅନେକ ଘାଟରେ ପୋଲ ନିର୍ମାଣ ହୋଇଯିବାରୁ ସେଠାରେ ଆଉ ଡଙ୍ଗାଘାଟ ଦୃଶ୍ୟମାନ ହୁଏନି । ତଥାପି ଆଜିର ଦିନରେ କେନ୍ଦୁଝର ଜିଲ୍ଲାରେ **୩୨**ଟି ଛୋଟବଡ଼ ଡଙ୍ଗାଘାଟ ରହିଛି । ଏହି ନଦୀଘାଟମାନଙ୍କୁ ପଞ୍ଚାୟତ ଓ ଜଳସଂପଦ ବିଭାଗ ଚିହ୍ନଟ କରିଛି । କେନ୍ଦୁଝର ଜିଲ୍ଲାର ୧୩ଟି ବ୍ଲକ୍ ମଧ୍ୟରୁ ୯ଟି ବ୍ଲକ୍‌ରେ ଡଙ୍ଗା ଘାଟ ରହିଛି । ଯୋଡ଼ା, ହରିଚନ୍ଦନପୁର, ବାଂଶପାଳ ଏବଂ ଘଟଗାଁ ବ୍ଲକ୍‌ରେ ଗୋଟିଏ ହେଲେ ନଦୀ ଘାଟ ନଥିବା କଥା ସରକାରୀ ନଥିରେ ଉଲ୍ଲେଖ ରହିଛି । ସରକାରୀ ତଥ୍ୟ ଅନୁଯାୟୀ, କେନ୍ଦୁଝର ଜିଲ୍ଲାର **ହାଟଡ଼ିହି ବ୍ଲକ୍**ରେ ବୈତରଣୀ ନଦୀରେ ସର୍ବାଧିକ **୧୦**ଟି ଡଙ୍ଗା ଘାଟ ରହିଛି, ସେଗୁଡିକ ହେଲା-

-ସମଣା ନଦୀ ଘାଟ (ବୈତରଣୀ)

-ଅଗିରିଆ ନଦୀ ଘାଟ (ବୈତରଣୀ)



**କେନ୍ଦୁଝର ଜିଲ୍ଲାର ଦୋ-ମୁହାଁଣୀଘାଟ**



ଭଦ୍ରକ ଜିଲ୍ଲାର ଚୌଧୁରୀ ଘାଟ

-ଆମ୍ବୋ-ବଞ୍ଜୋ ଡ଼ଙ୍ଗାଘାଟ (ବୈତରଣୀ)

-କରାଗୋଳା ଡଙ୍ଗାଘାଟ (ବୈତରଣୀ)

-ପଞ୍ଚୁଗୋଛିଆ ଡଙ୍ଗାଘାଟ (ବୈତରଣୀ)

-କେ·ବାଲିପାଳ ଅନ୍ତର୍ଗତ ସାନମୁଣ୍ଡି ଡଙ୍ଗାଘାଟ (ବୈତରଣୀ)

-ବାଙ୍କୋର ନାଏକସାହି ଡଙ୍ଗାଘାଟ (ବୈତରଣୀ),

-ହଦଗଡ଼ ଜଳଭଣ୍ଡାର ଡଙ୍ଗାଘାଟ (ସାଳନ୍ଦୀ ଜଳଭଣ୍ଡାର),

-ହାବଳେଶ୍ୱର ନଦୀ ଘାଟ (ବୈତରଣୀ)

-ଜଂଭିରା ନଦୀ ଘାଟ (ବୈତରଣୀ)

ସେହିଭଳି କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ରେ ଅନେକ ନଦୀ ଘାଟ ରହିଛି । ଚଂପୁଆ-ଝାଡ଼ଖଣ୍ଡ-ମୟୁରଭଞ୍ଜକୁ ସଂଯୋଗ କରୁଥିବା ବୈତରଣୀ ନଦୀରେ ଥିବା ଡଙ୍ଗାଘାଟଗୁଡିକ ହେଲା-

**ଦୋ-ମୁହାଁଣୀ ଘାଟ:** 'ଦୋ-ମୁହାଁଣୀ ଘାଟ' (ବୈତରଣୀ-ଖଇରି-ଭଣ୍ଡନ ନଦୀର ମିଳନ ସ୍ଥଳ) ମାଧ୍ୟମରେ କେନ୍ଦୁଝର ଜିଲ୍ଲାର ପଦ୍ମପୁର (ଚଂପୁଆ) ଏବଂ ମୟୁରଭଞ୍ଜ ଜିଲ୍ଲାର ଆଦିପୁର (ଶୁକୁଳି ବ୍ଲକ୍) ମଧ୍ୟରେ ପରିବହନ କରିଥାଏ । ଏହା ବ୍ୟତୀତ ଚଂପୁଆ ବ୍ଲକ୍‌ରେ କୁଟାରିପଶିର କଙ୍କତାପାଟ ଡଙ୍ଗାଘାଟ (ବୈତରଣୀ) ଏବଂ ଜାମୁଦଲକର ଅତଙ୍ଗପାଳ ଡଙ୍ଗାଘାଟ (ବୈତରଣୀ)

ପ୍ରମୁଖ ନଦୀଘାଟ ଏଠାକାର ଲୋକଙ୍କୁ ପରିବହନ କରିବାରେ ସହାୟକ ହୋଇଥାଏ ।

**ରାମତୀର୍ଥ ଘାଟ:** ବୈତରଣୀ ନଦୀରେ ଥିବା ପ୍ରାଚୀନ ରାମତୀର୍ଥ (ଗୋଧୂଳି-ଦେଓଗାଁ) ଘାଟ । ଏହି ଘାଟଟିର ଗୋଟିଏ ପାର୍ଶ୍ୱରେ ଓଡ଼ିଶାର ଚଂପୁଆ ବ୍ଲକ୍‌ର ଗୋଧୁଳି ଏବଂ ଅନ୍ୟ ପାର୍ଶ୍ୱରେ ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲାର ଦେଓଗାଁ ଅବସ୍ଥିତ । ପ୍ରତିବର୍ଷ ମକର ମେଳା ସମୟରେ ଚଂପୁଆ ଅଞ୍ଚଳର ଭକ୍ତମାନେ ଏହି ଡଙ୍ଗା ଘାଟ ପାର ହୋଇ ଝାଡ଼ଖଣ୍ଡର ରାମତୀର୍ଥକୁ ଯାଇଥା'ନ୍ତି । ଏହା ଏକ ଆନ୍ତଃରାଜ୍ୟସ୍ତରୀୟ ଡଙ୍ଗାଘାଟ ଅଟେ ।

**ଫଗୁ ଘାଟ:** କେନ୍ଦୁଝର ଜିଲ୍ଲାର ଚଂପୁଆ ଏବଂ ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍ ମଧ୍ୟରେ ଯୋଗାଯୋଗ ସ୍ଥାପନ କରୁଥିବା ବୈତରଣୀର ଅନ୍ୟ ଏକ ଘାଟ ହେଉଛି ଫଗୁ ଘାଟ । ଏବେ ଏଠାରେ ପୋଲ ନିର୍ମାଣ ହୋଇଯିବାରୁ ଏହି ନଦୀଘାଟଟି ତାର ପ୍ରାସଙ୍ଗିକତା ହରାଇବସିଛି ।

**ଚଂପୁଆ-ଜୟନ୍ତୀ ଘାଟ:** ବୈତରଣୀ ନଦୀର ଅନ୍ୟ ଏକ ପ୍ରାଚୀନ ଘାଟ ହେଉଛି ଓଡ଼ିଶା-ଝାଡ଼ଖଣ୍ଡ (ତତ୍‌କାଳୀନ ବିହାର ରାଜ୍ୟ)କୁ ସଂଯୋଗ କରୁଥିବା 'ଚଂପୁଆ-ଜୟନ୍ତୀ ଘାଟ' । ଯଦିଓ ଏଠାରେ ଇଂରେଜ ଶାସନ କାଳରୁ ଏକ ଆକର୍ଷଣୀୟ ପୋଲ ନିର୍ମାଣ ହୋଇସାରିଥିଲା ତଥାପି ଉନ୍ନବିଂଶ ଶତାବ୍ଦୀ ପୂର୍ବରୁ ଏଠାରେ ଏକ ପ୍ରାଚୀନ ନଦୀ ଘାଟ ଥିଲା । ଏହି ନଦୀ ଘାଟ ମାଧ୍ୟମରେ



ଗୁଆଳି (କେନ୍ଦ୍ରାପଡ଼ା ଜିଲ୍ଲା) ଘାଟ

ଓଡ଼ିଶା ଓ ତତ୍କାଳୀନ ବିହାର ରାଜ୍ୟ ମଧ୍ୟରେ ଯୋଗାଯୋଗ ସଂଭବ ହେଉଥିଲା । ଇଂରେଜ ଅମଳର ସେହି ପୁରୁଣା ପୋଲଟି ବ୍ୟବହାର ଅନୁପଯୁକ୍ତ ହୋଇପଡିବାରୁ ଏବେ ଏକ ନୂତନ ପୋଲ ନିର୍ମିତ ହୋଇଛି ।

**ଟୁଣୁଟୁଣା-ଶଗଡ଼ା ଘାଟ:** ଏହି ନଦୀଘାଟଟି କେନ୍ଦୁଝର ଜିଲ୍ଲା ଚଂପୁଆ ବ୍ଲକ୍‌ର ଟୁଣୁଟୁଣା ଏବଂ ମୟୁରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଶଗଡା ଗ୍ରାମକୁ ସଂଯୋଗ କରିଥାଏ ।

**କେଶରୀକୁଣ୍ଡ ଘାଟ:** ଏହା ପ୍ରସିଦ୍ଧ ପର୍ଯ୍ୟଟନ ସ୍ଥଳ କେଶରୀକୁଣ୍ଡ ନିକଟରେ ରହିଛି । ଏହି ଘାଟର କେନ୍ଦୁଝର ପାର୍ଶ୍ୱରେ ଚଂପୁଆ ବ୍ଲକ୍‌ର ସରେଇ ଗ୍ରାମ ରହିଥିବାବେଳେ ମୟୁରଭଞ୍ଜ ପାର୍ଶ୍ୱରେ ରରୁଆଁ ବ୍ଲକ୍‌ର କେଶରୀ ଗ୍ରାମ ରହିଛି ।

**କାଟୁଳିକନା ଘାଟ:** ଏହି ନଦୀ ଘାଟର ଗୋଟିଏ ପାର୍ଶ୍ୱରେ ମୟୁରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର କେଶରୀ ଗ୍ରାମ ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ର କାଟୁଳିକନା ଗ୍ରାମ ରହିଛି ।

**ବନିକା-ନୂଆଗାଁ ଘାଟ:** ଏହି ଘାଟଟି ବୈତରଣୀ ନଦୀରେ ଅବସ୍ଥିତ । ଏହାର ଏକ ପାର୍ଶ୍ୱରେ କେନ୍ଦୁଝର ଜିଲ୍ଲା ଚଂପୁଆ ବ୍ଲକ୍‌ର ବନିକା ଗ୍ରାମ ରହିଥିବାବେଳେ ଅନ୍ୟ ଏକ ପାର୍ଶ୍ୱରେ ମୟୁରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍‌ର ନୂଆଗାଁ ଗ୍ରାମଟି ରହିଛି ।

**ଟିଆଁଶିପଶି-ଫୁଲକମ୍ପ ଘାଟ:** ଏହି ଘାଟର ଗୋଟିଏ ପାର୍ଶ୍ୱରେ ମୟୁରଭଞ୍ଜ ଜିଲ୍ଲା ରରୁଆଁ ବ୍ଲକ୍‌ର ଫୁଲକମ୍ପ ଗ୍ରାମ ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ଟିଆଁଶିପଶି ଗ୍ରାମ ରହିଛି ।

**ରଙ୍ଗାମାଟିଆ ଘାଟ:** ଏହା ମଧ୍ୟ ବୈତରଣୀ ନଦୀର ଅନ୍ୟତମ ପ୍ରାଚୀନ ଘାଟ । ଏହାର



ଘସିପୁରା (କେନ୍ଦୁଝର ଜିଲ୍ଲା)ର ବାଡୋ ଫେରିଘାଟ



**କେନ୍ଦୁଝର ଜିଲ୍ଲାର ଉଦୟପୁର ଘାଟ**

ଏକ ପାର୍ଶ୍ୱରେ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ରଙ୍ଗାମାଟିଆ ଗ୍ରାମ ରହିଥିବାବେଳେ ଅନ୍ୟ ପାର୍ଶ୍ୱରେ ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍‌ର କେନ୍ଦୁଆ ଗ୍ରାମ ରହିଛି ।

**ମୁକୁନା ଘାଟ:** ଏହି ଘାଟଟିର କେନ୍ଦୁଝର ପାର୍ଶ୍ୱରେ ଚଂପୁଆ ବ୍ଲକ୍‌ର ରେଙ୍ଗାଳଗୋଡା ଗ୍ରାମଟି ଥିବାବେଳେ ମୟୂରଭଞ୍ଜ ପାର୍ଶ୍ୱରେ ରରୁଆଁ ବ୍ଲକ୍‌ର ମୁକୁନା ଗ୍ରାମ ରହିଛି ।

**ଜ୍ୟୋତିପୁର ଘାଟ:** ଏହାର କେନ୍ଦୁଝର ପଟେ ଚଂପୁଆ ବ୍ଲକ୍‌ର ଜ୍ୟୋତିପୁର ଏବଂ ମୟୂରଭଞ୍ଜ ପଟେ ଶୁକ୍ଳି ବ୍ଲକ୍‌ର ଆଦିପୁର ରହିଛି । ଏହା ଏକ ପ୍ରାଚୀନ ନଦୀଘାଟ । ଭଞ୍ଜ ରାଜବଂଶ ସହିତ ଏହି ଘାଟଟି ଓତପ୍ରୋତ ଭାବେ ଜଡ଼ିତ । ଏହି ଘାଟର ଗୋଟିଏ ପାର୍ଶ୍ୱରେ କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ 'ଜ୍ୟୋତିପୁର ଗଡ଼' ରହିଥିବାବେଳେ ଅନ୍ୟ ଏକ ପଟେ ମୟୂରଭଞ୍ଜ ରାଜ୍ୟର ପ୍ରଥମ ରାଜଧାନୀ 'ଆଦିପୁର ଗଡ଼' ରହିଛି ।

**ଗୋବିନ୍ଦପୁର ଘାଟ:** ଏହାର କେନ୍ଦୁଝର ପଟେ ଚଂପୁଆ ବ୍ଲକ୍‌ର ଗୋବିନ୍ଦପୁର ରହିଥିବାବେଳେ ମୟୂରଭଞ୍ଜ ପଟେ ଶୁକ୍ଳି ବ୍ଲକ୍‌ର ଇନ୍ଦୁପୁର ରହିଛି ।

**କଙ୍କଡା ଘାଟ:** ଏହାର କେନ୍ଦୁଝର ପଟେ ଚଂପୁଆ ବ୍ଲକ୍‌ର କଙ୍କଡା ଗ୍ରାମ ରହିଥିବାବେଳେ ମୟୂରଭଞ୍ଜ ପଟେ ଶୁକ୍ଳି ବ୍ଲକ୍ ରହିଛି ।

**ଅଉଙ୍ଗାପାଳ ଘାଟ:** ଏହା ଏକ ପ୍ରାଚୀନ ଆନ୍ତଃରାଜ୍ୟ ନଦୀ ଘାଟ । ଏହାର ଗୋଟିଏ ପାର୍ଶ୍ୱରେ ଓଡ଼ିଶାର କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଚଂପୁଆ ବ୍ଲକ୍‌ର ଅଉଙ୍ଗାପାଳ ଗ୍ରାମ ରହିଥିବାବେଳେ ଅନ୍ୟ ଏକ ପାର୍ଶ୍ୱରେ ଝାଡଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାର ଧରୁଓ୍ୱାଡି ଗ୍ରାମ ରହିଛି ।

ସେହିଭଳି କେନ୍ଦୁଝର ଜିଲ୍ଲା **ସ୍ୱାମ୍ ପାଟଣା** ବ୍ଲକ୍‌ରେ ୪ଟି ଡ଼ଙ୍ଗା ଘାଟ ରହିଛି । ସେଗୁଡିକ ହେଲା-

-ଡୁମୁରିଆ ଟଣ୍ଡୋ-କେନ୍ଦୁଯୋଡ଼ି ଫେରିଘାଟ (ବୈତରଣୀ)

-ଏରେଣ୍ଡେଇ-ମିରିଗିଖୋଜ ଫେରିଘାଟ (ବୈତରଣୀ)

-ରାଜନଗର ଫେରିଘାଟ (ବୈତରଣୀ)

-ମୁରୁସୁଆଁ ଫେରିଘାଟ (ବୈତରଣୀ)

ଅପରପକ୍ଷେ, କେନ୍ଦୁଝର ଜିଲ୍ଲାର **ଝୁଂପୁରା** ବ୍ଲକ୍‌ରେ ୪ଟି ନଦୀ ଘାଟ ରହିଛି । ସେଗୁଡ଼ିକ ହେଲା-

-ଚୌଠିଆ ଅନ୍ତର୍ଗତ ବଉଳା-ମଳଦା ଫେରିଘାଟ (ବୈତରଣୀ)

-ମଳଦାର ପଟୁଆକୁଦର ଫେରିଘାଟ (ବୈତରଣୀ)



ମନ୍ତେଇ ନଦୀର ଚୌଧୁରୀ ଘାଟ

-କୁଟୁଗାଁର ସତୀଘାଟ-ଚଂପାଡିହି ଘାଟ (ବୈତରଣୀ)

-କୁନ୍ତଳାପଡ଼ାର ପାର୍ବତୀପୁର ଫେରିଘାଟ

କେନ୍ଦୁଝର ଜିଲ୍ଲାର **ଆନନ୍ଦପୁର ଉପଖଣ୍ଡ** ଅନ୍ତର୍ଗତ **ଘସିପୁରା** ବ୍ଲକ୍‌ରେ ୪ଟି ଫେରିଘାଟ ରହିଛି । ସେଗୁଡିକ ହେଲା-

-ଘସିପୁରା-ଆନନ୍ଦପୁର ଘାଟ (ବୈତରଣୀ)

-ବାଟୋ ଫେରିଘାଟ (ବୈତରଣୀ)

-ଶାଳଦେଇର ବାଲିବରୁଆଁ ଫେରିଘାଟ (ବୈତରଣୀ)

-ଗୋହିରାର ବୀରଗୋବିନ୍ଦପୁର ଫେରିଘାଟ (ବୈତରଣୀ)

ଅପରପକ୍ଷେ, କେନ୍ଦୁଝର ଜିଲ୍ଲାର **ସାହାରପଡ଼ା** ବ୍ଲକ୍‌ରେ ବୈତରଣୀ ନଦୀରେ ୨ଟି ଫେରିଘାଟ ରହିଛି । ସେଗୁଡିକ ହେଲା-

-ଉଦୟପୁର-ଅଁଳାଘାଟ (ବୈତରଣୀ)

-ଉଦୟପୁର-ରାଇପୁରତପିଲଦା ଘାଟ (ବୈତରଣୀ)

**ଆନନ୍ଦପୁର ବ୍ଲକ୍‌ରେ** ଗୋଟିଏ ଫେରିଘାଟ ରହିଛି । ତାହା ହେଉଛି-

-କୋଡ଼ପଡ଼ା ଘାଟ (ବୈତରଣୀ)

କେନ୍ଦୁଝର ସଦର ବ୍ଲକ୍‌ରେ ଥିବା ରଘୁନାଥପୁର ବାଲିଯୋଡ଼ି ଜଳଭଣ୍ଡାରରେ ମଧ୍ୟ ଡଙ୍ଗା ଚଳାଚଳ କରିଥାଏ (ଯଦିଓ ଏହା ବୈତରଣୀ ଘାଟ ନୁହେଁ) ।

ସେହିଭଳି ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାକୁ ସଂଯୋଗ କରୁଥିବା ବୈତରଣୀ ନଦୀରେ ଅନେକ ଛୋଟବଡ଼ ଡଙ୍ଗା ଘାଟ ରହିଛି । ସେଗୁଡିକ ମଧ୍ୟରେ ଅତି ପ୍ରାଚୀନ ଘାଟ ହେଉଛି ଯାଜପୁର ସହରରେ ଅବସ୍ଥିତ ଦଶାଶ୍ୱମେଧ ଘାଟ, ବଲ୍ଲଭି ଘାଟ ଓ ବରାହନାଥ ଘାଟ । ଯାଜପୁର ଟାଉନ୍‌ରେ ଅବସ୍ଥିତ ବଲ୍ଲଭି ଘାଟଟି ଏକ ପୁରାତନ ନଦୀଘାଟ ଏବଂ ଏହା ଯାଜପୁର ସହର ସହିତ ଭଣ୍ଡାରୀପୋଖରୀ ଦେଇ ଭଦ୍ରକ ଜିଲ୍ଲାକୁ ସଂଯୋଗ କରିଥାଏ । ବୈତରଣୀରେ ବନ୍ୟା ପ୍ଳାବିତ ସମୟରେ ହଜାର ହଜାର ସଂଖ୍ୟାରେ ଦେଖଣାହାରି ବଲ୍ଲଭି ଘାଟକୁ ଆସି ବୈତରଣୀର ଭୟଙ୍କର ବନ୍ୟାର ଦୃଶ୍ୟକୁ ଉପଭୋଗ କରିଥା'ନ୍ତି ।

## ଯାଜପୁର ଜିଲ୍ଲାରେ ବୈତରଣୀ ନଦୀ ଘାଟ

ଯାଜପୁର ଜିଲ୍ଲାରେ ପ୍ରବାହିତ ବୈତରଣୀ ନଦୀ ଉପରେ ଅନେକ ଡଙ୍ଗାଘାଟ ରହିଛି । ସେଗୁଡ଼ିକ ମଧ୍ୟରେ-

-ଦଶାଶ୍ୱମେଧ ଘାଟ (ବୈତରଣୀ)

-ବଲ୍ଲଭିଘାଟ (ବୈତରଣୀ)

-ଦଶରଥପୁରର କଟିକଟା ଘାଟ (ବୈତରଣୀ)

-ପାଳସାହି ଘାଟ (ବୈତରଣୀ)

-ଦେବୀଗଡ଼ା (ଯାଜପୁର)-ମଣିନାଥପୁର (ଭଦ୍ରକ) ଘାଟ (ବୈତରଣୀ)

-ସିଦ୍ଧେଶ୍ୱର ଘାଟ (ବୈତରଣୀ)

-ଦତ୍ତପୁର ଘାଟ (ବୈତରଣୀ)

-କୟାଁଗୋଲା ଘାଟ (ବୈତରଣୀ)

## ଭଦ୍ରକ ଜିଲ୍ଲାରେ ଥିବା ବୈତରଣୀ ନଦୀ ଘାଟ

ଭଦ୍ରକ ଜିଲ୍ଲାରେ ପ୍ରବାହିତ ବୈତରଣୀ ଓ ଏହାର ଶାଖା ଏବଂ ଉପନଦୀମାନଙ୍କରେ ଅନେକ ନଦୀ ଘାଟ ରହିଛି । ସେଗୁଡ଼ିକ ହେଲା-

-ଚୌଧୁରୀ ଘାଟ (ମନ୍ତେଇ)

ଏହି ଘାଟଟି ଚାନ୍ଦବାଲି, ତିହିଡ଼ି ଓ ବାସୁଦେବପୁର ବ୍ଲକ ମଧ୍ୟରେ ଯୋଗାଯୋଗରେ ସହାୟକ ହୋଇଥାଏ । ଏହି ଘାଟ ପାର ହୋଇ ଚାନ୍ଦବାଲିରୁ ଧାମରା ଯିବାକୁ ହୋଇଥାଏ ।



ମନ୍ତେଇ ନଦୀର ଚୌଧୁରୀ ଘାଟ



**ଯାଜପୁର ଜିଲ୍ଲା ଦଶରଥପୁରର କଟିକଟା ଘାଟ**

-ବାଂଶଡ଼ା ଘାଟ (ମନ୍ତେଇ)

-ବାଲିଆପାଳ ଫେରିଘାଟ (ମନ୍ତେଇ)

-ଖାଣ୍ଟଖୁଆଡ଼ (ମନ୍ତେଇ)

-ଚାରିବାଟିଆ ଫେରିଘାଟ (ମନ୍ତେଇ)

-ଭଣ୍ଡାରୀପୋଖରୀ ବ୍ଲକ୍‌ର ଜଗନ୍ନାଥପ୍ରସାଦ ଫେରିଘାଟ (ବୈତରଣୀ)

-ଷୋଳମପୁର ବଲ୍ଲଭି ଘାଟ (ବୈତରଣୀ)

-ଧାମନଗର ବ୍ଲକ୍‌ର ଉତ୍ତେଇପୁର ଫେରିଘାଟ (ବୈତରଣୀ)

-ଷେଣ୍ଡପୁର ଫେରିଘାଟ (ବୈତରଣୀ)

-ଭଣ୍ଡାରୀପୋଖରୀ ବ୍ଲକ୍‌ର ପଣସମାହାରି ଘାଟ (ବୈତରଣୀ)

-ମିଶ୍ରପୁର ଫେରିଘାଟ (ବୈତରଣୀ)

-ପିତେଇପୁର ଫେରିଘାଟ (ବୈତରଣୀ)

-ପାଳସାହି ଫେରିଘାଟ (ବୈତରଣୀ)

-ବେତାଳିଗାଁ ଫେରିଘାଟ (ବୈତରଣୀ)

-ତରେଇସାହି ଫେରିଘାଟ (ବୈତରଣୀ)

-ବାଲିପଡ଼ା ଫେରିଘାଟ (ବୈତରଣୀ)

-ହୁସନାବାଦ ଘାଟ (ବୈତରଣୀ)

-ତିନିତର ଘାଟ (ସାଳନ୍ଦୀ-ବୈତରଣୀର ମିଳନ ସ୍ଥଳ)

-ଚାନ୍ଦବାଲି-ଗୁଆଳି ଘାଟ (ବୈତରଣୀ)

-ଧାନକଣିଆ ଫେରିଘାଟ (ବୈତରଣୀ)

-ଆରଡ଼ି-ମାନପୁର ଘାଟ (ବୈତରଣୀ)

## କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ ଘାଟ

କେନ୍ଦ୍ରାପଡ଼ା ଜିଲ୍ଲାରେ ରାଜ୍ୟର ସର୍ବାଧିକ ନଦୀ ପ୍ରବାହିତ ହୋଇଥିଲେ ମଧ୍ୟ ବୈତରଣୀର ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଏହି ଜିଲ୍ଲା ଦେଇ ପ୍ରବାହିତ ବୈତରଣୀ ନଦୀରେ ବିଶେଷକରି ରାଜକନିକା ଓ ରାଜନଗର ବ୍ଲକ୍‌ରେ ଅନେକ ନଦୀ ଘାଟ ରହିଛି । ସେଗୁଡ଼ିକ ହେଲା-

-ନଳିତାପାଟିଆ ଘାଟ (ବୈତରଣୀ)

-ଗୁଆଳି ଫେରିଘାଟ (ବୈତରଣୀ)



**ଯାଜପୁରର ସିଦ୍ଧେଶ୍ୱର ଘାଟ**



ମନ୍ତେଇ ନଦୀର ଚୌଧୁରୀ ଘାଟ

-ତାଳଚୁଆ-କାଳନାଳି ଫେରିଘାଟ (ବୈତରଣୀ)

-ମାନପୁର ଘାଟ (ବୈତରଣୀ)

-ଗୋପାଳପୁର ଘାଟ (ତିନିତର ଘାଟର କେନ୍ଦ୍ରାପଡ଼ା ପାର୍ଶ୍ୱ)

ଧାମନଗର ବ୍ଲକ୍ ଅନ୍ତର୍ଗତ ଅର୍ଜୁନପୁର ପଞ୍ଚାୟତ ଦେଇ ବୈତରଣୀ ନଦୀର ଶାଖା ନଦୀ **'କୋଚିଳା'** ବହିଯାଇଛି । ଅର୍ଜୁନପୁର ପଞ୍ଚାୟତର ତରାଇସାହିରେ କୋଚିଳା ନଦୀରେ ରହିଛି ଏକ ଫେରିଘାଟ । ଏହା ସହିତ ଧାମନଗର ବ୍ଲକ୍ ଅନ୍ତର୍ଗତ ବ୍ରହ୍ମଚାରୀପାଟଣାରେ ବୈତରଣୀ ନଦୀ ଉପରେ ମଧ୍ୟ ଏକ ଫେରିଘାଟ ରହିଛି । ଏହା ଭଦ୍ରକ ଓ ଯାଜପୁର ମଧ୍ୟରେ ଯୋଗାଯୋଗ ରକ୍ଷା କରିଥାଏ ।

## ଦେଶୀ ଡଙ୍ଗା ଚଳାଚଳ ନେଇ ଥିବା ସରକାରୀ ନୀତିନିୟମ

*(Government rules and regulations on country boats)*

ଓଡ଼ିଶାରେ ବିଭିନ୍ନ ନଦୀ ଘାଟରେ ଚଳାଚଳ କରୁଥିବା ଦେଶୀ ଡଙ୍ଗାଗୁଡିକର ଯାଞ୍ଚ ପାଇଁ ରାଜ୍ୟ ସରକାରଙ୍କର ଏକ ଏନ୍‌ଫୋର୍ସମେଣ୍ଟ ଟିମ୍ କାର୍ଯ୍ୟ କରିଥାଏ । ଡଙ୍ଗାଗୁଡିକର ସ୍ଥିତି ଓ ଏହାର

ପରିବହନ କ୍ଷମତା ଯାଞ୍ଚ କରିବା ନେଇ ରାଜ୍ୟ ସରକାରଙ୍କ 'ଓଡ଼ିଶା ବୋଟ୍ ରୁଲ୍ସ-୨୦୦୪' ରହିଛି । ତେବେ ଅନେକ ସମୟରେ ଏହି ନିୟମ କଡ଼ାକଡ଼ି ଭାବେ ପାଳନ କରାଯାଇ ନଥାଏ ।

ପ୍ରତିବର୍ଷ ବର୍ଷା ଦିନ ପୂର୍ବରୁ ରାଜ୍ୟରେ ଥିବା ମୋଟର ଲଞ୍ଚ/ଦେଶୀଡଙ୍ଗା ପଞ୍ଜୀକରଣ/ଡଙ୍ଗାର ଫିଟ୍‌ନେସ ପରୀକ୍ଷା, ଡଙ୍ଗାଚାଳକଙ୍କୁ ଲାଇସେନ୍‌ସ ପ୍ରଦାନ ସଂପର୍କିତ ସର୍ଭେ କାର୍ଯ୍ୟ, ସଚେତନତା କାର୍ଯ୍ୟକ୍ରମ ହୋଇଥାଏ । ରାଜ୍ୟରେ ଥିବା ଫେରିଘାଟ, ଜଳଭଣ୍ଡାର ମଧ୍ୟରେ ଡଙ୍ଗା ଚଳାଚଳ ନେଇ ଏନ୍‌ଫୋର୍ସମେଣ୍ଟ ଟିମ୍ ପକ୍ଷରୁ ସର୍ଭେ କରାଯାଇଥାଏ । ସର୍ଭେ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ବିଶେଷଜ୍ଞ ସର୍ଭେୟର ଏବଂ ସେମାନଙ୍କୁ ସାହାଯ୍ୟ କରିବା ନିମେନ୍ତ ଟେକ୍ନିକାଲ୍ ଅଫିସରମାନଙ୍କୁ ନିୟୋଜିତ କରାଯାଇଥାଏ । ପ୍ରତ୍ୟକ ଏନ୍‌ଫୋର୍ସମେଣ୍ଟ ଟିମ୍ ନଦୀଘାଟ ଓ ଡଙ୍ଗାଗୁଡିକର ପରିବହନ କ୍ଷମତା ଯାଞ୍ଚ କରିବେ । ଅପରପକ୍ଷେ, ଜିଲ୍ଲାମାନଙ୍କରେ ବ୍ଲକ୍‌ସ୍ତରୀୟ ନୋଡାଲ୍ ଅଫିସର (ବିଡ଼ିଓ)ଙ୍କୁ ସାହାଯ୍ୟ କରିବା ନିମନ୍ତେ ସ୍ଥାନୀୟ ତହସିଲଦାର, ଥାନାଧିକାରୀ ଏବଂ ଅଗ୍ନିଶମ ଅଧିକାରୀଙ୍କୁ ଦାୟିତ୍ୱ ଦିଆଯାଇଥାଏ ।

ଜିଲ୍ଲାରେ ଚଳାଚଳ କରୁଥିବା ସମସ୍ତ ଡଙ୍ଗାମାନଙ୍କର ଲାଇସେନ୍‌ସ ପାଇଁ ନିର୍ଦ୍ଧାରିତ ଫର୍ମ ଯୋଗେ ଆବେଦନ କରି ଡଙ୍ଗା ଚାଳକମାନେ ସରକାରୀ ନୀତିନିୟମକୁ ସମ୍ମାନ ଦେଇଥାନ୍ତି । ଏନ୍‌ଫୋର୍ସମେଣ୍ଟ ଟିମ୍ ଡଙ୍ଗାଗୁଡିକର ଫିଟ୍‌ନେସ ପରୀକ୍ଷା କରି ସାର୍ଟିଫିକେଟ୍ ପ୍ରଦାନ କରନ୍ତି । ଏହାପରେ ଡଙ୍ଗାଗୁଡିକ ଚଳାଚଳ କରିବାକୁ ଯୋଗ୍ୟ ବିବେଚିତ ହୋଇଥାଏ । ମାତ୍ର ଏସବୁ ନୀତିନିୟମ କେବଳ କାଗଜକଲମରେ ଚାଲେ ।

ଡଙ୍ଗାର ମାପ ଅନୁଯାୟୀ ଏହାର ପରିବହନ କ୍ଷମତା ନିର୍ଦ୍ଧାରଣ ହୋଇଥାଏ । ଏ ନେଇ ଡଙ୍ଗାରେ ଏକ ଧଳା ରଙ୍ଗ ଚିହ୍ନ ଦିଆଯାଏ । ଏହି ଧଳା ରଂଗର ପ୍ୟାଚ୍ ଉପରେ ଡ଼ଙ୍ଗା ସଂପର୍କିତ ସମସ୍ତ ତଥ୍ୟ ଲେଖାଯିବା କଥା । ମାତ୍ର ଏହା କରାଯାଉନାହିଁ । ଡ଼ଙ୍ଗାର ପରିବହନ କ୍ଷମତାକୁ ଏନ୍‌ଫୋର୍ସମେଣ୍ଟ ଟିମ୍ ସ୍ଥିର କରି ଏ ସଂପର୍କିତ ତଥ୍ୟକୁ ଡଙ୍ଗାରେ ଲେଖାଯିବା କଥା । ଡଙ୍ଗାକୁ ମିଳିଥିବା ରେଜିଷ୍ଟ୍ରେସନ ନମ୍ବର, ଲାଇସେନ୍‌ସ ନମ୍ବର, ବୈଧ ସମୟ ଅବଧି, ଯାତ୍ରୀ ପରିବହନ କ୍ଷମତା, ଜିନିଷପତ୍ର ବୋଝେଇ କ୍ଷମତା ଆଦି ସମସ୍ତ ତଥ୍ୟ ଡଙ୍ଗାରେ ଲେଖିବାକୁ ସରକାରୀ ନିୟମ ରହିଛି । ଡଙ୍ଗାଚାଳକମାନଙ୍କ ପାଇଁ ଲାଇସେନ୍‌ସ ବାଧ୍ୟତାମୂଳକ କରାଯାଇଛି । ଡଙ୍ଗାଚାଳକ ନିଜ ପାଖରେ ଲାଇସେନ୍‌ସ ଓ ପରିଚୟପତ୍ର ରଖିବା ବାଧ୍ୟତାମୂଳକ କରାଯାଇଛି । ଡଙ୍ଗା ଯେଭଳି ଦୁର୍ବଳ ହୋଇ ନଥିବ କିମ୍ବା କୌଣସି ଅଂଶ ଭାଙ୍ଗି ନଥିବ, ଡଙ୍ଗା ଭିତରକୁ ପାଣି ପଶୁ ନଥିବ ଏଥିପ୍ରତି ଏନ୍‌ଫୋର୍ସମେଣ୍ଟ ଟିମ୍ ଅନୁଧ୍ୟାନ କରି ସାର୍ଟିଫିକେଟ୍ ପ୍ରଦାନ କରିଥାନ୍ତି ।

□

## ଅଷ୍ଟମ ପରିଚ୍ଛେଦ

# ବୈତରଣୀ ଓ ଜୀବନଜୀବିକା

## ବୈତରଣୀର ମଧୁର ଓ ଲୁଣି ମାଛ

*(Piscine Diversity of River Baitaranee)*



ଓଡ଼ିଶାରେ ୪୮୦ କିଲୋମିଟର ବ୍ୟାପୀ ସମୁଦ୍ର ଉପକୂଳ ରହିଛି । ଏହା ସହିତ ଅନେକ ଛୋଟବଡ଼ ନଦୀ ଜାଲ ଭଳି ବିଛେଇ ହୋଇ ରହିଛି । ଓଡ଼ିଶାର ପ୍ରମୁଖ ୬ଟି ନଦୀ ମଧ୍ୟରୁ ବୈତରଣୀ ନଦୀ ଅନ୍ୟତମ । ବୈତରଣୀ ଓ ଏହାର ଦୁଇ ମୁହାଁଣ **ଧାମରା** ଏବଂ **ତାଳଚୁଆର** ମାଛ ଓଡ଼ିଶାର ଅନେକ ଚାହିଦା ପୂରଣ କରିଥାଏ । ବୈତରଣୀ ନଦୀରୁ ମୁଖ୍ୟତଃ ମଧୁର ମାଛ ଏବଂ ସମୁଦ୍ର-ନଦୀ ମୁହାଁଣ ଅଞ୍ଚଳର (ଧାମରା ମୁହାଁଣ) ଲୁଣି ***(Brackish water fish)*** ମାଛ ମିଳିଥାଏ ।

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ କେନ୍ଦୁଝରର ଗୋନାସିକାରୁ ଆରଂଭ କରି ଧାମରା ମୁହାଁଣ ଯାଏ ବିଭିନ୍ନ ସ୍ଥାନରୁ ପ୍ରତିଦିନ ପ୍ରଚୁର ମାତ୍ରାରେ ଉଭୟ ଲୁଣି ଓ ମଧୁର ମାଛ ଧରାଯାଇଥାଏ ।

ଓଡ଼ିଶାର ଚିଲିକା ସମେତ ଅନ୍ୟାନ୍ୟ ଜଳଭଣ୍ଡାର, ସମୁଦ୍ର ମୁହାଁଣରୁ ଯେଉଁ ପରିମାଣର ମାଛ ଧରାଯାଇଥାଏ ତାହାର ସିଂହଭାଗ କେବଳ ବୈତରଣୀର ଧାମରା ଓ ତାଳଚୁଆ ମୁହାଁଣରୁ ଧରାଯାଇଥାଏ । ଧାମରା ମତ୍ସ୍ୟ ପୋତାଶ୍ରୟ *(Dhamara Fishing Harbour)* ଏବଂ ତାଳଚୁଆ ମତ୍ସ୍ୟ ପୋତାଶ୍ରୟ *(Talachua Fishing Harbour)*ରୁ ଓଡ଼ିଶାର ରେକର୍ଡ ପରିମାଣର ମାଛ ବିଦେଶକୁ ରପ୍ତାନୀ ହୋଇଥାଏ ।

ବୈତରଣୀ ନଦୀର ଚଂପୁଆ, ଆନନ୍ଦପୁର, ଘସିପୁରା, ହାଟଡ଼ିହି, ଆଖୁଆପଦା, ଧାମନଗର, ଭଣ୍ଡାରୀପୋଖରୀ, ଯାଜପୁର, ମଙ୍ଗଳପୁର, ଦଶରଥପୁର, କୟାଁଗୋଲା, ଚାନ୍ଦବାଲି ଆଦି ସ୍ଥାନରୁ ଧରାଯାଉଥିବା ମଧୁରମାଛ ସ୍ଥାନୀୟ ଅଞ୍ଚଳର ଚାହିଦା ମେଣ୍ଟେଇବାରରେ ସକ୍ଷମ ହୋଇଥାଏ । ବୈତରଣୀର ଧାମରା ଓ ତାଳଚୁଆ ସମୁଦ୍ର ମୁହାଁଣରୁ ପ୍ରତିଦିନ ଟନ୍ ଟନ୍ ସାମୁଦ୍ରିକ ମାଛ ଧରାଯାଇ ଏହାକୁ ବିଦେଶକୁ ରପ୍ତାନୀ କରାଯାଇଥାଏ । ଚାନ୍ଦବାଲି, ଧାମରା, ଚନ୍ଦନିପାଳ, ନଳିତାପାଟିଆ, ତାଳଚୁଆରେ ବଡ଼ବଡ଼ ଶୁଖୁଆ ଖଳା ଓ ମାଛ ବଜାର ରହିଛି । ଏଠାରୁ ବିଦେଶକୁ ପ୍ରଚୁର ମାତ୍ରାରେ ଶୁଖୁଆ ରପ୍ତାନୀ କରାଯାଇଥାଏ ।

## ବୈତରଣୀ ତ୍ରିକୋଣଭୂମି ଅଞ୍ଚଳରେ ଚିଙ୍ଗୁଡ଼ି ଚାଷ

*(Prawn culture in Baitaranee delta)*

ବୈତରଣୀ ନଦୀର ନିମ୍ନ ଅବବାହିକା ଅଞ୍ଚଳରେ ଥିବା ତ୍ରିକୋଣଭୂମି ଏବଂ ମୁହାଁଣ ଅଞ୍ଚଳରେ





ଚିଙ୍ଗୁଡ଼ିଚାଷ ସ୍ଥାନୀୟ ଲୋକଙ୍କର ପ୍ରମୁଖ ଜୀବିକା କହିଲେ ଭୁଲ୍ ହେବନି । ଏଠାକାର ବ୍ୟାପକ ଲୁଣା ଅଞ୍ଚଳ ଚାଷ ଅନୁପଯୋଗୀ ହୋଇଥିବାରୁ ବୈତରଣୀ ନଦୀ କୂଳବର୍ତ୍ତୀ ଇଲାକାରେ ଲୋକେ ଚିଙ୍ଗୁଡ଼ି ଚାଷ କରିବାକୁ ଅଧିକ ପସନ୍ଦ କରିଥା'ନ୍ତି । ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍, ଭଦ୍ରକ ଜିଲ୍ଲାର ଧାମନଗର, ବାସୁଦେବପୁର ଓ ଚାନ୍ଦବାଲି ବ୍ଲକ୍ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ରାଜନଗର ବ୍ଲକ୍‌ରେ ବୈତରଣୀ ନଦୀ କୂଳିଆ ଅଞ୍ଚଳରେ ପ୍ରଚୁର ମାତ୍ରାରେ ଲୁଣିପାଣି ଚିଙ୍ଗୁଡ଼ି ଚାଷ କରାଯାଉଥିବାର ଦେଖାଯାଏ ।

ଆପଣ କେବେ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ କିମ୍ବା ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍ ଦେଇ ବହିଯାଇଥିବା ବୈତରଣୀ ନଦୀ ଉପକୂଳିଆ ଗାଁ ଆଡ଼େ ବୁଲିଗଲେ ଶହଶହ ସଂଖ୍ୟାରେ ଚିଙ୍ଗୁଡ଼ି ଘେରି ଦେଖିବାକୁ ପାଇବେ । ବୈତରଣୀ ନଦୀର ନିମ୍ନ ଅବବାହିକା ଅଞ୍ଚଳ ଭାବେ ପରିଚିତ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର, ପଟ୍ଟାମୁଣ୍ଡାଇ, ରାଜକନିକା, ମହାକାଳପଡ଼ା ବ୍ଲକ୍ ଏବଂ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ବାସୁଦେବପୁର, ଧାମନଗର ଓ ଚାନ୍ଦବାଲି ବ୍ଲକ୍‌ରେ ଓଡ଼ିଶାର ସିଂହ ଭାଗ ଲୁଣି ଜଳ ଚିଙ୍ଗୁଡ଼ି ଚାଷ କରାଯାଇଥାଏ । କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ ଅନ୍ତର୍ଗତ ଡାଙ୍ଗମାଳ, ରଙ୍ଗଣି, ତାଳଚୁଆ, ସାତଭାୟା, ଗୁପ୍ତି ଆଦି ପଞ୍ଚାୟତରେ ଶହଶହ ସଂଖ୍ୟାରେ ଚିଙ୍ଗୁଡ଼ି ଘେରି ରହିଛି ।

ବୈତରଣୀ ଅବବାହିକାର ଏସବୁ ଅଞ୍ଚଳରେ ବଙ୍ଗଳାଦେଶୀ ଶରଣାର୍ଥୀମାନେ ଚିଙ୍ଗୁଡ଼ି ଚାଷ କରି ନିଜର ଜୀବିକା ନିର୍ବାହ କରିଥା'ନ୍ତି । ସରକାର ମଧ୍ୟ ଚିଙ୍ଗୁଡ଼ିଚାଷ ପାଇଁ ପ୍ରୋତ୍ସାହନ ଯୋଗେଇ ଦେଇଆସୁଛନ୍ତି । ତାଳଚୁଆ, ରାଜନଗର, ଧାମରା, ଚାନ୍ଦବାଲି, ତିହିଡ଼ି, ବାସୁଦେବପୁର, ଚନ୍ଦନିପାଳ ଆଦି ଅଞ୍ଚଳରେ ବୈତରଣୀ ନଦୀ କୂଳରେ ବଡ଼ବଡ଼ ଘେରି କରାଯାଇ ଚିଙ୍ଗୁଡ଼ି ଚାଷ କରାଯାଉଛି ।

ବୈତରଣୀ ନଦୀ କୂଳରେ ବଡ଼ବଡ଼ ପୋଖରୀ ଖୋଳାଯାଇ ମୋଟର ପମ୍ପ୍ ମାଧ୍ୟମରେ ନଦୀରୁ ପାଣି ଉଠାଯାଇ ପୋଖରୀରେ ଭର୍ତ୍ତି କରାଯାଏ ଏବଂ ଏହି ପୋଖରୀରେ ଚିଙ୍ଗୁଡ଼ି ଚାଷ କରାଯାଇଥାଏ ।

ଭଦ୍ରକ ଜିଲ୍ଲାର ଚାନ୍ଦବାଲି ବ୍ଲକ୍‌ର ଚାଷୀମାନେ ଚିଙ୍ଗୁଡ଼ି ଚାଷକୁ ଦ୍ୱିତିୟ ଫସଲ ଭାବେ ଗ୍ରହଣ କରିନେଇଥା'ନ୍ତି । ରାଜ୍ୟର ସିଂହଭାଗ ଚିଙ୍ଗୁଡ଼ି ଚାଷ କେବଳ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଓ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ ଅଞ୍ଚଳରେ କରାଯାଇଥାଏ । ଧାନ ଓ ଚିଙ୍ଗୁଡି ହିଁ ଏଠାକାର ଲୋକମାନଙ୍କର ମୁଖ୍ୟ ଜୀବନଜୀବିକା ।

ଧାମରା ଓ ତାଳଚୁଆ ମୁହାଁଣକୁ ଲାଗିଥିବା ବୈତରଣୀ ନଦୀ ବାଟେ ସମୁଦ୍ର ପାଣି ମାଡୁଥିବାରୁ ବୈତରଣୀ ଏବଂ ଏହାର ଉପନଦୀ, ଶାଖା ନଦୀ, କେନାଲ, ଗଳିଆ, ଜୋର ଓ ଅନ୍ୟାନ୍ୟ ଜଳ ଉତ୍ସମାନଙ୍କରେ ବ୍ୟାପକ ମାତ୍ରାରେ ଚିଙ୍ଗୁଡ଼ି ଚାଷ କରାଯାଇଥାଏ । ଚାନ୍ଦବାଲି ବ୍ଲକ୍ ଦେଇ ପ୍ରବାହିତ ହୋଇଥିବା ବୈତରଣୀ ଓ ଏହାର ଉପନଦୀ ମନ୍ତେଇ, ଅନ୍ୟାନ୍ୟ ଜୋର, ଗଳିଆମାନଙ୍କରେ ଚିଙ୍ଗୁଡ଼ି ଚାଷ କରି ଏଠାକାର ଚାଷୀମାନେ ବିଶେଷଭାବେ ଉପକୃତ ହୋଇଥା'ନ୍ତି ।

୨୦୧୪ ମସିହା ସୁଦ୍ଧା ଭଦ୍ରକ ଜିଲ୍ଲାରେ ୧୫୦୦ ଜଣ ଚିଙ୍ଗୁଡ଼ି ଚାଷୀଙ୍କର ନାମ ପଞ୍ଜୀକରଣ



କେନ୍ଦ୍ରାପଡ଼ା ଜିଲ୍ଲାର ତାଳଚୁଆରେ ଥିବା ଏକ ଚିଙ୍ଗୁଡ଼ି ଘେରି



**ଧାମରା ଇଲିସି**

ହୋଇଛି ବୋଲି ଭଦ୍ରକ ଜିଲ୍ଲା ମତ୍ସ୍ୟ ବିଭାଗର ସୂଚନାରୁ ଜଣାପଡ଼ିଛି । ଏହାବ୍ୟତୀତ ଆହୁରି ଅନେକ ଛୋଟ ଚିଙ୍ଗୁଡ଼ି ଚାଷୀ ବିନା ପଞ୍ଜୀକରଣରେ ଚିଙ୍ଗୁଡ଼ି ଚାଷ ମଧ୍ୟ କରିଆସୁଛନ୍ତି । ଜିଲ୍ଲାର ମୋଟ ୧୫୦୦ ଚିଙ୍ଗୁଡ଼ି ଚାଷୀଙ୍କ ମଧ୍ୟରେ କେବଳ ଚାନ୍ଦବାଲି ବ୍ଲକ୍‌ରେ ୯୦୦ରୁ ଊର୍ଦ୍ଧ୍ୱ ଚିଙ୍ଗୁଡ଼ି ଚାଷୀ ଅଛନ୍ତି ।

ଖରିଫ୍ ଫସଲ ପରେପରେ ବର୍ଷର ଜାନୁୟାରୀ ମାସରୁ ଜୁନ୍ ମାସ ପର୍ଯ୍ୟନ୍ତ ଚିଙ୍ଗୁଡ଼ି ଚାଷ ହୋଇଥାଏ । ଚାନ୍ଦବାଲି ବ୍ଲକ୍‌ର ଚଡ଼ଦିଆ, ଓରାସାହି, ବିଜୟନଗର, ଉତୁକୁଡ଼ା, ମୌସୁଧା, ନଳଗୋହିରା, ଯଶୀପୁର, ନୂଆଗାଁ, ବାଂଶଡା, ପଞ୍ଚୁଟିକ୍ରି, ଧାମରା ପରି କେତେକ ପଞ୍ଚାୟତରେ ଚାଷ ଜମିରେ ଧାନ ଅମଳ ପରେପରେ ଚିଙ୍ଗୁଡ଼ି ଚାଷ କରାଯାଇଥାଏ । ଅପରପକ୍ଷେ, ଓଡ଼ିଶାରେ ଭଲ ଚିଙ୍ଗୁଡ଼ି ମାଛ ଯାଆଁଳ ମିଳୁ ନଥିବା, ଚିଙ୍ଗୁଡ଼ିର ସର୍ବନିମ୍ନ ସରକାରୀ ସହାୟକ ମୂଲ୍ୟ ନିର୍ଦ୍ଧାରଣ ନ ହେବା ଏବଂ ଏଠାରେ ଭଲ ବଜାର ନଥିବାରୁ ଏଠାକାର ଚାଷୀମାନେ ବିଶେଷ ଭାବେ ଉପକୃତ ହୋଇ ନଥା'ନ୍ତି । ଏ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷକୁ ଅଧିକ ବ୍ୟାପକ ଓ ଲାଭଦାୟକ ବୃତ୍ତି କରିବା ଉଦ୍ଦେଶ୍ୟରେ ପ୍ରତି ଗାଁରେ କିଛି କିଛି ଚିଙ୍ଗୁଡ଼ି ଚାଷୀଙ୍କୁ ନେଇ ଚାଷୀ ସଂଘମାନ ଗଢାଯାଇଛି । ଏହି ସଂଘ ଜରିଆରେ ଚାଷୀମାନଙ୍କର ଉନ୍ନୟନ କାର୍ଯ୍ୟ ପାଇଁ ନାନା ପ୍ରକାର ପଦକ୍ଷେପ ନିଆଯାଇଥାଏ ।

ରାଜ୍ୟ ସରକାରଙ୍କ ପକ୍ଷରୁ ଭଦ୍ରକ କିମ୍ବା କେନ୍ଦ୍ରାପଡ଼ା ଜିଲ୍ଲାରେ ଉନ୍ନତମାନର ଚିଙ୍ଗୁଡ଼ି ଯାଆଁଳ

ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇପାରିଲେ ଏଠାରେ ଚିଙ୍ଗୁଡ଼ି ଚାଷକୁ ଆହୁରି ବ୍ୟାପକ କରାଯାଇପାରନ୍ତା ବୋଲି ଚାଷୀ ମହଲରେ ଆଲୋଚନା ହୋଇଥାଏ । ଏହା ସାଙ୍ଗକୁ ବୈତରଣୀ ନିମ୍ନ ଅବବାହିକା ଅଞ୍ଚଳରେ ଚିଙ୍ଗୁଡ଼ି ଚାଷକୁ ଅଧିକ ସଂଗଠିତ ଓ ଶୃଙ୍ଖଳିତ କରିବାକୁ ହେଲେ ନିମ୍ନ ଦିଗଗୁଡିକ ପ୍ରତି ଦୃଷ୍ଟି ଦେବା ଜରୁରୀ ମନେ ହୋଇଥାଏ-

୧· କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ ଉନ୍ନତ ମାନର ଚିଙ୍ଗୁଡ଼ି ଯାଆଁଳ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯିବା

୨· ଚିଙ୍ଗୁଡ଼ିର ଉପଯୁକ୍ତ ସହାୟକ ବଜାର ମୂଲ୍ୟ ନିର୍ଦ୍ଧାରଣ

୩· ଚିଙ୍ଗୁଡ଼ି ଚାଷରେ ବ୍ୟବହୃତ ଉପକରଣ ଓ ସାମଗ୍ରୀ ସରକାରଙ୍କ ପକ୍ଷରୁ ରିହାତି ମୂଲ୍ୟରେ ଯୋଗେଇ ଦେବା

୪· ପ୍ରତି ୧ ହଜାର ଚାଷୀଙ୍କ ପାଇଁ ଗୋଟିଏ କରି ଚିଙ୍ଗୁଡ଼ି ପରୀକ୍ଷାଗାର ନିର୍ମାଣ କରିବା

୫· ସରକାରଙ୍କ ପକ୍ଷରୁ ଚିଙ୍ଗୁଡ଼ି ଖାଦ୍ୟ ଯୋଗାଣ

୬· ଚିଙ୍ଗୁଡ଼ି ଚାଷ ଓ ଚାଷୀଙ୍କୁ ବୀମାଭୁକ୍ତ କରିବା

୭· ଚିଙ୍ଗୁଡ଼ି ଚାଷୀଙ୍କୁ ମତ୍ସ୍ୟଜୀବି ପରିଚୟପତ୍ର ପ୍ରଦାନ କରିବା

୮· ପ୍ରତି ପଞ୍ଚାୟତରେ ସରକାରଙ୍କ ପକ୍ଷରୁ ଜଣେ ଜଣେ ଚିଙ୍ଗୁଡ଼ି ବିଶେଷଜ୍ଞ ନିଯୁକ୍ତ କରିବା

୯· ଧାମରା (ଭଦ୍ରକ) ଏବଂ ତାଳଚୁଆ (କେନ୍ଦ୍ରାପଡ଼ା) ଠାରେ ପାଞ୍ଚ ହଜାର ଟନ୍ ବିଶିଷ୍ଟ ଶୀତଳଭଣ୍ଡାର ପ୍ରତିଷ୍ଠା କରିବା

୧୦· ଚାଷୀମାନଙ୍କୁ ଲାଇସେନ୍ସ ପ୍ରଦାନ ସହ ନିମ୍ନ ସୁଧ ହାରରେ ବ୍ୟାଙ୍କ ଋଣ ଯୋଗେଇ ଦେବା

ତେବେ ଚିଙ୍ଗୁଡ଼ି ଚାଷୀଙ୍କ କଥା ବୁଝିବାକୁ ଭୁବନେଶ୍ୱରଠାରେ କେନ୍ଦ୍ର ସରକାରଙ୍କ ବାଣିଜ୍ୟ ଓ ପରିବହନ ବିଭାଗ ଦ୍ୱାରା ପରିଚାଳିତ 'ମେରାଇନ୍ ପ୍ରଡକ୍ଟସ ଏକ୍ସପର୍ଟ ଡେଭଲପ୍‌ମେଣ୍ଟ ଅଥରିଟି' *(The Marine Products Export Development Authority)* ନାମରେ ଏକ ସଂସ୍ଥା କାର୍ଯ୍ୟ କରୁଛି । ୧୯୭୨ ମସିହାରୁ ଭୁବନେଶ୍ୱରଠାରେ ଏହାର ଏକ କାର୍ଯ୍ୟାଳୟ ପ୍ରତିଷ୍ଠା ହୋଇ ଚାଷୀମାନଙ୍କ ଉନ୍ନୟନ ପାଇଁ କାର୍ଯ୍ୟ କରିଆସୁଛି । ମାତ୍ର ଏହି ସଂସ୍ଥାର ଶାଖା କାର୍ଯ୍ୟାଳୟ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗରଠାରେ ପ୍ରତିଷ୍ଠା କରିବାକୁ ଦାବି ହେଉଛି ।

## ବୈତରଣୀର ବାଲୁକା ସଂପଦ

*(Sand minerals of river Baitaranee)*

ସମଗ୍ର ଓଡ଼ିଶାର ୧୫ ପ୍ରତିଶତ ନିର୍ମାଣ ଶିଳ୍ପ କେବଳ ବୈତରଣୀ ନଦୀର ବାଲି ଉପରେ ନିର୍ଭର କରିଥାଏ । ବୈତରଣୀ ନଦୀର ଅଧିକାଂଶ ଗର୍ଭ ପଥରୁଆ ଶଯ୍ୟା ହୋଇଥିବାରୁ ଏହାର ବାଲି ନିର୍ମାଣ ପାଇଁ ଅଧିକ ଉପଯୋଗୀ ହୋଇଥାଏ । ଗୋନାସିକାଠାରୁ ଆରଂଭ କରି ଧାମରା ଯାଏ ବୈତରଣୀ ନଦୀ ଶଯ୍ୟାରେ ରହିଛି ହଜାର ହଜାର ସଂଖ୍ୟାରେ ବାଲି ଘାଟ ।

କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ର ଶଶାଙ୍କ, ସରେଇ, ରିମୁଳି, ଗୋଧୁଳି, ବ୍ରହ୍ମପୁର-କରଞ୍ଜିଆ, ଟିଆଁଶିପଶି, ଭଣ୍ଡା, ନନ୍ଦପୁର, ପର୍ସଳା ଏବଂ ସ୍ୱାମ୍‌ପାଟଣା ବ୍ଲକ୍ ଅନ୍ତର୍ଗତ ତୁରୁମୁଙ୍ଗା, ରାଜନଗର, ସାହାରପଡ଼ା ବ୍ଲକ୍‌ର ଉଦୟପୁର ଏବଂ ଝୁଂପୁରାର ଅରଡ଼େଇ (ବୈତରଣୀର ପ୍ରମୁଖ ଉପନଦୀ) ଆଦି ବାଲିଘାଟ ଉପରେ ସମଗ୍ର ଚଂପୁଆ ଏବଂ କେନ୍ଦୁଝର ସଦର ଉପଖଣ୍ଡର  ନିର୍ମାଣ କାର୍ଯ୍ୟ ନିର୍ଭର କରିଥାଏ । ସେହିଭଳି ଆନନ୍ଦପୁର ଉପଖଣ୍ଡ (ଆନନ୍ଦପୁର, ଘସିପୁରା ଓ ହାଟଡ଼ିହି ବ୍ଲକ୍)ର ଆନନ୍ଦପୁର ବାଲିଘାଟ (ରାଜଘାଟ), କୁଶଳେଶ୍ୱର ବାଲିଘାଟ (ଦେଓଗାଁ), ବେଲବାହାଳି, ଟୁକୁଣା ବାଲିଘାଟ,



ଯାଜପୁର ସହର ନିକଟସ୍ଥ ବୈତରଣୀ ନଦୀର ଏକ ବାଲିଘାଟ

ବୀରଗୋବିନ୍ଦପୁର, ସମଣା, ହାବଳେଶ୍ୱର ବାଲିଘାଟ, ବାରିଗାଁ, ତାଳଗାଁ ଆଦି ବାଲିଘାଟ ଏ ଅଞ୍ଚଳର ନିର୍ମାଣ କାର୍ଯ୍ୟକୁ ସଂଭାଳିଥାଏ ବୋଲି ବୁଝିବାକୁ ହୋଇଥାଏ ।

କେନ୍ଦୁଝର ଓ ମୟୁରଭଞ୍ଜ ଜିଲ୍ଲାର ସୀମା ତୁରୁମୁଙ୍ଗା ନିକଟସ୍ଥ ମହାଦେବଦେଉଳିଠାରେ ବୈତରଣୀ ନଦୀରେ ଏକ ବାଲି ଘାଟ ରହିଛି । ସେହିଭଳି ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ବ୍ଲକ୍‌ର ଆଖୁଆପଦା ବୈତରଣୀ ବାଲିଘାଟ ଓ ଯାଜପୁର ଜିଲ୍ଲାର ଷଠିପୁର ବାଲିଘାଟ ଉପରେ ସମଗ୍ର ଭଣ୍ଡାରୀପୋଖରୀ, ଧାମନଗର ଓ ଚାନ୍ଦବାଲିର ନିର୍ମାଣ କାର୍ଯ୍ୟ ନିର୍ଭର କରିଥାଏ । ପୂର୍ବେ ଆଖୁଆପଦା ଓ ଷଠିପୁର ବାଲିଘାଟରୁ ଡଙ୍ଗା ଯୋଗେ ବାଲି ପରିବହନ କରାଯାଇ ଚାନ୍ଦବାଲି ଓ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା, ରାଜନଗର, ଆଳି ଅଞ୍ଚଳ ପର୍ଯ୍ୟନ୍ତ ପଠାଯାଇପାରୁଥିଲା । ଚାନ୍ଦବାଲି ଅଞ୍ଚଳରେ ମୁଖ୍ୟତଃ ଜଳପଥରେ ବାଲି ପରିବହନ କରାଯାଇଥାଏ । ବାଲିଘାଟମାନଙ୍କରୁ ବାଲି ଲଦାଯିବା ପରେ ଏହାକୁ ଡଙ୍ଗାରେ ବିଭିନ୍ନ ସ୍ଥାନରେ ପହଞ୍ଚାଯାଇଥାଏ । ସେହିଭଳି ବୈତରଣୀ ନଦୀରେ କେନ୍ଦ୍ରାପଡ଼ା ଜିଲ୍ଲାର ପ୍ରସିଦ୍ଧ କନପୁର ବାଲିଘାଟଟି ଏକ ପୁରାତନ ବାଲିଘାଟ ।

ଯାଜପୁର ସହରସ୍ଥ ଦଶାଶ୍ୱମେଧ ଘାଟଠାରୁ ସିଦ୍ଧେଶ୍ୱର ମନ୍ଦିର ପର୍ଯ୍ୟନ୍ତ ଅନେକ ବାଲି ଘାଟ ରହିଛି । ଏଠାକାର ବୈତରଣୀ ବାଲି ସମଗ୍ର ଯାଜପୁର ସହରର ନିର୍ମାଣ ଚାହିଦା ମେଣ୍ଟେଇଥାଏ । ସେହିଭଳି ଦଶରଥପୁର ବାଲିଘାଟ, ମଙ୍ଗଳପୁର ବାଲିଘାଟ, ପହ୍ଲାସାହି ବାଲିଘାଟ ଉପରେ ମଧ୍ୟ ଏ ଅଞ୍ଚଳର ଲୋକେ ନିର୍ଭରଶୀଳ ହୋଇଥା'ନ୍ତି ।

ଭଦ୍ରକ ଜିଲ୍ଲାର ଚାନ୍ଦବାଲି ତହସିଲ ଅନ୍ତର୍ଗତ ମୁଆଁଠାରୁ ସୁନ୍ଦରପୁର ଯାଏ ଥିବା ବିସ୍ତୃତ ବାଲିଘାଟ ଏବଂ ବୋଡ଼କ ବାଲିଘାଟ ଉପରେ ଉଭୟ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଓ କେନ୍ଦ୍ରାପଡ଼ା ଜିଲ୍ଲାର ଆଳି, ରାଜକନିକା ଅଞ୍ଚଳ ନିର୍ଭର କରିଥାଏ ।

ଅଧିକାଂଶ ସମୟରେ ଏହିସବୁ ବାଲିଘାଟରେ ନିଲାମରେ ଅନିୟମିତତା କାରଣରୁ ବାଲି ବେପାରୀମାନେ ଅସାଧୁ ଉପାୟରେ ଲାଭବାନ୍ ହୋଇଥାନ୍ତି । ସଇରାତରୁ ପ୍ରତିଦିନ ବେପାରୀମାନେ ବେଆଇନ୍ ଭାବେ ବାଲି ଉଠାଇ ଚୋରାରେ ବିକ୍ରି କରିଥା'ନ୍ତି । ଏହିସବୁ ବାଲି ଘାଟରୁ ଚୋରାରେ ଡଙ୍ଗା ସହାୟତାରେ ବାଲି ବୋଝେଇ କରାଯାଇ ବାହାରେ ବିକ୍ରି କରାଯାଇଥାଏ । ବାଲୁକା ସଂପଦର ଚୋରା କାରବାରକୁ ନିୟନ୍ତ୍ରଣ କରିବା ତହସିଲ ପ୍ରଶାସନର ହୋଇଥିଲେ ମଧ୍ୟ ଅଧିକାଂଶ ସ୍ଥାନରେ ତହସିଲର ପ୍ରାଶାସନିକ ଅଧିକାରୀ ଏବଂ ବାଲୁକା ବେପାରୀଙ୍କ ମଧ୍ୟରେ ଥିବା ମଧୁର ସଂପର୍କ କାରଣରୁ ଏହାର ଚୋରା ଚାଲାଣ ହୋଇଥାଏ । ସ୍ଥଳପଥରେ ଟ୍ରାକ୍ଟର, ଟ୍ରକ୍, ଟ୍ରଲି ଯୋଗେ ନଦୀରୁ ବାଲି ପରିବହନ ହେଉଥିବାବେଳେ ସ୍ଥଳପଥରେ ଦେଶୀଡ଼ଙ୍ଗା, ମୋଟର ଲଞ୍ଚ ସହାୟତାରେ ବାଲି ପରିହବନ ହୋଇଥାଏ । ବୈତରଣୀ ନଦୀ ସମଗ୍ର ଓଡ଼ିଶାର ରାଜକୋଷକୁ ଶହଶହ କୋଟି ଟଙ୍କାର ରାଜସ୍ୱ ପ୍ରଦାନ କରିଥାଏ ।

# କୃଷିର ବିକାଶରେ ବୈତରଣୀରୁ ବାହାରିଥିବା ହଜାର ହଜାର ନାଳ, ଢୋର (ଗଳିଆ)ର ଗୁରୁତ୍ୱ

*(Role of Creeks in agricultural development)*

ବୈତରଣୀ-ବ୍ରାହ୍ମଣୀର ନିମ୍ନ ଅବବାହିକା ତ୍ରିକୋଣଭୂମି ଅଞ୍ଚଳ ଭାବେ ପରିଚିତ କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ କୃଷିର ପର୍ଯ୍ୟାପ୍ତ ସୁଯୋଗ ରହିଛି । ଏଠାରେ ମୁଖ୍ୟ ନଦୀ ସହିତ ଶହଶହ ସଂଖ୍ୟାରେ ଛୋଟବଡ଼ ନଳା, ଢୋର, ଗଳିଆ ଜାଲ ଭଳି ବିଛେଇ ହୋଇ ରହିଛନ୍ତି । ମାତ୍ର ଏଭଳି ଜଳଉତ୍ସମାନଙ୍କର ଉପଯୁକ୍ତ ବିନିଯୋଗ ହୋଇପାରୁ ନଥିବାରୁ ଏ ଅଞ୍ଚଳରେ କୃଷିର ବିକାଶ ସଂଭବପର ହୋଇପାରୁନାହିଁ ।




ବୈତରଣୀ-ବ୍ରାହ୍ମଣୀ ତ୍ରିକୋଣଭୂମି ଅଞ୍ଚଳରେ ଅନେକ ଛୋଟବଡ଼ ନଦୀ, ନାଳ, ଗଳିଆ, ଢୋର ମୁଖ୍ୟନଦୀ ସହିତ ସଂଯୁକ୍ତ ହୋଇଛନ୍ତି । ବିଶେଷକରି କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା, ରାଜନଗର ଏବଂ ଭଦ୍ରକ ଜିଲ୍ଲାର ଧାମନଗର, ଚାନ୍ଦବାଲି, ତିହିଡ଼ି, ବାସୁଦେବପୁର ଅଞ୍ଚଳରେ ବୈତରଣୀ ଓ ଏହାର ଉପନଦୀମାନଙ୍କ ସହିତ ବହୁତ ଛୋଟଛୋଟ ନଳା *(Creeks)* ସଂଯୁକ୍ତ ହୋଇଛନ୍ତି । ଏହି ନଳାଗୁଡ଼ିକର ଜଳ ସମୁଦ୍ର ଜୁଆର ଉପରେ ନିର୍ଭର କରିଥା'ନ୍ତି । ବୈତରଣୀର ଧାମରା ଓ

ତାଳଚୁଆ ମୁହାଁଣରେ ସମୁଦ୍ରରେ ଜୁଆର ହେଲେ ବୈତରଣୀ ଫୁଲିଯାଏ । ବୈତରଣୀର ଗର୍ଭ ଫୁଲିବା ଫଳରେ ବୈତରଣୀ ସହିତ ସଂଯୁକ୍ତ ହୋଇଥିବା ଏସବୁ ନଳା (ଗଳିଆ)ରେ ପାଣି ଭର୍ତ୍ତି ହୋଇଯାଏ । ବୈତରଣୀରୁ ବାହାରିଥିବା ଏସବୁ ନଳା ବିଶେଷକରି ନିକଟସ୍ଥ ବିସ୍ତୀର୍ଣ୍ଣ ଧାନକ୍ଷେତ ମଧ୍ୟକୁ ପ୍ରବେଶ କରିଥା'ନ୍ତି । ଏହିସବୁ ନଳାଗୁଡ଼ିକ ସମୁଦ୍ର ଜୁଆର ଉପରେ ନିର୍ଭର କରୁଥିବାରୁ ଜୁଆର ସମୟରେ ଫୁଲିଥା'ନ୍ତି ଏବଂ ଜୁଆର ଛାଡ଼ିଗଲେ ଏସବୁ ଶୁଖିଯାଏ । ଏମିତି ଶତାଧିକ ସଂଖ୍ୟାରେ ନଳା ବୈତରଣୀ ନଦୀର ନିମ୍ନ ଅବବାହିକାରେ ଦେଖିବାକୁ ମିଳେ ।

ବୈତରଣୀର ତ୍ରିକୋଣଭୂମି ଅଞ୍ଚଳରେ ଥିବା ବିସ୍ତୀର୍ଣ୍ଣ ପାଟଜମିମାନଙ୍କରୁ ଅନେକ ଛୋଟଛୋଟ ଜଳ ଉତ୍ସ ନିର୍ଗତ ହୋଇ ନଦୀ ଅଭିମୁଖେ ଯାତ୍ରା କରିଥା'ନ୍ତି କିମ୍ବା କେତେକ ସ୍ଥାନରେ ନଦୀରୁ ସରୁସରୁ ଧାର ବାହାରି ସ୍ଥଳଭାଗ ଆଡକୁ ମୁହାଁଇଥା'ନ୍ତି । ବୈତରଣୀର ତ୍ରିକୋଣଭୂମି ଅଞ୍ଚଳରେ କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ ଥିବା ଏସବୁ ନଳା (ଗଳିଆ)ର ଉପଯୁକ୍ତ ବ୍ୟବହାର କରାଯାଇପାରିଲେ ଏ ଅଞ୍ଚଳରେ କୃଷିକାର୍ଯ୍ୟର ବ୍ୟାପକ ବିକାଶ ଘଟିପାରନ୍ତା ।

ଏସବୁ ନଳା ନଦୀର ଯେଉଁ ସ୍ଥାନରେ ସଂଯୋଗ କରିଛନ୍ତି, ସେହିସବୁ ମୁହାଁଣରେ ଛୋଟ ଚେକ୍ ଡ୍ୟାମ୍ (ଚେକ୍ ଗେଟ୍) ନିର୍ମାଣ କରାଯାଇ ନଦୀ ଜଳକୁ ସଂରକ୍ଷଣ କରି ରଖିପାରିଲେ ପ୍ରତିକୂଳ ପରିସ୍ଥିତିରେ ଉକ୍ତ ମଧୁର ଜଳ ଚାଷ ପାଇଁ ବେଶ୍ ଉପଯୋଗୀ ହୋଇପାରିବ । ଗ୍ରୀଷ୍ମ ଋତୁରେ ବୈତରଣୀର ନିମ୍ନ ଭାଗରେ ଜଳ ଲୁଣା ହୋଇଯାଏ । ଯଦି ଏହା ପୂର୍ବରୁ ବୈତରଣୀର ଜଳକୁ ଉକ୍ତ ନଳାମାନଙ୍କରେ ସଂରକ୍ଷିତ କରି ରଖାଯାଇ ପାରନ୍ତା ତେବେ ଖରିଫ୍ ବ୍ୟତୀତ ରବି ଋତୁରେ ଏହି ଜଳ ଚାଷୀମାନଙ୍କୁ ସହାୟକ ହୋଇପାରନ୍ତା । ଏଥିପାଇଁ ସରକାରୀ ସ୍ତରରେ ଦୃଢ଼ ନିଷ୍ପତ୍ତି ନେବାର ମାନସିକତାର ଜରୁରୀ ରହିଛି ।

## ବୈତରଣୀ ନଦୀ ଅବବାହିକାରେ କୃଷି ଓ କୃଷକ

*(Agreecultural aspect in Baitaranee river Basin)*

ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ବସବାସ କରୁଥିବା ଲୋକେ କୃଷି ଉପରେ ନିର୍ଭର କରି ବଞ୍ଚିଥା'ନ୍ତି । ଧାନକୁ ଛାଡିଲେ ବୈତରଣୀ ଅବବାହିକା ଅଞ୍ଚଳରେ ଅନ୍ୟାନ୍ୟ ଅର୍ଥକରି ଫସଲ ଯଥା- ମୁଗ, ବିରି, କୋଳଥ, ମାଣ୍ଡିଆ, ଗହମ, ଯଅ ଭଳି ଶସ୍ୟ ଓ ରବି ଜାତୀୟ ଫସଲ ହେଉଥିବାବେଳେ ସୋରିଷ, ରାଶି, ସୂର୍ଯ୍ୟମୁଖୀ, ଚିନାବାଦାମ୍ ଭଳି ତୈଳବୀଜ ଫସଲ ମଧ୍ୟ ଭଲ ହୋଇଥାଏ । ସେହିଭଳି ବୈତରଣୀ ଜଳକୁ ବ୍ୟବହାର କରି କେନ୍ଦୁଝର, ମୟୂରଭଞ୍ଜ, ପଶ୍ଚିମସିଂହଭୂମି (ଝାଡ଼ଖଣ୍ଡ), ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ଚାଷୀମାନେ ବିପୁଳ ପରିମାଣରେ ପନିପରିବା ଫସଲ ଯଥା-କୋବି, ପୋଟଳ, ଜହ୍ନି, ଭେଣ୍ଡି, କଲରା, କାଙ୍କଡ, ପୋଇ, ଶାଗ, ଆଳୁ, ଲଙ୍କା, ବାଇଗଣ, ଟମାଟର, ବିନ୍, କୁନ୍ଦୁରି, କନ୍ଦମୂଳ ଚାଷ କରିଥା'ନ୍ତି ।



ବୈତରଣୀ ଉପତ୍ୟକାରେ ତରଭୁଜ ଚାଷ



ବୈତରଣୀ ଉପତ୍ୟକାରେ ପୋଟଳ ଚାଷ

ଯାଜପୁର ଜିଲ୍ଲାର ଯାଜପୁର, ଦଶରଥପୁର ଓ ବିଞ୍ଝାରପୁର ବ୍ଲକ୍ ଏବଂ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର ଓ ଚାନ୍ଦବାଲି ବ୍ଲକ୍‌ରେ ବୈତରଣୀ ନଦୀ କୂଳେକୂଳେ ବହୁ ପରିମାଣରେ ରାଶି ଫସଲ ହୋଇଥାଏ । ଏହି ଫସଲ ବିଶେଷକରି ଏକ ଖରାଟିଆ ଫସଲ ଏବଂ ଏପ୍ରିଲ୍-ମେ ମାସ ବେଳକୁ ଏହା ଅମଳ ହୋଇଥାଏ । ଏ ଅଞ୍ଚଳରୁ ଉତ୍ପାଦନ ହେଉଥିବା ରାଶି ସମଗ୍ର ଓଡ଼ିଶାର ବଜାରକୁ ନିୟନ୍ତ୍ରଣ କରିଥାଏ । ରାଶି (ଖସା) ତେଲ ଏକ ଔଷଧୀୟ ତୈଳ ଏବଂ ଓଡ଼ିଶାରେ ଏହାର ବିଶେଷ ଆଦର ରହିଛି ।

ସେହିଭଳି ବୈତରଣୀ ନଦୀ କୂଳରେ ଅବସ୍ଥିତ କେନ୍ଦୁଝର, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଅଞ୍ଚଳରୁ ବହୁ ପରିମାଣରେ ପନିପରିବା ଉତ୍ପନ୍ନ ହୋଇଥାଏ । ବୈତରଣୀର ନିମ୍ନ ଅବବାହିକା ଅଞ୍ଚଳ ବନ୍ୟା ପ୍ରଭାବିତ ହୋଇଥିବାରୁ ବନ୍ୟା ପରବର୍ତ୍ତୀ ସମୟରେ ଏ ଅଞ୍ଚଳରେ ମୁଗ, ବିରି ଭଳି ରବି ଫସଲ ପ୍ରଚୁର ମାତ୍ରାରେ ଅମଳ ହୋଇଥାଏ ।

ଏହାବ୍ୟତୀତ ବୈତରଣୀ ତ୍ରିକୋଣଭୂମି ଅଞ୍ଚଳରେ କେନ୍ଦ୍ରାପଡ଼ା, ଯାଜପୁର ଓ ଭଦ୍ରକ ଜିଲ୍ଲାରେ ଉଭୟ ମଧୁର ଓ ଲୁଣିପାଣି ଚିଙ୍ଗୁଡ଼ି ଚାଷ ଏକ ଲାଭଦାୟକ ଫସଲ ଭାବେ ସ୍ଥାନୀୟ ଅଞ୍ଚଳର ଚାଷୀମାନଙ୍କୁ ବେଶ୍ ସହାୟକ ହୋଇଥାଏ । କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ବ୍ଲକ୍ ଓ ଭଦ୍ରକ ଜିଲ୍ଲାର ଚାନ୍ଦବାଲି, ତିହିଡ଼ି ବ୍ଲକ୍ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷକୁ ଏଠାକାର ମୁଖ୍ୟ ଜୀବନଜୀବିକା କହିଲେ ଠିକ୍ ହେବ । ଏ ଅଞ୍ଚଳର ଲୋକେ ସାମୁଦ୍ରିକ ମାଛ ଓ ଚିଙ୍ଗୁଡ଼ି ଉପରେ ନିର୍ଭର କରି ଚଳିଥା'ନ୍ତି ।

# କନିକା ରାଜାଙ୍କ ଦ୍ୱାରା ବୈତରଣୀ ଉପତ୍ୟକାରେ ନଡ଼ିଆ ଚାଷ

## *(Coconut culture by Past Kanika Kings)*

କନିକା ରାଜ୍ୟର ବୈତରଣୀ ଉପକୂଳ ଅଞ୍ଚଳରେ ବ୍ୟାପକ ନଡ଼ିଆ ଚାଷ ପାଇଁ ଏଠାକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ (ଖ୍ରୀ·ଅ· ୧୯୦୯-ଖ୍ରୀ·ଅ·୧୯୪୮) ଯେଉଁ ଉଦ୍ୟମ କରିଥିଲେ ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଆଜକୁ ଶହେ ବର୍ଷ ତଳେ କନିକା ରାଜ୍ୟର ବୈତରଣୀ କୂଳେକୂଳେ ଲକ୍ଷାଧିକ ସଂଖ୍ୟାରେ ନଡ଼ିଆ ଚାଷ କରାଯାଇଥିଲା । ନଡ଼ିଆ ଚାଷ ପାଇଁ କନିକା ମାଟି ଉପଯୁକ୍ତ କି ନୁହେଁ, ସେଥିପାଇଁ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ମାଟି ପରୀକ୍ଷା ପାଇଁ ଓଡ଼ିଶା ବାହାରକୁ ପଠାଇଥିଲେ । କାଳିଭଞ୍ଜଡ଼ିଆ (ବୈତରଣୀ ନଦୀ ମଧ୍ୟ ଭାଗରେ ଥିବା ବିସ୍ତୀର୍ଣ୍ଣ ସ୍ଥଳଭାଗ ଓ ଜଙ୍ଗଲ) ଓ ଗୁପ୍ତି ଅଞ୍ଚଳ  ନଡ଼ିଆ ଚାଷ ପାଇଁ ସର୍ବୋତ୍କୃଷ୍ଟ ବୋଲି ବିଶେଷଜ୍ଞମାନେ ରିପୋର୍ଟ ଦେବାପରେ ନିଜ ରାଜ୍ୟରେ ନଡ଼ିଆ ଚାଷର ବ୍ୟାପକ ପ୍ରସାର ପାଇଁ ରାଜା ସିଂହଳ (ଶ୍ରୀଲଙ୍କା)ର ରାଜଧାନୀ କଲମ୍ବୋରେ ଥିବା 'ସିଂହଳ ଏଗ୍ରିକଲ୍‌ଚର ସୋସାଇଟି'କୁ ୧୯୧୧ ମସିହା ଅକ୍ଟୋବର ୧୦ ତାରିଖରେ ଯେଉଁ ପତ୍ର ଲେଖିଥିଲେ ତାହାର ସନ୍ତୋଷଜନକ ଉତ୍ତର ମିଳିଥିଲା । ରାଜାଙ୍କ ଅନୁରୋଧକ୍ରମେ ଏହି ସୋସାଇଟି କନିକାରେ ଜଣେ ନଡ଼ିଆ ଚାଷ ବୈଜ୍ଞାନିକ *J.B.D. Silva*ଙ୍କୁ ନିଯୁକ୍ତି ଦେଇଥିଲେ । ମିଷ୍ଟର ସିଲ୍‌ଭା ଏଠାକୁ ଆସି ତାଙ୍କ ସର୍ଭେ ରିପୋର୍ଟରେ ଯାହା ଉଲ୍ଲେଖ କରିଥିଲେ ତାହାର କିୟଦଂଶ ଏହିପରି- *"As may be seen from the enclosed testimonials, I have a very good knowledge of not only coconut planting, but of rubber, tea, arecanut etc."* । କନିକାର ରାଜା ଏଥିରେ ଉତ୍ସାହିତ ହୋଇ ଏହାର ମାର୍ଜିନ୍‌ରେ ଲେଖିଥିଲେ କନିକାରେ ରବର ଚାଷ ହୋଇପାରିବ କି ନାହିଁ ମିଷ୍ଟର ସିଲ୍‌ଭା ଆମକୁ ନିଜର ମତାମତ ଦେଇପାରିବେ । ଏହାପରେ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସିଲ୍‌ଭାଙ୍କୁ ଇନିସ୍‌ପେକ୍ଟର ଅଫ୍ କକୋନଟ୍ କଲ୍‌ଟିଭେସନ୍ ପଦବୀରେ ନିଯୁକ୍ତି ଦେଇଥିଲେ । ନଡ଼ିଆ ଗଛରେ ପୋକ ଲାଗିବା ଏବଂ ଏହାର ଦମନ ପାଇଁ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଶ୍ରୀଲଙ୍କାର କାଣ୍ଡି ସହରର ମିଜେଲ୍ ନାମକ ଜଣେ କୃଷି ବୈଜ୍ଞାନିକଙ୍କୁ ମାସିକ ୩୦ ଟଙ୍କା ଦରମାରେ କନିକାରେ ନିଯୁକ୍ତି ଦେଇଥିଲେ ।  *(Acc No. 269/KNK, Orissa State Archives, Bhubaneswar)* ଏ ମହାଶୟ କନିକାକୁ ଆସିବା ପରେ ପ୍ରାୟ ୨୬,୦୦୦ ନାରିକେଳ ବୃକ୍ଷ ରୋପଣ କରି ବେଶ୍ ସଫଳତା ହାସଲ କରିପାରିଥିଲେ । ୧,୦୦,୦୦୦ ନାରିକେଳ ବୃକ୍ଷରୋପଣ କରିବାକୁ ରାଜା ମହୋଦୟଙ୍କ ଇଛା ଅଛି । କନିକା ରାଜ୍ୟର ସ୍ଥାନେସ୍ଥାନେ  ବିସ୍ତୃତ ନାରିକେଳ ଉଦ୍ୟାନର କାର୍ଯ୍ୟ କ୍ଷିପ୍ର ଗତିରେ ଚାଲିଅଛି  ବୋଲି ଶଶିଭୂଷଣ ରାୟ ତାଙ୍କ କନିକା ଦର୍ଶନରେ ଉଲ୍ଲେଖ କରିଥିଲେ ।

**(ଶଶି ଭୂଷଣ ରାୟ, 'କନିକା ଦର୍ଶନ'-୧୯୧୩, ପୃଷ୍ଠା-୨୮, ୨୯) ।**

ଆଜି ବି କନିକା ଅଞ୍ଚଳରେ ଲକ୍ଷାଧିକ ସଂଖ୍ୟାରେ ନଡ଼ିଆ ଗଛମାନଙ୍କୁ ଦେଖିଲେ ସେଦିନର କନିକା ରାଜାଙ୍କ ଦୂରଦୃଷ୍ଟି ନଜରକୁ ଆସିଥାଏ । କନିକା ରାଜାଙ୍କ ଏହି ସଫଳତା ପରେପରେ ରାଜ୍ୟରେ ଅନ୍ୟାନ୍ୟ ନଦୀ ଉପତ୍ୟକା ଅଞ୍ଚଳରେ ନଡ଼ିଆ ଚାଷ ଆରଂଭ ହୋଇଥିଲା ।

## ବୈତରଣୀ ଅବବାହିକାର ସବୁଜ ବିପ୍ଳବ: କେନ୍ଦୁଝର ଜିଲ୍ଲା ଭୂୟାଁ-ଜୁଆଙ୍ଗ ପିଢ ଅନ୍ତର୍ଗତ ତରମାକାନ୍ତର ଚା' ବଗିଚା

*(Tea Garden in Baitaranee river basin of Kendujhar)*

ଦିନେ ଜାପାନ୍, ଫ୍ରାନ୍ସ, ଜର୍ମାନୀ, ଲଣ୍ଡନ୍, ଯୁକ୍ତରାଷ୍ଟ୍ର ଆମେରିକା, ସୋଭିଏତ୍ ଋଷ୍, କାନାଡ଼ା ଭଳି ଦେଶମାନଙ୍କରେ ବେଶ୍ ନାଁ କରିଥିବା କେନ୍ଦୁଝରର ତରମାକାନ୍ତ ଚା' ଆଜି ସ୍ୱପ୍ନ ଓ ଇତିହାସ ପାଲଟିଛି । ସ୍ୱାଦରେ ଦାର୍ଜିଲିଂ ଚା'କୁ ଟପି ଯାଇଥିବା କେନ୍ଦୁଝର ଜିଲ୍ଲାର 'ଜୁଆଙ୍ଗ-ଭୂୟାଁ ପିଢ' ତରମାକାନ୍ତ ଚା' ଏବେ ବି ଅନେକଙ୍କ ସ୍ମୃତିରେ ତାଜା ହୋଇରହିଛି ।

ରାଜ୍ୟ ସରକାରଙ୍କ ଆନ୍ତରିକତାର ଅଭାବରୁ ଏଭଳି ଏକ ଲାଭଦାୟକ ଚା' ପ୍ରକଳ୍ପ ଚାହୁଁଚାହୁଁ ବୁଡ଼ିଗଲା । ଆଜିର ଦିନରେ ମଧ୍ୟ ତରମାକାନ୍ତ ଚା' ବଗିଚାରେ ଲକ୍ଷାଧିକ ଥୁଣ୍ଟା ଚା' ଗଛ



ବୈତରଣୀ ଅବବାହିକାର ବିଶ୍ୱପ୍ରସିଦ୍ଧ ତରମାକାନ୍ତ ଚା' ବଗିଚା

ନିରବରେ ଠିଆ ହୋଇଛନ୍ତି । ଦିନେ ଏହି ଚା' ବଗିଚାରେ ବହୁ ସଂଖ୍ୟାରେ ସୌଖୀନ ଗାଡ଼ି ଲାଗୁଥିଲା, ବହୁ ସଂଖ୍ୟାରେ ବଡ଼ବଡ଼ ଟ୍ରକ୍ ଲାଗୁଥିଲା, ଏଠାରେ ବେଲ୍‌ଜିୟମ୍ କାଚରେ ଏକ ସୌଖୀନ ଅତିଥି ଗୃହ ପ୍ରତିଷ୍ଠା ହୋଇଥିଲା, ବହୁ ସଂଖ୍ୟାରେ ବିଦେଶୀ ପର୍ଯ୍ୟଟକ, ବିଶେଷଜ୍ଞ ଓ ବ୍ୟବସାୟୀ ଏଠାକୁ ଆସୁଥିଲେ, ପ୍ରତିଦିନ ଏଠାରୁ ସ୍ଥାନୀୟ ଭୂୟାଁ, ଜୁଆଙ୍ଗ ମହିଳା, ପୁରୁଷମାନେ ଚା' ପତ୍ର ସଂଗ୍ରହ କରୁଥିଲେ, ଚା' ପତ୍ରର ପ୍ରୋସେସିଂ କରାଯାଉଥିଲା, ପ୍ୟାକେଟିଂ କରାଯାଉଥିଲା । କହିବାକୁ ଗଲେ ହଜାର ହଜାର ସଂଖ୍ୟାରେ ଚା' କଂପାନୀ କର୍ମଚାରୀ, ଚା' ପତ୍ର ତୋଳାଳି ଏବଂ ବିଦେଶୀ ପର୍ଯ୍ୟଟକ, ବ୍ୟବସାୟୀଙ୍କ କୋଳାହଳରେ ଡରମାକାନ୍ତର ଏହି 'ଭୂୟାଁ-ଜୁଆଙ୍ଗ ପିଢ' ଅଞ୍ଚଳ ବେଶ୍ ଚଳଚଞ୍ଚଳ ହୋଇଉଠୁଥିଲା । ଆଜି କିନ୍ତୁ ଶ୍ରୀହିନ ହୋଇପଡ଼ିଛି ପୃଥିବୀ ପ୍ରସିଦ୍ଧ ଏହି ଚା' ବଗିଚା । ସବୁ ଖାଁ ଖାଁ ଓ ଶୂନ୍‌ଶାନ୍ । ଜଣେ ହେଲେ ଶ୍ରମିକ ନାହାନ୍ତି । ମାତ୍ର ସେମାନଙ୍କର ପାଉଣା ବାକି ରହିଯାଇଛି । ଆଉ ବି ଏଠାକାର ଚା' ବିଦେଶକୁ ରପ୍ତାନୀ ହେଉନି ।

ଭାରତରେ ବିଶେଷକରି ହିମାଳୟ ପାର୍ବତ୍ୟାଞ୍ଚଳରେ ଚା' ଚାଷ ପାଇଁ ଅନୁକୂଳ ପରିବେଶ ରହିଥିବାବେଳେ ଓଡ଼ିଶାରେ କୋରାପୁଟ ଓ କେନ୍ଦୁଝରରେ ମଧ୍ୟ ଚା' ଚାଷ ପାଇଁ ଉପଯୁକ୍ତ ପରିବେଶ ଓ ପାଣିପାଗ ଥିବାର ଲକ୍ଷ୍ୟ କରି ୧୯୮୨ ମସିହାରେ ରାଜ୍ୟ ସରକାରଙ୍କ ଉଦ୍ୟମରେ କେନ୍ଦୁଝରର 'ଜୁଆଙ୍ଗ-ଭୂୟାଁ ପିଢ' ଅନ୍ତର୍ଗତ ଡରମାକାନ୍ତରେ ଏକ ଚା' ପ୍ରକଳ୍ପ ଆରଂଭ କରାଯାଇଥିଲା । କେନ୍ଦୁଝର ଜିଲ୍ଲାର ଡରମାକାନ୍ତରେ ଚା' ଚାଷ ଆରଂଭ କରିବା ନେଇ ରାଜ୍ୟ ସରକାର ପଶ୍ଚିମବଙ୍ଗର ଏକ ଚା' କଂପାନୀ 'ଟିଏମ୍ ଆଣ୍ଡ ଏମ୍‌ସି' (ଟି ମାନୁଫାକ୍‌ଚରିଂ ଆଣ୍ଡ ମାର୍କେଟିଂ କନ୍‌ସଲ୍‌ଟାଣ୍ଟ ପ୍ରାଇଭେଟ୍ ଲିମିଟେଡ୍ କଂପାନୀ)କୁ ନିମନ୍ତ୍ରଣ କରିଥିଲେ । ଏହି ଚା' କଂପାନୀ ଏବଂ ଓଡ଼ିଶା ସରକାର ମିଳିତ ଭାବେ 'ଓଡ଼ିଶା ଟି ପ୍ଲାଣ୍ଟେସନ୍ ଲିଃ' ନାମରେ ଏକ ସଂସ୍ଥା ଗଠନ କରି କେନ୍ଦୁଝରର ଡରମାକାନ୍ତରେ ବିଧିବଦ୍ଧ ଭାବେ ଚା' ଚାଷ ଆରଂଭ କରିଥିଲେ ।

୧୯୮୩ ମସିହାରେ ପ୍ରଥମେ ଡରମାକାନ୍ତ ଜଙ୍ଗଲରେ ମାତ୍ର ୧୦ ହେକ୍ଟର ଜମିରେ ପରୀକ୍ଷାମୂଳକ ଭାବେ ଚା' ଚାଷ କରାଗଲା ଏବଂ ଏହା ଏତେ ମାତ୍ରାରେ ସଫଳତା ପାଇଲା ଯେ, ଏହାର ବର୍ଷେ ଦୁଇ ବର୍ଷ ପରେ ୪୦୦ ହେକ୍ଟର ଜମିରେ ଚା' ଚାଷ କରାଗଲା । ପ୍ରାୟ ୧୯୮୭ ମସିହା ବେଳକୁ ଡରମାକାନ୍ତ ଜଙ୍ଗଲରେ ୧୧୫୦ ହେକ୍‌ଟର ଜମିରେ ଚା' ଚାଷ କରାଯାଇ ସମଗ୍ର ଓଡ଼ିଶାର କୃଷି ଇତିହାସରେ ଏକ ନୂଆ ଅଧ୍ୟାୟ ଆରଂଭ ହୋଇଥିଲା । ୧୯୮୭ ମସିହାରେ 'ଓଡ଼ିଶା ଟି ପ୍ଲାଣ୍ଟେସନ୍ ଲିଃ' ରେକର୍ଡ ପରିମାଣର ୨,୩୫,୦୦୦ କିଲୋଗ୍ରାମ୍ ଚା' ବିଦେଶକୁ ରପ୍ତାନୀ କରି ସମଗ୍ର ଦେଶରେ ଏକ ବିରଳ ରେକର୍ଡ ସ୍ଥାପନ କରିପାରିଥିଲା । ଆଉ ମଧ୍ୟ ସେତେବେଳେ ଡରମାକାନ୍ତ ଚା'କୁ ନେଇ ସମଗ୍ର ରାଜ୍ୟ ତଥା ରାଜ୍ୟ ବାହାରେ ବେଶ୍ ଚର୍ଚ୍ଚା ଆରଂଭ ହୋଇଥିଲା । ଏବେ ବି ଏହି ସଂସ୍ଥାର ଇନ୍‌ଭଏସ୍ ରେକର୍ଡରେ ଜାପାନ୍, ଫ୍ରାନ୍‌ସ, ଜର୍ମାନୀ, ଲଣ୍ଡନ୍, ଯୁକ୍ତରାଷ୍ଟ୍ର ଆମେରିକା, ସୋଭିଏତ୍

ରଷ, କାନାଡା ଭଳି ଦେଶମାନଙ୍କୁ ଚା' ରପ୍ତାନୀ ହୋଇଥିବାର ଦଲିଲ୍ ସତେଜ ହୋଇରହିଛି ।

ଓଡ଼ିଶା ସରକାର ଓ ଉକ୍ତ କଂପାନୀର ମିଳିତ ଉଦ୍ୟମରେ ଗଢାଯାଇଥିବା 'ଓଡ଼ିଶା ଟି ପ୍ଲାଣ୍ଟେସନ୍ ଲିଃ' ଦେଶ ବିଦେଶର ବିଭିନ୍ନ ସ୍ଥାନକୁ ଚା' ରପ୍ତାନୀ କରି ବେଶ୍ ଲାଭବାନ ହୋଇଉଠିଲା । ଏହି ଲାଭ ଯୋଗୁଁ ଚା' ବଗିଚାରେ କାମ କରୁଥିବା କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ, ଭୂୟାଁ ମହିଳା ଓ ପୁରୁଷମାନେ ମଧ୍ୟ ଦି' ପଇସା ପାଇପାରିଲେ ଏବଂ ସେମାନଙ୍କ ସଂସାର ବେଶ୍ ସୁରୁଖୁରୁରେ ଚାଲିବା ଆରଂଭ କରିବାକୁ ଲାଗିଲା । ତରମାକାନ୍ତ ଚା' ଅଧିକ ସ୍ୱାଦଯୁକ୍ତ ଥିବାରୁ ବିଦେଶ ବଜାରରେ ଏହା ଦାର୍ଜିଲିଂ ଚା'କୁ ମଧ୍ୟ ପଛରେ ପକାଇ ନିଜର ବ୍ୟାବସାୟିକ ସଫଳ ଯାତ୍ରା ଅବ୍ୟାହତ ରଖିଥିଲା ।

ଅପରପକ୍ଷେ, ଚା' ଚାଷ ପାଇଁ ଯେଉଁଭଳି ମାଟି, ଜଳବାୟୁ, ପାଣିପାଗ, ତାପମାତ୍ରା, ଆର୍ଦ୍ରତା ଆବଶ୍ୟକ ତାହା ତରମାକାନ୍ତ ଜଙ୍ଗଲରେ ମିଳିବାରୁ ଚା' ଚାଷ ବେଶ୍ ସୁରୁଖୁରୁରେ ଆଗେଇ ଚାଲିଲା । ଏହି ଅଞ୍ଚଳଟି ସମୁଦ୍ରପତ୍ତନଠାରୁ ୧୮୦୦ ଫୁଟ୍‌ରୁ ୨୨୦୦ ଫୁଟ ଉଚ୍ଚତାରେ ଥିବା ସହିତ ଏଠାରେ ପୁଣ୍ୟତୋୟା ବୈତରଣୀ ନଦୀ ଓ ଏହାର ଦୁଇଟି ପ୍ରମୁଖ ଉପନଦୀ ରାଣୀମା ନଳା ଏବଂ ଅନ୍ୟ ଏକ ଜଳ ଉତ୍ସର ଜଳ ମଧ୍ୟ ଚା' ଚାଷ ପାଇଁ ସହାୟକ ହୋଇଥିଲା । ଗ୍ରୀଷ୍ମଦିନେ ତରମାକାନ୍ତ ଅଞ୍ଚଳର ସର୍ବାଧିକ ତାପମାତ୍ରା ୪୪ ଡିଗ୍ରୀ ସେଣ୍ଟିଗ୍ରେଡ୍ ଏବଂ ଶୀତଦିନେ ସର୍ବନିମ୍ନ ତାପମାତ୍ରା ୦ (ଶୂନ) ଡିଗ୍ରୀ ସେଣ୍ଟିଗ୍ରେଡ୍ ରହିବା କାରଣରୁ ଏହା ଚା' ଚାଷ ପାଇଁ ଅନୁକୂଳ ସାବ୍ୟସ୍ତ ହୋଇଥିଲା । ସେହିଭଳି ଏଠାରେ ଆର୍ଦ୍ରତାର ମାତ୍ରା ୬୦ ରୁ ୯୦ ପ୍ରତିଶତ ରହିବା ଏବଂ ବାର୍ଷିକ ହାରାହାରି ବୃଷ୍ଟିପାତ ୧,୦୦୦ ମିମିରୁ ୨୫୦୦ ମିମି ମଧ୍ୟରେ ରହିବା ଆଦି ଚା' ଚାଷ ପାଇଁ ବେଶ୍ ସହାୟକ ହେବାରୁ ଚା' ଚାଷ ଖୁବ୍ ଭାବରେ ଆଗେଇପାରିଲା ।

୧୯୮୩ ମସିହାରୁ ଏଠାରେ କାରବାର ଆରଂଭ ହୋଇ ୨୦୦୨ ମସିହା ବେଳକୁ ବ୍ୟବସାୟ ସଫଳତାର ଶୀର୍ଷକୁ ଛୁଇଁ ପାରିଥିଲା । ଏଠାରୁ ଉତ୍ପାଦିତ ଚା'ର ଏକ ସ୍ୱତନ୍ତ୍ର ଚାହିଦା ବିଶ୍ୱବଜାରେ ରହିଥିଲା ଏବଂ ଆରଂଭ ହେବା ଦିନୁ ଲାଭରେ ଚାଲି ଆସିଥିବା ଏହି ପ୍ରକଳ୍ପଟି ହଠାତ୍ ୨୦୦୩ ମସିହାବେଳକୁ ଧିମେଇ ଯାଇଥିଲା । ସରକାରଙ୍କ ଆନ୍ତରିକତାର ଅଭାବ, ପରିଚାଳନାଗତ ତ୍ରୁଟି, ପ୍ରାଶାସନିକ ଅଧିକାରୀଙ୍କ ସ୍ୱାର୍ଥଖୋର ପ୍ରବୃତ୍ତି, ଦୁର୍ନୀତିର ପ୍ରବେଶ ଏବଂ ବ୍ୟାପକ ଅର୍ଥ ହେରଫେର୍ ଫଳରେ ଏହି ପ୍ରକଳ୍ପଟି କ୍ରମେ ବନ୍ଦ ହୋଇଯିବାକୁ ବସିଲା । ୨୦୦୩-୦୪ ମସିହା ବେଳକୁ ଏହା ସଂପୂର୍ଣ୍ଣ ବନ୍ଦ ହୋଇଗଲା । ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ତରମାକାନ୍ତରେ ଗଢି ଉଠିଥିବା ଫ୍ୟାକ୍ଟ୍ରି, ମୂଲ୍ୟବାନ ଯନ୍ତ୍ରାଂଶ, କର୍ମଚାରୀଙ୍କ କ୍ୱାଟର, ବେଲଜିୟମ୍ କାଚରେ ନିର୍ମିତ ଆକର୍ଷଣୀୟ ତଥା ଖୁବ୍ ବିଳାସମୟ ଅତିଥିଗୃହ ଓ ସର୍ବୋପରି ହଜାର ହଜାର ହେକ୍ଟର ପରିମିତ ଚା' ବଗିଚା ଧ୍ୱଂସ ପାଇଯାଇଛି । କଂପାନୀ କାମରେ ଲାଗିଥିବା ଛୋଟବଡ଼ କେତୋଟି ସୌଖୀନ ଗାଡି ମଧ୍ୟ ଧ୍ୱଂସ ପାଇ ମାଟିରେ ମିଶିଗଲାଣି ।

## ବୈତରଣୀ ନଦୀ ଅବବାହିକାରେ ରବର ଚାଷ: କେଶରୀ ରବର ପ୍ଲାଣ୍ଟେସନ୍, ଏକ ସଫଳ କାହାଣୀ

*(Rubber Plantation in the Baitaranee river Basin)*




ଆନ୍ଧ୍ରରୁ କଦଳୀ, ମାଛ, ଅଣ୍ଡା, ପଶ୍ଚିମବଙ୍ଗରୁ ଆଳୁ, ବାଇଗଣ, ଟମାଟର ଓ ଅନ୍ୟାନ୍ୟ ପନିପରିବା, ମହାରାଷ୍ଟ୍ରରୁ ପିଆଜ, ପଞ୍ଜାବରୁ ଗହମ, ଚାଉଳ ନ ଆସିଲେ ଓଡ଼ିଆଙ୍କ ଚୂଲି ଜଳେନି । ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ ହୋଇ ମଧ୍ୟ କୃଷିଜାତ ସାମଗ୍ରୀ ପାଇଁ ଅନ୍ୟ ଉପରେ ସର୍ବଦା ନିର୍ଭରଶୀଳ । ଏମିତିକି ଏସବୁ ସାମଗ୍ରୀ ଅନ୍ୟ ରାଜ୍ୟମାନଙ୍କରୁ ଦିନଟିଏ ଆସିବା ବନ୍ଦ ହୋଇଗଲେ ଓଡ଼ିଶାର ବଜାରରେ ଚହଳ ସୃଷ୍ଟି ହୋଇଯାଉଛି । ଓଡ଼ିଶାରେ ଚାଷ ଓ ଚାଷୀଙ୍କ ଭାଗ୍ୟ ଅନ୍ଧାର ମଧ୍ୟକୁ ଠେଲି ହୋଇଯାଉଥିବାବେଳେ ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ କରାଯାଉଥିବା ରବର ଚାଷ ଏକ ଶୁଭ ଖବର ନିଶ୍ଚୟ ।

ବୈତରଣୀ ନଦୀ ଅବବାହିକା ଅଞ୍ଚଳ ରବର ଚାଷ ପାଇଁ ବେଶ୍ ଅନୁକୂଳ ହୋଇଥିବାରୁ ଓଡ଼ିଶାରେ ଏହି ଚାଷର ଆଦର ବଢ଼ିଛି । ଓଡ଼ିଶାରେ ବିଶେଷକରି ବୈତରଣୀ ନଦୀ ଅବବାହିକା ଅଞ୍ଚଳର କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ବହୁଳ ପରିମାଣରେ ରବର ଚାଷ କରାଯାଉଛି । ଉଭୟ ସରକାରୀ ଓ ବେସରକାରୀ ଉଦ୍ୟମରେ ଏ ଅଞ୍ଚଳରେ ରବର ଚାଷ କରାଯାଇଆସୁଛି । ବୈତରଣୀ ନଦୀ ଅବବାହିକା ଅଞ୍ଚଳ ଅନ୍ତର୍ଗତ ମୟୂରଭଞ୍ଜ ଜିଲ୍ଲାର ରରୁଆଁ, ଶୁକ୍ରୁଲି, ଯଶୀପୁର, କରଞ୍ଜିଆ, ବାଙ୍ଗିରିପୋଷି, ବିଶୋୟୀ ଆଦି ବ୍ଲକ୍‌ରେ ଏବଂ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ରେ ଚାଷୀମାନେ ରବର ଚାଷ ପ୍ରତି ବେଶ୍ ଆଗ୍ରହ ପ୍ରକାଶ କରୁଥିବା ଲକ୍ଷ୍ୟ କରାଯାଇଛି ।

ବୈତରଣୀ ନଦୀ ଅବବାହିକାରେ କରାଯାଉଥିବା ରବର ଚାଷର ଏକ ସଫଳ କାହାଣୀ ହେଉଛି 'ଓଡ଼ିଶା ବନ ଉନ୍ନୟନ ନିଗମ' (ଓଏଫ୍‌ଡିସି) *(Odisha Forest Development Corporation Ltd, Karanjia Division)* ଆନୁକୂଲ୍ୟରେ ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍ ଅନ୍ତର୍ଗତ ଗୁଡ଼ାମରା ଗ୍ରାମ ପଞ୍ଚାୟତର କେଶରୀଠାରେ ଥିବା ରବର ପ୍ଲାଣ୍ଟେସନ୍ ପ୍ରକଳ୍ପ । ୧୯୯୦ ମସିହାରେ ବୈତରଣୀ ନଦୀ କୂଳରେ ଅବସ୍ଥିତ କେଶରୀ ଗାଁର ୧୪ ହେକ୍ଟର ଜମିରେ ୬ ହଜାର ରବର ଗଛ ଲଗାଯାଇଥିଲା । ୧୯୯୦ ମସିହାରେ ରବର ଗଛର ଚାରା ରୋପଣ କରାଯିବାର



ପ୍ରାୟ ୧୨ ବର୍ଷ ପରେ ଅର୍ଥାତ୍ ୨୦୦୨ ମସିହା ବେଳକୁ ଏଠାରୁ ବିଧିବଦ୍ଧ ଭାବେ ରବର ଉତ୍ପାଦନ ଆରଂଭ ହୋଇଥିଲା । 'ଓଡ଼ିଶା ବନ ଉନ୍ନୟନ ନିଗମ' ପକ୍ଷରୁ ଏହି ପ୍ରକଳ୍ପଟି ଆରଂଭ କରାଯାଇଥିଲା । ବୈତରଣୀ ଅବବାହିକାରେ ଉପଯୁକ୍ତ ତାପମାତ୍ରା, ଜଳବାୟୁ, ଆର୍ଦ୍ରତା ପାଇବା କାରଣରୁ ଏଠାରେ ରବର ଚାଷ ବେଶ୍ ସଫଳତା ହାସଲ କରିପାରିଛି । ସମଗ୍ର ଓଡ଼ିଶାରେ 'କେଶରୀ ରବର ପ୍ରକଳ୍ପ'ର ଏକ ନିଆରା ପରିଚୟ ରହିଛି । ରବର ଏକ ଅର୍ଥକରୀ ଫସଲ ହୋଇଥିବାବେଳେ ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍‌ର ବଡ଼କେଶରୀଠାରେ ଚିରସ୍ରୋତା ବୈତରଣୀ ଉପତ୍ୟକାରେ ଥିବା ଏହି ପ୍ରକଳ୍ପଟି ରାଜ୍ୟର ଅନ୍ୟ ଏକ ଲାଭଦାୟକ କୃଷି ପ୍ରକଳ୍ପ ଭାବେ ସୁନାମ ଅର୍ଜନ କରିପାରିଛି ।

ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ରବର ପ୍ରକଳ୍ପ ଅଫିସରେ 'ଓଡ଼ିଶା ବନ ଉନ୍ନୟନ ନିଗମ'ର ଜଣେ ସୁପରଭାଇଜର, ଦୁଇ ଜଣ କ୍ଷେତ୍ର ସହାୟକ ଏବଂ ୬ ଜଣ କ୍ଷେତ୍ର ଜଗୁଆଳଙ୍କ ସମେତ ମୋଟ ୯ ଜଣ କର୍ମଚାରୀ ନିୟୋଜିତ ରହିଛନ୍ତି । ଏମାନେ ସମସ୍ତେ କରଞ୍ଜିଆ ଡିଭିଜନ କାର୍ଯ୍ୟାଳୟ ଦ୍ୱାରା ନିୟନ୍ତ୍ରିତ ହୋଇଥା'ନ୍ତି ।

ରବର ଗଛରୁ ରବର ସଂଗ୍ରହ ପ୍ରଣାଳୀ ମଧ୍ୟ ଖୁବ୍ ସହଜ ଓ ସୁବିଧାଜନକ । ବର୍ଷର ନଭେମ୍ବରରୁ ଫେବ୍ରୁଆରୀ ମଧ୍ୟରେ ମୁଖ୍ୟତଃ ଚାରି ମାସ ରବର ସଂଗ୍ରହ କରାଯାଇଥାଏ । ଅନ୍ୟ ସମୟରେ ରବର ଅଠା ସଂଗ୍ରହ କାର୍ଯ୍ୟ ବନ୍ଦ ରହିଥାଏ । କର୍ମଚାରୀମାନେ ପ୍ରଥମେ ଗଛଗୁଡ଼ିକର ଗଣ୍ଡିକୁ ଭଲ ଭାବେ ସଫା କରି ଛୁରୀ ସହାୟତାରେ ଗଛର ବକଳକୁ ଛେଲି ଦିଅନ୍ତି । ଏହାକୁ *Tree Tapping* କୁହାଯାଏ । ଏହାଦ୍ୱାରା ଗଛରୁ ରସ ବା କ୍ଷୀର ପ୍ରବାହିତ ହୋଇଥାଏ । ଏଥିରେ ଏକ କାହାଳୀ ଲଗାଯାଇ ତଳେ ଏକ ପାତ୍ର ଖଞ୍ଜାଯାଇଥାଏ । ରବର ଗଛର ରସ କାହାଳୀ ମାଧ୍ୟମରେ ତଳେ

ଖଞ୍ଜାଯାଇଥିବା ଉକ୍ତ ପାତ୍ରରେ ସଂଗୃହୀତ ହୋଇଥାଏ । 'ଟ୍ରି ଟ୍ୟାପିଂ'ର ଦୁଇ ଘଣ୍ଟାପରେ ଗଛରୁ କ୍ଷୀର ଆସିଥାଏ । ସମସ୍ତ ଗଛମାନଙ୍କରୁ ରବର କ୍ଷୀର ସଂଗ୍ରହ କରାଯିବା ପରେ ଏହାର ପ୍ରୋସେସିଂ କରାଯାଇଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣର ଟ୍ରେ ମଧ୍ୟରେ ଦୁଇ ଲିଟର ରବର କ୍ଷୀର ସହିତ ଦୁଇ ଲିଟର ପାଣି ଏବଂ କିଛି ପରିମାଣର ସାଇଟ୍ରିକ୍ ଏସିଡ୍ ମିଶାଯାଇ ଏହାକୁ ଭଲ ଭାବେ ଗୋଳେଇ ଏକ ମିଶ୍ରଣ ପ୍ରସ୍ତୁତ କରାଯାଏ । ଏହି ମିଶ୍ରଣକୁ ଗୋଟିଏ ଦିନ ଶୁଖାଇବା ପରେ ଅନ୍ୟ ଏକ ରୋଲର ମେସିନ୍‌ରେ ପୂରାଇ ରବର ସିଟ୍‌ମାନ ପ୍ରସ୍ତୁତ କରାଯାଏ । ଏହି ରବର ସିଟ୍‌ଗୁଡିକ ପ୍ରସ୍ତୁତ ହୋଇଯିବାପରେ ଏହାକୁ କେଶରୀ ପ୍ରକଳ୍ପ କାର୍ଯ୍ୟାଳୟରୁ କରଞ୍ଜିଆ ଡିଭିଜନ ଅଫିସକୁ ପଠାଯାଏ । ସେଠାରୁ ଦେଶବିଦେଶକୁ ରପ୍ତାନୀ କରାଯାଇଥାଏ ।

ଓଡ଼ିଶାର କେଶରୀ ରବରର ବିଦେଶରେ ଏକ ନିଆରା ଚାହିଦା ରହିଛି । ବିଶେଷକରି ଦେଶର ମୁମ୍ବାଇ, କୋଲ୍‌କାତା, ବେଙ୍ଗୁଲୁରୁ, ଦିଲ୍ଲୀ ଭଳି ମହାନଗରକୁ ପଠାଯିବା ସହିତ ଲଣ୍ଡନ, ଜାପାନ୍, ଫ୍ରାନ୍‌ସ, ଆମେରିକାକୁ ମଧ୍ୟ ରପ୍ତାନୀ କରାଯାଇଥାଏ । ଗୋଟିଏ ରବର ସିଟ୍‌ର ଓଜନ ୪୦୦ ଗ୍ରାମ୍ ହୋଇଥାଏ । ଏଭଳିଭାବେ ଦିନକୁ ୧୦୦ ପାଖାପାଖି ରବର ସିଟ୍ ଉତ୍ପାଦନ କରାଯିବା ସହ ୪୦ କିଲୋ ରବର ପ୍ରସ୍ତୁତ କରାଯାଇଥାଏ ।

ଏହି ରବରରୁ ବେଲୁନ୍, ବ୍ୟାଗ୍, ଯାନବାହନର ଟିଉବ୍, ଟାୟାର୍, ମେଡିକାଲ୍ ସମ୍ବନ୍ଧୀୟ ହ୍ୟାଣ୍ଡ ଗ୍ଲୋବ୍‌ସ ଓ ଅନ୍ୟାନ୍ୟ ରବର ସାମଗ୍ରୀ ପ୍ରସ୍ତୁତ କରାଯାଇଥାଏ । କେଶରୀ ରବର ସମଗ୍ର ଦେଶର ଏକ ଉତ୍ତମ ମାନର ରବର ବୋଲି ଏହାର ଏକ ନିଆରା ଭାଉ ରହିଛି ।

ଏ' ତ ଗଲା ଏକ ସରକାରୀ ରବର ପ୍ରକଳ୍ପର ସଫଳ କାହାଣୀ । ଏହାବ୍ୟତୀତ ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ଅନେକ ସ୍ଥାନରେ ଘରୋଇ ଭାବେ ଅନେକ ଚାଷୀ ରବର ଚାଷ କରୁଛନ୍ତି । ମୟୂରଭଞ୍ଜ ଜିଲ୍ଲାର ରରୁଆଁ ବ୍ଲକ୍‌ର ପଣସି, ଶଙ୍କରପୁର, ଯଶୀପୁର, ମାଟିଆଗଡି, ବାଙ୍କିରିପୋଷି, ବିଶୋୟୀ, ଶିମିଳିପାଳ ଜଙ୍ଗଲରେ ବ୍ୟାପକ ପରିମାଣରେ ରବର ଚାଷ କରାଯାଉଛି । ମାତ୍ର ସରକାରଙ୍କ ପକ୍ଷରୁ ଯେଭଳି ପ୍ରୋତ୍ସାହନ ମିଳିବା କଥା ସେଭଳି ମିଳିପାରୁନାହିଁ । ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ପକ୍ଷରୁ ଉପଯୁକ୍ତ ପ୍ରୋତ୍ସାହନ ମିଳି ପାରିଲେ ବୈତରଣୀ ଅବବାହିକା ଅଞ୍ଚଳର ରବର ଚାଷ ସମଗ୍ର ଭାରତବର୍ଷରେ ଉଦାହରଣ ସୃଷ୍ଟି କରିପାରିବ ।

**(ତଥ୍ୟ ସହାୟତା:**

**୧. ଦୈତାରୀ ନାଥ ମହାନ୍ତ, ଭାଗିରଥୀ ନାୟକ, ଓ୍ୱାଚ୍‌ମ୍ୟାନ୍, କେଶରୀ ରବର ପ୍ରକଳ୍ପ, କେଶରୀ, ମୟୁରଭଞ୍ଜ,**

**୨. ପରମାନନ୍ଦ ମହାନ୍ତ, ସାମ୍ବାଦିକ, ଚଂପୁଆ**

**୩. 'ସମ୍ବାଦ-ରବିବାର ପତ୍ରିକା ବିଶେଷ ଫିଚର ଷ୍ଟୋରି', ରଂଜନ ପ୍ରଧାନ, ୨୫, ଜାନୁୟାରୀ, ୨୦୧୫)**

## ବୈତରଣୀ ନଦୀରୁ ସୁନା ସଂଗ୍ରହ କରୁଥିବା କେନ୍ଦୁଝର ଜିଲ୍ଲାର 'ଝରା' ସଂପ୍ରଦାୟ

ବୈତରଣୀ ନଦୀକୁ ଅନ୍ୟ ଅର୍ଥରେ 'ସ୍ୱର୍ଣ୍ଣ ବୈତରଣୀ' ବୋଲି କୁହାଯାଇଥାଏ । ଏହି ନଦୀର ବାଲିରେ ଭରି ରହିଛି ରାଶିରାଶି ସୁନାର ରେଣୁ ବା କଣିକା । ବୈତରଣୀ ନଦୀରୁ ସୁନା କଣିକା ସଂଗ୍ରହ କରିବା ପାଇଁ କେନ୍ଦୁଝର ଜିଲ୍ଲାରେ ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ମଣିଷମାନେ ବସବାସ କରିଆସୁଛନ୍ତି । ଏମାନଙ୍କୁ 'ଝରା' କୁହାଯାଏ ।

କେନ୍ଦୁଝର ଜିଲ୍ଲାର ତେଲକୋଇ, ହରିଚନ୍ଦନପୁର, ବାଂଶପାଳ, ଯୋଡା, ଚଂପୁଆ, ଝୁଂପୁରା, ସ୍ୱାମ୍ ପାଟଣା, ଆନନ୍ଦପୁର, ହାଟଡ଼ିହି ଅଞ୍ଚଳରେ ବୈତରଣୀ ନଦୀ କୂଳେକୂଳେ ଏକ ନିଆରା ଜାତିର ଲୋକେ ବସବାସ କରନ୍ତି । ଏହାଙ୍କର କାମ ହେଉଛି ଚଳନ୍ତା ପାଣିରୁ ସୁନା ଛାଣିବା । ପାଖଆଖ ଦେଇ ବହି ଯାଉଥିବା ନଦୀନାଳମାନଙ୍କରୁ ଏମାନେ ପୁରୁଷ ପୁରୁଷ ଧରି ସୁନା ଝରେଇବା କାମ କରି ଆସୁଛନ୍ତି । ଏମାନେ ସାଧାରଣତଃ ଆଦିବାସୀ, ହରିଜନ ସଂପ୍ରଦାୟର ହୋଇଥିବାବେଳେ ସରକାରୀ ନଥିରେ ଏମାନଙ୍କୁ ସାଧାରଣବର୍ଗ ଭାବେ ସୂଚେଇ ଦିଆଯାଇଛି । ସାଧାରଣତଃ, କେନ୍ଦୁଝର ଜିଲ୍ଲାରେ ଧୀବର, ପେଣ୍ଠେଇ, ଦେହୁରୀ, ବେହେରା, ପାତ୍ର ସାଙ୍ଗିଆଧାରୀମାନେ ଆଦିବାସୀ କିମ୍ବା



ସୁନା କଣିକା ଝରେଇବାକୁ ବାହାରିଥିବା ଝରା ସଂପ୍ରଦାୟର ପୁରୁଷ ଓ ମହିଳା

ହରିଜନ ଶ୍ରେଣୀର ହୋଇଥାନ୍ତି, ମାତ୍ର ଏହି 'ଝରା' ଜାତିର ଲୋକେ ଏହି ସାଙ୍ଗିଆ ଧାରଣ କରିଥିବା ସତ୍ତ୍ୱେ ଏମାନେ ସାଧାରଣ ବର୍ଗ ଅନ୍ତର୍ଭୁକ୍ତ । ଏହା ହିଁ ଆଶ୍ଚର୍ଯ୍ୟ ।

ଏକ ଗ୍ରୀଷ୍ମ ଅପରାହ୍ନରେ ଆମେ ବାଂଶପାଳ ବ୍ଲକ୍‌ର ଗୋବିନ୍ଦପୁର ଗାଁରେ ପହଞ୍ଚିଲାବେଳକୁ ଗାଁଟି ଥାଏ ଶୁନ୍‌ଶାନ୍ । କାରଣ ବୁଝୁବୁଝୁ ଜଣାପଡିଲା, ଗାଁର ସବୁ ଲୋକ ଗାଁ ପାଖ ଦେଇ ବହି ଯାଇଥିବା ମାଙ୍କଡା ନଈକୁ ଯାଇଛନ୍ତି । ଏହି ଗାଁଟିରେ ପାଖାପାଖି ୫୦ ପରିବାର 'ଝରା' ସଂପ୍ରଦାୟର ଲୋକେ ବାସ କରନ୍ତି । ଗାଁ ନିକଟ ଦେଇ ବହି ଯାଇଛି ମାଙ୍କଡା ଓ କଖାରୁଆ ଭଳି ଦୁଇଟି ପାହାଡିଆ ନଈ । ଏହି ପାହାଡ଼ିଆ ନଈ ଦୁଇଟିର ଜଳ ସ୍ରୋତ ପ୍ରଖର । ଆମେ ଗାଁରେ ପହଞ୍ଚିଲାବେଳକୁ ପାଖାପାଖି କୋଡ଼ିଏରୁ ଉର୍ଦ୍ଧ୍ୱ ପୁରୁଷ ଓ ମହିଳା ନଈ ମଧ୍ୟରେ ପଶି କ'ଣ କରୁଥିବାର ଦେଖିଲୁ । ଏମାନେ ସମ୍ଭବତଃ ନଦୀରୁ ମାଛ ଧରୁଥାଇ ପାରନ୍ତି ବୋଲି ପ୍ରଥମେ ଆମର ଧାରଣ ହୋଇଥିଲା, ମାତ୍ର ପରେପରେ ଆମର ସେଇ ଧାରଣା ଭୁଲ୍ ପ୍ରମାଣିତ ହୋଇଥିଲା । ବୁଝୁବୁଝୁ ଜଣାପଡିଲା, ଏମାନେ ନଦୀରୁ ସୁନା ସଂଗ୍ରହ କରୁଛନ୍ତି ।

ସେଦିନ ସେମାନେ ମାଙ୍କଡ଼ା ନଈରେ ଝରମାନେ ସୁନା ଝରାଇବା କାମ କରୁଥିଲେ । ଧାଡ଼ିଧାଡ଼ି ହୋଇ ପୁରୁଷ ଓ ମହିଳାମାନେ ନଈ ବାଲିରୁ ଏହି ସୁନା ଝରେଇବା କାମରେ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଲାଗି ପଡିଥାନ୍ତି । ସେମାନଙ୍କର ଏହି ସୁନା ଝରେଇବା କାମଟି ନିହାତି ଭାବେ ଆମକୁ ଅତି ବିଚିତ୍ର ଭଳି ମନେହେଲା । ପ୍ରଥମେ ବିଶ୍ୱାସ କରିହେଲାନି । କିଛି ସମୟ ଅପେକ୍ଷା କରିବା ପରେ, ନଈ ବାଲିରୁ ସୁନା ମିଳେ ବୋଲି ପ୍ରକୃତରେ ଏକ ବିଶ୍ୱାସ ସୃଷ୍ଟି ହେଲା । ସେମାନଙ୍କ ଫଳାରେ ସୁନାର ଗୁଣ୍ଡସବୁ ଝଲମଲ କରି ଉଠୁଥିବାର ଦୃଶ୍ୟ ଦେଖିବା ପରେ ପ୍ରକୃତରେ ଦୁନିଆରେ ଏଭଳି ଏକ ଚମତ୍‌କାର କାମ ରହିଛି ବୋଲି ହୃଦବୋଧ ହେଲା ।

ଝରାମାନେ ସୁନା ସଂଗ୍ରହ ପାଇଁ ମୁଖ୍ୟତଃ ତିନୋଟି ସରଞ୍ଜାମର ବ୍ୟବହାର କରିଥା'ନ୍ତି । କାଠ ନିର୍ମିତ ଏକ ବଡ଼ ଆକାରର କଡ଼େଇ ଯାହାକୁ **ଫଳା** କହନ୍ତି, କାଠ ନିର୍ମିତ ଏକ ଛୋଟ କାଙ୍ଗୁଲା ଭଳି ଯାହାକୁ **ନିଝାରୀ** କୁହାଯାଏ । ଏହା ସାଙ୍ଗକୁ ଲୁହାରେ ନିର୍ମିତ ଏକ ଛୋଟ କାଙ୍ଗୁଆ ଭଳି ଯନ୍ତ୍ରକୁ ଝରାମାନେ **ଗୁତୁଣୀ** ବୋଲି କହିଥାନ୍ତି । ଏହି ତିନୋଟି ସରଞ୍ଜାମ ସାହାଯ୍ୟରେ ଝରାମାନେ ବଂଶାନୁକ୍ରମିକ ଭାବେ ନଦୀ, ପାହାଡ ଓ ଅନ୍ୟାନ୍ୟ ଛୋଟବଡ ଜଳ ଉତ୍ସମାନଙ୍କରୁ ସୁନା ଝରା କାମ କରି ଆସୁଛନ୍ତି ।

ସାଧାରଣତଃ, କେନ୍ଦୁଝର ଜିଲ୍ଲା ଏକ ଖଣିଜ ସଂପଦଭରା ଜିଲ୍ଲା ଭାବେ ସମଗ୍ର ଭାରତବର୍ଷରେ ଜଣାଶୁଣା । ଏ ଜିଲ୍ଲାର ମାଟି ଗର୍ଭରେ ଲୁହା, କ୍ରୋମାଇଟ୍, ବକ୍ସାଇଟ୍, ମାଙ୍ଗାନିଜ୍, ଅଭ୍ର, ଡୋଲାମାଇଟ୍ ଏବଂ ସୁନା ଭଳି ବହୁ ମୂଲ୍ୟବାନ୍ ଖଣିଜ ସଂପଦ ଭରି ରହିଛି । ଜିଲ୍ଲାର ତେଲକୋଇ, ବାଂଶପାଳ, ହରିଚନ୍ଦନପୁର ଅଞ୍ଚଳରେ ସୁନା ଖଣି ଥିବାର ମଧ୍ୟ ସର୍ଭେ ରିପୋର୍ଟରୁ ଜଣାପଡିଛି । ଏଠାରେ ଥିବା



ବୈତରଣୀରୁ ସୁନା ଝରାଉଥିବା ଝରା ସଂଗ୍ରାହକ ଲୋକମାନେ

ପାହାଡ଼ ଓ ନଦୀ ଗର୍ଭରେ ପର୍ଯ୍ୟାପ୍ତ ମାତ୍ରାରେ ସୁନା ଗଛିତ ହୋଇ ରହିଛି । ଅନେକ ସମୟରେ ନଈର ପାଣି ସୁଅରେ ସୁନାର ଗୁଣ୍ଡସବୁ ଭାସି ଯାଇଥାଏ । ନଦୀ ଗର୍ଭରେ ଥିବା ବାଲି, କାଦୁଅକୁ ଏମାନେ ରୁତୁଣୀ ସାହାଯ୍ୟରେ ଖୋଳି ଫଳା ମଧ୍ୟରେ ସଂଗ୍ରହ କରନ୍ତି । ଫଳାରେ ପୂରେଇ ଏହି ସୁନା ମିଶା ବାଲିକାଦୁଅକୁ ପାଣି ସାହାଯ୍ୟରେ ଏପରି ସତର୍କତାର ସହ ଚହଲାନ୍ତି (ଝରାନ୍ତି), କିଛି ସମୟ ପରେ ସେଥିରୁ ବୁନ୍ଦାବୁନ୍ଦା ହୋଇ ସୁନାର କଣିକାମାନ ଚହଟି ଉଠିଥାଏ । ମାତ୍ର, ଏହି ପ୍ରକ୍ରିୟାଟି ବହୁ କଷ୍ଟଦାୟକ ଓ ଶ୍ରମସାପେକ୍ଷ । ଦିନ ସାରା ପରିଶ୍ରମ କରି ଝରାଟିଏ ମାତ୍ର ଧାନେ କିମ୍ବା ଦୁଇ ଧାନ ସୁନାର କଣିକା ସଂଗ୍ରହ କରିଥାଏ, ଯାହାର ବଜାର ମୂଲ୍ୟ ୪୦୦ରୁ ୬୦୦ ଟଙ୍କା । ମାତ୍ର, ଏଠାକାର ବଣିଆମାନେ ଗୋଟିଏ ଧାନ ସୁନା ମାତ୍ର ୫୦ରୁ ୧୦୦ ଟଙ୍କା ଦେଇ ଏହି ଝରାମାନଙ୍କଠାରୁ ସଂଗ୍ରହ କରି ନେଇଥାନ୍ତି । ଝୁଂପୁରା ଅଞ୍ଚଳର ମୁସଲମାନ୍ ବଣିଆମାନେ ଏହି ଝରାମାନଙ୍କଠାରୁ ଶାଗମାଛ ଦରରେ ସୁନା କିଣି ନେଇ ସେମାନେ କୋଟିପତି ପାଲଟିଥିବାବେଳେ ପାହାଡ଼ ଜଙ୍ଗଲରେ ପଡି ରହିଥିବା ଝରାମାନେ ଯେଉଁ ଗରିବକୁ ସେହି ଗରିବ ହୋଇ ରହିଯାଇଛନ୍ତି ।

ଗୋବିନ୍ଦପୁର ଗାଁର ବଳରାମ ଧୀବର, ଇନ୍ଦୁ ଧୀବର, ସୁଶୀଳା ଧୀବର, କୋକିଳା ଧୀବରଙ୍କ କହିବା ଅନୁସାରେ, ଅତି ବେଶିରେ ଦିନକୁ ସେମାନେ ଦୁଇ ତିନି ଧାନ ପର୍ଯ୍ୟନ୍ତ ସୁନା ସଂଗ୍ରହ କରିପାରନ୍ତି । ଦିନେ ଦିନେ କିଛି ମିଳେନା, ପୁଣି କେବେ କେବେ ଦଶ ଧାନ ପର୍ଯ୍ୟନ୍ତ ଜଣେ ଝରା ସୁନା ସଂଗ୍ରହ କରିଥାନ୍ତି । ଏହା ଏକ ଅନିଶ୍ଚିତ ପ୍ରକ୍ରିୟା ।

ଝରାମାନେ ସାଧାରଣତଃ, ନିକଟସ୍ଥ ପାହାଡ଼ ଉପରକୁ ଯାଇ ପଥରକୁ ଗୁଣ୍ଡ କରି ସେହି ଗୁଣ୍ଡ

ପଥରକୁ ପାଣିରେ ଝରେଇ ସୁନା ସଂଗ୍ରହ କରିଥାନ୍ତି । ଏହା ସହିତ ନଦୀ, ନାଳର ପାଣିରୁ ସୁନା ଝରେଇବା କାମ ଏମାନଙ୍କ ପାଇଁ ଅପେକ୍ଷାକୃତ ସହଜ ହୋଇଥାଏ । ସେମାନେ ସାଧାରଣତଃ, ଡଷ୍ଟ୍ (ଗୁଣ୍ଡ) ଆକାରରେ ସୁନା ପାଇଥାନ୍ତି । ଏହାକୁ ନିଆଁରେ ପୋଡି ଛୋଟଛୋଟ ଗୁଳା ସୋରିଷ ଦାନା ଆକାରରେ ଗୁଳି କରି ଧାନ ବା ରତି ଆକାରରେ ବଣିଆମାନଙ୍କୁ ବିକ୍ରି କରିଥାନ୍ତି ।

**(ତଥ୍ୟ ସହାୟତା:**

**ବଳରାମ ଧୀବର, ଇନ୍ଦୁ ଧୀବର, ସୁଶୀଳା ଧୀବର, କୋକିଳା ଧୀବର,**

**ଗ୍ରାମ: ଗୋବିନ୍ଦପୁର, ବ୍ଲକ୍: ବାଂଶପାଳ, ଜିଲ୍ଲା: କେନ୍ଦୁଝର**

**ଧୀରେନ୍ ରାଉତ, ବରିଷ୍ଠ ସାମ୍ବାଦିକ, କେନ୍ଦୁଝର)**

## ଧାମରା ଓ ତାଳଚୁଆ ମୁହାଁଣରେ ଲୁଣ ଚାଷ

*(Salt Cultivation in Dhamara and Talchua mouth of Baitaranee)*

ଲୁଣ ଗୋଟିଏ ଦେଶକୁ ସ୍ୱାଧୀନତା ଦେଇପାରେ, ଏହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏହି ଲୁଣ ପାଇଁ ଭାରତ ଇଂରେଜମାନଙ୍କ କବଳରୁ ମୁକ୍ତ ହୋଇଥିଲା । ଗୁଜୁରାଟର ଦାଣ୍ଡିରୁ ମାହାତ୍ମାଗାନ୍ଧୀ ଲୁଣ ମାରିବା ଅଭିଯାନ ଆରମ୍ଭ କରିଥିଲେ । ଏହି ଲବଣ ସତ୍ୟାଗ୍ରହ ଓଡ଼ିଶାର ଇଞ୍ଚୁଡ଼ିରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ଭାରତୀୟମାନେ ସମୁଦ୍ର ମୁହାଁଣମାନଙ୍କରୁ ପ୍ରଚୁରମାତ୍ରାରେ ଲୁଣ ମାରି ଜୀବିକା ନିର୍ବାହ କରିପାରୁଥିଲେ ।

ଅତୀତରେ କନିକା ରାଜାଙ୍କ ପ୍ରୋତ୍ସାହନରେ ବୈତରଣୀ-ବ୍ରାହ୍ମଣୀ ଧାମରା ଓ ତାଳଚୁଆ ମୁହାଁଣର ତ୍ରିକୋଣଭୂମି ଅଞ୍ଚଳରେ ଲୋକେ ସମୁଦ୍ରରୁ ଲୁଣ ମାରି ବେଶ୍ ଲାଭବାନ ହେଉଥିଲେ । ବିଶେଷକରି କେନ୍ଦ୍ରାପଡ଼ା ଜିଲ୍ଲାର ତତ୍କାଳୀନ କନିକା ରାଜ୍ୟର ରାଜକନିକା, ରାଜନଗର, ମହାକାଳପଡ଼ା ଅଞ୍ଚଳରେ ସମୁଦ୍ର ମୁହାଣରୁ ବହୁ ପରିମାଣରେ ଲୁଣ ମରାଯାଉଥିଲା । ବାହାର ଦେଶମାନଙ୍କରେ ଓଡ଼ିଶାର ଲୁଣର ଏକ ବିଶେଷ ଚାହିଦା ଥିଲା । ଓଡ଼ିଶାରୁ ଲୁଣ ମରାଯାଇ ଫଲ୍ସ ପଏଣ୍ଟ ଏବଂ ଧାମରା ବନ୍ଦର ଦେଇ ବିଦେଶକୁ ଲୁଣ ରପ୍ତାନୀ ହେଉଥିଲା । ଇଂରେଜ ଶାସନ କାଳ ପର୍ଯ୍ୟନ୍ତ କେନ୍ଦ୍ରାପଡ଼ାର ସମୁଦ୍ର ଉପକୂଳ ଅଞ୍ଚଳରୁ ଲୁଣ ମରାଯାଉଥିଲା । ଓଡ଼ିଶାର ଲୁଣ ଭଲ ବୋଲି ଇଂରେଜ ପ୍ରଶାସକ ମିଷ୍ଟର ଷ୍ଟର୍ଲିଂ ଉଲ୍ଲେଖ କରିଛନ୍ତି । ଭାରତର ସବୁଠୁ ଉତ୍ତମ ଲୁଣ ଓଡ଼ିଶା ଉପକୂଳ ଜଙ୍ଗଲିଆ ଅଞ୍ଚଳରୁ ତିଆରି ହୋଇଥାଏ ବୋଲି ଷ୍ଟର୍ଲିଂ ପ୍ରକାଶ କରିଥିଲେ । ଏହାପରେ ୧୯୦୦ ମସିହାରେ ଇଂରେଜ ସରକାର ଲୁଣ ଉତ୍ପାଦନ କାମ ନିଜ ହାତକୁ ନେଇଥିଲେ । ଏହା ସତ୍ତ୍ୱେ କେନ୍ଦ୍ରାପଡ଼ାର ସମୁଦ୍ର ଉପକୂଳିଆ ଅଞ୍ଚଳର ଲୋକେ ଚୋରାରେ ମଧ୍ୟ ଲୁଣ ମାରୁଥିଲେ । ଓଡ଼ିଆମାନେ ଚୋରାରେ ଲୁଣ ମାରୁଥିବା କାର୍ଯ୍ୟକୁ ଜଗିବା ପାଇଁ କେନ୍ଦ୍ରାପଡ଼ା ସହରର ସାନ୍ତସାହି ପୋଲ ନିକଟସ୍ଥ



**ବୈତରଣୀରୁ ସୁନା ଝରାଉଥିବା ଝରା ସଂପ୍ରଦାୟର ଲୋକମାନେ**

ଗୋବରୀ କେନାଲ୍ କୂଳରେ ଏକ **'ଲୁଣ ଉଗା ଅଫିସ'** ନିର୍ମାଣ କରାଯାଇ ଏଠାରେ ଇଂରେଜ ଅଫିସରଙ୍କୁ ନିଯୁକ୍ତ କରାଯାଇଥିଲା । ଏହି ବଙ୍ଗଳାକୁ **'ସଲ୍‌ଟ ବଙ୍ଗ୍ଲୋ'** ବୋଲି କୁହାଯାଉଛି । ଏହି କୋଠିଟି ଏବେ ମଧ୍ୟ କେନ୍ଦ୍ରାପଡ଼ା ସହର ନିକଟରେ ଗୋବରୀ କେନାଲ୍ କୂଳରେ ଅବସ୍ଥିତ । ମାତ୍ର ଇଂରେଜ ଶାସନ ପରେପରେ ଏହି ଲୁଣମରା କାମ ଏକପ୍ରକାର ବନ୍ଦ ହୋଇଯାଇଛି ।

**(ତଥ୍ୟ ସହାୟତା: ପ୍ରତାପ କୁମାର ରାୟ, ଅରଡ଼ପଲ୍ଲୀ, କେନ୍ଦ୍ରାପଡ଼ା)**



## ନବମ ପରିଚ୍ଛେଦ

# ନଦୀ ଉତ୍ସବ

## ବୈତରଣୀ ଉପତ୍ୟକାରେ ବାର ମାସରେ ତେର ଯାତ

*(river festivals on the bank of Baitaranee)*



**ଯାଜପୁର ଦଶାଶ୍ୱମେଧ ଘାଟରେ ପବିତ୍ର ବାରୁଣୀ ସ୍ନାନ**

ବିଭିନ୍ନ ଦେଶରେ ଭିନ୍ନଭିନ୍ନ ନଦୀକୁ ସେଠାକାର ସ୍ଥାନୀୟ ଲୋକମାନେ ପୂଜା କରିଥା'ନ୍ତି ।ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର, ନର୍ମଦା, ସିନ୍ଧୁ, କ୍ରିଷ୍ଣା, କାବେରୀ, ଗୋଦାବରୀ ନଦୀକୁ ଭାରତୀୟମାନେ ପୂଜା କରିଥା'ନ୍ତି । ସେହିଭଳି ଓଡ଼ିଶାରେ ଋଷିକୁଲ୍ୟା, ବୈତରଣୀ, ପ୍ରାଚୀ ଓ ମହାନଦୀକୁ ମଧ୍ୟ ପୂଜା କରାଯାଇଥାଏ । ନଦୀକୁ ନେଇ ବର୍ଷତମାମ୍ କିଛି ନା କିଛି ଉତ୍ସବ, ପର୍ବପର୍ବାଣି ପାଳିତ ହୋଇଥାଏ । ପୃଥିବୀର ବହୁ ପ୍ରସିଦ୍ଧ ନଦୀମାନଙ୍କ ସହିତ ସେ ଅଞ୍ଚଳର ଧାର୍ମିକ ଭାବନା ଯୋଡ଼ି ହୋଇ ରହିଛି ।

ଭାରତର ଗଙ୍ଗା, ଯମୁନା, ସରସ୍ୱତୀ, ନର୍ମଦା, ସିପ୍ରା, ଗୋଦାବରୀ ଓ କାବେରୀ ନଦୀମାନଙ୍କୁ **'ସପ୍ତ ପବିତ୍ର ନଦୀ'** ଭାବେ ବର୍ଣ୍ଣନା କରାଯାଇଛି । ଉତ୍ତର ପ୍ରଦେଶ ଆହ୍ଲାବାଦ ସହରର ପ୍ରୟାଗଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ (ପୌରାଣିକ ନଦୀ) ନଦୀ ମିଳିତ ହୋଇ ପ୍ରସିଦ୍ଧ 'ତ୍ରିବେଣୀ ସଂଗମ' ସୃଷ୍ଟି କରିଛନ୍ତି । ଏଠାରେ ପ୍ରତି ୧୨ ବର୍ଷରେ ଥରେ ପ୍ରସିଦ୍ଧ **'କୁଂଭ ମେଳା'** ଅନୁଷ୍ଠିତ ହୋଇଥାଏ । ସମଗ୍ର ପୃଥିବୀରୁ ଲକ୍ଷାଧିକ ଭକ୍ତ ଏଠାକୁ ବୁଡ଼ ପକାଇବାକୁ ଆସିଥା'ନ୍ତି । ଯମୁନା ନଦୀ ଉପକୂଳରେ ଭାରତର ଶ୍ରେଷ୍ଠ ଧାର୍ମିକ ପୀଠସବୁ ରହିଛି । ପୌରାଣିକ ସହର ଭଗବାନ ଶ୍ରୀକୃଷ୍ଣଙ୍କ ନଗରୀ ମଥୁରା, ବୃନ୍ଦାବନ, ଗୋକୁଳ, ଆଗ୍ରା (ତାଜମହଲ), ଦିଲ୍ଲୀ ଭଳି ସହର ଯମୁନା କୂଳରେ ଅବସ୍ଥିତ ।

ସିପ୍ରା ନଦୀଟି ଭାରତର ସବୁଠୁ ପବିତ୍ରତମ ନଦୀ । ଏହାକୂଳରେ ଅନୁଷ୍ଠିତ କୁମ୍ଭ ମେଳାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ହୋଇଥାଏ । ସେହିଭଳି ଗୋଦାବରୀ ନଦୀ 'ଦକ୍ଷିଣ ଭାରତର ଗଙ୍ଗା' ଭାବେ ପରିଚିତ । ପ୍ରତି ବାର ବର୍ଷରେ ଥରେ ଗୋଦାବରୀ ନଦୀ କୂଳରେ କୁଂଭ ମେଳା ଅନୁଷ୍ଠିତ ହୋଇଥାଏ । ଭାରତରେ ଚାରିଗୋଟି ସ୍ଥାନରେ କୁଂଭମେଳା ଅନୁଷ୍ଠିତ ହୋଇଥାଏ । ହରିଦ୍ୱାର (ଗଙ୍ଗା), ଆହ୍ଲାବାଦ (ଗଙ୍ଗା-ଯମୁନା-ସରସ୍ୱତୀ ତ୍ରିବେଣୀ ସଂଗମ), ନାସିକ (ଗୋଦାବରୀ) ଓ ଉଜ୍ଜୟିନୀ (ସିପ୍ରା ନଦୀ) ସହରରେ କୁଂଭମେଳା ପାଳିତ ହୋଇଥାଏ ।

ଗଙ୍ଗାକୁ ଭାରତର ପବିତ୍ର ନଦୀ କୁହାଯାଇଥାଏ । ଏହି ନଦୀ କୂଳରେ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ସେହିଭଳି ବୈତରଣୀ'କୁ ଓଡ଼ିଶାର ଗଙ୍ଗାମାତା ବୋଲି ସମ୍ବୋଧନ କରାଯାଇଥାଏ । ଏହା **'ପୁଣ୍ୟତୋୟା ବୈତରଣୀ'** ଭାବେ ଓଡ଼ିଶାରେ ଖ୍ୟାତ । ବୈତରଣୀର କୂଳେକୂଳେ ବର୍ଷର ବିଭିନ୍ନ ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ପର୍ବପର୍ବାଣି ଓ ଯାନିଯାତରା ପାଳିତ ହୋଇଥାଏ ।

## ଗୋନାସିକାର ବାରୁଣୀ ସ୍ନାନ

*(Baruni yatra; the holy dip on the river Baitarani at Gonasika)*



ଗୋନାସିକା ବ୍ରହ୍ମକୁଣ୍ଡରେ ପବିତ୍ର ବାରୁଣୀ ସ୍ନାନଯାତ୍ରା

ଗୋନାସିକା ପର୍ବତର ପାଦଦେଶରେ ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ ମହାଦେବ ବ୍ରହ୍ମେଶ୍ୱର ପୂଜା ପାଉଛନ୍ତି । ଏଠାରେ ପ୍ରତିବର୍ଷ ଚୈତ୍ର ମାସ କୃଷ୍ଣ ଦ୍ୱାଦଶୀ/ତ୍ରୟୋଦଶୀ ତିଥି ଶତଭିଷା ନକ୍ଷତ୍ର ସଂଯୋଗରେ ବାରୁଣୀ ସ୍ନାନ ଓ ମେଳା ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଭକ୍ତମାନେ ବୈତରଣୀ ନଦୀର ଏନ୍ତୁଡିଶାଳ ବା ସୂତିକାଗାର ଦର୍ଶନ କରି ପୂର୍ଣ୍ଣତା ଲାଭ କରିଥାନ୍ତି ।

ପବିତ୍ର ବାରୁଣୀ ଯୋଗରେ ତୀର୍ଥ ଯାତ୍ରୀମାନେ ପ୍ରଭାତରେ ବ୍ରହ୍ମକୁଣ୍ଡର ବୈତରଣୀ ଜଳରେ ପବିତ୍ର ସ୍ନାନ କରନ୍ତି । ସ୍ନାନ ପରେ ଭକ୍ତମାନେ ପ୍ରତ୍ୟକ୍ଷ ବ୍ରହ୍ମେଶ୍ୱର ଦେବଙ୍କୁ ଦର୍ଶନ କରିଥାନ୍ତି । ଷୋଡଶ' ଶତାବ୍ଦୀରେ କେନ୍ଦୁଝର ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜଙ୍କ ଦ୍ୱାରା ଏଠାରେ ବ୍ରହ୍ମେଶ୍ୱର ମନ୍ଦିର ଓ ସିଦ୍ଧ ଜଗନ୍ନାଥ ମନ୍ଦିର ସ୍ଥାପନ କରାଯାଇଥିଲା ।

ଗୋନାସିକାଠାରେ ଆୟୋଜିତ ବାରୁଣୀ ଯାତ୍ରା ଦେଖିବାକୁ ପ୍ରତିବର୍ଷ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏହି ସ୍ନାନ ଅବସରରେ ମହାଦେବ ବ୍ରହ୍ମେଶ୍ୱରଙ୍କ ବିଶେଷ ସ୍ନାନ ଉପଚାର ଓ ପୂଜାର୍ଚ୍ଚନା ପାରଂପାରିକ ରୀତିରେ ସଂପନ୍ନ ହୋଇଥାଏ । ବାରୁଣୀ ତିଥିରେ ପୁଣ୍ୟତୋୟା ବୈତରଣୀ ଜଳରେ ସ୍ନାନ କଲେ ଶରୀରରୁ ରୋଗ ଓ ମନରୁ କାମନା, ବାସନା ଦୂର ହୋଇଯାଏ ଓ ମାନସିକ ଶାନ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । ଏହି ଅବସରରେ ସପ୍ତାହେ ଧରି ଏଠାରେ ମେଳା, ମୀନାବଜାର ଅନୁଷ୍ଠିତ ହୋଇଥାଏ । ନାନା ପ୍ରକାର ଦୋକାନବଜାର, ଝୁଲା ଦୋଳି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ଗୋନାସିକା ବୈତରଣୀ ପୀଠ ବେଶ୍ ଚଳଚଞ୍ଚଳ ହୋଇଉଠିଥାଏ ।

## ଦଶାଶ୍ୱମେଧ ଘାଟରେ ପବିତ୍ର ବାରୁଣୀ ସ୍ନାନ

*(Baruni yatra at Dasaswamedha ghat, Jajpur)*

ପ୍ରତିବର୍ଷ ଚୈତ୍ର ମାସ କୃଷ୍ଣ ଦ୍ୱାଦଶୀ/ତ୍ରୟୋଦଶୀ ତିଥି ଶତଭିଷା ନକ୍ଷତ୍ର ସଂଯୋଗରେ ବାରୁଣି ସ୍ନାନ ଅନୁଷ୍ଠିତ ହୋଇଥାଏ । ବୈତରଣୀର ଉତ୍ପତ୍ତି ସ୍ଥଳ ଗୋନାସିକାଠାରୁ ଆରଂଭ କରି ବିଭିନ୍ନ ନଦୀଘାଟମାନଙ୍କରେ ବାରୁଣୀବୁଡ଼ ଓ ଯାତ୍ରା ଅନୁଷ୍ଠିତ ହୋଇଥାଏ । କେନ୍ଦୁଝର ଜିଲ୍ଲାରେ ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକା ସମେତ ବାଂଶପାଳ, ରାମତୀର୍ଥ (ଝାଡ଼ଖଣ୍ଡ), କେଶରୀକୁଣ୍ଡ, ରୂପାକୁଣ୍ଡ, ଦୋ-ମୁହାଁଣୀ ଘାଟ, ରାଜନଗର, ଘସିପୁରାର ଝାଡ଼େଶ୍ୱର ଘାଟ, ହାବଳେଶ୍ୱର ଘାଟ ଆଦି ବିଭିନ୍ନ ଘାଟରେ ଶତାଧିକ ଭକ୍ତ ବାରୁଣୀ ବୁଡ଼ ପକାଇଥା'ନ୍ତି । ସେହିଭଳି ସାଂସ୍କୃତିକ ସହର ଯାଜପୁରର ଦଶାଶ୍ୱମେଧ ବୈତରଣୀ ଘାଟରେ ପବିତ୍ର ବାରୁଣୀ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ପ୍ରତିବର୍ଷ ବାରୁଣୀ ବୁଡ଼ ପକାଇବା ଏବଂ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବା ଉଦ୍ଦେଶ୍ୟରେ ଦଶାଶ୍ୱମେଧ ଘାଟରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ଘଟିଥାଏ । ଚୈତ୍ର କୃଷ୍ଣପକ୍ଷ ଦ୍ୱାଦଶୀ/ତ୍ରୟୋଦଶୀ ତିଥିରେ ଅନୁଷ୍ଠିତ ବାରୁଣୀ ଯୋଗକୁ ସାଧାରଣ ବାରୁଣୀ ସ୍ନାନ ଯୋଗ ବୋଲି ଧରାଯାଇଥାଏ । ମାତ୍ର ଯଦି ଚୈତ୍ରମାସ କୃଷ୍ଣପକ୍ଷ ଦ୍ୱାଦଶୀ/ତ୍ରୟୋଦଶୀ ତିଥି ଶତଭିଷା ନକ୍ଷତ୍ର ସଂଯୁକ୍ତ ଦିନଟି ଶନିବାର ପଡ଼େ,

ତେବେ ଏହାକୁ **ମହାବାରୁଣୀ** ସ୍ନାନଯୋଗ ବୋଲି ଧରାଯାଇଥାଏ । ଏହି ଯୋଗରେ ବୈତରଣୀରେ ସ୍ନାନ କଲେ କୋଟି ସୂର୍ଯ୍ୟଗ୍ରହଣ ସ୍ନାନର ପୁଣ୍ୟଫଳ ଲାଭ ମିଳିଥାଏ । ଆହୁରି ମଧ୍ୟ ଯଦି ଚୈତ୍ରମାସ କୃଷ୍ଣପକ୍ଷ ଦ୍ୱାଦଶୀ/ତ୍ରୟୋଦଶୀ ତିଥି ଶତଭିଷା ନକ୍ଷତ୍ର ସଂଯୁକ୍ତ ଶନିବାର ସହିତ ଶୁଭଯୋଗ ଓ ଗରକରଣ ଆଦି ସାତଗୋଟି ଯୋଗ ଏକତ୍ରିତ ହୋଇଥା'ନ୍ତି ସେହି ଦିନକୁ ମହାମହା ବାରୁଣୀ ଯୋଗ କିମ୍ବା **'ମଧୁବାରୁଣୀ'** କୁହାଯାଇଥାଏ । ଏଭଳି ମଧୁବାରୁଣୀ କିମ୍ବା ମହାବାରୁଣୀ ଯୋଗ ପ୍ରତିବର୍ଷ ପଡ଼ି ନଥାଏ । ତେବେ ଯେଉଁବର୍ଷ ମହାବାରୁଣୀ କିମ୍ବା ମଧୁବାରୁଣୀ ଯୋଗ ପଡ଼ିଥାଏ, ସେହିବର୍ଷ ଯାଜପୁରର ଦଶାଶ୍ୱମେଧ ବୈତରଣୀ ଘାଟରେ ବୁଡ଼ ପକାଇବାକୁ ଲକ୍ଷାଧିକ ଭକ୍ତଙ୍କ ସମାଗମ ଘଟିଥାଏ ।

ବିରଜାକ୍ଷେତ୍ରରେ ଏହି ବାରୁଣୀ ଦିନ ଯୋଗସ୍ନାନ ପରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରାଯିବାର ବ୍ୟବସ୍ଥା ହୋଇଥାଏ । ପାଣ୍ଡବମାନେ ତୀର୍ଥଯାତ୍ରାରେ ବୁଲି ଆସି ଲୋମଶ ମୁନିଙ୍କ ପରାମର୍ଶକ୍ରମେ ବୈତରଣୀ ନଦୀରେ ସ୍ନାନ କରି ପିତୃପୁରୁଷଙ୍କୁ ପିଣ୍ଡଦାନ କରିଥିଲେ ବୋଲି ମହାଭାରତର ବନପର୍ବରେ ଉଲ୍ଲେଖ ରହିଛି । ଧର୍ମରାଜ ଯୁଧିଷ୍ଠିର ମାତା, ଭ୍ରାତାଗଣଙ୍କୁ ସଙ୍ଗରେ ନେଇ ତୀର୍ଥଯାତ୍ରା କରୁଥିବା ବେଳେ ଗଙ୍ଗାସାଗର ସଙ୍ଗମ କ୍ଷେତ୍ରରେ ପ୍ରବେଶ କରିଥିଲେ । ସେତେବେଳେ କଳିଙ୍ଗ ସାଗର (ବଙ୍ଗୋପସାଗର) ତୀର୍ଥ କ୍ଷେତ୍ର କଳିଙ୍ଗ ରାଜ୍ୟର ଅଙ୍ଗବିଶେଷ ଥିଲା । ଏହିଠାରେ ଧର୍ମରାଜ ଯୁଧିଷ୍ଠିର ଲୋମଶ ଋଷିଙ୍କଠାରୁ ପୁଣ୍ୟତୋୟା ବୈତରଣୀ ତୀର୍ଥ କ୍ଷେତ୍ରର ମାହାତ୍ମ୍ୟ ଶ୍ରବଣ କରିଥିଲେ ।

ମହାଭାରତ କାଳରୁ ଯାଜପୁରର ଦଶାଶ୍ୱମେଧ ଘାଟରେ ବାରୁଣୀ ସ୍ନାନ ପରଂପରା ରହିଆସିଛି ବୋଲି ଅନୁମାନ କରାଯାଏ । ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଭାରତର ସମସ୍ତ ପ୍ରାନ୍ତରୁ ଲକ୍ଷାଧିକ ସଂଖ୍ୟାରେ ଭକ୍ତମାନେ ଆସି ଏଠାରେ ବାରୁଣୀ ସ୍ନାନ କରି ପୁଣ୍ୟ ଫଳ ଅର୍ଜନ କରିଥାନ୍ତି । ଏହା ସହିତ ଏହି ଦିନ ଏଠାରେ ପିତୃପୁରୁଷଙ୍କ ପିଣ୍ଡଦାନ କରି ଶ୍ରଦ୍ଧାଳୁମାନେ ଗୋଦାନ ମଧ୍ୟ କରିଥାନ୍ତି । ବିରଜା କ୍ଷେତ୍ରରେ ନାଭିଗୟାର ଅବସ୍ଥିତି କାରଣରୁ ଏହା ଏକ ପ୍ରସିଦ୍ଧ ପିତୃତୀର୍ଥ ଭାବେ ସମଗ୍ର ଭାରତବର୍ଷରେ ବେଶ୍ ପରିଚିତ ।

ଓଡ଼ିଶାର ଅନ୍ୟାନ୍ୟ ନଦୀ ଓ ସମୁଦ୍ରକୂଳମାନଙ୍କରେ ପାଳନ କରାଯାଉଥିବା ବାରୁଣୀଠାରୁ ଯାଜପୁରର ଦଶାଶ୍ୱମେଧ ଘାଟରେ ପାଳିତ ହେଉଥିବା ବାରୁଣୀ ଯାତ୍ରା ବେଶ୍ ପ୍ରସିଦ୍ଧ ଓ ସ୍ୱତନ୍ତ୍ର । ମାତ୍ର କେଇଟା ମୁହୂର୍ତ୍ତ ପାଇଁ ଏଠାରେ ବୁଡ଼ ପକାଇବାକୁ ଲକ୍ଷାଧିକ ଶ୍ରଦ୍ଧାଳୁଙ୍କ ଭିଡ଼ ପରିଲକ୍ଷିତ ହୋଇଥାଏ । ବାରୁଣୀ ବୁଡ଼ ଅବସରରେ ଏଠାରେ ନଅଦିନ ଧରି ବାରୁଣୀ ମେଳା ଚାଲେ । ଏହି ଅବସରରେ ବହୁ ସଂଖ୍ୟାରେ ଦୋକାନବଜାର ସାଙ୍ଗକୁ ଦୋଳି, ସର୍କସ, ମୀନାବଜାର ଓ ନାନା ପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ ।

# ବୈତରଣୀ ନଦୀ କୂଳରେ ଦାମୋଦର ପର୍ବ: ସାନ୍ତାଳମାନଙ୍କର ସମୂହ ପିଣ୍ଡଦାନ



**ବୈତରଣୀର ଭୀମକୁଣ୍ଡରେ ସାନ୍ତାଳମାନଙ୍କ ଦାମୋଦର ପର୍ବ**

ଦାମୋଦର ପର୍ବଟି କେବଳ ବୈତରଣୀ ନଦୀକୂଳମାନଙ୍କରେ ଅନୁଷ୍ଠିତ ହୋଇଥାଏ । ବୈତରଣୀ ନଦୀରେ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବା ସହ ଅସ୍ଥି ବିସର୍ଜନ କଲେ ସର୍ବାଧିକ ସୁଫଳ ମିଳିଥାଏ ବୋଲି ସାନ୍ତାଳମାନଙ୍କର ବିଶ୍ୱାସ ରହିଛି । ଏହି ବିଶ୍ୱାସକୁ ନେଇ ସାନ୍ତାଳମାନେ ବୈତରଣୀ ନଦୀର ବିଭିନ୍ନ ଘାଟମାନଙ୍କରେ ଦାମୋଦର ପର୍ବ ବା ସାମୂହିକ ପିଣ୍ଡଦାନ ଉତ୍ସବର ଆୟୋଜନ କରିଥା'ନ୍ତି ।

ପ୍ରତିବର୍ଷ ଡିସେମ୍ବର ମାସ ବେଳକୁ ଅର୍ଥାତ୍ ମକର ଉତ୍ସବର କିଛି ଦିନ ପୂର୍ବରୁ କେନ୍ଦୁଝର ସମେତ ମୟୂରଭଞ୍ଜ, ଯାଜପୁର ଜିଲ୍ଲାର ବିଭିନ୍ନ ସ୍ଥାନରେ ବସବାସ କରୁଥିବା ସାନ୍ତାଳ ସଂପ୍ରଦାୟର ଲୋକେ ବୈତରଣୀ ନଦୀର କୂଳେକୂଳେ ଏହି ଦାମୋଦର ପର୍ବଟିକୁ ପାଳନ କରିଥା'ନ୍ତି । ଏହି ଅବସରରେ ରାଜ୍ୟର ବିଭିନ୍ନ କୋଣଅନୁକୋଣରେ ବସବାସ କରୁଥିବା ସାନ୍ତାଳ ସଂପ୍ରଦାୟର ଲୋକେ କେନ୍ଦୁଝର, ମୟୂରଭଞ୍ଜ ଓ ଯାଜପୁର ଜିଲ୍ଲାର ଭିନ୍ନଭିନ୍ନ ବୈତରଣୀ ଘାଟରେ ସମବେତ ହୋଇ ନିଜନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସାମୂହିକ ପିଣ୍ଡଦାନ କରିଥା'ନ୍ତି ।

ବୈତରଣୀ ନଦୀରେ ନିଜନିଜର ପିତୃପୁରୁଷଙ୍କୁ ପିଣ୍ଡଦାନ କଲେ ପିତୃପୁରୁଷଙ୍କ ଆତ୍ମା ମୋକ୍ଷପ୍ରାପ୍ତ ହୋଇଥାଏ ବୋଲି ସାନ୍ତାଳମାନଙ୍କର ବିଶ୍ୱାସ ରହିଛି । ଏଣୁ ପ୍ରତିବର୍ଷ ବୈତରଣୀ ନଦୀର ବିଭିନ୍ନ

ଘାଟରେ ସାନ୍ତାଳମାନେ ନିଜନିଜର ପିତୃପୁରୁଷଙ୍କ ଅସ୍ଥି ବିସର୍ଜନ କରିବା ସାଙ୍ଗକୁ ପିଣ୍ଡଦାନ କରିଥାନ୍ତି । କେନ୍ଦୁଝର ଜିଲ୍ଲାର ଘ୍ଚାମ୍ପାଟଣା ବ୍ଲକ୍ ଅନ୍ତର୍ଗତ ଭୀମକୁଣ୍ଡ, ତୁରୁମୁଙ୍ଗା, ରାଜନଗର ଏବଂ କେନ୍ଦୁଯୋଡ଼ା, ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ ଧକୋଠା ପଞ୍ଚାୟତର ଅମାରଙ୍ଗ, ଘସିପୁରାର ଝାଡ଼େଶ୍ୱର ଘାଟ ଏବଂ ଯାଜପୁର ଜିଲ୍ଲାର ଦଶାଶ୍ୱମେଧ, ବଲ୍ଲଭୀଘାଟ, ସିଦ୍ଧେଶ୍ୱର ଘାଟ ସମେତ ବିଭିନ୍ନ ବୈତରଣୀ ଘାଟରେ ସାନ୍ତାଳମାନେ ଏହି ଦାମୋଦର ପର୍ବଟିକୁ ପାଳନ କରିଥା'ନ୍ତି । ଏହି ପର୍ବ ପାଳନ କରି ସାନ୍ତାଳମାନେ ନିଜନିଜର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଅର୍ପଣ କରିଥା'ନ୍ତି ।

ସାନ୍ତାଳମାନେ ନୃତ୍ୟ, ଗୀତ ମାଧ୍ୟମରେ ପିତୃପୁରୁଷଙ୍କ ଅସ୍ଥି ବିସର୍ଜନ କରିବା ସାଙ୍ଗକୁ ଦାନଧର୍ମ



ବୈତରଣୀର ଭୀମକୁଣ୍ଡରେ ସାନ୍ତାଳାମାନଙ୍କ ଦାମୋଦର ପର୍ବ

ମଧ୍ୟ କରିଥା'ନ୍ତି । ଏହି ଅବସରରେ ସାନ୍ତାଳମାନେ ମୁଣ୍ଡ ଲଣ୍ଡା ହୋଇ କେଶକୁ ନିଜର ପିତୃପୁରୁଷଙ୍କୁ ଦାନ କରିବା ସହ ବୈତରଣୀରେ ବୁଡ଼ ପକାଇଥାନ୍ତି । ଅସ୍ଥି ବିସର୍ଜନକାରୀମାନେ ନୂତନ ବସ୍ତ୍ର କରି ଛତ୍ର ତଳେ ଲଣ୍ଡା ହୋଇ ପିଣ୍ଡ ଦାନ କରିଥା'ନ୍ତି । ସାନ୍ତାଳମାନଙ୍କ ଆରାଧ୍ୟ ଦେବତା ମାରାଂବୁରୁଙ୍କ ପ୍ରତିନିଧି ସ୍ୱରୂପ ଶାଳ ଗଛର ଡାଳକୁ ନଦୀ ପାର୍ଶ୍ୱରେ ପୋତି ବିଭିନ୍ନ ପ୍ରକାର ବ୍ୟଞ୍ଜନ ଭୋଗ ଅର୍ପଣ କରିଥା'ନ୍ତି । ଏହାବ୍ୟତୀତ ସାନ୍ତାଳମାନେ ନଦୀ ନିକଟରେ ଥିବା ମାରାଂବୁରୁ ମନ୍ଦିରରେ ତେଲ ଅର୍ପଣ କରି ପିତୃପୁରୁଷଙ୍କୁ ସମ୍ମାନ ପ୍ରଦର୍ଶନ କରିଥା'ନ୍ତି । ଏହି ଅବସରରେ ନଦୀ ପଠାରେ ଏକ ବିରାଟ ଦାନ ମେଳା ଅନୁଷ୍ଠିତ ହୋଇଥାଏ । କଂସା, ପିତଳବାସନ, ଶାଢି, ଧୋତି ଓ ଅନ୍ୟାନ୍ୟ ଶୀତବସ୍ତ୍ର ଦାନ କରାଯାଇଥାଏ ।



ବୈତରଣୀର ଭୀମକୁଣ୍ଡରେ ସାନ୍ତାଳମାନଙ୍କ ଦାମୋଦର ପର୍ବ

ଘସିପୁରାର ମାର୍ଶାପାଳ ମାରାଂବୁରୁ କଲ୍‌ଚରାଲ୍ ଆସୋସିଏସନ୍ ପ୍ରତିବର୍ଷ ଏହି ଦାମୋଦର ଉତ୍ସବକୁ ଧୁମ୍‌ଧାମ୍‌ରେ ପାଳନ କରିଥାଏ । ଏହି ଅବସରରେ ପାରଂପରିକ କୁକୁଡ଼ା ଲଢେଇ, ଚକ୍ରିଖେଳ, ଦୌଡ଼, ଉଚ୍ଚଡିଆଁ, ଲମ୍ବଡିଆଁ, ଫୁଟ୍‌ବଲ୍ ଆଦି ଖେଳ ଅନୁଷ୍ଠିତ ହୋଇଥାଏ । ଭୀମକୁଣ୍ଡରେ ପାଳିତ ଦାମୋଦର ପର୍ବ ସମଗ୍ର କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ପ୍ରସିଦ୍ଧିଲାଭ କରିପାରିଛି ।

## ଚାନ୍ଦବାଲିର 'ବୈତରଣୀ ମହୋତ୍ସବ'

ବୈତରଣୀ ନଦୀକୁ ନେଇ ବିଭିନ୍ନ ସ୍ଥାନରେ ବର୍ଷସାରା କିଛି ନା କିଛି ମେଳା ମହୋତ୍ସବ ଲାଗି ରହିଥାଏ । ଚାନ୍ଦବାଲିରେ ପାଳିତ ହେଉଥିବା 'ବୈତରଣୀ ମହୋତ୍ସବ' ରାଜ୍ୟରେ ଏକ ନିଆରା ପରିଚୟ ସୃଷ୍ଟି କରିଛି । ପ୍ରତିବର୍ଷ ମକର ସଂକ୍ରାନ୍ତି ବେଳକୁ ଚାନ୍ଦବାଲିଠାରେ ଏହି 'ନଦୀ ମହୋତ୍ସବ' ପାଳିତ ହୋଇଥାଏ । ଉଭୟ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ଭଦ୍ରକ ଜିଲ୍ଲାର ଚାନ୍ଦବାଲିର ଜନସାଧାରଣଙ୍କ ମିଳିତ ଉଦ୍ୟମରେ ଏହି ଉତ୍ସବ ପାଳିତ ହୋଇଥାଏ । ଚାନ୍ଦବାଲିର କାଳୀ ପଡ଼ିଆଠାରେ ସପ୍ତାହେ ଧରି ଅନୁଷ୍ଠିତ ଏହି ମହୋତ୍ସବରେ ରାଜ୍ୟ ତଥା ରାଜ୍ୟ ବାହାରର ବହୁ ଲୋକ, ଅନୁଷ୍ଠାନ ଅଂଶଗ୍ରହଣ କରିଥା'ନ୍ତି । ପ୍ରାଚୀନ ପ୍ରାକୃତିକ ନଦୀ ବନ୍ଦରର ଇତିହାସକୁ ରୋମନ୍ଥନ କରିବା ଏବଂ ପ୍ରାଚୀନ ନୌବାଣିଜ୍ୟ ପରଂପରାର ସ୍ମୃତିଚାରଣ କରିବା ଉଦ୍ଦେଶ୍ୟରେ ଏହି 'ବୈତରଣୀ ମହୋତ୍ସବ' ଆୟୋଜନ କରାଯାଇ ଆସୁଛି । କଟକର ମହାନଦୀ କୂଳର ଗଡ଼ଗଡ଼ିଆ ଘାଟରେ

ପାଳିତ ହେଉଥିବା ଐତିହାସିକ ବାଲିଯାତ୍ରା ଭଳି ଚାନ୍ଦବାଲିର ବୈତରଣୀ ମହୋତ୍ସବର ଗୁରୁତ୍ୱ ରହିଛି । ଚାନ୍ଦବାଲି ବୈତରଣୀ ମହୋତ୍ସବରେ ସଂସ୍କୃତି, ପରଂପରା, ପ୍ରାଚୀନ ନୌବାଣିଜ୍ୟ, ସାହିତ୍ୟ, କଳା ସଂପର୍କିତ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ସାମିଲ୍ କରାଯାଇଥାଏ ।

## ପବିତ୍ର ମହାଳୟା ଓ ନାଭିଗୟାରେ ପିଣ୍ଡଦାନ

*(Offering of funeral cakes to the deceased ancestors)*



ପବିତ୍ର ମହାଳୟା ଅବସରରେ ଯାଜପୁରର ବୈତରଣୀ ନଦୀ କୂଳସ୍ଥ ବିରଜା ପୀଠରେ ଥିବା ନାଭିଗୟାକୁ ପ୍ରତିବର୍ଷ ଲକ୍ଷାଧିକ ସଂଖ୍ୟାରେ ଭକ୍ତ ନିଜ ପିତୃପୁରୁଷଙ୍କୁ ପିଣ୍ଡ ଦାନ କରିବା ଉଦ୍ଦେଶ୍ୟରେ ଆସିଥା'ନ୍ତି । ମହାଳୟାଠାରୁ ଆରଂଭ କରି ଦୀପାବଳି ଅମାବାସ୍ୟା ପର୍ଯ୍ୟନ୍ତ ୧୫ ଦିନ (ଗୋଟିଏ ପକ୍ଷ) ଧରି ନାଭିଗୟାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କାର୍ଯ୍ୟକ୍ରମ ଚାଲିଥାଏ । ପିତୃପୁରୁଷଙ୍କ ଆଶିର୍ବାଦ ନ ରହିଲେ ସନ୍ତାନ,ସନ୍ତତି ଓ ପରିବାରର କଲ୍ୟାଣ ହୁଏନାହିଁ ବୋଲି ହିନ୍ଦୁଧର୍ମରେ ବିଶ୍ୱାସ ରହିଛି । ସେଥିପାଇଁ ପିତୃକୁଳ ଏବଂ ମାତୃକୁଳର ତିନି ପୁରୁଷଙ୍କୁ ପିତା, ପିତାମହ ଓ ପ୍ରପିତାମହଙ୍କୁ ସେମାନଙ୍କ ଶ୍ରାଦ୍ଧଦିବସରେ ପିତୃପକ୍ଷ ଓ ମହାଳୟାରେ ପିଣ୍ଡଦାନ କରାଯାଇଥାଏ ।

ଭାରତରେ ୫୫ଟି ତୀର୍ଥସ୍ଥାନମାନଙ୍କରେ ମହାଳୟା ଶ୍ରାଦ୍ଧକର୍ମ କରାଯାଇଥାଏ ବୋଲି 'ବିଷ୍ଣୁଧର୍ମସୂତ୍ର' ଗ୍ରନ୍ଥରେ ଉଲ୍ଲେଖ ରହିଛି । ଗଙ୍ଗା, ଗୟା, କାଶୀ, କୁରୁକ୍ଷେତ୍ର, ପ୍ରୟାଗ ଓ ପୁଷ୍କର ଆଦି ତୀର୍ଥସ୍ଥାନ ମଧ୍ୟରେ ଯାଜପୁର ବୈତରଣୀ କୂଳର ନାଭିଗୟା ଶୀର୍ଷ ସ୍ଥାନ ଅଧିକାର କରିଛି । ନାଭିଗୟାର ମାହାତ୍ମ୍ୟ ସଂପର୍କରେ ବିଭିନ୍ନ ପୁରାଣରେ ବର୍ଣ୍ଣନା ରହିଛି ।

*"ତତ୍ର ଶ୍ରୀ ବିରଜେ କ୍ଷେତ୍ରେ ଦେବ୍ୟା ଈଷାନକୋଣତଃ, ଗୟା ନାଭି-ମହାପୁଣ୍ୟା ପିତୃଣାମ୍ ମୁକ୍ତିଦାୟିକାଃ । ତତ୍ର ପିଣ୍ଡଂ ପ୍ରୟଚ୍ଛନ୍ତି ନରାଜେ ବିଗତକଳ୍ମଷାଃ, ପିତୃ ଦୁହୃତ୍ୟ ନରାକାଭ୍ରେ ବ୍ରଜନ୍ତି ହରେଃ ।"* (କପିଳ ସଂହିତା)

*"ନାଭିକୂପ ସମୀପେଷୁ ଦେବୀ ଯା ବିରଜାସ୍ଥିତା, ତତ୍ର ପିଣ୍ଡଦିକଂ କୃତ୍ୱା ତ୍ରିସପ୍ତଦକୁଳମୁର୍ଦ୍ଧରେତ୍ ।"* (ବାୟୁ ପୁରାଣ)

ଯାଜପୁରର ବିରଜା ଦେବୀଙ୍କ ମନ୍ଦିର ପରିସରରେ ଚଣ୍ଡୀମଣ୍ଡପର ବାମ ପାର୍ଶ୍ୱରେ ଏହି ପବିତ୍ର 'ନାଭିଗୟା' ରହିଛି । ଏଠାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରାଯାଇଥାଏ । ଏହା ଭାରତବର୍ଷର ଏକ ପ୍ରମୁଖ ମୋକ୍ଷ ପ୍ରାପ୍ତିର କ୍ଷେତ୍ର ଭାବେ ପରିଚିତ । ପ୍ରାଚୀନ ଭାରତର ନାଭି କ୍ଷେତ୍ର ଭାବେ ପରିଚିତ ଏହି ପୀଠରେ ପିଣ୍ଡଦାନ କରି ଦେବୀ ବିମଳା ବିରଜାଙ୍କୁ ଦର୍ଶନ କଲେ ୨୧ ପୁରୁଷ ପର୍ଯ୍ୟନ୍ତ ପିତୃପୁରୁଷ ମୁକ୍ତିଲାଭ କରନ୍ତି ବୋଲି ବିଶ୍ୱାସ ରହିଛି । ଏ ସଂପର୍କରେ ବାୟୁ ପୁରାଣ ଓ ହରିବଂଶରେ ମଧ୍ୟ ଉଲ୍ଲେଖ ରହିଛି । ନାଭିଗୟା ହିନ୍ଦୁମାନଙ୍କର ପ୍ରସିଦ୍ଧ ତୀର୍ଥଭୂମି ଅଟେ । ଏହି ପବିତ୍ର ପୀଠରେ ଭୌମକର ବଂଶୀ, ସୋମବଂଶୀ, ଗଙ୍ଗବଂଶୀ ରାଜା ଓ ପ୍ରଜାମାନଙ୍କଠାରୁ ଆରଂଭ କରି ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ ଲୋକମାନେ ଆସି ଆଶ୍ୱିନ ପିତୃପକ୍ଷରେ ପିଣ୍ଡଦାନ କରିଥା'ନ୍ତି ।

ଆଶ୍ୱିନ ମାସ କୃଷ୍ଣ ପକ୍ଷ ପ୍ରତିପଦାଠାରୁ ପିତୃପକ୍ଷ ଆରଂଭ ହୋଇ ଦ୍ୱୀପାବଳି ଅମାବାସ୍ୟା ଦିନ ଶେଷ ହୋଇଥାଏ । "ପିତୃଲୋକ ପରିତ୍ୟେଜ୍ୟ ଆଗତୟୋ ମହାଳୟା" । ମହାଳୟା ଦିନ ପରଲୋକଗତ ପିତୃପୁରୁଷଗଣ ପ୍ରେତାଲୋକରୁ ମର୍ତ୍ତ୍ୟଲୋକକୁ ଅବତରଣ କରନ୍ତି ଏବଂ ନିଜନିଜ ପୂର୍ବ ବାସସ୍ଥାନ ପରିଦର୍ଶନ କରି ନିଜ ବଂଶଧରମାନଙ୍କର ଶୁଭକାମନା କରିଥା'ନ୍ତି । ବଂଶଧରଙ୍କ ପକ୍ଷରୁ ମଧ୍ୟ ମହାଳୟା ଦିନ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦାନ କରାଯାଇଥାଏ । ଆଶ୍ୱିନ କୃଷ୍ଣ ପକ୍ଷ ଅମାବାସ୍ୟା ପିତୃ ବିସର୍ଜନୀ ଅମାବାସ୍ୟା ଭାବେ ପରିଚିତ । ଏହାକୁ 'ମହାଳୟା' କୁହାଯାଇଥାଏ ।

ନାଭିଗୟାରେ ପିଣ୍ଡଦାନ ପରେ ପିଣ୍ଡଦାତା ବିଷ୍ଣୁ ଓ ଅନ୍ୟ ଦେବଦେବୀଙ୍କୁ ସାକ୍ଷୀ ରଖି ପିତୃଋଣ ପରିଶୋଧ କରିଥା'ନ୍ତି । *"ସାକ୍ଷିଣଃ ସନ୍ତୁମେ ଦେବା ବ୍ରହ୍ମୋନାଦାୟ ସ୍ତଥା, ମୟା ଗୟାଂ ସମାସାଦ୍ୟ ପିତୃଣାମ୍ ନିଷ୍କୃତିଃକୃତା ଆଗତୋଽସ୍ମି । ଗୟାମ୍ ଦେବ ପିତୃକାର୍ଯ୍ୟେ ଗଧାଧର, ତ୍ୱମେବ ସାକ୍ଷୀ ଭଗବାନ ଅନୁଣୋରହମ୍ ଋଣତ୍ରୟାତ୍ ।"* ପିଣ୍ଡଦାନ କାର୍ଯ୍ୟ ସମାପନ ପରେ ପିତୃଗଣ ପିଣ୍ଡ ଭକ୍ଷଣ କରିବାକୁ କାଉ, କୁକୁର ଓ ଅନ୍ୟାନ୍ୟ ଜୀବଜନ୍ତୁ ରୂପରେ ଆସିଥା'ନ୍ତି ବୋଲି ବିଶ୍ୱାସ ରହିଛି । ସେଥିପାଇଁ କାଉ ଓ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ବାରଣ ନ କରିବାକୁ 'କୃତ୍ୟ କଳ୍ପତରୁ' ଗ୍ରନ୍ଥରେ ଉଲ୍ଲେଖ ରହିଛି । ନାଭିଗୟାରେ ପିଣ୍ଡଦାନ କରି ଶ୍ରାଦ୍ଧକର୍ତ୍ତା ନିଜ ପିତୃପୁରୁଷଙ୍କୁ ଉଦ୍ଧାର କରିବା ସହିତ ପରିବାରର କଲ୍ୟାଣ ସାଧନ କରିଥା'ନ୍ତି ।

ପିଣ୍ଡରେ ଅରୁଆ ଚାଉଳ, ଗହମ ଗୁଣ୍ଡ, ଅଟା, ଚାଉଳ ଚୁନା, ଚିନି, ଗୁଡ଼, କ୍ଷୀର, କଦଳୀ ଆଦି ଭୋଜ୍ୟ ଭାବେ ବ୍ୟବହୃତ ହୋଇଥାଏ । ଏହି ଅବସରରେ ଶ୍ରାଦ୍ଧକର୍ତ୍ତାଙ୍କ ପକ୍ଷରୁ ବ୍ରାହ୍ମଣ ଭୋଜନ ସମେତ ବନ୍ଧୁ ଭୋଜନ, ଶ୍ୱାନ, କାକ, ଗୋରୁ ଓ ଅନ୍ୟାନ୍ୟ ପଶୁପକ୍ଷୀଙ୍କୁ ଭୋଜନ ପ୍ରଦାନ କରାଯାଇଥାଏ । ଏହି ଅବସରରେ ମଧ୍ୟ ରାତ୍ରରେ ପିତୃପୁରୁଷଙ୍କୁ ହବିଷ୍ୟାନ୍ନ ପ୍ରଦାନ କରାଯାଇଥାଏ ।

ପ୍ରତିବର୍ଷ ମହାଳୟା ପିତୃ ପକ୍ଷରେ ପନ୍ଦର ଦିନ ଧରି ଯାଜପୁରର ବୈତରଣୀ ନଦୀ କୂଳସ୍ଥ ନାଭିଗୟା ଏବଂ ଦଶାଶ୍ୱମେଧ ଘାଟରେ ବହୁ ସଂଖ୍ୟାରେ ଶ୍ରାଦ୍ଧକର୍ତ୍ତାଙ୍କ ଭିଡ଼ ପରିଲକ୍ଷିତ ହୋଇଥାଏ ।

## ଭଣ୍ଡାରିପୋଖରୀର ତ୍ରିବେଣୀ ଅମାବାସ୍ୟା ମେଳା

ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ ଅଞ୍ଚଳରେ ପ୍ରତିବର୍ଷ ବୈତରଣୀ ନଦୀ କୂଳରେ ତ୍ରିବେଣୀ ଅମାବାସ୍ୟା ମେଳା ଅନୁଷ୍ଠିତ ହୋଇଥାଏ । ପ୍ରତିବର୍ଷ ଜାନୁୟାରୀ-ଫେବ୍ରୁଆରୀ ମାସ ବେଳକୁ ଭଣ୍ଡାରିପୋଖରୀ ବ୍ଲକ୍‌ର ତେସିଙ୍ଗା ପଞ୍ଚାୟତର ଝୁଟୁଣା ଗ୍ରାମର ମା' ତାରିଣୀ ପୀଠରେ ବେଶ୍ ଧୂମ୍‌ଧାମ୍‌ରେ ତ୍ରିବେଣୀ ଅମାବାସ୍ୟା ମେଳା ପାଳିତ ହୋଇଥାଏ । ସପ୍ତାହେ ଧରି ପାଳିତ ହେଉଥିବା ଏହି ନଦୀ ମେଳାରେ ସ୍ଥାନୀୟ ଅଞ୍ଚଳର ସହସ୍ରାଧିକ ଶ୍ରଦ୍ଧାଳୁ ବୈତରଣୀ ନଦୀରେ ବୁଡ଼ ପକାଇଥାନ୍ତି । ଏହି ଉତ୍ସବ ତ୍ରିବେଣୀ ଅମାବାସ୍ୟାରୁ ଆରମ୍ଭ ହୋଇ ଶ୍ରୀପଞ୍ଚମୀ ଦିନ ଶେଷ ହୋଇଥାଏ ।

କେବଳ ଝୁଟୁଣା ଗ୍ରାମ ନୁହେଁ, ଭଣ୍ଡାରୀପୋଖରୀ ବ୍ଲକ୍‌ର ଅନ୍ୟାନ୍ୟ ବୈତରଣୀ କୂଳିଆ ଗାଁମାନଙ୍କରେ ଏହି 'ନଦୀ ମେଳା' ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ବୈତରଣୀ ନଦୀପଠାରେ ମେଳା ବସିବା ସାଙ୍ଗକୁ ଅପେରା, ମୀନାବଜାର ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥାଏ । ୧୯୮୫ ମସିହାରେ ଝୁଟୁଣା ଗ୍ରାମର ଜଣେ ବ୍ୟକ୍ତିଙ୍କୁ ସ୍ୱପ୍ନାଦେଶ ହୋଇଥିଲା । ବୈତରଣୀ ନଦୀରୁ କଳାମୁଗୁନି ପଥରର ଏକ ଦେବୀ ପ୍ରତିମା ମିଳିଥିଲା । ଏହି ମୂର୍ତ୍ତିକୁ ଏଠାରେ ତ୍ରିବେଣୀ ଅମାବାସ୍ୟା ଦିନ ପ୍ରତିଷ୍ଠା କରାଯାଇଥିବାରୁ ପ୍ରତିବର୍ଷ ଏହି ସମୟରେ ଏଠାରେ ତ୍ରିବେଣୀ ମେଳା ଅନୁଷ୍ଠିତ ହୋଇଥାଏ ।

## ବାଲିଶୋଧରା ପର୍ବ

ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଓ ତିହିଡ଼ି ଅଞ୍ଚଳରେ ଏହି ବାଲିଶୋଧରା ପର୍ବ ପାଳନ କରାଯାଇଥାଏ । ଏହାକୁ ବିଶେଷକରି ଶୁଦ୍ର ବା ହରିଜନ ସଂପ୍ରଦାୟର ବ୍ୟକ୍ତିମାନେ ପାଳନ କରିଥାନ୍ତି । ବୈତରଣୀ ଓ ଭଦ୍ରକ ଜିଲ୍ଲାର ଅନ୍ୟାନ୍ୟ ନଦୀକୂଳିଆ ଅଞ୍ଚଳରେ ଏହି ପର୍ବ ପାଳନ ହୋଇଥାଏ । 'ବାଲି ଶୁଦ୍ରା' ଅପଭ୍ରଂଶ ହୋଇ ବାଲିଶୋଧରା ହୋଇଛି ବୋଲି କୁହାଯାଏ । ଶୁଦ୍ରର ସ୍ତ୍ରୀଲିଙ୍ଗ ଶୁଦ୍ରା । ହରିଜନ (ଶୁଦ୍ର) ଶ୍ରେଣୀୟ ମହିଳାମାନେ ଏହି ପୂଜା ପାଳନ କରୁଥିବାରୁ ଏହାର ନାମ 'ବାଲି ଶୁଦ୍ରା' ବା 'ବାଲି ଶୋଧରା' ହୋଇଛି । ଏହି ପର୍ବରେ ଉଭୟ ପୁରୁଷ ଓ ମହିଳାମାନଙ୍କ ଶରୀରରେ କାଳିସି ସବାର ହେବାରୁ ସେମାନେ ମୁଣ୍ଡ ବାଳକୁ ମୁକୁଳା କରି ନାଚନ୍ତି ।

## ମକର ଉତ୍ସବ ଓ କୁଡୁମୀମାନଙ୍କ ଟୁସୁ ପର୍ବ

ଆଦିବାସୀ ଅଧ୍ୟୁଷିତ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ପାଳନ କରାଯାଉଥିବା ମକର ଉତ୍ସବ ଓ

କେଶରୀକୁଣ୍ଡରେ ମକର ମେଳା



କୁଡୁମୀ ସଂପ୍ରଦାୟର 'ଟୁସୁ ପର୍ବ' ଉଭୟ ଜିଲ୍ଲାର ଦୁଇ ପ୍ରମୁଖ ଗଣପର୍ବ ଭାବେ ପରିଚିତ । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ସମଗ୍ର କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ଉତ୍ସବମୁଖର ହୋଇ ଉଠିଥାଏ । ମାଘ ମାସରେ ମକର ଉତ୍ସବ ସପ୍ତାହେ ଧରି ପାଳିତ ହୋଇଥାଏ । ବିଶେଷକରି ବୈତରଣୀ ନଦୀକୂଳିଆ ଗାଁମାନଙ୍କରେ ମକର ଉତ୍ସବ ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ବୈତରଣୀ ନଦୀରେ **ମକର ବୁଡ଼** ପକାଇଲେ କୋଟି ଜନ୍ମର ପୁଣ୍ୟଫଳ ମିଳିଥାଏ ।

ମକର ପର୍ବ ପାଳନ ଅବସରରେ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସାପ୍ତାହିକୀ ହାଟଗୁଡ଼ିକରେ କୁକୁଡ଼ା ଲଢେଇ ସହ ପାରଂପରିକ ଜୁଆଖେଳ ମଧ୍ୟ ଚାଲେ । ସଂକ୍ରାନ୍ତି ସତ୍ତ୍ୱେ ଏହି ଦିନ ପ୍ରାୟ ସମସ୍ତଙ୍କ ଘରେ ମାଛ, କୁକୁଡ଼ା ଓ ଖାସି ମାଂସ ଆଦି ଆମିଷ ଭୋଜନ ହୋଇଥାଏ । ବନ୍ଧୁତ୍ୱକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ମଣିଷ ମଣିଷ ମଧ୍ୟରେ ସହି ସଂଗାତ, ମକର, ବଉଳ ଆଦି ବସିଥାଏ । ମକର ସଂକ୍ରାନ୍ତି ଦିନ ସୂର୍ଯ୍ୟ ଉଦୟ ପୂର୍ବରୁ ପରିବାରର ସମସ୍ତ ସଦସ୍ୟ ବୈତରଣୀ ନଦୀରେ 'ମକର ବୁଡ଼' ପକାଇଥା'ନ୍ତି । ବୈତରଣୀର କେଶରୀକୁଣ୍ଡ, ରାମତୀର୍ଥ, ରୂପାକୁଣ୍ଡ, ଦୋ-ମୁହାଣୀ, ତିନିଧାରିଆ, ଭୀମକୁଣ୍ଡରେ ବୁଡ଼ ପକାଇଲେ ସବୁଠୁ ଅଧିକ ପୁଣ୍ୟ ମିଳିଥାଏ ।

କେନ୍ଦୁଝର ଜିଲ୍ଲାର ବାର୍ହାଟିପୁରାରେ ସର୍ବାଧିକ ପନ୍ଦର ଦିନ ଧରି ମକର ଉତ୍ସବ ପାଳିତ ହୋଇଥାଏ । ବାର୍ହାଟିପୁରା ମକରମେଳା କେନ୍ଦୁଝର ଜିଲ୍ଲାର ସବୁଠୁ ବଡ଼ ମକର ମେଳାର ମାନ୍ୟତା

ଅର୍ଜନ କରିପରିଛି । ସେହିଭଳି ବୈତରଣୀ ନଦୀରେ ଥିବା ପ୍ରସିଦ୍ଧ କେଶରୀକୁଣ୍ଡଠାରେ ଦିନିକିଆ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏହି ମେଳାରେ ଉଭୟ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରୁ ଲକ୍ଷାଧିକ ଭକ୍ତ ଓ ସ୍ଥାନୀୟ ଅଧିବାସୀ ବୈତରଣୀର କେଶରୀକୁଣ୍ଡରେ ମକର ବୁଡ଼ ପକାଇଥା'ନ୍ତି ।

କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତବର୍ତ୍ତୀ ଚଂପୁଆ ବ୍ଲକ୍‌ର କେଶରୀକୁଣ୍ଡରେ ଦିନିକିଆ ମେଳା ଅନୁଷ୍ଠିତ ହୋଇଥାଏ । କେଶରୀକୁଣ୍ଡ ମକରମେଳା ଗୋପାଳ ଓ କୁଡୁମୀ ସଂପ୍ରଦାୟର ଲୋକଙ୍କ ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ବିଭିନ୍ନ ସ୍ଥାନରେ ମକର ଚାଉଳ ପୂଜା ହେବା ପରେ ପରସ୍ପର ମଧ୍ୟରେ ସଂପର୍କକୁ ସୁଦୃଢ଼ କରିବା ପାଇଁ ମକର ବସିଥାଏ ।

କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ଅନ୍ୟତମ ପ୍ରମୁଖ ପର୍ଯ୍ୟଟନସ୍ଥଳ ବୈତରଣୀ ନଦୀର ଭୀମକୁଣ୍ଡଠାରେ ମକର ଉତ୍ସବ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ଏହି ଅବସରରେ ଲକ୍ଷାଧିକ ଭକ୍ତ ବୈତରଣୀ ନଦୀରେ ଥିବା ଭୀମଙ୍କ କୁଣ୍ଡରେ ପବିତ୍ର ମକର ବୁଡ଼ ପକାଇଥା'ନ୍ତି । ଏହା ତିନି ଦିନ ଧରି ଚାଲେ ଏବଂ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରୁ ଲକ୍ଷାଧିକ ଭକ୍ତ ଓ ପର୍ଯ୍ୟଟକଙ୍କ ସମାବେଶ ଘଟିଥାଏ ।



**ଭୀମକୁଣ୍ଡରେ ମକର ମେଳା**



**ଭୀମକୁଣ୍ଡରେ ମକର ମେଳା**

ମକର ମେଳା ଅବସରରେ ପୁଣ୍ୟତୋୟା ବୈତରଣୀ ନଦୀର ବିଭିନ୍ନ ସ୍ଥାନରେ ଥିବା କୁଣ୍ଡମାନଙ୍କରେ ଭକ୍ତମାନେ ମକର ବୁଡ଼ ପକେଇଥାନ୍ତି । ପାଟଣା ବ୍ଲକ୍ ଅନ୍ତର୍ଗତ ବୈତରଣୀ କୂଳରେ ଥିବା ପରମେଶ୍ୱର ମନ୍ଦିର ନିକଟରେ ମଧ୍ୟ ମକରବୁଡ଼ ପଡିଥାଏ ।

ମକର ସଂକ୍ରାନ୍ତି ଅବସରରେ ସୂର୍ଯ୍ୟଙ୍କ ଉତ୍ତରାୟଣ ହେଉଥିବାରୁ କେନ୍ଦୁଝରର ବଳଦେବଜୀଉଙ୍କ ମନ୍ଦିର ନୀତିରେ ଅନେକ ପରିବର୍ତ୍ତନ ହୋଇଥାଏ । ସନ୍ଧ୍ୟାରେ ବଳଦେବଜୀଉଙ୍କ ମନ୍ଦିରରେ ମକର ବେଢା ପରିକ୍ରମା କରାଯିବା ସହ ନେତ ବନ୍ଧାଯାଇଥାଏ ।

ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକାଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ବୈତରଣୀର ବ୍ରହ୍ମକୁଣ୍ଡରେ ମକର ବୁଡ଼ ପକାଇବାକୁ ଲକ୍ଷାଧିକ ଭକ୍ତଙ୍କ ଭିଡ଼ ଜମିଥାଏ । ସେହିଭଳି ବୈତରଣୀ ନଦୀ କୂଳରେ ଅବସ୍ଥିତ କେନ୍ଦୁଝର ଜିଲ୍ଲାର ଟୁକୁଣାର କୁଣ୍ଡେଶ୍ୱର, ରସବନ୍ତଳା, ମଥୁରାମଣ୍ଡଳୀ, ମିରିଗସିଙ୍ଗା, ଆନନ୍ଦପୁର ଉପଖଣ୍ଡର ଗଡ଼ଚଣ୍ଡୀପୀଠ, ବୀରଗୋବିନ୍ଦପୁରର ରଘୁନାଥଜିଉ ପୀଠ, ପଢିଆରିପଲ୍ଲୀରେ ଥିବା ଗିରିଗୋବର୍ଦ୍ଧନ ସିଦ୍ଧ ଗୁମ୍ଫା, ଦଧିବାମନଜିଉ ମନ୍ଦିର, ବାଲୁଙ୍କେଶ୍ୱର ମନ୍ଦିର, ଝାଡ଼େଶ୍ୱର ପୀଠ, ବ୍ରହ୍ମେଶ୍ୱର ପୀଠ, ମା' ବ୍ରାହ୍ମଣୀଦେବୀ ପୀଠ, ଘଟଗାଁର ମା' ତାରିଣୀ ପୀଠ, ଦେଓଗାଁସ୍ଥିତ କୁଶଳେଶ୍ୱର ମନ୍ଦିର, ଭାଟିଆଶୁଣୀ ପୀଠ, ଧାନବେଣୀ, ଦେବକୁଣ୍ଡ, ଅସୁରଖୋଲ, ବୈତରଣୀର ହାବଳେଶ୍ୱରଘାଟରେ ମକର ପର୍ବ ଅନୁଷ୍ଠିତ ହୋଇଥାଏ ।

କୁଡ଼ୁମୀ ସଂପ୍ରଦାୟ ବା ମହନ୍ତ ଜାତିର କୁମାରୀ ଝିଅ ଓ ସଧବା ସ୍ତ୍ରୀମାନଙ୍କ ଦ୍ୱାରା ପାଳିତ ହେଉଥିବା ଟୁସୁ ପର୍ବ ମକର ସଂକ୍ରାନ୍ତି ଦିନଠାରୁ ଆରମ୍ଭ ହୋଇଥାଏ । କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ମହନ୍ତ ସଂପ୍ରଦାୟର ଅବିବାହିତ ଝିଅମାନେ ଟୁସୁ ଦେବୀଙ୍କ ମୂର୍ତ୍ତି ଗଢି ବୈତରଣୀ ଓ ଅନ୍ୟାନ୍ୟ ନଦୀ କୂଳରେ ସ୍ଥାପନା କରି ପୂଜା କରିଥାନ୍ତି । କୁଡ଼ୁମୀ ଝିଅମାନେ ପାରଂପରିକ ଗୀତ ଗାଇ ଟୁସୁ ଦେବୀଙ୍କୁ ଶୋଭାଯାତ୍ରା ମାଧ୍ୟମରେ ଗ୍ରାମ ପରିକ୍ରମା କରିଥାନ୍ତି । ପୂଜା ଶେଷ ହେବାପରେ ଗାଁର ଝିଅବୋହୂମାନେ ଟୁସୁ ଦେବୀଙ୍କ ମୂର୍ତ୍ତିଙ୍କୁ ନଦୀରେ ବିସର୍ଜନ କରିଥାନ୍ତି । ଓଡ଼ିଆ ଘରର ଭାଲୁକୁଣୀ ଭଳି 'ଟୁସୁ ଦେବୀ' ହେଉଛନ୍ତି ମାଟିରେ ନିର୍ମିତ ପ୍ରତିମା ।

କୁଡ଼ୁମୀ ସଂପ୍ରଦାୟର ଝିଅମାନେ ଟୁସୁ ଦେବୀଙ୍କୁ ପୂଜା କରିବା ପଛରେ ଅନେକ କାରଣ ରହିଛି । ମହନ୍ତ ବା କୁଡ଼ୁମୀ ସଂପ୍ରଦାୟରେ 'ଟୁସୁ' ଦେବୀଙ୍କୁ ସେମାନଙ୍କର ଇଷ୍ଟଦେବୀ ଭାବେ ପୂଜା କରିଥାନ୍ତି । ଟୁସୁ ପୂଜା ନେଇ କୌଣସି ଇତିହାସ ନଥିଲେ ମଧ୍ୟ ଏନେଇ ଏକ ପ୍ରବାଦ ଅଛି । ଟୁସୁ ଦେବଲୋକର କୌଣସି ଦେବୀ ନୁହଁନ୍ତି । କିମ୍ବଦନ୍ତୀ ଅନୁସାରେ, ଜନୈକ କୁଡ଼ୁମୀ ଜମିଦାରଙ୍କର ଏକମାତ୍ର ଅଲିଅଳି ଝିଅ ଥିଲା 'ଟୁସୁ' । ଟୁସୁ ଥିଲା ଅପରୂପା ସୁନ୍ଦରୀ । ସେତେବେଳେ କେନ୍ଦୁଝର ଓ ମୟୂରଭଞ୍ଜ ଅଞ୍ଚଳରେ ମୋଗଲ ଶାସନ ପ୍ରଚଳିତ ଥିଲା । ମୋଗଲ୍ ବାଦଶାହା 'ଟୁସୁ'ର ସୌନ୍ଦର୍ଯ୍ୟରେ



ଭୀମକୁଣ୍ଡରେ ମକର ମେଳା



**କୁଡୁମି ସଂପ୍ରଦାୟର ଟୁସୁ ପର୍ବ**

ବିମୋହିତ ହୋଇ ତାକୁ ନିଜର ବେଗମ୍ କରିବାକୁ ଚାହିଁଥିଲେ । ଟୁସୁର ବାପା ଜମିଦାର ଥିଲେ ବି କାମନାଶକ୍ତ ବାଦଶାହାଙ୍କର ଏଭଳି ମତିଗତି ତାଙ୍କୁ ଭଲ ଲାଗି ନଥିଲା । ଏଭଳି ପରିସ୍ଥିତିରେ କିଂକର୍ତ୍ତବ୍ୟବିମୁଢ ହୋଇ ଜମିଦାର ନିଜ ଝିଅ ଟୁସୁକୁ ଅନ୍ୟତ୍ର ବିବାହ କରିବାକୁ ବରପାତ୍ର ଠିକ୍ କରିଦେଲେ । ମାତ୍ର, ବାଦଶାହା ଟୁସୁର ଭାବି ବରକୁ ହତ୍ୟା କରିବା ସହିତ ଜମିଦାରକୁ ମଧ୍ୟ ନାନା ପ୍ରକାର ନିର୍ଯାତନା ଦେଇଥିଲେ । ନିଜର ଭାବି ସ୍ୱାମୀର ହତ୍ୟା, ବାପାଙ୍କୁ ଦିଆଯାଉଥିବା ନିର୍ଯାତନା ଓ ବାଦଶାହାର କାମୁକ ନଜରରୁ ନିଜକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ପବିତ୍ର ମକର ସଂକ୍ରାନ୍ତି ଦିନ ଟୁସୁ କଂସାବତୀ (ବୈତରଣୀ) ନଦୀରେ ଝାସ ଦେଇ ନିଜର ସତୀତ୍ୱ ରକ୍ଷା କରିଥିଲେ । ସେହିଦିନଠାରୁ ମକର ସଂକ୍ରାନ୍ତି ଦିନଟିକୁ 'ଟୁସୁ'ର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଟୁସୁ ପର୍ବ ପାଳନ କରାଯାଇଆସୁଛି ।

## ମକର ମେଳା ଓ ଆଦିବାସୀ ଯୁବକ, ଯୁବତୀଙ୍କ ଜୀବନ ସାଥୀ ଚୟନ କରିବାର ସୁଯୋଗ

ମକର ପର୍ବ ସମଗ୍ର ଉତ୍ତର ଓଡ଼ିଶାର ଗଣପର୍ବର ମାନ୍ୟତା ଲାଭ କରିପାରିଛି । ଏହା ଏ ଅଞ୍ଚଳର

ସାମାଜିକ ଓ ସାଂସ୍କୃତିକ ଜୀବନଧାରାକୁ ବେଶ୍ ପ୍ରଭାବିତ କରିପାରିଛି । କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ଆଦିବାସୀ ଜନଜୀବନ ଓ ମକର ମେଳା ପରସ୍ପର ସହ ଅଙ୍ଗାଙ୍ଗି ଭାବେ ଜଡ଼ିତ । ମକର ସଂକ୍ରାନ୍ତି ଅବସରରେ ଆୟୋଜିତ ମକର ମେଳାରେ ଭୂୟାଁ ଓ ଜୁଆଙ୍ଗ ସଂପ୍ରଦାୟରେ ଯୁବକ, ଯୁବତୀମାନେ ନିଜ ନିଜର ଜୀବନ ସାଥୀ ଚୟନ କରିବାର ସୁଯୋଗ ଲାଭ କରିଥାନ୍ତି ।

ମକର ମେଳାରେ ଆଦିବାସୀ ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି ଏବଂ ସେମାନଙ୍କ ମଧ୍ୟରେ ମନ ଦିଆନିଆ ହୁଏ । ମକର ମେଳା ଦିନ ଯେଉଁ ଯୁବକ-ଯୁବତୀ ପରସ୍ପରକୁ ଭଲ ପାଇ ବସନ୍ତି ଏବଂ ସେମାନଙ୍କର ମନ ମିଳେ, ପରବର୍ତ୍ତୀ ଦିନମାନଙ୍କରେ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହୋଇଥାନ୍ତି । କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ବିଭିନ୍ନ ସ୍ଥାନରେ ମକର ମେଳା ସପ୍ତାହେ ଧରି ଚାଲେ । ଏହି ଅବସରରେ ପାଖଆଖ ଗାଁମାନଙ୍କରୁ ଆଦିବାସୀ ଯୁବକ, ଯୁବତୀମାନେ ମେଳା ଦେଖିବାକୁ ଆସନ୍ତି ।

ମେଳାରେ ଯୁବକ, ଯୁବତୀ ପରସ୍ପର ସହ ସାକ୍ଷାତ ହୁଅନ୍ତି ଓ ଭାବର ବିନିମୟ ହୁଏ । କ୍ରମେ ଯୁବକ, ଯୁବତୀମାନେ ନାଚଗୀତରେ ମସ୍‌ଗୁଲ୍ ହୋଇ ପଡନ୍ତି । ଯୁବକ, ଯୁବତୀ ନିଜନିଜର ଜୀବନ ସାଥୀ ଚୟନ କରନ୍ତି । କେତେକ ସ୍ଥଳେ ଯୁବକମାନେ ବଳପୂର୍ବକ ଯୁବତୀମାନଙ୍କୁ ଅପହରଣ କରି ନେଇଯିବାର ମଧ୍ୟ ପରଂପରା ରହିଛି । ଯୁବକଟି ଯୁବତୀକୁ ବଳପୂର୍ବକ ଅପହରଣ କରିନେଲାବେଳେ ଝିଅ ପକ୍ଷରୁ ଏହାକୁ ପ୍ରତିବାଦ କରାଯାଏ । ଏହାପରେ ଉଭୟ ପକ୍ଷରୁ ବୁଝାମଣା ଭିତ୍ତିରେ ବିବାହ ସଂପନ୍ନ ହୁଏ । ଉଭୟ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର କେଶରୀକୁଣ୍ଡ, ଭୀମକୁଣ୍ଡ ଓ ରୂପାକୁଣ୍ଡ ମକରମେଳାରେ ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ବିନିମୟ ଓ ସାଥୀ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ଏହି ଅବସରରେ କୁଡୁମୀ ସଂପ୍ରଦାୟର ଯୁବକ, ଯୁବତୀମାନଙ୍କ ମଧ୍ୟରେ ମଧ୍ୟ ଭାବ ଓ ମନ ଦିଆନିଆ ହୋଇଥାଏ । ଏହି ଦିନରୁ ହିଁ ପୁଅ ଝିଅଙ୍କ ମଧ୍ୟରେ ବିଭାଘରର ମଞ୍ଜି ବପନ ହୋଇଥାଏ ।

## ମକର ମେଳା ଓ ପୁରପଲ୍ଲୀରେ ଗଞ୍ଜା ଲଢେଇ

କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ପ୍ରସିଦ୍ଧ ଗଣପର୍ବ ମକର ଅବସରରେ ଉଭୟ ଜିଲ୍ଲାର ପୁରପଲ୍ଲୀ ଉତ୍ସବମୁଖର ହୋଇଉଠିଥାଏ । ଗାଁଗାଁରେ ମକର ଉତ୍ସବର ଆୟୋଜନ କରାଯାଇଥାଏ । ବିଭିନ୍ନ ନଦୀ ଓ ଜଳ ଉତ୍ସମାନଙ୍କରେ ମକର ବୁଡ଼ ପକାଯାଇଥାଏ । ତେବେ ଏହି ସମୟରେ ସବୁଠୁ ଏକ ଆକର୍ଷଣୀୟ ପରଂପରା ଗାଁ ଗହଳିରେ ଦେଖିବାକୁ ମିଳିଥାଏ, ତାହା ହେଉଛି ଗଞ୍ଜା ଲଢେଇ ପ୍ରତିଯୋଗିତା । ଏହା ଏକ ପାଶବିକ ଓ ଘୃଣ୍ୟ ପରଂପରା ହୋଇଥିଲେ ମଧ୍ୟ ଏହାକୁ ବନ୍ଦ କରିବା ଆଜିଯାଏ ସମ୍ଭବପର ହୋଇପାରିନାହିଁ ।

ମକର ଉତ୍ସବ ସମୟରେ କେନ୍ଦୁଝର ସମେତ ମୟୂରଭଞ୍ଜ ଜିଲ୍ଲାର ଗ୍ରାମାଞ୍ଚଳରେ ଗଞ୍ଜା ଲଢେଇ ପ୍ରତିଯୋଗିତା ଦେଖିବାକୁ ମିଳିଥାଏ । ଗଞ୍ଜା ଲଢେଇ ମୁଖ୍ୟତଃ ଦୁଇଟି ପକ୍ଷ ମଧ୍ୟରେ ଅନୁଷ୍ଠିତ ହୋଇଥାଏ । ଖେଳରେ ଦୁଇ ପକ୍ଷର ଗଞ୍ଜାକୁ ପରସ୍ପର ମଧ୍ୟରେ ଲଢେଇ କରିବାକୁ ପଡିଥାଏ । ଦୁହିଁଙ୍କ ମଧ୍ୟରେ ଯେଉଁ ଗଞ୍ଜାଟି ବଞ୍ଚି ରହେ ସେ ହିଁ ହୁଏ ବିଜେତା । ଦେଖଣାହାରୀ ଉଭୟ ପକ୍ଷର ଗଞ୍ଜାକୁ ନେଇ ବାଜି ଲଗେଇଥା'ନ୍ତି । କେଉଁ ଗଞ୍ଜା ବିଜୟୀ ହେବ ତାହା ଲଢେଇ ହେବା ପୂର୍ବରୁ ବାଜି ଲଗାଯାଇଥାଏ । ବିଶାଳ ଖେଳ ପଡିଆ କିମ୍ବା ଗୋଚର ଭୂମିକୁ ଗଞ୍ଜା ଲଢେଇ ପାଇଁ ବ୍ୟବାହର କରାଯାଇଥାଏ । ଏଥିରେ ହଜାର ହଜାର ସଂଖ୍ୟାରେ ଗଞ୍ଜା ମାଲିକମାନେ ଅଂଶଗ୍ରହଣ କରି ଖେଳକୁ ଉପଭୋଗ କରିଥାନ୍ତି । ଖେଳରେ ଲକ୍ଷାଧିକ ଟଙ୍କାର ବାଜି ଲଗାଯାଇଥାଏ । ବେଳେବେଳେ ମଧ୍ୟ ବାଜି ହାର୍‌ଜିତ୍‌କୁ ନେଇ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି ହୋଇଥାଏ ।

ଲଢେଇ ପୂର୍ବରୁ ଗଞ୍ଜାମାନଙ୍କ ଗୋଡ଼ରେ ଲୁହାର ଏକ ଧାରୁଆ ପାତିଆ (କାତି) ଲଗାଯାଇଥାଏ । ବାଣି କିମ୍ବା ସୂତା ସାହାଯ୍ୟରେ ଏହି ପାତିଆକୁ ଗଞ୍ଜାର ଗୋଡରେ ବନ୍ଧାଯାଏ । ଲଢେଇ ପାଇଁ ବ୍ୟବହୃତ ହେଉଥିବା ଗଞ୍ଜାମାନେ ସାଧାରଣ ଗଞ୍ଜାଙ୍କ ତୁଳନାରେ ଭିନ୍ନ । ଏମାନେ ସୁସ୍ଥ ଓ ସବଳ । ଗଞ୍ଜାମାନଙ୍କୁ ମାଲିକମାନେ ବିଶେଷ ଭାବେ ପ୍ରଶିକ୍ଷଣ ଦେଇଥାନ୍ତି । ଗଞ୍ଜା ଲଢେଇ ପାଇଁ ଏକ ସ୍ୱତନ୍ତ୍ର ପ୍ରଜାତିର ଗଞ୍ଜାକୁ ବ୍ୟବହାର କରାଯାଇଥାଏ । ଲଢେଇ ପାଇଁ ପ୍ରସ୍ତୁତ କରିବା ପୂର୍ବରୁ ଏହି ଧରଣର ଗଞ୍ଜାମାନଙ୍କ ଉପଯୁକ୍ତ ଯତ୍ନ ଓ ଲାଳନପାଳନ ପାଇଁ ବହୁ ଅର୍ଥ ବ୍ୟୟ କରାଯାଇଥାଏ । ଏମାନଙ୍କୁ ମୁଖ୍ୟତଃ ଗହମ ଓ ବାଜରାରୁ ପ୍ରସ୍ତୁତ ଗଜା (ଚାରା), ପିସ୍ତା, କାଜୁ ବାଦାମ ଆଦି ଖାଦ୍ୟ ଦିଆଯାଇଥାଏ ।

ମକର ସଂକ୍ରାନ୍ତି ସମୟରେ ଗଞ୍ଜା ଲଢେଇରେ ଅଂଶଗ୍ରହଣ କରିବାକୁ ଥିବା ପକ୍ଷମାନେ ଗାଁ ଗାଁ ବୁଲି ଗଞ୍ଜାମାଲିକ (ଚାଷୀ)ଙ୍କ ନିକଟରୁ ଚଢା ଦରରେ କିଣିଥା'ନ୍ତି । ଏହି ଧରଣର ଗଞ୍ଜାର ଦର ୫ ହଜାରରୁ ୨୫ ହଜାର ଟଙ୍କା ପର୍ଯ୍ୟନ୍ତ ହୋଇଥାଏ ।

ଗଞ୍ଜା ଲଢେଇ ହେଉଥିବା ସ୍ଥାନମାନଙ୍କରେ ମଦ, କାତି, ବିଭିନ୍ନ ପ୍ରକାର ପକ୍ଷୀ ଔଷଧ ଆଦି ବିକ୍ରି ହେବା ଉଦ୍ଦେଶ୍ୟରେ ହାଟ ବସିଥାଏ । ଏଠାରେ ଗଞ୍ଜା ଲଢେଇ ପାଇଁ ବ୍ୟବହୃତ ହେଉଥିବା ଜାତିଜାତିକା ଲୁହା କାତି, ଛୁରୀ, ନାନା ପ୍ରକାର ଦେଶୀ ମଦ, ଚାଖଣା (ବୁଟ ଭଜା, ସୋଲା ଭଜା, ମଟର ସିଝା, ଲୁଣି ଶୁଖୁଆ, ଚିଙ୍ଗୁଡ଼ି ଶୁଖୁଆ) ଓ ଆହତ ଗଞ୍ଜାମାନଙ୍କ ଚିକିତ୍ସା ନିମନ୍ତେ ଔଷଧ ବିକ୍ରି ହୋଇଥାଏ ।

ହାଟମାନଙ୍କରେ ସ୍ଥାନୀୟ କୁଡୁମୀ ସଂପ୍ରଦାୟର ଲୋକମାନଙ୍କ ମଧ୍ୟରୁ କିଛି ଲୋକ ଆହତ ଗଞ୍ଜାମାନଙ୍କୁ ଅସ୍ତ୍ରୋପଚାର (ଚିକିତ୍ସା) କରିବା ଉଦ୍ଦେଶ୍ୟରେ ଦୋକାନ (ଉଠା କ୍ଲିନିକ୍) ଖୋଲି ବସିଥିବାର ଦେଖାଯାଇଥାଏ । ଏମାନେ ସେ ଅଞ୍ଚଳରେ 'ଗଞ୍ଜା ଡାକ୍ତର' ଭାବେ ପରିଚିତ । ଗଞ୍ଜା

ଡାକ୍ତରମାନେ ନିକଟସ୍ଥ ପଶୁ ଡାକ୍ତରମାନଙ୍କ ସହ ପରାମର୍ଶ କରି ପଶୁପକ୍ଷୀଙ୍କ କ୍ଷେତ୍ରରେ ବ୍ୟବହାର କରାଯାଉଥିବା କିଛି ମଲମ ଓ ଔଷଧ, ଛୁରି, କଇଁଚି, ଇଞ୍ଜେକ୍ସନ୍, ସିରିଞ୍ଜ ଧରି ନିଜର 'ଉଠା କ୍ଲିନିକ୍'ରେ ଅପେକ୍ଷା କରି ବସିଥିବାର ଦେଖାଯାଏ । ଗଞ୍ଜା ଲଢେଇରେ ଶହଶହ ଗଞ୍ଜା ଆହତ ହେବା ପରେ ତୁରନ୍ତ ସେମାନଙ୍କୁ ଏହି ଗଞ୍ଜା ଡାକ୍ତରମାନଙ୍କ ନିକଟକୁ ଅଣାଯାଇ ସେମାନଙ୍କର ଆଶୁ ଚିକିତ୍ସା କରାଯାଇଥାଏ ।

ଆମେ ଥରେ ଝୁଂପୁରା ବ୍ଲକ୍‌ର ଉଖୁଣ୍ଡାରେ ଚାଲିଥିବା ଏକ ଗଞ୍ଜା ଲଢେଇ କାର୍ଯ୍ୟକ୍ରମରେ ଉପସ୍ଥିତ ଥିଲୁ । ସେଠାରେ କ୍ଲିନିକ୍ ଖୋଲି ବସିଥିବା ଗଞ୍ଜା ଡାକ୍ତର ବୈଶାଖୁ ମହାନ୍ତ ଓ ମନୋଜ ମହାନ୍ତଙ୍କ ସହ କଥା ହେଉହେଉ ଅନେକ କଥା ଜାଣିବାକୁ ପାଇଲୁ । ଏହି ଗଞ୍ଜା ଡାକ୍ତରମାନେ ଲଢେଇ ପାଇଁ ଆସିଥିବା ଗଞ୍ଜାମାନଙ୍କ ଗୋଡ଼ରେ କାତି ବାନ୍ଧିଥାନ୍ତି । ଗୋଟିଏ ଗଞ୍ଜାର ଗୋଡ଼ରେ କାତି ବାନ୍ଧିବା ପାଇଁ ଏମାନେ ଶହେରୁ ଦେଢ ଶହ ଟଙ୍କା ନେଇଥାନ୍ତି ।

## ବୈତରଣୀ ଅବବାହିକାରେ ଗଣ ପର୍ବ: ରଜ

ରଜ ଉତ୍ସବ ସମଗ୍ର ଉପକୂଳ ଓଡ଼ିଶାର ଏକ ଗଣପର୍ବର ମାନ୍ୟତା ଲାଭ କରିପାରିଛି । ଏହା ମଧ୍ୟ ଏକ ନଦୀଭିତ୍ତିକ ପର୍ବ । ବୈତରଣୀ ନଦୀକୂଳିଆ ଗାଁମାନଙ୍କରେ ରଜପର୍ବ ବେଶ୍ ଜାକଜମକରେ ପାଳିତ ହୋଇଥାଏ । ରଜ ପର୍ବ ପାଳନ ଅବସରରେ ଗାଁଠାରୁ ପଲ୍ଲୀ ଉତ୍ସବମୁଖର ହୋଇଉଠେ । ସବୁଠି ଦୋଳି ଖେଳ ଓ ଦୋଳି ଗୀତର ପ୍ରତିଯୋଗିତା ଆୟୋଜନ କରାଯାଏ । ଉପକୂଳବର୍ତ୍ତୀ ଓଡ଼ିଶାର କେନ୍ଦ୍ରାପଡ଼ା, କଟକ, ଯାଜପୁର, ଭଦ୍ରକ ଓ କେନ୍ଦୁଝର ଜିଲ୍ଲାରେ ରଜପର୍ବ ବେଶ୍ ଧୁମ୍‌ଧାମ୍‌ରେ ପାଳନ କରାଯାଇଥାଏ ।

ରଜ ପର୍ବ ତିନି ଦିନ ବ୍ୟାପି ଚାଲେ । କେତେକ ସ୍ଥାନରେ ଏହା ପାଞ୍ଚ ଦିନ ଧରି ଚାଲେ । ଜ୍ୟେଷ୍ଠ ମାସର ଶେଷ ଦିନଟି ପହିଲି ରଜ । ପହିଲି ରଜର ପୂର୍ବଦିନକୁ 'ସଜବାଜ' ବା 'ପାଣିବୁହା' ବୋଲି କୁହାଯାଏ । ଆଷାଢ ମାସର ପ୍ରଥମ ଦିନଟି ମଝି ରଜ । ଏହାକୁ ରଜ ସଂକ୍ରାନ୍ତି କୁହାଯାଏ । କେନ୍ଦୁଝରରେ ରଜର ମୁଖ୍ୟ ଆକର୍ଷଣ ହେଉଛି ଦୋଳି ଖେଳ ଓ ଦୋଳି ଗୀତ । ଗାଁ ଗାଁରେ ଦୋଳି ଲାଗିଥାଏ ଓ ଦୋଳି ଗୀତ ବୋଲି ତରୁଣୀମାନେ ଜୀବନକୁ ଉପଭୋଗ କରନ୍ତି । ଦୋଳି ତିଆରି ଶେଷ ହେଲେ ଦୋଳି ପୂଜା ହୁଏ । ଗାଁର କୁମାରୀମାନେ ରଜପିଠା ନେଇ ଦୋଳି ପାଖକୁ ଯାଆନ୍ତି । ତିନି ଦିନ ଧରି ରଜ ଉତ୍ସବରେ ଝିଅବୋହୂମାନେ ବିଭିନ୍ନ ଅଞ୍ଚଳ ବୁଲନ୍ତି ଏବଂ ଏହି ସମୟରେ ଝିଅମାନେ କାମଧନ୍ଦା କରନ୍ତି ନାହିଁ । ଏହି ସମୟରେ ମାଟି ମଧ୍ୟ ଖୋଳାଯାଏ ନାହିଁ । ପୃଥିବୀମାତାକୁ କଷ୍ଟ ଦେଲା ଭଳି କିଛି କାର୍ଯ୍ୟ କରାଯାଏନାହିଁ । ଶେଷ ଦିନ ହେଉଛି ରଜ ବିଦାୟର ପର୍ବ । ଗ୍ରାମର ଝିଅଠାରୁ ବୃଦ୍ଧାମାନେ ରଜକୁ ବିଦାୟ ଦିଅନ୍ତି । ଗାଁ ଝିଅମାନେ ବରକନ୍ୟା ବସନ୍ତି । ତା' ପରେ

ଶବର ଶବରୁଣୀ ନାଚ ଅନୁଷ୍ଠିତ ହୋଇଥାଏ । ଏହି ବିଦାୟ ଉତ୍ସବରେ ପୁରୁଷମାନେ ଅଂଶଗ୍ରହଣ କରନ୍ତି ନାହିଁ । ରଜ ତିନି ଦିନ କୃଷି କର୍ମ ନିଷିଦ୍ଧ କରାଯାଏ । କାରଣ ଏହି ସମୟରେ ପୃଥିବୀ ମାତା ରଜବତୀ ହୋଇଥାଏ । ରଜବତୀ ନାରୀ ପରି ଏହି ସମୟରେ ଧରଣୀ ଅସ୍ପୃଶ୍ୟା ହୋଇଥାଏ । ଶବର ଶବରୁଣୀ ନୃତ୍ୟ ମାଧ୍ୟମରେ ପ୍ରକୃତି ଓ ପୁରୁଷର ମିଳନରେ ଶସ୍ୟ ଶ୍ୟାମଳା ଧରିତ୍ରୀ କାମନା କରନ୍ତି । ଏହି ଦିନ ସୀତା ଗର୍ଭବତୀ ହୋଇଥିଲେ ବୋଲି କେନ୍ଦୁଝର ଜିଲ୍ଲାର ଅଧିବାସୀଙ୍କ ବିଶ୍ବାସ ରହିଥାଏ । ଶେଷ ଦିନ ବସୁମତୀ ଗାଧୁଆ କରାଯାଇଥାଏ ।

ରଜ ଅବସରରେ ଯୁବତୀମାନେ ଗାନ କରୁଥିବା ଦୋଳି ଗୀତ ସବୁଠୁ ଆକର୍ଷଣୀୟ ହୋଇଥାଏ । ଏହି ଦୋଳି ଗୀତ ତିନି ପାଦିଆ । ଏହାର ପ୍ରଥମ ପାଦରେ ଆଠଟି, ଦ୍ୱିତୀୟ ପାଦରେ ଏଗାରଟି ଓ ତୃତୀୟ ପାଦରେ ଆଠଟି ଅକ୍ଷର ଥାଏ । ତେବେ କେନ୍ଦୁଝରରେ ରଜ ଗୀତର କୌଣସି ଲିଖିତ ପୁସ୍ତକ ନାହିଁ । କେବଳ ମୌଖିକ ଭାବେ ଯୁବତୀମାନେ ଏହି ଗୀତ ଗାନ କରିଥାନ୍ତି ।

ରଜପର୍ବକୁ ଅନ୍ୟ ଅର୍ଥରେ ମିଳନର ପର୍ବ ବୋଲି କହିଥାନ୍ତି । ଜିଲ୍ଲା ତଥା ଜିଲ୍ଲା ବାହାରେ ଚାକିରୀ କରିଥିବା ସମସ୍ତ କେନ୍ଦୁଝରିଆମାନେ ନିଜନିଜ ଗାଁକୁ ଫେରି ଆସନ୍ତି । ରଜ ତିନି ଦିନ ଗାଁଗାଁରେ ମାଛ, ମାଂସ, ପିଠାପଣାରେ ଭାସେ । କେଉଁଠି ଗାଁ ଛକରେ ଖାସି କଟାଯାଏ ତ ପୋଖରୀରୁ ମାଛ ଧରାଯାଏ । ଭୋଜିଭାତ କରି ଲୋକେ ଏହି ତିନି ଦିନ ବେଶ୍ ଉତ୍ସବ ମନେଇଥାନ୍ତି । ରଜ ପୋଡପିଠା ଓ ମାଂସ ଝୋଳର ବାସ୍ନାରେ ଗାଁଭୂଇଁ ମହକି ଉଠେ । ଏହି ଅବସରରେ ଯୁବକମାନଙ୍କ ମଧ୍ୟରେ ତାସ୍, କବାଡି, ପଶା ଆଦି ଖେଳର ଆୟୋଜନ ହୋଇଥାଏ । ଅନେକ ଗ୍ରାମରେ ଯୁବକମାନଙ୍କ ଦ୍ୱାରା ଯାତ୍ରା ନାଟକ ମଞ୍ଚସ୍ଥ ହୋଇଥାଏ ।

କେନ୍ଦୁଝର ଜିଲ୍ଲାରେ ରଜପର୍ବ ନିଆରା ଢଙ୍ଗରେ ପାଳିତ ହୋଇଥାଏ । ସୀତାବିଞ୍ଜିଠାରୁ ଆରମ୍ଭ କରି ସିଦ୍ଧମଠ, ବାଂଶପାଳରୁ ବୀଣାଝରି, ସବୁଠି ରଜର ପରିବେଶ ଉତ୍ସବମୁଖର ହୋଇଉଠେ । କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜି ଓ ବୀଣାଝରି ରଜ ପର୍ବ ସମଗ୍ର ରାଜ୍ୟରେ ପ୍ରସିଦ୍ଧିଲାଭ କରିପାରିଛି । ଏଠାରେ ରଜ ଅବସରରେ ଦୋଳି ଓ ଗୀତର ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ । ଘଟଗାଁ ବ୍ଲକ୍‌ର ବୀଣାଝରି ରଜରେ ପ୍ରତିବର୍ଷ ଶହେରୁ ଊର୍ଦ୍ଧ୍ୱ ବିଭିନ୍ନ କିସମର ଦୋଳିର ଆୟୋଜନ ହୋଇଥାଏ । ସେହିଭଳି କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ପୁଟୁଳିଆ, ରାଇସୁଆଁ, ଜଳବଙ୍ଗ, ନରଣପୁର, ତିମ୍ବୋ ଏବଂ ଆନନ୍ଦପୁର ଉପଖଣ୍ଡର ଘସିପୁରା, ଆନନ୍ଦପୁର, ହାଟଡିହି, ଶାଳବଣି ଆଦି ସ୍ଥାନରେ ରଜପର୍ବ ମହାସମାରୋହରେ ପାଳିତ ହୋଇଥାଏ ।

## 'ଉଡ଼ା-ପାଟ' ପର୍ବ

ଉଡ଼ା-ପାଟ ପର୍ବଟି କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ମହନ୍ତ ସଂପ୍ରଦାୟର ଲୋକମାନେ ପାଳନ



ଜ୍ୟୋତିପୁର ଗଡ଼ର ଉଡ଼ାପାଟ ପର୍ବ

କରୁଥିବା ଏକ ପ୍ରମୁଖ ଉତ୍ସବ । ପ୍ରତିବର୍ଷ ମହାବିଷୁବ ସଂକ୍ରାନ୍ତି ଦିନ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ଜ୍ୟୋତିପୁର, ଯୋଡ଼ା ବ୍ଲକ୍ ଅନ୍ତର୍ଗତ ଚମକପୁର ଏବଂ ମୟୂରଭଞ୍ଜ ଜିଲ୍ଲାର ଠାକୁରମୁଣ୍ଡାରେ ଉଡ଼ା-ପାଟ ପର୍ବ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ ।

କେନ୍ଦୁଝର ରାଜ୍ୟର ପ୍ରଥମ ଶାସକ ଜ୍ୟୋତି ଭଞ୍ଜଙ୍କ ଦ୍ୱାରା ସ୍ଥାପିତ ଏହି ଗଡ଼ର ନାମ ଜ୍ୟୋତିପୁର । ଏହାକୁ କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ବୋଲି କୁହାଯାଏ । ଏହାର ଉତ୍ତର ଦିଗରେ ପୁଣ୍ୟତୋୟା ବୈତରଣୀ ନଦୀ ପ୍ରବାହିତ । ଅନତି ଦୂରରେ ଭଞ୍ଜ କିର୍ତ୍ତୀ ଖିଚିଂ ମନ୍ଦିର ଶୋଭା ପାଉଛି । ଜ୍ୟୋତିପୁର ଗଡ଼ର ବରିଷ୍ଠ ଦେବୀ ମା' ବାସୁଳିଙ୍କ ତୃପ୍ତି ବିଧାନ ପାଇଁ ପାଟ ପର୍ବ ବା ଉଡ଼ା ଯାତ୍ରା ପଣା ସଂକ୍ରାନ୍ତି ଦିନ ମହା ସମାରୋହରେ ପାଳିତ ହୋଇଥାଏ । ପ୍ରତବର୍ଷ ମା'ବାସୁଳୀଙ୍କ ପୀଠରେ ଭକ୍ତମାନେ ପଣା ସଂକ୍ରାନ୍ତି ଦିନ ଏକତ୍ରିତ ହୋଇଥାନ୍ତି । ଯାତ୍ରା ଚାଲିଥିବା ସମୟରେ ଚୈତ୍ର ମାସର ଶେଷରୁ ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ଛଅ ଦିନ ଧରି ବାସୁଳିପଟି ଓ ଘଟ ଶୋଭାଯାତ୍ରା, ତନ୍ତ୍ରଯାନର କୃଚ୍ଛ୍ରସାଧନା ସ୍ୱରୂପ କଣ୍ଟା ପିଢାରେ ବସିବା, ଶୁଖିଲା ଅଙ୍ଗରାନ୍ତି କଣ୍ଟା ଗଦା ଉପରେ ଗଡିବା, ହାତ, ବାହୁ ମାଂସପେଶି ଭିତରେ ଲୁହା କଣ୍ଟା ସାହାଯ୍ୟରେ କଣା କରି ତା ଭିତରେ ଦଉଡ଼ି ପୁରାଇ ଦଉଡ଼ିକୁ ଟଣାଓଟରା କରି ନାଚିବା, ରାଧାଚକ୍ରରେ ଉଡ଼ିବା ଓ ସତୀଭଙ୍ଗା ଦୃଶ୍ୟ ଆଦି ପ୍ରଦର୍ଶିତ ହୋଇଥାଏ ।

ମା' ବାସୁଳୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଭକ୍ତମାନେ ନିଜ ଶରୀରରେ କଣ୍ଟା ଫୋଡ଼ିବା ସହିତ ଆଉ କେତେକ ଭକ୍ତ କଣ୍ଟା ଉପରେ ଚାଲିଥାନ୍ତି ଏବଂ ଶୋଇଥାନ୍ତି । ଭକ୍ତମାନେ ବିନା ଯନ୍ତ୍ରଣାରେ ନିଜ ପିଠିରେ କିମ୍ବା ପେଟରେ କଣ୍ଟା ଫୋଡୁଥିବାବେଳେ ପରମ ସନ୍ତୋଷ ଲାଭ କରିଥାନ୍ତି । ଶହଶହ ଭକ୍ତ କଣ୍ଟା ଫୋଡୁଥିବା ସହ କଣ୍ଟା ଉପରେ ଚାଲୁଥିବାର ଦୃଶ୍ୟ ଦେଖିଲେ ଦେହ ଶୀତେଇ ଯାଏ. ମାତ୍ର ଏଭଳି କରିବା ଦ୍ୱାରା ଭକ୍ତମାନଙ୍କ ଶରୀରରେ କିଛି ବି କ୍ଷତ ହୋଇନଥାଏ । ପଣା ସଂକ୍ରାନ୍ତି ପୂର୍ବ ଦିନରୁ ଆରମ୍ଭ ହୋଇ ଏହି ପର୍ବ ତିନିଦିନ ଧରି ଚାଲେ ଏବଂ ତୃତୀୟ ଦିନ ଉଡ଼ାପର୍ବ ପାଳିତ ହୋଇଥାଏ ।

ଉଡ଼ାପର୍ବ ପାଳନ ଅବସରରେ ମାନସିକ କରିଥିବା ଭକ୍ତଙ୍କ ପିଠିରେ ପ୍ରଥମେ ରାଶି ତେଲ ଘଷାଯାଏ ଏବଂ ଏହାପରେ ସେମାନଙ୍କ ପିଠିରେ ମୁନିଆ କଣ୍ଟା ଫୋଡ଼ାଯାଇଥାଏ । କଣ୍ଟା ଫୋଡ଼ାଯିବା ପରେ ଏହି ଭକ୍ତଙ୍କ ଶରୀରରେ ଦେବଦେବୀ ଆବିର୍ଭୂତ ହୋଇଥାନ୍ତି ବୋଲି ବିଶ୍ୱାସ ରହିଛି । ଆଉ ଭକ୍ତମାନେ ନିଶାସକ୍ତ ହେଲା ଭଳି ଶୂନ୍ୟରେ ଝୁଲିବାକୁ ଲାଗନ୍ତି । ସେମାନଙ୍କ ଶରୀରରେ ଦେବଦେବୀଙ୍କ ଆତ୍ମା ସବାର ହୋଇଥିବାରୁ ସେମାନଙ୍କୁ ଠାକୁର ମନେକରି ଲୋକେ ଭକ୍ତି କରନ୍ତି ଏବଂ ଅନେକ ଭକ୍ତ ସେମାନଙ୍କର ଶିଶୁମାନଙ୍କର ମଙ୍ଗଳ ନିମନ୍ତେ ଏହି କାଳିସୀଙ୍କ ସମ୍ମୁଖରେ ଶୁଆଇ ଦିଅନ୍ତି । କାଳିସୀମାନେ ଏହି ଶିଶୁଙ୍କ ଉପରେ ମାଡ଼ି ଚାଲିଗଲେ ପିଲାଙ୍କର ମଙ୍ଗଳ ହୋଇଥାଏ ବୋଲି ବିଶ୍ୱାସ ରହିଛି ।


ଆନନ୍ଦପୁର ବୈତରଣୀ ଘାଟରେ ବୋଇତ ବନ୍ଦାଣ ଉତ୍ସବ

ଉଡ଼ା ଯାତ୍ରାରେ କାଠ ଭାଡ଼ି ଉପରେ 'ରାଧା ଚକ୍ର' ନିର୍ମାଣ କରାଯାଏ । ସେଥିରେ ଅନେକ ଗୁଡ଼ିଏ ଖଣ୍ଡା ଖଞ୍ଜା ଯାଇଥାଏ । ଭୀଷ୍ମ ଶରଶଯ୍ୟାରେ ଶୟନ କଲାଭଳି ପୂଜକ (ଦେହୁରୀ) ଏହି ରାଧାଚକ୍ର ଉପରେ ଶୁଏ । ରାଧାଚକ୍ରକୁ ବୋହି ଶୋଭାଯାତ୍ରାରେ ଗଲାବେଳେ ବାହକ ସେହି ଭାଡ଼ିରେ ଚଢି ଦେହୁରୀ ଶୋଇଥିବା ଶଯ୍ୟାକୁ ଚକ୍ରାକାରରେ ବୁଲାଏ । ପକ୍ଷୀ ଚକ୍ର କାଟି ଆକାଶରେ ଉଡିଲା ପରି

ଦେହୁରୀ ଶୂନ୍ୟ ଆକାଶରେ ଘୁରେ । ଏହି ଦୃଶ୍ୟ ମଣିଷ ଆକାଶରେ ଉଡିବା ପରି ଦିଶୁଥିବାରୁ ଏହାକୁ 'ଉଡ଼ାଯାତ୍ରା' କୁହାଯାଏ ।

ପଣା ସଂକ୍ରାନ୍ତି ପୂର୍ବଦିନ 'ଭଗତା'ମାନେ ବୈତରଣୀ ନଦୀରେ ସ୍ନାନ ସାରି ବାସୁଳି ଠାକୁରାଣୀଙ୍କ ପ୍ରାଙ୍ଗଣରେ ସମବେତ ହୁଅନ୍ତି । ପୂଜା କର୍ମ ପରେ ଦେହୁରୀ (ପୂଜକ)ଙ୍କ ଆଦେଶରେ ଶୁଖିଲା ଅଙ୍କରାନ୍ତି କଣ୍ଟା ଗଦା ଉପରେ ଭଗତାମାନେ ଗଡନ୍ତି । ଏହାକୁ 'ଗଡ଼ାପାଟ' କୁହାଯାଏ । ସଂକ୍ରାନ୍ତି ଦିନ ଭଗତାମାନେ ଉପବାସ କରନ୍ତି । ତାଙ୍କର ଦୁଇ ବାହୁ ଓ ପିଠି ପଟେ ବଡ଼ ତାମ୍ଫଣ ସାହାଯ୍ୟରେ କଣା କରି ତା' ଭିତରେ ଦଉଡି, ହଳଦିଆ ସୁତା ଓ ବାଉଁଶ ପାତିଆ ପୂରେଇ ଦିଆଯାଏ । ଆଗରେ ଓ ପଛରେ ଦୁଇ ଜଣ ଲୋକ ସେହି ଲମ୍ବ ଦଉଡ଼ିକୁ ଧରନ୍ତି । ଦଉଡ଼ି ମଝିରେ ରହି ଭଗତା ଉଦଣ୍ଡ ନୃତ୍ୟ କରିଥାନ୍ତି । ଏହାକୁ 'ଫୋଡ଼ାପାଟ' କହନ୍ତି । ଫୋଡ଼ାପାଟ ପରେ ବାସୁଳି ପଟି ପୂଜା କରାଯାଏ । ଏହାପରେ 'ମଳା ବ୍ରାହ୍ମଣୀ', 'ଖଣ୍ଡାପାଟ' ଓ 'ରାଧାଚକ୍ର' ଆଦି ଶୋଭାଯାତ୍ରାର ଆୟୋଜନ କରାଯାଏ । ଛଅ ଖଣ୍ଡି କାଠରେ ନିର୍ମିତ କୋକେଇରେ ଶବ ବୋହିଲା ପରେ ଜଣେ ଭଗତାଙ୍କୁ ସେହି କୋକେଇରେ ଧାରୁଆ ଖଣ୍ଡା ଓ କଣ୍ଟା ଶଯ୍ୟାରେ ଶୁଆଇ ଦିଆଯାଇ ଏକ ନୂତନ ବସ୍ତ୍ର ଉପରେ ଘୋଡ଼ାଇ ଦିଆଯାଏ । ଶ୍ମଶାନକୁ ଶବ ବୋହି ନେଲା ଭଳି ଚାରି ଜଣ ଲୋକ ତାଙ୍କୁ ଶୋଭାଯାତ୍ରାରେ ବୋହି ନିଅନ୍ତି । 'ଖଣ୍ଡାପାଟ'ରେ ଚଉଢଳି ପରି କାଠର ମଞ୍ଚାଟିରେ ତିନୋଟି ଧାରୁଆ ଖଣ୍ଡା ଖଞ୍ଜି ଦିଆଯାଏ । ଜଣେ ଭଗତା ସେହି ଖଣ୍ଡା ଉପରେ ଠିଆ ହୁଅନ୍ତି ଏବଂ ସେହି ମଞ୍ଚାଟିକୁ ଲୋକମାନେ ଶୋଭାଯାତ୍ରାରେ ବୋହି ନିଅନ୍ତି । ରାଧାଚକ୍ରର ନିର୍ମାଣ ଶୈଳୀ ଭିନ୍ନପ୍ରକାରର । ଏହାର ସୃଷ୍ଟି ଅନ୍ତରାଳରେ ତନ୍ତ୍ରର ପ୍ରଭାବ ରହିଥିବା ପରି ମନେ ହୁଏ ।

## କୁମାରୀମାନଙ୍କ ପର୍ବ: ଭାଲୁକୁଣୀ (ଖୁଦୁରୁକୁଣୀ ଓଷା)

ଭାଲୁକୁଣୀ ବା ଖୁଦୁରୁକୁଣୀ ଓଷା ସମଗ୍ର ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ପାଳିତ ହେଉଥିବା ଏକ ପ୍ରମୁଖ ପର୍ବ । ଏହି ପର୍ବ ବୈତରଣୀର ଉତ୍ପତ୍ତି ସ୍ଥଳ କେନ୍ଦୁଝର ଜିଲ୍ଲାରୁ ଆରଂଭ କରି ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ପାଳିତ ହୋଇଥାଏ । '**ଖୁଦୁରୁକୁଣୀ ଓଷା**'ର ବିଷୟବସ୍ତୁ ସଂପୂର୍ଣ୍ଣ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ସଂସ୍କୃତି ଉପରେ ଆଧାରିତ ।

ତଅପୋଇ ନାମ୍ନି ଝିଅଟି ସାଧବ ସାତ ଭାଇଙ୍କର ଏକମାତ୍ର ଅଲିଅଳି ଭଉଣୀ ଥିଲା । ଜଣେ ବିଧବା ବ୍ରାହ୍ମଣୀର ପ୍ରରୋଚନାରେ ସେ ଖେଳିବା ପାଇଁ ତା ବାପା ଓ ଭାଇମାନଙ୍କୁ ଏକ ରୁପା ଜହ୍ନ ଓ ସୁନା କଲେଇ ମାଗିଥିଲା । ଏହା ଭିତରେ ବାପା ଓ ମା'ର ମୃତ୍ୟୁ ହୋଇଗଲା । ପରେ ଭାଇମାନେ ବିଦେଶ ଯାତ୍ରା କଲେ । ଭାଇମାନେ ସମୁଦ୍ର ଯାତ୍ରା କରିବା ପରେ ଭାଉଜମାନେ ତଅପୋଇକୁ ହଇରାଣ କଲେ । ତଅପୋଇ ମା' ମଙ୍ଗଳାଙ୍କୁ ପ୍ରାର୍ଥନା କରିବାରୁ ଭାଇମାନେ କୁଶଳରେ

ଫେରି ଆସିଲେ । ସେମାନଙ୍କ ବୋଇତ ଆସି ସମୁଦ୍ର କୂଳରେ ଲାଗିଲା । ମା' ମଙ୍ଗଳାଙ୍କୁ ଆରାଧନା କରି ସେମାନେ ନିଜ ଗୃହକୁ ଫେରିଲେ ଏବଂ ତଅପୋଇଙ୍କୁ ନିର୍ଯାତନା ଦେଇଥିବା ଭାଉଜମାନଙ୍କୁ ଦଣ୍ଡ ମିଳିଲା । ସୂଚନାଯୋଗ୍ୟ, ମା' ମଙ୍ଗଳା ହେଉଛନ୍ତି ସାଧବ (ସୌଦାଗର)ମାନଙ୍କର ଅଧିଷ୍ଠାତ୍ରୀ ଦେବୀ । ଆଜି ଉପକୂଳବର୍ତ୍ତୀ ଓଡ଼ିଆ ଝିଅମାନେ ଭାଦ୍ରବ ମାସର ପାଞ୍ଚ ରବିବାର ଏହି ପୂଜା ପାଳନ କରିଥା'ନ୍ତି । ଏହା ଆମ ଅତୀତର ଦରିଆପାରି ନୌବାଣିଜ୍ୟ ପରଂପରାର ସ୍ମୃତିକୁ ତାଜା କରିଥାଏ ।

ଭାଲୁକୁଣୀ ଓଷା ପରଂପରା କେନ୍ଦ୍ରାପଡ଼ା ଜିଲ୍ଲାର ବୈତରଣୀ ନଦୀ କୂଳସ୍ଥ ତତ୍କାଳୀନ କନିକା ରାଜ୍ୟର ରିଘାଗଡ଼ ଓ ସାଧବ ସାତଭାଇଙ୍କ ଗ୍ରାମ 'ସାତଭାୟା'ରୁ ସୃଷ୍ଟି ବୋଲି କୁହାଯାଉଛି । ଆଉ କିଛି ଏହାକୁ ଜମ୍ବୁ ଦ୍ୱୀପରୁ ସୃଷ୍ଟି ବୋଲି କହୁଛନ୍ତି । ଜମ୍ବୁ ଦ୍ୱୀପଟି ମଧ୍ୟ କେନ୍ଦ୍ରାପଡ଼ା ଜିଲ୍ଲାର ଗୋବରୀ ନଦୀ ମୁହାଁଣ ହୁକିଟୋଲା ନିକଟରେ ଅବସ୍ଥିତ ।

ଓଡ଼ିଶାର ଉପକୂଳ ଅଞ୍ଚଳରେ ଭାଲୁକୁଣୀ ମୂର୍ତ୍ତିର ରଙ୍ଗ ହଳଦିଆ ହୋଇଥିବାବେଳେ କେନ୍ଦୁଝର ଜିଲ୍ଲାରେ ଭାଲୁକୁଣି ମୂର୍ତ୍ତିର ରଂଗ ରକ୍ତବର୍ଣ୍ଣର ହୋଇଥାଏ । କେନ୍ଦୁଝର ଏକ ତନ୍ତ୍ର ସାଧନା ପୀଠ ହୋଇଥିବାରୁ ଏଠାରେ ଦେବୀ ସୁଭଦ୍ରାଙ୍କ ରଙ୍ଗ ମଧ୍ୟ ଲୋହିତ ବର୍ଣ୍ଣର । ତନ୍ତ୍ର ପ୍ରଭାବରେ ଏଠାରେ ଦେବୀଙ୍କ ମୂର୍ତ୍ତିସବୁ ଲାଲ୍ ରଙ୍ଗର ବୋଲି ଗବେଷକମାନେ ମତପୋଷଣ କରନ୍ତି । ଗହ୍ମା ପୂର୍ଣ୍ଣମୀ ପରଠାରୁ ପ୍ରତି ରବିବାର ଦିନ ଏହି ଓଷା ପାଞ୍ଚ ପାଳି ଧରି ଚାଲେ ।

## ମଙ୍ଗଳା ଓଷା (ଖୁଲଣା ସୁନ୍ଦରୀ ବ୍ରତ)

ଓଡ଼ିଶାର ପୁରପଲ୍ଲୀମାନଙ୍କରେ ପାଳନ କରାଯାଉଥିବା ମଙ୍ଗଳା ଓଷା ମଧ୍ୟ ଆମ ଉତ୍କଳୀୟ ନୌବାଣିଜ୍ୟ ପରଂପରା ଓ ସାଧବମାନଙ୍କ ଅତୀତକୁ ସ୍ମରଣ କରିଥାଏ । ଏହି ପୂଜା ବିଶେଷକରି ବିଭିନ୍ନ ନଦୀ ଓ ସମୁଦ୍ର ଉପକୂଳବର୍ତ୍ତୀ ଗ୍ରାମମାନଙ୍କରେ ବହୁଳ ଭାବେ ପାଳନ କରାଯାଇଥାଏ । ସାଧାରଣତଃ ମଙ୍ଗଳା ଓଷା ଭାଦ୍ରବ ମାସଠାରୁ କାର୍ତ୍ତୀକ ପୂର୍ଣ୍ଣିମା ପର୍ଯ୍ୟନ୍ତ ମାସେ କାଳ ଧରି ପାଳିତ ହୋଇଥାଏ । ଏହି ସମୟ ମଧ୍ୟରେ ପାଣିପାଗ ଅନୁକୂଳ ରହିବା ସହିତ ସମୁଦ୍ର ଶାନ୍ତ ଥାଏ । ଏହି ସମୟ ହିଁ ସାଧବମାନଙ୍କ ପାଇଁ ବିଦେଶକୁ ବୋଇତ ବାହିବାର ପ୍ରକୃଷ୍ଟ ସମୟ । ଏଣୁ ନିଜର ସ୍ୱାମୀ, ପିତା ଓ ଭାଇମାନଙ୍କ ନୌ ଯାତ୍ରାର ସଫଳତା କାମନା କରି ଉତ୍କଳର ଗାଁ ଗାଁରେ ପ୍ରତି ହିନ୍ଦୁ ନାରୀମାନେ ମା' ମଙ୍ଗଳା ବ୍ରତ କରିଥା'ନ୍ତି ।

**'ଖୁଲଣା ସୁନ୍ଦରୀ'** ଉପାଖ୍ୟାନ ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପୃଷ୍ଠଭୂମି ଆଧାରରେ ରଚିତ ଏକ ପୌରାଣିକ ବିଷୟବସ୍ତୁ । ଏଥିରେ ଧନେଶ୍ୱର ସୌଦାଗର ନାମରେ ଜଣେ ଧନୀ ବଣିକ ବାଣିଜ୍ୟ କରିବାକୁ ଦୂର ବିଦେଶକୁ ସମୁଦ୍ର ଯାତ୍ରା କରିଥିବାର ଦର୍ଶାଯାଇଛି । ତାଙ୍କର ଦୁଇ ପତ୍ନୀ ନୟନା ସୁନ୍ଦରୀ (ଜ୍ୟେଷ୍ଠା) ଓ ଖୁଲଣା ସୁନ୍ଦରୀ (କନିଷ୍ଠା) ଅପୁତ୍ରିକ ଥିଲେ । ଖୁଲଣା ସୁନ୍ଦରୀ ମା'

ମଙ୍ଗଳାଙ୍କୁ ପୂଜା କରିବା ଫଳରେ ଶ୍ରୀଧର ନାମରେ ତାଙ୍କର ଏକ ପୁତ୍ର ଜାତ ହୋଇଥିଲା । ଏହା ମଧ୍ୟରେ ଧନେଶ୍ୱର ସୌଦାଗରଙ୍କୁ ଦରିଆପାରିରେ ବନ୍ଦୀ କରି ରଖାଯାଇଛି । ଦୀର୍ଘଦିନ ଧରି ବନ୍ଦୀ ଜୀବନ ବିତାଇବା ପରେ ତାଙ୍କ ପୁତ୍ର ଶ୍ରୀଧର (ଖୁଲଣା ସୁନ୍ଦରୀଙ୍କ ଗର୍ଭରୁ ଜାତ) ବୋଇତରେ ସାତଦରିଆ ପାର ହୋଇ ନିଜ ପିତାକୁ ମୁକୁଳେଇ ନିଜ ରାଜ୍ୟକୁ ଫେରାଇ ଆଣିଛନ୍ତି । ଏସବୁ ମା' ମଙ୍ଗଳାଙ୍କ ଆଶୀର୍ବାଦ ଯୋଗୁଁ ସଂଭବ ହୋଇଛି ବୋଲି ପୁରାଣରେ ଉଲ୍ଲେଖ ରହିଛି । ସୂଚନାଯୋଗ୍ୟ, ମା' ମଙ୍ଗଳା ହେଉଛନ୍ତି ସାଧବ (ବଣିକ)ମାନଙ୍କର କୁଳଦେବୀ । ଆଜି ମଧ୍ୟ ଉପକୂଳବର୍ତ୍ତୀ ଓଡ଼ିଶାର ଗ୍ରାମାଞ୍ଚଳର ମହିଳାମାନେ ଆଶ୍ୱିନ ମାସର ପ୍ରଥମ ମଙ୍ଗଳବାରରୁ ଶେଷ ମଙ୍ଗଳବାର ପର୍ଯ୍ୟନ୍ତ ମାସକ ଧରି ମା' ମଙ୍ଗଳାଙ୍କ ପୂଜା କରିଥା'ନ୍ତି ।

## କାର୍ତ୍ତୀକ ପୂର୍ଣ୍ଣିମା ଓ ବୋଇତ ବନ୍ଦାଣ ଉତ୍ସବ

ଉପକୂଳ ଓଡ଼ିଶାର ଗାଁଗହଳିରେ କାର୍ତ୍ତୀକ ମାସର ଆରଂଭରୁ କେତେକ ଘରେ ଗୋଟିଏ ବାଉଁଶ ପୋତି, ତା ଉପରେ ଛିଦ୍ର ଥିବା ଏକ ମାଟି ହାଣ୍ଡିରେ ଏକ ଅଖଣ୍ଡ ଦୀପ ସ୍ଥାପନ କରାଯାଇଥାଏ । ଏହାକୁ **'ଆକାଶ ଦୀପ'** କୁହାଯାଏ । ଛିଦ୍ରଯୁକ୍ତ ହାଣ୍ଡିଟିକୁ ପ୍ରତିଦିନ ଦଉଡ଼ିରେ ତଳକୁ ଖସାଇ ସନ୍ଧ୍ୟା ସମୟରେ ଦୀପରେ ତେଲ ଦେଇ ଅଗ୍ନି ସଂଯୋଗ କରି ପୁଣି ଉପରକୁ ଉଠାଇ ଦିଆଯାଏ । ଏହି



**ବୋଇତ ବନ୍ଦାଣ ଉତ୍ସବ**



**ବୋଇତ ବନ୍ଦାଣ ଉତ୍ସବ**

ଦୀପ କେବଳ ରାତି ସମୟରେ ଜଳେ । ନଦୀରେ ରାତି ବେଳେ ଯାଉଥିବା ନାବିକ (ସାଧବ)ମାନଙ୍କୁ ଜନବସତିର ସନ୍ଧାନ ଦେବା ଉଦ୍ଦେଶ୍ୟରେ ଏହି 'ଆକାଶଦୀପ' ଜଳାଯାଇଥାଏ ।

କାର୍ତ୍ତୀକ ମାସରେ ଗାଁର କୁମାରୀମାନେ ବୃନ୍ଦାବତୀଙ୍କ ନିକଟରେ ମୁରୁଜ ପକାଇଥା'ନ୍ତି । କାର୍ତ୍ତୀକ ଅମାବାସ୍ୟା ରାତିରେ ଗାଁର କୁମାରୀମାନେ ମୁରୁଜରେ ଏକ ବୋଇତର ଚିତ୍ର ଅଙ୍କନ କରିଥା'ନ୍ତି । ପରଦିନ ସକାଳୁ ଏହାକୁ ଏହି ଚିତ୍ର ବୋଇତକୁ ବନ୍ଦାପନା କରାଯାଇଥାଏ । ଏପରି କରିବାର ଅର୍ଥ, ଅତୀତରେ ସାଧବମାନେ ନଦୀ ପଥରେ ଯାଇ ଦେଶର ବିଭିନ୍ନ ଅଞ୍ଚଳରୁ ବିଦେଶକୁ ନେବାଭଳି ଜିନିଷ ସଂଗ୍ରହ କରୁଥିଲେ ଏବଂ ଅମାବାସ୍ୟା ଦିନ ଫେରି ଆସୁଥିଲେ । ଗାଁ କୂଳରେ ବୋଇତ ଲାଗିଲେ ସ୍ତ୍ରୀଲୋକମାନେ ଯାଇ ବନ୍ଦାପନା କରୁଥିଲେ ।

କାର୍ତ୍ତୀକ ମାସର ପୂର୍ଣ୍ଣିମା ଦିନ ଉପକୂଳ ଓଡ଼ିଶାର ଗାଁଗହିଳିରେ 'ବୋଇତ ଭସାଣ' ଉତ୍ସବ ପାଳନ ହୋଇଥାଏ । ଆଗେ କଦଳୀ ବାହୁଙ୍ଗାରେ ସ୍ତ୍ରୀଲୋକମାନେ ଡଙ୍ଗା ତିଆରି କରି ସେଥିରେ ଦୀପ ଜାଳି ପାହାନ୍ତା ପହରରେ ପାଖରେ ଥିବା ନଇ, ପୋଖରୀରେ ଭସାଇ ଦେଉଥିଲେ । ଅଜିକାଲି କାଗଜ ଓ ସୋଲ ନିର୍ମିତ ଆକର୍ଷଣୀୟ ଡଙ୍ଗାମାନ ବଜାରରେ ମିଳୁଥିବାରୁ ଡଙ୍ଗା ତିଆରି କରିବାକୁ କଷ୍ଟ ହେଉନି । ଏହି ଡଙ୍ଗା ଭସାଇଲା ବେଳେ ସ୍ତ୍ରୀଲୋକମାନେ କହନ୍ତି-

"ଆଜା ମା ବୋଇ
ପାନ ଗୁଆ ଖାଇ
ପାନ ଗୁଆତକ ତୋର
ମାସକ ଧରମ ମୋର ।"

କେନ୍ଦୁଝର, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ପୁଣ୍ୟତୋୟା ବୈତରଣୀ ନଦୀର ବିଭିନ୍ନ ଘାଟରେ ବୋଇତ ବନ୍ଦାଣ ଉତ୍ସବ ପାଳନ ହୋଇଥାଏ । ରାଜନଗରର ଶୈବ୍ୟାକାବେରୀ ଘାଟ, ଘସିପୁରାର ବୈତରଣୀ ନଦୀ ଘାଟରେ ଗତ କିଛି ବର୍ଷ ଧରି କାର୍ତ୍ତୀକ ପୂର୍ଣ୍ଣମୀ ତିଥିରେ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହେଉଛି । ଘସିପୁରାରେ ପାଳିତ ହେଉଥିବା ବୋଇତ ବନ୍ଦାଣ ଉତ୍ସବରେ ଲକ୍ଷାଧିକ ଶ୍ରଦ୍ଧାଳୁ ସାମିଲ୍ ହୁଅନ୍ତି । ସେହିପରି ଆନନ୍ଦପୁରର ଫକୀରପୁର ବୈତରଣୀ ନଦୀ ଘାଟରେ ବୋଇତ ବନ୍ଦାଣ ଉତ୍ସବ ପ୍ରତିବର୍ଷ ଅନୁଷ୍ଠିତ ହୋଇଥାଏ । ଆନନ୍ଦପୁର ବ୍ଲକ୍ ଶାଳବଣି ପଞ୍ଚାୟତ ମୋଚିନ୍ଦା ବିଶାଳ ପୁଷ୍କରିଣୀରେ ପ୍ରତିବର୍ଷ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ପୂଜା ସହ ବୋଇତ ବନ୍ଦାଣ ଉତ୍ସବ ପାଳନ ହୋଇଆସୁଛି । ହାଟଡ଼ିହି ବ୍ଲକ୍‌ର ପୁରାତନ ହାବଳେଶ୍ୱର ବୈତରଣୀ ଘାଟରେ ବୋଇତ ବନ୍ଦାଣ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ ।





ଅପରପକ୍ଷେ, ଯାଜପୁରର ଦଶାଶ୍ୱମେଧ ଘାଟ, ସିଦ୍ଧେଶ୍ୱର ଘାଟ, ବଲ୍ଲଭୀଘାଟ, ଭଦ୍ରକ ଜିଲ୍ଲାର ଧାମନଗର, ଭଣ୍ଡାରୀପୋଖରୀ ଓ ଚାନ୍ଦବାଲିର ଅନେକ ନଦୀଘାଟରେ ବୋଇତ ବନ୍ଦାଣ ଉତ୍ସବ ମହାସମାରୋହରେ ପାଳିତ ହୋଇଥାଏ । 'ଚାନ୍ଦବାଲି

ପୂଜ୍ୟପୂଜା ସଂସଦ' ପକ୍ଷରୁ ଚାନ୍ଦବାଲିରେ ପ୍ରତିବର୍ଷ ରାଜ୍ୟସ୍ତରୀୟ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହୋଇଥାଏ । ସେହିଭଳି ଧାମରା ବନ୍ଦର, ଚନ୍ଦନିପାଳ, ଚୌଧୁରୀ ଘାଟ, ବାଶଁଡ଼ାଘାଟ, ଆରଡ଼ି ଆଖଣ୍ଡଳମଣି ଘାଟ, ତିନିତର ଘାଟରେ ବୋଇତ ବନ୍ଦାଣ ଉତ୍ସବ ଧୁମ୍‌ଧାମରେ ପାଳିତ ହୋଇଥାଏ ।

କେନ୍ଦ୍ରାପଡ଼ା ଜିଲ୍ଲାରେ ପ୍ରତିବର୍ଷ ରାଜ୍ୟସ୍ତରୀୟ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହୋଇଥାଏ । କେନ୍ଦ୍ରାପଡ଼ାର ଆଳି ଗଡ଼ଗଡ଼ିଆ ଘାଟ, କନିକା ଘାଟ, ମାନପୁର ଘାଟ, ଗୋପାଳପୁର ଘାଟ, ନଳିତାପାଟିଆ ଘାଟ, ଜୟନଗର ଘାଟ, ତାଙ୍ଗମାଳ, ରିଘାଗଡ଼, ଈଶ୍ୱରପୁର, ରାଜନଗର, ତାଳଚୁଆ ଆଦି ସ୍ଥାନରେ ବୋଇତ ବନ୍ଦାଣ ଉତ୍ସବ ଖୁବ୍ ଜାକଜମକରେ ପାଳିତ ହୋଇଥାଏ ।

## କାଞ୍ଜି ଅଁଳା ପର୍ବ

ପ୍ରାଚୀନ ଉତ୍କଳୀୟଙ୍କ ନୌବାଣିଜ୍ୟ ପରମ୍ପରାକୁ ଉଜ୍ଜୀବିତ କରି ରଖିବା ପାଇଁ ଉତ୍କଳର ଗାଁମାନଙ୍କରେ ଆଜି ବି 'କାଞ୍ଜି ଅଁଳା' ନାମରେ ଏକ ପୂଜା ପାଳନ କରାଯାଇଥାଏ । ଏହି ପର୍ବରେ ଷଠୀ ଦେବୀ *(Goddess of Fertility)*ଙ୍କୁ ଆରାଧନା କରାଯାଇଥାଏ । ଏହି ପୂଜାର ବିଧି ହେଉଛି- ପ୍ରାୟ ତିନି ଫୁଟ ଲମ୍ବ ଓ ଓସାର ଥାଇ ଏକ ବର୍ଗାକାର ସ୍ଥାନର ଚାରିପଟେ ଛଅ ଇଞ୍ଚ ଓସାରର ଏକ ନାଳ ଖୋଳାଯାଇଥାଏ । ସେଥିରେ ପାଣି ଭର୍ତ୍ତି କରି ଏକ ଜୀବନ୍ତ ମାଛ ଛଡ଼ାଯାଏ । ଠିକ୍ ମଧ୍ୟ ଭାଗରେ ଗୋଟିଏ ପାଚିଥିବା ଧାନଗଛକୁ ଧାନ ଜମିରୁ ଉପାଡ଼ି ଆଣି ରଖଯାଏ । ତା ନିକଟରେ ଗୋଟିଏ କାଠ ପିଢ଼ାରେ ୫ଟି ପିତା ଶୁଖୁଆକୁ ଠିକ୍ ମଣିଷ ପରି ହଳଦିଆ କନା ପିନ୍ଧାଇ, ମୁଣ୍ଡରେ ସିନ୍ଦୁର ଲଗାଇ ସଜାଇ ରଖାଯାଏ । ନାନା ପ୍ରକାର ଫୁଲ ଓ ସବୁଜ ଗଛ ଡାଳରେ ସେହି ସ୍ଥାନକୁ ସଜାଇ ଦିଆଯାଏ । ଚାରିପାର୍ଶ୍ୱରେ ରଙ୍ଗୀନ ମୁରୁଜରେ ଗାର ଟଣା ଯାଇଥାଏ । ସବୁ କାମ ସନ୍ଧ୍ୟା ପୂର୍ବରୁ ହୋଇଥାଏ । ଏହି ପୂଜାରେ ବ୍ରାହ୍ମଣମାନଙ୍କର ଆବଶ୍ୟକ ପଡି ନଥାଏ । କୌଣସି ହିନ୍ଦୁ ଶାସ୍ତ୍ରରେ ମଲା ମାଛ ବା ଶୁଖୁଆର ପୂଜା ନାହିଁ । ତେଣୁ ଏ ପୂଜା ନିଶ୍ଚିତ ଭାବେ କୌଣସି ଅନ୍ୟ ଅଞ୍ଚଳରୁ ଏଠାକୁ ଆସିଛି ।

'କାଞ୍ଜି ଅଁଳା' ପୂଜାବେଳେ ଯେଉଁ ବର୍ଗାକାର କ୍ଷେତ୍ରର ଚାରିପଟେ ନାଳ ଖୋଳି ପାଣି ଦେଇ ମାଛ ଛଡ଼ାଗଲା ତାହା ଏକ ଦ୍ୱୀପ *(Island)*ର ସୂଚନା ପ୍ରଦାନ କରେ । 'କାଞ୍ଜି ଅଁଳା' କଥାରୁ ମନେହୁଏ, ବୋଧହୁଏ ମୂଳ ଶବ୍ଦ ଦୁଇଟି ଦିନେ 'କାଲିଞ୍ଜି ଅମଳ' ଅର୍ଥାତ୍ 'କଳିଙ୍ଗ ଦ୍ୱୀପରେ ଧାନ ଅମଳ'କୁ ବୁଝାଉଛି । ଦିନେ କଳିଙ୍ଗ ଦେଶର ଲୋକ ଯାଇ ଉର୍ବର ଜାଭା ଦ୍ୱୀପରେ ବସତି ସ୍ଥାପନ କରି ତାହାର ନାମ 'କଳିଙ୍ଗ' ଦେଇଥିଲେ । ସେଠାରେ ସେମାନେ ଧାନ ଚାଷ କରିଥିଲେ । ଜାଭାର ମୂଳ ଅଧିବାସୀଙ୍କ ସହଯୋଗରେ ଧାନ ଅମଳ ଖୁବ୍ ଭଲ ହେଉଥିଲା । ଏହାଛଡ଼ା ବଂଶବୃଦ୍ଧି ପାଇଁ କଳିଙ୍ଗମାନେ ସେଠାକାର ମୂଳ ଅଧିବାସୀଙ୍କୁ ବିବାହ କରିଥିଲେ । ସେଠାକାର ଦଳପତିମାନେ ବ୍ରାହ୍ମଣ

ଓ କ୍ଷତ୍ରିୟମାନଙ୍କୁ କନ୍ୟା ଦେବା ପାଇଁ ଆଗ୍ରହୀ ଥିଲେ । ଏଣୁ ହିନ୍ଦୁ ଓ ବୌଦ୍ଧ ଧର୍ମାବଲମ୍ବୀ କଳିଙ୍ଗବାସୀଙ୍କର ବଂଶ ବଢ଼ିବା ସହିତ ସେଠାରେ ଜନସଂଖ୍ୟା ମଧ୍ୟ ବଢ଼ିଥିଲା । ଧାନ ଅମଳ ଓ ସନ୍ତାନ ଉତ୍ପାଦନ ସେ କାଳର 'କଳିଙ୍ଗ ଦ୍ୱୀପ' (ଜାଭା)ର ଲୋକଙ୍କର ଲକ୍ଷ୍ୟ ହୋଇଥିବାରୁ ଏହି ପର୍ବକୁ ଷଠି ଦେବୀଙ୍କ ସହ ସଂପୃକ୍ତ କରାଯାଇଛି ।





କେନ୍ଦୁଝର ଜିଲ୍ଲା ମିରିଗସିଙ୍ଗାର ପ୍ରସିଦ୍ଧ ମକର ମେଳା

□

## ଦଶମ ପରିଚ୍ଛେଦ

# ବନ୍ୟା ବିଭୀଷିକା ଓ ନଦୀବନ୍ଧ ଯୋଜନା

## ବୈତରଣୀରେ ବନ୍ୟାର କରାଳ ରୂପ

*(flood havoc in river Baitarani)*



ବୈତରଣୀରେ ବନ୍ୟା (କେନ୍ଦୁଝର ଜିଲ୍ଲାର ଏକ ଦୃଶ୍ୟ)

ପ୍ରତିବର୍ଷ ବୈତରଣୀ ନଦୀରେ ବନ୍ୟା ଆସି ବ୍ୟାପକ ଧନଜୀବନ କ୍ଷୟକ୍ଷତି ଘଟାଇଥାଏ । ବୈତରଣୀରେ ବନ୍ୟା ହେଲେ ବିଶେଷକରି କେନ୍ଦୁଝର, ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାବାସୀ ପ୍ରଭାବିତ ହୋଇଥାନ୍ତି । ଏହି ପାଞ୍ଚଗୋଟି ଜିଲ୍ଲାର ପ୍ରାୟ ୫୦୦ରୁ ଊର୍ଦ୍ଧ୍ୱ ଗାଁ ବୈତରଣୀ ବନ୍ୟାର ଶିକାର ହୋଇଥା'ନ୍ତି ।

ବୈତରଣୀ ନଦୀ 'ଉପର କେନ୍ଦୁଝର'ର ଗୋନାସିକାରୁ ବାହାରି କେନ୍ଦୁଝର, ପଶ୍ଚିମ ସିଂହଭୂମି (ଝାଡ଼ଖଣ୍ଡ), ମୟୂରଭଞ୍ଜ, 'ନିମ୍ନ କେନ୍ଦୁଝର' (ଆନନ୍ଦପୁର ସବଡିଭିଜନ), ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ପ୍ରବାହିତ ହେବାପରେ ବଙ୍ଗୋପସାଗରରେ ପତିତ ହୋଇଛି । ବନ୍ୟା ସମୟରେ କେନ୍ଦୁଝର ଜିଲ୍ଲାର 'ଉପର କେନ୍ଦୁଝର' (ଚଂପୁଆ ଓ କେନ୍ଦୁଝର ଉପଖଣ୍ଡ) *(Upper*



*Kendujhar)* ଅଂଶ ଅପେକ୍ଷା 'ନିମ୍ନ କେନ୍ଦୁଝର' (ଆନନ୍ଦପୁର ଉପଖଣ୍ଡ) *(Lower Kendujhar)* ଅଞ୍ଚଳ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥାଏ । ବୈତରଣୀ ନଦୀର 'ଉପର ଅବବାହିକା' *(Catchment Area of Upper Baitaranee Basin)* ଅଞ୍ଚଳରେ ପ୍ରଚୁର ବୃଷ୍ଟିପାତ ହେଲେ ତଳମୁଣ୍ଡରେ ବନ୍ୟା ପରିସ୍ଥିତି ଉଦ୍‌ବେଗଜନକ ହୋଇପଡିଥାଏ ।

ବୈତରଣୀର ଉପରମୁଣ୍ଡ ଅର୍ଥାତ୍ କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡ ଅନ୍ତର୍ଗତ ଚଂପୁଆ, ଯୋଡ଼ା, ଝୁଂପୁରା ବ୍ଲକ୍, କେନ୍ଦୁଝର ଉପଖଣ୍ଡର କେନ୍ଦୁଝର, ଘଟଗାଁ, ସ୍ୱାମ୍ ପାଟଣା, ବାଂଶପାଳ, ତେଲକୋଇ, ହରିଚନ୍ଦନପୁର, ସାହାରପଡ଼ା ଆଦି ବ୍ଲକ୍, ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ ସବ୍ ଡିଭିଜନ ଅନ୍ତର୍ଗତ କରଞ୍ଜିଆ, ଯଶୀପୁର, ରରୁଆଁ, ଠାକୁରମୁଣ୍ଡା, ଶୁକ୍ରୁଳି ଆଦି ବ୍ଲକ୍, ମୟୂରଭଞ୍ଜ ଜିଲ୍ଲାର କପ୍ତିପଦା ସବ୍ ଡିଭିଜନ ଅନ୍ତର୍ଗତ ଉଦଳା, କପ୍ତିପଦା ପ୍ରମୁଖ ବ୍ଲକ୍, ସୁନ୍ଦରଗଡ଼ ଜିଲ୍ଲାର ବଣେଇ ସବ୍‌ଡିଭିଜନର କୋଇଡା ବ୍ଲକ୍ ଏବଂ ଝାଡ଼ଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲାରେ ଲଗାଣ ବୃଷ୍ଟିପାତ ହେଲେ ବୈତରଣୀର ନିମ୍ନ ଅବବାହିକାରେ ବନ୍ୟା ପରିସ୍ଥିତି ଅଧିକ ଜଟିଳ ରୂପ ଧାରଣ କରିଥାଏ । କେନ୍ଦୁଝର ଜିଲ୍ଲାରେ ଚଂପୁଆ, ତୁରୁମୁଙ୍ଗା, ଆନନ୍ଦପୁର ଆଦି ଅଞ୍ଚଳରେ ବନ୍ୟା ସୂଚକ ରହିଛି । ଆନନ୍ଦପୁର ବ୍ୟାରେଜ୍‌ରେ ଜଳସ୍ତର ବୃଦ୍ଧି ପାଇଲେ ବୈତରଣୀର ତଳ ଅଞ୍ଚଳ ପ୍ରତି ଅଧିକ

ପଦ ଘନେଇଥାଏ । ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଘସିପୁରା, ଆନନ୍ଦପୁର ଓ ହାଟଡ଼ିହି ବ୍ଲକ୍‌ରେ ନ୍ୟାଜଳ ପଶି ବ୍ୟାପକ କ୍ଷୟକ୍ଷତି ଘଟାଇଥାଏ ।

କେନ୍ଦୁଝର, ମୟୂରଭଞ୍ଜ, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ ନଦୀ ପାର୍ଶ୍ୱରେ ।ନେକ ବନ୍ୟାଘେରି ବନ୍ଧ ରହିଛି । ଏହିସବୁ ଘେରିବନ୍ଧରେ ଘାଇ ସୃଷ୍ଟି ହେଲେ ସଂପୃକ୍ତ ।ଞ୍ଚଳମାନଙ୍କରେ ବନ୍ୟା ପରିସ୍ଥିତି ଉତ୍କଟ ରୂପ ଧାରଣ କରିଥାଏ ।

ବୈତରଣୀରେ ବନ୍ୟା ଆସିଲେ ଏହାର ନିମ୍ନ ଅବବାହିକା ଅଞ୍ଚଳରେ ଅବସ୍ଥିତ କେନ୍ଦୁଝର ଜିଲ୍ଲା ।ମେତ ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲା ବିଶେଷ ଭାବେ ପ୍ରଭାବିତ ହୋଇଥାଏ । ଓଡ଼ିଶାରେ ବିତରଣୀ ବନ୍ୟା ପ୍ରଭାବିତ ପ୍ରମୁଖ ବ୍ଲକ୍‌ଗୁଡ଼ିକ ହେଲା-

ଘ୍ଟାମ୍‌ପାଟଣା (କେନ୍ଦୁଝର ଜିଲ୍ଲା)
ସାହାରପଡ଼ା (କେନ୍ଦୁଝର ଜିଲ୍ଲା)
ରରୁଆଁ (ମୟୂରଭଞ୍ଜ ଜିଲ୍ଲା)
ଶୁକ୍ଳି (ମୟୂରଭଞ୍ଜ ଜିଲ୍ଲା)
ଆନନ୍ଦପୁର (କେନ୍ଦୁଝର ଜିଲ୍ଲା)



ନିର୍ମାଣାଧୀନ ଆନନ୍ଦପୁର ବ୍ୟାରେଜ୍

ଘସିପୁରା (କେନ୍ଦୁଝର ଜିଲ୍ଲା)
ହାଟଡ଼ିହି (କେନ୍ଦୁଝର ଜିଲ୍ଲା)
କୋରେଇ (ଯାଜପୁର ଜିଲ୍ଲା)
ଦଶରଥପୁର (ଯାଜପୁର ଜିଲ୍ଲା)
ବରି (ଯାଜପୁର ଜିଲ୍ଲା)
ଯାଜପୁର (ଯାଜପୁର ଜିଲ୍ଲା)
ବିଞ୍ଝାରପୁର (ଯାଜପୁର ଜିଲ୍ଲା)
ରାଜକନିକା (କେନ୍ଦ୍ରାପଡ଼ା ଜିଲ୍ଲା)
ରାଜନଗର (କେନ୍ଦ୍ରାପଡ଼ା ଜିଲ୍ଲା)
ଭଣ୍ଡାରୀପୋଖରୀ (ଭଦ୍ରକ ଜିଲ୍ଲା)
ଧାମନଗର (ଭଦ୍ରକ ଜିଲ୍ଲା)
ଚାନ୍ଦବାଲି (ଭଦ୍ରକ ଜିଲ୍ଲା)
ତିହିଡ଼ି (ଭଦ୍ରକ ଜିଲ୍ଲା)



**ବୈତରଣୀ ବନ୍ୟାର ତାଣ୍ଡବ: ନିର୍ମାଣାଧୀନ କାନପୁର ଡ୍ୟାମ୍ ନିକଟସ୍ଥ ୨୧୫ ନମ୍ବର ଜାତୀୟ ରାଜପଥ ଧୋଇଯାଇଛି**



**ବୈତରଣୀ ବନ୍ୟାର ତାଣ୍ଡବ: ନିର୍ମାଣାଧୀନ କାନୁପୁର ଡ୍ୟାମ୍ ନିକଟସ୍ଥ ୨୧୫ ନମ୍ବର ଜାତୀୟ ରାଜପଥ ଜଳମଗ୍ନ**

ପ୍ରତିବର୍ଷ ଏହିସବୁ ବ୍ଲକ୍‌ରେ ପ୍ରଳୟଙ୍କରୀ ବନ୍ୟା ଆସିବା ଫଳରେ ଲକ୍ଷାଧିକ ସଂଖ୍ୟାରେ ପରିବାର କ୍ଷତି ସହିଥାଏ । ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାଦ୍ୱୟରେ ବୈତରଣୀ ସମେତ ବ୍ରାହ୍ମଣୀ ଓ ଖରସ୍ରୋତା ପ୍ରବାହିତ ହୋଇଥାଏ । ବ୍ରାହ୍ମଣୀ, ଖରସ୍ରୋତା ଏବଂ ବୈତରଣୀର ବନ୍ୟା ଜଳ ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାର ସ୍ଥିତିକୁ ବେହାଲ୍ କରିଦେଇଥାଏ ।

## ଆନନ୍ଦପୁର ଏବଂ ଆଖୁଆପଦା; ବୈତରଣୀର ଦୁଇ ବନ୍ୟା ସୂଚକ

*(Anandapur and Akhuapada; two flood indicators)*

ପ୍ରତିବର୍ଷ ବର୍ଷା ଋତୁରେ ବୈତରଣୀରେ ବନ୍ୟା ଆସିଲେ 'ଆନନ୍ଦପୁର' ଓ 'ଆଖୁଆପଦା' ନାଁ ଦୁଇଟି ଗଣମାଧ୍ୟମଠାରୁ ଆରମ୍ଭ କରି ସାଧାରଣ ଲୋକମାନଙ୍କ ମୁହଁରେ ଆଲୋଚନାର କେନ୍ଦ୍ରବିନ୍ଦୁ ପାଲଟିଥାଏ । ଆନନ୍ଦପୁରରେ ବନ୍ୟା ଜଳ ବୈତରଣୀର ବିପଦ ସଂକେତ ଉପରେ ପ୍ରବାହିତ ହେଉଛି, ଆଖୁଆପଦାରେ ବିପଦ ସଂକେତ ଟପିଲା ଆଦି ଖବର ବୈତରଣୀର ତଳି ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କ ଛାତିରେ କଂପନ ସୃଷ୍ଟି କରିଥାଏ । ବୈତରଣୀର ଉପରମୁଣ୍ଡରେ ପ୍ରବଳ ବର୍ଷା ହେଲେ ତଳମୁଣ୍ଡ ପ୍ରତି ବନ୍ୟା ବିପଦ ଘନେଇଥାଏ । ଯଦି ଆନନ୍ଦପୁର ଓ ଆଖୁଆପଦାରେ ବୈତରଣୀ ନଦୀରେ ବନ୍ୟା ଜଳ ବିପଦ ସଂକେତ ଉର୍ଦ୍ଧ୍ୱରେ ପ୍ରବାହିତ ହୁଏ, ତେବେ ପରିସ୍ଥିତି



ଗଂଭୀର ବୋଲି ଧରି ନେବାକୁ ହୋଇଥାଏ ।

ଆନନ୍ଦପୁରଠାରେ ବୈତରଣୀ ନଦୀର ବିପଦ ସଂକେତ ହେଉଛି ୩୮·୩୬ ମିଟର । ଯେତେବେଳେ ବନ୍ୟା ଜଳ ବିପଦ ସଂକେତ ଅର୍ଥାତ୍ ୩୮·୩୬ ମିଟର ଉର୍ଦ୍ଧ୍ୱରେ ପ୍ରବାହିତ ହୋଇଥାଏ ସେତେବେଳେ ବନ୍ୟା ପରିସ୍ଥିତି ଗଂଭୀର ହୋଇପଡ଼ିଥାଏ । ସେହିଭଳି ଆଖୁଆପଦାଠାରେ ବୈତରଣୀ ନଦୀର ବିପଦ ସଙ୍କେତ ହେଉଛି ୧୭·୮୩ ମିଟର । ଯେତେବେଳେ ବନ୍ୟା ଜଳ ୧୭·୮୩ ମିଟର ଉର୍ଦ୍ଧ୍ୱରେ ପ୍ରବାହିତ ହେଲା, ଜାଣିବ ତଳମୁଣ୍ଡ ଯାଜପୁର ଓ ଭଦ୍ରକ ଜିଲ୍ଲା ପ୍ରତି ବିପଦ ମାଡ଼ିଆସୁଛି । ବେଳେବେଳେ ଆଖୁଆପଦାଠାରେ ୨୨ରୁ ୨୫ ମିଟର ଉର୍ଦ୍ଧ୍ୱରେ ବନ୍ୟା ଜଳ ପ୍ରବାହିତ ହୋଇଥାଏ । ଭଦ୍ରକ ଜିଲ୍ଲାରେ ପ୍ରବାହିତ ହେଉଥିବା ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ, ରେବା, କପାଳି, ଗେଙ୍ଗୁଟି ଓ ମନ୍ତେଇ ଆଦି ନଦୀର ଜଳପତ୍ତନ ବୃଦ୍ଧି ପାଇଲେ ବୈତରଣୀରେ ବନ୍ୟା ପରିସ୍ଥିତିକୁ ଅଧିକ ଜଟିଳ କରିଦେଇଥାଏ ।

## କେନ୍ଦୁଝର ଜିଲ୍ଲାରେ ବନ୍ୟାର ପ୍ରକୋପ

*(The Baitarani flood havoc in Kebdujhar district )*

ପ୍ରତିବର୍ଷ ବୈତରଣୀରେ ବନ୍ୟା ହେଲେ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ସର୍ବାଧିକ ପ୍ରଭାବିତ ହୋଇଥାଏ । ଆନନ୍ଦପୁର ଉପଖଣ୍ଡର ହାଟଡ଼ିହି ବ୍ଲକ୍‌ଟି ସବୁଠୁ ବେଶି କ୍ଷତିଗ୍ରସ୍ତ ହୋଇଥାଏ । ହାଟଡ଼ିହି ବ୍ଲକ୍‌ର ବଞ୍ଜୋ, ପଞ୍ଚୁଗୋଛିଆ, ଆମ୍ବୋ, ସୁଲଣ, ସମଣା, ବଡ଼ରମ୍ପସ, ଗେଡ଼ମା, ହାବଳେଶ୍ୱର, ସଡ଼ଙ୍ଗ, ଆୟଡପୁର, ଇଞ୍ଜୋଳ, ଶାସଙ୍ଗ ଆଦି ପଞ୍ଚାୟତର ଶତାଧିକ ଗାଁ ବନ୍ୟାରେ ସଂପୂର୍ଣ୍ଣ ଜଳମଗ୍ନ ହୋଇଥାଏ ।

ସେହିଭଳି ଘସିପୁରା ବ୍ଲକ୍‌ର ବାଡୋ, ଶାଳଦେଇ, ଡରୁଆଁ ପଞ୍ଚାୟତର ୨୦ରୁ ଉର୍ଦ୍ଧ୍ୱ ଗାଁ ଏବଂ ଆନନ୍ଦପୁର ବ୍ଲକ୍‌ର ପଞ୍ଚୁପଲି, ବାଇଲୋ, ବେଲବାହାଳି, ଚାଟ୍ରା, କୋଳିମାଟି, ହରିଡ଼ାପାଳ, ଜଳସୁଆଁ ପ୍ରମୁଖ ପଞ୍ଚାୟତର ପାଖାପାଖି ୪୦ ଗାଁ ବନ୍ୟା ପ୍ଳାବିତ ହୋଇଥାଏ ।

ବୈତରଣୀ ନଦୀରେ ବନ୍ୟା ଆସିଲେ କେନ୍ଦୁଝର ଜିଲ୍ଲାର ତଳମୁଣ୍ଡ କୁହାଯାଉଥିବା ଆନନ୍ଦପୁର ଉପଖଣ୍ଡ ଭାସେ । ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଆନନ୍ଦପୁର ବ୍ଲକ୍‌ର **ଫକୀରପୁର ବନ୍ୟା ଘେରିବନ୍ଧ**ରେ ଘାଇ ସୃଷ୍ଟି ହେଲେ ବଞ୍ଜୋ, ଶିବନାରାୟଣପୁର, ସିଂହଡୋଭ, ଶାଳବଣି, ମୋଚିଡା,

କଣ୍ଟିପାଳ, ଖଡ଼ିପାଳ ଆଦି ଗାଁରେ ବ୍ୟାପକ କ୍ଷୟକ୍ଷତି ହୋଇଥାଏ । **ଟୁକୁଣା ବନ୍ୟା ଘେରିବନ୍ଧ**ରେ ଘାଇ ସୃଷ୍ଟି ହେଲେ ଟୁକୁଣା ସମେତ ହାତୀବନ୍ଧା, ଗୁହାଳିଆ, ବନିକା ଆଦି ଗ୍ରାମ ବନ୍ୟା ପ୍ରଭାବିତ ହୋଇଥାଏ । ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ ସିଆପଡ଼ାଠାରୁ ବାଡୋ (ବି.ଦ୍ର. ବାଡୋଠାରେ କୁଶେଇ ନଦୀ ବୈତରଣୀ ସହ ମିଳିତ ହୋଇଛି ) ପର୍ଯ୍ୟନ୍ତ କୁଶେଇ ନଦୀ (ବୈତରଣୀର ଉପନଦୀ) କୂଳରେ ଥିବା ବନ୍ୟା ଘେରିବନ୍ଧ ଏବଂ କୁଶେଇ ନଦୀ କୂଳସ୍ଥ **ସରେଇ-ହାତୀଶିଳା** ବନ୍ୟା ଘେରି ବନ୍ଧ ଭାଙ୍ଗିଲେ ଆନନ୍ଦପୁର ବ୍ଲକ୍‌ର ବ୍ୟାପକ କ୍ଷୟକ୍ଷତି ଘଟିଥାଏ । ସେହିଭଳି ହାଟଡ଼ିହି ବ୍ଲକ୍‌ର **ମରୈଗାଁ-ଶାଳନିଆ ରାସ୍ତାର ଇଷ୍ଟୋଳ**ଠାରେ ଘାଇ ସୃଷ୍ଟି ହେଲେ ହାଟଡ଼ିହି ବ୍ଲକ୍‌ର ଇଷ୍ଟୋଳ, ସଡ଼ଙ୍ଗ, ତେମଳା, ସରମଙ୍ଗା, ପଞ୍ଚୁଗୋଛିଆ, ସୁଲଣ, ତରଭା, ଅମୃତପୁର, ଭୁତପଦା, ଡାଂପଳା, ଅପସର, କନକଂପା, ବ୍ରାହ୍ମଣୀକଳା, ସୋଲପେଟା, ଭାଙ୍ଗିଡ଼ି, ଦଶରଥପୁର, ଆୟତପୁର, ମଦରଙ୍ଗା, ଅମୃତପୁର, ରତକଣା, ନୂଆଗାଁ, ରାଘବପୁର, ମଦରଙ୍ଗା, ଗେଡ଼ମା, ଜଳସରପୁର, ହାବଳେଶ୍ୱର, ଜାବିନିପୁର, ବାଲିପଦା, ବରାଙ୍ଗ, ସାହାପୁର, ଶାଳବଣି, ମଙ୍ଗରାଜପୁର ଜଂଭୀରା, ସମଣା, ଗୋବିନ୍ଦପୁର, ଚାପୁଣ୍ଡିଆ, ମରୁଆ, କୁଆଡ଼, ଆମ୍ରୋ, ବିରିଡ଼ି, ଅଣିତରା, ଧାନଘର ଏବଂ ଘସିପୁରା ବ୍ଲକ୍‌ର ବାଡୋ ପଞ୍ଚାୟତର





**ବୈତରଣୀ ବନ୍ୟାର ତାଣ୍ଡବ: ଆନନ୍ଦପୁର ବ୍ୟାରେଜରେ ବନ୍ୟାଜଳ**

ବାଟୋ, ତଳସାହି, ଅଞ୍ଜିରା, ଲୁଣିଆ, ଉଲ୍ଲୋଳ, ଅତା, ମଧୁକେଶରୀ, କରଡ଼ାପାଳ, ପରମାନନ୍ଦପୁର, ଫତେପୁର, ପାଟଣା ଆଦି ଗାଁ, ଶାଳଦେଇ ପଞ୍ଚାୟତର ବେଲ୍‌ଦା, ଓଡ଼ପଡ଼ା, ବ୍ରାହ୍ମଣଦା, ଶଙ୍କରପୁର, ନପଙ୍ଗା, କଇଥପାଟଣା, ଶାଳଦେଇ, ବଳରାମପୁର ପଞ୍ଚାୟତର ସରେଇ, ନଦୁଆଁ, ଭାଟିଶିରା ଆଦି ପଚାଶରୁ ଉର୍ଦ୍ଧ୍ୱ ଗାଁରେ ବନ୍ୟା ପରିସ୍ଥିତି ଭୟଙ୍କର ରୂପ ଧାରଣ କରିଥାଏ । ପୁଣି ମଧ୍ୟ ହାଟଡ଼ିହି ବ୍ଲକ୍‌ର **ଗୋବିନ୍ଦପୁର ଘାଇ** ଭାଙ୍ଗିଲେ ବୈତରଣୀ ଉପକୂଳରେ ଥିବା ଗୋବିନ୍ଦପୁର, ଜଂଭିରା, ହାବଳେଶ୍ୱର, ମଝିଗାଁ, ତିମିରିଆ, ଆଗିରିଆ, ସମଣା, ଜାବିନିପୁର, ମଙ୍ଗରାଜପୁର, ଗେଡ଼ମା, ଜଳସରପୁର, ଶାଳବଣୀ, ସରିନ୍ଦା, ଧାଇପୋଖରୀ ଆଦି ଗାଁଗୁଡ଼ିକରେ ବନ୍ୟା ପରିସ୍ଥିତି ଉତ୍କଟ ରୂପ ଧାରଣ କରିଥାଏ । ଅପରପକ୍ଷେ, ହାଟଡ଼ିହି ବ୍ଲକ୍‌ର ଆମ୍ବୋଠାରୁ ସମଣା ପର୍ଯ୍ୟନ୍ତ ବୈତରଣୀ ନଦୀରେ ବନ୍ୟାଘେରି ବନ୍ଧ ନିର୍ମାଣ ହୋଇ ନଥିବାରୁ ପ୍ରତିବର୍ଷ ବନ୍ୟା ଜଳ ଏହି ବାଟଦେଇ ବ୍ଲକ୍‌ର ଆମ୍ବୋ, କରଗୋଳା, ତେଲସିଙ୍ଗା, ଗିରିଗାଁ, ସମଣା, ବହାରିପୁର, ଚାପୁଣ୍ଡିଆ ବରାଙ୍ଗ, ସିମିଳିଆ, ଶଙ୍ଖୋ, ଅଣତିରା, ବିରିଡ଼ି ଆଦି ଗାଁ ମଧ୍ୟକୁ ପ୍ରବେଶ କରିଥାଏ ।

ଇତିହାସର ପୃଷ୍ଠା ଲେଉଟାଇଲେ କେନ୍ଦୁଝର ଜିଲ୍ଲାରେ ବୈତରଣୀରେ ଅନେକ ଲୋମହର୍ଷଣକାରୀ ବନ୍ୟା ହୋଇଥିବାର ଜଣାଯାଏ । ୧୯୨୭ ମସିହା ଜୁଲାଇ ମାସ ୨୯, ୩୦ ଓ ୩୧ ତାରିଖ ତିନିଦିନ ଧରି ବୈତରଣୀରେ ପ୍ରଳୟଙ୍କରୀ ବନ୍ୟା ଆସି ତତ୍କାଳୀନ କେନ୍ଦୁଝର ରାଜ୍ୟର ବ୍ୟାପକ କ୍ଷୟକ୍ଷତି ଘଟାଇଥିଲା । ଏହି ବନ୍ୟାରେ କେନ୍ଦୁଝର ରାଜାଙ୍କର ବୈତରଣୀ ନଦୀର କୂଳେକୂଳେ

ପ୍ରତିଷ୍ଠା ହୋଇଥିବା ଜ୍ୟୋତିପୁରଗଡ଼, ନୟାଗଡ଼, ରାଜନଗର ଗଡ଼, ଉଦୟପୁରଗଡ଼ ଭଳି ଅନେକ ରାଜପ୍ରାସାଦ ଧ୍ୱଂସ ପାଇଯାଇଥିଲା । କେନ୍ଦୁଝର ରାଜ୍ୟର ଅନେକ ମନ୍ଦିର ଓ କାରୁକୀର୍ତ୍ତି ମଧ୍ୟ ଧ୍ୱଂସ ପାଇଯାଇଥିଲା । ସେଥିମଧ୍ୟରୁ ଜ୍ୟୋତିପୁରଗଡ଼ର ଦଧିବାମନଜିଉ ମନ୍ଦିର, ରାଜନଗରର ଦଧିବାମନଜିଉ ମନ୍ଦିର, ବୀରଗୋବିନ୍ଦପୁରର ରଘୁନାଥଜିଉ ମନ୍ଦିର ଆଦି ଅନେକ ମନ୍ଦିର ୧୯୨୭ ବନ୍ୟାରେ ଧ୍ୱଂସ ପାଇଯାଇଥିଲା । ଏହି ବନ୍ୟାର ପ୍ରଭାବରେ କେନ୍ଦୁଝର ଗଡ଼ଜାତର ୨୮୯ଟି ଗ୍ରାମ, ୧ ଲକ୍ଷ ୧୧ ଏକର ଚାଷଜମି, ୧୫,୬୦୦ ବାସଗୃହ ସଂପୂର୍ଣ୍ଣ ଭାବେ ନଷ୍ଟ ହୋଇଯାଇଥିଲା ।

(ତଥ୍ୟ ଉତ୍ସ: 'ସମୟର ଆଇନାରେ କେନ୍ଦୁଝର', ରମେଶ ଚନ୍ଦ୍ର ଚକ୍ରବର୍ତ୍ତୀ, ମଞ୍ଜୁ ଆ. କେନ୍ଦୁଝର, ୨୦୧୦, ପୃଷ୍ଠା- ୧୯୬, ୧୯୭)



ନିର୍ମାଣାଧୀନ କାନୁପୁର ଡ୍ୟାମ୍ ନିକଟସ୍ଥ ୨୧୫ ନମ୍ବର ଜାତୀୟ ରାଜପଥ ଧୋଇଯାଇଛି



ତୁରୁମୁଙ୍ଗା ୪୯ ନମ୍ବର ଜାତୀୟ ରାଜପଥରେ ବନ୍ୟାଜଳ



ଆନନ୍ଦପୁର ବ୍ୟାରେଜରେ ବନ୍ୟାଜଳ

## ଭଦ୍ରକ ଜିଲ୍ଲାରେ ବନ୍ୟାର ପ୍ରଳୟଙ୍କରୀ ରୂପ

*(flood havoc in river Baitarani)*

ବୈତରଣୀ-ବ୍ରାହ୍ମଣୀ ନଦୀର ତ୍ରିକୋଣଭୂମି ଅଞ୍ଚଳ ଏବଂ ନଦୀ ମୁହାଁଣ ପୋତି ହୋଇ ପଡୁଥିବାରୁ ପ୍ରତିବର୍ଷ ବନ୍ୟା ସମସ୍ୟା ଉତ୍କଟ ରୂପ ଧାରଣ କରିଥାଏ । ଧାମରାଠାରେ ଥିବା ବୈତରଣୀ ଓ



**ଭଦ୍ରକ ଜିଲ୍ଲା ଧାମନଗରରେ ବନ୍ୟାଜଳ**

ବ୍ରାହ୍ମଣୀର ମୁହାଁଣ ଅଞ୍ଚଳ ଦ୍ରୁତ ଗତିରେ ପୋତି ହେଉଥିବା ଲକ୍ଷ୍ୟ କରାଯାଉଛି ।

ବୈତରଣୀ ନଦୀର ଉପରମୁଣ୍ଡରେ ପ୍ରଚୁର ମାତ୍ରାରେ ଖଣି ଖନନ ଏବଂ ଶିଳ୍ପାୟନ ଯୋଗୁଁ ନଦୀ ଗର୍ଭ ଅସ୍ୱାଭାବିକ ଭାବେ ପୋତି ହୋଇପଡୁଛି । ଖଣିଖନନ ଯୋଗୁଁ ବର୍ଷାଦିନେ ଉପରମୁଣ୍ଡରୁ ପ୍ରଚୁର ମାତ୍ରାରେ ଖଣିଜ ବର୍ଜ୍ୟବସ୍ତୁ, ଲୁହା, ମାଙ୍ଗାନିଜ୍ ଗୁଣ୍ଡ ଧୋଇ ହୋଇ ବୈତରଣୀ ନଦୀରେ ପ୍ରବେଶ କରିଥାଏ । ଏହି କାରଣରୁ ବର୍ଷାଦିନେ ବୈତରଣୀ ନଦୀର ଜଳ ସଂପୂର୍ଣ୍ଣ ଲାଲ୍ ଓ କର୍ଦମାକ୍ତ ହୋଇଥାଏ । ଖଣି ଅଞ୍ଚଳରୁ ଧୋଇହୋଇ ନଦୀ ମଧ୍ୟକୁ ଯାଉଥିବା ପ୍ରଚୁର ମାତ୍ରାରେ ଖଣିଜ ବର୍ଜ୍ୟବସ୍ତୁ ଓ ଲୁହାଗୁଣ୍ଡ ବୈତରଣୀରେ ପ୍ରବାହିତ ହୋଇ ତଳମୁଣ୍ଡର ତ୍ରିକୋଣଭୂମି ଅଞ୍ଚଳ ଏବଂ ନଦୀ ମୁହାଣକୁ ପୋତି ଦେଇଥାଏ । ଏହା ଫଳରେ ବର୍ଷା ଜଳ ସମୁଦ୍ରକୁ ନିଷ୍କାସନ ହୋଇ ନପାରି

ବୈତରଣୀର ତଳମୁଣ୍ଡରେ ବନ୍ୟା ସମସ୍ୟାକୁ ଅଧିକ ଜଟିଳ କରିଥାଏ ।

ବୈତରଣୀରେ ବନ୍ୟା ଫଳରେ ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର, ତିହିଡ଼ି ଓ ଚାନ୍ଦବାଲି ବ୍ଲକ୍ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥାଏ ।

ଭଣ୍ଡାରୀପୋଖରୀ ବ୍ଲକ୍‌ର ବୈତରଣୀ ନଦୀରେ ଥିବା **'ବଳିଘାଇ'** ଭାଙ୍ଗିଲେ ଜାଣିବ ପୁରା ଭଣ୍ଡାରୀପୋଖରୀ ବ୍ଲକ୍ ବୁଡ଼ିଯିବ । ବନ୍ୟା ସମୟରେ ପାଖଆଖ ଅଞ୍ଚଳବାସୀ ଏହି ଘାଇକୁ ଜଗି ରହନ୍ତି । ଏଠାରେ ଅନେକ ସମୟରେ ଗୋଷ୍ଠୀ ସଂଘର୍ଷ ଭଳି ପରିସ୍ଥିତି ଉପୁଜିଥାଏ । ସେହିଭଳି ବୈତରଣୀ ନଦୀର ବାମ ପାର୍ଶ୍ୱରେ ଥିବା ଧାମନଗର ବ୍ଲକ୍‌ର ବନବାଗ ଗ୍ରାମର ଘାଇ ଭାଙ୍ଗିଲେ ଧାମନଗର ବ୍ଲକ୍ ପ୍ରତି ବିପଦ ଦେଖାଦେଇଥାଏ । ତେବେ **'ବନବାଗ ଘାଇ'** ବାରମ୍ବାର ଭାଙ୍ଗୁଥିବାରୁ ଏଠାରେ ଗତ ୨୦୧୩ ମସିହାଠାରୁ ସ୍ଥାୟୀ ପଥର ପ୍ୟାକିଂର ବ୍ୟବସ୍ଥା କରାଯାଇଛି ।





ତୁରୁମୁଙ୍ଗା ନିକଟରେ ବନ୍ୟା



ଦଶରଥପୁରରେ ବନ୍ୟାଜଳ ମଗ୍ନ

ଯେତେବେଳେ ଏହି ଘାଇଟି ଭାଙ୍ଗିଛି, ସେତେବେଳେ ଭଣ୍ଡାରୀପୋଖରୀ ବ୍ଲକ୍‌ର ଷୋଳମପୁର, ମାଳଦା, ନପଙ୍ଗ, ବାଲିପୋଖରୀ ପଞ୍ଚାୟତ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଛି ।

ଚାନ୍ଦବାଲି ବ୍ଲକ୍‌ର ସୁନ୍ଦରପୁର ପଞ୍ଚାୟତର **ଷଠିବାଙ୍କୁ ଡ଼ା, ଦୋହରା ପାଟଣା-ଓଳଗ ବୈତରଣୀ ବନ୍ୟା ଘେରିବନ୍ଧ** ଭାଙ୍ଗିଲେ ଚାନ୍ଦବାଲି ବ୍ଲକ୍‌ର ଆରଡ଼ି, ସୁନ୍ଦରପୁର, ନାନ୍ଦପୁର ପଞ୍ଚାୟତ ଅନ୍ତର୍ଗତ ସୁନ୍ଦରପୁର, ଦୋହରା, ଓଳଗ, କୁଳେଇପଦା, ଚଂପାସାହି, ପାରଡ଼ିଆ, ଖଟୁଆପାଟଣା, ବାଡୋଳ, ଆରଡ଼ି ଶୀତଳପୁର, କୋଇଲିଖା, ନାନ୍ଦପୁର, ବାଙ୍କମୁହାଁ ଆଦି ୫୦ରୁ ଊର୍ଦ୍ଧ୍ୱ ଗାଁରେ ବନ୍ୟା ଜଳ ପଶିଥାଏ । ଏହା ସହିତ ଏହି ଘାଇ ଭାଙ୍ଗିଲେ ଭଦ୍ରକ-ଆରଡ଼ି (ଆଖଣ୍ଡଳମଣି) ମୁଖ୍ୟ ରାସ୍ତା ଉପରେ ମଧ୍ୟ ଆଣ୍ଠୁଏ ଉଚ୍ଚର ପାଣି ଚାଲେ ।

ଭଦ୍ରକ ଜିଲ୍ଲାର ବନ୍ୟାଘେରି ବନ୍ଧର ରକ୍ଷଣାବେକ୍ଷଣ ଦାୟିତ୍ୱ ଯାଜପୁର ଜଳସେଚନ ବିଭାଗ



ଟୁରୁମୁଙ୍ଗା ନିକଟରେ ବନ୍ୟା



କେନ୍ଦୁଝର ଜିଲ୍ଲାରେ ବୈତରଣୀ ନଦୀରେ ବନ୍ୟା



ସ୍ୱାମ୍‌ପାଟଣାରେ ବନ୍ୟାଜଳ

ନିୟନ୍ତ୍ରଣରେ ରହିଥିବାରୁ ଭଦ୍ରକ ଜିଲ୍ଲାରେ ବନ୍ୟା ନିୟନ୍ତ୍ରଣ କାର୍ଯ୍ୟକ୍ରମ କିଛିମାତ୍ରାରେ ବାଧାପ୍ରାପ୍ତ ହୋଇଥାଏ ବୋଲି ଅଭିଯୋଗ ହୋଇଥାଏ । ଯାଜପୁର ଜିଲ୍ଲାରେ ବୈତରଣୀର ଦକ୍ଷିଣ ପାର୍ଶ୍ୱରେ ନଦୀବନ୍ଧ କରାଯାଇଥିବାବେଳେ ଭଦ୍ରକ ଜିଲ୍ଲାର ଧାମନଗର ଓ ଚାନ୍ଦବାଲିର ବୈତରଣୀ ବାମ ପାର୍ଶ୍ୱରେ ନଦୀବନ୍ଧ କରାଯାଇ ନଥିବାରୁ ଭଦ୍ରକ ଜିଲ୍ଲାରେ ବନ୍ୟା ପରିସ୍ଥିତି ଜଟିଳ ରୂପ ଧାରଣ କରିଥାଏ । ଭଣ୍ଡାରୀପୋଖରୀ ବ୍ଲକ୍ ଅନ୍ତର୍ଗତ ବୈତରଣୀ ନଦୀର ପଣସମାହାରା ଘାଟଠାରୁ ଉତ୍ତେଇପୁର ମଲ୍ଲୀମାହାରା ପର୍ଯ୍ୟନ୍ତ ବୈତରଣୀ କୂଳ ଖାଇ ଚାଲିଛି । ଏଠାରେ ବୈତରଣୀରେ ବନ୍ୟା ଘେରିବନ୍ଧ କିମ୍ବା ପଥର ପ୍ୟାକିଂ କରାଯାଇ ନଥିବାରୁ ବୈତରଣୀ କୂଳ ଖାଇ ଗାଁ ଆଡ଼କୁ ମାଡ଼ିଯାଉଛି । ବୈତରଣୀ ନିୟମିତ କୂଳ ଖାଉଥିବାରୁ ଭଣ୍ଡାରୀପୋଖରୀ ବ୍ଲକ୍ ଅନ୍ତର୍ଗତ ଦିହୁଡ଼ି ଆନନ୍ଦପୁର ପଞ୍ଚାୟତର ୭ ନମ୍ବର ଓ୍ୱାର୍ଡରେ ଥିବା କୁଶପ୍ୱାଇଁ ଘାଟ ଏବଂ କୁଂଭାରସାହି ନଦୀବନ୍ଧ, ଉତ୍ତେଇପୁର ସ୍କୁଲ୍ ଘାଟ, ବାରିକସାହି ଛନ୍ଦା ପ୍ରତି ବିପଦ ଦେଖାଦେଇଥାଏ । ଭଣ୍ଡାରୀପୋଖରୀ ବ୍ଲକ୍‌ର ପଣସମାହାରୀ ଘାଟର ଅପରପାର୍ଶ୍ୱରେ ଯାଜପୁରର ପ୍ରସିଦ୍ଧ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ରହିଛି । ଅପରପକ୍ଷେ, ସିଦ୍ଧେଶ୍ୱର ମନ୍ଦିର ନିକଟସ୍ଥ ବୈତରଣୀ ନଦୀରେ ବନ୍ୟାଘେରି ବନ୍ଧ ନିର୍ମାଣ ସହିତ ପଥର ପ୍ୟାକିଂ କରାଯାଇଥିବାବେଳେ ଭଣ୍ଡାରୀପୋଖରୀ ବ୍ଲକ୍‌ର ଦିହୁଡ଼ିଆନନ୍ଦପୁର ଅଞ୍ଚଳରେ ବୈତରଣୀ ନଦୀରେ ଘେରି ବନ୍ଧ ନଥିବାରୁ ଏ ଅଞ୍ଚଳ ପ୍ରତି ବିପଦ ଲାଗି ରହିଥାଏ ।

ବୈତରଣୀ ନଦୀରେ ବନ୍ୟା ଫଳରେ ଧାମନଗର ବ୍ଲକ୍‌ର ୨୩ଟି ପଞ୍ଚାୟତ ପ୍ରଭାବିତ ହୋଇଥାଏ । ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍‌ର ଦକ୍ଷିଣ ଦିଗରେ ବୈତରଣୀ ନଦୀ ଏବଂ ଏହାର ଉପନଦୀ 'କୋଚିଲା' ପ୍ରବାହିତ ହୋଇଥାଏ । ଏହି ଦୁଇ ନଦୀରେ ବନ୍ୟା ଆସିବା ଦ୍ୱାରା ପ୍ରତିବର୍ଷ ଧାମନଗର ବ୍ଲକ୍‌ର ଲକ୍ଷାଧିକ ଲୋକେ ବାସହରା ହୋଇଥା'ନ୍ତି । ଧାମନଗରକୁ ବନ୍ୟାମୁକ୍ତ କରିବାକୁ ହେଲେ ଏଠାରେ ନିମ୍ନ ପ୍ରଦତ୍ତ ୧୨ଟି ପ୍ରକଳ୍ପର କାର୍ଯ୍ୟକାରିତା ଉପରେ ଧ୍ୟାନ ଦେବାକୁ ପଡ଼ିବ । ସେହିସବୁ ବନ୍ୟା ନିୟନ୍ତ୍ରକ ପ୍ରକଳ୍ପଗୁଡ଼ିକ ହେଲା-

୧. ରାମରାକୂଳ ଘେରିବନ୍ଧ (କୋଚିଲା ନଦୀ)

୨. ମଲିମାହାରା-ଗୌରାଙ୍ଗପୁର-ଗାଇଛନ୍ଦା-ମଠମାହାରା ଏସ୍‌କେପ୍ ଉପରେ ଫୁଟ୍ ବ୍ରିଜ୍ ନିର୍ମାଣ

୩. ବ୍ରାହ୍ମଣପାଳ ନିକଟରେ ମୂଳାଡ଼ିହ ସ୍ଲୁଇସ୍ ଗେଟ୍ ନିର୍ମାଣ

୪. ବିହୁଡ଼ି-ଆନନ୍ଦପୁରଠାରୁ ଗୌରାଙ୍ଗପୁର ନଦୀବନ୍ଧ ସଦୃଢ଼ୀକରଣ

୫. ବୈତରଣୀ ବାମରେ ଦଶନ୍ଧି କୂଳରେ ବନ୍ୟା ଘେରିବନ୍ଧ ନିର୍ମାଣ

୬. ଆଠଘରିଆଠାରୁ ପଙ୍କଟା ପର୍ଯ୍ୟନ୍ତ ଘେରିବନ୍ଧ

୭· କୋଚିଲା ଦକ୍ଷିଣରେ ରାମରାକୁଳଠାରୁ ହସନାବାଦ ପର୍ଯ୍ୟନ୍ତ ଘେରିବନ୍ଧ

୮· ବୈତରଣୀ ବାମରେ ମାମାଦୁଲାଠାରୁ ତଳଅସ୍ତକ ପର୍ଯ୍ୟନ୍ତ ଘେରିବନ୍ଧ

୯· ଗାନ୍ଧୀଘାଟ ଟିଆର୍‌ଇଠାରୁ ସୁନ୍ଦରପୁର ପର୍ଯ୍ୟନ୍ତ ଘେରିବନ୍ଧ

୧୦· ବୈତରଣୀ ବାମରେ ସାଠିବାଙ୍କୁଡାଠାରୁ ବୋତକ ପର୍ଯ୍ୟନ୍ତ ଘେରିବନ୍ଧ

୧୧· ସାଳନ୍ଦୀ (ବୈତରଣୀର ଉପନଦୀ)ର ତିନିତର ଘାଟଠାରୁ ନାନ୍ଦପୁର ପର୍ଯ୍ୟନ୍ତ ନଦୀବନ୍ଧର ସୁଦୃଢ଼ୀକରଣ

୧୨· କୋଚିଲା (ବୈତରଣୀର ଉପନଦୀ) ମୁହାଁଣରେ ବ୍ୟାରେଜ୍ ନିର୍ମାଣ

**(ତଥ୍ୟ ସହାୟତା: ମୁକ୍ତିକାନ୍ତ ମଣ୍ଡଳ, ବିଧାନସଭା ସଦସ୍ୟ, ଧାମନଗର ବିଧାନସଭା କ୍ଷେତ୍ର)**

## ସତର୍କ ସୂଚନା: ଯାଜପୁର ଓ କେନ୍ଦ୍ରାପଡ଼ାରେ ବନ୍ୟା ପରିସ୍ଥିତି ଗଂଭୀର !

*(be alert, Baitarani crosses danger level at Jajpur)*

ବୈତରଣୀ ନଦୀର ଉପରମୁଣ୍ଡ (ପଶ୍ଚିମ ସିଂହଭୂମି, କେନ୍ଦୁଝର, ଚଂପୁଆ, କରଞ୍ଜିଆ ଓ ବଣେଇ ସବ୍‌ଡିଭିଜନ)ରେ ଲଗାଣ ବର୍ଷା ହେଲେ ବୈତରଣୀର ନିମ୍ନ ଅବବାହିକା ଅଞ୍ଚଳ (କେନ୍ଦୁଝର ଜିଲ୍ଲାର ଆନନ୍ଦପୁର, ଘସିପୁରା ଓ ହାଟଡ଼ିହି ବ୍ଲକ୍, ଯାଜପୁର ଜିଲ୍ଲାର କୋରେଇ, ଯାଜପୁର, ଦଶରଥପୁର ଓ ବିଞ୍ଝାରପୁର, ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର, ଚାନ୍ଦବାଲି, ତିହିଡ଼ି ବ୍ଲକ୍ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ରାଜନଗର ବ୍ଲକ୍‌ରେ ବନ୍ୟା ପରିସ୍ଥିତି ଗଂଭୀର ହୋଇଥାଏ । ବିଶେଷକରି ବୈତରଣୀର ତଳମୁଣ୍ଡରେ ଥିବା ଯାଜପୁର ଜିଲ୍ଲାର କୋରେଇ, ଯାଜପୁର, ଦଶରଥପୁର, ବିଞ୍ଝାରପୁର ଭଳି ବ୍ଲକ୍ ସର୍ବାଧିକ କ୍ଷତିଗ୍ରସ୍ତ ହୋଇଥାଏ । ପ୍ରତିବର୍ଷ ବୈତରଣୀରେ ବନ୍ୟା ଆସିବା ଦ୍ୱାରା ଯାଜପୁର ଜିଲ୍ଲାର ଅତିକମ୍‌ରେ ୧୫ ଲକ୍ଷରୁ ଊର୍ଦ୍ଧ୍ୱ ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ୧୦ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ କ୍ଷତିଗ୍ରସ୍ତ ହୋଇଥା'ନ୍ତି । ଯାଜପୁର ଜିଲ୍ଲା ଦେଇ ବହିଯାଇଥିବା ବୈତରଣୀ ଓ ଏହାର ଶାଖା ବୁଢ଼ା, କାଣୀ ଓ ଗେଙ୍ଗୁଟି ନଦୀରେ ଜଳସ୍ତର ବୃଦ୍ଧି ପାଇ ବନ୍ୟା ପରିସ୍ଥିତି ଉପୁଜିଥାଏ । ୧୯୭୫ ଓ ୨୦୧୧ ମସିହା ବନ୍ୟାରେ ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍‌ର ହଜାର ହଜାର ଏକର ଫସଲ ଧ୍ୱଂସ ପାଇଯାଇଥିଲା ।

ଗୋଟିଏ ପଟେ ଯାଜପୁର ଜିଲ୍ଲାକୁ ବୈତରଣୀର ଆଶିର୍ବାଦ କୁହାଯାଉଥିଲାବେଳେ ଅନ୍ୟପଟେ ଏହା ମଧ୍ୟ ଅଭିଶାପ ପାଲଟିଥାଏ । ପ୍ରତିବର୍ଷ ବର୍ଷାଋତୁରେ ବୈତରଣୀ ନଦୀରେ ବନ୍ୟା ଆସି ଯାଜପୁର ଜିଲ୍ଲାର ବିଶେଷ କ୍ଷତି ଘଟାଇଥାଏ । ଅପରପକ୍ଷେ, ଯାଜପୁର ଜିଲ୍ଲା ଦେଇ ବ୍ରାହ୍ମଣୀ

ପ୍ରବାହିତ ହୋଇଥିବାରୁ ବ୍ରାହ୍ମଣୀ ନଦୀରେ ମଧ୍ୟ ପ୍ରଳୟଙ୍କରୀ ବନ୍ୟା ଆସିଥାଏ । ଉଭୟ ନଦୀର ବନ୍ୟା ଜଳରେ ସମଗ୍ର ଯାଜପୁର ଜିଲ୍ଲା ଉବୁଟୁବୁ ହୋଇଯାଏ ।

ପ୍ରତିବର୍ଷ ବର୍ଷା ଋତୁରେ ଦଶରଥପୁର ବ୍ଲକ୍‌ର ପ୍ରାୟ ସମସ୍ତ ପଞ୍ଚାୟତର ଶତାଧିକ ଗାଁ, କୋରେଇ ବ୍ଲକ୍‌ର ଅସନଝର, ରଣପୁର, ଗୌରପୁର, ମୁକୁନ୍ଦପୁର, ବନ୍ଧାଲୋ, ଅମୃତିଆ, ମୂଳାପାଳ ଆଦି ପଞ୍ଚାୟତ ଏବଂ ଯାଜପୁର ସଦର ବ୍ଲକ୍‌ର ୧୦ରୁ ଉର୍ଦ୍ଧ୍ୱ ପଞ୍ଚାୟତ ପ୍ରତି ବନ୍ୟା ବିପଦ ଦେଖାଦେଇଥାଏ ।

ବୈତରଣୀ ନଦୀ ଗର୍ଭ ସାମାନ୍ୟ ଫୁଲିଲେ ଦଶରଥପୁର ବ୍ଲକ୍‌ର ଦଶରଥପୁର, କୟାଁ, କମାରଡ଼ିହି, ଦଉପୁର, ଖାନ୍‌ନଗର, ନିଜାମପୁର, ଛଚିଣା, ଚଂପେଇପାଳ, ଚଷାଖଣ୍ଡ, ବିରିପଟା, ତରପଦା, ମଙ୍ଗଳପୁର, ଥାଲକୁଡ଼ି, ପାଲଟପୁର, ଗୋପାଳପୁର, କନିକାପଡ଼ା, ମଲ୍ଲିକାପୁର, କସପା, ନିଜାମ୍‌ପୁର, ଶୁଣ୍ଡୁଆ ଆଦି ପଞ୍ଚାୟତବାସୀଙ୍କ ଆଖିରୁ ନିଦ ହଜିଯାଏ ।

**ଦଶରଥପୁର**ଠାରେ ବୈତରଣୀ ନଦୀର ବିପଦ ସଂକେତ **୧୨.୫୦ ଫୁଟ** ରହିଥିବାବେଳେ ଏଠାରେ ପ୍ରତିବର୍ଷ ବନ୍ୟା ସମୟରେ ଜଳ ବିପଦ ସଂକେତ ଉର୍ଦ୍ଧ୍ୱରେ ପ୍ରବାହିତ ହୋଇଥାଏ । ଦଶରଥପୁର ବ୍ଲକ ଅନ୍ତର୍ଗତ ଦଶରଥପୁର ପଞ୍ଚାୟତର **ପାଟପୁର, ପଛପଡ଼ା, କମାଳପୁର** ଠାରେ ଘାଇ ସୃଷ୍ଟି ହେଲେ ଏହି ପଞ୍ଚାୟତର ପାଟପୁର, ଘଡ଼େଇସାହି, ବନପୁର, ଜୁନିନ୍ଦା ଆଦି ଗାଁରେ ବନ୍ୟା ପରିସ୍ଥିତି ଅଣାୟତ୍ତ ହୋଇପଡ଼େ । ସେହିଭଳି ବୈତରଣୀର ଶାଖା ନଈ **'କାଣୀ'**ରେ ବନ୍ୟା ଆସିଲେ କଣ୍ଟପଡ଼ା, ମଲ୍ଲିକାପୁର-ପଲାସାହି, ପଛପଡ଼ା-କମାଳପୁର ଆଦି ସ୍ଥାନରେ ଘାଇ ସୃଷ୍ଟି ହୋଇଥାଏ । **ପାଟପୁର**ରେ ଘାଇ ସୃଷ୍ଟି ହେଲେ ଯାଜପୁର-ମଙ୍ଗଳପୁର ମୁଖ୍ୟ ରାସ୍ତା ସମେତ କାଟିଆ-ଅହିୟାସ, ଅହିୟାସ-ବୈଷପାନ, ବୈଷପାନ-ମଙ୍ଗଳପୁର, ବଉଳାଙ୍ଗ-ପତିରି, ମଙ୍ଗଳପୁର-କର୍ଣ୍ଣଦାଣ୍ଡି, ମଙ୍ଗଳପୁର-ନିଜାମ୍‌ପୁର, ବୈଷପାନ-ଦଉପୁର, କମାରଡ଼ିହ-ଦରଭା, ଯୋଗୀମଠ-କମାରଡ଼ିହ, ଦଉପୁର-କୋତପୁର ଆଦି ରାସ୍ତା ଜଳମଗ୍ନ ହୋଇଯିବା ଫଳରେ ଯୋଗାଯୋଗ ବିଛିନ୍ନ ହୋଇପଡିଥାଏ ।

ପ୍ରତିବର୍ଷ ବନ୍ୟାରେ ଦଶରଥପୁର ବ୍ଲକ୍‌ର **ଦଶରଥପୁର ପଞ୍ଚାୟତ**ର ଦଶରଥପୁର, ବଳଦା, ଚାନ୍ଦକୁଡ଼ା, ଜୁନିନ୍ଦା, ପ୍ରକଟପୁର, ଜୟନ୍ତରା, ପାଟପୁର, **ତରପଦା ପଞ୍ଚାୟତ**ର ତୋବାବିଲ, ଖୋସାଲପୁର, ତରପଦା, **ଛଚିଣା ପଞ୍ଚାୟତ**ର ଛଚିଣା, ଆରୁହା, ଦକ୍ଷିଣ ରାୟସାହି, ପ୍ରଧାନସାହି, **କଟିକଟା ପଞ୍ଚାୟତ**ର ମାଝୀସାହି, **କସପା ପଞ୍ଚାୟତ**ର କମାଳପୁର, କସପା, **ଦୁଦୁରାଅଣ୍ଟା ପଞ୍ଚାୟତ**ର ଦୁଦୁରାଅଣ୍ଟା, ନାରଣଗୋଛା, କଣ୍ଟପଡ଼ା, **କନିକାପଡ଼ା ପଞ୍ଚାୟତ**ର ନାଗାପାଟଣା, ନରଣାପାଟ, **ଗୋପାଳପୁର ପଞ୍ଚାୟତ**ର ଗୋପାଳପୁର, ମେରଦା, **ନିଜାମପୁର ପଞ୍ଚାୟତ**ର କୋତପୁର, ନଛିନ୍ଦ୍ରପୁର, ନିଜାମପୁର, ରତଗାଁ, ସୋଲପାଟ, **ଦଉପୁର ପଞ୍ଚାୟତ**ର ଦଉପୁର,

ନାରଣପୁର, **ଖାନ୍‌ନଗର ପଞ୍ଚାୟତର** ଖାନ୍‌ନଗର, କୁଳସାହି, **ଜୟାଁ ପଞ୍ଚାୟତର** ଦରବା, ଗୁଣ୍ଡୁଣିପଡ଼ା, ଇଛାପୁର, ଜୟାଁଗୋଲା, **କମାରଡ଼ିହ ପଞ୍ଚାୟତର** କମାରଡିହ, କେଳାଙ୍ଗ, ଇଟାପତ, ଶହେମାଡ, **ମଲ୍ଲିକାପୁର ପଞ୍ଚାୟତର** ମଲ୍ଲିକାପୁର, ଦାଣ୍ଡିସାହି, ମହାନ୍ତିପାଟଣା, **ମଙ୍ଗଳପୁର ପଞ୍ଚାୟତର** ମଙ୍ଗଳପୁର, କର୍ଣ୍ଣଦାଣ୍ଡି, **ସୁପୁଆ ପଞ୍ଚାୟତର** ସୁପୁଆ, ଈଶ୍ୱରପୁର, ଗରଡ଼ିହ, ଠାକୁରପାଟଣା ଆଦି ଗ୍ରାମ କ୍ଷତିଗ୍ରସ୍ତ ହୋଇଥାଏ । ଏହି ଗାଁଗୁଡ଼ିକ ସମେତ ହଜାର ହଜାର ଏକର ଚାଷଜମି ଜଳମଗ୍ନ ହୋଇ ବ୍ୟାପକ ଧନଜୀବନ କ୍ଷତି ହୋଇଥାଏ ।

ସେହିଭଳି ଯାଜପୁର ସଦର ବ୍ଲକ୍‌ର କୁଣ୍ଡି, ମୋଟରଙ୍ଗାପାଳ, ପଣସା, ବିନ୍ଧାଣ, ନାଥସାହି, ବେହେରା ପାଟଣା, ଭୁବନେଶ୍ୱରପୁର, ସିମିଳିଆ, ବନ୍ତ, ମିର୍ଜାପୁର ଭଳି ଗାଁରେ ପ୍ରତିବର୍ଷ ବନ୍ୟାଜଳ ପ୍ରବେଶ କରିଥାଏ । ଆଖୁଆପଦାରେ ବନ୍ୟାଜଳ



ବୈତରଣୀ ବନ୍ୟାର ତାଣ୍ଡବ: ନିର୍ମାଣାଧୀନ ଜାନୁପୁର ଡ୍ୟାମ୍ ନିକଟସ୍ଥ ୨୧୫ ନମ୍ବର ଜାତୀୟ ରାଜପଥ ଧୋଇଯାଇଛି





ଯାଜପୁର ଜିଲ୍ଲା ଦଶରଥପୁରରେ ବନ୍ୟା

ବିପଦ ସଂକେତ ଟପିଲେ ଯାଜପୁର ଜିଲ୍ଲାର ଯାଜପୁର ଓ ଦଶରଥପୁର ବ୍ଲକ୍‌ବାସୀ ଆତଙ୍କିତ ହୋଇପଡ଼ନ୍ତି । ଯାଜପୁର ଜିଲ୍ଲାରେ ବୈତରଣୀ ନଦୀ କୂଳରେ ଅବସ୍ଥିତ **ଦଶରଥପୁର ବନ୍ୟା ଘେରିବନ୍ଧ**, ମଲ୍ଲିକାପୁର ପଞ୍ଚାୟତର **ଦାଣ୍ଡିସାହି-ଆଖୁଆସାହି ରାସ୍ତା, ମଲ୍ଲିକାପୁର-ଜଙ୍ଗପଡ଼ା ରାସ୍ତା, ଦୁଦୁରାଅଙ୍କା ପଞ୍ଚାୟତର ଜଙ୍ଗପଡ଼ା-ମଇଭୂଇଁ, ପାଟପୁର** ଆଦି ରାସ୍ତାରେ ଥିବା ଘାଇଗୁଡିକ ପ୍ରତିବର୍ଷ ବନ୍ୟାରେ ମୁକୁଳା ହୋଇଯାଇଥାଏ । ଏହା ଫଳରେ ଦଶରଥପୁର ବ୍ଲକ୍‌ର ଶତକଡ଼ା ଅଶି ପ୍ରତିଶତ ଚାଷଜମି ବନ୍ୟା ଜଳ ପ୍ଲାବିତ ହୋଇଥାଏ । ୨୦୧୧ ମସିହା ଭୟଙ୍କର ବନ୍ୟାରେ ଯାଜପୁର ଜିଲ୍ଲାରେ ବୈତରଣୀ ନଦୀର ଶାଖା ନଦୀ ବୁଢା ନଈ ଉପରେ ଥିବା **ଷଠିପୁର ପୋଲଟି (ଆଖୁଆପଦା ନିକଟସ୍ଥ)** ଭୁଶୁଡି ପଡ଼ିବା ଘଟଣା ଏବେ ବି ଲୋକଙ୍କ ମନରୁ ଲିଭି ନାହିଁ ।

ଯାଜପୁର ଓ କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ରାଜ୍ୟର ଦୁଇ ପ୍ରମୁଖ ନଦୀ ବୈତରଣୀ ଓ ବ୍ରାହ୍ମଣୀ ପ୍ରବାହିତ ହେଉଥିବାରୁ ପ୍ରତିବର୍ଷ ବନ୍ୟା ସମୟରେ ଯାଜପୁର ଜିଲ୍ଲା ବିଶେଷ ଭାବେ ପ୍ରଭାବିତ ହୋଇଥାଏ । ଅପରପକ୍ଷେ, ଯାଜପୁର ଜିଲ୍ଲାର **ଜେନାପୁର**ଠାରେ ବ୍ରାହ୍ମଣୀ ନଦୀର ବିପଦ ସଂକେତ ହେଉଛି **୨୩ ମିଟର** । ଯେତେବେଳେ ଏଠାରେ ବନ୍ୟା ଜଳ ୨୫ ମିଟର ଉର୍ଦ୍ଧ୍ୱରେ ପ୍ରବାହିତ ହୁଏ, ସେତେବେଳେ ଉଭୟ ବ୍ରାହ୍ମଣୀ-ବୈତରଣୀ ନଦୀ ଅବବାହିକା *(Brahmani and Baitarani Basin)* ଅଞ୍ଚଳ ପ୍ରତି ବିପଦ ଦେଖାଦେଇଥାଏ । ସେହିଭଳି ଯାଜପୁର ଜିଲ୍ଲାର ଦଶରଥପୁରଠାରେ ବୈତରଣୀର ଆଉ ଏକ ବନ୍ୟା ସୂଚକ ରହିଛି । ଦଶରଥପୁରଠାରେ ବୈତରଣୀ ନଦୀର ବିପଦ ସଂକେତ ହେଉଛି ୧୨·୫ ଫୁଟ । ଏଠାରେ ସର୍ବାଧିକ ୨୦ ଫୁଟ ପର୍ଯ୍ୟନ୍ତ ବନ୍ୟାଜଳ ପ୍ରବାହିତ ହୋଇଥାଏ ।

କେନ୍ଦ୍ରାପଡ଼ା ଜିଲ୍ଲା ଦେଇ ବୈତରଣୀ ନଦୀ ସମେତ ବ୍ରାହ୍ମଣୀ ଓ ଏହାର ପ୍ରମୁଖ ଉପନଦୀ ଖରସ୍ରୋତା ପ୍ରବାହିତ ହୋଇଥାଏ । ବ୍ରାହ୍ମଣୀ ନଦୀରେ ଥିବା ପଚ୍ଚାମୁଣ୍ଡାଇ, ଇନ୍ଦୁପୁର, ଚଉଦକୁଲାଟ, ଦାଣ୍ଡିସାହି, ଅଳଭା, ପତ୍ରପୁର, ନିମପୁର, ତାମରପୁର, ଶ୍ରୀରାମପୁର ଏବଂ ଖରସ୍ରୋତା ନଦୀରେ ଥିବା ଆଳି, ରାଜକନିକା ଅଞ୍ଚଳରେ ଥିବା ଘେରିବନ୍ଧ ଭାଙ୍ଗିଲେ ଏହା ଉଭୟ ବ୍ରାହ୍ମଣୀ-ବୈତରଣୀ ନଦୀ ଅବବାହିକା ଅଞ୍ଚଳ ପ୍ରତି ବିପଦ ସୃଷ୍ଟି କରିଥାଏ । ବୈତରଣୀ ନଦୀରେ ବନ୍ୟା ଆସିବା ଦ୍ୱାରା କେନ୍ଦ୍ରାପଡ଼ା ଜିଲ୍ଲାର ଆଳି, ରାଜକନିକା ଓ ରାଜନଗର ବ୍ଲକ୍ ବିଶେଷ ଭାବେ ପ୍ରଭାବିତ ହୋଇଥାଏ । ବୈତରଣୀ ଓ ବ୍ରାହ୍ମଣୀ ନଦୀର ବନ୍ୟାଯୋଗୁଁ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍‌ର ବାଘବୁଦା, ବରାଡ଼ିଆ, ବରୁଣା, ଭାଗିଗଦା, ଚରପଡ଼ା, ହାଟସାହି, ଜାଗୁଳେଇପଦା, ଜୟନଗର, କାଟଣାବଣିଆ, କୋଇଲିପୁର, ନହୁଣି, ଦେଉଳତରା, ଓଳାଭର, ପଣସଗଣ୍ଡ, ତରାସ, ତ୍ରୈଲୋକ୍ୟପୁର, ସିକୋ ଆଦି

ପଞ୍ଚାୟତ ଜଳମଗ୍ନ ହୋଇଯାଏ । ସେହିଭଳି ରାଜନଗର ବ୍ଲକ୍‌ର ବାଲିସାହିପାଟଣା, ବନ୍ଧପଡ଼ା, ବ୍ରାହ୍ମଣସାହି, ଚାନ୍ଦିବାଉଁଶମୂଳ, ତାଙ୍ଗମାଳ, ଗୁପ୍ତି, ଈଶ୍ୱରପୁର, ମହୁଲିଆ, ଓଷ୍ଟିଆ, ରଙ୍ଗଣି, ତାଳଚୁଆ, ସାତଭାୟା ଆଦି ପଞ୍ଚାୟତ ବ୍ୟାପକ ଭାବେ କ୍ଷତିଗ୍ରସ୍ତ ହୋଇଥାଏ ।

## ବୈତରଣୀରେ ବନ୍ୟା ନିୟନ୍ତ୍ରଣ କୌଶଳ ଓ ନଦୀବନ୍ଧ ଯୋଜନା

*(Alternate flood prevention strategy; dams and barrages)*

ବୈତରଣୀ ନଦୀରେ ବନ୍ୟାର ସଠିକ୍ ପରିଚାଳନା ଓ ସୁନିୟନ୍ତ୍ରଣ ନେଇ ବହୁ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରାଯାଉଛି । ବର୍ଷା ଜଳକୁ ଜଳଭଣ୍ଡାର ମଧ୍ୟରେ ଅଟକ ରଖି ବନ୍ୟାକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ବୈତରଣୀ ନଦୀରେ ଅନେକ ଜଳଭଣ୍ଡାର ଓ ବ୍ୟାରେଜ୍ ନିର୍ମାଣ କରାଯାଇଛି । ତେବେ ରାଜ୍ୟ ତଥା ଦେଶର ଅନ୍ୟାନ୍ୟ ନଦୀମାନଙ୍କ ତୁଳନାରେ ବୈତରଣୀରେ ନଦୀବନ୍ଧ ନିର୍ମାଣ ନୈରାଶ୍ୟଜନକ ମନେ ହୋଇଥାଏ । କାଁ ଭାଁ ହାତଗଣତି କେତୋଟି ଜଳସେଚନ ପ୍ରକଳ୍ପ ବା ବ୍ୟାରେଜ୍‌କୁ ବାଦ୍ ଦେଲେ ବୈତରଣୀରେ ନଦୀବନ୍ଧ କଥା ଆଦୌ ଚିନ୍ତା କରାଯାଇନାହିଁ ।

ବୈତରଣୀର ତଳମୁଣ୍ଡ ଓ ନଦୀମୁହାଁଣ ପୋତି ହୋଇପଡୁଥିବାରୁ ପ୍ରତିବର୍ଷ ବନ୍ୟା ସମସ୍ୟା ଅଧିକ ଜଟିଳ ହେଉଛି । ନଦୀମୁହାଁଣ ସଫା କରିବା ନେଇ ସରକାରଙ୍କ ପକ୍ଷରୁ ସେମିତି କୌଣସି ଯୋଜନା ହାତକୁ ନିଆଯାଇନାହିଁ । କେନ୍ଦୁଝର, ଯାଜପୁର, ଭଦ୍ରକ ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ବୈତରଣୀ ନଦୀର ଧାରେଧାରେ ଶକ୍ତ ବନ୍ୟା ଘେରି ବନ୍ଧ ନିର୍ମାଣ କରାଯିବାର ଆବଶ୍ୟକତା ରହିଥିଲେ ମଧ୍ୟ ଏନେଇ କୌଣସି ଆଖିଦୃଶିଆ କାର୍ଯ୍ୟକ୍ରମ ହୋଇନାହିଁ । କେବଳ ବର୍ଷାଦିନେ ବନ୍ୟା ସମୟରେ ଘେରିବନ୍ଧମାନଙ୍କରେ କେଇବସ୍ତା ବାଲି ପକେଇଦେଇ ପ୍ରଶାସନ ନିଜର କାମ ସାରିଦିଏ ।

ବନ୍ୟା ନିୟନ୍ତ୍ରଣର ପ୍ରମୁଖ କୌଶଳ ହେଉଛି ନଦୀର ସ୍ଥାନେ ସ୍ଥାନେ ଡ୍ୟାମ୍ (ବନ୍ଧ) ନିର୍ମାଣ କରି ଅଧିକ ସଂଖ୍ୟାରେ ଜଳଭଣ୍ଡାର ସୃଷ୍ଟି କରିବା । ଏହାଦ୍ୱାରା ବର୍ଷା ଜଳକୁ ହଠାତ୍ ନଦୀ ମଧ୍ୟରେ ପ୍ରବାହିତ ହେବାକୁ ନ ଦେଇ ଜଳଭଣ୍ଡାରମାନଙ୍କରେ ଗଚ୍ଛିତ ରଖାଯାଇପାରିବ ଏବଂ ମାତ୍ରାଧିକ ଜଳର ସ୍ରୋତକୁ ରୋକାଯାଇପାରିବ । ମାତ୍ର ଏ ନେଇ ଉଭୟ ରାଜ୍ୟ କିମ୍ବା କେନ୍ଦ୍ର ସରକାରଙ୍କ ପକ୍ଷରୁ ସନ୍ତୋଷଜନକ କାର୍ଯ୍ୟକ୍ରମ ହାତକୁ ନିଆଯାଇନାହିଁ । ତେବେ ବୈତରଣୀ ନଦୀ ଅବବାହିକାରେ ଅଳ୍ପ କେତୋଟି ବନ୍ଧ ଓ ବ୍ୟାରେଜ୍ ନିର୍ମାଣ କରାଯାଇପାରିଛି । ସେଗୁଡ଼ିକ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା ।

## କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ

*(Kanupur Major Irrigation Project)*

ବୈତରଣୀ ନଦୀରେ କାନୁପୁର ଡ୍ୟାମ୍ ନିର୍ମାଣ ଖବର ଆମେ ପିଲାଦିନୁ ଶୁଣିଆସୁଛୁ । ରାଜ୍ୟର

**ନିର୍ମାଣାଧୀନ କାନୁପୁର ଡ୍ୟାମ୍**



ଦ୍ୱିତୀୟ ବୃହତ୍ତମ କୁହାଯାଉଥିବା କେନ୍ଦୁଝର ଜିଲ୍ଲାର ବହୁ ପ୍ରତୀକ୍ଷିତ 'କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ' ନିର୍ମାଣ କାମ କେବେ ଶେଷ ହେବ, ତାହାକୁ ସମସ୍ତେ ଚାତକ ଭଳି ଅନେଇ ବସିଛନ୍ତି । ଦୀର୍ଘ ୪୦ ବର୍ଷ ପୂର୍ବେ ବୈତରଣୀ ନଦୀରେ ଏଭଳି ଏକ ବଡ଼ ପ୍ରକଳ୍ପର ପରିକଳ୍ପନା କରାଯାଇଥିବାବେଳେ ଦୁର୍ଭାଗ୍ୟର ବିଷୟ ଆଜି ପର୍ଯ୍ୟନ୍ତ ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇପାରିଲା ନାହିଁ ।

ପ୍ରଥମେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ୧୯୮୯ ମସିହାରେ ଏହି ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଏହାପରେ ୧୯୯୩ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏହାକୁ ଆଉ ଥରେ ଭିତ୍ତିପ୍ରସ୍ତର ସ୍ଥାପନ କଲେ । ପୁଣି ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ୨୦୦୪ ମସିହା ଏପ୍ରିଲ୍ ୧ ତାରିଖରେ ଶିଳାନ୍ୟାସ କରିଥିଲେ । ଦୀର୍ଘ ୪୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଏହି ନଦୀବନ୍ଧ ଯୋଜନାକୁ ନେଇ ନିୟମିତ ରାଜନୀତି ଚାଲିଥିଲାବେଳେ ପ୍ରକୃତରେ ଏହା କେବେ ଶେଷ ହେବ ତାହା ହିଁ କେନ୍ଦୁଝର ଜିଲ୍ଲାବାସୀଙ୍କ ପାଇଁ ମୁଖ୍ୟ ପ୍ରଶ୍ନବାଚୀ । ୨୦୦୪ରୁ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୨୦୧୦ ଅକ୍ଟୋବର ମାସ ସୁଦ୍ଧା ଶେଷ ହୋଇଯିବ ବୋଲି ପ୍ରକଳ୍ପ ରିପୋର୍ଟରେ ଉଲ୍ଲେଖ ରହିଥିବାବେଳେ ୨୦୧୫ ମସିହା ସୁଦ୍ଧା ଏହା ଶେଷ ହୋଇପାରିନାହିଁ । କୁହାଯାଉଛି, ଆସନ୍ତା ୨୦୧୮ ମସିହାରେ ଏହା ସଂପୂର୍ଣ୍ଣ ହେବ । ତେବେ ଏହା ମଧ୍ୟ ଅନିଶ୍ଚିତ ବୋଲି ପୂର୍ବାନୁମାନ କରାଯାଉଛି । ଏହି ବୃହତ୍ ଜଳସେଚନ ପ୍ରକଳ୍ପ ଦ୍ୱାରା ଉପର ବୈତରଣୀ



ନିର୍ମାଣାଧୀନ କାନୁପୁର ଡ୍ୟାମ୍



ଅବବାହିକା (*upper Baitaranee basin*) ଅନ୍ତର୍ଭୁକ୍ତ କେନ୍ଦୁଝର ଜିଲ୍ଲାର ମରୁଡିପ୍ରବଣ ଯୋଡ଼ା, ଝୁଂପୁରା, ଚଂପୁଆ, କେନ୍ଦୁଝର, ପାହାରପଡ଼ା ଓ ପାଟଣା ବ୍ଲକ୍‌ର ୩୬ଟି ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ୨୪୮ଟି ଗାଁର ମୋଟ ୪୮,୦୦୦ ଏକର ଚାଷ ଜମିରେ ଜଳସେଚନ ହେବାର ଯୋଜନା ରହିଛି ।

ମରୁଡ଼ିପ୍ରବଣ କେନ୍ଦୁଝର ଜିଲ୍ଲାରେ ଜଳସେଚନ ଉଦ୍ଦେଶ୍ୟରେ କେନ୍ଦ୍ର ସରକାରଙ୍କ ସହାୟତାରେ ଯୋଡ଼ା ବ୍ଲକର ବାସୁଦେବପୁରଠାରେ ନିର୍ମାଣ ଚାଲିଛି କାନପୁର ବୃହତ ଜଳସେଚନ ପ୍ରକଳ୍ପ । ଏହି ନଦୀବନ୍ଧ ଯୋଜନା ଫଳରେ ମୋଟ ୩୫୫୭ଟି ପରିବାର ବିସ୍ଥାପନ ହେବେ ବୋଲି ଉକ୍ତ ପ୍ରକଳ୍ପ ରିପୋର୍ଟରେ ଉଲ୍ଲେଖ ରହିଛି । 'ଓଡିଶା ପୁର୍ନବାସ ଓ ଥଇଥାନ ନୀତି-୨୦୦୬' ଅନୁଯାୟୀ ବିସ୍ଥାପିତଙ୍କୁ ଥଇଥାନ କରାଯାଉଥିବାବେଳେ ଏହା କେବଳ ପ୍ରହସନ ବୋଲି ପ୍ରକଳ୍ପ ବିସ୍ଥାପିତ ବହୁ ସମୟରେ ଦାବି ଓ ଆନ୍ଦୋଳନ ଚଳାଇଆସୁଛନ୍ତି । ଆଜି ପର୍ଯ୍ୟନ୍ତ ବିସ୍ଥାପନ, ପୁନର୍ବାସ ଓ ଥଇଥାନ କାର୍ଯ୍ୟକ୍ରମ ଶୃଙ୍ଖଳିତ ହୋଇ ନ ପାରିବାରୁ ପ୍ରକଳ୍ପ ନିର୍ମାଣ କାମରେ ଅହେତୁକ ବିଳମ୍ବ ଘଟୁଛି । ଏହି ନଦୀବନ୍ଧ ଯୋଜନାରେ ୧୨୯୫·୫୨୮ ହେକ୍ଟର ଚାଷ ଜମି ଜଳମଗ୍ନ ହେଉଥିବା ବେଳେ ୧୭୧·୪୦୪ ହେକ୍ଟର ଜଙ୍ଗଲ ଜମି ଜଳମଗ୍ନ ହେବ ବୋଲି ପ୍ରକଳ୍ପ ରିପୋର୍ଟରେ ଉଲ୍ଲେଖ ରହିଛି ।

ନଦୀବନ୍ଧ ପ୍ରକଳ୍ପ ପାଇଁ ୧୯୯୮ ମସିହାରେ ୪୨୮·୩୨ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା । ପରବର୍ତ୍ତୀ ସମୟରେ ଏହା ୧,୦୬୮ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି । ମାତ୍ର ୨୦୧୦ ମସିହା ଅକ୍ଟୋବର ମାସରେ ଶେଷ ନ ହୋଇପାରିବାରୁ ଏହାର ଅଟକଳ ମୂଲ୍ୟ ପୁନର୍ବାର

ବୃଦ୍ଧିପାଇ ୨,୦୦୦ କୋଟି ଟଙ୍କାରେ ପହଞ୍ଚିଥିଲା ।

ଯୋଡ଼ା ବ୍ଲକ୍ ଅନ୍ତର୍ଗତ ବାସୁଦେବପୁରଠାରେ ବୈତରଣୀ ନଦୀ ଉପରେ ୩·୨୪୭ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ, ୭·୫୦ ମିଟର ଓସାର ଏବଂ ୩୯·୫୦ ମିଟର ଉଚ୍ଚତାବିଶିଷ୍ଟ ଏହି ନଦୀବନ୍ଧ କାମ ଶେଷ ହେଲେ କେନ୍ଦୁଝର ଜିଲ୍ଲାର ଅର୍ଦ୍ଧାଧିକ ଚାଷୀ ଉପକୃତ ହୋଇପାରିବେ । ଏଠାରେ ନିର୍ମାଣ ହେବାକୁ ଥିବା ଜଳଭଣ୍ଡାରର ଜଳଧାରଣ ସ୍ତର ୪୪୦ ମିଟର ହୋଇଥିବାବେଳେ ବିପଦ ସଙ୍କେତ ୪୨୫ ମିଟର ରଖାଯାଇଛି । ନଦୀବନ୍ଧ ନିର୍ମାଣ କାର୍ଯ୍ୟ, ଜମି ଅଧିଗ୍ରହଣ, ପୁର୍ନବାସ ଓ ଥଇଥାନର ତଦାରଖ କରିବା ପାଇଁ ସରକାରଙ୍କ ପକ୍ଷରୁ କେନ୍ଦୁଝରଠାରେ ଜଣେ ମୁଖ୍ୟ ନିର୍ବାହୀ ଯନ୍ତ୍ରୀ, ବାସୁଦେବପୁରଠାରେ ୩ ଜଣ ନିର୍ବାହୀ ଯନ୍ତ୍ରୀ, ଜଣେ ସ୍ୱତନ୍ତ୍ର ଭୂ-ଅର୍ଜନ ଅଧିକାରୀ, ପୁର୍ନବାସ ଓ ଥଇଥାନ ପାଇଁ ଜଣେ ପ୍ରକଳ୍ପ ନିର୍ଦ୍ଦେଶକ, ୧୧ ଜଣ ସହାକରୀ ଯନ୍ତ୍ରୀ, ୪୦ ଜଣ କନିଷ୍ଠ ଯନ୍ତ୍ରୀ, ମୁଖ୍ୟ କିରାଣୀ ୫ ଜଣ, ବରିଷ୍ଠ କିରାଣୀ ୧୦ ଜଣ, କନିଷ୍ଠ କିରାଣୀ ୧୦ ଜଣ, ପିଅନ ୧୫ ଜଣ, ଡ୍ରାଫ୍‌ଟମ୍ୟାନ୍ ୪ ଜଣ ଏବଂ ଶତାଧିକ ଠିକା କର୍ମଚାରୀ ମଧ୍ୟ ନିଯୁକ୍ତ ହୋଇଛନ୍ତି ।

ଏହି ଜଳଭଣ୍ଡାରୁ ୭୭·୬୭୩ କିଲୋମିଟର ଦୈର୍ଘ୍ୟ ୟୁନିଟ୍-୧ ମୁଖ୍ୟ କେନାଲ ପାଇଁ ୮୨୦୬୫·୩୪ ଲକ୍ଷ ଟଙ୍କା ଓ ୟୁନିଟ୍-୩ କେନାଲ ପାଇଁ ୨୪୬୮୬·୦୧ ଲକ୍ଷ ଟଙ୍କା ଅଟକଳ କରାଯାଇଛି । ମାତ୍ର କେନାଲ କାମରେ ଆଜି ପର୍ଯ୍ୟନ୍ତ ଯନ୍ତ୍ରୀଙ୍କ ହାତ ବାଜିପାରିନାହିଁ । ମୁଖ୍ୟ କେନାଲ ନଦୀବନ୍ଧଠାରୁ ବାହାରି ବାସୁଦେବପୁର, ମିରିଗିସିଙ୍ଗା, କୋଦଗାଡିଆ, ମୁକୁନ୍ଦପୁର, ଚିମିଳା, ଜୟମଙ୍ଗଳପୁର, ବାଙ୍କ, ସୁନାପଶି, ଗିରିଧାରୀପୁର, ହୁଙ୍ଗପଶି, ତଡୁଆବାହାଳ, ଆଙ୍କୁଳିଆ, ଜାମଯୋଳି, ଜମଦାପାଳ, ଗୋଡ଼ା, ଗୋପିନାଥପୁର, ନିଷ୍ଚିନ୍ତପୁର, ତ୍ରିଲୋଚନପୁର, ସାନ ହୁଣ୍ଡୁଳା, କାଞ୍ଜିଯାଣି, କାଶିପାଳ, ପାଟବିଲା, ଘୁଣ୍ଟପଶି, ଧାନସେନ୍‌ପୁର, ଖେଣ୍ଡରା, ସିଲିସୁଆଁ, କୁଞ୍ଚରବାହାଳ, ତୁଳସୀପୁର, କଣ୍ଡରାପଶି, ଝଡ଼ାପଶି, ନୂଆଗାଁ, ଟାଙ୍ଗରାଣୀ, ଦୁର୍ଗାପୁର, ଝୁଂପୁରା, ଅନ୍ଧାରୀଖମଣ, ଖୁଣ୍ଟାପଡା, ଲକ୍ଷ୍ମୀପଶି, ବାରଖଣ୍ଡିଆ, ମହାଦେବପୁର, ସୋଲଗୋଡ଼ା, ଅସୁରିଆ, ଅସନପାଟ, କଳିଙ୍ଗା, ବାରୁଣା, ବନ୍ଧଡିହି, ଗୁଣ୍ଡୁଣିଆଁ, ଗିଧିବାସ, ଉପରବେଡ଼ା, ଚିତ୍ରପୁର, ବିରିକୁଆଁ, ଭୋଦପଶି, ଛେଳିଆନାଳ, ବାରିଆ, ଶିରିକୁଆଁ, କଞ୍ଚନ ଡୁମୁରିଆ ଓ ରାଧିକାଦେଇପୁର ଆଦି ଗାଁ ଦେଇ ଅତିକ୍ରମ କରିବ ବୋଲି ପ୍ରକଳ୍ପ ରିପୋର୍ଟରେ ଉଲ୍ଲେଖ ରହିଛି । ମାତ୍ର ଏ ଦିଗରେ ସେମିତି କିଛି ଆଖିଦୃଶିଆ କାମ ଆରମ୍ଭ ହୋଇପାରିନାହିଁ ।

**କାନୁପୁର ଜଳସେଚନ ପ୍ରକଳ୍ପ ବିସ୍ଥାପିତଙ୍କ ସମସ୍ୟା ତୁଟୁନାହିଁ**

କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ ଅନ୍ତର୍ଗତ ଜଳଭଣ୍ଡାର ଦ୍ୱାରା ୨୬୦୦ ହେକ୍ଟର ଚାଷଜମି ଓ ୧୬ଟି ଗାଁ ବୁଡିଯିବ ବୋଲି ପ୍ରକଳ୍ପ ରିପୋର୍ଟରେ ଉଲ୍ଲେଖ ରହିଛି । ପ୍ରକଳ୍ପ ପ୍ରଭାବିତ ପରିବାରଗୁଡିକର ପୁନର୍ବାସ ଓ ଥଇଥାନ, ଭୂ-ଅର୍ଜନ, କ୍ଷତିପୂରଣ ଏବଂ ଥଇଥାନ୍ ପ୍ୟାକେଜ୍ ସମସ୍ୟାର ସମାଧାନ

ହୋଇ ନ ପାରିବାରୁ ସ୍ଥାନୀୟ ଅଞ୍ଚଳରେ ଜନ ଅସନ୍ତୋଷ ବ୍ୟାପକ ହେବାରେ ଲାଗିଛି ।

କାନୁପୁର ନଦୀବନ୍ଧ ଯୋଜନାରେ ଯୋଡ଼ା ବ୍ଲକ୍‌ର ୧୬ଟି ଗ୍ରାମର ମୋଟ ୩୫୫୭ଟି ପରିବାର ବିସ୍ଥାପିତ ହୋଇଛନ୍ତି । ଏହି ପ୍ରକଳ୍ପ ଫଳରେ ରେଭେନ୍‌ସାପୁର(କ), ରେଭେନ୍‌ସାପୁର(ଖ), ମୁରୁସୁଆଁ, ଚମକପୁର, ଧୋବାକୁଟୁଡ଼ା, ହରିହରପୁର, ରୁଗୁଡ଼ି, ଗୋବିନ୍ଦପୁର, କଣ୍ଡରା, ଶଙ୍କରପୁର, ବିରିକଳା, ତଡୁଆଁ, ବିଲେଇପଦା, ଲହଣ୍ଡା, ବଳଭଦ୍ରପୁର ଆଦି ଗ୍ରାମଗୁଡିକ ଜଳମଗ୍ନ ହେବା ସହିତ ଏଠାକାର ବାସିନ୍ଦା କ୍ଷତିଗ୍ରସ୍ତ ହେବେ ।

ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି-୧୯୯୪-୨୦୦୬ ଅନୁସାରେ କ୍ଷତିଗ୍ରସ୍ତଙ୍କୁ ଥଇଥାନ କରାଯିବ ବୋଲି କୁହାଯାଉଥିବାବେଳେ ଦୁଃଖର ବିଷୟ କଣ୍ଡରା, ଗୋବିନ୍ଦପୁର, ବିରିକଳା, ଧୋବାକୁଟୁଡା ଓ ବାସୁଦେବପୁର ଭଳି କ୍ଷତିଗ୍ରସ୍ତ ଗ୍ରାମ ଏପର୍ଯ୍ୟନ୍ତ ଥଇଥାନ କରାଯାଇପାରିନାହିଁ । ଅପରପକ୍ଷେ, ସଂପୂର୍ଣ୍ଣ ଜଳମଗ୍ନ ହେବାକୁ ଥିବା ଗ୍ରାମଗୁଡିକ କଥା ସରକାର କିଛି ଚିନ୍ତା କରି ନାହାନ୍ତି । ଏଭଳି ସ୍ଥଳେ କାନୁପୁର ଡ୍ୟାମ୍ ଶେଷ ହେବାକୁ ଆଉ କେତେବର୍ଷ ଲାଗିବ ତାହା ଏବେ ସମସ୍ତଙ୍କ ଚିନ୍ତାକୁ ବଢେଇ ଦେଇଛି ।

ବିସ୍ଥାପିତମାନଙ୍କୁ ଘରଡ଼ିହ ବାବଦକୁ ୧୦ ଡେସିମିଲି ଜମି ଯୋଗେଇ ଦେବାକୁ ଥିବାବେଳେ ପ୍ରାଶାସନିକ ଅବହେଳା କାରଣରୁ ଏହି ଜମି ଆଜି ପର୍ଯ୍ୟନ୍ତ ଚିହ୍ନଟ ସମ୍ଭବପର ହୋଇପାରିନାହିଁ । ଫଳରେ କ୍ଷତିପୂରଣ ବାବଦକୁ ବିସ୍ଥାପିତଙ୍କୁ ମିଳିଥିବା ଅର୍ଥରାଶି ଏବେ ଶେଷ ହେବାକୁ ବସିଲାଣି । ଏତେ ପରିମାଣର ଚାଷ ଜମି ହରାଇ ଆଦିବାସୀ ଓ ହରିଜନ ବିସ୍ଥାପିତମାନଙ୍କ ଭବିଷ୍ୟତ ଅନ୍ଧକାର ହୋଇପଡିଛି । ବାସଚ୍ୟୁତ ପରିବାରମାନଙ୍କୁ ଥଇଥାନ ଦିଗରେ ପ୍ରକଳ୍ପ କର୍ତ୍ତୃପକ୍ଷ ଓ ପ୍ରଶାସନ ସଂପୂର୍ଣ୍ଣ ଉଦାସୀନ ହୋଇପଡିଛନ୍ତି । ସରକାରୀ ଜାଗାରେ ଦୀର୍ଘ ଦିନ ଧରି ବସବାସ କରି ଆସୁଥିବା ବାସଚ୍ୟୁତ ପରିବାରଗୁଡିକୁ ବର୍ତ୍ତମାନ ସୁଦ୍ଧା କୌଣସି କ୍ଷତିପୂରଣ ଯୋଗେଇ ଦିଆଯାଇନାହିଁ ।

**କ'ଣ କ'ଣ ଲୀନ ହେବ ଜଳଭଣ୍ଡାର ମଧ୍ୟରେ?**

କେନ୍ଦୁଝର ଜିଲ୍ଲା ଯୋଡ଼ା ବ୍ଲକ୍ ଅନ୍ତର୍ଗତ କଣ୍ଡରା ପଞ୍ଚାୟତର ବାସୁଦେବପୁର ଗ୍ରାମ ନିକଟ ବୈତରଣୀ ନଦୀ ଉପରେ ନିର୍ମାଣାଧୀନ କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ ଦ୍ୱାରା ନିର୍ମାଣାଧୀନ ଜଳଭଣ୍ଡାରରେ ଯୋଡ଼ା ବ୍ଲକ୍‌ରୁ ବହୁ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଅବଶେଷ ମଧ୍ୟ ଲୀନ ହେବ । କାନୁପୁର ଜଳଭଣ୍ଡାରରେ ଯୋଡ଼ା ବ୍ଲକ୍‌ର ୧୬ଟି ଗାଁର ବହୁ ମନ୍ଦିର, ସ୍କୁଲ୍, କଲେଜ, ଶିକ୍ଷାନୁଷ୍ଠାନ, ଇଂରେଜ ଅମଳର ପୁରୁଣା କୋଠୀ, ତତ୍କାଳୀନ କେନ୍ଦୁଝର ରାଜାଙ୍କର ଗଡ଼, ନଅର ଓ ଅନ୍ୟାନ୍ୟ ବହୁ ଐତିହାସିକ ସ୍ଥଳ ଲୀନ ହୋଇଯିବା ନିଶ୍ଚିତ ହୋଇଯାଇଛି ।  ଜଳଭଣ୍ଡାରରେ ସଲିଳ ସମାଧି ନେବାକୁ ଥିବା ଏହି ୧୬ଟି ଗ୍ରାମ ମଧ୍ୟରୁ ୯ଟି ଗ୍ରାମ ସଂପୂର୍ଣ୍ଣ ବୁଡ଼ିଯିବା ସହିତ ନିଜର ଚିହ୍ନବର୍ଣ୍ଣ ହରାଇବେ ଏବଂ ଆଉ ୭ଟି

ଆଂଶିକ ଭାବେ ବୁଡ଼ିଯିବେ ।

କାନୁପୁର ବୃହତ୍ ଜଳସେଚନ ପ୍ରକଳ୍ପ ଦ୍ୱାରା ଯୋଡ଼ା ବ୍ଲକ୍‌ର ଐତିହାସିକ ଚମକପୁର ଦଣ୍ଡପାଟ (ଆଧୁନିକ ଚମକପୁର ପଞ୍ଚାୟତ)ର ଚମକପୁର, ମୁରୁସୁଆଁ, ରୁଗୁଡ଼ି, ଧୋବାକୁଚୁଡ଼ା, ଶଙ୍କରପୁର, ରେଭେନ୍‌ସାପୁର (କ), ରେଭେନ୍‌ସାପୁର (ଖ), ହରିହରପୁର ଏବଂ ବିରିକଳା ପଞ୍ଚାୟତର ବିରିକଳା, ଲହଣ୍ଡା, ଦଣ୍ଡୁଆଁ, ବିଲେଇପଦା, ଗୋବିନ୍ଦପୁର ଏବଂ କଣ୍ଡରା ପଞ୍ଚାୟତର କଣ୍ଡରା ଓ ବାସୁଦେବପୁର ଗ୍ରାମ ସମେତ ଝୁଂପୁରା ବ୍ଲକ୍‌ର ନାରଦପୁର ଗ୍ରାମ ପଞ୍ଚାୟତର ବଳଭଦ୍ରପୁର ଆଦି ଗ୍ରାମ ବୁଡ଼ିବା ଏକପ୍ରକାର ନିଶ୍ଚିତ । ଏହି ୧୬ଟି ଗ୍ରାମର ଚତୁର୍ପାର୍ଶ୍ୱରେ ପ୍ରକୃତିର ଅଫୁରନ୍ତ ସୌନ୍ଦର୍ଯ୍ୟଭରା ବଣପାହାଡ଼, ନଦୀ, ନାଳ ଓ ଝରଣା ରହିଛି ।

ବୈତରଣୀ ନଦୀ ଅସାଡ଼ୋଲା ପାହାଡ଼ ଦେଇ ଦଡୁଆଁ, ଚମକପୁର, ପାର୍ବତୀପୁର, ମୁରୁସୁଆଁ, କଣ୍ଡରା ଓ ବାସୁଦେବପୁର ଗ୍ରାମ ସୀମାକୁ ଛୁଇଁଛି । ଏହି ୧୬ଟି ଗ୍ରାମରେ



କଣ୍ଡରା ଗାଁର ଲଙ୍କେଶ୍ୱର ଶିବ ମନ୍ଦିର



ଡ୍ୟାମ୍ ନିର୍ମାଣ କାର୍ଯ୍ୟ ଚାଲିଥିବାବେଳେ ଏହି ମନ୍ଦିରକୁ ପୋତି ଦିଆଯାଉଛି



କାନୁପୁର ଜଳଭଣ୍ଡାରରେ ସଲିଳ ସମାଧି ନେବାକୁ ଥିବା କଣ୍ଡରା ଗ୍ରାମ



**କେନ୍ଦୁଝର ଜିଲ୍ଲା ବାସୁଦେବପୁର ନିକଟରେ ବୈତରଣୀ**

ଥିବା ୧୮ଟି ବିଦ୍ୟାଳୟ, ୭ଟି ପୁରାତନ ମନ୍ଦିର, ୩୧ଟି ପ୍ରାଚୀନ ଦେବପୀଠ (ସ୍ଥାନୀୟ ଭାଷାରେ 'ଶାଳ'), ୧୪ଟି ଠାକୁରାଣି ଶାଳ (କାଠିଘର), ୧୫ଟି ଅଙ୍ଗନବାଡି କେନ୍ଦ୍ର, ୧ଟି ପଶୁ ଚିକିତ୍ସାଳୟ, ୧୪ଟି ବିଶାଳକାୟ ଆମ୍ବ ତୋଟା, ଗୋଟିଏ ଆୟୁର୍ବେଦ ଚିକିତ୍ସାଳୟ, ୧୧ଟି ଯୁବକ ସଂଘ ଘର, ୩ଟି ପଞ୍ଚାୟତ କାର୍ଯ୍ୟାଳୟ, ୪୫ଟି ନଳକୂପ, ୧୦୦ରୁ ଊର୍ଦ୍ଧ୍ୱ କୂପ, ୩୫୫୭ଟି ପରିବାର ବୈତରଣୀ ଜଳଭଣ୍ଡାରରେ ସଂପୂର୍ଣ୍ଣ ଲୀନ ହୋଇଯିବ । ବିଶେଷକରି ଚମକପୁରରେ ଥିବା କେନ୍ଦୁଝର ଜିଲ୍ଲାର ସର୍ବପୁରାତନ ଥାନା (ଇଂରେଜ ସରକାରଙ୍କ ଅମଳର) ମଧ୍ୟ ଏହି ଜଳଭଣ୍ଡାରରେ ବିଲୁପ୍ତ ହେବ । ଏହା ସାଙ୍ଗକୁ କେନ୍ଦୁଝର ଭଞ୍ଜବଂଶୀ ରାଜାଙ୍କ ପୁରାତନ ଚମକପୁର ଦଣ୍ଡପାଟ, ଐତିହାସିକ ଅବଶେଷ ଓ ଅନ୍ୟାନ୍ୟ ପ୍ରସ୍ତର ଶିଳାଲେଖ, ପ୍ରାଚୀନ ମୂର୍ତ୍ତି ମଧ୍ୟ ଏହି ଜଳଭଣ୍ଡାରେ ସଲିଳ ସମାଧି ନେବେ । ଏହା ସହିତ ଏଠାକାର ଲୋକମାନଙ୍କ ପ୍ରାଚୀନ ପରଂପରା, ସଂସ୍କୃତି ଓ ଲୋକବିଶ୍ୱାସ ମଧ୍ୟ ଜଳଭଣ୍ଡାରରେ କବର ନେବ । ଚମକପୁର ଦଣ୍ଡପାଟର ବାସୁଳୀ ପୀଠରେ ଶହଶହ ବର୍ଷ ଧରି ଚାଲି ଆସୁଥିବା ପ୍ରସିଦ୍ଧ 'ଉଡ଼ାପର୍ବ', ପ୍ରତ୍ନତାତ୍ତ୍ୱିକ ଛେଳିଡ଼େଗା ପୀଠରେ ଥିବା ସର୍ବ ପୁରାତନ ମନ୍ଦିର ଏବଂ ଏଠାରୁ ଆବିଷ୍କୃତ ଶିଳାଲେଖ, ପ୍ରାଚୀନ ମୂର୍ତ୍ତି, ବୈତରଣୀ ନଦୀ କୂଳସ୍ଥ ଭାଲୁଘର ଭଳି ଅନେକ ଐତିହାସିକ ଗ୍ରାମ ଓ କାରୁକୀର୍ତ୍ତି, ଐତିହ୍ୟ ଏହି ଜଳଭଣ୍ଡାରରେ ସବୁଦିନ ପାଇଁ ବିସ୍ମୃତ ହୋଇଯିବେ ।

୨୦୧୪ ମସିହା ବେଳକୁ କଣ୍ଡରା ଗ୍ରାମରେ ଥିବା ବହୁ ପୁରାତନ ପ୍ରଥମିକ ବିଦ୍ୟାଳୟ ଏବଂ ଲଙ୍କେଶ୍ୱର ଶିବ ମନ୍ଦିରକୁ ଧୀରେଧୀରେ କବର ଦିଆଯାଉଥିବାର ଏହି ଲେଖକ ନିଜ ଆଖିରେ ଦେଖିଛି ଏବଂ ସେହି ନିଷ୍ଠୁର ଯନ୍ତ୍ରଣାକୁ ଅନୁଭବ କରିଛି । ମାଟି ମଧ୍ୟରେ ପୋତି ହୋଇ କ୍ରମଶଃ ନିଜର ଅସ୍ତିତ୍ୱ ହରାଉଥିବା ଗୋଟିଏ ପ୍ରାଚୀନ ମନ୍ଦିର ଏବଂ ଇଂରେଜ ଅମଳର ଏକ ପୁରାତନ କୋଠୀ (ଯାହା ଏକ ବିଦ୍ୟାଳୟ ଭାବେ ପରିଚାଳିତ ହେଉଥିଲା)ର ଆର୍ତ୍ତନାଦକୁ ଏଇ ଲେଖକ ଶୁଣିପାରିଛି । ଏହି ପ୍ରାଚୀନ ମନ୍ଦିର ଓ ଇଂରେଜ ଅମଳର ସ୍କୁଲ୍ ଘରଟି ମାଟିରେ କବର ନେଉଥିବା ମୁହୂର୍ତ୍ତର ଫଟୋ ମଧ୍ୟ ଏହି ଲେଖକ ଉତ୍ତୋଳନ କରିପାରିଛି । ମାଟି ଭିତରେ ପୋତି ହୋଇ ନିଜର ଅସ୍ତିତ୍ୱ ହରାଇ ବସିଥିବା ଏହି ପ୍ରାଚୀନ ମନ୍ଦିରର କେବଳ ଚୂଡା ଉପରକୁ ଦୃଶ୍ୟମାନ ହେଉଥିବା ଅବସ୍ଥାରେ ମଧ୍ୟ ଏଠାକାର ପୂଜକ ଅନାଦି ନାଏକ ଠାକୁରଙ୍କୁ ପୂଜା କରିବା ବନ୍ଦ କରି ପାରି ନଥିଲେ ।

**(ତଥ୍ୟ ସହାୟତା:**

**୧. କିରଣ ଶଙ୍କର ସାହୁ, 'କେନ୍ଦୁଝର ନାଗରିକ ମଞ୍ଚ', କେନ୍ଦୁଝର**

**୨. ହୃଦାନନ୍ଦ ପାତ୍ର, ସାମ୍ବାଦିକ, ବାସୁଦେବପୁର, ଯୋଡ଼ା)**

## ଶୀତଳ ଭଣ୍ଡାରରେ ଭୀମକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ

*(Bhimakunda Hydro-Electricity Project)*

ବିଗତ କିଛି ବର୍ଷ ଧରି ଚାଷ ଓ ଚାଷୀର ସମସ୍ୟା କେନ୍ଦୁଝର ଜିଲ୍ଲା ପାଇଁ ଏକ ବିରାଟ ଚ୍ୟାଲେଞ୍ଜ ସୃଷ୍ଟିକରିଛି । ମରୁଡ଼ିରେ ପ୍ରତିବର୍ଷ କେନ୍ଦୁଝର ଜିଲ୍ଲାର ଚାଷ କ୍ଷତିଗ୍ରସ୍ତ ହେବା ସହ ଚାଷୀ ଆତ୍ମହତ୍ୟା ଏଠି ଏକ ସାଧାରଣ ଘଟଣାରେ ପରିଣତ ହୋଇଛି । ଏହାର କାରଣ ମଧ୍ୟ ଖୁବ୍ ସ୍ପଷ୍ଟ । କାରଣ ଆଜିର ଦିନରେ ମଧ୍ୟ କେନ୍ଦୁଝର ଜିଲ୍ଲାରେ ଶତକଡ଼ା ୧୦ ପ୍ରତିଶତ ଜମିକୁ ଜଳସେଚନ ସମ୍ଭବ ହୋଇପାରିନାହିଁ । ଯଦି ରାଜ୍ୟର କେଉଁ ଜିଲ୍ଲାରେ ସର୍ବାଧିକ ପରିମାଣରେ ଜଳ ଉତ୍ସ ରହିଥାଏ, ତାହା ହେଉଛି କେନ୍ଦୁଝର ଜିଲ୍ଲା । ମାତ୍ର ଜିଲ୍ଲାରେ ଥିବା ପର୍ଯ୍ୟାପ୍ତ ଜଳ ଉତ୍ସର ଉପଯୁକ୍ତ ବିନିଯୋଗ ସମ୍ଭବ ହୋଇପାରୁନି । ଜିଲ୍ଲାରେ ନଦୀ, ନାଳ ଭରି ହୋଇଛି, ମାତ୍ର ପାଣି ଅଭାବରୁ ଚାଷୀର ଜମି ଫାଟି ଆଁ କରୁଛି ।

ଜଳସେଚନର ସୁବିଧା ନଥିବା ସହିତ ମରୁଡ଼ି କେନ୍ଦୁଝର ଜିଲ୍ଲାର ଚାଷୀଙ୍କ ଆର୍ଥିକ ମେରୁଦଣ୍ଡକୁ ଦୋହଲାଇ ଦେଇଛି । ଜିଲ୍ଲାରେ ବୈତରଣୀ, ମାଛକାନ୍ଦଣା, ଅରଡ଼େଇ, କାନ୍‌ଝାରୀ, ସୀତା, କୁକୁରକଟା, କୁଶେଇ, ମୁଷଳ, ସମାକୋଇ, କାରୋ, ସାଳନ୍ଦୀ, ରେମାଳ, ହନୁମନ୍ତିଆ ଭଳି ଚିରସ୍ରୋତା ନଦୀ ପ୍ରବାହିତ ହେଉଥିବାବେଳେ ଜଳସେଚନର ସୁବିଧା ନଥିବା କାରଣରୁ ମରୁଡ଼ି କବଳିତ ଚାଷୀଙ୍କୁ

ଆତ୍ମହତ୍ୟାର ରାସ୍ତା ବାଛିବାକୁ ପଡୁଛି ।

ବୈତରଣୀ ନଦୀର 'କାନୁପୁର ଜଳସେଚନ ପ୍ରକଳ୍ପ' କାର୍ଯ୍ୟକାରୀ ହେଲେ ଉପର କେନ୍ଦୁଝରର ଯୋଡ଼ା, ଚଂପୁଆ, ଝୁଂପୁରା ଭଳି ବ୍ଲକ୍‌ର ଚାଷୀମାନେ ଉପକୃତ ହେବେ । ମାତ୍ର ସାହାରପଡ଼ା, ପାଟଣା, ଘଟଗାଁ, କେନ୍ଦୁଝରସଦର ଭଳି ବ୍ଲକ୍‌ର ଚାଷୀମାନେ କ'ଣ କରିବେ? ଏମାନଙ୍କ ପାଇଁ 'ଭୀମକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ'ର ପରିକଳ୍ପନା କରାଯାଇଛି । ମାତ୍ର ଏହା କେଉଁଠି କାର୍ଯ୍ୟକାରୀ ହେଉଛି?

ରାଜ୍ୟର ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ ଭୀମକୁଣ୍ଡଠାରେ ହେବାକୁ ଥିବା ବହୁ ପ୍ରତୀକ୍ଷିତ 'ଭୀମକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ' ଶେଷ ହେଲେ କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ବ୍ୟାପକ ଅଞ୍ଚଳରେ ଜଳସେଚନ ହୋଇପାରିବା ସହ ଜଳବିଦ୍ୟୁତ୍ ମଧ୍ୟ ଉତ୍ପାଦନ ହୋଇପାରିବ । ସବୁଠୁ ଦୁର୍ଭାଗ୍ୟର ବିଷୟ, ରାଜ୍ୟ ସରକାରଙ୍କ ଜଳ ସଂପଦ ବିଭାଗ ପକ୍ଷରୁ ଏହାର ଏକ 'ଡିଟେଲ୍‌ଡ ପ୍ରୋଜେକ୍ଟ ରିପୋର୍ଟ' (ଡିପିଆର୍) ପ୍ରସ୍ତୁତ ହୋଇ ସାରିଥିଲେ ମଧ୍ୟ ଏହାର ଅଗ୍ରଗତି ନେଇ ଆଖିଦୃଶିଆ ପଦକ୍ଷେପ ଗ୍ରହଣ କରାଯାଇନାହିଁ ।

ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସୀମାନ୍ତ ଅଞ୍ଚଳ ପାଟଣା ବ୍ଲକ୍‌ରେ ଅବସ୍ଥିତ ଭୀମକୁଣ୍ଡଠାରେ ଏହି ଜଳ ବିଦ୍ୟୁତ୍ ପ୍ରକଳ୍ପର ପରିକଳ୍ପନା କରାଯାଇଛି । ଏହି ପ୍ରକଳ୍ପ ଫଳରେ ମୋଟ୧୫୦ ମେଗାଓ୍ୱାଟ୍ ଜଳବିଦ୍ୟୁତ୍ ଉତ୍ପାଦନ ହେବା ସାଙ୍ଗକୁ ୧୫,୦୦୦ ହେକ୍ଟର ଜମିରେ ଜଳସେଚନ ହୋଇପାରିବ । ସବୁଠୁ ବଡ଼ କଥା ହେଉଛି, ଏହି ପ୍ରକଳ୍ପ ଯୋଗୁଁ ବିସ୍ଥାପନ ସମସ୍ୟା ମଧ୍ୟ ଏତେ ଜଟିଳ ହେବାର ସମ୍ଭାବନା ନାହିଁ । ଭୀମକୁଣ୍ଡର ଉପର ବୈତରଣୀ ଉପତ୍ୟକା ମୁଖ୍ୟତଃ ପାହାଡ ଓ ଜଙ୍ଗଲ ପରିପୂର୍ଣ୍ଣ ଥିବାରୁ ପ୍ରକଳ୍ପ ଯୋଗୁଁ ଜନବସତି ବିସ୍ଥାପନ ହେବାର କୌଣସି ସମ୍ଭାବନା ନାହିଁ । ଏଠାରେ ଉଭୟ ପାର୍ଶ୍ୱରେ ଥିବା ପାହାଡ଼କୁ ଯୋଡ଼ି ଏକ ବୃହତ୍ ଜଳଭଣ୍ଡାର ନିର୍ମାଣ କରାଯିବା ପରେ ଜଳ ବିଦ୍ୟୁତ୍ ଉତ୍ପାଦନ କରାଯିବ । ଏହା ପରେ କେନାଲ୍ ମାଧ୍ୟମରେ ମଧ୍ୟ ଉପର ଅଞ୍ଚଳକୁ ଜଳସେଚନ କରାଯିବ ।

ଆଜିକୁ ୩୦ ବର୍ଷ ତଳେ ଏହି 'ଭୀମକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ'ର ଏକ ରିପୋର୍ଟ ପ୍ରସ୍ତୁତ କରାଯାଇଥିଲା ଏବଂ ଏ ବାବଦରେ ବହୁ କାମ ମଧ୍ୟ ଆଗେଇ ଯାଇଥିଲା । ମାତ୍ର ସରକାରଙ୍କ ଉଦାସୀନତା ଯୋଗୁଁ ଏହା ବନ୍ଦ ହୋଇପଡ଼ିଛି । ଭୀମକୁଣ୍ଡଠାରେ ବୈତରଣୀ ନଦୀ ଖୁବ୍ ପ୍ରଖର ବେଗରେ ତଳକୁ ଗତ କରିଥାଏ ଏବଂ ଏଠାରେ ବନ୍ଧ ନିର୍ମାଣ କରିବା ସବୁ ଦିଗରୁ ଅନୁକୂଳ ବୋଲି ବିଶେଷଜ୍ଞମାନେ ମତବ୍ୟକ୍ତ କରନ୍ତି । ଏସବୁ ସୁବିଧାକୁ ଲକ୍ଷ୍ୟ କରି ସେତେବେଳେ ଏହି ଜଳବିଦ୍ୟୁତ୍ ପ୍ରକଳ୍ପର ପରିକଳ୍ପନା କରାଯାଇଥିଲା । ଏହାକୁ 'ଗ୍ରୀନ୍ ପାୱାର ପ୍ରୋଜେକ୍ଟ' ଭାବେ ପରିକଳ୍ପନା

କରାଯାଇ ରାଜ୍ୟର ଏକ ସଫଳତମ ପ୍ରକଳ୍ପ ଭାବେ ବିବେଚନା ମଧ୍ୟ କରାଯାଉଥିଲା ଏବଂ ପ୍ରକଳ୍ପଟି କାମରେ ବିଶେଷ ଅଗ୍ରଗତି ମଧ୍ୟ ପରିଲକ୍ଷିତ ହୋଇଥିଲା । ରହସ୍ୟଜନକ ଭାବେ ସରକାର ଏହି ପ୍ରକଳ୍ପ ନେଇ ନିରବ ରହିବା ବିଭିନ୍ନ ମହଲରେ ସନ୍ଦେହ ସୃଷ୍ଟି କରିଛି ।

**(ତଥ୍ୟ ସହାୟତା: କିରଣ ଶଙ୍କର ସାହୁ, ସଭାପତି, ନାଗରିକ ମଞ୍ଚ, କେନ୍ଦୁଝର)**

## କେଶରୀକୁଣ୍ଡ ନଦୀବନ୍ଧ ଯୋଜନା

*(Kesarikunda Medium Irrigation Project)*



ଧ୍ୱଂସ ପାଇଯାଇଥିବା କେଶରୀକୁଣ୍ଡ ନଦୀବନ୍ଧ

ପୁଣ୍ୟତୋୟା ବୈତରଣୀ ନଦୀରେ ମୟୂରଭଞ୍ଜ ଓ କେନ୍ଦୁଝର ସୀମାନ୍ତରେ ରହିଛି ପ୍ରସିଦ୍ଧ ପବିତ୍ର କେଶରୀକୁଣ୍ଡ । ଚଂପୁଆ ବ୍ଲକ୍ ଅନ୍ତର୍ଗତ ସରେଇ ଗ୍ରାମ ନିକଟରେ ବୈତରଣୀ ନଦୀରେ ଥିବା ପ୍ରସ୍ତର ଶଯ୍ୟା ଉପରେ ଏକ ବିଶାଳ କୁଣ୍ଡ ରହିଛି । ଏହା ହିଁ କେଶରୀକୁଣ୍ଡ । ତେବେ ଏହି କେଶରୀକୁଣ୍ଡଠାରେ ନଦୀ ଜଳକୁ ଅଟକାଇ ଏକ ଡ୍ୟାମ୍ ପ୍ରକଳ୍ପ କରିବାକୁ ସରକାର ସ୍ୱପ୍ନ ଦେଖିଥିଲେ । ୧୯୯୫ ମସିହା ମାର୍ଚ୍ଚ ୨୩ ତାରିଖରେ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ବି· ସତ୍ୟ ନାରାୟଣ ରେଡ୍ଡୀ ଏହି ପ୍ରକଳ୍ପକୁ ଉଦ୍‌ଘାଟନ କରିଥିଲେ । ୨ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ବ୍ୟୟ କରାଯାଇ ଏଠାରେ ଏକ କଂକ୍ରିଟ୍

ବନ୍ଧ ନିର୍ମାଣ କରାଯାଇଥିଲା । ସେହି ସମୟରେ ବୈତରଣୀର ସମସ୍ତ ଜଳକୁ ନିୟନ୍ତ୍ରିତ କରି ଗୋଟିଏ ଗେଟ୍ ମାଧ୍ୟମରେ ଛଡ଼ାଯାଇ ଏଥିରୁ ବିଦ୍ୟୁତ୍ ଉତ୍ପାଦନ ମଧ୍ୟ କରାଯାଇ ପାରିଥିଲା । ଏହାପରେ ପରୀକ୍ଷାମୂଳକ ଭାବେ ଏଠାରୁ ବିଦ୍ୟୁତ୍ ଉତ୍ପାଦନ କରିବା ପରେ ପାଖାପାଖି ଶହେ ଏକର ଚାଷ ଜମିକୁ ପାଣି ମଡ଼ାଇବାର ବ୍ୟବସ୍ଥା କରାଯାଇଥିଲା । କିଛିବର୍ଷ ପ୍ରକଳ୍ପଟି ଚାଲିବା ପରେ ଏହା ବନ୍ଦ ହୋଇଯାଇଥିଲା । ଏହି ବନ୍ଧକାମ ଦୁର୍ବଳ ହୋଇଥିବାରୁ କେଶରୀକୁଣ୍ଡର ପ୍ରବଳ ସ୍ରୋତରେ ଏହି ବନ୍ଧର କିଛି ଅଂଶ ଭାସି ଯାଇଥିଲା । ଏହାପରେ ସରକାରଙ୍କ ଅବହେଳା କାରଣରୁ ପ୍ରକଳ୍ପଟି ସଂପୂର୍ଣ୍ଣ ବନ୍ଦ ରହିଯାଇଛି ।

କେନ୍ଦ୍ର ସରକାର ପ୍ରକଳ୍ପଟି ପାଇଁ କୋଟିକୋଟି ଟଙ୍କା ଖର୍ଚ୍ଚ କରିଥିଲେ ମଧ୍ୟ କୌଣସି ସୁଫଳ ମିଳି ନଥିଲା । ଏହା ମଧ୍ୟରେ ଏହି ବନ୍ଧ ଧୀରେଧୀରେ ଧ୍ୱଂସ ପାଇଯିବା ସହିତ ଏଥିରୁ ଲୁହା ଓ ଅନ୍ୟାନ୍ୟ ଯନ୍ତ୍ରାଂଶକୁ ଦୁର୍ବୃତ୍ତ କାଟି ନେଇଯିବା ପରେ ଏବେ ବନ୍ଧର ଅଳ୍ପକିଛି ଅଂଶ ପାଣିମଧ୍ୟରେ ବୁଡ଼ିରହିଛି । ତେବେ ଏହି ନଦୀବନ୍ଧ ଯୋଜନାଟି କାହିଁକି ବିଫଳ ହେଲା ତାହାର ତଦନ୍ତ ହେଲା ନାହିଁ କି ସରକାରଙ୍କ ପକ୍ଷରୁ ପୁନର୍ବାର ଏହି ପ୍ରକଳ୍ପକୁ କାର୍ଯ୍ୟକାରୀ କରିବାର ଆନ୍ତରିକତା ପ୍ରକାଶ ପାଇଲା ନାହିଁ । ଏହା ଫଳରେ ଏହି ପ୍ରକଳ୍ପଟି ଏବେ ସଂପୂର୍ଣ୍ଣ ଧ୍ୱଂସ ପାଇଗଲା ।

ବୈତରଣୀ ନଦୀର ଏହି ଜଳବିଦ୍ୟୁତ୍ ପ୍ରକଳ୍ପ ଆଜି ପର୍ଯ୍ୟନ୍ତ ଚାଲୁ ରହିଥିଲେ ସ୍ଥାନୀୟ ଅଞ୍ଚଳର ହଜାର ହଜାର ଚାଷୀମାନେ ଉପକୃତ ହୋଇପାରିଥା'ନ୍ତେ । ଏହି ଜଳଭଣ୍ଡାରରୁ ମୟୂରଭଞ୍ଜର ରରୁଆଁ ଓ କେନ୍ଦୁଝରର ଚଂପୁଆ ଓ ଯୋଡ଼ା ବ୍ଲକ୍‌ର ପାଖାପାଖି ୫୦୦ରୁ ଊର୍ଦ୍ଧ୍ୱ ହେକ୍ଟର ଚାଷ ଜମିରେ ଜଳ ମାଡି ପାରିଥା'ନ୍ତା । ମାତ୍ର ସରକାରଙ୍କ ଆନ୍ତରିକତାର ଅଭାବ କାରଣରୁ ଏହି ପ୍ରକଳ୍ପ ଆଉ ଅଗ୍ରଗତି କରିପାରିନାହିଁ । ତେବେ ସରକାର ପୁନର୍ବାର ଏହି ପ୍ରକଳ୍ପର ନୂତନ ରୂପରେଖ ପ୍ରସ୍ତୁତ କରି ଏଭଳି ଏକ ବହୁମୂଲ୍ୟ ପ୍ରକଳ୍ପକୁ ଚାଲୁ କରିବାକୁ ସ୍ଥାନୀୟ ଅଞ୍ଚଳବାସୀ ଦାବି ଜଣାଇଛନ୍ତି ।

## ଆନନ୍ଦପୁର ବ୍ୟାରେଜ୍ ପ୍ରକଳ୍ପ

*(Anandapur Barrage Project)*

ଆନନ୍ଦପୁର ଉପଖଣ୍ଡ ଅଞ୍ଚଳରେ କ୍ରମାଗତ ଦେଖା ଦେଉଥିବା ମରୁଡ଼ିକୁ ମୁକାବିଲା କରିବା ଏବଂ ଚାଷୀମାନଙ୍କର ଜମିକୁ ପାଣି ଯୋଗେଇ ଦେବା ଉଦ୍ଦେଶ୍ୟରେ ଆନନ୍ଦପୁରଠାରେ 'ଆନନ୍ଦପୁର ବ୍ୟାରେଜ୍ ପ୍ରକଳ୍ପ' ନିର୍ମାଣ କରାଯାଇଛି । କେନ୍ଦ୍ର ସରକାରଙ୍କ ଜଳସଂପଦ ମନ୍ତ୍ରଣାଳୟ ଏହି ପ୍ରକଳ୍ପକୁ ଅନୁମୋଦନ କରିବା ପରେ ୪୮୨·୨୬ କୋଟି ଟଙ୍କା ମଞ୍ଜୁର କରିଥିଲା । ଦୀର୍ଘଦିନ ଧରି ଆନନ୍ଦପୁରଠାରେ ବୈତରଣୀ ନଦୀ ଉପରେ ଏକ ବ୍ୟାରେଜ୍ ପ୍ରକଳ୍ପ କାର୍ଯ୍ୟ ନିର୍ମାଣାଧୀନ ଅବସ୍ଥାରେ ଅଛି । ଏହି ପ୍ରକଳ୍ପର ସର୍ଭେ କାମ ଦୀର୍ଘ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ବିତିଯାଇଥିଲେ ମଧ୍ୟ ଗତ ୨୦୧୦ ମସିହାରୁ



ନିର୍ମାଣାଧୀନ ଆନନ୍ଦପୁର ବ୍ୟାରେଜ୍

ଏହାର ନିର୍ମାଣ କାମ ଆରଂଭ ହୋଇଥିଲା ।

୨୦୦୯ ମସିହା ଜାନୁୟାରୀ ୨୮ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଏହି ପ୍ରକଳ୍ପର ଶୁଭାରଂଭ କରାଯାଇଥିଲା । ଏହି ବ୍ୟାରେଜଟିର ଦୈର୍ଘ୍ୟ ୪୯୧ ମିଟର ଏବଂ ଜଳ ନିଷ୍କାସନ ପାଇଁ ଏହି ଏଥିରେ ମୋଟ ୩୩ଟି 'ଓ୍ୱେ' ନିର୍ମାଣ କରାଯାଇଛି । କେନ୍ଦ୍ରୀୟ ଜଳ ଆୟୋଗ ଏହି ବ୍ୟାରେଜଟିର ରୂପରେଖ ପ୍ରସ୍ତୁତ କରିଛି । ଏହି ବ୍ୟାରେଜ୍‌ଟି ନିର୍ମାଣ ହେବା ଫଳରେ ଆନନ୍ଦପୁର ଉପଖଣ୍ଡର ବୈତରଣୀ ଅବବାହିକାର ନିମ୍ନ ଅଞ୍ଚଳର ଚାଷୀମାନେ ବିଶେଷ ଉପକୃତ ହୋଇପାରିବେ । ଏହି ପ୍ରକଳ୍ପ ଦ୍ୱାରା କେନ୍ଦୁଝର, ଭଦ୍ରକ ଏବଂ ବାଲେଶ୍ୱର ଜିଲ୍ଲାର ୬୦,୦୦୦ ହେକ୍ଟର ଚାଷଜମିକୁ ଜଳସେଚନ କରାଯାଇପାରିବ । ସେଥିମଧ୍ୟରୁ ଆନନ୍ଦପୁର ଉପଖଣ୍ଡର ପ୍ରାୟ ୧୨,୦୦୦ ହେକ୍ଟର ଫସଲକୁ ଜଳସେଚନ ହେବାର ସୁବିଧା ରହିବ । ଏଠାରେ ୧୫ କିଲୋମିଟର ବ୍ୟାସାର୍ଦ୍ଧ ବ୍ୟାପୀ ଏକ ବିଶାଳ ଜଳଭଣ୍ଡାର ନିର୍ମାଣ ହେବ । ଏହାଦ୍ୱାରା ଆନନ୍ଦପୁର ଉପଖଣ୍ଡର ପାଖାପାଖି ୨୧ଟି ଗାଁର ୭୩୦ ଏକର ଜମି ସଂପୂର୍ଣ୍ଣ ଜଳମଗ୍ନ ହୋଇଯିବ ବୋଲି



**ଆନନ୍ଦପୁର ବ୍ୟାରେଜରେ ଲେଖକ**

ପ୍ରକଳ୍ପର ରୂପରେଖରେ ଉଲ୍ଲେଖ ରହିଛି ।

ବ୍ୟାରେଜଟିରୁ ଦୁଇଟି କେନାଲ୍ *(Baitaranee left bank canal and Baitaranee right bank canal)* ମାଧ୍ୟମରେ ଆନନ୍ଦପୁର ଉପଖଣ୍ଡ ସମେତ ଭଦ୍ରକ ଓ ବାଲେଶ୍ୱର ଜିଲ୍ଲାର ଚାଷଜମିକୁ ଜଳ ଯୋଗାଇ ଦିଆଯିବ । ବୈତରଣୀ ବାମ କେନାଲ ମାଧ୍ୟମରେ ଆନନ୍ଦପୁର ଉପଖଣ୍ଡର ଆନନ୍ଦପୁର, ହାଟଡ଼ିହି ବ୍ଲକ୍‌ର ୩,୭୦୦ ହେକ୍ଟର ଜମିକୁ ଜଳସେଚନ କରାଯିବାକୁ ଥିବାବେଳେ ବୈତରଣୀ ଡାହାଣ କେନାଲ ମାଧ୍ୟମରେ ଆନନ୍ଦପୁର ଉପଖଣ୍ଡର ଆନନ୍ଦପୁର ଓ ଘସିପୁରା ବ୍ଲକ୍‌ର ୬,୦୦୦ ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯିବାର ଯୋଜନା ରହିଛି । ଏହା ସହିତ ଶାଳନ୍ଦୀ ବାମ ମୁଖ୍ୟ କେନାଲର ସଂପ୍ରସାରଣ କରାଯାଇ ଏହି ବ୍ୟାରେଜର ପାଣିକୁ ଭଦ୍ରକ ଜିଲ୍ଲାର ବାସୁଦେବପୁର, ବନ୍ତ, ଭଣ୍ଡାରୀପୋଖରୀ ବ୍ଲକ୍ ସମେତ ବାଲେଶ୍ୱର ଜିଲ୍ଲାର ସିମୁଳିଆ, ଖଇରା, ଔପଦା, ସୋରୋ, ବାହାନାଗା, ନୀଳଗିରି, ବାଲେଶ୍ୱର ଏବଂ ରେମୁଣା ବ୍ଲକ୍‌ର ଚାଷ ଜମିକୁ ପାଣି ଯୋଗେଇ ଦିଆଯିବ । ସୂଚନାଯୋଗ୍ୟ, ଏହାପୂର୍ବରୁ ଶାଳନ୍ଦୀ ନଦୀରେ ଆନନ୍ଦପୁର ଉପଖଣ୍ଡର ବିଦ୍ୟାଧରପୁରଠାରେ ଏକ ବ୍ୟାରେଜ୍ ନିର୍ମାଣ ହୋଇଥିବା ଫଳରେ ଏହାର ସୁଫଳ ଭଦ୍ରକ ଓ ବାଲେଶ୍ୱର ଜିଲ୍ଲାର ଚାଷୀମାନେ ପାଇ ଆସୁଥିଲେ ।

## ଆଖୁଆପଦା ଆନିକଟ୍ ପ୍ରକଳ୍ପ

*(Akhuapada Anicut Project)*

ଆଖୁଆପଦା ଆନିକଟ



ଆଖୁଆପଦା ଆନିକଟ୍‌ଟି ଭଦ୍ରକ ଜିଲ୍ଲା ଭଣ୍ଡାରୀପୋଖରୀ ବ୍ଲକ୍ ଅନ୍ତର୍ଗତ ଆଖୁଆପଦାଠାରେ ବୈତରଣୀ ନଦୀ ଉପରେ ନିର୍ମିତ ହୋଇଛି । ବୈତରଣୀର ଉପର ଅବବାହିକା ଅଞ୍ଚଳର ସମସ୍ତ ଜଳକୁ ଆଖୁଆପଦାଠାରେ ଗଚ୍ଛିତ କରାଯାଇ ଦୁଇଟି କେନାଲ୍ ମାଧ୍ୟମରେ ଭଦ୍ରକ ଜିଲ୍ଲାର ଚାଷଜମି ଉଦ୍ଦେଶ୍ୟରେ ଜଳସେଚନ କରାଯାଉଛି ।

ଆଖୁଆପଦାଠାରେ ବୈତରଣୀର ଅନ୍ୟ ଏକ ଶାଖା ନଦୀ ବୁଢା ନଦୀ ଷଠିପୁର ଦେଇ ଯାଜପୁର ଜିଲ୍ଲାକୁ ପ୍ରବେଶ କରିଥିବାବେଳେ ବୈତରଣୀ ଭଣ୍ଡାରୀପୋଖରୀ-ଯାଜପୁର, ଧାମନଗର-ଦଶରଥପୁର, ଚାନ୍ଦବାଲି-ରାଜକନିକା ସୀମା ଦେଇ ଧାମରା ଆଡକୁ ଆଗେଇ ଚାଲିଛି । ଆଖୁଆପଦା ଆନିକଟର ଆଧୁନିକିକରଣ ନିମନ୍ତେ ୪୪.୦୫ କୋଟି ଟଙ୍କା ଖର୍ଚ୍ଚ ଅଟକଳ କରାଯାଇଥିଲା । ଏହି କାର୍ଯ୍ୟ ୧୯୯୭ ମସିହାରୁ ଆରଂଭ ହୋଇ ୨୦୦୦ ମସିହାରେ ଶେଷ ହୋଇଥିଲା ।

## ବୈତରଣୀ ପାୱାର ପ୍ରୋଜେକ୍ଟ

*(Baitarani Power Project Pvt. Ltd.)*

୨୦୦୫ ମସିହାରୁ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ କୋଳିମାଟି ପଞ୍ଚାୟତର ସିଙ୍ଗନାଳି

ନିକଟରେ ବୈତରଣୀ ନଦୀରେ 'ବୈତରଣୀ ପାଓ୍ୱାର ପ୍ରୋଜେକ୍ଟ ପ୍ରାଇଭେଟ୍ ଲିଃ' ନିଜର ଏକ ଶକ୍ତି ପ୍ରକଳ୍ପ କାର୍ଯ୍ୟ ଆରମ୍ଭ କରିଛି । ଏହି ପ୍ରକଳ୍ପ ଜରିଆରେ ବୈତରଣୀ ନଦୀରେ ଏକ ଜଳଭଣ୍ଡାର ନିର୍ମାଣ କରାଯାଇ ଜଳବିଦ୍ୟୁତ୍ ଉତ୍ପାଦନ କରାଯିବାର ଲକ୍ଷ୍ୟ ରଖାଯାଇଛି । ଏହା ସହିତ ୨୪ ମେଗାଓ୍ୱାଟ୍ ଜଳବିଦ୍ୟୁତ୍ ଉତ୍ପାଦନ କରାଯିବା ସାଙ୍ଗକୁ ଜଳସେଚନର ସୁବିଧା ରହିବ । ୨୪୦ କୋଟି ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଥିବା ଏହି ପ୍ରକଳ୍ପ ମଧ୍ୟରେ ଏକ ବ୍ୟାରେଜ୍, ଟନେଲ୍, ଇନ୍‌ଟେକ୍ ଷ୍ଟ୍ରକ୍‌ଚର, ପେନ୍‌ଷ୍ଟକ୍, ପାଓ୍ୱାର ହାଉସ୍, ଟେଲରେସ୍ ଚ୍ୟାନେଲ୍ ନିର୍ମାଣ ହେବାର ଲକ୍ଷ୍ୟ ରହିଛି । ୨୦୧୬ ମସିହା ମେ ମାସ ସୁଦ୍ଧା ଏହି ପ୍ରକଳ୍ପ କାମ ଶେଷ ହେବ ବୋଲି କୁହାଯାଇଥିଲେ ମଧ୍ୟ ଯେଉଁଭଳି କାମ ହେଉଛି ତାହା ୨୦୨୦ ମସିହା ସୁଦ୍ଧା ଶେଷ ହେବ କି ନାହିଁ କହିହେଉନାହିଁ । ଏଠାରୁ ଉତ୍ପାଦନ ହେବାକୁ ଥିବା ଜଳବିଦ୍ୟୁତ୍‌କୁ କଂପାନୀ ଗ୍ରୀଡ୍‌କୋକୁ ବିକ୍ରି କରିବ ବୋଲି ସରକାରଙ୍କ ସହ ହୋଇଥିବା ଚୁକ୍ତିନାମାରେ ଉଲ୍ଲେଖ ରହିଛି ।

## ହଡଗଡ଼ ଡ୍ୟାମ୍ ପ୍ରକଳ୍ପ

*(Hadagada Dam Project in Salandi)*



ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ଉପରେ ନିର୍ମିତ ହଡଗଡ଼ ଡ୍ୟାମ୍

ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ହାଟଡ଼ିହି ବ୍ଲକ୍‌ରେ ବୈତରଣୀର ପ୍ରମୁଖ ଉପନଦୀ ଶାଳନ୍ଦୀ ଉପରେ ଏହି ଡ୍ୟାମ୍‌ଟି ନିର୍ମିତ ହୋଇଛି । ବୈତରଣୀ ନଦୀ ଅବବାହିକା ଅଞ୍ଚଳରେ ବନ୍ୟା ପ୍ରକୋପକୁ ନିୟନ୍ତ୍ରଣ କରିବା ଏବଂ ଚାଷୀଙ୍କୁ ଜଳସେଚନ ଯୋଗାଇ ଦେବା ଉଦ୍ଦେଶ୍ୟରେ ଏହି ଜଳଭଣ୍ଡାର ନିର୍ମାଣ କରାଯାଇଥିଲା । ୧୯୬୮ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଏହି ହଦଗଡ଼ ଡ୍ୟାମ୍ ପ୍ରକଳ୍ପର ପରିକଳ୍ପନା କରାଯାଇଥିଲା । ଏହି ପ୍ରକଳ୍ପ ମାଧ୍ୟମରେ ଶାଳନ୍ଦୀ ନଦୀର ଜଳକୁ ସଂରକ୍ଷିତ କରାଯାଇ ଭଦ୍ରକ ଓ କେନ୍ଦୁଝର ଜିଲ୍ଲାର ଚାଷଜମିକୁ ଜଳସେଚନ କରାଯାଉଛି ।

## 'କାଂଝାରୀ ଡ୍ୟାମ୍'

*(Kanjhari Dam Project)*

ବୈତରଣୀ ନଦୀର ଅବବାହିକା ଅଞ୍ଚଳରେ ବନ୍ୟା ନିୟନ୍ତ୍ରଣ ଉଦ୍ଦେଶ୍ୟରେ ଏହାର ଅନ୍ୟ ଏକ ପ୍ରମୁଖ ଉପନଦୀ କାଳିଞ୍ଜର (କାନ୍‌ଝାରୀ)ରେ ଏକ ଜଳଭଣ୍ଡାର ନିର୍ମାଣ କରାଯାଇଛି । ହଦଗଡ଼ ଡ୍ୟାମ୍ ପରେପରେ କାଂଝାରୀ ଡ୍ୟାମ୍ କେନ୍ଦୁଝର ଜିଲ୍ଲାର ଅନ୍ୟ ଏକ ପ୍ରମୁଖ ଡ୍ୟାମ୍ ପ୍ରକଳ୍ପ ।

ପବିତ୍ର ଗୋନାସିକା ପୀଠରୁ ବାହାରିଥିବା କାଳିଂଜର (କାଣିଜର/କାନ୍‌ଝାରି) ନଦୀ ଉପରେ କେନ୍ଦୁଝର ସଦର ମହକୁମାଠାରୁ ୧୮ କିଲୋମିଟର ଦୂର ଗୋପାଳପୁର ନିକଟରେ ଦୁଇଟି ପାହାଡ଼



ବୈତରଣୀର ଉପନଦୀ କାନଝାରୀ ନଦୀ ଉପରେ ନିର୍ମିତ
କାନ୍‌ଝାରୀ ଡ୍ୟାମ୍

ମଝିରେ ଏକ ସୁନ୍ଦର ମାଟିବନ୍ଧ ନିର୍ମାଣ କରାଯାଇଛି । ଏହା ହେଉଛି କାନ୍‌ଝାରୀ ଡ୍ୟାମ୍ । ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକାରୁ କାଲିଞ୍ଜର ନଦୀର ଉତ୍ପତ୍ତି ହୋଇଥିବାରୁ ଏହି ନଦୀରେ ସ୍ନାନ କଲେ ବୈତରଣୀର ଅନୁରୂପ ପୁଣ୍ୟଲାଭ ହୋଇଥାଏ ବୋଲି ବିଶ୍ୱାସ ରହିଛି । କାନ୍‌ଝାରୀ ଡ୍ୟାମ୍ ସ୍ଥଳର ଅଳ୍ପ କିଛି ଦୂର ପୂର୍ବରୁ କାଲିଂଜର ନଦୀ ସହିତ ଅନ୍ୟ ଦୁଇଟି ଛୋଟ ନାଳ ପରସ୍ପରକୁ ଭେଟିଛନ୍ତି । ଏହି ତିନୋଟି ନଦୀ ପରସ୍ପରକୁ ଭେଟିଥିବା ସ୍ଥଳକୁ ଗଙ୍ଗା, ଯମୁନା ଓ ସରସ୍ୱତୀର ତ୍ରିବେଣୀ ସଂଗମ ଭାବେ ବର୍ଣ୍ଣନା କରାଯାଇଥାଏ ।

## ବୈତରଣୀ ଜଳ ଉପରେ କଂପାନୀ ଆଖି !

ଆଜି ଦିଲ୍ଲୀରେ ଯମୁନା ନଦୀର ଅବସ୍ଥା ଯାହା କିଏ ନ କହିବ ଆସନ୍ତାକାଲି ଓଡ଼ିଶାର ଗଙ୍ଗା କୁହାଯାଉଥିବା ପୁଣ୍ୟତୋୟା ବୈତରଣୀର ଅବସ୍ଥା ସେଭଳି ହେବ? ସମଗ୍ର ଦିଲ୍ଲୀ ମହାନଗରୀ ସମେତ ଏଠାରେ ଗଢି ଉଠିଥିବା ଶିଳ୍ପାନୁଷ୍ଠାନମାନଙ୍କର ବର୍ଜ୍ୟବସ୍ତୁରେ ପୋତି ହୋଇ ଏକ ନଳା ପାଲଟିଛି କୃଷ୍ଣପ୍ରିୟା ଯମୁନା । ଅତୀତର ଅନେକ ଚିରସ୍ରୋତା ନଦୀ ସମୟ ସୁଅରେ ଆଜି ଛୋଟଛୋଟ ନଳାରେ ପରିଣତ ହୋଇଛନ୍ତି । ବହୁତ ନଈ ଏ ଧରା ପୃଷ୍ଠରୁ ସବୁଦିନ ପାଇଁ ମରିଯାଇଛନ୍ତି । ନଦୀମାନଙ୍କ ଉପରେ ମଣିଷର ଅତ୍ୟାଚାର ବଢିଛି । ଏହି ପ୍ରକ୍ରିୟା ଗତ ଦୁଇ ଦଶନ୍ଧି ମଧ୍ୟରେ ଉତ୍କଟ ହୋଇଛି ।

ଦ୍ରୁତ ଶିଳ୍ପାୟନ ଓ ଅନ୍ଧ ଖଣି ଖନନ ଓଡ଼ିଶାର ଅନେକ ନଦୀ ପ୍ରତି ବିପଦ ସୃଷ୍ଟି କରିଛି । ନଦୀ ବନ୍ଧ ଯୋଜନା ହେଉକି କଳକାରଖାନାର ବର୍ଜ୍ୟବସ୍ତୁ ଯୋଗୁଁ ଏବେ ଅନେକ ନଦୀଙ୍କ ଅବସ୍ଥା ସଂକଟାପନ୍ନ । ସମୟ ସୁଅରେ ଦେଶରୁ ଅନେକ ନଦୀ ସବୁଦିନ ପାଇଁ ମରିହଜି ଗଲେଣି । ଯମୁନା ନଦୀ ହେଉଛି ଏହାର ଏକ ଜ୍ୱଳନ୍ତ ଉଦାହରଣ ।

ଓଡ଼ିଶାରେ ମଧ୍ୟ ଅନେକ ନଦୀମାନଙ୍କର ମଧ୍ୟ ଅପମୃତ୍ୟୁ ଘଟିସାରିଛି । ଭୁବନେଶ୍ୱରର ଗନ୍ଧବତୀ ହେଉ କି କୋରାପୁଟର କୋଲାବ୍, ପୋଡ଼ାଗଡ଼, କପୁର୍, ମୁରାନ୍, ଚବ୍‌ରୀ, ତୁରୀ, ଗୁଣ୍ଟାଟ୍, ଭାସ୍କେଲ୍ ଭଳି ଓଡ଼ିଶାର ଅନେକ ଛୋଟବଡ ନଦୀ ଏବେ ଇତିହାସ ପାଲଟିଛନ୍ତି । ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଭଳି ଚିରସ୍ରୋତା ନଦୀମାନଙ୍କର ଅବସ୍ଥା ସେଭଳି ନ ହେବ କିଏ କହିପାରିବ?

କେନ୍ଦୁଝର ଜିଲ୍ଲାରୁ ନିର୍ଗତ ହୋଇ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ପ୍ରବାହିତ ହୋଇଥିବା ପୁଣ୍ୟତୋୟା ବୈତରଣୀ ନଦୀ ପ୍ରତି ବର୍ତ୍ତମାନ ସବୁଠୁ ଅଧିକ ବିପଦ ସୃଷ୍ଟି ହୋଇଛି । ବୈତରଣୀ ନଦୀ କେନ୍ଦୁଝର ଜିଲ୍ଲାର ଗୋନାସିକାରୁ ବାହାରି ବାଂଶପାଳ, କେନ୍ଦୁଝର ସଦର, ଯୋଡ଼ା, ଝୁମ୍ପୁରା, ଚଂପୁଆ, ସାହାରପଡ଼ା, ସ୍ୱାମ୍‌ପାଟଣା, ଘସିପୁରା, ଆନନ୍ଦପୁର, ହାଟଡ଼ିହି ଆଦି ବ୍ଲକ୍ ଓ ଝାଡ଼ଖଣ୍ଡର ପଶ୍ଚିମ ସିଂହଭୂମି ଜିଲ୍ଲାର କିଛି ଭାଗ ଏବଂ ମୟୂରଭଞ୍ଜ ଜିଲ୍ଲାର ରରୁଆଁ, ଶୁକ୍ଳି, କରଞ୍ଜିଆ, ଠାକୁରମୁଣ୍ଡା ପ୍ରମୁଖ ବ୍ଲକ୍ ଦେଇ

ପ୍ରବାହିତ ହୋଇଛି । ସେହିଭଳି ଯାଜପୁର ଜିଲ୍ଲାର ଯାଜପୁର ସଦର ବ୍ଲକ୍, କୋରେଇ, ଦଶରଥପୁର ବ୍ଲକ୍, ଭଦ୍ରକ ଜିଲ୍ଲାର ଭଣ୍ଡାରୀପୋଖରୀ, ଧାମନଗର, ଚାନ୍ଦବାଲି, ତିହିଡ଼ି ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ଓ ରାଜନଗର ବ୍ଲକ୍ ଦେଇ ବୈତରଣୀ ନଦୀ ପ୍ରବାହିତ ହୋଇଛି ।

ବୈତରଣୀ ନଦୀକୁ କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' ବୋଲି କୁହାଯାଇଥାଏ । ସେହିଭଳି ବୈତରଣୀ ନଦୀ ଯାଜପୁର ଜିଲ୍ଲାର ଆଶୀର୍ବାଦ । ମାତ୍ର ଏହି ନଦୀର ସ୍ୱାସ୍ଥ୍ୟ ଏବେ ବିପନ୍ନ । ଅଧିକାଂଶ ଶିଳ୍ପପତି ଓ କଂପାନୀମାନେ ଏହି ନଦୀର ପାଣିକୁ ବ୍ୟବହାର କରୁଥିବାବେଳେ ଆହୁରି ଅନେକ କଂପାନୀ ଏହାର ଜଳ ନେବା ପାଇଁ ରାଜ୍ୟ ସରକାରଙ୍କ ସହ ଚୁକ୍ତି ସ୍ୱାକ୍ଷରିତ କରିଛନ୍ତି । ଏଭଳି ସ୍ଥଳେ କ'ଣ ହେବ ବୈତରଣୀର ଭାଗ୍ୟ, ତାହା ସମୟ ନିରୂପଣ କରିବ ।

ପୃଥିବୀର ଅଧିକାଂଶ ନଦୀ କୂଳମାନଙ୍କରେ ମଣିଷ ସଭ୍ୟତା ଆରମ୍ଭ ହୋଇଥିଲା । ନଦୀର ଜଳକୁ ଚାଷଜମି ଓ ପାନୀୟ ଜଳ ପାଇଁ ବ୍ୟବହାର କରିବା ଉଦ୍ଦେଶ୍ୟରେ ମଣିଷ ନଦୀକୂଳମାନଙ୍କରେ ପ୍ରଥମେ ବସବାସ କରିବା ଆରମ୍ଭ କରିଥିଲା । ଟାଇଗ୍ରୀସ୍‌ ଇଉଫ୍ରେଟିସ ନଦୀ କୂଳରେ ଗଢି ଉଠିଥିବା ମେସୋପୋଟାମିଆ ସଭ୍ୟତା, ଭାରତର ସିନ୍ଧୁନଦୀ ଉପତ୍ୟକା ସଭ୍ୟତା, ଗଙ୍ଗା ନଦୀ ଉପକୂଳ ସଭ୍ୟତା ଏବଂ ମିଶରର ନୀଳନଦୀ ଉପତ୍ୟକା ସଭ୍ୟତା ଭଳି ଓଡ଼ିଶାର ବୈତରଣୀ ନଦୀ କୂଳରେ 'ବୈତରଣୀ ଉପତ୍ୟକା ସଭ୍ୟତା' ଗଢି ଉଠିଥିଲା । ବୈତରଣୀକୁ ଗଙ୍ଗା ନଦୀଠାରୁ ପୁରାତନ ବୋଲି କୁହାଯାଉଛି । ଏଭଳି ଏକ ପ୍ରାଚୀନ ନଦୀର ଭବିଷ୍ୟକ କ'ଣ ହେବ?

ବୈତରଣୀ ନଦୀର ଜଳ ଉପରେ କଂପାନୀମାନଙ୍କର ଶୋଷଣଖୋର୍ ଆଖି ଏବେ ନୂଆ ବିପଦ ସୃଷ୍ଟି କରିଛି । ପ୍ରଶ୍ନ ଉଠୁଛି, ବୈତରଣୀର ଜଳ ଉପରେ କେଉଁମାନଙ୍କର ଅଧିକାର ରହିଛି? ବୈତରଣୀ ଜଳ ସାଧାରଣ ଲୋକଙ୍କର, ଚାଷୀଙ୍କର, ପଶୁପକ୍ଷୀମାନଙ୍କର ନା କଂପାନୀମାନଙ୍କର? ଏହା ବିତର୍କସାପେକ୍ଷ ।

ବୈତରଣୀ ଓ ଏହାର ଶାଖା ନଦୀ, ଉପ ନଦୀମାନଙ୍କରୁ କେଉଁ କେଉଁ ଶିଳ୍ପସଂସ୍ଥା ଦୈନିକ କେତେ ପରିମାଣର ଜଳ ନିଜସ୍ୱ ବ୍ୟବହାର ନିମନ୍ତେ ଅନୁମତି ପାଇଛନ୍ତି ଏବଂ ଏ ବାବଦରେ ରାଜ୍ୟ ସରକାର ଏହି ଶିଳ୍ପସଂସ୍ଥାମାନଙ୍କଠାରୁ କେତେ ପରିମାଣରେ ରାଜସ୍ୱ ପାଉଛନ୍ତି? ଏମିତି ଏକ ପ୍ରଶ୍ନ ଓଡ଼ିଶା ବିଧାନସଭାର ଜଣେ ତତ୍କାଳୀନ ବିଧାୟକ ବିଧାନସଭା (୨୦୦୯-୨୦୧୪)ରେ ମୁଖ୍ୟମନ୍ତ୍ରୀ (ଜଳସଂପଦ ବିଭାଗର ମନ୍ତ୍ରୀ) ନବୀନ ପଟ୍ଟନାୟକଙ୍କୁ ପ୍ରଶ୍ନ କରିଥିଲେ । ଆଉ ମୁଖ୍ୟମନ୍ତ୍ରୀ ଏହି ପ୍ରଶ୍ନର ଯେଉଁ ଉତ୍ତର ରଖିଥିଲେ ତାହା ବାସ୍ତବରେ ଚିନ୍ତାଜନକ । ବୈତରଣୀ ଓ ଏହାର ଶାଖାନଦୀ, ଉପନଦୀମାନଙ୍କରୁ ମୋଟ ୧୨ଟି ଶିଳ୍ପ ସଂସ୍ଥା ଦୈନିକ ୮୮୦୩୬ କିଲୋଲିଟର ଜଳ ନିଜସ୍ୱ ବ୍ୟବହାର ନିମନ୍ତେ ନେଉଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ବିଧାୟକଙ୍କ ପ୍ରଶ୍ନର ଉତ୍ତର ରଖିଥିଲେ ।

ବିଧାୟକଙ୍କ ଦ୍ୱିତୀୟ ପ୍ରଶ୍ନ ଥିଲା, ବୈତରଣୀ ନଦୀରେ ଜଳର ପରିମାଣ, କୃଷି, ଗୋପାଳନ,

ପାନୀୟ ଜଳ ବ୍ୟବହାର ସଂପର୍କିତ । ଏହାର ଉତ୍ତରରେ ମୁଖ୍ୟମନ୍ତ୍ରୀ ଉଲ୍ଲେଖ କରିଥିଲେ, ବୈତରଣୀ ନଦୀରେ ବାର୍ଷିକ ୭,୨୯୬ ନିୟୁତ ଘନମିଟର ଜଳ ପ୍ରବାହ ହେଉଛି । ଏହା ମଧ୍ୟରୁ ବର୍ତ୍ତମାନ କୃଷି ପାଇଁ ୧୨୦୬ ନିୟୁତ ଘନମିଟର, ପାନୀୟ ଜଳ ପାଇଁ ମାତ୍ର ୧୯ ନିୟୁତ ଘନମିଟର ଓ ଶିଳ୍ପ ନିମନ୍ତେ ୪୩୯ ନିୟୁତ ଘନମିଟର ଜଳ ବ୍ୟବହୃତ ହେଉଛି । ୨୦୫୧ ମସିହା ବେଳକୁ ଏହି ଚାହିଦା ଯଥେଷ୍ଟ ମାତ୍ରାରେ ବୃଦ୍ଧି ପାଇବାର ଯଥେଷ୍ଟ ସମ୍ଭାବନା ରହିଛି । ୨୦୫୧ ମସିହା ବେଳକୁ ବୈତରଣୀ ନଦୀରୁ କୃଷି ପାଇଁ ୨୮୮୯ ନିୟୁତ ଘନମିଟର ଜଳର ଆବଶ୍ୟକତା ପଡ଼ିବାବେଳେ ପାନୀୟ ଜଳ ପାଇଁ ୫୪ ଓ ଶିଳ୍ପ ପାଇଁ ମାତ୍ର ୪୮୩ ନିୟୁତ ଘନମିଟର ଆବଶ୍ୟକ ହେବ ବୋଲି ମୁଖ୍ୟମନ୍ତ୍ରୀ ଦର୍ଶାଇଥିଲେ ।

ବୈତରଣୀର ଜଳ ଉପରେ କାହାର ପ୍ରାଥମିକତା ଅଧିକ । ଚାଷୀର, ପାଣି ପିଇବା ପାଇଁ ସାଧାରଣ ଲୋକଟିର ନା ଶିଳ୍ପପତିର? ଏହାକୁ ନେଇ ଏବେ ଓଡ଼ିଶାରେ ବିତର୍କ ଆରମ୍ଭ ହୋଇଛି । ଅପରପକ୍ଷେ, ବୈତରଣୀ ନଦୀର ଜଳ ସଂପଦର ସୁବିନିଯୋଗ ଓ ସୁପରିଚାଳନା ନିମନ୍ତେ 'ସମନ୍ୱିତ ଜଳ ସଂପଦ ପରିଚାଳନା ବ୍ୟବସ୍ଥା' *(Integrated Water Resources Management System)*ର କାର୍ଯ୍ୟକାରିତା ନେଇ ସରକାରୀସ୍ତରରେ କୌଣସି ଆଗ୍ରହ ଲକ୍ଷ୍ୟ କରାଯାଉନାହିଁ । 'ବୈତରଣୀ ନଦୀ ଅବବାହିକା ସଂଗଠନ' *(Baitaranee River Basin Organisation)* ନିର୍ମାଣ କରାଯିବା ନେଇ ସରକାରଙ୍କ ଆନ୍ତରିକତାରେ ପ୍ରଶ୍ନବାଚୀ ଉଠିଛି ।

ମୁଖ୍ୟମନ୍ତ୍ରୀଙ୍କ ଉତ୍ତର (୨୦୦୯-୨୦୧୪ ବିଧାନସଭା) ଅନୁସାରେ, ରାଜ୍ୟ ସରକାର ଜିନ୍ଦଲ ଷ୍ଟିଲ୍ ଆଣ୍ଡ ପାଓ୍ୱାର୍ ଲିମିଟେଡ୍ (ଜେଏସ୍‌ପିଏଲ୍) କଂପାନୀକୁ ବୈତରଣୀ ନଦୀରୁ ଦୈନିକ ୨୦,୩୮୦ କିଲୋଲିଟର ପାଣି ଯୋଗେଇ ଦେଉଥିବାବେଳେ ବ୍ରାହ୍ମଣୀ ରିଭର ପିଲେଟ୍ ଲିମିଟେଡ୍ (ବିଆର୍‌ପିଏଲ୍)କୁ ଦୈନିକ ୧୧,୪୯୯ କିଲୋଲିଟର ପାଣି, ଏସାର୍ ଷ୍ଟୀଲ୍‌କୁ ଦୈନିକ ୨୮,୭୯୬ କିଲୋଲିଟର ପାଣି ଯୋଗେଇବାକୁ ପ୍ରତିଶ୍ରୁତି ଦେଇଛନ୍ତି । ସେହିଭଳି ରାଜ୍ୟ ସରକାର ବୈତରଣୀର ଶାଖା ନଦୀ ସୁନାନଈରୁ ଶ୍ରୀମେଟାଲିକ୍ ଲିମିଟେଡ କଂପାନୀକୁ ଦୈନିକ ୧୪୯ କିଲୋଲିଟର ପାଣି ଯୋଗେଇ ଦେଉଥିବାବେଳେ ଟାଟା ସ୍ପଞ୍ଜ ଆଇରନ୍ କଂପାନୀକୁ ଦୈନିକ ୯,୮୩୫ କିଲୋଲିଟର ପାଣି ଯୋଗେଇ ଦେଉଛନ୍ତି । ବୈତରଣୀର ଅନ୍ୟ ଏକ ଶାଖା ନଦୀ କୁନ୍ଦୁରୁନଳା (ସୁନାନଈ)ରୁ ରାଜ୍ୟ ସରକାର ଯୋଡ଼ାସ୍ଥିତ ଟାଟା ଷ୍ଟୀଲ୍ (ଟିସ୍କୋ)କୁ ୫,୯୦୯ କିଲୋଲିଟର ପାଣି ଯୋଗେଇ ଦେଉଥିବାବେଳେ ଅନ୍ୟ ଏକ ଶାଖା ନଦୀ ପୁରୁଣାତିହିନାଳରୁ ସରକାର ନୁଆଭାଗ କଟାପାଲି ଆଇରନ୍ ଓର୍ ମାଇନ୍‌ସକୁ ଦୈନିକ ୪୯ କିଲୋଲିଟର ପାଣି ଯୋଗେଇ ଦେଉଛନ୍ତି । ସେହିଭଳି ଓଏମ୍‌ସି ଗନ୍ଧମାର୍ଦ୍ଦନ ମାଇନ୍‌ସକୁ ସରକାର ସୁଇଟ୍ ନଳାରୁ ଦୈନିକ ୧୯୩ କିଲୋଲିଟର, ଜଜାଙ୍ଗସ୍ଥିତ ଏସେଲ୍ ମାଇନିଂକୁ ଜୁରୁଡ଼ିନଳାରୁ ଦୈନିକ ୮୦୨ କିଲୋଲିଟର, କେନ୍ଦୁଝରର ଗୋପାଳପୁରସ୍ଥିତ ବିଲାତି ଓଡ଼ିଶା ଲିଃ-କୁ କାଞ୍ଝାରୀ

ନଦୀରୁ ଦୈନିକ ୨୪ କିଲୋଲିଟର, ବ୍ରାହ୍ମଣୀପାଳସ୍ଥିତ ଟାଟା ଫେରୋ ଆଲଏଜ୍‌କୁ କୁଶେଇ ନଦୀରୁ ଦୈନିକ ୯.୫୯୧ କିଲୋଲିଟର, ସାରାଦା ମାଇନ୍‌ସକୁ ବୈତରଣୀ ନଦୀରୁ ଦୈନିକ ୮୦୭ କିଲୋଲିଟର ପାଣି ଯୋଗେଇ ଦିଆଯାଉଛି ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ଏହି ରିପୋର୍ଟ ୨୦୦୯-୨୦୧୪ ମସିହା ବିଧାନସଭା ସମୟର । ଏହା ପରେ ହୁଏତ ଅନେକ ପରିବର୍ତ୍ତନ ହୋଇସାରିଥିବ ।

ଏହା ବ୍ୟତୀତ ଅନେକ କଂପାନୀ ବେଆଇନ୍ ଭାବେ ନିଜନିଜ କାରଖାନା ପରିସରରେ ଗଭୀର ନଳକୂପ ଖନନ କରି ପ୍ରଚୁର ମାତ୍ରାରେ ଭୂ-ତଳ ଜଳ ବ୍ୟବହାର କରି ଚାଲିଛନ୍ତି । କେନ୍ଦୁଝର ଜିଲ୍ଲାର ଯୋଡ଼ା-ବଡ଼ବିଲ ଅଞ୍ଚଳରେ ଗଢି ଉଠିଥିବା ଶିଳ୍ପକାରଖାନା ଗୁଡ଼ିକ ଯୋଗୁଁ ବୈତରଣୀ ସମେତ କୁନ୍ଦୁରନଳା, ବଳଦା ନଳା, ଦଲ୍‌କି ନାଳ, ଜରିବାର ନଳା, ଖଣ୍ଡା ନଳା ଭଳି ଛୋଟବଡ ଜଳ ଉତ୍ସ ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି । ଏହିସବୁ ଜଳ ଉତ୍ସର ଉପର ମୁଣ୍ଡରେ ଖଣିଖନନ କାର୍ଯ୍ୟ କରୁଥିବା ଟାଟା, ଓଏମସି, ଶ୍ରୀମେଟାଲିକ, ଓଏମ୍‌ଡ଼ିସି, ଜିନ୍ଦଲ, ଏସେଲ୍ ମାଇନିଂ, ଶାରଦା ମାଇନ୍‌ସ, ରୁଙ୍ଗ୍‌ଟା ଓ ଆର.ବି ଦାଶ ଯୋଗୁଁ ବହୁ ଛୋଟଛୋଟ ଜଳ ଉତ୍ସ ପୋତି ହୋଇଗଲାଣି ।

**(ତଥ୍ୟ ସହାୟତା: 'ସମ୍ବାଦ' ବିଶେଷ ନିଉଜ୍ ଷ୍ଟୋରି, ରଂଜନ ପ୍ରଧାନ, ଭୁବନେଶ୍ୱର, ତାରିଖ: ୦୯, ମେ, ୨୦୧୧)**

## ବୈତରଣୀର ଜଳ ସଂରକ୍ଷଣ : ଆବଶ୍ୟକ ଶହଶହ ଛୋଟ ଚେକ୍‌ଡ୍ୟାମ୍

ରାଜ୍ୟର ପ୍ରମୁଖ ପାଞ୍ଚଗୋଟି ଜିଲ୍ଲାର 'ଲାଇଫ୍ ଲାଇନ୍' କୁହାଯାଉଥିବା ବୈତରଣୀ ନଦୀ ଏବେ ସବୁଠୁ ବେଶି ଅସୁରକ୍ଷିତ । ପାଖାପାଖି ୧୫୦ରୁ ଊର୍ଦ୍ଧ୍ୱ ଖଣି ଓ ଶିଳ୍ପ ସଂସ୍ଥା ଏହି ନଈରୁ ପାଣି ନେବା ପାଇଁ ସରକାରଙ୍କ ନିକଟରେ ଗୁହାରୀ କରିଛନ୍ତି । ଏହା ମଧ୍ୟରୁ ଅଧିକାଂଶ କଂପାନୀ ଓ ସରକାରଙ୍କ ମଧ୍ୟରେ ପାଣି ନେବା ନେଇ ଚୁକ୍ତିନାମା ମଧ୍ୟ ସ୍ୱାକ୍ଷରିତ ହୋଇ ସାରିଲାଣି ।

କଂପାନୀମାନେ ଯଦି ନିଜନିଜର ଜଳ ଉତ୍ସ ସୃଷ୍ଟି କରିବା ସହିତ ଭୂ-ତଳ ଜଳସ୍ତରକୁ ବୃଦ୍ଧି କରିବା ପାଇଁ ଉପଯୁକ୍ତ ପଦକ୍ଷେପ ନିଅନ୍ତେ ଏବଂ ବୈତରଣୀରେ ବହୁ ସଂଖ୍ୟାରେ ଛୋଟଛୋଟ ଚେକ୍ ଡ୍ୟାମ୍ ନିର୍ମାଣ ପାଇଁ ଆନ୍ତରିକତା ପ୍ରକଟ କରନ୍ତେ ତେବେ ବୈତରଣୀର ଜଳ ସମସ୍ୟା କିଛି ମାତ୍ରାରେ ଦୂର ହୋଇପାରନ୍ତା । ଜଳ ଅମଳ ପ୍ରକଳ୍ପ ମାଧ୍ୟମରେ ଉନ୍ନତ ଜ୍ଞାନକୌଶଳର ପ୍ରୟୋଗ କରିବା ସହିତ ବୈତରଣୀ ଓ ଏହାର ଉପନଦୀ, ଶାଖାନଦୀମାନଙ୍କରେ କ୍ଷୁଦ୍ର କ୍ଷୁଦ୍ର ଚେକ୍ ଡ୍ୟାମ୍ ନିର୍ମାଣ କରାଯାଇ ପାରିଲେ ବର୍ଷାଦିନର ବଳକା ଜଳକୁ ସଂରକ୍ଷଣ କରାଯାଇପାରନ୍ତା । କଂପାନୀମାନେ ଯଦି ନିଜସ୍ୱ ଜଳଭଣ୍ଡାର ସୃଷ୍ଟି କରି ବର୍ଷା ଜଳକୁ ସଂରକ୍ଷଣ କରିପାରନ୍ତେ ଗ୍ରୀଷ୍ମଦିନେ ଉତ୍କଟ ଜଳାଭାବ ସମୟରେ ଏହାର ଉପଯୁକ୍ତ ବିନିଯୋଗ ହୋଇପାରନ୍ତା । ତେବେ କଂପାନୀମାନେ ଏଭଳି

ସର୍ବହିତକର ପଦକ୍ଷେପ ନେଉନାହାନ୍ତି କାହିଁକି? ଏହା ଏକ ବିରାଟ ପ୍ରଶ୍ନବାଚୀ ।

କଂପାନୀମାନେ ଏଭଳି ଏକ ଚିରସ୍ଥାୟୀ ସମାଧାନ ପନ୍ଥାକୁ ଗ୍ରହଣ ନକରି 'ଫ୍ଲାଏ ବାଏ ନାଇଟ୍ ଅପରେଟର' ଭଳି 'ଲୁଟ. ଚାଲ' ନୀତିକୁ ଆପଣାଉଛନ୍ତି । କେନ୍ଦୁଝର ଜିଲ୍ଲାର ହାରାହାରି ବୃଷ୍ଟିପାତର ପରିମାଣ ୧୫୩୫ ମିଲିମିଟର । ବର୍ଷାଦିନେ ଏହି ସବୁତକ ଜଳ ସମୁଦ୍ରକୁ ଚାଲିଯାଏ । ମାତ୍ର, ଏହାକୁ ଆକଟ କରି ରଖିବାର ଯୋଜନା ଆଜିଯାଏ ନା ସରକାର କିମ୍ବା ଶିଳ୍ପକଂପାନୀ କର୍ତ୍ତୃପକ୍ଷ, କାହାରି ପକ୍ଷରୁ ଉଦ୍ୟମ ହୋଇନାହିଁ । ଯଦି ପ୍ରଶାସନ ପକ୍ଷରୁ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଜଳଉତ୍ସ ଓ ଏହାର ଜଳଧାରଣ କ୍ଷମତା ସଂପର୍କରେ ସର୍ଭେ କରାଯାଇ ବହୁ ସଂଖ୍ୟାରେ ଛୋଟଛୋଟ ଚେକ୍ ଡ୍ୟାମ୍ ନିର୍ମାଣ କରିବାର ଦାୟିତ୍ୱ ଖଣି ଓ ଶିଳ୍ପସଂସ୍ଥାମାନଙ୍କ ହାତରେ ନ୍ୟସ୍ତ କରାଯାଆନ୍ତା ତେବେ ବୈତରଣୀର ପାଣିକୁ ନେଇ ଲାଗିରହିଥିବା ସମସ୍ୟା ଅନେକ ମାତ୍ରାରେ ଦୂର ହୋଇ ପାରନ୍ତା ।

୨୦୧୨ ମସିହାରେ 'ଗ୍ରାଉଣ୍ଡ ଓ୍ୱାଟର ସର୍ଭେ ଆଣ୍ଡ ଇନ୍‌ଭେଷ୍ଟିଗେସନ' (ଜି.ଡବ୍‌ଲ୍ୟୁ.ଏସ୍.ଆଇ) ବିଭାଗ କେନ୍ଦୁଝର ଜିଲ୍ଲାର ସମସ୍ତ ବ୍ଲକ୍‌ରେ ଏକ ସର୍ଭେ କରିଥିଲା । ଜଳର ଖର୍ଚ୍ଚ ଦୃଷ୍ଟିରୁ କେନ୍ଦୁଝର ଜିଲ୍ଲାର ସମସ୍ତ ବ୍ଲକ୍ ନିରାପଦ ଅଛନ୍ତି ବୋଲି ଉକ୍ତ ରିପୋର୍ଟରେ ପ୍ରକାଶ ପାଇଛି । ସାଧାରଣତଃ, ଯେଉଁ ଅଞ୍ଚଳରେ ସଂରକ୍ଷିତ ଥିବା ଭୂ-ତଳ ଜଳର ଶତକଡ଼ା ୭୦ ପ୍ରତିଶତରୁ ଅଧିକ ଖର୍ଚ୍ଚ ହୋଇଥାଏ, ତାହାକୁ **'କ୍ରିଟିକାଲ୍' (ଜଟିଳ)** ଏବଂ ଯେଉଁ ଅଞ୍ଚଳରେ ଶତକଡ଼ା ୭୦ ପ୍ରତିଶତରୁ କମ୍ ବ୍ୟବହାର କରାଯାଇଥାଏ ତାହାକୁ **'ସେଫ୍' (ନିରାପଦ)** ବୋଲି ବିବେଚନା କରାଯାଏ । ତେବେ ଜି.ଡବ୍‌ଲ୍ୟୁ.ଏସ୍.ଆଇ ବିଭାଗ ପକ୍ଷରୁ କେନ୍ଦୁଝର ଜିଲ୍ଲାର ସମସ୍ତ ୧୩ଟି ବ୍ଲକ୍‌ରେ ୭୦ ପ୍ରତିଶତରୁ କମ୍ ହାରରେ ଜଳ ବ୍ୟବହାର କରାଯାଉଛି ବୋଲି ଦର୍ଶାଯାଇଛି । ଏମିତିକି **ଯୋଡ଼ା-ବଡ଼ବିଲ** ଅଞ୍ଚଳରେ ଶତକଡା ୭୦ ପ୍ରତିଶତରୁ କମ୍ ଜଳ ବ୍ୟବହାର କରାଯାଉଛି ବୋଲି ଏହି ରିପୋର୍ଟରେ ଉଲ୍ଲେଖ ରହିଛି । ଏହି ରିପୋର୍ଟ ତ୍ରୁଟିପୂର୍ଣ୍ଣ ଓ ଅବିଶ୍ୱାସଯୋଗ୍ୟ ବୋଲି ଜିଲ୍ଲାର ବିଭିନ୍ନ ବୁଦ୍ଧିଜୀବି ଓ ଛାମୁଆଁ ସଂଗଠନମାନଙ୍କ ପକ୍ଷରୁ ସନ୍ଦେହ ପ୍ରକାଶ ପାଇଥିଲା । ଏହାକୁ ନେଇ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ।

ଏହି ରିପୋର୍ଟ ଅନୁସାରେ, ଆନନ୍ଦପୁର ବ୍ଲକ୍‌ରେ ଶତକଡ଼ା ୪୫ ପ୍ରତିଶତ ଭୂ-ତଳ ଜଳ ବ୍ୟବହାର କରାଯାଉଥିବାବେଳେ ବାଂଶପାଳ ବ୍ଲକ୍‌ରେ ସର୍ବନିମ୍ନ ୧୧ ପ୍ରତିଶତ, ଚଂପୁଆ ବ୍ଲକ୍‌ରେ ୪୧ ପ୍ରତିଶତ, ଘସିପରାରେ ୨୭ ପ୍ରତିଶତ, ହରିଚନ୍ଦନପୁରରେ ୧୬ ପ୍ରତିଶତ, ହାଟଡିହିରେ ୩୭, ଝୁଂପୁରାରେ ୨୯, **ଯୋଡ଼ାରେ ୬୩**, କେନ୍ଦୁଝର ସଦରରେ ୨୮, ପାଟଣାରେ ୩୦, ସାହାରପଡ଼ାରେ ୨୨ ଓ ତେଲକୋଇ ବ୍ଲକ୍‌ରେ ୧୨ ପ୍ରତିଶତ ଭୂ-ତଳ ଜଳ ବ୍ୟବହାର କରାଯାଉଛି । ଏହି ରିପୋର୍ଟର ବିଶ୍ୱସନୀୟତା ନେଇ ସେତେବେଳେ କେନ୍ଦୁଝର ଜିଲ୍ଲାର ବିଭିନ୍ନ ମହଲରେ ଝଡ଼ ସୃଷ୍ଟି ହୋଇଥିଲା ।

କେନ୍ଦୁଝର ଜିଲ୍ଲାର କେବଳ ଯୋଡ଼ା ବ୍ଲକ୍‌ରେ ପାଖାପାଖି ୧୦୦ରୁ ଊର୍ଦ୍ଧ୍ୱ ଲୁହା କାରଖାନା ଓ

୧୦୦ରୁ ଊର୍ଦ୍ଧ୍ୱ ଖଣି କାର୍ଯ୍ୟ କରୁଛି । ଜିନ୍ଦଲ, ଏସେଲ୍ ମାଇନିଂ, ଟାଟା ଷ୍ଟୀଲ୍, ରୁଙ୍ଗ୍‌ଟା, ଆର୍ଯ୍ୟା ଷ୍ଟୀଲ୍ ଭଳି ବହୁ ବଡ଼ବଡ଼ କଂପାନୀ ଏଠାରେ ବହୁ ପରିମାଣରେ ଭୂ-ତଳ ଜଳ ବ୍ୟବହାର କରୁଛନ୍ତି । ତେବେ ଏମାନଙ୍କ ମଧ୍ୟରୁ କୌଣସି ଗୋଟିଏ ହେଲେ କଂପାନୀ ନିଜସ୍ୱ ଜଳ ଉତ୍ସ ସୃଷ୍ଟି କରିବାରେ ଉଦ୍ୟମ କରି ନାହାନ୍ତି । ଏହା ହିଁ ଚିନ୍ତାର କାରଣ ।

**(ତଥ୍ୟ ସହାୟତା: 'ସମ୍ବାଦ' ବିଶେଷ ନିଉଜ୍ ଷ୍ଟୋରି, ରଂଜନ ପ୍ରଧାନ, ଭୁବନେଶ୍ୱର, ତାରିଖ: ୧୧, ସେପ୍‌ଟେମ୍ବର, ୨୦୧୨)**

## ତ୍ରିକୋଣଭୂମି ଅଞ୍ଚଳରେ ବୈତରଣୀର ପ୍ରମୁଖ ଶାଖା ନଦୀ ଓ ଉପନଦୀ

*(Branch Rivers and Tributaries in Baitaranee Delta Area)*

ଭଦ୍ରକ ଜିଲ୍ଲାର ଭଣ୍ଡାରିପୋଖରୀ, ଧାମନଗର, ଚାନ୍ଦବାଲି ଓ ତିହିଡ଼ି, ଯାଜପୁର ଜିଲ୍ଲାର ଯାଜପୁର, କୋରେଇ ଓ ଦଶରଥପୁର ଏବଂ କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା, ରାଜନଗର ଅଞ୍ଚଳରେ ବଙ୍ଗୋପସାଗର ମୁହାଁଣରେ ବୈତରଣୀ ଓ ବ୍ରାହ୍ମଣୀର ଏକ ବିଶାଳ ତ୍ରିକୋଣଭୂମି ଅଞ୍ଚଳ ସୃଷ୍ଟି ହୋଇଛି । ଏହି ଅଞ୍ଚଳରେ ବୈତରଣୀ ଓ ବ୍ରାହ୍ମଣୀର ଅନେକ ଶାଖା ନଦୀ ଜାଲ ଭଳି ବିଛେଇ ହୋଇ ରହିଛି । ଅନେକ ନଦୀ ମଧ୍ୟ ବୈତରଣୀରେ ମିଶିଛନ୍ତି । ବୈତରଣୀର ପ୍ରମୁଖ **ଉପନଦୀ ମନ୍ତେଇ** ଠିକ୍ ଧାମରାର ଅଳ୍ପ ଦୂର ପୂର୍ବରୁ ବୈତରଣୀ ସହ ମିଶିଛି । ବୈତରଣୀ ନଦୀର ନିମ୍ନ ଅବବାହିକା ତ୍ରିକୋଣଭୂମି ଅଞ୍ଚଳରେ ବହୁ ଶାଖା ନଦୀ ଉପୃତ୍ତିଲାଭ କରିଛି । ବୈତରଣୀର ପ୍ରମୁଖ ଶାଖା ନଦୀମାନେ ହେଲେ-

୧· ବୁଢା
୨· କାଣୀ
୩· କଣ୍ଡିଆ
୪· ଗେଙ୍ଗୁଟି
୫· ରେବ
୬· କପାଳି
୭· କୋଚିଳା
୮· ଖୋଳା (କଣ୍ଟିଘାଇ)
୯· କାଳନ୍ଦୀ
୧୦· ପଙ୍କି

**ବୁଢା ନଦୀ**ଟି ବୈତରଣୀ ନଦୀର ଏକ ପ୍ରମୁଖ ଶାଖା ନଦୀ । ଏହା ବୈତରଣୀର ଆଖୁଆପଦା-ଷଠିପୁର ନିକଟରୁ ବାହାରି ଯାଜପୁର ବ୍ଲକ୍‌ର କିଛି ଅଂଶ ଦେଇ ଅତିକ୍ରମ କରିବା ପରେ କୁଆଖିଆ ନିକଟରେ ବ୍ରାହ୍ମଣୀର ଶାଖା ନଦୀ ଖରସ୍ରୋତା ସହିତ ମିଳିତ ହୋଇଛି ।

**ପଙ୍କି** ନଦୀଟି ଯାଜପୁର ଜିଲ୍ଲାର ଦଶରଥପୁର ନିକଟରୁ ବୈତରଣୀରୁ ଅଲଗା ହୋଇ ପୁଣି କୟାଁଗୋଲା ନିକଟରେ ବୈତରଣୀ ସହ ମିଳିତ ହୋଇଛି ।

**ଗେଙ୍ଗୁଟି** ନଦୀ ମଧ୍ୟ ବୈତରଣୀର ଅନ୍ୟତମ ପ୍ରମୁଖ ଶାଖା ନଦୀ । ଯାଜପୁର ସହରର ଦଶାଶ୍ୱମେଧ ଘାଟ ନିକଟରେ ବୈତରଣୀ ଦୁଇ ଭାଗରେ ବିଭକ୍ତ ହୋଇଛି । ଏହାର ଗୋଟିଏ ଶାଖା ଗେଙ୍ଗୁଟି ନାମ ଧାରଣ କରି ଭଦ୍ରକ ଜିଲ୍ଲାର ଭଣ୍ଡାରିପୋଖରୀ ଓ ଧାମନଗର ବ୍ଲକ୍ ଦେଇ ପ୍ରବାହିତ ହୋଇଛି । ଏହା ଧାମନଗର ବ୍ଲକ୍‌ର ଦଶନ୍ଧିପୁର-ରାମରାକୁଳ ନିକଟରେ ପୁନର୍ବାର ବୈତରଣୀ ନଦୀରେ ମିଳିତ ହୋଇଛି ।

**ଖୋଳା (କଣ୍ଟିଘାଇ)** ବୈତରଣୀର ଅନ୍ୟ ଏକ ଶାଖା ନଦୀ । ଏହା ବୈତରଣୀର ଷୋଳମପୁର ଉପରମୁଣ୍ଡରୁ ବାହାରି ଭଣ୍ଡାରିପୋଖରୀ ବ୍ଲକ୍‌ର କିଛି ଅଂଶ ପ୍ରବାହିତ ହୋଇ ଗେଙ୍ଗୁଟି ନଦୀରେ ମିଳିତ ହୋଇଛି ।

**ଜାଳନ୍ଧୀ** ନଦୀଟି ମଧ୍ୟ ବୈତରଣୀର ଆଉ ଏକ ଶାଖା ନଦୀ । ଭଦ୍ରକ ଜିଲ୍ଲାର ଧାମନଗର ବ୍ଲକ୍‌ରେ ଏହି ନଦୀଟି ପ୍ରବାହିତ ହୋଇଛି । ଏହି ଶାଖା ନଦୀଟି ଧାମନଗର ବ୍ଲକ୍‌ର ମଗୁଶୁର ମୁହଁ (ମଣିନାଥପୁର) ଗ୍ରାମ ନିକଟରୁ ବୈତରଣୀ ନଦୀରୁ ଅଲଗା ହୋଇ ଧାମନଗର ବ୍ଲକ୍ ଦେଇ ପ୍ରବାହିତ ହେବାପରେ ଧାମନଗର ବ୍ଲକ୍‌ର ସୋହଡ଼ା ନିକଟରେ ବୈତରଣୀ ନଦୀ ସହିତ ପୁନର୍ବାର ମିଳିତ ହୋଇଛି ।

ଧାମନଗର ବ୍ଲକ୍ ଅନ୍ତର୍ଗତ ଅର୍ଜୁନପୁର ପଞ୍ଚାୟତ ଦେଇ ବୈତରଣୀ ନଦୀରୁ ଶାଖା ନଦୀ **'କୋଚିଳା'** ପ୍ରବାହିତ ହୋଇ କିଛିବାଟ ଆଗରେ ବୈତରଣୀ ସହ ମିଶିଛି ।



ଏକାଦଶ ପରିଚ୍ଛେଦ

# ବୈତରଣୀ ଅବବାହିକାରେ ଶିଳ୍ପ ପ୍ରଦୂଷଣ ଓ ଜନ ଆନ୍ଦୋଳନ

## ଖଣିଜ ସଂପଦଭରା ବୈତରଣୀର ଉପର ଅବବାହିକା

*(Rich mineral diposite in the upper Baitaranee Basin)*

ସଂଭବତ ବୈତରଣୀ ହେଉଛି ରାଜ୍ୟର ଏକମାତ୍ର ନଦୀ, ଯାହାର ଉପରମୁଣ୍ଡରେ ରେକର୍ଡ଼ ମାତ୍ରାରେ ଖଣିଜ ସଂପଦ ଗଚ୍ଛିତ ରହିଛି । ବୈତରଣୀର ଉପରମୁଣ୍ଡରେ କେନ୍ଦୁଝର ଜିଲ୍ଲାର ଯୋଡ଼ା ଖଣିକ୍ଷେତ୍ରର ଠାକୁରାଣୀ, କାଶିଆ, ରୋଇଡ଼ା, ଭଦ୍ରାସାହି, ଚୋରମାଲ୍‌ଦା, ବଡ଼ବିଲ, ସିଦ୍ଧମଠ, ଖଣ୍ଡବନ୍ଧ, ବଲାଣି, ଲହଣ୍ଡା, କଟାସାହି, ଉଲିବୁରୁ, ଗୁଗୁଡ଼ି, ଗୁଆଲି, ସିଲିଯୋରା, ଦୁବୁନା, ବାଂଶପାଣି, କଳାପର୍ବତ, କାଳିମାଟି, ଜିଲିଂଲଙ୍ଗଲଟା, କେନ୍ଦୁଝର ସଦର ଖଣି ସର୍କଲର ଗନ୍ଧମାର୍ଦ୍ଦନ, ଖଣ୍ଡାଧାରା, ମାଙ୍କଡ଼ନଚା, ମାଲାଂଟୋଲି ଓ ସୁନ୍ଦରଗଡ଼ ଜିଲ୍ଲାର କୋଇଡ଼ା ଖଣିମଣ୍ଡଳ ସମେତ ଝାଡ଼ଖଣ୍ଡରେ ପର୍ଯ୍ୟାପ୍ତ ଖଣିଜ ସଂପଦ ରହିଛି । ଏହି ବିପୁଳ ଖଣିଜ ସଂପଦ ହିଁ ବୈତରଣୀ ନଦୀ ପାଇଁ ଅଭିଶାପ ପାଲଟିଛି ।



ବୈତରଣୀ ଉପର ଅବବାହିକାର ଖଣିଜ ସଂପଦ: ଲୌହପଥର



**ବୈତରଣୀ ଉପର ଅବବାହିକାର ଖଣିଜ ସଂପଦ: ମାଙ୍ଗାନିଜ୍**

ବୈତରଣୀ ନଦୀର ଉପର ଅବବାହିକା ଅଞ୍ଚଳ ଭାବେ ପରିଚିତ କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡଟି ଗଚ୍ଛିତ ଖଣିଜ ସଂପଦ ପାଇଁ ପ୍ରସିଦ୍ଧିଲାଭ କରିଛି । ଜିଲ୍ଲାର ଅଧିକାଂଶ ଅଞ୍ଚଳ ପାହାଡ଼ ଓ ଜଙ୍ଗଲରେ ପରିପୂର୍ଣ୍ଣ । ଜିଲ୍ଲାର ଉଚ୍ଚତମ ପର୍ବତମାନଙ୍କ ମଧ୍ୟରେ ଗନ୍ଧମାର୍ଦ୍ଦନ (୧୦୭୨ ମିଟର), ମାଙ୍କଡ଼ନଚା (୧୧୧୭ ମିଟର), ଗୋନାସିକା (୯୮୧ ମିଟର) ଏବଂ ଠାକୁରାଣୀ (୯୧୮ ମିଟର) ଆଦି ପର୍ବତର ନାମ ଉଲ୍ଲେଖଯୋଗ୍ୟ । ଜିଲ୍ଲାର ହାରାହାରି ସର୍ବୋଚ୍ଚ ତାପମାତ୍ରା ୪୦ ଡିଗ୍ରୀ ସେଣ୍ଟିଗ୍ରେଡ୍ ହୋଇଥିବାବେଳେ ସର୍ବନିମ୍ନ ତାପମାତ୍ରା ୧୩ ଡିଗ୍ରୀ ସେଣ୍ଟିଗ୍ରେଡ । ଜିଲ୍ଲାର ହାରାହାରି ବାର୍ଷିକ ବୃଷ୍ଟିପାତ ୧୫୩୪.୫ ମିଲିମିଟର । ଏହି ଜିଲ୍ଲାର ସର୍ବପୁରାତନ ରୂପାନ୍ତରିତ ଶିଳା (୩୨୦୦ ନିୟୁତ ବର୍ଷ) ଚଂପୁଆ ଅଞ୍ଚଳରେ ଦେଖିବାକୁ ମିଳେ । ଏହାଛଡା ଗ୍ରାନାଇଟ୍ ଭଳି ଆଗ୍ନେୟ ଶିଳା ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ପରିବ୍ୟାପ୍ତ । କାଳକ୍ରମେ ରାସାୟନିକ ପ୍ରକ୍ରିୟା ଓ ଅନ୍ୟାନ୍ୟ ପ୍ରାକୃତିକ ପ୍ରଭାବରେ ଯଥାକ୍ରମେ ଲୁହା ଓ ଅନ୍ୟାନ୍ୟ ଖଣିଜ ଦ୍ରବ୍ୟ ଏବଂ କୋହ୍ଲାନ୍ ସମୟର ସ୍ତରୀଭୂତ ପ୍ରସ୍ତରଗୁଡ଼ିକ ସୃଷ୍ଟି ହୋଇଛି । ସୌରତାପ ଓ ବୃଷ୍ଟିପାତର ପ୍ରଭାବରେ ଶିଳାର ଅବକ୍ଷୟ ଘଟି ମାଙ୍କଡ଼ା ପଥର ଓ ବିଭିନ୍ନ ପ୍ରକାର ମୃତ୍ତିକାର ସୃଷ୍ଟି ହୋଇଛି ।

ଖଣିଜ ପଦାର୍ଥର ଅନୁସନ୍ଧାନ, ବିକାଶ, ସଂରକ୍ଷଣ ଓ ରାଜସ୍ୱ ଆୟ ବୃଦ୍ଧି ପାଇଁ କେନ୍ଦୁଝର ଜିଲ୍ଲା ସଦର ମହକୁମାରେ ଭୂ-ତତ୍ତ୍ୱ ଯୁଗ୍ମ ନିର୍ଦ୍ଦେଶକ ଓ ଖଣି ଅଧିକାରୀଙ୍କ କାର୍ଯ୍ୟାଳୟ ଏବଂ ଯୋଡ଼ାଠାରେ ଖଣି ଉପନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ ରହିଛି । ଏହି ଜିଲ୍ଲାର ମାଟି ତଳେ ଲୁହାପଥର, ମାଂଗାନିଜ୍ ଓ

କ୍ରୋମାଇଟ୍ ବ୍ୟତୀତ ପାଇରୋଫିଲାଇଟ୍, ସୋପ୍ ଷ୍ଟୋନ୍, କ୍ୱାର୍ଜ, କ୍ୱାର୍ଜାଇଟ୍, ବକ୍ସାଇଟ୍, ଭାନାଡିୟମ୍, ନିକେଲ୍, କୋବାଲ୍ଟ, ଚିନାମାଟି, ଡୋଲାମାଇଟ୍, ଚୂନପଥର, ସୁନା, ପ୍ଲାଟିନମ୍, ଗ୍ରାନାଇଟ୍, ମାଗ୍ନେସାଇଟ୍, ସର୍ପେଣ୍ଟିନାଇଟ୍ ଭଳି ଖଣିଜ ପଦାର୍ଥ ଗଚ୍ଛିତ ରହିଛି ।

**ଲୁହାପଥର:** ସମଗ୍ର ଓଡ଼ିଶାରେ ମୋଟ ୩,୧୨୦ ନିୟୁତ ଟନ୍ ଲୁହାପଥର ଗଚ୍ଛିତ ଥିବାବେଳେ କେବଳ କେନ୍ଦୁଝର ଜିଲ୍ଲାରେ ୨,୩୭୧ ନିୟୁତ୍ ଟନ୍ (୮୨ ପ୍ରତିଶତ) ଗଚ୍ଛିତ ରହିଛି । ସମଗ୍ର ଭାରତରେ ଏହି ଲୌହକ୍ଷେତ୍ର ସର୍ବବୃହତ୍ କ୍ଷେତ୍ର ଭାବେ ବିବେଚିତ ହୋଇଥାଏ । ଜିଲ୍ଲାର ବଡ଼ବିଲ ଉପତ୍ୟକାର ପ୍ରାୟ ୫୩ ବର୍ଗ କିଲୋମିଟର ଅଞ୍ଚଳରେ ଲୁହାପଥର ବିସ୍ତୃତ ହୋଇ ରହିଛି । ସିଂହଭୂମ୍-କେନ୍ଦୁଝର-ବଣେଇ ଲୌହଅୟସ୍କ ବେଲ୍ଟ ଏହି ଅଞ୍ଚଳ ଦେଇ ଅତିକ୍ରମ କରିଛି । ଓଡ଼ିଶା-ଝାଡ଼ଖଣ୍ଡର ପ୍ରାୟ ୬୦ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ଲୌହଅୟସ୍କ ବେଲ୍ଟର ପ୍ରାୟ ୧୪·୫ କିଲୋମିଟର କେନ୍ଦୁଝର ଜିଲ୍ଲା ମଧ୍ୟରେ ରହିଛି । କେନ୍ଦୁଝର ଜିଲ୍ଲାର ଠାକୁରାଣୀ, ବଲାଣୀ, ଯୋଡ଼ା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାଶିଆ-ବରପଦା, ଜିଲିଂ ଲଙ୍ଗଲଟା, ଜଜାଙ୍ଗ ମାଲାଂଟୋଲି, ମାଙ୍କଡ଼ନଚା, ଗନ୍ଧମାର୍ଦ୍ଦନ ଓ ଦୈତାରୀଠାରେ ଉଚ୍ଚମାନର ଲୁହାପଥର ଗଚ୍ଛିତ ରହିଛି ।

**ମାଙ୍ଗାନିଜ ପଥର:** କେନ୍ଦୁଝର ଜିଲ୍ଲାରେ ମୋଟ ୨୮·୪ ନିୟୁତ ଟନ୍ ମାଙ୍ଗାନିଜ ପଥର ଗଚ୍ଛିତ ଥିବାର ଭୂ-ତତ୍ତ୍ୱ ବିଭାଗ ସୂତ୍ରରୁ ଜଣାପଡିଛି । ଏହା ସମଗ୍ର ଓଡ଼ିଶାର ମୋଟ ଗଚ୍ଛିତ ସଂପଦର ପ୍ରାୟ ୫୮ ଭାଗ ଅଟେ । ଏହି ଖଣିଜ ପଥର କେନ୍ଦୁଝର ଜିଲ୍ଲାର ଗୁରୁଡା, ରୋଇଡା, ସିଦ୍ଧମଠ, ଯୋଡା, ହରମଠ, ଗୁଆଲି, ବାମେବାରୀ ଆଦି ସ୍ଥାନରେ ଗଛିତ ରହିଛି ।

**କ୍ରୋମିୟମ୍ ପଥର:** କେନ୍ଦୁଝର ଜିଲ୍ଲାରେ ମୋଟ ୮·୨ ନିୟୁତ ଟନ୍ ଉଚ୍ଚମାନର କ୍ରୋମିୟମ ପଥର ଗଛିତ ରହିଛି । ଏହି ଜିଲ୍ଲାର ହାଟଡ଼ିହି ବ୍ଲକ୍ ଅନ୍ତର୍ଗତ ନୂଆସାହି, ବଉଳାଠାରେ କ୍ରୋମିୟମ୍ ପଥର ସର୍ବାଧିକ ପରିମାଣରେ ଗଚ୍ଛିତ ରହିଛି ।

**ବକ୍ସାଇଟ୍:** କେନ୍ଦୁଝର ଜିଲ୍ଲାରେ ହାରାହାରି ୧୦ ନିୟୁତ ଟନ୍ ଆଲୁମିନିୟମ ବା ବକ୍ସାଇଟ୍ ପଥର ଗଛିତ ଅଛି । କେନ୍ଦୁଝରଗଡ଼ଠାରୁ ୩ କିଲୋମିଟର ଦୂର ୬ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଅବସ୍ଥିତ କୁଅଁରର ଢୋଲକଟା ପାହାଡ଼ (ବାଂଶପାଳ ବ୍ଲକ୍)ରେ ଆଲୁମିନିୟମ୍ ଗଛିତ ଥିବାର ୧୯୭୪-୭୫ ମସିହାରେ ହୋଇଥିବା ସର୍ଭେରୁ ଜଣାପଡିଛି ।

**ପାଇରୋଫିଲାଇଟ:** କେନ୍ଦୁଝର ଜିଲ୍ଲାରେ ପ୍ରାୟ ୯୦ କିଲୋମିଟର ଦୈର୍ଘ୍ୟବିଶିଷ୍ଟ ଅଞ୍ଚଳରେ ବିପୁଳ ପରିମାଣରେ ପାଇରୋଫିଲାଇଟ୍ ଖଣିଜ ପଦାର୍ଥ ଗଚ୍ଛିତ ରହିଛି । ଏହି କ୍ଷେତ୍ର ଦକ୍ଷିଣରେ ରେବଣା-ପଳାସପାଳଠାରୁ ଆରମ୍ଭ ହୋଇ ଉତ୍ତର ଦିଗରେ ଶିମୁଳି-ଯୋଡ଼ା ପର୍ଯ୍ୟନ୍ତ ପରିବ୍ୟାପ୍ତ ।କେନ୍ଦୁଝର ଜିଲ୍ଲାର ମଦରଂଗାଯୋଡି, ନିତିଗୋଠା, ରୋଡୁଆଁ, ରଂପାକୋଟ, ଆମଯୋର, ଉକ୍‌ଟାବେଡା, ଧୋବାକୁଚୁଡା, ବଳଭଦ୍ରପୁର, ବାଲିଆଡିହି, ମାଛକାନ୍ଦଣା, ତାଳିମପୁର, ବୁରିଆଡିହି,

ସିଛମଠ, ସରସକୋଷି, ବଲିଆଣିପୋଷି ଏବଂ ରେବଣା-ପଳାସପାଳ ଆଦି ସ୍ଥାନରେ ଏହି ପଥର ଗଚ୍ଛିତ ରହିଛି । ଏହି ପଥର ରବର, ରଂଗ, ବସ୍ତ୍ର ଶିଳ୍ପ, ସାବୁନ୍ ଓ କାଗଜ ଶିଳ୍ପରେ ବ୍ୟବହୃତ ହୋଇଥାଏ । ଜିଲ୍ଲାରେ ମୋଟ ୮·୬ ନିୟୁତ ଟନ୍ ପାଇରୋଫିଲାଇଟ୍ ଗଚ୍ଛିତ ଥିବାର ଜଣାଯାଏ ।

**କ୍ୱାର୍ଜ:** କେନ୍ଦୁଝର ଜିଲ୍ଲାର ନର୍ଦ୍ଧା-ବଡ଼ବିଲ, ଗୋଲାଗାଡିଆ, ବରପଦା, ବୋରାଙ୍ଗ, ପାହାଡପୁର ଓ ପର୍ସଳା ଅଞ୍ଚଳରେ ଶତକଡା ୯୦ ଭାଗରୁ ଉଚ୍ଚ ମାନର ସିଲିକା ଏହି କ୍ୱାର୍ଜ ପଥରରେ ଥିବା କଥା ପ୍ରାଥମିକ ଅନୁସନ୍ଧାନରୁ ଜଣାପଡିଛି । ଏହା କାଚ, ଲୌହ ଓ ଇସ୍ପାତ ଉତ୍ପାଦନରେ ସହାୟକ ହୋଇଥାଏ ।

**ଖଡ଼ିପଥର (ସୋପ୍ ଷ୍ଟୋନ୍):** ଏହା କେନ୍ଦୁଝରଗଡ଼ର ଦକ୍ଷିଣ ଓ ପଶ୍ଚିମ ଦିଗରେ ରହିଥିବା ପାହାଡର ଉତ୍ତର ପାର୍ଶ୍ୱ ପାଦଦେଶରେ ମିଳେ । ଏହା ବ୍ୟତୀତ ଜିଲ୍ଲାର ଧକୋଠା, ତାଳିମପୁର, ଫୁଲଝର ଏବଂ ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ଏହି ପଥର ଗଚ୍ଛିତ ଅଛି । ମୂର୍ତ୍ତି ଓ ଘରୋଇ ବ୍ୟବହାର୍ଯ୍ୟ ଜିନିଷର ତିଆରି ବ୍ୟତୀତ ଏହା ରବର ଓ କାଗଜ ଶିଳ୍ପରେ ବ୍ୟବହୃତ ହୋଇଥାଏ ।

**ଭାନାଡ଼ିୟମ୍:** କେନ୍ଦୁଝର ଜିଲ୍ଲାର ନୂଆସାହିଠାରେ ହାରାହାରି ୩ ନିୟୁତ ଟନ୍ ଭାନାଡ଼ିୟମ୍ ମିଶ୍ରିତ ମାଗ୍ନେଟାଇଟ୍ ପଥର ଥିବାର ସର୍ଭେରୁ ଜଣାପଡିଛି । ଏହା କୋଇଲା ବିଶୋଧନ ଏବଂ ଭାନାଡିୟମ୍ ଧାତୁ ନିଷ୍କାସନ ପାଇଁ ବ୍ୟବହୃତ ହୋଇଥାଏ ।

**ସୁନା:** ତେଲକୋଇ ବ୍ଲକ୍‌ର ସଲେଇକେନା, କରଦାଙ୍ଗି ଏବଂ ବାଂଶପାଳ ବ୍ଲକର ଜଳଡ଼ିଆ-ଗୋପୁର, ଗଜିପୁର, ଶଙ୍କରାଖୋଲରେ ସୁନା ଗଚ୍ଛିତ ଥିବାର ସର୍ଭେରୁ ଜଣାପଡିଛି । ଏହି ଅଞ୍ଚଳରେ ସୁନାର ପରିମାଣ ଟନ୍ ପ୍ରତି ୦·୧ରୁ ୨·୦ ଗ୍ରାମ୍ ରହିଥିବା କଥା ପ୍ରାଥମିକ ପରୀକ୍ଷାରୁ ଜଣାପଡିଛି । ତେବେ ଖଣି ଓ ଭୂ-ତତ୍ତ୍ୱ ନିର୍ଦ୍ଦେଶାଳୟ ପକ୍ଷରୁ ତେଲକୋଇ ଓ ବାଂଶପାଳ ଅଞ୍ଚଳରେ ସୁନାର ଉପସ୍ଥିତ ନେଇ ସର୍ଭେ ଓ ଅନୁସନ୍ଧାନ ଚାଲୁ ରହିଛି ।

**ଚୂନ ପଥର ଓ ଡୋଲାମାଇଟ୍:** କେନ୍ଦୁଝର ଜିଲ୍ଲାର କୋଇଡା-ନୂଆମୁଣ୍ଡି, ଭଦ୍ରାସାହି ନିକଟସ୍ଥ କାଶିଆ ଅଞ୍ଚଳରେ ୧୫୦ ମିଟର ଲମ୍ବ ବିଶିଷ୍ଟ ଡୋଲାମାଇଟ୍ ଓ ଚୂନପଥର ଖଣି ଅବସ୍ଥିତ । ଡୋଲାମାଇଟ୍ ଇସ୍ପାତ ଉତ୍ପାଦନରେ ବ୍ୟବହୃତ ହୋଇଥାଏ ।

**ଡେକୋରେଟିଭ୍ ଷ୍ଟୋନ୍:** କେନ୍ଦୁଝର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବହୁ ପରିମାଣରେ ଡେକୋରିଟିଭ୍ ଷ୍ଟୋନ୍ ମିଳିଥାଏ । ବିଶେଷକରି ତେଲକୋଇ ବ୍ଲକ୍‌ର କାଳିଆହତା ଓ ଢେଙ୍କାନାଳ ଜିଲ୍ଲାର ସୀମାନ୍ତବର୍ତୀ ଇଲାକାରେ ବହୁ ମାତ୍ରାରେ ଏହି ଷ୍ଟୋନ୍ ମିଳିଥାଏ । ଏହା ବ୍ୟତୀତ ବୈତରଣୀ ନଦୀ ପଠାରେ ଏହି ପ୍ରକାର ପଥର ବେଶି ମାତ୍ରାରେ ମିଳିଥାଏ ।

**ପ୍ଲାଟିନମ୍:** କେନ୍ଦୁଝର ଜିଲ୍ଲାରେ ୧୮·୭ ନିୟୁତ ଟନ୍ ପ୍ଲାଟିନମ୍ ଗଚ୍ଛିତ ରହିଛି । ଜିଲ୍ଲାର

ହାଟଡିହି ବ୍ଲକ୍‌ର ବଉଳା-ନୂଆସାହି ଅଞ୍ଚଳର କ୍ଷାରୀୟରୁ ଅତି କ୍ଷାରୀୟ ଶିଳାରେ କ୍ରୋମାଇଟ୍ ଖଣିଜ ସମେତ ବହୁ ପରିମାଣର ପ୍ଲାଟିନମ୍ ଧାତୁ ରହିଥିବା ଜଣାପଡିଛି ।

**ଗ୍ରାନାଇଟ୍:** କେନ୍ଦୁଝର ଜିଲ୍ଲାରେ ପ୍ରାୟ ୧୯ ନିୟୁତ ଘନମିଟର ପରିମାଣର କଳାମୁଗୁନି (ଗ୍ରାନାଇଟ) ପଥର ରହିଛି । ଜିଲ୍ଲାରେ ବିଭିନ୍ନ ରଂଗର ଗ୍ରାନାଇଟ୍ ଯଥା- କଳା, କୃଷ୍ଣ- ସବୁଜ, ଧୂସର, ଧଳା ରଂଗର ଗ୍ରାନାଇଟ୍ ପଥର ଦେଖିବାକୁ ମିଳେ । ଜିଲ୍ଲାର ସଜନାପାଳ, ସାନ୍ତରାଗାଡ଼ିଆ, ସସଙ୍ଗଦା, ଚୁରଡିଆ, ବୀରକେରା, ଚଂପାଝର, କଇପୁର, ନଇଗଡ଼, ଢେଙ୍କିକୋଟ, ପିପିଳିଆ, ପାଟଣା, ନୁଗୁରିପଶି, ରାଇବଣ, ତାବରଚୁଆ, ଚଂପୁଆ ଆଦି ଅଞ୍ଚଳରେ ଗ୍ରାନାଇଟ୍ ପଥର ମିଳେ ।

**ନିକେଲ:** କେନ୍ଦୁଝର ଜିଲ୍ଲାରେ ବଉଳା-ନୂଆସାହି ଅଞ୍ଚଳରେ ଥିବା ଅଲ୍‌ଟ୍ରାମ୍ୟାଫିକ୍ ଶିଳା ମଧ୍ୟରେ ଶତକଡ଼ା ୦·୪ ଭାଗ ନିକେଲ୍ ରହିଥିବା ଜଣାପଡିଛି ।

**କୋବାଲ୍‌ଟ:** କେନ୍ଦୁଝର ଜିଲ୍ଲାରେ ବଉଳା-ନୂଆସାହି ଅଞ୍ଚଳରେ ଥିବା ଅଲ୍‌ଟ୍ରାମ୍ୟାଫିକ୍ ଶିଳା ମଧ୍ୟରେ ଶତକଡ଼ା ୦·୧ ଭାଗ କୋବାଲ୍‌ଟ ରହିଥିବା ଜଣାପଡିଛି ।

**କାଞ୍ଚନ ବାଲୁକା:** କେନ୍ଦୁଝର ଜିଲ୍ଲାର ବଂଗାମ୍ ଅଞ୍ଚଳରେ ରହିଥିବା କୋହ୍ଲାନ୍ ଶିଳା ବର୍ଗର ବାଲୁକା ପଥରରେ କାଞ୍ଚନ ବାଲୁକା ରହିଛି । ଏହା କାଚ ଶିଳ୍ପରେ ବ୍ୟବହୃତ ହୋଇଥାଏ ।

**ଚିନାମାଟି:** କେନ୍ଦୁଝର ଜିଲ୍ଲାରେ ବହୁ ପରିମାଣରେ ଚିନାମାଟି (କେଓଲିନ୍) ଗଚ୍ଛିତ ରହିଛି । କେନ୍ଦୁଝରଗଡ଼ର ପଶ୍ଚିମ ଦିଗରେ ପ୍ରାୟ ୧·୬ କିଲୋମିଟର ଦୂରରେ ଡୋଲେରାଇଟ ଶିଳା ପାହାଡର ପାଦଦେଶର ଦୁଇଟି ସ୍ଥାନରେ ପ୍ରାୟ ୦·୧୭ ନିୟୁତ ଟନ୍ ପରିମାଣର ଚିନାମାଟି ଗଚ୍ଛିତ ରହିଛି । ସେହିଭଳି ଜିଲ୍ଲାର ତାରିଣୀପୋଖରୀ ଓ ଅମୁଆପଡ଼ା, ମୁରୁଆ, ଡେଙ୍ଗୁରାଠାରେ ଚିନାମାଟି ରହିଥିବା ଜଣାପଡିଛି ।

**ଗେରୁ:** କେନ୍ଦୁଝର ଜିଲ୍ଲାର କୋଦକୋରା ଓ ସିରିଆବାହାଳଠାରେ ହଳଦିଆ ଓ ମାଟିଆ ରଙ୍ଗର ଗେରୁ ମିଳେ । ସ୍ଥାନୀୟ ଅଧିବାସୀମାନେ ଏହାକୁ ନିଜ ଘରର କାଛରେ ଲେପ ଦେଇଥାନ୍ତି ।

**ସର୍ପେଣ୍ଟିନାଇଟ୍:** କେନ୍ଦୁଝର ଜିଲ୍ଲାର ବଉଳା-ନୂଆସାହି ଅଞ୍ଚଳରେ ସର୍ପେଣ୍ଟିନାଇଟ୍ ପଥର ଗଚ୍ଛିତ ରହିଛି । ଜିଲ୍ଲାରୁ ବାର୍ଷିକ ପ୍ରାୟ ୬,୦୦୦ ମେଟ୍ରିକ୍ ଟନ୍ ସର୍ପେଣ୍ଟିନାଇଟ୍ ପଥର ଉତ୍ପାଦନ କରାଯାଇଥାଏ ।

**ମାଗ୍ନେସାଇଟ୍:** କେନ୍ଦୁଝର ଜିଲ୍ଲାର ବଉଳା-ନୂଆସାହି ଅଞ୍ଚଳରେ ମାଗ୍ନେସାଇଟ୍ ଖଣିଜ ପଦାର୍ଥ ଗଚ୍ଛିତ ରହିଛି ।

## କେନ୍ଦୁଝର: କେଉଁଠି କେଉଁ ଖଣିଜ ଦ୍ରବ୍ୟ ମିଳେ

**ଲୁହା ପଥର:** ବଲାଣି, ଯୋଡା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାଶିଆ-ବରପଦା, ଠାକୁରାଣୀ,

ଜିଲ୍ଲିଂ-ଲଙ୍କଲଟା, ଜଜାଙ୍ଗ, ମାଲାଂଟୋଲି, ଗନ୍ଧମାର୍ଦ୍ଧନ, ଦୈତାରୀ, ମାଙ୍କଡ଼ନଚା,

**ମାଙ୍ଗାନିଜ୍:** ଗୁରୁଦା, ରୋଇଡା, ସିଦ୍ଧମଠ, ଯୋଡ଼ା, ହରମଠ, ଗୁଆଲି, ଜାମଦା, ଭଦ୍ରାସାହି, ନାଲଦା, ଚୋରାମାଲ୍ଦା, ଦୁବୁନା, ବାମେବାରୀ, ବଡ଼ବିଲ, ସିଲିଯୋରା, କାଳିମାଟି, ଇଂଗାନିଝରଣ, କଳାପର୍ବତ, ଠାକୁରାଣୀ, କାଦଡ଼ିହି

**ବକ୍ସାଇଟ୍:** କୁଅଁର ନିକଟସ୍ଥ ଢୋଲକଟା ପାହାଡ଼

**କ୍ରୋମିୟମ୍:** ବଉଳା ନୂଆସାହି

**ଚୂନା:** ତେଲକୋଇ ବ୍ଲକ୍‌ର ସଲେଇକେନା, କରଦାଙ୍ଗି ଏବଂ ବାଂଶପାଳ ବ୍ଲକର ଜଳଡ଼ିଆ-ଗୋପପୁର, ଗଜିପୁର, ଶଙ୍କରାଖୋଲ

**ଡୋଲାମାଇଟ୍:** କାଶିଆ-ଭଦ୍ରାସାହି

**ପାଇରୋ ଫିଲାଇଟ୍:** ମଦରଂଗାଯୋଡ଼ି, ନିତିଗୋଠା, ରୋଡୁଆଁ, ରଂପାକୋଟ, ଆମଯୋର, ଉକ୍ତାବେଡା, ଧୋବାକୁଚୁଡ଼ା, ବଳଭଦ୍ରପୁର, ବାଲିଆଡିହି, ମାଛକାନ୍ଦଣା, ତାଳିମପୁର, ବୁରିଆଡ଼ିହି, ସିଦ୍ଧମଠ, ସରସକୋଷି, ବଲିଆଣିପୋଷି ଏବଂ ରେବଣା-ପଳାସପାଳ

**କ୍ୱାର୍ଜ:** ନର୍ଦ୍ଧା-ବଡ଼ବିଲ, ଗୋଲାଗାଡ଼ିଆ, ବରପଦା, ବୋରାଙ୍ଗ, ପାହାଡ଼ପୁର ଓ ପର୍ସଲା

**ଭାନାଡ଼ିୟମ୍:** କେନ୍ଦୁଝର, ନୂଆସାହି

**ଖଡ଼ିପଥର:** ଏହା କେନ୍ଦୁଝରଗଡ଼ର ଦକ୍ଷିଣ ଓ ପଶ୍ଚିମ ଦିଗରେ ରହିଥିବା ପାହାଡ଼ର ଉତ୍ତର ପାର୍ଶ୍ୱ ପାଦଦେଶରେ ମିଳେ । ଏହା ବ୍ୟତୀତ ଜିଲ୍ଲାର ଧକୋଠା, ତାଳିମପୁର, ଫୁଲଝର ଏବଂ ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ଏହି ପଥର ଗଚ୍ଛିତ ଅଛି ।

**(ତଥ୍ୟ ସହାୟତା: ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର, ଲେଖକ: ରଂଜନ ପ୍ରଧାନ, ପ୍ରକାଶକ: କ୍ରିଏଟିଭ ଓଡ଼ିଶା, କେନ୍ଦ୍ରାପଡ଼ା (୨୦୧୨), ପୃଷ୍ଠା : ୩୯୦-୩୯୫)**

## ବୈତରଣୀ ପାଇଁ ବିପଦ: ଖଣି ଓ କାରଖାନା

*(industries, mines pollute Baitarani!)*

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ 'ଜୁଆଙ୍ଗ'ମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦିମ କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ଗୋନାସିକା କନ୍ୟା ବୈତରଣୀଙ୍କୁ ଜୁଆଙ୍ଗମାନେ ସେମାନଙ୍କ ଭଉଣୀର ମାନ୍ୟତା ଦେଇଛନ୍ତି ।

ସଂଭବତଃ ବୈତରଣୀ ନଦୀ ହେଉଛି ଏକମାତ୍ର ନଦୀ ଯାହା ପୂର୍ବରୁ **'ପୁଣ୍ୟତୋୟା'** ଭଳି

ଏକ ବିଶେଷଣ ଶବ୍ଦ ଲାଗିଥାଏ । ବୈତରଣୀ ନଦୀଟି ଓଡ଼ିଶାର ଏକ ପବିତ୍ର ନଦୀ ଭାବେ ସର୍ବତ୍ର ପୂଜିତା । ବୈତରଣୀ ଯେଉଁଯେଉଁ ଅଞ୍ଚଳ ଦେଇ ପ୍ରବାହିତ ହୋଇଛି ସେସବୁ ସ୍ଥାନଗୁଡିକ ଓଡ଼ିଶାରେ ଧାର୍ମିକ ଓ ପବିତ୍ର ପୀଠର ମାନ୍ୟତା ଲାଭ କରିପାରିଛି । ବୈତରଣୀ ସର୍ବପାପ ହରଣ କରିଥାଏ ଏବଂ ଏହି ନଦୀରେ ସ୍ନାନ କଲେ ସମସ୍ତ ପ୍ରକାର ପାପ ମୋଚନ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି ।

ବୈତରଣୀ ନଦୀର ଅବସ୍ଥିତି ଦୃଷ୍ଟିରୁ ଏହାର ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର (କେନ୍ଦୁଝର), ବକ୍ଷ ଦେଶରେ ଝାଡ଼େଶ୍ୱର (କେନ୍ଦୁଝର), ନାଭି ଦେଶରେ ବରାହେଶ୍ୱର (ଯାଜପୁର) ଏବଂ ପାଦଦେଶରେ ଆଖଣ୍ଡଳେଶ୍ୱର (ଭଦ୍ରକ) ଶୈବପୀଠ ରହିଛି । ଏହା ସହିତ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରୁ ଆରମ୍ଭ କରି ଧାମରା ମୁହାଣ ପର୍ଯ୍ୟନ୍ତ ନଦୀର କୂଳେକୂଳେ ଶତାଧିକ ଶୈବପୀଠ ରହିଛି । ଏହି ନଦୀର ପ୍ରତି ଏକ କୋଶ ଦୂରରେ ଜଳ ମଧ୍ୟରେ ଶିବ ଲିଙ୍ଗ ରହିଥିବାରୁ ବୈତରଣୀର ଜଳ ପବିତ୍ର ବୋଲି କୁହାଯାଏ ।

ଆଜି ପୁଣ୍ୟତୋୟା ବୈତରଣୀ ପ୍ରତି ଶିଳ୍ପାୟନ ଓ ଖଣିଖନନ ଏକ ପ୍ରକାଣ୍ଡ ବିପଦ ଭାବେ ଉଭା ହୋଇଛି । ଏହାର ଶୁଦ୍ଧପବିତ୍ର ଜଳ ଖଣିଖାଦାନ ଓ କଳକାରଖାନାର ବର୍ଜ୍ୟ ଓ ବିଷାକ୍ତ ବସ୍ତୁରେ ଦୂଷିତ ହେବାରେ ଲାଗିଛି ।

କେନ୍ଦୁଝର ଜିଲ୍ଲାର ମୋଟ ୮,୨୪୦ ବର୍ଗକିଲୋମିଟର ବିଶିଷ୍ଟ କ୍ଷେତ୍ରଫଳରୁ ୬,୮୨୪ ବର୍ଗକିଲୋମିଟର ଜମି ଉପରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ବୈତରଣୀର ଜଳ ସେଚିତ ହୋଇଥାଏ । ଜିଲ୍ଲାର ମୋଟ କ୍ଷେତ୍ରଫଳର ଶତକଡ଼ା ୮୩ ପ୍ରତିଶତ ଜମି ଓ ଏଥିରେ ବସବାସ କରୁଥିବା ଜନସାଧାରଣ ବୈତରଣୀ ଉପରେ ନିର୍ଭରଶୀଳ ।

କେନ୍ଦୁଝର ଜିଲ୍ଲାରେ ବର୍ତ୍ତମାନ ୨୪ଟି ଲୁହାପଥର ଭିତ୍ତିକ କାରଖାନା, ୧୦୦ରୁ ଉର୍ଦ୍ଧ୍ୱ ଖଣିଖାଦାନ ଓ ୩୦୦ରୁ ଉର୍ଦ୍ଧ୍ୱ ଆଇରନ୍ କ୍ରସର ଯୋଗୁଁ ବୈତରଣୀର ଜଳ ଆଜି ବିଷ ପାଲଟିଛି । ଏହା ସାଙ୍ଗକୁ ବର୍ତ୍ତମାନର ଅତ୍ୟାଧୁନିକ ଜ୍ଞାନକୌଶଳର ପ୍ରୟୋଗସ୍ୱରୂପ ସ୍ଲରି ଇଣ୍ଡଷ୍ଟ୍ରୀଗୁଡିକ ଏବେ ବୈତରଣୀ ପ୍ରତି ସର୍ବାଧିକ ବିପଦ ସୃଷ୍ଟି କରିଛି । ଏସାର୍ ଷ୍ଟୀଲ୍, ବିଆର୍‌ପିଏଲ୍, ଭୁଷଣ, ଜିନ୍ଦଲ ଭଳି ବଡ଼ବଡ଼ କଂପାନୀମାନେ ପାଇପ୍ ଯୋଗେ ପାଣି ସହିତ ଲୁହାପଥରର ମିଶ୍ରଣ (ସ୍ଲରି) ପରିବହନ କରିବାକୁ ରାଜ୍ୟ ସରକାରଙ୍କ ସହ ଚୁକ୍ତି କରିଛନ୍ତି । ସାଧାରଣତଃ, ଏହି 'ସ୍ଲରି'ରେ ପାଣିର ପରିମାଣ ଶତକଡ଼ା ୭୫ ଭାଗ ହୋଇଥିବାବେଳେ ୨୫ ପ୍ରତିଶତ ଲୁହାପଥର ଗୁଣ୍ଡ । ଏଥିରୁ ଅନୁମାନ କରାଯାଇପାରେ, କେଉଁ ପରିମାଣରେ ପାଣି ଏହି କଂପାନୀମାନେ ବ୍ୟବହାର କରିବେ? ୪୦୦ ମିମି ବ୍ୟାସାର୍ଦ୍ଧ ବିଶିଷ୍ଟ ପାଇପ୍‌ରେ ସ୍ଲରି ପରିବହନ ବେଳେ କିଭଳି ଭାବେ ବୈତରଣୀର ପାଣି ଚାଲାଣ ହେବ ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । କେନ୍ଦୁଝର ଜିଲ୍ଲାର ପାଣି ପାରାଦୀପ, ଯାଜପୁର, ଅନୁଗୁଳ,

ଢେଙ୍କାନାଳ ଭଳି ଜିଲ୍ଲାକୁ ଏହି 'ସ୍ଲରି' ଯୋଗେ ଚାଲାଣ ହେବ, ଏହା ହିଁ କେନ୍ଦୁଝରବାସୀଙ୍କ ପାଇଁ ଚିନ୍ତାର କାରଣ ପାଲଟିଛି ।

ଖଣିଖାଦାନ ଓ ଦ୍ରୁତ ଶିଳ୍ପାୟନ ଯୋଗୁଁ କେନ୍ଦୁଝର ଜିଲ୍ଲାର କେବଳ ବୈତରଣୀ ନୁହେଁ, ଜିଲ୍ଲାର ଅନ୍ୟାନ୍ୟ ଜଳ ଉତ୍ସମାନଙ୍କର ସର୍ବନାଶ ଘଟିବାକୁ ବସିଛି । ଜିଲ୍ଲାର ସୁନା, କାରୋ, ସୀତା, ଅରଡ଼େଇ, କାଲିଞ୍ଜର ଭଳି ଛୋଟବଡ ନଈ, ମୁର୍ଗା, ହାଣ୍ଡିଭଙ୍ଗା, ଖଣ୍ଡାଧାର ଭଳି ବଡ଼ବଡ଼ ଜଳପ୍ରପାତର ଅସ୍ତିତ୍ୱ ଏବେ ହଜିଯିବାକୁ ବସିଛି । ଏଭଳି ପରିସ୍ଥିତିରେ ଆଗାମୀ ଦିନରେ କେନ୍ଦୁଝର ଜିଲ୍ଲାରେ ଜଳସଂକଟ କିଭଳି ଉତ୍କଟ ହେବ ଏବଂ ପୁଣ୍ୟତୋୟା ବୈତରଣୀ ନଦୀର ଭାଗ୍ୟ କ'ଣ ହେବ ସେଥିନେଇ ଚିନ୍ତା କରିବାର ସମୟ ଆସିଛି ।

**(ତଥ୍ୟ ସହାୟତା: 'ସମ୍ବାଦ ବିଶେଷ' ନିଉଜ୍ ଷ୍ଟୋରି, ରଂଜନ ପ୍ରଧାନ, ଭୁବନେଶ୍ୱର, ତାରିଖ: ୨୦, ଏପ୍ରିଲ୍, ୨୦୧୧)**

## ଜହର ପାଲଟିଛି ବୈତରଣୀର ଜଳ

*(Water of Sacred Baitaranee becoming poisonous)*

ବୈତରଣୀର ଉପରମୁଣ୍ଡରେ ହୃଦୟଶୂନ୍ୟ ଖଣିଖନନ ଓ ଅନ୍ଧ ଶିଳ୍ପାୟନ ଏବେ ସମଗ୍ର ନଦୀ ପ୍ରତି ବିପଦ ସୃଷ୍ଟି କରିଛି । କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାର ଅଧିକାଂଶ ଲୁହାପଥର ପ୍ଲାଣ୍ଟ, ସ୍ପଞ୍ଜ ଆଇରନ୍ କାରଖାନା, ଖଣିଖାଦାନ ଖନନ ଯୋଗୁଁ ଏବେ ବୈତରଣୀର ଜଳ ଦୂଷିତ ହେବାରେ ଲାଗିଛି । ବୈତରଣୀର ଉପର ଅବବାହିକାରେ ଅବସ୍ଥିତ କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ ଶତାଧିକ ଲୁହାପଥର ଓ ମାଙ୍ଗାନିଜ୍ ଖଣି, ପାଖାପାଖି ୫୦ରୁ ଉର୍ଦ୍ଧ୍ୱ ଲୁହାପଥର ଭିତ୍ତିକ କାରଖାନା ଓ ଅନେକ ବେଆଇନ୍ ଆଇରନ୍ କ୍ରସର ଯୋଗୁଁ ବୈତରଣୀର ଜଳ ଦୂଷିତ ହେବାରେ ଲାଗୁଛି ।

ଖଣିଖାଦାନଭରା ଅଞ୍ଚଳମାନଙ୍କରେ ବୈତରଣୀର ଜଳ ବ୍ୟାପକ ଭାବେ ଦୂଷିତ ହେବାରେ ଲାଗୁଛି । କାରଖାନାକୁ ଯିବା ପୂର୍ବରୁ ପ୍ରଥମେ ଲୁହାପଥରକୁ ଭଲ ଭାବେ ବିଶୁଦ୍ଧ କରାଯାଏ ଏବଂ ବୈତରଣୀର ଜଳ ଏଥିପାଇଁ ବ୍ୟବହୃତ ହୋଇଥାଏ । ଏହି ଲୁହାଗୁଣ୍ଡଯୁକ୍ତ ଦୂଷିତ ପାଣିକୁ ପୁନର୍ବାର ନଦୀ ମଧ୍ୟକୁ ଛାଡ଼ିଦିଆଯାଏ । ଏହା ସହିତ କାରଖାନାମାନଙ୍କରୁ ବହୁଳ ମାତ୍ରାରେ ବର୍ଜ୍ୟବସ୍ତୁ ବୈତରଣୀ ନଦୀକୁ ସିଧାସଳଖ ଛାଡ଼ି ଦିଆଯାଉଛି ।

ଅଭିବୃଦ୍ଧି କ୍ଷେତ୍ରରେ ଶିଳ୍ପାୟନର ଏକ ଗୁରୁଦାୟିତ୍ୱ ରହିଛି । ମାତ୍ର, ପରିବେଶକୁ ପ୍ରଦୂଷଣ କରି, ଧ୍ୱଂସ ଲୀଳା ରଚାଇ ବିକାଶ କରିବାରେ କି ଲାଭ? ବୈତରଣୀର ଉପରମୁଣ୍ଡରେ ଅବସ୍ଥିତ କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ କାର୍ଯ୍ୟରତ ଶିଳ୍ପକାରଖାନା ଓ ଖଣିଖାଦାନ ପ୍ରଦୂଷଣ ରୋକିବା ଦିଗରେ ଉଦାସୀନତା ପ୍ରକାଶ କରିଆସୁଛନ୍ତି । ଏହା ଫଳରେ ବୈତରଣୀର ଜଳ ଏତେ ମାତ୍ରାରେ ପ୍ରଦୂଷିତ

ହୋଇପଡ଼ିଛି ଯେ, ଏହା ବ୍ୟବହାର ଅନୁପଯୁକ୍ତ ହୋଇପଡ଼ିଛି । ଅତୀତରେ ବୈତରଣୀକୁ ମା' ବୋଲି ଭାବି ଏହାର କୂଳରେ ବସବାସ କରୁଥିବା ଆଦିମ ଅଧିବାସୀ ଓ ସାଧାରଣ ଲୋକେ ଏହାର ଜଳକୁ ସିଧାସଳଖ ପାନୀୟ ଜଳ ଭାବେ ବ୍ୟବହାର କରିପାରୁଥିଲେ । ମାତ୍ର ଏବେ ଏହା ଅସଂଭବ ହୋଇପଡ଼ିଛି ।

ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ତଥ୍ୟ ଅନୁସାରେ, ଗୋଟିଏ ନିରାପଦ ପାନୀୟ ଜଳର ଗୁଣବତ୍ତା ଓ ମାନ (ପିଏଚ୍ ମୂଲ୍ୟ) ୭ ରୁ ୮·୫ ମଧ୍ୟରେ ରହିବା ଆବଶ୍ୟକ । ସାଧାରଣତଃ ୧ ଲିଟର ପାନୀୟ ଜଳରେ ସର୍ବାଧିକ ୭୫ ମିଲିଗ୍ରାମ୍ କ୍ୟାଲ୍‌ସିୟମ୍, ୩୦ ମିଲିଗ୍ରାମ୍ ମ୍ୟାଗ୍‌ନେସିୟମ୍, ୨୦୦ ମିଲିଗ୍ରାମ୍ ସଲ୍‌ଫେଟ୍, ୨୦୦ ମିଲିଗ୍ରାମ୍ କ୍ଲୋରାଇଡ୍, ୦·୧ ମିଲିଗ୍ରାମ୍ ଲୌହ, ୦·୦୫ ମିଲିଗ୍ରାମ୍ ମାଙ୍ଗାନିଜ୍, ୦·୦୫ ମିଲିଗ୍ରାମ୍ ତମ୍ବା, ୦·୦୫ ମିଲିଗ୍ରାମ୍ ଜିଙ୍କ୍, ୦·୦୫ ମିଲିଗ୍ରାମ୍ ଆର୍ସେନିକ୍, ୦·୦୦୫ ମିଲିଗ୍ରାମ୍ କ୍ୟାଡ୍‌ମିୟମ୍, ୦·୦୫ ମିଲିଗ୍ରାମ୍ ସାୟୋନାଇଡ୍, ୦·୦୫ ମିଲିଗ୍ରାମ୍ ସୀସା, ୦·୦୦୧ ମିଲିଗ୍ରାମ୍ ଫିନୋଲିକ୍, ୦·୦୦୧ ପାରଦ ରହିଲେ ମଣିଷ ଶରୀର ପାଇଁ କୌଣସି କ୍ଷତି ପହଞ୍ଚାଇ ନଥାଏ । ଏହି ପରିମାଣରେ ପରିବର୍ତ୍ତନ ହେଲେ ତାହା ପାନୀୟ ଜଳ ଉପଯୋଗୀ ହୋଇ ନଥାଏ । କିନ୍ତୁ ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାରେ ସ୍ଥାପନ ହୋଇଥିବା ବିଭିନ୍ନ ଶିଳ୍ପକାରଖାନା ଓ ଖଣିଖାଦାନରୁ ନିର୍ଗତ ବର୍ଜ୍ୟବସ୍ତୁ ବୈତରଣୀ ନଦୀକୁ ଛାଡ଼ି ଦିଆଯାଉଛି । ଅଧିକାଂଶ କାରଖାନାର ବର୍ଜ୍ୟବସ୍ତୁ ସିଧାସଳଖ ବୈତରଣୀକୁ ଛଡ଼ାଯାଉ ନଥିଲେ ମଧ୍ୟ ଉପନଦୀମାନଙ୍କ ଜରିଆରେ ବୈତରଣୀ ନଦୀରେ ମିଶୁଛି । ଶିଳ୍ପ ସଂସ୍ଥାମାନଙ୍କର ଦାୟିତ୍ୱହୀନତା କାରଣରୁ ଏବେ ରାଜ୍ୟରେ ବ୍ରାହ୍ମଣୀ, ବୈତରଣୀ, ମହାନଦୀ ଭଳି ଅନେକ ନଦୀ ସେମାନଙ୍କର **'ପ୍ରାକୃତିକ ଜଳଶୋଧନ କ୍ଷମତା'** ହରାଇ ବସିଛନ୍ତି ।

ବ୍ରାହ୍ମଣୀ, ମହାନଦୀ ସମେତ ବୈତରଣୀ ନଦୀର ଜଳ ଉତ୍କଟ ଭାବେ ପ୍ରଦୂଷିତ ହୋଇଛି ବୋଲି **'ଆମ୍ନେଷ୍ଟି ଇଣ୍ଟରନ୍ୟାସ୍‌ନାଲ୍'** ନାମକ ଏକ ସଂସ୍ଥା ଏକ ଉଦ୍‌ବେଗଜନକ ରିପୋର୍ଟ ପ୍ରଦାନ କରିଛି । ବୈତରଣୀର ଜଳ ମଣିଷର ବ୍ୟବହାର ପାଇଁ ଆଉ ଉପଯୁକ୍ତ ହୋଇ ରହିନାହିଁ ବୋଲି ଏହି ସଂସ୍ଥା ପ୍ରକାଶ କରିଛି । ଏହି ସଂସ୍ଥାର ଦକ୍ଷିଣ ଏସିୟ ଗବେଷକ ରମେଶ ଗୋପାଳ କ୍ରିଷ୍ଣନ୍ ବୈତରଣୀ ନଦୀର ପ୍ରଦୂଷଣ ଚିନ୍ତାର କାରଣ ବୋଲି ସୂଚନା ଦେବା ସହିତ ସରକାର ଏ ଦିଗରେ ବ୍ୟାପକ ପଦକ୍ଷେପ ଗ୍ରହଣ କରିବାକୁ ପରାମର୍ଶ ଦେଇଛନ୍ତି ।

ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାରେ ବ୍ୟାପକ ଓ ଆଖିବୁଜା ଖଣି ଖଣି ଖନନ ଯୋଗୁଁ ବୈତରଣୀ ଜଳ ପ୍ରଦୂଷିତ ହେବାରେ ଲାଗିଛି । ସୋଡ଼ିୟମ୍, ପୋଟାସିୟମ, କ୍ୟାଲ୍‌ସିୟମ, ମ୍ୟାଗ୍ନେସିୟମ, ଲୌହ, ମାଙ୍ଗାନିଜ୍, ସୀସା, ପାରଦ, କ୍ରୋମିୟମ୍, କ୍ୟାଡ୍‌ମିୟମ୍, ନିକେଲ, କୋବାଲ୍‌ଟ, ବେରିଲିୟମ୍ ଭଳି ଗୁରୁ ଧାତୁ ମାତ୍ରାଧିକ ଭାବେ ଜଳ ସଂସ୍ପର୍ଶରେ ଆସିଲେ ଏହା କ୍ଷତିକାରକ ହୋଇଥାଏ । ଭୂ-

ତଳ ଜଳରେ ଫ୍ଲୋରାଇଡ୍ ପରିମାଣ ଲିଟର ପ୍ରତି ୦·୧୫ ମିଲିଗ୍ରାମ୍‌ରୁ ଊର୍ଦ୍ଧ୍ୱ ରହୁଥିବାରୁ କେନ୍ଦୁଝର ଜିଲ୍ଲାର ଅଧିକାଂଶ ଅଞ୍ଚଳରେ ଫ୍ଲୋରୋସିସ୍ ରୋଗ ବ୍ୟାପିବାରୁ ମଣିଷ ଓ ପଶୁମାନଙ୍କର ବ୍ୟାପକ କ୍ଷତି ଘଟାଉଛି । ଏହି ରୋଗ ଫଳରେ ଦନ୍ତକ୍ଷୟ ଏବଂ ଅସ୍ଥି ଜନିତ ରୋଗ ବ୍ୟାପୁଛି । ବିଶେଷକରି କେନ୍ଦୁଝର ଜିଲ୍ଲାର ଯୋଡ଼ା, ବଡ଼ବିଲ୍, ବିଲେଇପଦା, ଦେଓଝର , ପଳାସପଙ୍ଗା, ନୟାଗଡ଼, ବାମେବାରୀ, କାଳିମାଟି ଓ ବଲାଣି ଅଞ୍ଚଳରେ କଳକାରଖାନା ଓ ଅନିୟମିତ ଖଣି ଖନନ କାରଣରୁ ବୈତରଣୀ ନଦୀ ଜଳ ପ୍ରଦୂଷିତ ହେଉଛି ବୋଲି ଶାହା କମିଶନ୍ ମଧ୍ୟ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । ଅପରପକ୍ଷେ, କେନ୍ଦୁଝର ଜିଲ୍ଲାର କେନ୍ଦୁଝରଗଡ଼, ଯୋଡ଼ା, ବଡ଼ବିଲ୍, ଆନନ୍ଦପୁର ଭଳି ପୌରପାଳିକାରେ ବିନା ବିଶୋଧନରେ ନର୍ଦ୍ଦମା ଓ ନଳାର ଜଳକୁ ବୈତରଣୀକୁ ଛଡାଯାଉଥିବାରୁ ଏଥିରେ ଥିବା ବିଷାକ୍ତ ପଦାର୍ଥ ସୀସା, କ୍ରୋମିୟମ୍, କ୍ୟାଡ୍‌ମିୟମ୍, ଦସ୍ତା, ପାରଦ ସମେତ କ୍ଷତିକାର ବ୍ୟାକ୍‌ଟେରିଆ, ଭାଇରସ୍ ନଦୀ ଜଳକୁ ବ୍ୟାପକ ଭାବେ ପ୍ରଦୂଷିତ କରୁଛି ।

ପରିବେଶ ନିୟମ ଅନୁସାରେ ବୈତରଣୀ ନଦୀର ଉଭୟ ପାର୍ଶ୍ୱରେ ଖଣି କାର୍ଯ୍ୟକଳାପକୁ ନିଷିଦ୍ଧ କରାଯିବା କଥା, ମାତ୍ର ତାହାର ଉଲ୍ଲଂଘନ ହୋଇଛି । କେବଳ ବୈତରଣୀ ନୁହେଁ ବୈତରଣୀ ନଦୀକୁ ପୁଷ୍ଟ କରୁଥିବା ତା'ର ଉପନଦୀ ଓ ଅନେକ ଛୋଟବଡ଼ ନାଳଗୁଡିକ ମଧ୍ୟ ବ୍ୟାପକ ଖଣି ଖନନ ଯୋଗୁଁ ପୋତି ହୋଇପଡିଛନ୍ତି । ସୁନ୍ଦରଗଡ଼ ଜିଲ୍ଲାର କୋଇଡ଼ା ଓ କେନ୍ଦୁଝର ଜିଲ୍ଲା ଯୋଡ଼ା ଖଣିମଣ୍ଡଳରୁ ପ୍ରବାହିତ ପ୍ରାୟ ୬୫ଟି ଛୋଟଛୋଟ ନଦୀ ଓ ନଳା ଖଣିଖାଦାନ ମଧ୍ୟରେ ଲୁଚିଯିବାକୁ ବସିଛି । ଏହା କ'ଣ ବୈତରଣୀ ନଦୀକୁ ପ୍ରଭାବିତ କରିବ ନାହିଁ? ଏହା ଏକ ବିରାଟ ବଡ଼ ଆହ୍ୱାନ ।

ବର୍ଷା ଋତୁରେ ବୈତରଣୀ ନଦୀର ପ୍ରଦୂଷଣ ସମସ୍ୟା ଉତ୍କଟ ରୂପ ଧାରଣ କରିଥାଏ । ଲୁହାପଥର ଓ ମାଙ୍ଗାନିଜ ଗୁଣ୍ଡ ଭଳି ଖଣିଜ ବର୍ଜ୍ୟବସ୍ତୁ ନଦୀରେ ପ୍ରବାହିତ ହୋଇ ବୈତରଣୀ ଅବବାହିକାରେ ବାସ କରୁଥିବା ଲୋକମାନଙ୍କ ପାଇଁ ବିପଦ ସୃଷ୍ଟି କରିଛି । ଖଣିଖନନ ଯୋଗୁଁ ବୈତରଣୀ ଅବବାହିକାରେ ଥିବା ଘଞ୍ଚ ଜଙ୍ଗଲ ସଂପଦ ମଧ୍ୟ ବ୍ୟାପକ ଭାବେ ଧ୍ୱଂସ ପାଇଯାଇଛି । ଏହା ଫଳରେ ଜୈବବିବିଧତା ପ୍ରତି ବିପଦ ସୃଷ୍ଟି ହୋଇଛି । ବୈତରଣୀ ଉପକୂଳ ଜଙ୍ଗଲମାନଙ୍କରୁ ଅନେକ ବିରଳ ପ୍ରଜାତିର ଜୀବଜନ୍ତୁ ଓ ବୃକ୍ଷଲତା ସବୁଦିନ ପାଇଁ ଲୋପ ପାଇଯିବାକୁ ବସିଲେଣି ।

ବନ୍ୟା ସମୟରେ ଲୁହା ଓ ମାଙ୍ଗାନିଜ୍ ଗୁଣ୍ଡ ମିଶା ବୈତରଣୀ ପାଣି ଲକ୍ଷଲକ୍ଷ ହେକ୍ଟର ଚାଷଜମିରେ ମାଡ଼ିଯିବା ଫଳରେ ଚାଷଜମିସବୁ ଉଜୁଡ଼ି ଯାଇଛି । ବୈତରଣୀ ନଦୀ ଓ ଏହାର କୂଳେକୂଳେ ଗଢି ଉଠିଥିବା ଦେବଦେବୀ ପୀଠ, ମନୋରମ ପର୍ଯ୍ୟଟନସ୍ଥଳୀ ମଧ୍ୟ ଏହି ଶିଳ୍ପ ଓ ଖଣି ଖାଦାନ ପ୍ରଭାବରେ ଭୂଲୁଣ୍ଠିତ ହେବାକୁ ବସିଛି ।

ଖଣିଗୁଡ଼ିକରେ ହେଉଥିବା ବିସ୍ଫୋରଣ ଓ ବ୍ୟାପକ ଗଛକଟା ଯୋଗୁଁ ଶହଶହ ଏକର ଜଙ୍ଗଲ ସଂପଦ ଧ୍ୱଂସ ପାଇଯାଉଛି । ବ୍ୟାପକ ମୃତ୍ତିକା କ୍ଷୟ ଯୋଗୁଁ ଯୋଡ଼ା-ବଡ଼ବିଲ ଅଞ୍ଚଳରେ ପ୍ରବାହିତ

କାରୋ, କୁନ୍ଦୁରନଳା (ସୁନା ନଦୀ) ବଲଦା ନାଳ, ଦଲ୍‌କି ନାଳ, ଜରିବାର ନାଳ, ଖଣ୍ଡା ନାଳ, ଦେଓଝର, ଇଙ୍ଗାନିଝରନ୍ ଭଳି ଛୋଟବଡ ଜଳ ଉତ୍ସ ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି ।

**(ତଥ୍ୟ ସହାୟତା: 'ସମ୍ବାଦ ବିଶେଷ' ନିଉଜ୍ ଷ୍ଟୋରି, ରଂଜନ ପ୍ରଧାନ, ଭୁବନେଶ୍ୱର, ତାରିଖ: ୧୧, ମେ, ୨୦୧୪)**

## କେନ୍ଦୁଝରରେ ଶିଳ୍ପାୟନର ପ୍ରଭାବ: ମାଟି, ପାଣି, ପବନ ସବୁ ବିଷ!

କେନ୍ଦୁଝରର ହାଡ଼ଥରା ଶୀତ, ଲଗାଣ ବର୍ଷା, ଦୋ' ଫସଲି ଉର୍ବର ମାଟି ଓ ସର୍ବୋପରି ପୁଣ୍ୟତୋୟା ବୈତରଣୀ ନଦୀର ପବିତ୍ର ଜଳ ଏବେ ସ୍ୱପ୍ନ ପାଲଟିଛି । ଖଣିଖାଦାନ ଓ ଶିଳ୍ପାୟନର କଫିନ୍ ତଳେ ଏସବୁ ଆଜି କବର ନେଇଛି । ରାଶିରାଶି ପାହାଡ଼, ସବୁଜ ବନାନୀ, ପ୍ରଖର ବେଗରେ ପାହାଡ଼ରୁ ଖସି ପଡୁଥିବା ଝରଣା, ନଦୀ, ନାଳ, ଜଙ୍ଗଲ, କେନ୍ଦୁଝରର ମାଟି, ପାଣି ଓ ପବନ ଆଜି ବିଷ ପାଲଟିଛି । ଏସବୁ ପରିବର୍ତ୍ତନ କେବଳ ଗତ ଦଶନ୍ଧିର । ୨୦୦୦ ମସିହା ପୂର୍ବର କେନ୍ଦୁଝର ଏବଂ ୨୦୧୦ ମସିହା ପରର କେନ୍ଦୁଝର ମଧ୍ୟରେ ସୃଷ୍ଟି ହୋଇଛି ଆକାଶ ପାତାଳ ଫରକ ।

୧୯୯୦ ମସିହା ବେଳକୁ କେନ୍ଦୁଝର ଜିଲ୍ଲାରେ କୃଷି ଉପଯୋଗୀ ଜମିର ପରିମାଣ ୨,୯୭,୮୭୩ ହେକ୍ଟର ଥିଲାବେଳେ ୨୦୧୦ ମସିହାରେ ଏହା ହ୍ରାସ ପାଇ ୨,୫୦,୦୦ ହେକ୍ଟରରେ ପହଞ୍ଚିଥିଲା । ସେହିଭଳି ୧୯୯୦ ମସିହାରେ କେନ୍ଦୁଝର ଜିଲ୍ଲାରେ ୨୪୯୪·୩୫ ବର୍ଗ କିଲୋମିଟର ପରିମିତ ଜଙ୍ଗଲ ଥିଲାବେଳେ ୨୦୧୦ ମସିହା ସୁଦ୍ଧା କାଗଜପତ୍ରରେ ସେହି ପରିମାଣର ଦର୍ଶାଯାଉଛି । ମାତ୍ର ବାସ୍ତବରେ କେନ୍ଦୁଝର ଜିଲ୍ଲାରେ ଶତକଡ଼ା ୫୦ ପ୍ରତିଶତ ଜଙ୍ଗଲ ସଫା ହୋଇ ସାରିଲାଣି । ଏହାର କାରଣ ହେଉଛି, ଗୋଟିଏ ଜଙ୍ଗଲ ଉପରେ ଦଶ ମହଲା ଅଟ୍ଟାଳିକା ବନି ସାରିଥିଲେ ମଧ୍ୟ କିସମରେ ପରିବର୍ତ୍ତନ ହୋଇନାହିଁ । ଏବେ ବି ଜିଲ୍ଲାରେ ଅନେକ ଜନଗହଳିପୂର୍ଣ୍ଣ ଜାଗା ରହିଛି, ଯେଉଁଠାରେ କେବେଠୁଁ ବସ୍ତି, ଘରଦ୍ୱାର, ସହର ଗଢି ଉଠିଲାଣି, ମାତ୍ର ଆଜି ପର୍ଯ୍ୟନ୍ତ ତାକୁ କାଗଜପତ୍ରରେ ଜଙ୍ଗଲ ବୋଲି ଦର୍ଶାଯାଉଛି । ସେଠାରେ ଜଙ୍ଗଲ ତ ଦୂର କଥା ଗଛଟିଏ, ପାହାଡ଼ ତ ଦୂର କଥା ପଥରଟିଏ ମଧ୍ୟ ଦେଖିବାକୁ ମିଳେନା । ଆଜିର ଦିନରେ ଅନେକ ଜଙ୍ଗଲ କେବଳ କାଗଜପତ୍ରରେ ରହିଛି, ମାତ୍ର ସେଠାରେ ଗଢି ଉଠିଛି କଳକାରଖାନା ଓ ଖଣି ଖାଦାନ । ଗତ ଗୋଟିଏ ଦଶନ୍ଧି ମଧ୍ୟରେ କେନ୍ଦୁଝର ଜିଲ୍ଲାରେ ଚାଷ ଜମି ସଙ୍କୁଚିତ ହୋଇଛି ଏବଂ ଜଙ୍ଗଲ ମଧ୍ୟ ଅସମ୍ଭବ ଭାବେ ହ୍ରାସ ପାଇଛି । ତେବେ ପ୍ରଶ୍ନ ଉଠେ ଏସବୁ ଜମି କୁଆଡ଼େ ଗଲା?

କେନ୍ଦୁଝର ଜିଲ୍ଲାର ଚଂପୁଆ ସବ୍ ଡିଭିଜନ ଅନ୍ତର୍ଗତ ଯୋଡ଼ା, ବଡ଼ବିଲ୍‌ରେ ଗଢି ଉଠିଛି ଶହଶହ କଳକାରଖାନା । ଏ ଅଞ୍ଚଳରେ ଜିନ୍ଦଲ, ଟାଟା, ଆର୍ଯ୍ୟ ଷ୍ଟୀଲ୍, କେଜେଏସ୍ ଆଲୁଓ୍ୱାଲିଆ ଷ୍ଟୀଲ୍,

ଏନ୍.କେ. ଭୋଜାନି ଷ୍ଟୀଲ, ଦୀପକ ଷ୍ଟୀଲ୍, ଶ୍ରୀମେଟାଲିକ୍, ଓଡ଼ିଶା ସ୍ପଞ୍ଜ ଆଇରନ୍, ଏମ୍ଏସ୍‌ପି ଗୋଲ୍ଡ ଭଳି ଅନେକ ଛୋଟବଡ଼ କାରଖାନା ଗଢି ଉଠିଛି । ଏହା ସାଙ୍ଗକୁ ଚିର ସବୁଜ ବନାନୀ କୁହାଯାଉଥିବା ବାଂଶପାଳ ବ୍ଲକ୍‌ରେ ଏବେଏବେ ଗଢି ଉଠୁଛି ଗୋଟିଏ ପରେ ଗୋଟିଏ ନୂଆ କାରଖାନା । ଏ ଅଞ୍ଚଳରେ ଥିବା କଳକାରଖାନାରୁ ନିର୍ଗତ ଧୂଆଁ ଓ ଧୂଳିରେ ଏବେ ପ୍ରଦୂଷିତ ହୋଇଛି ସମଗ୍ର କେନ୍ଦୁଝର । କାରଖାନାର ବ୍ଲାଷ୍ଟ ଫର୍ନେସ୍, ପାୱାର ପ୍ଲାଣ୍ଟ୍ ଓ ଅନ୍ୟାନ୍ୟ ଚିମିନିରୁ ର୍ନିଗତ ବିଷାକ୍ତ ଧୂଆଁରେ କେନ୍ଦୁଝରର ପବନ ବିଷାକ୍ତ ହୋଇ ଚାଲିଛି । ଏବେ କେନ୍ଦୁଝର ଜିଲ୍ଲାର ଆକାଶ ସଲ୍‌ଫର ଡାଇଅକ୍ସାଇଡ୍, କାର୍ବନ ଡାଇଅକ୍ସାଇଡ୍, କାର୍ବନ ମନୋକ୍ସାଇଡ, ଆଇରନ୍ ଡଷ୍ଟ୍, କୋଇଲା ଗୁଣ୍ଡ ଏବଂ ଦୈନିକ ଲକ୍ଷଲକ୍ଷ ଟ୍ରକ୍‌ରୁ ନିର୍ଗତ ବିଷାକ୍ତ ଧୂଆଁରେ ପରିପୂର୍ଣ୍ଣ ।

କେନ୍ଦୁଝର ଜିଲ୍ଲାରେ ଅନେକ କଂପାନୀ ପ୍ରଦୂଷଣ ନିୟନ୍ତ୍ରଣ ଯନ୍ତ୍ର (ଇଏସ୍‌ପି) ବ୍ୟବହାର କରୁ ନଥିବା ଅଭିଯୋଗ ହେଉଛି । ଯଦିବି କିଛି କଂପାନୀ ଏହି ଯନ୍ତ୍ରକୁ ସଂଯୋଗ କରୁଛନ୍ତି, ତେବେ ବିଦ୍ୟୁତ୍ ଖର୍ଚ୍ଚ ଭୟରେ ବିଷାକ୍ତ ଧୂଆଁକୁ ଟ୍ରିଟ୍‌ମେଂଟ୍ ନ କରି ଆକାଶକୁ ଛାଡ଼ି ଦିଆଯାଉଛି । ବିଶେଷକରି ଏ ଅଞ୍ଚଳର କାରଖାନାରୁ ବହୁ ମାତ୍ରାରେ ସଲ୍‌ଫର ଡାଇ ଅକ୍ସାଇଡ୍ ଗ୍ୟାସ୍ ନିର୍ଗତ ହେଉଥିବାରୁ ବର୍ଷା ଦିନେ ଏହି ଗ୍ୟାସ୍ ବର୍ଷା ଜଳ ସଂସ୍ପର୍ଶରେ ଆସି ରାସାୟନିକ ପ୍ରତିକ୍ରିୟା ମାଧ୍ୟମରେ ସଲ୍‌ଫ୍ୟୁରିକ୍ ଏସିଡ୍ ସୃଷ୍ଟି ହୋଇଥାଏ । ଏହା ହିଁ ଏସିଡ୍ ବର୍ଷା ।

କେନ୍ଦୁଝର ଜିଲ୍ଲାବାସୀଙ୍କ ପାଇଁ ଏହି 'ଏସିଡ୍ ବର୍ଷା' ଏବେ କାଳ ପାଲଟିଛି । ସମଗ୍ର କେନ୍ଦୁଝର ଜିଲ୍ଲାର ଆକାଶରେ ଅତ୍ୟଧିକ ଅଙ୍ଗାରକାମ୍ଳ ଗ୍ୟାସ୍ ଯୋଗୁଁ 'ଏସିଡ୍ ବର୍ଷା' ହେବା ସହିତ ସବୁଜ ବଳୟ ନଷ୍ଟ ହେବାରେ ଲାଗିଛି । କଳକାରଖାନାରୁ ନିର୍ଗତ ବିଷାକ୍ତ ଧୂଆଁ ବାୟୁମଣ୍ଡଳକୁ ପ୍ରଦୂଷଣ କରୁଥିବାବେଳେ ଜଙ୍ଗଲ କ୍ଷୟ ଯୋଗୁଁ ଅନାବୃଷ୍ଟି କେନ୍ଦୁଝର ଜିଲ୍ଲାବାସୀଙ୍କ ପାଇଁ ସତର୍କ ସୂଚନା ଦେଇଛି । ଏସିଡ୍ ବର୍ଷା ଯୋଗୁଁ କେନ୍ଦୁଝର ଜିଲ୍ଲାର ଜଙ୍ଗଲ କ୍ଷୟ ସାଙ୍ଗକୁ ଉପଯୁକ୍ତ ପରିମାଣରେ ବର୍ଷା ମଧ୍ୟ ହେଉନାହିଁ, ଯାହାର ଫଳସ୍ୱରୂପ ବିଗତ ୧୦ ବର୍ଷ ମଧ୍ୟରେ ୮ ବର୍ଷ ଜିଲ୍ଲାରେ ମରୁଡ଼ି ପରିସ୍ଥିତି ସୃଷ୍ଟି ହୋଇଛି । ଏହା ଫଳରେ କେନ୍ଦୁଝର ଜିଲ୍ଲାର ଚାଷ କାର୍ଯ୍ୟ ବୁଡ଼ିଯିବାକୁ ବସିଛି ।

ଅପରପକ୍ଷେ, ଶିଳ୍ପକାରଖାନା, ଯାନବାହନରୁ ନିର୍ଗତ ଶବ୍ଦ ପ୍ରଦୂଷଣ ଅସହ୍ୟ ହୋଇପଡ଼ିଛି । ଯୋଡ଼ା, ବଡ଼ବିଲ୍ ଖଣି ଅଞ୍ଚଳରେ ଦୈନିକ ହଜାର ହଜାର ସଂଖ୍ୟାରେ ଟ୍ରକ୍ ଓ ଅନ୍ୟାନ୍ୟ ଭାରିଯାନରୁ ଯେଉଁ ଭୟଙ୍କର ଶବ୍ଦ ନିର୍ଗତ ହୋଇଥାଏ ତାହା ଏ ଅଞ୍ଚଳର ଜନଜୀବନକୁ ବିପର୍ଯ୍ୟସ୍ତ କରିଦେଇଛି । ପ୍ରତିଦିନ କେନ୍ଦୁଝର ଦେଇ ଯାଇଥିବା ୨୧୫ ନମ୍ବର ଓ ୬ ନମ୍ବର ଜାତୀୟ ରାଜପଥ ଉପରେ ୩୦ ହଜାରରୁ ଅଧିକ ଟ୍ରକ୍ ଭୟଙ୍କର ଗର୍ଜନ କରି ଧୂଳି, ଧୂଆଁ ଉଡ଼େଇ ଭୟଙ୍କର ଶବ୍ଦ ପ୍ରଦୂଷଣ କରି ଚାଲି ଯାଆନ୍ତି । ଉଭୟ ଦିନ ଓ ରାତିବେଳା କେନ୍ଦୁଝର ଦେଇ ହଜାର ହଜାର ସଂଖ୍ୟାରେ ଭାରୀଯାନ ଚଳାଚଳ, କଳକାରଖାନାର ଭୟଙ୍କର ଶବ୍ଦ ଓ ଏ ଅଞ୍ଚଳରେ ନିୟମିତ ନିର୍ମାଣ କାର୍ଯ୍ୟ

ଯୋଗୁଁ ସମଗ୍ର ଜିଲ୍ଲାରେ ଶବ୍ଦ ପ୍ରଦୂଷଣ ଉଦ୍‌ବେଗଜନକ ଭାବେ ବୃଦ୍ଧି ପାଇବାରେ ଲାଗିଛି ।

ସାଧାରଣତଃ ୬୦ ଡେସିବେଲ୍‌ରୁ ଅଧିକ ଶବ୍ଦ ଉତ୍ପନ୍ନ ହେଲେ ତାହା ମଣିଷ ପାଇଁ କ୍ଷତିକାରକ ହୋଇଥାଏ । ୧୨୦ ଡେସିବେଲ୍ ଶବ୍ଦ ସୃଷ୍ଟି ହେଲେ ମଣିଷର ଶ୍ରବଣ ଶକ୍ତି ନଷ୍ଟ ହୋଇଯାଏ । ସାଧାରଣତଃ, ଲୁହା ଖଣିରେ କାର୍ଯ୍ୟ କରୁଥିବା ପେ-ଲୋଡ଼ରର ଶବ୍ଦର ତୀବ୍ରତା ୧୨୦ ଡେସିବେଲ୍‌ରୁ ଅଧିକ ଥାଏ । ଫଳରେ ଖଣି ଅଞ୍ଚଳ ଓ ଏହାର ଆଖପାଖରେ ବସବାସ କରୁଥିବା ଶ୍ରମିକ ଶ୍ରେଣୀର ଲୋକଙ୍କ ପାଇଁ ଏହା ବିପଦ ସୃଷ୍ଟି କରିଛି । ଅତ୍ୟଧିକ ତୀବ୍ର ଶବ୍ଦ ଗର୍ଭସ୍ଥ ଶିଶୁମାନଙ୍କ ଉପରେ କୁପ୍ରଭାବ ପକେଇଥାଏ । ଶବ୍ଦ ପ୍ରଦୂଷଣ ଯୋଗୁଁ ଯୋଡା-ବଡ଼ବିଲ ଅଞ୍ଚଳରେ ବହୁ ଲୋକ ଶ୍ରବଣ ଶକ୍ତି ହରାଇ ବସୁଥିବା ଜଣାପଡ଼ିଛି । ହଠାତ୍ ଅଧିକ କୋଳାହଳ ସାମ୍ନା କଲାବେଳେ ମଣିଷ ଶରୀରରେ ଆଡ୍ରୋନାଲିନ୍ ନାମକ ହର୍‌ମୋନର ମାତ୍ରା ବଢ଼ି ଯାଇଥାଏ, ଯାହାଦ୍ୱାରା ରକ୍ତଚାପ ବୃଦ୍ଧି ଘଟିଥାଏ । ରକ୍ତଚାପ ଅଧିକ ଥିବା ମଣିଷମାନଙ୍କ ପାଇଁ ଶବ୍ଦ ପ୍ରଦୂଷଣ ଅତି ଭୟଙ୍କର । ଅପରପକ୍ଷେ, ଅତ୍ୟଧିକ ଶବ୍ଦ ପ୍ରଦୂଷଣ କାରଣରୁ କେନ୍ଦୁଝର ଜିଲ୍ଲାର ଲୋକମାନଙ୍କର ଖାଦ୍ୟ ହଜମ ଶକ୍ତି ମଧ୍ୟ ବାଧାପ୍ରାପ୍ତ ହେଉଛି ବୋଲି ଜଣାପଡିଛି । କ୍ରମାଗତ ଶବ୍ଦ ପ୍ରଦୂଷଣର ଶିକାର ହେବା ଦ୍ୱାରା କେନ୍ଦୁଝର ଜିଲ୍ଲାର ଲୋକେ ନିଦ୍ରାହୀନତା, ଅର୍ଦ୍ଧକପାଳି ଏବଂ କୋଲେଷ୍ଟରଲ ମାତ୍ରା ବୃଦ୍ଧି ଆଦି ରୋଗରେ ପୀଡ଼ିତ ହେଉଛନ୍ତି ।

କେନ୍ଦୁଝର ଜିଲ୍ଲାରେ ଶିଳ୍ପଜନିତ ଜଳ ପ୍ରଦୂଷଣ ମଧ୍ୟ ଚିନ୍ତାଜନକ । ବହୁ କାରଖାନାର ବର୍ଜ୍ୟଜଳକୁ ଶୋଧନ ନ କରି ସିଧା ବୈତରଣୀ, ଅରଡେଇ, ମାଛକାନ୍ଦଣା, ସୁନା ନଈ ଆଦି ଜଳ ଉତ୍ସକୁ ଛାଡି ଦେଉଛନ୍ତି । ଏହି ବିଷାକ୍ତ ବର୍ଜ୍ୟ ଜଳରେ କୋଇଲା ଗୁଣ୍ଡ, ଆଇରନ୍ ଗୁଣ୍ଡ, ବିଷାକ୍ତ ଧୂଳି ଓ ଅନ୍ୟାନ୍ୟ ରାସାୟନିକ ପଦାର୍ଥ ମିଶି ରହୁଥିବାରୁ ଏହା ଜିଲ୍ଲାର ଅନେକ ନଦୀର ଜଳକୁ ବିଷାକ୍ତ କରିଦେଇଛି । ଆଜି ପୁଣ୍ୟତୋୟା ବୈତରଣୀର ଜଳ ଆଉ ଶୁଦ୍ଧପବିତ୍ର ହୋଇ ରହିନାହିଁ ।

କେନ୍ଦୁଝର ଜିଲ୍ଲାରେ କାର୍ଯ୍ୟ କରୁଥିବା ପ୍ରାୟ ସମସ୍ତ କଂପାନୀ ନିଜ ପରିସରରେ ବେଆଇନ୍ ଗଭୀର ନଳକୂପ ଖନନ କରି ଭୂ-ତଳ ଜଳକୁ ବ୍ୟବହାର କରୁଛନ୍ତି । ଏହା ଫଳରେ କେନ୍ଦୁଝର ଜିଲ୍ଲାର ଭୂ-ତଳ ଜଳ ଦିନକୁ ଦିନ ହ୍ରାସ ପାଇବାରେ ଲାଗିଛି । ଯୋଡ଼ା, ବଡ଼ବିଲ୍, ବଲାଣି, କିରିବୁରୁ, ଜୁରୁଡ଼ି, ବାମେବାରୀ, କାଳିମାଟି, ଜଳହରି, ବାଂଶପାଣି, ନୟାଗଡ଼ ଆଦି ଅଞ୍ଚଳ ଏବେ ନର୍କରେ ପରିଣତ ହୋଇଛି । ଏ ଅଞ୍ଚଳ ଦେଇ ବହି ଯାଇଥିବା ପୁଣ୍ୟତୋୟା ବୈତରଣୀ ଓ ଏହାର ଉପନଦୀଗୁଡ଼ିକ ଏବେ ବିଷାକ୍ତ ହୋଇପଡିଛି । ଏ ଅଞ୍ଚଳରେ ବସବାସ କରୁଥିବା ଶ୍ରମିକ ଶ୍ରେଣୀର ଲୋକେ ଏହି ଦୂଷିତ ଜଳକୁ ଅନ୍ୟାନ୍ୟ ଘରୋଇ ବ୍ୟବହାର ସହିତ ପାନୀୟ ଜଳ ଭାବେ ମଧ୍ୟ

ବ୍ୟବହାର କରୁଛନ୍ତି ।

(ତଥ୍ୟ ସହାୟତା:

୧. 'ସମ୍ବାଦ ବିଶେଷ' ନିଉଜ୍ ଷ୍ଟୋରି, ରଂଜନ ପ୍ରଧାନ, ଭୁବନେଶ୍ୱର, ତାରିଖ: ୧, ଏପ୍ରିଲ୍, ୨୦୧୧

୨. ଡାକ୍ତର ପ୍ରତାପ କୁମାର ରଣା, କେନ୍ଦୁଝର)

## ସିଲ୍‌ଟିଂ ସମସ୍ୟା: ବୈତରଣୀ ପାଇଁ ବଡ଼ ଆହ୍ୱାନ

*(Silting : a big challenge to the Baitaranee)*

ଉପର ମୁଣ୍ଡରେ ବ୍ୟାପକ ଖଣି ଖନନ ଯୋଗୁଁ ବୈତରଣୀ ପାଇଁ 'ସିଲ୍‌ଟିଂ' *(Silting)* ଏକ ଆହ୍ୱାନ ଭାବେ ମୁଣ୍ଡ ଟେକିଛି । ରାଜ୍ୟରେ ବୈତରଣୀ ହେଉଛି ଏକମାତ୍ର ନଦୀ, ଯାହାର ଉପରମୁଣ୍ଡରେ ସର୍ବାଧିକ ଖଣିଜ ସଂପଦ ଗଚ୍ଛିତ ରହିଛି ଏବଂ ଏହାର ନିୟମିତ ଖନନ ଯୋଗୁଁ ବୈତରଣୀ ଶଯ୍ୟା ଧୀରେଧୀରେ ପୋତି ହେବାରେ ଲାଗିଛି ।

ସିଲ୍‌ଟିଂ ଯୋଗୁଁ ନୂଆକରି ନିର୍ମାଣ କରାଯାଉଥିବା କାନୁପୁର ଜଳଭଣ୍ଡାରର ସ୍ଥାୟିତ୍ୱ ନେଇ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ରାଜ୍ୟର ଅନ୍ୟ ସ୍ଥାନମାନଙ୍କରେ ନିର୍ମାଣ କରାଯାଉଥିବା ଜଳଭଣ୍ଡାର ଏବଂ କେନ୍ଦୁଝର ଜିଲ୍ଲାରେ ବୈତରଣୀ ନଦୀର ଉପର ମୁଣ୍ଡରେ କରାଯାଉଥିବା ଜଳଭଣ୍ଡାର ମଧ୍ୟରେ ଅନେକ ଫରକ ରହିଛି । ବୈତରଣୀର ଉପର ମୁଣ୍ଡରେ ଜଳଭଣ୍ଡାର ନିର୍ମାଣ କରିବାକୁ ହେଲେ 'ସିଲ୍‌ଟିଂ' ସମସ୍ୟାକୁ ସର୍ବାଧିକ ଅଗ୍ରାଧିକାର ଦିଆଯିବା କଥା । ମାତ୍ର ଦୁର୍ଭାଗ୍ୟର ବିଷୟ, କାନୁପୁର ଜଳସେଚନ ପ୍ରକଳ୍ପର 'ଡିଟେଲ୍‌ଡ ପ୍ରୋଜେକ୍ଟ ରିପୋର୍ଟ' (ଡିପିଆର୍)ରେ 'ସିଲ୍‌ଟିଂ' ସଂପର୍କରେ କିଛି ବି ଉଲ୍ଲେଖ ନାହିଁ । ଜଳ ଭଣ୍ଡାର ନିର୍ମାଣ ଶେଷ ହୋଇଯିବା ପରେ ଏହି 'ସିଲ୍‌ଟିଂ' ବା ପଟୁମାଟି ଜମିବା ଜଳଭଣ୍ଡାର ପାଇଁ ପ୍ରକାଣ୍ଡ ସମସ୍ୟା ସୃଷ୍ଟି କରିବ । ସାଧାରଣତଃ ଶହେ ବର୍ଷକୁ ଆଖି ଆଗରେ ରଖି ଗୋଟିଏ ଜଳଭଣ୍ଡାର ନିର୍ମାଣ କରାଯାଇଥାଏ । ମାତ୍ର କାନୁପୁର ଜଳଭଣ୍ଡାର ନିର୍ମାଣ ହେବାର ପାଞ୍ଚ ବର୍ଷ, ଅତି ବେଶିରେ ଦଶ ବର୍ଷ ମଧ୍ୟରେ ପୋତି ହୋଇପଡ଼ିବ ବୋଲି ବିଶେଷଜ୍ଞ ମହଲରେ ଆଶଙ୍କା ପ୍ରକାଶ ପାଇଛି ।

ବୈତରଣୀର ଉପରମୁଣ୍ଡରେ ବ୍ୟାପକ ଖଣିଖୋଳା ଓ ଶିଳ୍ପାୟନ କାରଣରୁ ବର୍ଷାଦିନେ ଲୁହାଗୁଣ୍ଡ (ଆଇରନ୍ ଅକ୍ସାଇଡ୍ ପାର୍ଟିକିଲ୍) ଓ କଳକାରଖାନାର ବର୍ଜ୍ୟବସ୍ତୁ ଧୋଇ ହୋଇ ସିଧା ସଳଖ ନଦୀରେ ମିଶିଥାଏ ।

ବୈତରଣୀ ନଦୀର 'କ୍ୟାଚ୍‌ମେଣ୍ଟ ଟ୍ରିଟ୍‌ମେଣ୍ଟ ପ୍ଲାନ୍'କୁ ସରକାର ପୂରା ଅଣଦେଖା କରିଚାଲିଛନ୍ତି । ବୈତରଣୀ ନଦୀ ଜଳ ବ୍ୟାପକ ଭାବେ ପ୍ରଦୂଷିତ ହୋଇଚାଲିଛି । ଥିରୁବନ୍ତପୁରମ୍‌ର ଏକ ଅନ୍ତର୍ଜାତୀୟ

